# ମୋ ନିଜ କାହାଣୀ

(ପ୍ରଥମ ଭାଗ)

ଲେଖକ—ପଣ୍ଡିତ ଜହରଲାଲ ନେହୃରୁ
ଅନୁବାଦକ - ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ

# ଭୂମିକା

କେବଳ ପୁନଶ୍ଚ ଓ ଚିନ ୧୯୩୪ରୁ ୧୯୪୫ ଫେବୃୟାରୀ ପର୍ଯ୍ୟନ୍ତ କେତେକ ଅଳ୍ପ ଦିନ ଛଡ଼ା ଏହି ବହିଟିର ସମସ୍ତ ଅଂଶ ଜେଲ-ଖାନାରେ ଲେଖା ହୋଇଥିଲା । ଗୋଟିଏ ନିର୍ଦ୍ଦିଷ୍ଟ କାର୍ଯ୍ୟରେ ନିଜକୁ ନିଯୁକ୍ତ କରିବାହିଁ ଏହା ଲେଖିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଦୀର୍ଘ ଜେଲ ଜୀବନର ନିର୍ଜନତାରେ ଏହା ଅତ୍ୟନ୍ତ ଦରକାର । ଭାରତର ଅତୀତ ଘଟଣା ସମ୍ବନ୍ଧରେ ଆଲୋଚନା କରି ସେ ସମ୍ବନ୍ଧରେ ପରିଷ୍କାର ରୂପେ ଚିନ୍ତା କରିବା ମଧ୍ୟ ମୋର ଉଦ୍ଦେଶ୍ୟ ଥିଲା । ମୁଁ ପ୍ରଥମେ ନିଜକୁ ପ୍ରଶ୍ନ କରିବା ଭାବରେ ଆରମ୍ଭ କଲି ଏବଂ ଅନେକ ପରିମାଣରେ ବରାବର ଏହାହିଁ ରହିଛି । ମୁଁ ପାଠକମାନଙ୍କ ଉଦ୍ଦେଶ୍ୟରେ ଜାଣି ଶୁଣି ଲେଖି ନାହିଁ । ମାତ୍ର ଯଦିବା ପାଠକଙ୍କ କଥା ମନରେ ଉଠିଥାଏ, ତାହା ହେଉଛି ମୋ ନିଜ ଦେଶର ନରନାରୀ । ବିଦେଶୀ ପାଠକଙ୍କ ପାଇଁ ମୁଁ ସ୍ୱତନ୍ତ୍ର ଭାବରେ ଲେଖିଥାନ୍ତି କିମ୍ବା ଅନ୍ୟାନ୍ୟ ବିଷୟରେ ଜୋର ଦେଇଥାନ୍ତି—ଯେଉଁ କେତେକ ବର୍ଣ୍ଣନା ସଂକ୍ଷିପ୍ତ ହୋଇଛି ତାହା ଉପରେ ଅଧିକ ଜୋର ଦେଇଥାନ୍ତି ଏବଂ ଦୀର୍ଘ ବର୍ଣ୍ଣନା କେତେକ ସଂକ୍ଷେପ କରି ପକାଇଥାନ୍ତି । ଏହି ଉପରୋକ୍ତ କଥା ଅଭାରତୀୟ ପାଠକଙ୍କୁ ଭଲ ଲାଗି ନ ପାରେ, ସେଗୁଡ଼ିକ ସେମାନେ ଗୁରୁତର ନୁହେଁ କିମ୍ବା ତର୍କ ଓ ଆଲୋଚନା ଯୋଗ୍ୟ ନୁହେଁ ବୋଲି ବିଚାର ପାରନ୍ତି; କିନ୍ତୁ ମୁଁ ଅନୁଭବ କରୁଛି ଯେ, ବର୍ତ୍ତମାନ ଭାରତରେ ତାହାର କେତେକ ଗୁରୁତ୍ୱ ରହିଛି । ଆମର ଅଭ୍ୟନ୍ତରୀଣ ରାଜନୀତି ଓ ବ୍ୟକ୍ତିବିଶେଷଙ୍କ ସମ୍ବନ୍ଧରେ ଯାହା ଲେଖା ହୋଇଛି, ବିଦେଶୀ ଲୋକଙ୍କ ମନରେ ତାହା ହୁଏ ତ ଅଦୌ ଆଗ୍ରହ ଜାତ କରାଇ ନ ପାରେ ।

ମୁଁ ଆଶା କରେ, ପାଠକେ ମନେ ରଖିବେ ଯେ, ମୋର ଏକ ବୈଚିତ୍ର୍ୟପୂର୍ଣ୍ଣ ଅବସ୍ଥାରେ ମୁଁ ଏହି ପୁସ୍ତକ ଲେଖିଛି । ଏହାର ସ୍ପଷ୍ଟ ଚିହ୍ନ ଏଥିରେ ଅଛି । ଅଧିକ ସାଧାରଣ ଅବସ୍ଥାରେ ଯଦି ଲେଖା ହୋଇଥାନ୍ତା,

ତେବେ ଏହା ଅନ୍ୟ ପ୍ରକାର ହୋଇଥାନ୍ତା । ଏବଂ ସମ୍ଭବତଃ ସ୍ଥାନେ ସ୍ଥାନେ ଅଧିକ ସଫଳ ହୋଇଥାଆନ୍ତା । ତଥାପି ଏହା ଯେପରି ଲେଖା ହୋଇଥିଲା, ମୁଁ ସେପରି ଛାଡ଼ ଦେଇଛି; କାରଣ ମୁଁ ଲେଖିଲାବେଳେ କଅଣ ଭାବୁଥିଲି, ତାହା ଜାଣିବାପାଇଁ କେତେକଙ୍କର ଆଗ୍ରହ ହୋଇପାରେ ।

ମୁଁ ଯେତେଦୂର ପାରେ, ମୋର ନିଜର ମାନସିକ ଉନ୍ନତି ଲକ୍ଷ୍ୟ କରିବାଲାଗି ଉଦ୍ୟମ କରିଛି—ଆଧୁନିକ ଭାରତ ଇତିହାସର ବର୍ଣ୍ଣନା ନୁହେଁ । ଏହି ଲେଖା ଉପରଠାଉରିଆ ଭାବରେ ସେପରି ବର୍ଣ୍ଣନା ପରି ମନେ ହେଉ ଥିବାରୁ ଲୋକେ ଭୁଲ ବୁଝି ପାରନ୍ତି ଏବଂ ଏହା ପ୍ରତି ଯେତେ ବେଶି ଗୁରୁତ୍ୱ ଆରୋପ କରିବାର କଥା ନୁହେଁ, ତାହା କରି ପାରନ୍ତି । ସେଥିପାଇଁ ମୁଁ ପାଠକଙ୍କୁ ସତର୍କ କରାଇ ଦେଉଛି ଯେ ଏହା ସମ୍ପୂର୍ଣ୍ଣ ଏକପାଖିଆ ଏବଂ ଅନିବାର୍ଯ୍ୟରୂପେ ନିଜର ଗୁଣ କୀର୍ତ୍ତନ । ଅନେକ ଗୁରୁତର ଘଟଣାକୁ ସମ୍ପୂର୍ଣ୍ଣରୂପେ ଉପେକ୍ଷା କରାଯାଇଛି ଏବଂ ଘଟଣାର ସ୍ରୋତକୁ ଆକୃତି ଦେଉଥିବା ଅନେକ ପ୍ରଧାନ ବ୍ୟକ୍ତିଙ୍କର ନାମ ପର୍ଯ୍ୟନ୍ତ ଉଲ୍ଲେଖ ହୋଇନାହିଁ । ଅତୀତ ଘଟଣାର ପ୍ରକୃତ ବର୍ଣ୍ଣନାରେ ଏହା କ୍ଷମଣୀୟ ହୁଅନ୍ତା ନାହିଁ । ମାତ୍ର ବ୍ୟକ୍ତିଗତ ବିବରଣୀ ବର୍ଣ୍ଣନାରେ ଏହାକୁ କ୍ଷମା ଦିଆଯାଇ ପାରେ । ଯେଉଁମାନେ ଆମର ନିକଟ ଅତୀତ ସମ୍ବନ୍ଧରେ ଜାଣିବାକୁ ଚାହାନ୍ତି, ସେମାନଙ୍କୁ ଅନ୍ୟ ପୁସ୍ତକ ପଢ଼ିବାକୁ ହେବ । ଯାହାହେଉ, ହୁଏ ତ ଏହା ଏବଂ ଅନ୍ୟ ବ୍ୟକ୍ତିଗତ ବର୍ଣ୍ଣନା ପଢ଼ି ସେମାନଙ୍କ ଅଭାବ ପୂରଣ ହୋଇପାରେ ଏବଂ ଏହା ବାସ୍ତବ ଘଟଣା ବୁଝିବାର ଭୂମିକା ଦେଇପାରେ ।

ମୁଁ ମୋର କେତେକ ସହକର୍ମୀଙ୍କ ସମ୍ବନ୍ଧରେ ଖୋଲାଭାବରେ ଆଲୋଚନା କରିଛି । ସେମାନଙ୍କ ସହିତ ଅନେକ ବର୍ଷ ହେଲା ମୁଁ କାର୍ଯ୍ୟ କରିବାର ସୁବିଧା ପାଇଛି । ଏବଂ ସେମାନଙ୍କ ପ୍ରତି ମୋର ଗଭୀର ଭକ୍ତି ଓ ଶ୍ରଦ୍ଧା ଅଛି, ମୁଁ ଦଳ ଓ ବ୍ୟକ୍ତିବିଶେଷର ସମାଲୋଚନା କରିଛି ବେଳେ ବେଳେ କଡ଼ା କଡ଼ା ଭାବରେ । ସେହି ସମାଲୋଚନା ହେତୁ ସେମାନଙ୍କ

ପ୍ରତି ମୋର ସମ୍ମାନ ଯାଇ ନାହିଁ । ମାତ୍ର ମୁଁ ଅନୁଭବ କରୁଛି ଯେଉଁମାନେ ସାଧାରଣ କାର୍ଯ୍ୟରେ ବ୍ରତୀ ହୋଇଛନ୍ତି, ସେମାନେ ପରସ୍ପର ଭିତରେ ଓ ଯେଉଁ ସାଧାରଣଙ୍କର ସେବା କରୁଛନ୍ତି ବୋଲି ଦାବୀ କରନ୍ତି; ତାଙ୍କ ସମକ୍ଷରେ ସରଳ ହେବା ଦରକାର । ବାହାରର ଭଦ୍ରତା ଅଶୋଭନୀୟ ଏବଂ କେତେବେଳେ ଅବା ଝଗଡ଼ାକର ପ୍ରଶ୍ନସବୁ ଏଡ଼ିଦେବାଦ୍ୱାରା ପରସ୍ପରକୁ ବୁଝିବାରେ କିମ୍ବା ଆମ ସମ୍ମୁଖରେ ଥିବା ସମସ୍ୟା ବୁଝିବାରେ ସାହାଯ୍ୟ କରେ ନା । ମତଭେଦ ଏବଂ ସାଧାରଣ ମେଳକୁ ପସନ୍ଦ କରିବା ଯେତେ ଅସୁବିଧା ହେଉ ପଛକେ ଘଟଣାର ସମ୍ମୁଖୀନ ହେବାଦ୍ୱାରାହିଁ ପ୍ରକୃତ ସହଯୋଗ ଉଦ୍ଭବ ହୋଇପାରେ । ଯାହା ହେଉ, ମୁଁ ବିଶ୍ୱାସ କରେ ଯେ, ମୁଁ ଯାହା ଲେଖିଛି—ସେଥିରେ କୌଣସି ବ୍ୟକ୍ତିବିଶେଷ ପ୍ରତି ମୋର ଈର୍ଷା ବା ଖରାପ ଭାବ ନାହିଁ ।

କେବଳ ଅଳ୍ପ ଓ ଅପ୍ରତ୍ୟକ୍ଷଭାବ ବ୍ୟତୀତ ମୁଁ ବର୍ତ୍ତମାନ ଭାରତର ସମସ୍ୟା ଆଲୋଚନା ଜାଣିଶୁଣି ଏଡ଼ି ଦେଇଛି । ଜେଲରେ ସେ ସମ୍ବନ୍ଧରେ ସମ୍ୟକରୂପେ ଆଲୋଚନା କରିବା ଅବସ୍ଥାରେ ମୁଁ ନ ଥିଲି ଏବଂ ଏପରି କି କି କାମ କରିବାକୁ ହେବ, ସେ ସମ୍ବନ୍ଧରେ ନିଜେ ମଧ୍ୟ ସ୍ଥିର କରିପାରି ନ ଥିଲି । ମୋର ଖଲାସ ପରେ ଏହି ବିଷୟରେ କିଛି ଯୋଗ କରିବାର ସମୀଚୀନତା ବୋଧ କଲିନାହିଁ । ମୁଁ ଯାହା ଲେଖିଲି, ତାହା ସହିତ ଏହା ଖାପ ଖାଇଲା ପରି ଲାଗିଲା ନାହିଁ । ସେଥିପାଇଁ "ଆତ୍ମ କାହାଣୀ"ରେ କେତେକ ରେଖାଚିତ୍ର ବ୍ୟକ୍ତିଗତ ହୋଇଛି—ଅତୀତ ଘଟଣା ସମ୍ବନ୍ଧରେ ଅସମ୍ପୂର୍ଣ୍ଣ; ବର୍ତ୍ତମାନ ସୀମାରେ ଆସି ପଡ଼ିଛି ଏବଂ ସାବଧାନତାର ସହିତ ସେଥିରୁ ସମ୍ପର୍କ ଛିନ୍ନ କରିଛି ।

ବେଡ଼େନ ୱେଲେର — ଜହରଲାଲ ନେହରୁ

ଜାନୁୟାରୀ ୨, ୧୯୩୬

# ସୂଚୀ

## ପ୍ରଥମ ଭାଗ

**ବିଷୟ** | **ପୃଷ୍ଠା**

| ବିଷୟ | ପୃଷ୍ଠା |
| --- | --- |

# ପ୍ରସ୍ତାବନା

ଚବ୍ ପିଆରୀଶଙ୍କରଙ୍କର ଅକାଳମୃତ୍ୟୁ ଘଟିଛି; ନଚେତ୍ ଏହି ପୁସ୍ତକ ଛପା ଅବସ୍ଥାରେ ଦେଖି ବୋଧହୁଏ ସବୁଠାରୁ ସେ ଅଧିକ ଆନନ୍ଦିତ ହୋଇଥାଆନ୍ତେ । ୧୯୪୦-୪୧ରେ ବ୍ରହ୍ମପୁର ଜେଲରେ ୧୬ମାସ କାରାଦଣ୍ଡ ବେଳେ ଖେଳ, କସରତ୍, ଆନନ୍ଦ କରିବାଲାଗି ଅନେକ ସାଥୀ ସାଙ୍ଗରେ ଥିଲେ; ମାତ୍ର ମୁଁ ତାହା ସଙ୍ଗେ ସଙ୍ଗେ କିଛି ଲେଖାପଢ଼ା କରିବାକୁ ଚାହିଁଥିଲି । ଭାବୁଥିଲି, ଜବାହରଲାଲଙ୍କ 'Glimpses of world History'ଟି ଓଡ଼ିଆରେ ଅନୁବାଦ କରିବି । ଓଡ଼ିଆରେ ଏପରି ବହି ନାହିଁ । ସେଥିରୁ ୨୧୮ ପୃଷ୍ଠା ଅନୁବାଦ ଆରମ୍ଭ କରିଥିଲି । କିନ୍ତୁ ଜବାହରଲାଲଙ୍କ autobiography ଅନ୍ୟ ସବୁ ଭାଷାରେ ପ୍ରାୟ ହୋଇ ସାରିଲାଣି । ପ୍ରଥମେ ତାହା କରିବାକୁ ପିଆରୀ ଓ ଆଉ କେତେ ବନ୍ଦୀ-ସାଥୀଙ୍କ ଅନୁରୋଧରେ ଏହାର ଅନୁବାଦ ଆରମ୍ଭ କଲି ଏବଂ ଠିକ ୬ମାସରେ ଶେଷ କଲି । ୧୫।୬।୪୧ରେ ଲେଖା ସମାପ୍ତ ହେଲା । ଛପିବାଲାଗି ପଣ୍ଡିତ ଜବାହରଲାଲଙ୍କଠାରୁ ଅନୁମତି ମିଳିବାରେ ବିଳମ୍ବ ନ ଘଟିଥିଲେ ସୁଦ୍ଧା ୧୯୪୨ର ସଂଗ୍ରାମରେ ମୋର କାରାବାସ ଏବଂ ଖଲାସ ପରେ ପ୍ରେସ ଓ କାଗଜର ଅସୁବିଧା ଆଦି ହେତୁ ଏହା ପ୍ରକାଶିତ ହେବାକୁ ଦୀର୍ଘ ଆଠବର୍ଷ ଲାଗିଗଲା । ଏହି ପୁସ୍ତକରେ ୧୯୪୦ ମସିହା ଅଗଷ୍ଟ ପର୍ଯ୍ୟନ୍ତ ଜବାହରଲାଲଙ୍କର ନିଜ ଲେଖାର ଅନୁବାଦ ରହିଛି; ୧୯୪୯ ପର୍ଯ୍ୟନ୍ତ ତାଙ୍କ ଜୀବନର ସଂକ୍ଷିପ୍ତ କାହାଣୀ ସଂଗୃହୀତ ହୋଇ ଏଥିରେ ଯୋଗ କରାଯାଇଛି ।

ଏହି ପୁସ୍ତକ ଅନୁବାଦ କଲାବେଳେ ମୁଁ ଉପଲବ୍ଧି କରିଛି ଯେ, ନିଜେ ଲେଖିବା ଅପେକ୍ଷା ଅନୁବାଦ କରିବା କଷ୍ଟକର । ପୁଣି ଜବାହରଲାଲଙ୍କ ଇଂରେଜୀ ଲେଖାରେ ଯେଉଁ ସାହିତ୍ୟ, ମୌଳିକତା ଓ ଭାବର ସମାବେଶ ହୋଇଥାଏ, ତାହାର ଅବିକଳ ରୂପ ରକ୍ଷା କରିବା ଅତ୍ୟନ୍ତ କଷ୍ଟସାଧ୍ୟ । ଅନୁବାଦ କଲାବେଳେ ଯଥାସମ୍ଭବ ଏଥିପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିଛି; କିନ୍ତୁ ପୂର୍ଣ୍ଣରୂପେ ସଫଳ ହୋଇଛି ବୋଲି

କହିବା ଅନ୍ତରଙ୍ଗତ ହେବ । ପଣ୍ଡିତ ଲିଙ୍ଗରାଜ ମିଶ୍ର ଅନୁବାଦର କେତେକାଂଶ ଦେଖିଥିବାରୁ ଏବଂ ଶ୍ରୀ ଭଗୀରଥି ମହାପାତ୍ର ଇଂରାଜୀ ବହି ସହ ମିଳାଇ ଓଡ଼ିଆ ଅନୁବାଦଟିକୁ ଭଲଭାବରେ ପଢ଼ି ଆବଶ୍ୟକୀୟ ସଂଶୋଧନ କରିଦେଇଥିବାରୁ ମୁଁ ସେମାନଙ୍କଠାରେ କୃତଜ୍ଞ ।

ଶାନ୍ତିନିକେତନର ଛାତ୍ର ଚିତ୍ତରଞ୍ଜନ ଦାସଙ୍କର ସହଯୋଗ ପାଇ ନ ଥିଲେ ପୁସ୍ତକଟି ଅଧା ରହି ଯାଇଥାଆନ୍ତା । ଜେଲରୁ ବାହାରିବା ପରେ ମୁଁ ଏତେ କାର୍ଯ୍ୟବ୍ୟସ୍ତ ରହିଲି ଯେ, ଏହାର ପରବର୍ତ୍ତୀ ଅଂଶ ସଂଗ୍ରହ କରିବା ମୋ ପକ୍ଷରେ ଅସମ୍ଭବ ଥିଲା । ଚିତ୍ତରଞ୍ଜନ ସେତିକି କରିବାରେ ସାହାଯ୍ୟ କରିବାରୁ ଏବଂ ଛପା ପ୍ରୁଫ୍ ଶ୍ରୀମାନ୍ ସଚ୍ଚିଦାନନ୍ଦ ମିଶ୍ର ପାଣ୍ଡୁଲିପି ଭଲଭାବରେ ପଢ଼ି ଯାଇଥିବାରୁ ମୋର କାର୍ଯ୍ୟ ବହୁପରିମାଣରେ ଲାଘବ ହୋଇଛି ।

ଶେଷରେ ଏକ ବ୍ୟକ୍ତିଗତ କୈଫିୟତ୍ ଦିଏଁ । କେତେକ ବନ୍ଧୁ ଖବରକାଗଜରେ ଏ ବହିର ବିଜ୍ଞାପନ ପଢ଼ି ପଚାରିଥିଲେ 'ଜବାହରଲାଲଙ୍କ ସରକାର ଓ କଂଗ୍ରେସ ବିରୋଧରେ ଆପଣ କାମ କରୁଥିଲାବେଳେ ତାଙ୍କ ଜୀବନ ଅନୁବାଦ କରି ପ୍ରଚାର କରୁଛନ୍ତି କିପରି ?' ମୁଁ ସେମାନଙ୍କୁ ଏତିକି କହିବାକୁ ଚାହେଁ ଯେ, ବହିଟି ନଅବର୍ଷ ତଳେ ଅନୁବାଦ ହୋଇଥିଲା । ତାହାଛଡ଼ା ରାଜନୀତିକ ମତଭେଦ ସହ ଏହାର କୌଣସି ସମ୍ପର୍କ ନାହିଁ । ଗାନ୍ଧୀ, ଜବାହରଲାଲଙ୍କ ପରି ବ୍ୟକ୍ତିଙ୍କର ଜୀବନ କାହାଣୀ ଏହାରି ବହୁ ଉଚ୍ଚରେ ଏବଂ ପ୍ରତ୍ୟେକ ବ୍ୟକ୍ତିବିଶେଷର ଏଥିରୁ ଅନେକ କଥା ଶିଖିବାର ଅଛି ବୋଲି ମୁଁ ବିଶ୍ୱାସ କରେଁ । ଜବାହରଲାଲଙ୍କର 'ନିଜ କାହାଣୀ' ପଢ଼ିଲେ ହିଁ ତାଙ୍କୁ ଭଲଭାବରେ ବୁଝିବାର ଏବଂ ଆଦର୍ଶ ଅନୁସାରେ କାର୍ଯ୍ୟ କରିବା ତାଙ୍କ ପକ୍ଷେ ସମ୍ଭବ ହେଉଛି କି ନା ଜାଣିବାର ସୁଯୋଗ ମିଳିବ । ତାହାଛଡ଼ା ଜବାହରଲାଲଙ୍କ "ନିଜ କାହାଣୀ" ଏକ ପ୍ରକାର ଜାତୀୟ ଆନ୍ଦୋଳନର ଇତିହାସ ବୋଇଲେ ଚଳେ ।

ଜୟହିନ୍ଦ୍

ସୁରେନ୍ଦ୍ରନାଥ ଦ୍ୱିବେଦୀ

ତା ୨୧ । ୭ । ୪୯

# ମୋ ନିଜ କାହାଣୀ

## କାଶ୍ମୀରରୁ ଆଗମନ

"କୌଣସି ଲୋକ ପକ୍ଷରେ ନିଜ ବିଷୟରେ ଲେଖିବା ଯେପରି ଅପ୍ରୀତିକର, ସେହିପରି କଠିନ । ନିଜର କୌଣସି ଅପଣ କଥା କହିବାକୁ ହେଲେ ଯେପରି ଅଡ଼ୁଆ ଲାଗେ, ଆତ୍ମପ୍ରଶଂସା ମଧ୍ୟ ସେହିପରି ପାଠକମାନଙ୍କର ଶ୍ରୁତିକଟୁ ହୁଏ ।" ଅବ୍ରାହମ୍ କଲି

ଧନୀର ପରିବାରର ଏକମାତ୍ର ପୁତ୍ର, ବିଶେଷତଃ ଭାରତରେ, ଖରାପ ହେବାର ସମ୍ଭାବନା ଥାଏ, ଆହୁରି ଯଦି ସେ ପିଲାଟିକୁ ଏଗାର ବର୍ଷ ହେବା ପର୍ଯ୍ୟନ୍ତ ଆଉ ପିଲାପିଲି ହୋଇ ନ ଥାନ୍ତି, ତେବେ ଖରାପ ନ ହେବ ବୋଲି ଆଶା କରାହେବ ନାହିଁ । ମୋର ଦୁଇଟି ଯାକ ଭଉଣୀ ମୋଠାରୁ ଖୁବ୍ ଛୋଟ ଏବଂ ଆମ୍ଭମାନଙ୍କ ଭିତରେ ବୟସର ପାର୍ଥକ୍ୟ ଖୁବ ବେଶୀ । ସୁତରାଂ, ମୁଁ ଏକ ପ୍ରକାର ସାଥିହୀନ ଭାବରେ ଏକୁଟିଆ ହୋଇ ପିଲାବେଳ କଟାଇଲି । ସ୍କୁଲପିଲାମାନଙ୍କୁ ମଧ୍ୟ ସାଥି କରିପାରି ନ ଥିଲି, କାରଣ ମୋତେ କୌଣସି ପ୍ରାଇମେରୀ ସ୍କୁଲ ବା କିଣ୍ଡରଗାର୍ଟେନକୁ ପଠାଯାଇ ନ ଥିଲା । ଘରେଇ ଶିକ୍ଷୟିତ୍ରୀ ଓ ଘରେଇ ଶିକ୍ଷକମାନଙ୍କ ଉପରେ ମୋର ଶିକ୍ଷାର ଭାର ଦେଇ ସମସ୍ତେ ନିଶ୍ଚିନ୍ତ ଥିଲେ ।

ଆମ ଘର ଆଦୌ ନିକାଞ୍ଚନିଆଁ ନ ଥିଲା; କାରଣ ଅନ୍ୟ ହିନ୍ଦୁ ପରିବାରମାନଙ୍କ ପରି ଆମର ଖୁଡ଼ୁତା ଏବଂ ଅନ୍ୟାନ୍ୟ ନିକଟସମ୍ପର୍କୀୟଙ୍କ ସହ ଏକ ବଡ଼ ପରିବାର ହୋଇ ଆମ୍ଭେମାନେ ବାସ କରୁଥିଲୁ । କିନ୍ତୁ ମୋର ଜେଠାପୁଅ ଭାଇମାନେ ସମସ୍ତେ ମୋଠାରୁ ବହୁତ ବଡ଼ ଥିଲେ । ସେମାନେ ସ୍କୁଲ ବା ବିଶ୍ୱବିଦ୍ୟାଳୟରେ ପଢ଼ୁଥିଲେ ଏବଂ ମୋ ସହିତ

କୌଣସି କାର୍ଯ୍ୟ କରିବାକୁ ବା ଖେଳିବାକୁ ସେମାନେ ମୋତେ ନିହାତି ପିଲା ବୋଲି ଭାବୁଥିଲେ । ତେଣୁ ଏହି ବୃହତ୍ ପରିବାର ଭିତରେ ଥାଇ ସୁଦ୍ଧା ମୁଁ ନିଜକୁ ଏକୁଟିଆ ବୋଧ କରୁଥିଲି ଏବଂ ଖେଳ ଓ ଅନ୍ୟ ମଉଜ ମଜଲିସ୍‌ରେ ଏକୁଟିଆ କାଳ କାଟୁଥିଲି ।

ଆମେମାନେ କାଶ୍ମୀରୀ । ପ୍ରାୟ ଦୁଇ ଶହ ବର୍ଷ ପୂର୍ବେ ୧୮ଶ ଶତାବ୍ଦୀର ପ୍ରଥମ ଭାଗରେ ସମତଳ ଭୂମିରେ ଧନ ଓ ଯଶ ଅର୍ଜନ କରିବା ନିମନ୍ତେ ସେହି ପାର୍ବତ୍ୟ ଅଞ୍ଚଳରୁ ଆମର ପୂର୍ବପୁରୁଷମାନେ ଆସିଥିଲେ । ସେତେବେଳେ ଆଓରଙ୍ଗଜେବଙ୍କ ମୃତ୍ୟୁପରେ ମୋଗଲ ସାମ୍ରାଜ୍ୟର ପତନ ସମୟ ଏବଂ ଫାରୁକ୍‌ସିଅର ସମ୍ରାଟ୍ ଥାଆନ୍ତି । ଆମର ସେ ପୂର୍ବପୁରୁଷଙ୍କ ନାମ ହେଉଛି ରାଜ କାଉଲ୍ । ଜଣେ ପାର୍ସି ଓ ସଂସ୍କୃତ ପଣ୍ଡିତ ହିସାବରେ କାଶ୍ମୀରରେ ସେ ଖ୍ୟାତି ଲଭିଥିଲେ । ଫାରୁକ୍‌ସିଅର କାଶ୍ମୀର ଯାଇଥିଲାବେଳେ ତାଙ୍କ ଖ୍ୟାତି ଶୁଣିଥିଲେ ଏବଂ ସମ୍ଭବତଃ ତାଙ୍କର ଇଚ୍ଛାନୁସାରେ ପ୍ରାୟ ୧୭୧୬ ମସିହାରେ ଆମ ପରିବାର କାଶ୍ମୀରରୁ ସାମ୍ରାଜ୍ୟର ରାଜଧାନୀ ଦିଲ୍ଲୀ ସହରକୁ ବସତି କରିବାକୁ ଆସିଲେ । ଗୋଟିଏ କେନାଲ କୂଳରେ କେତେ ଜାଗିରୀ ଜମି ଓ ଗୋଟିଏ ଘର ରାଜ କାଉଲ୍‌ଙ୍କୁ ଦିଆଯାଇଥିଲା ଏବଂ ଏହି ଘର ଯୋଗୁ 'ନେହେରୁ' [ନହର ବା କେନାଲରୁ] ନାମ ତାଙ୍କୁ ଦିଆଗଲା । ପରିବାରର ନାମ କାଉଲ୍ ଥିଲା; ଏହା କାଉଲ୍ ନେହେରୁ ହେଲା । ପରେ କାଉଲ୍ ଗଲା ଓ ଆମେ ସବୁ ଖାଲି ନେହେରୁ ହେଲୁଁ ।

ଏହା ପରେ ଅନେକ ଗୋଳମାଳିଆ ସମୟ ପଡ଼ିଲା, ସେଥିରେ ଏହି ପରିବାରର ବହୁତ ଭାଗ୍ୟ ପରିବର୍ତ୍ତନ ବି ଘଟିଲା । ଜାଗିରୀ ଦୁଇ ଗୁଣ ହେଲା ଏବଂ କ୍ରମଶଃ ଲୋପ ବି ପାଇଲା । ମୋର ପ୍ରପିତାମହ ଲକ୍ଷ୍ମୀନାରାୟଣ ନେହେରୁ ଦିଲ୍ଲୀ ସମ୍ରାଟଙ୍କ କଚେରୀରେ "ସରକାର କୋମ୍ପାନୀ"ର ପ୍ରଥମ ଉକିଲ ହୋଇଥିଲେ । ମୋର ପିତାମହ ଗଙ୍ଗାଧର ନେହେରୁ ୧୮୫୭ର ବିରାଟ ବିଦ୍ରୋହ ପୂର୍ବରୁ କିଛିଦିନ ପାଇଁ ଦିଲ୍ଲୀର କଟୁଆଲ ଥିଲେ । ସେ ୧୮୬୧ ମସିହାରେ ମୋଟେ ୩୪ ବର୍ଷ ବୟସରେ ମରିଥିଲେ

୧୮୫୭ ବିଦ୍ରୋହ ହେତୁ ଦିଲ୍ଲୀ ସହିତ ଆମ ପରିବାରର ସମସ୍ତ ସଂପର୍କ ତୁଟିଗଲା ଏବଂ ଏହି ବିଦ୍ରୋହ ସମୟରେ ଆମ ପରିବାରର ସମସ୍ତ କାଗଜ ପତ୍ର ଓ ଦଲିଲ ନଷ୍ଟ ହୋଇଗଲା । ଯାହା ବା କିଛି ଥିଲା, ସେ ସବୁ ମଧ୍ୟ ହଜାଇବାକୁ ସେ ସମୟରେ ଯେଉଁ ଅଗଣ୍ୟ ପଳାତକ ଦିଲ୍ଲୀ ଛାଡ଼ି ଆଗ୍ରା ପଳାଇ ଆସୁଥିଲେ, ସେମାନଙ୍କ ସହିତ ଆମ ପରିବାର ମଧ୍ୟ ଦିଲ୍ଲୀ ଛାଡ଼ି ଆଗ୍ରା ଆସିଲେ । ମୋର ବାପା ସେତେବେଳକୁ ଜନ୍ମ ହୋଇ ନ ଥିଲେ; ମାତ୍ର ମୋର ବାପାଙ୍କ ଦୁଇ ଭାଇ ସେତେବେଳକୁ ଯୁବକ ହୋଇଥିଲେ ଏବଂ କିଛି କିଛି ଇଂରେଜୀ ବି ଜାଣିଥିଲେ । ଏହି ଇଂରେଜୀ ଜ୍ଞାନ ହେତୁ ବାପାଙ୍କ ଦୁଇଭାଇଙ୍କ ଭିତରୁ ଛୋଟ ଭାଇଟି ଓ ଆମ ପରିବାରର ଅନ୍ୟ ଲୋକେ ହଠାତ୍ ଘଟିଥିବା ଏକ ଲଜ୍ଜାଜନକ ବ୍ୟାପାରରୁ ରକ୍ଷା ପାଇଥିଲେ । ସେ ଆମ ପରିବାରର କେତେକଙ୍କୁ ନେଇ ଦିଲ୍ଲୀରୁ ଆସୁଥିଲେ । ସେମାନଙ୍କ ସହିତ ତାଙ୍କର ଛୋଟ ଭଉଣୀ ଥିଲେ, ସେ ସେତେବେଳକୁ ଖୁବ୍ ଛୋଟ ଝିଅଟିଏ । ଅନ୍ୟ କାଶ୍ମୀରୀ ପିଲାଙ୍କ ପରି ଖୁବ୍ ସୁନ୍ଦର ମଧ୍ୟ । ବାଟରେ କେତେକ ଇଂରେଜ ସୈନ୍ୟ ତାଙ୍କୁ ଭେଟିଲେ । ସେମାନେ ମୋର ଏହି ଛୋଟ ପିଉସୀଙ୍କୁ ଇଂରେଜ ଝିଅ ବୋଲି ସନ୍ଦେହ କଲେ ଓ ମୋ ଖୁଡ଼ୁତା ତାଙ୍କୁ ଚୋରାଇ ନେଉଛନ୍ତି ବୋଲି ଅଭିଯୋଗ କଲେ । ସେ କାଳରେ ଅଭିଯୋଗ ହେବା ସଙ୍ଗେ ସଙ୍ଗେ ହିଁ ପରୀକ୍ଷା ବିଚାର ଓ ଶାସ୍ତି କେତେ ମିନିଟ୍ ଭିତରେ ହୋଇ ଯାଉଥିଲା । ଏଣୁ ମୋର ସାନ ଜେଠା ଓ ପରିବାରର ଅନ୍ୟମାନେ ନିକଟସ୍ଥ ଗଛରେ ମଧ୍ୟ ଝୁଲାଇ ଦିଆ ହୋଇ ଥାଆନ୍ତେ । ସୌଭାଗ୍ୟର କଥା ଯେ, ମୋର ସାନ ଜେଠାଙ୍କର ଇଂରେଜୀ ଜ୍ଞାନ ଥିବା ହେତୁ ଏଥିରେ ଟିକିଏ ବିଳମ୍ବ ଘଟିଲା । ଏହି ସମୟରେ ତାଙ୍କର ପରିଚିତ ଜଣେ ଲୋକ ସେ ବାଟେ ଯାଉଥିଲେ—ସେହିହିଁ ତାଙ୍କୁ ରକ୍ଷା କଲେ ।

କେତେକ ବର୍ଷ ପର୍ଯ୍ୟନ୍ତ ପରିବାରଟି ଆଗ୍ରାରେ ବାସ କଲେ । ୧୮୬୧ ମସିହା ମେ ମାସ ୬ ତାରିଖରେ ଆଗ୍ରାରେ ମୋର ପିତା ଜନ୍ମ

ଲଭିଥିଲେ ※ । ମାତ୍ର ସେ ଏକ ବାପଛେଉଣ୍ଡ ପିଲା ଥିଲେ; କାରଣ ତାଙ୍କ ଜନ୍ମର ତିନି ମାସ ପୂର୍ବରୁ ମୋର ପିତାମହ ମରି ଯାଇଥିଲେ । ମୋର ପିତାମହଙ୍କର ଖଣ୍ଡିଏ ସ୍କେଚ ଛବି ଆମ ଘରେ ଅଛି । ସେଥିରେ ସେ ଏକ ମୋଗଲ କଚେରିଆ ପୋଷାକ ପିନ୍ଧିଛନ୍ତି, ହାତରେ ଗୋଟାଏ ବଙ୍କା ଖଣ୍ଡା ଧରିଛନ୍ତି । ତାଙ୍କର ସମସ୍ତ ଆକୃତି କାଶ୍ମୀରୀଙ୍କ ପରି ହୋଇଥିଲେ ମଧ୍ୟ ତାଙ୍କୁ ଜଣେ ମୋଗଲ ଅମୀର ବୋଲି କୁହାଯାଇ ପାରେ ।

ମୋ ବାପାଙ୍କଠାରୁ ତାଙ୍କ ଭାଇ ଦୁହେଁ ଖୁବ୍ ବଡ଼ ଥିଲେ । ସୁତରାଂ ପରିବାରର ବୋଝ ସେହିମାନଙ୍କ ଉପରେ ପଡ଼ିଲା । ଅଳ୍ପ ଦିନ ପରେ ତାଙ୍କ ବଡ଼ ଭାଇ ବଂଶୀଧର ନେହେରୁ ବ୍ରିଟିଶ ସରକାରର ବିଚାର ବିଭାଗରେ ପ୍ରବେଶ କଲେ ଏବଂ ଅନେକ ସ୍ଥାନକୁ ସେ ବଦଳି ହୋଇ ଯାଉଥିବାରୁ ଆଂଶିକ ଭାବରେ ପରିବାରର ଅନ୍ୟମାନଙ୍କଠାରୁ ଅଲଗା ହୋଇ ଯାଉଥିଲେ । ତାଙ୍କ ସାନ ଭାଇ ନନ୍ଦଲାଲ ନେହେରୁ ଦେଶୀୟ ରାଜ୍ୟ ଚାକିରୀରେ ପଶିଲେ ଏବଂ ଦଶବର୍ଷ ପର୍ଯ୍ୟନ୍ତ ରାଜପୁତାନାର ଖେତ୍ରୀ ରାଜ୍ୟର ଦେୱାନ ଥିଲେ । ପରେ ସେ ଓକିଲାତି ପଢ଼ିଲେ ଏବଂ ଆଗ୍ରାରେ ଓକିଲାତି କରି ରହିଲେ ।

ମୋର ପିତା ତାଙ୍କ ସହିତ ବାସ କରୁଥିଲେ ଏବଂ ତାଙ୍କରି ଯତ୍ନରେ ପ୍ରତିପାଳିତ ହେଲେ । ପରସ୍ପର ପ୍ରତି ଦୁହେଁ ଖୁବ୍ ଆକୃଷ୍ଟ ଥିଲେ ଏବଂ ସେମାନଙ୍କ ଭିତରେ ଗୋଟାଏ ଅଦ୍ଭୁତ ରକମର ଭାଇ ଓ ବାପର ମିଶ୍ରିତ ସମ୍ବନ୍ଧ ଥିଲା । ମୋ ପିତା ସବୁଠାରୁ ପଛରେ ଜନ୍ମ ହୋଇଥିବାରୁ ପିତାମହୀଙ୍କର ଗେହ୍ଲା ପୁଅ ଥିଲେ । ବୁଢ଼ୀ ପିତାମହୀଙ୍କର ବି ଅଦ୍ଭୁତ ମାନସିକ ଶକ୍ତି ଥିଲା—ସେଥିଲାଗି ତାଙ୍କ କଥାକୁ କେହି ଏଡ଼ି ଦେଇ ପାରୁ ନ ଥିଲେ । ସେ ମରିବାର ପ୍ରାୟ ଅର୍ଦ୍ଧ ଶତାବ୍ଦୀ ହୋଇଗଲାଣି, କିନ୍ତୁ ଆଜି ବୁଢ଼ୀ ପୁରୁଣା କାଶ୍ମୀରୀ ସ୍ତ୍ରୀଲୋକମାନେ ତାଙ୍କୁ ଜଣେ ପ୍ରଧାନ

---

※ ସମ୍ମିଶ୍ରଣ ବଡ଼ ଅଦ୍ଭୁତ ଓ ଆନନ୍ଦଦାୟକ—କବି ରବୀନ୍ଦ୍ରନାଥ ଠାକୁର ମଧ୍ୟ ସେହି ଦିନ, ସେହି ମାସ, ସେହି ବର୍ଷ ଜନ୍ମିଥିଲେ ।

ଲୋକ ଭାବରେ ମନେ ରଖିଛନ୍ତି । ତାଙ୍କ କଥା ଅମାନ୍ୟ କରିବାକୁ ସେମାନେ ଭାରି ଭୟ କରୁଥିଲେ ।

ନୂତନ ସ୍ଥାପିତ ହାଇକୋର୍ଟରେ ମୋର ବାପା କାମ କରୁଥିଲେ ଏବଂ ଏହି ଅଦାଲତ ଆଗ୍ରାରୁ ଏଲାହାବାଦକୁ ଉଠି ଆସିବାରୁ ସମଗ୍ର ପରିବାର ବି ଏଲାହାବାଦକୁ ଆସିଲେ । ସେହିଦିନଠୁ ଏଲାହାବାଦ ଆମର ଘର ହୋଇଛି, ଅନେକ ବର୍ଷ ପରେ ଏହିଠାରେ ମୁଁ ଜନ୍ମ ହେଲି । କ୍ରମେ ବାପାଙ୍କର ଓକିଲାତି ଖୁବ୍ ବଢିଲା ଏବଂ ହାଇକୋର୍ଟ ଓକିଲଙ୍କ ଭିତରେ ସେ ଜଣେ ନାମଜାଦା ଲୋକ ହୋଇ ଉଠିଲେ । ଏଥି ଭିତରେ ମୋର ପିତା କାନପୁର ଓ ଏଲାହାବାଦରେ ସ୍କୁଲ ଏବଂ କଲେଜରେ ପଢୁଥାଆନ୍ତି । ପିଲାଦିନେ ସେ କେବଳ ପାର୍ସି ଓ ଆରବୀ ଭାଷା ଶିଖିଥିଲେ । ତାଙ୍କର ୧୯ ବର୍ଷ ବୟସବେଳକୁ ସେ ଇଂରାଜୀ ଶିକ୍ଷା ଆରମ୍ଭ କଲେ । ସେ କାଳରେ ପାର୍ସି ଭାଷାରେ ଜଣେ ପଣ୍ଡିତ ରୂପେ ସେ ଗଣ୍ୟ ହେଉଥିଲେ ଏବଂ କିଛି ଆରବୀ ଭାଷା ବି ଜାଣିଥିଲେ । ଏହି ଜ୍ଞାନ ଯୋଗୁଁ ତାଙ୍କଠାରୁ ବୟୋଧିକ ଲୋକ ସୁଦ୍ଧା ତାଙ୍କୁ ସମ୍ମାନ ଦେଖାଉଥିଲେ । ଅତି ଅଳ୍ପ ବୟସରୁ ପଣ୍ଡିତ ହୋଇଥିଲେ ସୁଦ୍ଧା ସ୍କୁଲ କଲେଜରେ ପଢ଼ିଲାବେଳେ ବି ସେ ଭଲ ପୋଷାକ ପିନ୍ଧୁଥିଲେ ଓ ବଗୁଲିଆ ପ୍ରକୃତିର ଥିଲେ । ସେ ତ ଆଦର୍ଶ ଛାତ୍ର ଆଦୌ ନ ଥିଲେ ଏବଂ ପଢ଼ା ଛଡ଼ା ଖେଳ ଓ ନୂଆ ନୂଆ ଦୁଃସାହସିକ କାର୍ଯ୍ୟ କରିବାରେ ବେଶି ଆଗ୍ରହ ଦେଖାଉଥିଲେ । କଲେଜରେ ଦୁଷ୍ଟ ପିଲାମାନଙ୍କର ଜଣେ ନେତାରୂପେ ସେ ପରିଚିତ ଥିଲେ । ସେ ପାଶ୍ଚାତ୍ୟ ପୋଷାକ ଓ ଅନ୍ୟାନ୍ୟ ପାଶ୍ଚାତ୍ୟ ଚାଲିଚଳନ ପ୍ରତି ଆକୃଷ୍ଟ ହୋଇଥିଲେ । ସେତେବେଳେ କଲିକତା ଓ ବମ୍ବେ ପରି ବଡ଼ ବଡ଼ ସହର ଛଡ଼ା ଅନ୍ୟ ସ୍ଥାନରେ ଭାରତୀୟମାନଙ୍କ ପକ୍ଷରେ ଏହା କରିବା ପ୍ରାୟ ଦେଖାଯାଉ ନ ଥିଲା । ତାଙ୍କର ଆଚରଣ ବ୍ୟବହାର ଟିକିଏ ରୁଢ଼ ହୋଇଥିଲେ ସୁଦ୍ଧା ତାଙ୍କର ଇଂରେଜୀ ଅଧ୍ୟାପକମାନେ ତାଙ୍କୁ ଭଲ ପାଉଥିଲେ ଏବଂ ଅନେକ ସମୟରେ ତାଙ୍କୁ ବିପଦରୁ ରକ୍ଷା କରିଛନ୍ତି । ସେମାନେ ତାଙ୍କ ସ୍ପିରିଟକୁ ପସନ୍ଦ କରୁ-

ଥିଲେ । ସେ ବିଚକ୍ଷଣ ଥିଲେ ଏବଂ ଖୁବ୍ ଅଳ୍ପ ସମୟ ପଢ଼ିସୁଦ୍ଧା କ୍ଲାସରେ ଖୁବ୍ ଭଲ କରି ପାରୁଥିଲେ । ପରେ ଅନେକ ବର୍ଷପରେ, ସେ ଥରେ ଅତି ସ୍ନେହରେ ତାଙ୍କର ଜଣେ ଅଧ୍ୟାପକ ଏଲ୍‌ହାବାଦର ମ୍ୟୁର ସେଣ୍ଟ୍ରାଲ କଲେଜର ପ୍ରିନ୍‌ସିପାଲ ମିଷ୍ଟର ହ୍ୟାରିସନଙ୍କ କଥା କହୁଥିଲେ । ସେହି ପୁରୁଣା ଛାତ୍ର ସମୟରୁ ହ୍ୟାରିସନ୍‌ଙ୍କର ଖଣ୍ଡେ ଚିଠି ସେ ଅତି ଯତ୍ନରେ ସାଇତି ରଖିଥିଲେ ।

କୌଣସି ବିଶେଷ କୃତିତ୍ୱ ନ ଦେଖାଇ ସେ ବିଶ୍ୱବିଦ୍ୟାଳୟର ଅନେକ ପରୀକ୍ଷାରେ ପାସ କରିଥିଲେ ଏବଂ ଶେଷରେ ଫାଇନାଲ ବି. ଏ. ପରୀକ୍ଷା ଦେଲେ । ଏଥିପାଇଁ ସେ ବିଶେଷ କଷ୍ଟ କି ପରିଶ୍ରମ କରି ନ ଥିଲେ । ପ୍ରଥମ ଦିନ ପରୀକ୍ଷାରେ ସେ ଯାହା କରିଥିଲେ, ସେଥିରେ ନିଜେ ମଧ୍ୟ ଖୁବ୍ ଅସନ୍ତୁଷ୍ଟ ହୋଇଥିଲେ । ପ୍ରଥମ ଦିନ ପରୀକ୍ଷାରେ ଖରାପ କରିଥିବାରୁ ପାସ୍ କରିବେ ନାହିଁ ବୋଲି ଭାବି ସେ ଆଉ ପରୀକ୍ଷା ନଦେଇ ତାଜମହଲରେ କାଳ କଟାଇଲେ । [ସେତେବେଳେ ବିଶ୍ୱବିଦ୍ୟାଳୟ ପରୀକ୍ଷା ଆଗ୍ରାରେ ହେଉଥିଲା ।] ତା' ପରେ ତାଙ୍କ ଅଧ୍ୟାପକ ତାଙ୍କୁ ଡକାଇ ପଠାଇଲେ ଏବଂ ସେ [ମୋ ପିତା] ପ୍ରଥମ ଦିନ ଭଲ କରିଛନ୍ତି ଓ ନିର୍ବୋଧ ପରି ଅନ୍ୟ ଦିନ ପରୀକ୍ଷା ନ ଦେଇଥିବାରୁ ତାଙ୍କ ଉପରେ ରାଗୁଥିଲେ । ଯାହା ହେଉ ଏହିରୂପେ ମୋ ପିତାଙ୍କର ବିଶ୍ୱବିଦ୍ୟାଳୟ ପଢ଼ା ଶେଷ ହେଲା । ସେ ଗ୍ରାଜୁଏଟ୍ ହୋଇ ପାରି ନ ଥିଲେ ।

ଜୀବନରେ ଗୋଟାଏ କାର୍ଯ୍ୟ କରିବାକୁ ଏବଂ କୌଣସି ବ୍ୟବସାୟରେ ପଶିବାକୁ ସେ ବ୍ୟଗ୍ର ଥିଲେ । ସୁତରାଂ ସେ ଓକିଲାତି ପ୍ରତି ନଜର ଦେଲେ । କାରଣ ସେତେବେଳେ ଭାରତରେ ନିଜର ବୁଦ୍ଧିମତ୍ତାର ପରିଚୟ ଦେବା ନିମନ୍ତେ ଏବଂ କୃତିତ୍ୱ ଲଭିବା ନିମନ୍ତେ ଓକିଲାତି ହିଁ ଏକମାତ୍ର ବ୍ୟବସାୟ ଥିଲା । ତାଙ୍କ ଆଗରେ ବି ତାଙ୍କ ଭାଇଙ୍କ ଉଦାହରଣ ଥାଏ । ସେ ହାଇକୋର୍ଟ ଓକିଲି ପରୀକ୍ଷା ଦେଲେ । ସେଥିରେ ଯେ ଖାଲି ପାସ୍ କଲେ ତାହା ନୁହେଁ; ସମସ୍ତଙ୍କ ମଧ୍ୟରେ

ପ୍ରଥମ ହେଲେ ଓ ସ୍ୱର୍ଣ୍ଣ ପଦକ ପାଇଲେ । ଏହି ବ୍ୟବସାୟହିଁ ତାଙ୍କ ମନକୁ ପାଇଥିଲା । ନିଜେ ଯେଉଁ ବ୍ୟବସାୟ ବାଛି ନେଇଛନ୍ତି, ସେଥିରେ କୃତିତ୍ୱ ଅର୍ଜ୍ଜନ କରିବାଲାଗି ସେ ଲାଗି ପଡ଼ିଥିଲେ ।

ସେ କାନପୁରର ଜିଲ୍ଲା କଚେରୀମାନଙ୍କରେ ଓକିଲାତି ଆରମ୍ଭ କଲେ, କୃତିତ୍ୱ ଅର୍ଜ୍ଜନ କରିବା ନିମନ୍ତେ ବ୍ୟଗ୍ର ଥିବାରୁ କଠିନ ଅଧ୍ୟବସାୟ କଲେ ଏବଂ ଖୁବ୍ ଶୀଘ୍ର ନାମ ହେଲା । କ୍ରୀଡ଼ା ଖେଳ, ଅନ୍ୟ ଆମୋଦ-ପ୍ରମୋଦ ଓ ଆଉସବୁ କାମ ପ୍ରତି ଆଦର ଥିବାରୁ ସେ କେତେକ ସମୟ ସେଥିରେ ବି କଟାଉଥିଲେ । ବିଶେଷ ଭାବରେ ମଲ୍ଲଯୁଦ୍ଧ ଓ ଜଙ୍ଗଲ ଶିକାରରେ ସେ ବେଶି ଆଗ୍ରହୀ ଥିଲେ । ସେକାଳରେ ସାଧାରଣରେ ମଲ୍ଲଯୁଦ୍ଧ କରିବାରେ କାନପୁର ପ୍ରସିଦ୍ଧ ଥିଲା ।

ତିନି ବର୍ଷ ପର୍ଯ୍ୟନ୍ତ କାନପୁରରେ କାର୍ଯ୍ୟ କଲାପରେ ମୋର ପିତା ହାଇକୋର୍ଟରେ କାର୍ଯ୍ୟ କରିବା ନିମନ୍ତେ ଏଲାହାବାଦ ଆସିଥିଲେ । ଏହାର ଅଳ୍ପଦିନ ପରେ ତାଙ୍କ ଭାଇ ପଣ୍ଡିତ ନନ୍ଦଲାଲଙ୍କର ହଠାତ୍ ମୃତ୍ୟୁ ହୋଇଗଲା । ଏହା ମୋ ପିତାଙ୍କ ମନରେ ଖୁବ୍ କଷ୍ଟ ଦେଇଥିଲା । ତାଙ୍କର ଯେଉଁ ଭାଇଙ୍କୁ ସେ ପ୍ରାୟ ବାପପରି ମଣୁଥିଲେ, ତାଙ୍କୁ ହରାଇଲେ । ପରିବାରର ମୁରବୀ ଓ ପ୍ରଧାନ ରୋଜଗାରୀ ଲୋକ ଗୁଲିଗଲେ । ସେହି ଦିନଠାରୁ ଏଡ଼େ ବଡ଼ ପରିବାରର ବୋଝ ତାଙ୍କପରି ଯୁବକଙ୍କ ଉପରେ ପଡ଼ିଲା ।

ସେ ତାଙ୍କ କାର୍ଯ୍ୟରେ ନିମଗ୍ନ ହେଲେ, କୃତିତ୍ୱ ପାଇବା ନିମନ୍ତେ ଲାଗି ପଡ଼ିଲେ ଏବଂ ଅନେକ ମାସ ପର୍ଯ୍ୟନ୍ତ ଅନ୍ୟ ସବୁଥିରୁ ନିଜକୁ ଅଲଗା ରଖିଲେ । ଭାଇଙ୍କର ପ୍ରାୟ ସମସ୍ତ ମକଦ୍ଦମା ତାଙ୍କ ପାଖକୁ ଆସିଲା ଏବଂ ସେ ଖୁବ୍ ଭଲ କରିବାରୁ ବ୍ୟବସାୟରେ ସେ ଯେଉଁ କୃତିତ୍ୱ ଆଶା କରୁଥିଲେ, ତାହା ଶୀଘ୍ର ଲାଭ କଲେ । ସେଥିରେ ତାଙ୍କର ଧନ ରୋଜଗାର ହେଲା ଓ ଅଧିକା କାମ ବି ତାଙ୍କ ହାତକୁ ଆସିଲା । ଅତି ଅଳ୍ପ ବୟସରେ ସେ ଜଣେ ଭଲ ଓକିଲରୂପେ

ନାମ କଲେ । ଏଥିଲାଗି ସେ ଦିନକୁ ଦିନ ଓକିଲାତି ବ୍ୟବସାୟର ଦାସ ହୋଇଗଲେ ! କୌଣସି ପ୍ରକାର ସାଧାରଣ ବା ବ୍ୟକ୍ତିଗତ କାର୍ଯ୍ୟଲାଗି ତାଙ୍କର ଅବସର ନ ଥିଲା । ଏପରି କି ତାଙ୍କର ଛୁଟିଦିନ ସବୁ ଆଇନ ବ୍ୟବସାୟରେ ଲଗାଇବାକୁ ହେଲା । ସେତେବେଳେ ଜାତୀୟ କଂଗ୍ରେସ ଇଂରେଜୀ ପଢ଼ୁଆ ମଧ୍ୟବିତ୍ତ ଶ୍ରେଣୀଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ସେ କେତେକ ଅଧିବେଶନରେ ଯୋଗ ଦେଇଥିଲେ ଏବଂ କଂଗ୍ରେସ ପ୍ରତି ତାଙ୍କର ମାନସିକ ଶ୍ରଦ୍ଧା ମାତ୍ର ଅର୍ପଣ କରିଥିଲେ । ମାତ୍ର କଂଗ୍ରେସର ସେତେବେଳର କାର୍ଯ୍ୟକଳାପରେ ସେ ସେପରି ଆଗ୍ରହ ଦେଖାଉ ନ ଥିଲେ । ସେ ନିଜ ବ୍ୟବସାୟରେ ଅତ୍ୟନ୍ତ ବ୍ୟସ୍ତ ଥିଲେ । ଏହା ଛଡ଼ା ରାଜନୀତି ଓ ସାଧାରଣ କାର୍ଯ୍ୟରେ ଅନିଶ୍ଚିତତା ହିଁ ବାରି ସେ ଦେଖି ପାରୁଥିଲେ । ସେତେବେଳ ପର୍ଯ୍ୟନ୍ତ ଏସବୁ ବିଷୟ ପ୍ରତି ସେ ବିଶେଷ ଦୃଷ୍ଟି ଦେଉ ନ ଥିଲେ ଏବଂ ଏ ସମ୍ବନ୍ଧରେ ପ୍ରାୟ କିଛି ଜାଣି ନ ଥିଲେ । ଯେଉଁ ଆନ୍ଦୋଳନ ବା ଅନୁଷ୍ଠାନରେ ସେ ଅଧସ୍ତନରୂପେ ରହିବେ, ସେଥିରେ ଯୋଗଦେବା ଲାଗି ତାଙ୍କର ଇଚ୍ଛା ବା ଆଗ୍ରହ ନ ଥିଲା । ତାଙ୍କର ବାଲ୍ୟ ଓ ଯୁବାବସ୍ଥାର ଉଗ୍ର ମନୋଭାବ ବାହାରେ ଭାଙ୍ଗି ଯାଇଥିଲେ ମଧ୍ୟ ଏହା ଆଉ ଏକ ଆଡ଼େ ଗତି କରିଥିଲା । କ୍ଷମତା ପାଇବାକୁ ତାଙ୍କର ପ୍ରବଳ ଇଚ୍ଛା ହୋଇଥିଲା । ନିଜ ବ୍ୟବସାୟରେ ଲାଗିରହି ସେ କୃତିତ୍ୱ ଲାଭ କରିବା ସଙ୍ଗେ ସଙ୍ଗେ ତାଙ୍କର ଆତ୍ମାଭିମାନ ଓ ଆତ୍ମବିଶ୍ୱାସ ବୃଦ୍ଧି ପାଇଲା । ସେ ଲଢ଼ାଇ କରିବାକୁ, ବାଧା ଓ ବିପତ୍ତି ଭିତରେ ସଂଗ୍ରାମ କରିବାକୁ ଭଲ ପାଉଥିଲେ । ଅଥଚ ଆଶ୍ଚର୍ଯ୍ୟ କଥା ଯେ, ସେ ସମୟରେ ସେ ରାଜନୀତି କ୍ଷେତ୍ରରୁ ଅଲଗା ରହିଥିଲେ । ଏକଥା ସତ୍ୟ ଯେ, ସେ-କାଳରେ ଜାତୀୟ କଂଗ୍ରେସର ରାଜନୀତିରେ ବିଶେଷ କିଛି ବିବାଦ ବିସମ୍ବାଦ ନଥିଲା । ଯାହା ହେଉ, ଏ ବାଟ ତାଙ୍କୁ ଅଜଣା ଥିଲା ଏବଂ ତାଙ୍କ ବ୍ୟବସାୟରେ କଠିନ ପରିଶ୍ରମ କରି ସେ ସେଥିରେ ମଗ୍ନ ରହିଥିଲେ । ସେ କୃତିତ୍ୱ ଅର୍ଜିବା ନିମନ୍ତେ ଯେ ସିଡ଼ି ଧରିଥିଲେ, ପାହାଚ ପାହାଚ ହୋଇ ସେଇଥିରେ ଉପରକୁ ଉଠିଲେ । ସେ ଅନୁଭବ କଲେ

ଯେ, ତାହାର ଅନୁଗ୍ରହରେ ନୁହେଁ; ତାହାର ଗୃହଶିକ୍ଷା ବଳ ନୁହେଁ, ମାତ୍ର ନିଜର ମନବଳ ଓ ଉଦ୍ୟମଶୀଳତାରେ ସେ ଉନ୍ନତି ଲଭିଛନ୍ତି ।

କାର୍ଯ୍ୟବାଦୀ କହାଗଲେ ଯେଉଁ ଅର୍ଥକୁ ଅର୍ଥ ଆମେ ବୁଝୁ, ମୋତିଲାଲ ସେ ଜଣେ କାର୍ଯ୍ୟବାଦୀ ଲୋକ ଥିଲେ; କିନ୍ତୁ ସେ ଇଂରେଜ ଲୋକଙ୍କୁ ଓ ସେମାନଙ୍କ ରାଜ୍ୟଶାସନକୁ ପ୍ରଶଂସା କରୁଥିଲେ। ତାଙ୍କର ଗୋଟାଏ ଧାରଣା ହୋଇଥିଲା ଯେ, ତାଙ୍କ ନିଜ ଦେଶ ଲୋକେ ତଳେ ପଡ଼ିଛନ୍ତି ଓ ସେମାନେ ଯାହା ପାଇବାର ଯୋଗ୍ୟ ତାହା ଠିକ୍ ଅଧିକେ ପାଉଛନ୍ତି । ଯେଉଁ ରାଜନୀତିକମାନେ କିଛି ନ କରି କେବଳ ବକ୍ତୃତା ଉପରେ ବକ୍ତୃତା ଦେଉଥିଲେ; ସେମାନଙ୍କ ପ୍ରତି ତାଙ୍କର ଗୋଟାଏ ପ୍ରକାର ଘୃଣା ଥିଲା । ଅବଶ୍ୟ ସେମାନେ କ'ଣ କରିବା ଉଚିତ୍; ସେ ବିଷୟରେ ତାଙ୍କର [ପିତାଙ୍କର] ନିର୍ଦ୍ଦିଷ୍ଟ ଧାରଣା ନ ଥିଲା । ନିଜର କୃତିତ୍ୱଜନିତ ଅହଂକାର ହେତୁ ତାଙ୍କର ମନରେ ଧାରଣା ଥିଲା ଯେ, ସମସ୍ତେ ନ ହେଲେ ମଧ୍ୟ ଯେଉଁମାନେ ରାଜନୀତିରେ ପଶିଛନ୍ତି; ସେମାନଙ୍କ ଭିତରୁ ଅନେକ ଜୀବନରେ ବିଫଳ ହୋଇଛନ୍ତି ।

ଆୟ କ୍ରମେ ବଢ଼ୁଥିବା ହେତୁରୁ ଆମର ଚଳିବାର ଢଙ୍ଗଢାଙ୍ଗ ବି ଅନେକ ବଦଳିଗଲା । କାରଣ ଅର୍ଥ ବଢ଼ିବା ଅର୍ଥ ହେଉଛି ଖର୍ଚ୍ଚ ବି ବଢ଼ିବ । ମୋ ପିତା ଯେତେବେଳେ ଓ ଯେତେ ଉନ୍ନତି କରୁଥିଲେ, ସେତେ ରୋଜଗାର କରି ପାରୁଥିବାବେଳେ ଧନ ସଞ୍ଚୟ କରି ରଖିବା ପ୍ରବୃତ୍ତିକୁ ଘୃଣା କରୁଥିଲେ । ଖେଳ କୌତୁକର ମନୋଭାବ ହେତୁ ଏବଂ ସବୁ ସମୟରେ ଭଲ ଭାବରେ ଚଳିବାକୁ ଭଲ ପାଉଥିବାରୁ ସେ ଯାହା ରୋଜଗାର କରୁଥିଲେ, ତାକୁ ଅକାତରେ ଖର୍ଚ୍ଚ କରି ଯାଉଥିଲେ । କ୍ରମେ ଆମର ଗୃହଚାଳଣି ପାଶ୍ଚାତ୍ୟ ଧରଣର ହୋଇଗଲା । ମୋର ପିଲାବେଳେ ଆମ ଘର ଏଇପରି ଥିଲା * ।

---

* ଖ୍ରୀ: ୧୮୮୯ ମସିହା ନଭେମ୍ବର ୧୪ ତାରିଖରେ ଜନ୍ମ ହୋଇଥିଲେ ।

# ବାଲ୍ୟାବସ୍ଥା

ମୋ ବାଲ୍ୟାବସ୍ଥାରେ ସେପରି କିଛି ଉଲ୍ଲେଖଯୋଗ୍ୟ ଘଟଣା ଘଟି ନ ଥିଲା । ମୋ ଅନ୍ୟ ଭାଇମାନେ ଯେଉଁ ସବୁ ବିଷୟରେ କଥାବାର୍ତ୍ତା ହେଉଥିଲେ, ମୁଁ ତାହା ସବୁବେଳେ ବୁଝି ନ ପାରୁଥିଲେ ସୁଦ୍ଧା ଶୁଣୁଥିଲି । ଅନେକ ସମୟରେ କିପରି ଇଂରେଜ ଓ ଇଉରେସିଆନ୍‌ମାନେ ନିଜର ବଡ଼ପଣିଆ ଦେଖାଇ ଭାରତୀୟମାନଙ୍କ ପ୍ରତି ଅପମାନଜନକ ବ୍ୟବହାର କରୁଥିଲେ ଏବଂ ପ୍ରତ୍ୟେକ ଭାରତୀୟ କିପରି ଏହା ବିରୁଦ୍ଧରେ ଉଠିବା କର୍ତ୍ତବ୍ୟ ଏବଂ ଏହାକୁ ସହ୍ୟ ନ କରିବା ଉଚିତ ଏହି ସମ୍ବନ୍ଧରେ ବେଳେ ବେଳେ କଥାବାର୍ତ୍ତା ହେଉଥିଲେ । ଶାସକ ଓ ଶାସିତଙ୍କ ଭିତରେ ବିବାଦର ଦୃଷ୍ଟାନ୍ତ ସେମାନେ ଦେଉଥିଲେ ଏବଂ ସେ ସମ୍ବନ୍ଧରେ ଉନ୍ମୁକ୍ତରୂପେ ଆଲୋଚନା କରୁଥିଲେ । କୌଣସି ଇଂରେଜ ଜଣେ ଭାରତୀୟଙ୍କୁ ମାରି ପକାଇଲେ ସେ କିପରି ବରାବର ତାଙ୍କ ନିଜ ଜାତିର ଲୋକଙ୍କୁ ନେଇ ଗଠିତ ବିଚାରକମାନଙ୍କଦ୍ୱାରା ଖଲାସ ହୋଇ ଯାଉଥିଲା, ଏହା ବଡ଼ ମନ୍ଦ କଥା ବୋଲି ସେମାନେ ଆଲୋଚନା କରୁଥିଲେ । ରେଳଗାଡ଼ି ଡବା ସବୁ ଇଉରୋପୀୟମାନଙ୍କ ପାଇଁ ସ୍ୱତନ୍ତ୍ର ହୋଇ ରଖା ଯାଉଥିଲା । ରେଳଗାଡ଼ିରେ ପ୍ରାୟ ଭୀଷଣ ଭିଡ଼ ହୁଏ । ଯେତେ ଭିଡ଼ ହେଉ ପଛକେ, ଅନେକ ସ୍ଥାନରେ ସେଗୁଡ଼ିକ ଖାଲି ଥିଲେ ସୁଦ୍ଧା କୌଣସି ଭାରତୀୟଙ୍କୁ ସେ ଡବାରେ ପଶିବାକୁ ଦିଆଯାଉ ନ ଥିଲା । ଏପରି କି ରିଜର୍ଭ ହୋଇ ଥିବା ଡବାକୁ ଇଂରେଜ ଲୋକ ଆସି ଦଖଲ କରି ନେଉଥିଲେ ଏବଂ କୌଣସି ଭାରତୀୟଙ୍କୁ ସେଥି ଭିତରକୁ ଛାଡ଼ୁ ନ ଥିଲେ । ସାଧାରଣ ପାର୍କ ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ବେଞ୍ଚ ଓ ଚଉକି ଇଉରୋପୀୟଙ୍କ ପାଇଁ ରିଜର୍ଭ ରହୁଥିଲା । ଆମ ଦେଶର ବିଦେଶୀ ଶାସକମାନଙ୍କର ଏହି ଅବାଧ ବ୍ୟବହାର ଯୋଗୁଁ ମୋ ମନରେ ସେମାନଙ୍କ ପ୍ରତି ଘୃଣା ଜନ୍ମିଥିଲା ଏବଂ କୌଣସି ଭାରତୀୟ ଓଲଟି ମାଡ଼

ଦେବାର ଦେଖିଲେ ମୁଁ ଖୁବ୍ ଖୁସି ହେଉଥିଲି । ଏହିପରି ବ୍ୟକ୍ତିଗତ ସଂଘର୍ଷରେ ମୋର ଭାଇମାନେ କିମ୍ବା ସେମାନଙ୍କର ବନ୍ଧୁ ଯେ ଅନେକ ସମୟରେ ନ ପଡ଼ନ୍ତି, ତାହା ନୁହେଁ । ସେପରି ଘଟଣା ଘଟିଲେ ଆମେ ସବୁ ସେଥିରେ ଖୁବ୍ ଉତ୍ତେଜିତ ହୋଇଯାଉଁ । ଆମର ଜଣେ ଭାଇ ଆମ ପରିବାର ଭିତରେ ଖୁବ୍ ମଜବୁତ୍ ଲୋକ ଥିଲେ । ସେ କୌଣସି ଇଂରେଜ କିମ୍ବା ଅନେକ ସମୟରେ ଇଉରେସିଆନ୍ଙ୍କ ସହିତ ଧକାଆ କରିବାକୁ ଭଲ ପାଉଥିଲେ । ଇଉରେସିଆନ୍ମାନେ ଶାସକ ଜାତିଙ୍କ ସହିତ ନିଜର ଏକତ୍ୱ ଦେଖାଇ ହେବା ନିମନ୍ତେ ଅନେକ ସମୟରେ ଭାରତୀୟମାନଙ୍କ ପ୍ରତି ଯେପରି ବ୍ୟବହାର କରନ୍ତି, ତାହା ଯେ କୌଣସି ଇଂରେଜ ବଣିକ ବା କର୍ମଚାରୀଙ୍କ ବ୍ୟବହାର ଅପେକ୍ଷା ଅଧିକତର ଅପମାନଜନକ । ରେଳଯାତ୍ରାରେ ବିଶେଷ ଭାବରେ ଏପରି କଳହ ଘଟେ ।

ବିଦେଶୀ ଶାସକଙ୍କର ଉପସ୍ଥିତି ଓ ଆଚରଣକୁ ମୁଁ ଖୁବ୍ ଅବଜ୍ଞା ଦୃଷ୍ଟିରେ ଦେଖୁଥିଲେ ସୁଦ୍ଧା ମୋର ଯେତେଦୂର ମନେ ଅଛି, କୌଣସି ଇଂରେଜ ବ୍ୟକ୍ତିବିଶେଷ ପ୍ରତି ମୋର କୌଣସି ବିଦ୍ୱେଷ ଭାବ ନ ଥିଲା । ମୋର ଶିକ୍ଷୟିତ୍ରୀ ଇଂରେଜ ଥିଲେ ଏବଂ ସମୟ ସମୟରେ ମୋ ପିତାଙ୍କର ଇଂରେଜ ବନ୍ଧୁମାନେ ତାଙ୍କ ସହିତ ସାକ୍ଷାତ କରିବାକୁ ଆସନ୍ତି, ମୁଁ ସେମାନଙ୍କୁ ଦେଖୁଥିଲି । ମନେ ମନେ ମୁଁ ବରଂ ଇଂରେଜ ଲୋକଙ୍କୁ ପ୍ରଶଂସା କରୁଥିଲି ।

ସାଧାରଣତଃ ସନ୍ଧ୍ୟାବେଳେ ଅନେକ ବନ୍ଧୁ ବାପାଙ୍କ ପାଖକୁ ଆସନ୍ତି । ସେ ଦିନଯାକର ଖଟଣି ପରେ ଟିକିଏ ଆମୋଦ ଆଳାପ କରନ୍ତି ଏବଂ ତାଙ୍କର ହାସ୍ୟରୋଳରେ ଘର ପ୍ରତିଧ୍ୱନିତ ହୁଏ । ଏଲାହାବାଦରେ ତାଙ୍କ ହସ ବିଖ୍ୟାତ ହୋଇଥିଲା । ବେଳେ ବେଳେ ବଡ଼ ବଡ଼ ଲୋକ ସବୁ ନିଜ ନିଜ ଭିତରେ କ'ଣ କଥାବାର୍ତ୍ତା ହେଉଛନ୍ତି ଜାଣିବା ଲାଗି ଚେଷ୍ଟା କରି ମୁଁ ମୋ ବାପା ଓ ତାଙ୍କ ବନ୍ଧୁମାନଙ୍କୁ ଆଡ଼ ଆଳରେ ଲୁଚି ରହି ଦେଖେଁ । ମୁଁ ଯଦି କେତେବେଳେ ଧରା

ପଡ଼ୁଥାଏ, ତେବେ ସେମାନେ ମୋତେ ଚାହିଁଆନ୍ତି ଏବଂ ମୋତେ ଉଠି ମର କାନ୍ଦଣ ଲାଗି ବାପାଙ୍କ କୋଳରେ ବସିବାକୁ ପଡ଼େ । ଥରେ ସେ କ୍ଲାରେଟ ବା ଅନ୍ୟ କୌଣସି ଲାଲ୍ ମଦ ପିଉଥିବାର ମୁଁ ଦେଖିଲି । ହୁଇସ୍କି (ମଦ) ମୁଁ ଜାଣିଥିଲି । ସେ ଓ ତାଙ୍କ ବନ୍ଧୁମାନେ ଅନେକ ସମୟରେ ତାହା ପିଉଥିବାର ମୁଁ ଦେଖିଥିଲି । ମାତ୍ର ନୂଆ ରଙ୍ଗର ଜିନିଷ ଦେଖି ମୁଁ ଡରିଗଲି ଏବଂ ବାପା ରକ୍ତ ପିଉଛନ୍ତି ବୋଲି ଜଣା-ଦେବାକୁ ମାଆଙ୍କ ପାଖକୁ ଦୌଡ଼ି ଯାଇଥିଲି ।

ମୁଁ ବାପାଙ୍କୁ ଖୁବ୍ ପ୍ରଶଂସା କରୁଥିଲି । ମୁଁ ଯେତେ ଲୋକ ଦେଖିଥିଲି, ସମସ୍ତଙ୍କ ଅପେକ୍ଷା ସେ ଅଧିକ ସାହସୀ, ବଳବାନ୍ ଓ ଚତୁର ବୋଲି ମୋତେ ବୋଧ ହେଉଥିଲେ ଏବଂ ମନେ ମନେ କାମନା କରୁଥିଲି ଯେ, ମୁଁ ବଡ଼ ହେଲେ ବାପାଙ୍କ ପରି ହେବି । ମାତ୍ର ମୁଁ ତାଙ୍କୁ ଯେତେ ଭଲ ପାଉଥିଲି ଓ ପ୍ରଶଂସା କରୁଥିଲି, ସେତିକି ଡରୁଥିଲି ମଧ୍ୟ । ଚାକର ଓ ଅନ୍ୟ-ମାନଙ୍କ ଉପରେ ସେ ରାଗିବାର ମୁଁ ଦେଖେଁ ଏବଂ ସେତେବେଳେ ସେ ମୋତେ ଆହୁରି ଭୟଙ୍କର ଜଣା ଯାଆନ୍ତି । ଚାକରବାକରଙ୍କ ପ୍ରତି ରୁକ୍ଷ ବ୍ୟବହାର ଯୋଗୁଁ ବେଳେ ବେଳେ ଘୃଣା ଆସୁଥିଲେ ସୁଦ୍ଧା ମୁଁ ଭୟରେ ଥରୁଥିଲି । ତାଙ୍କର କ୍ରୋଧ ଅଦ୍ଭୁତ ରକମର ଥିଲା; ମାତ୍ର ପର ଜୀବନରେ ସେପରି ଜୋରରେ ରାଗିବାର ମୁଁ ତାଙ୍କୁ ଦେଖି ନାହିଁ । ମାତ୍ର ସୌଭାଗ୍ୟର କଥା ଯେ, ତାଙ୍କର ଉପହାସ କରିବାର ମନୋଭାବ ଓ ଲୁହାପରି ଟାଣ ମନ ବି ଥିଲା ଏବଂ ନିୟମ କରି ସେ ଆୟତ୍ତରେ ରଖି ପାରୁଥିଲେ । ମୋ ବଡ଼ ହେବା ସଙ୍ଗେ ସଙ୍ଗେ ତାଙ୍କର ଏହି ସଂଯମ ଶକ୍ତି ବୃଦ୍ଧି ପାଇଲା ଏବଂ ତାଙ୍କର ଆଗର କ୍ରୋଧ ଖୁବ୍ କମ୍ ମାତ୍ରାରେ ଦେଖା ଯାଉଥିଲା ।

ପିଲାବେଳ ସ୍ମୃତି ଭିତରୁ ତାଙ୍କର ଏହି କ୍ରୋଧ କଥା ମୋର ମନେ ଅଛି; କାରଣ ମୁଁ ଥରେ ଏହାର ଶିକାର ହୋଇଥିଲି । ସେତେବେଳେ ମୋର ବୟସ ପାଞ୍ଚ ବା ଛଅ ହୋଇଥିବ । ଦିନେ ତାଙ୍କ ଅଫିସ୍

ଟେବୁଲ ଉପରେ ମୁଁ ଗୋଟିଏ ଫାଉଣ୍ଟେନ୍‌ପେନ୍ [ଝରଣା କଲମ] ମୁଁ ଦେଖି ମୋର ଲୋଭ ହେଲା । ବାପାଙ୍କର ଏମିତି ଅନେକ ଗୁଡ଼ିଏ କେବେହେଁ ଦରକାର ହେଉ ନ ଥିବ ବୋଲି ମୁଁ ମନେ ମନେ ସ୍ଥିର କରି ଠିକ୍ କଲି ଏବଂ ସେଥିରୁ ଗୋଟିଏ ନେଇ ଆସିଲି । ପରେ ଦେଖିଲି ଯେ, ସେହି ଲୁଚିଥିବା କଲମ ଲାଗି ଖୁବ୍ ଖୋଜା ଲାଗିଛି । ମୁଁ ଯାହା କରିଥିଲି ସେଥିଲାଗି ମୁଁ ଦୁଃଖ ହେଲି, ମାତ୍ର ମୋ ପାଖରେ ଅଛି ବୋଲି ମୁଁ ସ୍ୱୀକାର କରି ନ ଥିଲି । କଲମଟି ବାହାରିଲା ଓ ମୋର ଦୋଷ ଜଣାଆଡ଼େ ଜଣା ପଡ଼ିଗଲା । ବାପା ଖୁବ୍ ରାଗିଗଲେ ଏବଂ ମୋତେ କଷଣ ପ୍ରହାର କଲେ । ଅପମାନର ଯନ୍ତ୍ରଣା ଓ ଲଜ୍ଜାରେ ଅସ୍ଥିର ହୋଇ ମୁଁ ମାଆଙ୍କ ନିକଟକୁ ଦୌଡ଼ି ଗଲି । ଅନେକ ଦିନ ପର୍ଯ୍ୟନ୍ତ ମୋର ଦେହ ଦରଜ ହୋଇଥିବା ସ୍ଥାନରେ ଅନେକ ପ୍ରକାର ମଲମ ମାଲିସ କରାଗଲା ।

ଏହି ଶାସ୍ତି ଯୋଗୁଁ ବାପାଙ୍କ ପ୍ରତି କୌଣସି ପ୍ରକାର ବିରାଗ ଭାବ ଜାତ ହୋଇଥିବାର ମୋର ମନେ ନାହିଁ । ମୋର ମନେ ହୁଏ, ମୁଁ ବୋଧହୁଏ ବୁଝିଥିଲି ଯେ, ମୋ ପ୍ରତି ଏ ଶାସ୍ତି ଠିକ୍ ହୋଇଛି । ଅବଶ୍ୟ ଟିକିଏ ବେଶୀ ହୋଇଗଲା । ତାଙ୍କ ପ୍ରତି ମୋର ପ୍ରଶଂସା ଓ ଆଦର ପୂର୍ବପରି ଦୃଢ଼ ରହିଥିଲେ ସୁଦ୍ଧା ତାହା ସହିତ ଭୟ ବି ମିଶିଥିଲା । ମାତ୍ର ମୁଁ ତାଙ୍କୁ ଭୟ କରୁ ନ ଥିଲି, କାରଣ ମୁଁ ଯାହା କଲେ ବି ସେ ମୋତେ କ୍ଷମା କରିଦେବେ ବୋଲି ମୋତେ ଜଣା ଥିଲା ଏବଂ ତାଙ୍କର ମୋ ପ୍ରତି ଅତ୍ୟନ୍ତ ଅନୁରାଗ ମମତା ଯୋଗୁଁ ମୁଁ ତାଙ୍କ ଉପରେ ଟିକିଏ କର୍ତ୍ତୃତ୍ୱ ବି କରୁଥିଲି । ମୁଁ ବାପାଙ୍କ ଅପେକ୍ଷା ମାଆଙ୍କୁ ଅଧିକ ଭଲକରି ଚିହ୍ନିଥିଲି । ସେ ଅଧିକ ଆପଣାର ମନେ ହେଉଥିଲେ ଏବଂ ବାପାଙ୍କୁ ବିଶ୍ୱାସ କରିବା ମୁଁ ସ୍ୱପ୍ନରେ ଭାବି ନ ପାରିଲେ ସୁଦ୍ଧା ମାଆଙ୍କୁ ପୂର୍ଣ୍ଣ ବିଶ୍ୱାସ କରୁଥିଲି । ସେ ଖୁବ୍ ଉଦାର ଓ ଶ୍ରେଷ୍ଠ । ମୁଁ ବଢ଼ି ଅଳ୍ପଦିନ ପରେ ତାଙ୍କ ସହ ଉଚ୍ଚା ହୋଇଗଲି ଏବଂ ତାଙ୍କ ସହିତ ସମାନ ହେଲାପରି ବୋଧ କଲି । ମୁଁ ତାଙ୍କ ସୌନ୍ଦର୍ଯ୍ୟକୁ ପ୍ରଶଂସା କଲି ଏବଂ ତାଙ୍କର ଅତି ଶ୍ରେଷ୍ଠ ଓ ସୁନ୍ଦର

ହାତଗୋଡ଼ସବୁ ମୋତେ ଭଲ ଲାଗୁଥିଲା । ସେ କାଶ୍ମୀରରୁ ଅଠେଣ୍ଡା-କୃତ ଅଲବଦନ ତଳେ ଆସିଥିବା ବଂଶର ପିଲା । ତାଙ୍କ ବଂଶର ଲୋକେ ମୋଟେ ଏଇ ପୁରୁଷ ପୂର୍ବରୁ ତାଙ୍କ ଦେଶ ଛାଡ଼ି ଆସିଥିଲେ ।

ମୋ ବାପାଙ୍କର ଜଣେ ମୁନସି—ମୁନସି ମୁବାରକ ଅଲିଙ୍କୁ ମଧ୍ୟ ମୁଁ ବିଶ୍ୱାସ କରୁଥିଲି । ନବାବଙ୍କର ଏକ ସମ୍ଭ୍ରାନ୍ତ ସମ୍ପନ୍ନ ପରିବାରରୁ ସେ ଆସିଥିଲେ । ୧୮୫୭ ସାଲ ବିଦ୍ରୋହରେ ତାଙ୍କର ପରିବାର ଧ୍ୱଂସ ପାଇଥିଲା ଓ ଇଂରେଜ ସୈନ୍ୟମାନେ ଆଂଶିକ ଭାବରେ ତାଙ୍କର ଧନ ସମ୍ପତ୍ତି ଲୁଟି କରିଥିଲେ । ଏହି ଦୁଃଖ ଯୋଗୁଁ ସେ ଖୁବ୍ ଶାନ୍ତଶିଷ୍ଟ ହୋଇଥିଲେ ଏବଂ ପ୍ରତ୍ୟେକ ଲୋକ ବିଶେଷତଃ ପିଲାଙ୍କ ପାଖରେ ଖୁବ୍ ମେଳାପି ଥିଲେ । ମୁଁ କୌଣସି ହରକତରେ ପଡ଼ିଥିଲାବେଳେ ବା ଦୁଃଖୀ ହୋଇଥିଲେ ତାଙ୍କ ପାଖରେ ଥିଲେ ମୋତେ ସ୍ୱର୍ଗ ପରି ମନେ ହେଉଥିଲା । ତାଙ୍କର ସୁନ୍ଦର ଧଳା ଦାଢ଼ୀ ହେତୁ ସେ ମୋର ପିଲା ଆଖିକୁ ଖୁବ୍ ଅନନ୍ତ କାଳର ଲୋକ ବୋଲି ଜଣା ଯାଉଥିଲେ ଓ ପୂର୍ବକାଳର ଅନେକ କଥା ଜାଣନ୍ତି ବୋଲି ମୁଁ ମନେ କରୁଥିଲି । ମୁଁ ତାଙ୍କ ପାଖକୁ ଯାଇ ଲାଗି ହୋଇ ବସି ଘଣ୍ଟା ଘଣ୍ଟା ଧରି ତାଙ୍କଠାରୁ ଅନେକ ଗପ ଶୁଣୁଥିଲି । ଆରବ୍ୟ କାହାଣୀ କିମ୍ବା ଅନ୍ୟ କେତେଗୁଡ଼ାଏ ପୁରୁଣା ଗପ କିମ୍ବା ୧୮୫୭ । ୧୮୫୮ ମସିହାର ଘଟଣା ସମ୍ବନ୍ଧ ବିବରଣୀ ମୁଁ କାନ ଡେରି ବସି ଶୁଣେ । ମୁଁ ଯଥେଷ୍ଟ ବଡ଼ ହେଲା ପରେ 'ମୁନସିଜୀ' ମଲେ । ତାଙ୍କର ସ୍ମୃତି ଏବେ ସୁଦ୍ଧା ମୋ ମନରେ ଅତ୍ୟନ୍ତ ମୂଲ୍ୟବାନ୍ ଓ ପ୍ରିୟବସ୍ତୁ ରୂପେ ରହିଛି ।

ମୁଁ ଆହୁରି ଅନେକ ଗପ ବି ଶୁଣୁଥିଲି । ପୁରୁଣା ହିନ୍ଦୁ ପୁରାଣ ରାମାୟଣ ଓ ମହାଭାରତ ଆଦିରୁ ମାଆ ଓ ପିଉସୀ ଆଦି ମୋତେ ଯେଉଁ-ସବୁ ଗପ କହନ୍ତି; ତାହା ଶୁଣେ । ମୋ ବଡ଼ମା [ଦେଚେଷ୍ଟି] ହେଉଛନ୍ତି ପଣ୍ଡିତ ନନ୍ଦଲାଲଙ୍କର ବିଧବା ସ୍ତ୍ରୀ । ସେ ଅନେକ ପୁରାତନ ହିନ୍ଦୁଶାସ୍ତ୍ର ଗ୍ରନ୍ଥରେ ବ୍ୟୁତ୍ପତ୍ତି ଥିଲେ ଏବଂ ଏହିସବୁ ଗପର ଅସରନ୍ତି ଭଣ୍ଡାର ତାଙ୍କଠି

ଥିଲି । ମୋର ମଧ୍ୟ ଭାରତୀୟ ପୁରାଣ ଓ ଗାଉଁଲି ଗପ ସବୁରେ ଖୁବ୍ ଲୀନ- ହୋଇ ଯାଉଥିଲି ।

ଧର୍ମ ସମ୍ବନ୍ଧରେ ମୋର ଅସ୍ପଷ୍ଟ ଧାରଣା ଥିଲି । ଏହା ସ୍ତ୍ରୀଲୋକମାନଙ୍କ କାର୍ଯ୍ୟ ପରି ବୋଧ ହେଉଥିଲା । ବାପା ଓ ମୋର ବଡ଼ ଭାଇମାନେ ଏହାକୁ ପରିହାସ କରୁଥିଲେ ଏବଂ କିଛି ଗୁରୁତ୍ୱ ଦେଉ ନ ଥିଲେ । ଆମ ପରିବାରର ସ୍ତ୍ରୀଲୋକମାନେ ଅନେକ ସମୟରେ ଭିନ୍ନ ଭିନ୍ନ ଉତ୍ସବ ଓ କେତେ ପୂଜା କରୁଥିଲେ । ମୁଁ ଆମ ପରିବାରର ବୟସ୍କ ଲୋକଙ୍କ ନୂତନ ଚାଲିଚଳନକୁ କେତେ ପରିମାଣରେ ଅନୁକରଣ କରୁଥିଲେ ମଧ୍ୟ- ଏହି ପୂଜା ଓ ଉତ୍ସବକୁ ବେଶ୍ ଉପଭୋଗ କରୁଥିଲି । ବେଳେ ବେଳେ ଗଙ୍ଗାରେ ବୁଡ଼ ଦେବାକୁ ମୁଁ ମୋର ମାଆ ବା ଜେଜେମାଙ୍କ ସଙ୍ଗେ ଯାଉଥିଲି । ଏଲାହାବାଦ, ବନାରସ ବା ଅନ୍ୟ ସ୍ଥାନରେ ମନ୍ଦିର ଦେଖିବାକୁ କିମ୍ବା ଭାରି ପୁଣ୍ୟବାନ୍ ବୋଲି ଖ୍ୟାତି ଲଭିଥିବା ସନ୍ନ୍ୟାସୀଙ୍କୁ ବେଳେ ବେଳେ ଦେଖିବାକୁ ଆମେ ସବୁ ଯାଉଥିଲୁଁ । ମାତ୍ର ଏସବୁ ମୋ ମନରେ ସେପରି କିଛି ପ୍ରଭାବ ପକାଉ ନ ଥାଏ ।

ବଡ଼ ବଡ଼ ଉତ୍ସବ ଆସେ । ହୋଲିରେ ସାରା ସହରରେ ଗୋଟାଏ ଆମୋଦର ଭାବ ଖେଳିଯାଏ ଏବଂ ଆମେ ପରସ୍ପରକୁ ରଙ୍ଗ ପାଣି ଫୋପାଡ଼ୁ ଥାଉଁ । ଦିଆଲି ବା ଆଲୋକ ଉତ୍ସବରେ ପ୍ରତ୍ୟେକ ଘର ହଜାର- ହଜାର ମାଟିଦୀପର ଝୁଲୁ ଝୁଲୁ ଆଲୁଅରେ ହସି ଉଠେ; ଅର୍ଦ୍ଧରାତ୍ରିରେ କୃଷ୍ଣ ବନ୍ଦୀଘରେ ଜନ୍ମ ହୋଇଥିବା ଉତ୍ସବ ଜନ୍ମାଷ୍ଟମୀରେ ପାଳନ ହୁଏ [ମାତ୍ର ସେତେବେଳଯାଏ ଜାଗ୍ରତ ରହିବା ଆମ ପକ୍ଷରେ କଷ୍ଟକର ହୁଏ] । ଦଶହରା ଓ ରାମଲୀଳାରେ ରାମଚନ୍ଦ୍ରଙ୍କର ଜୀବନ ଓ ଲଙ୍କା ବିଜୟ ଆଦି ବିଷୟରେ ନାଟକ ଅଭିନୀତ ହୁଏ, ଶୋଭାଯାତ୍ରା ବାହାରେ । ତାକୁ ଦେଖିବା ନିମନ୍ତେ ବହୁତ ଲୋକ ଜମା ହୁଅନ୍ତି । ରେଶମୀ ଆଲମ୍ ନେଇ ଯେଉଁ ମହରମ ଶୋଭାଯାତ୍ରା ବାହାରେ, ପିଲାମାନେ ତାହା ଦେଖନ୍ତି ଏବଂ ଶୁଣନ୍ତି ଆରବରେ ହାସାନ୍ ଓ ହୁସେନଙ୍କର ଶୋଚନୀୟ ଦୁଃଖଜନକ-

କାହାଣୀ ଶୁଣନ୍ତି । ଏ ଦୁଇ 'ଇଦ୍' ଦିବସରେ ମୁନ୍‌ସିଜୀ ତାଙ୍କର ସବୁଠାରୁ ଭଲ ପୋଷାକ ପିନ୍ଧନ୍ତି ଏବଂ ପ୍ରାର୍ଥନା କରିବା ଲାଗି ବଡ଼ ମସଜିଦ୍‌କୁ ଯାଆନ୍ତି ଏବଂ ମୁଁ ତାଙ୍କ ଘରକୁ ଯାଏ । ମୋତେ ସେମାନେ ନାନାପ୍ରକାର ବ୍ୟଞ୍ଜନ ଖାଇବାକୁ ଦିଅନ୍ତି । ବଡ଼ାକବାବ, କୋଫ୍ତା ପୁଲାଓ [ଭାତ ତିଆରି ଅନ୍ନ] ଇତ୍ୟାଦି ଆହୁରି କେତେ ଛୋଟ ଛୋଟ ଖାଦ୍ୟ ପଦ ମଧ୍ୟ ଦିଏ ।

ଆମେ ଓ ଅନ୍ୟ କାଶ୍ମୀରବାସୀ କେତେକ ବିଶେଷ ଉତ୍ସବ ଏବଂ ପର୍ବ କରୁଁ, ଯାହାକି ଅନେକ ହିନ୍ଦୁ ଘରେ ହୁଏ ନାହିଁ । ଏମାନଙ୍କ ଭିତରୁ ପ୍ରଧାନ ହେଉଛି ନାଓରେଜ୍ ଅର୍ଥାତ୍ ସମ୍ବତ୍ ଅନୁସାରେ ନୂତନ ବର୍ଷର ପ୍ରଥମ ଦିବସ । ଏହା ଆମ ପକ୍ଷରେ ଗୋଟିଏ ବିଶେଷ ଦିବସ । ଆମେ ସମସ୍ତେ ନୂଆ ଲୁଗା ପିନ୍ଧୁ ଏବଂ ଘରେ ଛୋଟ ପିଲାମାନଙ୍କୁ ଉପହାର ରୂପେ ସେମାନଙ୍କ କିଛି କିଛି [ମାବାଗଛ] ପଇସା ଦିଆନ୍ତି ।

କିନ୍ତୁ ମୋର ଜନ୍ମଦିବସ ଉତ୍ସବ ସେଠି ଘରେ ମୋତେ ଦେଇ–'କହ' ସବୁ କାର୍ଯ୍ୟ କରାଯାଏ, ଯେଉଁ ବାର୍ଷିକ ଉତ୍ସବରେ ମୁଁ ସବୁଠାରୁ ବେଶି ଆଗ୍ରହ ଦେଖାଏ । ଏହା ମୋ ପକ୍ଷରେ ଖୁବ୍ ଉତ୍ସାହର ଦିନ । ବଡ଼ି ଭୋରରୁ ଗୋଟାଏ ପାଖରେ ରେଶମ ବସ୍ତ୍ର ଏବଂ ଅନ୍ୟ ଜିନିଷ ରଖାଯାଇ ମୋତେ ଓଜନ କରାଯାଏ ଏବଂ ସେଗୁଡ଼ିକ ପରେ ଗରିବଙ୍କ ଭିତରେ ବଣ୍ଟାଯାଏ । ତା ପରେ ମୋତେ ନୂତନ ପୋଷାକରେ ଭୂଷିତ କରାଯାଏ ଏବଂ ଉପହାର ସବୁ ଗ୍ରହଣ କରେ । ପରେ ଗୋଟାଏ ଖାଇବା ପିଇବା ହୁଏ । ସେଦିନ ମୁଁ ଯେ ଆଦର ରୂପେ ପୂଜା ପାଏ, ତାହା ମୁଁ ସର୍ବଦା ଅନୁଭବ କରୁଥାଏ । ମୋର ପ୍ରଧାନ ଆପତ୍ତି ହେଉଛି ଯେ, ମୋ ଜନ୍ମଦିବସ ବର୍ଷରେ ଥରେ ମାତ୍ର ହୁଏ । ବାସ୍ତବିକ ଆହୁରି ବେଶି ଥର ସେହି ଉତ୍ସବ ପାଳନ କରିବା ନିମନ୍ତେ ମୁଁ ଗୋଟିଏ ଆନ୍ଦୋଳନ କରିବାକୁ ଚେଷ୍ଟା କରିଥିଲି । ମୁଁ ସେତେବେଳେ ବୁଝି ପାରି ନ ଥିଲି ଯେ, ଏଭଳି ସମୟ ଆସିବ, ଯେତେବେଳେ ଜନ୍ମଦିନ ବାର୍ଦ୍ଧକ୍ୟର କ୍ଳେଶ-ଦାୟକ ସ୍ମୃତି ମାତ୍ର ଆଣିଦେବ ।

ସମୟ ସମୟରେ ମୋର ସମ୍ପର୍କୀୟ ଏବଂ କିମ୍ବା ଦୂର ସମ୍ପର୍କୀୟ ଅତିଥି ବନ୍ଧୁମାନଙ୍କର ବିବାହ ଉତ୍ସବରେ ଯୋଗ ଦେବା ନିମନ୍ତେ ଆମର ସମଗ୍ର ପରିବାର ଦୂର ସହରକୁ ଯାଆନ୍ତି । ଏ ଯାତ୍ରା ସବୁ ଆମ ପିଲାମାନଙ୍କ ପକ୍ଷେ ବେଶ୍ ଆନନ୍ଦପ୍ରଦ; କାରଣ ଟ୍ରେନ ଭିତରେ ଖାଲି ଆସନ୍ କଟକଣା କୋହଳ ହୋଇଯାଏ ଏବଂ ଆମେ ସବୁ ସେଠାରେ ମନଇଚ୍ଛା ବୁଲିପାରୁ । ଯାଦ-ଖାନା ବା ବିବାହ ଘରେ ଅନେକ ପରିବାର ଏକାଠି ରହନ୍ତି ଏବଂ ଅନେକ ପୁଅ ଝିଅ ଏକାଠି ହୁଅନ୍ତି । ଏହିସବୁ ଉତ୍ସବରେ ମୁଁ ଅତି ଏକୁଟିଆ ବୋଧ କରେ ନାହିଁ । ବନ୍ଧୁମାନଙ୍କଠାରୁ ବେଳେ-ବେଳେ ଗାଳି ଖାଇ ମଧ୍ୟ ଆମେ ମନଇଚ୍ଛା ଖେଳ କୌତୁକ ଓ ଦୁଷ୍ଟାମି କରୁ ।

ଭାରତରେ କି ଗରିବ କି ଧନୀ ସବୁ ପରିବାରର ବିବାହରେ ଅନେକ ଧନ ନଷ୍ଟ ହୁଏ ଓ ବାଜେ ଖରଚ ହୁଏ ବୋଲି ଅନେକ ନିନ୍ଦା କରନ୍ତି । ଏହା ନିନ୍ଦା କରିବାର କଥା । ଯାହା ତ ନଷ୍ଟ ହୁଏ, ତାହା ଛଡ଼ା ଅଧିକ ଦୁଃଖର କଥା ଯେ, ଏପରି ଅନେକ ଜିନିଷ କିଣିବାକୁ ହୁଏ, ଯାହାର ଜୀବନରେ କୌଣସି ପ୍ରକାର ମୂଲ୍ୟ ନାହିଁ । (ଅବଶ୍ୟ କେତେକ ଯେ ବିଶେଷତ୍ୱ ରହିଛି, ଏହା କହିବା ବାହୁଲ୍ୟ ।) ଏଥିପାଇଁ ମଧ୍ୟବିତ୍ତ ଲୋକେ ପ୍ରକୃତ ଦୋଷୀ । ଗରିବମାନେ ମଧ୍ୟ ବହୁତ ଋଣ କରି ବାଜେ ଖରଚ କରନ୍ତି; କିନ୍ତୁ ଏହି ସାମାଜିକ ଉତ୍ସବ ଯୋଗୁଁ ସେମାନେ ଦରିଦ୍ର ହୋଇଛନ୍ତି ବୋଲି କେତେକ ଲୋକ ଯେ କହନ୍ତି, ତାହା ନିତାନ୍ତ ନିର୍ବୋଧପଣିଆ । ସେମାନେ ଭୁଲିଯାଆନ୍ତି ଯେ ଗରିବଙ୍କର ଜୀବନ ନିହାତି ଶୁଷ୍କ ଏବଂ ସମୟ ସମୟରେ ଏହି ବିବାହ ଉତ୍ସବ ଯୋଗୁ ଭୋଜି ହୁଏ, ସଙ୍ଗୀତ ହୁଏ । ଏମାନ କଠିନ ପରିଶ୍ରମର ମରୁଭୂମି ଭିତରେ ଝରଣା ପରି ଆସେ । ଘର କଙ୍କାଳରୁ ଓ ଜୀବନର ଶୁଷ୍କ କାର୍ଯ୍ୟରୁ କେତେକ କିଛିକାଳ ଲାଗି ଦୂରରେ ରହନ୍ତି । ଯେଉଁ ଲୋକମାନେ ଆମୋଦ ଲାଗି ଏତେ କମ୍ ସୁବିଧା ପାଆନ୍ତି, ସେମାନଙ୍କୁ ସାନ୍ତ୍ୱନା ଦେବା ଲାଗି ଏତିକି ବ୍ୟୟ ଓ ଆମୋଦକୁ ଅସ୍ୱୀକାର କରିବା ନିଷ୍ଠୁରତା ହେବ ।

ସମସ୍ତ ପ୍ରକାର ଅପଚୟ୍ନ ବନ୍ଦ କର, ବାଜେ ଖରଚ କମାଅ, ଗରିବଙ୍କୁ ତାଙ୍କ ଦାରିଦ୍ର୍ୟରେ ପକାଇ ରଖିବା ନିମନ୍ତେ ଏହି ସବୁ ବଡ଼ ବଡ଼ ଓ ନିର୍ବୋଧ କଥା କୁହାଯାଏ । କିନ୍ତୁ ଯାହା ଅଛି, ତାହା ଅପେକ୍ଷା ସେମାନଙ୍କ ଜୀବନକୁ ଅଧିକ ଶୂନ୍ୟ ଓ ଆମୋଦହୀନ କର ନାହିଁ ।

ମଧ୍ୟବିତ୍ତଙ୍କ ପାଇଁ ବି ସେଇକଥା । ନଷ୍ଟ ଓ ବାଜେ ଆଡ଼ମ୍ବର କଥା ଛାଡ଼ିଦେଲେ ଅନେକ ଦିନ ପରେ ଏହି ବିବାହରେ ଅନେକ ଦୂର-ସମ୍ପର୍କୀୟ ଓ ପୁରାତନ ବନ୍ଧୁ ଏକ ସାମାଜିକ ଉତ୍ସବରେ ଏକତ୍ର ହୁଅନ୍ତି । ଭାରତ ଗୋଟିଏ ବଡ଼ ଦେଶ ଏବଂ ସାଙ୍ଗସାଥିଙ୍କ ପକ୍ଷରେ ପରସ୍ପର ସାକ୍ଷାତ ସହଜ ନୁହେଁ । ଏକ ସମୟରେ ଅନେକ ବନ୍ଧୁ ଆତ୍ମୀୟ ଏକାଠି ହେବା ଅଧିକ କଷ୍ଟକର । ଏହା ହେତୁ ବିବାହ ଉତ୍ସବ ଏପରି ଲୋକପ୍ରିୟ । ଏହା ସହିତ ଏକମାତ୍ର ସମକକ୍ଷ ଏବଂ ସାମାଜିକ ମିଳନ ଭାବରେ ଏହା ଅପେକ୍ଷା ଅନେକାଂଶରେ ଉତ୍କୃଷ୍ଟ ରାଜନୀତିକ ସଭାସମିତି, ସମ୍ମିଳନୀ କିମ୍ବା କଂଗ୍ରେସ ଅଧିବେଶନ ।

ଭାରତରେ ବିଶେଷତଃ ଉତ୍ତର ଅଞ୍ଚଳରେ ଆମମାନଙ୍କ ଅପେକ୍ଷା କାଶ୍ମୀରୀମାନଙ୍କର ବେଶି ସୁବିଧା ଥିଲା । ସେମାନଙ୍କ ଭିତରେ କୌଣସି ପରଦା ନ ଥିଲା । ଭାରତର ସମତଳ ଭୂମିରେ ଏହି ରୀତି ଚଳୁଥିବାର ଦେଖି ସେମାନେ ତାହା ଗ୍ରହଣ କଲେ, ମାତ୍ର ଏହି ପ୍ରଥା ସେମାନଙ୍କର ସମ୍ପର୍କୀୟ ବା ଅକାଶ୍ମୀରୀଙ୍କ ସହିତ ଆଂଶିକ ଭାବରେ ବ୍ୟବହାର କରୁଥିଲେ । ସେତେବେଳେ ଉତ୍ତର ଭାରତରେ ଏହା ଏକ ଅବଶ୍ୟ-କର୍ତ୍ତବ୍ୟ ସାମାଜିକ ରୀତିରୂପେ ଧରାଯାଉଥିଲା । ଅଧିକ ସଂଖ୍ୟକ କାଶ୍ମୀରୀ ଏଠାରେ ବାସ କରୁଥିଲେ । ମାତ୍ର ସେମାନଙ୍କ ପରସ୍ପର ମଧ୍ୟରେ ସ୍ତ୍ରୀ ଓ ପୁରୁଷଙ୍କ ଭିତରେ ସ୍ୱାଧୀନ ସାମାଜିକ ଜୀବନ ଥିଲା ଏବଂ ପ୍ରତ୍ୟେକ କାଶ୍ମୀରୀ ଯେ କୌଣସି କାଶ୍ମୀରୀ ପରିବାର ଭିତରକୁ ଯାଇ ପାରୁଥିଲା । କାଶ୍ମୀରୀ ଉତ୍ସବ ଓ ଭୋଜମାନଙ୍କରେ ସ୍ତ୍ରୀପୁରୁଷ ସବୁ ଏକତ୍ର ମିଳୁଥିଲେ, ବସୁଥିଲେ—ଅନେକ ସମୟରେ ସ୍ତ୍ରୀଲୋକମାନେ ଏକାଠି ବସୁଥିଲେ । ପୁଅ ଓ ଝିଅ ସବୁ ଉଭୟ ଅନ୍ୟଙ୍କ ସମାନ ସ୍ୱାଧୀନ ଭାବରେ ସାକ୍ଷାତ

କରୁଥିଲେ । ଅବଶ୍ୟ ଆଧୁନିକ ପାଶ୍ଚାତ୍ୟ ଧରଣର ସ୍ୱାଧୀନତା ସେମାନଙ୍କ ମଧ୍ୟରେ ନ ଥିଲା ।

ଏହିପରି ମୋର ବାଲ୍ୟକାଳ ବିତିଲା । ଅନେକ ସମୟରେ କୁଟୁମ୍ବ ଭିତରେ କଳହ ହୁଏ—ବଡ଼ ବଡ଼ ପରିବାରରେ ଏହା ହେବା ଅବଶ୍ୟମ୍ଭାବୀ । ଏହା ସବୁ ବଢ଼ି ଯେତେବେଳେ ଗୁରୁତର ହୋଇଯାଏ ଓ ମୋ ବାପାଙ୍କ କାନକୁ ଯାଏ, ସେ ଭାରି ରାଗିଯାଆନ୍ତି ଏବଂ ଭାବନ୍ତି ଯେ ସ୍ତ୍ରୀଲୋକମାନଙ୍କ ଯୋଗୁଁ ଏହି ସବୁ ହେଉଛି । କଣ ବାସ୍ତବିକ ଘଟି ଥାଏ ମୁଁ ବୁଝିପାରେ ନାହିଁ, ମାତ୍ର କିଛି ଗୋଟାଏ ଖରାପ ହୋଇଥିବାର ମୁଁ ଦେଖିପାରେ—ଲୋକେ ସବୁ ଅଦ୍ଭୁତପ୍ରକାରେ ପରସ୍ପରଠାରୁ ଛଡ଼ା ଛଡ଼ା ହୋଇ ବେଖାପି ଭାବରେ ଚଳାଚଳ କରନ୍ତି । ମୋତେ ଭାରି ଖରାପ ଲାଗେ । ବାପା ଯେତେବେଳେ ଆସି ହସ୍ତକ୍ଷେପ କରନ୍ତି, ସେତେବେଳେ ସମସ୍ତେ ଚମକି ପଡ଼ନ୍ତି ।

ସେହି ପିଲାଦିନର ଗୋଟିଏ ଶ୍ରେଷ୍ଠ ଘଟଣା ମୋର ସ୍ମରଣ ଅଛି । ମୋର ବୟସ ପ୍ରାୟ ସାତ କି ଆଠ ହୋଇଥିବ । ସେତେବେଳେ ଏଲହାବାଦରେ ଯେଉଁ ଘୋଡ଼ାସବାର ସବୁ ଥାଆନ୍ତି, ତାଙ୍କ ଭିତରୁ ଜଣେ ସବାର ସାଙ୍ଗରେ ପ୍ରତ୍ୟେକ ଦିନ ଘୋଡ଼ା ଚଢ଼ିବାଲାଗି ମୁଁ ଯାଏ । ଦିନେ ସନ୍ଧ୍ୟାବେଳେ ମୁଁ ଘୋଡ଼ାରୁ ପଡ଼ିଗଲି । ମୋର ଘୋଡ଼ା ଖୁବ୍ ଶ୍ରେଷ୍ଠ ଓ କେତେକ ପରିମାଣରେ ଆରବ ଜାତୀୟ ଥିଲା । ସେ ଶ୍ରେଷ୍ଠ ଘୋଡ଼ାଟି ମୋତେ ଛାଡ଼ି ଦେଇ ଆମ ଘରେ ପହଞ୍ଚିଗଲା । ବାପା ଏକ ଟେନିସ୍ ଖେଳରେ ମାତିଥିଲେ । ଗୋଟିଏ ଖୁବ ଚହଳ ପଡ଼ିଗଲା ଏବଂ ଟେନିସ୍ ଦଳର ସମସ୍ତ ଖେଳାଳୀ ବାପାଙ୍କ ନେତୃତ୍ୱରେ ସବୁପ୍ରକାର ଯାନବାହାନରେ ଚଢ଼ି ଶୋଭାଯାତ୍ରା କରି ମୋତେ ଖୋଜିବାଲାଗି ବାହାରିଲେ । ସେମାନେ ମୋତେ ବାଟରେ ଭେଟିଲେ ଏବଂ ମୁଁ ସତେ ଯେପରି ଗୋଟାଏ ଖୁବ୍ ବୀର ପଣ କାର୍ଯ୍ୟ କରିଛି, ସେହିପରି ଭାବ ମୋ ପ୍ରତି ଦେଖାଇଲେ ।

———

# ଥିଓଜଫି

ମୋର ଦଶବର୍ଷ ବୟସବେଳେ ଆମେ ଏକ ନୂଆ ଓ ବଡ଼ ଘରକୁ ଗଲୁ । ବାପା ସେ ଘରର ନାମ "ଆନନ୍ଦ ଭବନ" ଦେଇଥିଲେ । ଏ ଘରକୁ ଲାଗି ଗୋଟିଏ ବଡ଼ ବଗିଚା ଓ ପହଁରିବା ପୋଖରୀ ଥିଲା । ମୁଁ କ୍ରମେ ସେଥିରେ ନୂଆ ନୂଆ ଆବିଷ୍କାର କରି ଆଶ୍ଚର୍ଯ୍ୟାନ୍ୱିତ ହେଉଥାଏ । ଆହୁରି ଘର ତିଆରି ହେଉଥାଏ, ସେଥିଲାଗି ଖୁବ୍ ଖୋଳାଖୋଳି ଲାଗିଥାଏ, ତିଆରି କାର୍ଯ୍ୟ ଚାଲିଥାଏ । ମଜୁରିଆମାନେ କାର୍ଯ୍ୟ କରିବା ଦେଖି ମୁଁ ବହୁତ ଖୁସି ହେଉଥିଲି ।

ଘର ଭିତରେ ପହଁରିବା ଲାଗି ଗୋଟିଏ ବଡ଼ ପୋଖରୀ ଥିଲା । ମୁଁ ଅତି ଶୀଘ୍ର ପହଁରିବା ଶିଖିଗଲି । ବଡ଼ ଆନନ୍ଦରେ ପାଣି ଉପରେ ଓ ଭିତରେ ଖେଳିବାକୁ ଲାଗିଲି । ଗରମ ଦିନେ ଦିନକେ ଥରକୁ ଥର ଯେତେବେଳେ ଇଚ୍ଛା ସେତେବେଳେ ମୁଁ ପୋଖରୀରେ ଝୁଲୁଥାଏ । ସନ୍ଧ୍ୟାବେଳେ ମୋ ବାପାଙ୍କର ଅନେକ ବନ୍ଧୁ ପୋଖରୀ ପାଖକୁ ଆସନ୍ତି । ଏହା ଗୋଟିଏ, ନୂଆ କଥା—ସେଠାରେ ଓ ଘରେ ଯେଉଁ ବିଜୁଳିବତୀ ଦିଆଯାଇଥାଏ, ତାହା ସେ କାଳର ଏଲାହାବାଦରେ ଗୋଟିଏ ନୂତନ ପରିବର୍ତ୍ତନ ଆଣିଥାଏ । ଗାଧୋଇବା ଲାଗି ଯେଉଁମାନେ ଆସନ୍ତି, ସେମାନଙ୍କ ସହିତ ମୁଁ ଖୁବ୍ ଆନନ୍ଦ ଉପଭୋଗ କରେ—ଯେଉଁମାନେ ପହଁରି ଜାଣି ନ ଥାନ୍ତି, ସେମାନଙ୍କୁ ପାଣି ଭିତରକୁ ଠେଲିଦେବା ବା ଟାଣି ଆଣିବାରେ ମୁଁ ଖୁବ୍ ଆମୋଦ ପାଏ । ମୋର ବିଶେଷ ଭାବରେ ସାର୍ ତେଜ ବାହାଦୁର ସାପ୍ରୁଙ୍କ କଥା ମନେ ଅଛି । ସେତେବେଳେ ଏଲାହାବାଦରେ ସେ ଜଣେ ଜୁନିଅର ଓକିଲ । ସେ ପହଁରି ଜାଣି ନ ଥିଲେ ଏବଂ ଶିଖିବାଲାଗି ବି ତାଙ୍କର ଇଚ୍ଛା ନ ଥିଲା । ପ୍ରଥମ ପାହାଚରେ ପ୍ରାୟ ୧୫ ଇଞ୍ଚ ହେବ ପାଣିରେ ସେ ବସନ୍ତି—ଆଉ ଆଗକୁ ଏପରି କି ଦ୍ୱିତୀୟ ପାହାଚକୁ ଗଡ଼ିବା ଲାଗି ରାଜି-ହୁଅନ୍ତି ନାହିଁ ଏବଂ ଯଦି ତାଙ୍କୁ ଠେଲି

ଠାଣି ନେବା ଲାଗି ଚେଷ୍ଟା କରେ, ତେବେ ତାହା ଜାଣନ୍ତି । ମୋ ବାପା ମଧ୍ୟ ସେପରି ଭଲ ପହଁରାଳି ନ ଥିଲେ କିନ୍ତୁ, ଅଦମ୍ୟ ଚେଷ୍ଟା କରି ସେ କୌଣସି ପ୍ରକାରେ ପୋଖରୀର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ପହଁରି ପାରୁଥିଲେ ।

ସେତେବେଳେ ବୁଅର ଯୁଦ୍ଧ ଲାଗିଥାଏ । ମୋର ସେଥିପ୍ରତି ମନ ଗଲା । ବୁଅରମାନଙ୍କ ପ୍ରତି ମୁଁ ସହାନୁଭୂତି ଦେଖାଉଥାଏ । ଯୁଦ୍ଧ ଖବର ପାଇବା ନିମନ୍ତେ ମୁଁ ଖବରକାଗଜ ପଢ଼ିବାକୁ ଆରମ୍ଭ କଲି ।

ଯାହାହେଉ, ସେତେବେଳେ ଗୋଟିଏ ଘରୋଇ ଘଟଣା ପ୍ରତି ମୋର ଦୃଷ୍ଟି ଆକୃଷ୍ଟ ହୋଇଥିଲା । ଏହା ହେଉଛି ଗୋଟିଏ ନୂଆ ଭଉଣୀର ଜନ୍ମ । ଅନ୍ୟ ସମସ୍ତଙ୍କର ପ୍ରାୟ ଭାଇ ଭଉଣୀ ଥିଲାବେଳେ ମୋର ଭାଇ ବା ଭଉଣୀ ନ ଥିବାରୁ ମୋର ଗୋଟିଏ ଗୁପ୍ତ ଆପତ୍ତି ମନେ ମନେ ଥାଏ ଏବଂ ଶେଷରେ ମୋର ଗୋଟିଏ ନିଜ ଭାଇ ବା ଭଉଣୀ ହେବାର ଜାଣି ମୋ ମନ ବଡ଼ ଖୁସି ହେଉଥାଏ । ବାପା ସେତେବେଳେ ୟୁରୋପରେ ଥାଆନ୍ତି । ସେହି ଘଟଣାବେଳେ ମୁଁ ବାରଣ୍ଡାରେ ଆଗ୍ରହର ସହିତ ଅପେକ୍ଷା କରିଥିବା କଥା ମୋର ମନେ ଅଛି । ଜଣେ ଡାକ୍ତର ଆସି ମୋତେ ଏ ସମ୍ବାଦ ଜଣାଇ ବୋଧହୁଏ ଟିକିଏ ଉପହାସ କରି କହିଲେ ଯେ, "ଖୁସି ଖୁସି ହେବ, ପୁଅ ହୋଇନାହିଁ ଯେ ସେ ତମ ବାପାଙ୍କ ସମ୍ପତ୍ତିରେ ତମ ସହିତ ଭାଗୀଦାର ହେବ ।" ମୋର ଏପରି ଖରାପ ଧାରଣା ଥାଇପାରେ ବୋଲି ତାହାର ଅନୁମାନ କରିବା କଥା ଭାବି ମୁଁ ରାଗରେ ଜଳିଗଲି ଓ ଚିଡ଼ିଗଲି ।

ବାପାଙ୍କ ୟୁରୋପ ଯାତ୍ରା ହେତୁ ଭାରତରେ କାଶ୍ମୀରୀ ବ୍ରାହ୍ମଣ ସମ୍ପ୍ରଦାୟ ଭିତରେ ଗୋଟାଏ ତୁମୁଳ ଆନ୍ଦୋଳନ ହୋଇଗଲା । ସେ ଫେରିବା ପରେ କୌଣସି ପ୍ରକାର ପ୍ରାୟଶ୍ଚିତ୍ତ କରିବାକୁ ମନାକଲେ । କେତେକ ବର୍ଷ ପୂର୍ବେ ପଣ୍ଡିତ ବିଷନ ନାରାୟଣ ଧର ନାମକ ଆଉ ଜଣେ କାଶ୍ମୀରୀ ବ୍ରାହ୍ମଣ ଇଂଲଣ୍ଡରେ ଓକିଲାତି ପଢ଼ିବାକୁ ଯାଇଥିଲେ । ସେ ମଧ୍ୟ ପରେ କଂଗ୍ରେସ ସଭାପତି ହୋଇଥିଲେ । ସେ ଫେରିଲା ପରେ ପ୍ରାୟଶ୍ଚିତ୍ତ

କରିଥିଲେ ଯୁଆ କାଶ୍ମୀରୀ ବ୍ରାହ୍ମଣ ସମ୍ପ୍ରଦାୟର ରକ୍ଷଣଶୀଳ ଶ୍ରେଣୀ ତାଙ୍କ ସହିତ ସମ୍ପର୍କ ତୁଟାଇ ଦେଲେ ଏବଂ ତାଙ୍କୁ ଜାତିଚ୍ୟୁତ କଲେ । ଏଥିରେ ସମ୍ପ୍ରଦାୟଟି ଉଣା ଅଧିକେ ଦୁଇଟି ସମାନ ଭାଗରେ ବିଭକ୍ତ ହୋଇ ଅଲଗା ଅଲଗା ହୋଇଗଲା । କ୍ରମେ ପଢ଼ିବା ନିମନ୍ତେ ଆହୁରି ଅନେକ କାଶ୍ମୀରୀ ଯୁବକ ଇଉରୋପ ଯାଇଥିଲେ । ସେମାନେ ଫେରି ସଂସ୍କାରକ ଦଳଙ୍କ ସହିତ ଯୋଗ ଦେଇଥିଲେ—ଏହା ପୁଣି ପ୍ରାୟଶ୍ଚିତ୍ତ କଲାପରେ ସମ୍ଭବ ହେଉଥିଲା । ଏହି ଉତ୍ସବଟି ଏକ ପ୍ରକାର ପ୍ରହସନ । ଏଥିରେ ଧର୍ମର ନାମଗନ୍ଧ ନ ଥିଲା ! ସମ୍ପ୍ରଦାୟର ରୀତିନୀତି ମାନି ଚଳିବେ ବୋଲି ଏହା ଏକ ପ୍ରକାର ସଦିଚ୍ଛା ଜ୍ଞାପନର ପ୍ରକାଶ୍ୟ ଅନୁନୟ । ଏହା କରିସାରି ପୁଣି ସେମାନେ ନିଜ ନିଜ ପନ୍ଥାରେ ଚଳନ୍ତି । ଅବ୍ରାହ୍ମଣ ହିନ୍ଦୁ ଓ ଅହିନ୍ଦୁମାନଙ୍କ ସହ ମିଶନ୍ତି ଓ ଖାଆନ୍ତି । ବାପା ଆହୁରି ଟିକିଏ ଆଗେଇ ଗଲେ । ସେ ବାହାରେ କିମ୍ବା ବିଧି ରକ୍ଷା ନିମନ୍ତେ ପ୍ରାୟଶ୍ଚିତ୍ତ ବା ଅନ୍ୟ କୌଣସି ପ୍ରକାର ବିଧି ମାନିବାକୁ ବା ତାହାର ପାଖରେ ମୁଣ୍ଡ ନୁଆଁଇବାକୁ ଅସ୍ୱୀକାର କଲେ । ଏଥିରେ ଖୁବ୍ ଗୋଟାଏ ଉତ୍ତେଜନା ସୃଷ୍ଟି ହେଲା । ବିଶେଷତଃ ବାପାଙ୍କର ଟିକିଏ ଉଗ୍ର ଓ ଦେଖାଡ଼ିଆ ଭାବ ଯୋଗୁଁ ଏହା ବଢ଼ିଲା । ଶେଷରେ ଅନେକ ସଂଖ୍ୟକ କାଶ୍ମୀରୀ ବାପାଙ୍କ ସହିତ ଯୋଗ-ଦେଲେ ଏବଂ ଏକ ତୃତୀୟ ଦଳ ଗଢ଼ି ଉଠିଲା । କେତେକ ବର୍ଷ ଭିତରେ ଧାରଣା ସବୁ ବଦଳି ଯିବାରୁ ଏବଂ ପୁରୁଣା କଟକଣାମାନ ଉଠିଯିବାରୁ ସବୁ ଦଳ କ୍ରମେ ଏକାଠି ହୋଇଗଲେ । ଅନେକ ସଂଖ୍ୟକ କାଶ୍ମୀର ଯୁବକ ଓ ଯୁବତୀ ପଢ଼ିବା ନିମନ୍ତେ ଇଉରୋପ ଓ ଆମେରିକା ଯାଇଛନ୍ତି ଏବଂ ସେମାନଙ୍କର ଫେରିବା ପରେ କୌଣସି ପ୍ରକାର ପ୍ରାୟଶ୍ଚିତ୍ତ କରିବା କଥା ଆଦୌ ଉଠି ନାହିଁ । କେବଳ କେତେକ ରକ୍ଷଣଶୀଳ ଲୋକ ବିଶେଷତଃ ବୃଦ୍ଧାମାନଙ୍କ ଛଡ଼ା ଆଉ କେହି ଖାଇବା କଟକଣା ମାନୁନାହାନ୍ତି ଏବଂ ଅକାଶ୍ମୀରୀ, ମୁସଲମାନ ଓ ଅଭାରତୀୟମାନଙ୍କ ସହିତ ଭୋଜନ କରିବା ସାଧାରଣ କଥା ହୋଇ ଗଲାଣି । ଅନ୍ୟ ସମ୍ପ୍ରଦାୟ ଅପେକ୍ଷା କାଶ୍ମୀରୀ ସ୍ତ୍ରୀ ଲୋକଙ୍କ ଭିତରୁ ପରଦା ପ୍ରଥା ଏକଦମ୍ ଚାଲିଯାଇଛି । ୧୯୩୦ ର ରାଜନୈତିକ ଆନ୍ଦୋଳନରେ ଏହା ଏକ ଭୀଷଣ ଧକ୍କା ପାଇଥିଲା । ଅନ୍ତର୍ବିବାହ ଏବେ

ଯୁକ୍ତ। ସାଧାରଣ ଭାବରେ ପ୍ରଚଳିତ ହୋଇନାହିଁ । ଅବଶ୍ୟ କ୍ରମେ ଏହାର ସଂଖ୍ୟା ବଢ଼ିବାରେ ଲାଗିଛି । ମୋର ଦୁଇଟିଯାକ ଭଉଣୀ ଅକାଶ୍ମୀରୀଙ୍କୁ ବିବାହ କରିଅଛନ୍ତି ଏବଂ ଏବେ ଆମ ପରିବାରର ଜଣେ ଯୁବକ ହଙ୍ଗେରୀର ଗୋଟିଏ ଝିଅକୁ ବିବାହ କରିଛି । ଅନ୍ୟମାନଙ୍କ ସହିତ ବିବାହ କରିବା ନିମନ୍ତେ ଯେ ଆପତ୍ତି ହୁଏ, ତାହା ଧର୍ମଯୋଗୁଁ ନୁହେଁ, ଏହା ଅନେକାଂଶରେ ଜାତିଗତ । ଆମ ଦଳର ବିଶେଷତ୍ୱ ଓ ଆର୍ଯ୍ୟ ଗୁଣାବଳୀ ନିଖୁଣ ରଖିବା ନିମନ୍ତେ ଆମ ସମ୍ପ୍ରଦାୟର କେତେକ କାଶ୍ମୀରୀଙ୍କର ଇଚ୍ଛା ଏବଂ ଆମେ ଭାରତୀୟ ଓ ଅଭାରତୀୟ ଲୋକଙ୍କ ସହିତ ମିଶି ତାକୁ ହରାଇ ଦେବୁଁ ବୋଲି ସେମାନଙ୍କର ଭୟ । ଏହି ବିରାଟ ଦେଶରେ ଆମର ସଂଖ୍ୟା ଖୁବ୍ କମ୍ ।

ବୋଧହୁଏ ପ୍ରାୟ ୧୦୦ ବର୍ଷ ପୂର୍ବେ ମିର୍ଜା ମୋହନଲାଲ ନାମକ ଜଣେ କାଶ୍ମୀରୀ ବ୍ରାହ୍ମଣ ପ୍ରଥମ ହୋଇ ପାଶ୍ଚାତ୍ୟ ଦେଶକୁ ଯାଇଥିଲେ । ସେ ନିଜକୁ 'କାଶ୍ମୀରିୟାନ୍' ବୋଲି କହୁଥିଲେ । ସେ ଜଣେ ତେଜସ୍ୱୀ ଓ ସୁନ୍ଦର ଯୁବକ—ଦିଲ୍ଲୀ ମିଶନ କଲେଜର ଛାତ୍ର ଥାଆନ୍ତି । ପାର୍ସି ଭାଷାରେ ବୁଝାଇବା ନିମନ୍ତେ ସେ ଏକ ବ୍ରିଟିଶ ମିଶନ ସହିତ କାବୁଲ ଯାଇଥିଲେ । ପରେ ସେ ସମଗ୍ର ଏସିଆ ଓ ପର୍ସିଆରେ ବୁଲିଥିଲେ । ଯେଉଁ ସ୍ଥାନକୁ ଗଲେ, ସେଠାରେ ସେ ଗୋଟିଏ ଲେଖାଏଁ ନୂଆ ସ୍ତ୍ରୀ ବିବାହ କରୁଥିଲେ । ସାଧାରଣତଃ ଉଚ୍ଚ ସମାଜରେ ସେ ବିବାହ କରୁଥାଆନ୍ତି । ସେ ମୁସଲମାନ ହେଲେ ଏବଂ ପର୍ସିଆର ରାଜପରିବାରର ଗୋଟିଏ ଝିଅକୁ ବିବାହ ହେଲେ । ତେଣୁ ତାଙ୍କର ମିର୍ଜା ଉପାଧି ହେଲା । ସେ ଇଉରୋପ ମଧ୍ୟ ଯାଇଥିଲେ ଏବଂ ରାଣୀ ଭିକ୍ଟୋରିଆଙ୍କ ସହିତ ସାକ୍ଷାତ କରିଥିଲେ । ସେ ତାଙ୍କର ଯାତ୍ରାର ଖୁବ୍ ଆମୋଦପୂର୍ଣ୍ଣ ବିବରଣୀ ସବୁ ଲେଖିଛନ୍ତି ।

ମୋର ୧୧ ବର୍ଷ ବୟସବେଳେ ଫର୍ଡିନାଣ୍ଡ ଟି· ବ୍ରୁକ୍ସ ନାମରେ ଜଣେ ଶିକ୍ଷକ ଆସି ଆମ ଘରେ ରହିଲେ ଓ ମୋ ଶିକ୍ଷାର ଭାର ସେ ନେଲେ । ତାଙ୍କ ବାପା ଆୟୁରଲଣ୍ଡର ଲୋକ ଥିଲେ ମାଆ ଫ୍ରାନ୍ସ ବା ବେଲଜିୟମର ଝିଅ ଥିଲେ । ସେ ଜଣେ ଥିଓଜଫିଷ୍ଟ ଥିଲେ ।

ବିଜ୍ଞାନର ଅଦ୍ଭୁତ ଶକ୍ତି ସମ୍ବନ୍ଧରେ ବ୍ରୁକ୍ସ ମୋତେ ଅନେକ କଥା କହୁଥିଲେ । ଆମେ ଗୋଟିଏ ଛୋଟ ଲାବୋରେଟୋରୀ କଲୁଁ । ପ୍ରାଥମିକ ଫିଜିକ୍ସ ଓ କେମିଷ୍ଟ୍ରିରେ ଅଭିଜ୍ଞତା ଅର୍ଜନ କରିବା ନିମନ୍ତେ ମୁଁ ଅନେକ ସମୟ ସେଥିରେ କଟାଉଥିଲି ।

ମହାତ୍ମା ଏଫ୍. ଟି. ବ୍ରୁକ୍ସ ମୋ ଉପରେ ଆଉ ଏକ ନୂଆ ପ୍ରଭାବ ଆଣିଲେ । ତାହା କିଛିକ୍ଷଣ ପାଇଁ ମୋତେ ଖୁବ୍ ବେଶ୍ ଆକୃଷ୍ଟ କରିଥିଲା । ଏହା ହେଉଛି ଥିଓଜଫି । ପ୍ରତି ସପ୍ତାହରେ ତାଙ୍କ ରହିବା ଘରେ ଥିଓଜଫି ପନ୍ଥୀଙ୍କର ବୈଠକ ହୁଏ । ମୁଁ ସେଥିରେ ଯୋଗ ଦେଉଥିଲି । କ୍ରମେ ଥିଓଜଫି ଭାଷା ଓ ଧାରଣା ସବୁ ଶିଖିଗଲି । ସେଠାରେ ଦାର୍ଶନିକ ଆଲୋଚନା ଓ ପୁନର୍ଜନ୍ମ, ସୂକ୍ଷ୍ମ ଦେହ, ଅଶରୀରୀ, ପ୍ରାଣୀ, ଆତ୍ମାର ସୂକ୍ଷ୍ମ ଜ୍ୟୋତି ଆଦି ବିଷୟର ଆଲୋଚନା ହୁଏ । ପ୍ରସଙ୍ଗ କ୍ରମେ ମାଡାମ୍ ବ୍ଲାଭାଟ୍ସ୍କି ଓ ଅନ୍ୟାନ୍ୟ ଥିଓଜଫିଷ୍ଟଙ୍କ କଥା ଉଠେ । ଏହା ଛଡ଼ା ହିନ୍ଦୁ ଶାସ୍ତ୍ର, ବୌଦ୍ଧମାନଙ୍କର 'ଧର୍ମପଦ', 'ପିଥାଗୋରାସ' ଟାୟନାର, ଏପୋଲୋନିୟସ୍ ଏବଂ ଅନ୍ୟାନ୍ୟ ଦାର୍ଶନିକ ଓ ମହାତ୍ମାମାନଙ୍କ ବିଷୟର ଆଲୋଚନା ହେଉଥିଲା । ସେମାନେ ଯାହା ସବୁ କହୁଥିଲେ ସେଥିରୁ ମୁଁ ଅନେକ କଥା ବୁଝି ପାରୁ ନଥିଲି; ମାତ୍ର ଏ ସବୁ ମୋତେ ଅତି ଅଦ୍ଭୁତ ଓ ଚିତ୍ତାକର୍ଷକ ଜଣାଯାଏ । ବିଶ୍ୱବ୍ରହ୍ମାଣ୍ଡର ଗୁପ୍ତ ରହସ୍ୟ ଭେଦ କରିବା ନିମନ୍ତେ ବାଟ ମିଳୁଛି ବୋଲି ମୁଁ ସେତେବେଳେ ଅନୁଭବ କରିଥିଲି । ପ୍ରଥମ ଥର ଲାଗି ଜାଣିଶୁଣି ମୁଁ ଧର୍ମ ଓ ପରଲୋକ ସମ୍ବନ୍ଧରେ ଚିନ୍ତା କରିବାକୁ ଆରମ୍ଭ କରିଥିଲି । ବିଶେଷତଃ ହିନ୍ଦୁଧର୍ମ ପ୍ରତି ମୋର ଶ୍ରଦ୍ଧା ବହୁତ ବଢ଼ିଗଲା । ମୁଁ ତାର ଧାର୍ମିକ ବା ଆଚାର ପାଳନ ପଦ୍ଧତିକୁ ପସନ୍ଦ କରୁ ନ ଥିଲି; ମାତ୍ର 'ଉପନିଷଦ୍' ଓ 'ଭଗବଦ୍ଗୀତା'କୁ ପଢ଼ିଲି । ଅବଶ୍ୟ ମୁଁ ସେଗୁଡ଼ିକ ବୁଝିପାରୁ ନ ଥିଲି; କିନ୍ତୁ ସେ ସବୁ ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଥିଲା । ମୁଁ ସବୁ ଜ୍ୟୋତିର୍ମୟ ଦେହଧାରୀ-ମାନଙ୍କୁ ସ୍ୱପ୍ନରେ ଦେଖିଲି ଓ ଅତି ଦୂରରେ ଉଡ଼ୁଥିଲି ବୋଲି ଅନୁମାନ କଲି; କୌଣସି ଯାନବାହନର ବିନା ସାହାଯ୍ୟରେ ଏପରି ଉପରେ ଉଡ଼ିବା

ସ୍ୱପ୍ନ ମୁଁ ମୋ ଜୀବନରେ ଅନେକ ଥର ଦେଖିଛି । ସମସ୍ତ ସମୟରେ ଏହି ସ୍ୱପ୍ନ ଏପରି ପରିଷ୍କାର ଓ ବାସ୍ତବରୂପେ ଦେଖାଯାଏ ଯେ, ସାରା ଦେଶଟି ମୋ ତଳେ ଗୋଟାଏ ବିରାଟ ଚିତ୍ର ଆକାରରେ ମୁଁ ଉପରୁ ଦେଖୁଥିଲା ପରି ବୋଧ କରେ । ମୁଁ ଜାଣେନା ଫ୍ରଏଡ୍ ଓ ଅନ୍ୟାନ୍ୟ ଆଧୁନିକ ସ୍ୱପ୍ନତତ୍ତ୍ୱବିତ୍‌ମାନେ ଏହାକୁ କିପରି ଅର୍ଥ କରିବେ ।

ସେତେବେଳେ ଶ୍ରୀମତୀ ଆନି ବେଶାନ୍ତ ଏଲାହାବାଦ ଆସୁଥିଲେ ଏବଂ ଥିଓଜଫି ବିଷୟରେ କେତେକ ବକ୍ତୃତା ଦେଉଥିଲେ । ତାଙ୍କର ବକ୍ତୃତାରେ ମୁଁ ଗଭୀର ଭାବରେ ମଗ୍ନ ହୋଇ ଯାଇଥିଲି । ତାଙ୍କ ବକ୍ତୃତା ଶୁଣି ଫେରିଲା ପରେ ମୁଁ ଆବିଷ୍ଟ ହୋଇଯାଏ, ସ୍ୱପ୍ନ ଦେଖିଲା ପରି ମନେ ହୁଏ । ମୋର ବୟସ ସେତେବେଳେ ମୋଟେ ୧୩ ବର୍ଷ ହୋଇଥିଲେ ସୁଦ୍ଧା ମୁଁ ଥିଓଜଫିକାଲ ସୋସାଇଟିରେ ଯୋଗ ଦେବା ଲାଗି ସ୍ଥିର କରିଥିଲି । ମୁଁ ଯେତେବେଳେ ବାପାଙ୍କର ଅନୁମତି ଚାହିଁଲି ସେ ହସି ହସି ମୋତେ ଅନୁମତି ଦେଇଥିଲେ । ସେ ଏଥିପ୍ରତି କୌଣସି ପ୍ରକାର ଗୁରୁତ୍ୱ ଦେଲା ପରି ମନେ ହେଲା ନାହିଁ । ତାଙ୍କର ଏପରି ଭାବ ଦେଖି ମୋ ମନରେ ଟିକିଏ ଆଘାତ ଲାଗିଥିଲା । ପ୍ରକୃତରେ ଦେଖିବାକୁ ଗଲେ, ସେ ଜଣେ ପୁରାତନ ଥିଓଜଫିଷ୍ଟ ଥିଲେ । ମାଡାମ୍ ବ୍ଲାଭାସ୍କି ଯେତେବେଳେ ଭାରତକୁ ଆସିଥିଲେ, ସେତେବେଳେ ପ୍ରଥମ ଅବସ୍ଥାରେ ସେ ଏଥିରେ ଯୋଗ ଦେଇଥିଲେ । ବୋଧହୁଏ ଗୋଟାଏ ଉତ୍ସୁକ ଭାବ ହେତୁ ଧର୍ମ ଅପେକ୍ଷା ଏଥିରେ ସେ ଆକୃଷ୍ଟ ହୋଇ ଯୋଗ ଦେଇଥିଲେ ଏବଂ ଅଳ୍ପଦିନ ପରେ ଏହାକୁ ଛାଡ଼ି ଦେଲେ । ମାତ୍ର ତାଙ୍କର କେତେକ ବନ୍ଧୁ, ଯେଉଁମାନେ ତାଙ୍କ ସହିତ ଏଥିରେ ଯୋଗ ଦେଇଥିଲେ, ସେମାନେ ସମ୍ପର୍କ ରଖିଥିଲେ ଓ ସୋସାଇଟିର ଧାର୍ମିକ ପନ୍ଥାରେ ଖୁବ୍ ଉଚ୍ଚ ପାହାଚକୁ ଉଠିଥିଲେ ।

ଏହିପରି ଭାବରେ ୧୩ ବର୍ଷ ବୟସବେଳେ ମୁଁ ଥିଓଜଫିକାଲ ସୋସାଇଟିର ସଭ୍ୟ ହେଲି । ମୋର ପ୍ରବେଶଉତ୍ସବ ନିଜେ ଶ୍ରୀମତୀ ବେଶାନ୍ତ

ଥିଲେ । ସେ କେତେକ ସତ୍ ଉପଦେଶ ଓ ପରାମର୍ଶ ଦେଲେ । [illegible] ଅଦ୍ଭୁତ ଚିହ୍ନ ଖୁବ ସମ୍ଭବତଃ ଭ୍ରାତୃଭାବ ବିଷୟରେ ସଙ୍କେତ ଦେଲେ । ମୁଁ ଚମତ୍କୃତ ହୋଇଗଲି । ମୁଁ ବେନାରସରେ ଥିଓସଫିକାଲ କନ୍‌ଭେନ୍‌ସନରେ ଯୋଗ ଦେଲି ଏବଂ କର୍ଣ୍ଣେଲ ଓଲକଟଙ୍କୁ ତାଙ୍କର ସୁନ୍ଦର ଦାଢ଼ି ସହ ଦେଖିଥିଲି ।

ପ୍ରାୟ ୩୦ ବର୍ଷ ତଳେ ନିଜ ପିଲାବେଳେ ଜଣେ କିପରି ଥିଲା ବା ଅନୁଭବ କରୁଥିଲା, ଏହା ଏବେ ବୋଧ କରିବା କଷ୍ଟକର । କିନ୍ତୁ ମୋର ଗୋଟାଏ ଦୃଢ଼ ଧାରଣା ଅଛି ଯେ, ମୁଁ ସେହି ଥିଓସଫିଷ୍ଟ ହୋଇଥିବା ବେଳେ ସମୟସମୟରେ ଗୋଟାଏ ପ୍ରକାର ଅବୋଧ ଦୃଷ୍ଟି ରେ ଅନାଉଥିଲି । ଏହି ଦୟା ଭାବର ଚିହ୍ନ । ଅନେକ ସମୟରେ ଥିଓସଫିଷ୍ଟ ନରନାରୀଙ୍କ ଭିତରେ ଏପରି ଦେଖାଯାଏ । ମୁଁ ଅପେ ଆପେ ସନ୍ତୁଷ୍ଟ ହୋଇଥିଲି ଓ ମୁକ୍ତି ପାଇଥିବା ଲୋକମାନଙ୍କ ଭିତରୁ ଜଣେ ବୋଲି ନିଜକୁ ମଣୁଥିଲି । ମୋଟ ଉପରେ ମୋ ବୟସର କୌଣସି ପୁଅ ଓ ଝିଅଙ୍କର ମୁଁ ନିଶ୍ଚୟ ଜଣେ ଅବାଞ୍ଛନୀୟ ସାଥି ପରି ହୋଇଥିବି ।

ଏଫ: ଟି: ବୃକ୍‌ସ ମୋତେ ଛାଡ଼ି ଯିବାର ଅଳ୍ପ କେତେ ଦିନ ପରେ ମୁଁ ଥିଓସଫିର ସମ୍ପର୍କ ତ୍ୟାଗ କଲି ଏବଂ ଖୁବ ଅଳ୍ପ ଦିନ ପରେ ମୋ ଜୀବନରୁ ସମ୍ପୂର୍ଣ୍ଣରୂପେ ଥିଓସଫିର ପ୍ରଭାବ ଚାଲିଗଲା । ମୁଁ ଇଂଲଣ୍ଡରେ ପଢ଼ିବାକୁ ଯିବା ହେତୁରୁ କେତେକାଂଶରେ ଏହା ହେଲା । କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ, ଏଫ: ଟି: ବୃକ୍‌ସଙ୍କ ସହିତ ମୁଁ ଯେଉଁ କେତେ ବର୍ଷ ରହିଥିଲି, ତାହା ମୋ ମନରେ ଏକ ଗଭୀର ଭାବ ସୃଷ୍ଟି କରିଥିଲା । ମୁଁ ତାଙ୍କଠାରେ ଓ ଥିଓସଫିଠାରେ ଋଣୀ ବୋଲି ମନେ କରେ । ମାତ୍ର ମୋର ଆଶଙ୍କା ଯେ, ସେହି ଦିନଠାରୁ ଥିଓସଫିଷ୍ଟମାନେ ମୋ ଦୃଷ୍ଟିରେ ବହୁତ ତଳେ ପଡ଼ିଛନ୍ତି । ସେମାନେ କେତେକ ବଛା ବଛା ଲୋକ ହେବା ଭୁଲରେ ଥାଉ ଆଜିକାଲି ଅତି ସାଧାରଣ ଲୋକପରି ମନେ ହେଉଛନ୍ତି । କୌଣସି ବିପଦ ବରଣ କରିବା ଅପେକ୍ଷା ନିରାପଦ ଭାବ ସେମାନେ ପସନ୍ଦ କରୁଛନ୍ତି । କୌଣସି କାର୍ଯ୍ୟ କରି ଶହୀଦ ହେବା ଅପେକ୍ଷା ନିରାପଦ

କାର୍ଯ୍ୟ କରିବାକୁ ପସନ୍ଦ କରୁଛନ୍ତି । ମାତ୍ର ଶ୍ରୀମତୀ ବେଶାନ୍ତଙ୍କୁ ମୁଁ ଖୁବ୍ ପ୍ରଶଂସା କରେ ।

ଆଉ ଗୋଟିଏ ବଡ଼ ଘଟଣା ମୋ ମନକୁ ସ୍ପର୍ଶ କରିଥିଲା । ସେ ହେଉଛି ରୁଷ-ଜାପାନ ଯୁଦ୍ଧ । ଜାପାନୀମାନଙ୍କର ବିଜୟ ମୋତେ ଉତ୍ସାହିତ କରୁଥିଲା ଏବଂ ପ୍ରତିଦିନ ନୂତନ ସମ୍ବାଦ ପାଇବା ନିମନ୍ତେ ମୁଁ ଆଗ୍ରହର ସହିତ ଖବରକାଗଜକୁ ଚାହିଁ ରହୁଥିଲି । ମୁଁ ଜାପାନ ସମ୍ବନ୍ଧରେ ଅନେକ ବହି କିଣିଲି ଏବଂ ସେଥିରୁ କେତେକ ପଢ଼ିବା ଲାଗି ଚେଷ୍ଟା କଲି । ଜାପାନ ଇତିହାସ ପଢ଼ି ମୁଁ ପ୍ରାୟ ଆତ୍ମହରା ହୋଇ ଯାଉଥିଲି; ମାତ୍ର ସୁନ୍ଦର ଜାପାନୀ ଗଳ୍ପ ଏବଂ ଲଫକାଡ୍ରିଓ ହାର୍ଣ୍ଣଙ୍କ ସୁନ୍ଦର ଗଦ୍ୟ ମୁଁ ବେଶି ପସନ୍ଦ କରୁଥିଲି ।

ଜାତୀୟ ଭାବ ମୋ ମନରେ ଭରିଗଲା । ଇଉରୋପର କବଳରୁ ଭାରତର ଓ ଏସିଆର ସ୍ୱାଧୀନତା କଥା ମୁଁ ଚିନ୍ତା କରିବାକୁ ଲାଗିଲି । ମୁଁ କିପରି ସାହାସୀ କାର୍ଯ୍ୟ କରିବି, ହାତରେ ତରବାରୀ ଧରି ଭାରତ ଲାଗି ଲଢ଼ାଇ କରିବି ଓ ତାକୁ ସ୍ୱାଧୀନ କରିବାରେ ସାହାଯ୍ୟ କରିବି, ଏହି ସ୍ୱପ୍ନ ସବୁ ଦେଖିବାରେ ଲାଗିଲି ।

ମୋତେ ୧୪ ବର୍ଷ ହେଲା । ଆମ ଘରେ ଅନେକ ପରିବର୍ତ୍ତନ ଘଟୁଥାଏ । ମୋର ବଡ଼ ଭାଇ ସବୁ ନିଜେ ବ୍ୟବସାୟୀ ହୋଇଯିବାରୁ ଆମର ସାଧାରଣ ଘରକୁ ଛାଡ଼ି ସେମାନେ ଅଲଗା ହୋଇ ନିଜର ଘର ତିଆରି କରୁଥାନ୍ତି । ମୋ ମନରେ ନୂତନ ଚିନ୍ତା ଓ ଅସ୍ପଷ୍ଟ ଧାରଣା ସବୁ ଜାତ ହେଉଥାଏ । ସ୍ତ୍ରୀଲୋକଙ୍କ ବିଷୟରେ ଜାଣିବା ଲାଗି ଟିକିଏ ଆଗ୍ରହ ଜନ୍ମିଲା । ମୁଁ ପୁଅମାନଙ୍କ ସହ ମିଶିବାକୁ ପସନ୍ଦ କରୁଥିଲି ଏବଂ ଝିଅମାନଙ୍କ ସହ ମିଳାମିଶା କରିବାଟା ମୋର ମର୍ଯ୍ୟାଦା ହାନିକର କାର୍ଯ୍ୟ ହେବ ବୋଲି ବିଚାରୁଥିଲି । କାଶ୍ମୀରୀଙ୍କ ଭିତରେ ସୁନ୍ଦରୀ ବାଳିକା ଅଭାବ ନ ଥାନ୍ତି । କାଶ୍ମୀରୀମାନଙ୍କ ମେଳ କିମ୍ବା ଅନ୍ୟ କୌଣସିଠାରେ ବାଳିକାଙ୍କ ଚାହାଣି ବା ସ୍ପର୍ଶ ଅନୁଭବ କଲେ ମୁଁ ଚମକୃତ ହୋଇଯାଏ ।

୧୯୦୫ ମସିହା ମେ ମାସରେ ମୋର ୧୫ ବର୍ଷ ବୟସବେଳେ ଆମେ ଇଂଲଣ୍ଡ ଯାତ୍ରା କଲୁ । ବାପା, ମାଆ, ମୋ ସାନ ଭଉଣୀ ଓ ମୁଁ ସମସ୍ତେ ଏକା ସଙ୍ଗରେ ଗଲୁ ।

---

## ହାରୋ ଏବଂ କେମ୍‌ବ୍ରିଜ

ମେ ମାସର ଶେଷବେଳକୁ ଆମେ ଲଣ୍ଡନରେ ପହଞ୍ଚିଲୁ । ସୁଶିମାଠାରେ ଜାପାନୀମାନେ ସମୁଦ୍ରରେ ଜୟ ଲାଭ କରିଥିବା ସମ୍ବାଦ ଆମେ ଡୋଭରଠାରେ ପଢ଼ିଲୁ, ମୁଁ ଖୁବ ମନ ଫୁର୍ତ୍ତିରେ ଥାଏ । ଠିକ ତା ପରଦିନ ଡର୍ବୀ ଦିବସ ହୋଇଥାଏ ଏବଂ ଆମେ ଦୌଡ଼ ଦେଖିବାକୁ ଗଲୁ । ମୋର ମନେ ଅଛି, ଆମେ ଲଣ୍ଡନରେ ପହଞ୍ଚିବାର ଅଳ୍ପଦିନ ପରେ ଏମ୍. ଏ. ଆନସାରୀଙ୍କୁ ଭେଟିଲୁ । ସେ ସେତେବେଳେ ଖୁବ ଚାଲାକ ଓ ଚତୁର ଯୁବକ—ଚିକିତ୍ସା ବ୍ୟବସାୟରେ ତାଙ୍କର ନାମ ଡାକ ଥାଏ । ସେତେବେଳେ ଗୋଟିଏ ଲଣ୍ଡନ ହାସପାତାଳରେ ସେ ହାଉସ ସର୍ଜନ ଥାଆନ୍ତି ।

ମୋର ଭାଗ୍ୟକୁ ହାରୋରେ ସ୍ଥାନ ଖାଲି ଥିଲା; କାରଣ ମୋର ବୟସ ୧୫ ବର୍ଷ ହୋଇଥିଲା । ସେଠାରେ ସାଧାରଣତଃ ଯେଉଁ ବୟସରେ ପିଲାଙ୍କୁ ଗ୍ରହଣ କରନ୍ତି, ତାହାଠାରୁ ମୋର ବୟସ ଟିକିଏ ଅଧିକ ହୋଇଥାଏ । ଆମ ପରିବାର କଣ୍ଟିନେଣ୍ଟକୁ ଯାଇଥିଲେ ଏବଂ କେତେକ ମାସ ପରେ ସେମାନେ ଭାରତକୁ ଫେରି ଆସିଲେ ।

ମୁଁ ନିଜେ କେବେହେଁ ଏକୁଟିଆ ହୋଇ ଅପରିଚିତ ଲୋକଙ୍କ ସହିତ ନ ଥିଲି ଏବଂ ମୁଁ ଏକୁଟିଆ ଓ ଘରଛାଡ଼ି ଅସିଥିବାରୁ ଅଡ଼ୁଆ ବୋଧ କଲି ? ମାତ୍ର ଏହା ବେଶିଦିନ ରହିଲା ନାହିଁ । ସ୍କୁଲ ଜୀବନରେ ମୁଁ କେତେକ ପରିମାଣରେ ନିଜକୁ ଚଳାଇ ନେଲି । କାର୍ଯ୍ୟ ଏବଂ ଖେଳରେ ମାତିଗଲି । କେବେହେଁ ମୁଁ ଠିକ ବୋଧ କରୁ ନ ଥିଲି । ମୋର ସବୁବେଳେ

ଗୋଟାଏ ଭାବ ପୋଷଣ କରୁଥିଲି ଯେ, ମୁଁ ସେମାନଙ୍କ ଭିତରୁ ଜଣେ ନୁହେଁ ଏବଂ ଅନ୍ୟମାନେ ମୋ ବିଷୟରେ ସେହିପରି ଭାବୁଥିବେ । ଅନେକ ପରିମାଣରେ ମୋ କଥା ମୋ ଉପରେ ନିର୍ଭର କରୁଥିଲା । କିନ୍ତୁ ମୋଟାମୋଟି କୌଣସି କୁଣ୍ଠାବୋଧ ନ କରି ମୁଁ ସେମାନଙ୍କ ସହିତ ପୂର୍ଣ୍ଣମାତ୍ରାରେ ଖେଳରେ ଲାଗୁଥିଲି ଏବଂ ମୋର ବିଶ୍ୱାସ ମୁଁ ଯେ ଖେଳ ଛାଡ଼ିଲାବାଲା ନୁହେଁ, ଏହା ଜଣାପଡ଼ିଲା ।

ପ୍ରଥମେ ମୋର ଲାଟିନରେ ଅଳ୍ପ ଜ୍ଞାନ ଥିବାରୁ ମୋତେ ତଳ କ୍ଲାସରେ ରଖାଗଲା, ମାତ୍ର ମୁଁ ଶୀଘ୍ର ଉପରକୁ ଉଠିଲି । ସମ୍ଭବତଃ ଅନେକ ବିଷୟରେ ବିଶେଷତଃ ସାଧାରଣ ଜ୍ଞାନରେ ମୋ ବୟସର ଲୋକଙ୍କ ଅପେକ୍ଷା ମୁଁ ଆଗୁଆ ଥିଲି । ଅବଶ୍ୟ ମୁଁ ଅନେକ ବିଷୟରେ ଆଗ୍ରହ ଦେଖାଉଥିଲି ଏବଂ ମୋର ସାଥୀ ଛାତ୍ରମାନଙ୍କ ଅପେକ୍ଷା ମୁଁ ଖବର କାଗଜ ଓ ବହି ଅଧିକ ପଢ଼ୁଥିଲି । ମୋର ମନେ ଅଛି, ମୁଁ ବାପାଙ୍କୁ ଥରେ ଲେଖିଥିଲି, ଇଂରେଜ ବାଳକମାନେ କେଡ଼େ ନିର୍ବୋଧ—ସେମାନେ ଖେଳ ଛଡ଼ା ଆଉ କୌଣସି ବିଷୟ ଜାଣନ୍ତି ନାହିଁ । ମାତ୍ର ମୁଁ ଉପର କ୍ଲାସକୁ ଗଲା ପରେ କେତେକ ବ୍ୟତିକ୍ରମ ଗୋଟିଏ ଦୁଇଟି ବିଶେଷ ଛାତ୍ର ଦେଖିବାକୁ ପାଇଲି ।

ମୋର ଯେତେଦୂର ମନେ ଅଛି, ୧୯୦୫ ସାଲ ଶେଷବେଳକୁ ଯେଉଁ ସାଧାରଣ ନିର୍ବାଚନ ହୋଇଥିଲା ଏବଂ ଯେଉଁ ଥରେ ମାଦା [ଲିବରାଲ] ଦଳ ଜୟଲାଭ କଲେ, ତାହା ଖୁବ୍ ଆଗ୍ରହର ସହିତ ମୁଁ ଲକ୍ଷ କରୁଥିଲି । ୧୯୦୬ ମସିହାର ଆରମ୍ଭରେ ଆମ କ୍ଲାସ ମାଷ୍ଟର ଆମକୁ ନୂତନ ସରକାର ସମ୍ବନ୍ଧରେ ପ୍ରଶ୍ନ କଲେ ଏବଂ ତାଙ୍କର ବିସ୍ମୟ ଜାତ ହେଲା ଯେ, କ୍ଲାସର ସବୁ ପିଲାଙ୍କ ଭିତରେ କେବଳ ମୁଁ ଏ ସମ୍ବନ୍ଧରେ ତାଙ୍କୁ ବେଶୀ ସମ୍ବାଦ ଦେଇ ପାରିଥିଲି । କାମ୍ପବେଲ ବା ନର୍ମାନ୍ ମନ୍ତ୍ରୀମଣ୍ଡଳ ସଭ୍ୟମାନଙ୍କର ପୂରା ତାଲିକା ବି ଦେଇଥିଲି ।

ରାଜନୀତି ଛଡ଼ା ବ୍ୟୋମଯାନର ପ୍ରଗତି ସମ୍ବନ୍ଧରେ ମଧ୍ୟ ଲକ୍ଷ୍ୟ କରୁଥିଲି । ସେତେବେଳେ ରାଇଟ ଭାଇମାନଙ୍କ କଥା ଶୁଣାଯାଉଥାଏ ଏବଂ

ଷାଣ୍ଟୋଡ଼ ମୋଣ୍ଟ ବାହାରଥାନ୍ତି (ତାଙ୍କ ପରେ ଅଡଶାଗ୍ର ଫର୍ମାନ, ଲଥାମ୍ ଓ ବ୍ଲେର୍ଏଠ ବାହାରିଲେ) ଏବଂ ମୁଁ ମୋର ଉତ୍ସାହରେ ବାପାଙ୍କୁ ଲେଖିଥିଲି ଯେ, ସପ୍ତାହ ଶେଷରେ ଉଡ଼ାଜାହାଜରେ ଭାରତକୁ ଯାଇ ମୁଁ ତାଙ୍କ ସହିତ ସାକ୍ଷାତ କରିପାରିବ ।

ମୋ ପଢ଼ିଲାବେଳେ ସ୍କୁଲରେ ଚାରିଟି ଭାରତୀୟ ଛାତ୍ର ଥିଲେ । ଆମ ନିଜ ଗୃହ ଅର୍ଥାତ୍ ପ୍ରଧାନ ଶିକ୍ଷକଙ୍କ ଘର ଛଡ଼ା ଅନ୍ୟ ହୋଷ୍ଟେଲ-ଠାରେ ମୁଁ ସେମାନଙ୍କୁ ପ୍ରାୟ ଦେଖେ ନାହିଁ । ଆମ ସହିତ ବରୋଦା ଗାଇକୋବାଡ଼ଙ୍କର ଗୋଟିଏ ପୁଅ ଥିଲେ । ସେ ମୋଠାରୁ ଅନେକ ଉପର କ୍ଲାସରେ ପଢ଼ୁଥିଲେ ଏବଂ କ୍ରିକେଟ ଖେଳଯୋଗୁଁ ସେ ଛାତ୍ରଙ୍କ ଭିତରେ ଖୁବ ପ୍ରିୟ ଥିଲେ । ମୋ ପହଞ୍ଚିବା ଅଳ୍ପଦିନ ପରେ ସେ ସ୍କୁଲ ଛାଡ଼ିଲେ । କିଛିଦିନ ପରେ କପୁରଥଲା ମହାରାଜାଙ୍କ ବଡ଼ପୁଅ ପରମଜିତ୍ ସିଂହ ଆସି ପହଞ୍ଚିଲେ—ତାଙ୍କ ଟିକା ସାହେବ ବୋଲି କହୁନ୍ତି ! ସେ ଗୋଟିଏ ପୂରାପୂରି ଅଯୋଗ୍ୟଲୋକ ଥିଲେ—ବଡ଼ ଅସୁଖୀ ଥିଲେ ଏବଂ ଅନ୍ୟ ପିଲାମାନଙ୍କ ସହ ଆଦୌ ମିଶିପାରୁ ନ ଥିଲେ । ପିଲାମାନେ ତାଙ୍କ ଓ ତାଙ୍କ ଚାଲିଚଳନକୁ ଟାପରା କରୁଥିଲେ । ଏଥିରେ ସେ ଭାରି ଉତ୍ତ୍ୟକ୍ତ ହେଉଥିଲେ ଏବଂ ବେଳେବେଳେ ପିଲାମାନେ କପୁରଥଲା ଆସିଲେ ସେ କଣ କରିଦେବେ ବୋଲି ଧମକ ଦେଉଥାନ୍ତି । କହିବା ବାହୁଲ୍ୟ, ଏଥିରେ ତାଙ୍କର ଅବସ୍ଥା କିଛି ଭଲ ଆଡ଼କୁ ଆସିଲା ନାହିଁ । ସେ ପୂର୍ବରୁ ଫ୍ରାନ୍ସରେ କିଛିଦିନ ରହିଥିଲେ ଏବଂ ପରିଷ୍କାରରୂପେ ଫରାସି ଭାଷା କହିପାରୁଥିଲେ । ମାତ୍ର ଦୁଃଖର କଥା ଯେ, ଇଂରେଜ ସାଧାରଣ ସ୍କୁଲମାନଙ୍କରେ ବିଦେଶୀ ଭାଷା ଶିକ୍ଷାର ଏପରି ବନ୍ଦୋବସ୍ତ ଯେ, ଏହି ଭାଷା ଶିଖି ସୁଦ୍ଧା ଫରାସି କ୍ଲାସରେ ତାଙ୍କୁ ବିଶେଷ ସାହାଯ୍ୟ ମିଳି ନ ଥିଲା ।

ଦିନେ ଗୋଟିଏ ଅଦ୍ଭୁତ ଘଟଣା ଘଟିଲା । ଦିନେ ଅଧରାତିରେ ଆମର ଗୃହଶିକ୍ଷକ ହଠାତ୍ ଆମ ଘରେ ଆସି ପହଞ୍ଚିଲେ ଓ ସମସ୍ତ ଘର ଖାନତଲାସ କଲେ । ଆମେ ଶୁଣିଲୁ ଯେ, ପରମଜିତ୍ ସିଂହଙ୍କର ଗୋଟିଏ

ସ୍ୱର୍ଣ୍ଣଖଚିତ ସୁନ୍ଦର ବେତ ହୁଏଥିଲା । ଖାନଙ୍ଗଲ୍‌ସରେ କିଛି ବାହାରିଲା ନାହିଁ । ପ୍ରାୟ ତିନିଦିନ ପରେ ଏଟନ୍ ଓ ହାରୋଙ୍କର ଲର୍ଡ଼ସ୍‌ରେ ଖେଳ ହେଲା ଏବଂ ତାହାର ଅଳ୍ପଦିନ ପରେ ପରମଜିତଙ୍କ ନିଜ ଘରୁ ବେତ ବାହାରିଲା । ବୋଧହୁଏ ଲର୍ଡ଼ସ୍‌ରେ ଏହାକୁ କେହି ବ୍ୟବହାର କରି ତାପରେ ଫେରାଇ ଦେଇଯାଇଛି ।

ଆମ ଘର ଓ ଅନ୍ୟ ଘରମାନଙ୍କରେ କେତେକ ଇହୁଦୀ ଥିଲେ । ସେମାନେ ବେଶ୍ ମିଳିମିଶି ଚଳୁଥିଲେ; ମାତ୍ର ସର୍ବଦା ସେମାନଙ୍କ ବିରୁଦ୍ଧ ଭାବ (Anti semite) ଥିଲା । ସେମାନଙ୍କୁ ଘୃଣିତ ଇହୁଦୀ ବୋଲି କୁହାଯାଉଥିଲା ଏବଂ ଅଜ୍ଞାତ ଭାବରେ ସେମାନଙ୍କ ପ୍ରତି ଏପରି ଭାବ ହେବା ଠିକ୍ ବୋଲି ମୁଁ ଭାବିବାକୁ ଲାଗିଲି; ମୁଁ ପ୍ରକୃତରେ ସେମାନଙ୍କ ବିରୁଦ୍ଧ ହେବାକୁ ଲାଗିଲି ଏବଂ ପରେ ମୋର ଅନେକ ଇହୁଦୀ ବନ୍ଧୁ ଥିଲେ ।

ମୁଁ ହାରୋରେ ଚଳିଗଲି ଏବଂ ସେ ସ୍ଥାନକୁ ଭଲ ପାଇବାକୁ ଲାଗିଲି ତଥାପି ମୋର କ୍ରମଶଃ ମନେହେଲା ଯେ, ହାରୋରେ ପଢ଼ିବା ବୟସ ଅପେକ୍ଷା ମୁଁ ବଡ଼ ହୋଇଗଲିଣି । ବିଶ୍ୱବିଦ୍ୟାଳୟ ପ୍ରତି ମୁଁ ଆକୃଷ୍ଟ ହେଲି । ୧୯୦୬ ଓ ୧୯୦୭ ସାଲରେ ଭାରତରୁ ସମ୍ବାଦ ପାଇ କିଛିଏ ଉତ୍ତେଜିତ ହେଉଥିଲି । ଇଂରେଜୀ କାଗଜମାନଙ୍କରୁ ମୁଁ ଖୁବ୍ କମ୍ ଖବର ପାଉଥାଏ; ମାତ୍ର ସେହି ଟିକିଟିକି ସମ୍ବାଦରୁ ଜଣା ପଡୁଥାଏ ଯେ, ଭାରତରେ ବଙ୍ଗଳା, ପଞ୍ଜାବ ଓ ମହାରାଷ୍ଟ୍ରରେ ବହୁତ ବଡ଼ ବଡ଼ ଘଟଣା ଘଟୁଛି । ଲାଲା ଲଜପତରାୟ ଓ ସର୍ଦ୍ଦାର ଅଜିତ୍ ସିଂହଙ୍କୁ ଦେଶାନ୍ତର କରା ଯାଇଥିଲା । ବଙ୍ଗଳାରେ ଗୋଟାଏ ହଲଚଲ ପଡ଼ିଥିଲା ପରି ବୋଧ ହେଉଥିଲା । ପୁନାର ତିଲକଙ୍କ ସମ୍ବନ୍ଧରେ ଅନେକ ସମୟରେ ଖବର ଆସୁଥିଲା; ସ୍ୱଦେଶୀ ଓ ବର୍ଜନ ଆନ୍ଦୋଳନ ଚାଲିଥାଏ । ଏ ସବୁ ମୋ ମନରେ ଖୁବ୍ ଚାଞ୍ଚଲ୍ୟ ସୃଷ୍ଟି କଲା; ମାତ୍ର ଏ ସମ୍ବନ୍ଧରେ ମୁଁ ହାରୋରେ କାହା ସହିତ କିଛି କଥାବାର୍ତ୍ତା କରିବି, ଏପରି କେହି ନ ଥିଲେ । ଛୁଟିଦିନରେ ମୋ ଭାଇ ଓ ଅନ୍ୟାନ୍ୟ ଭାରତୀୟ ବନ୍ଧୁମାନଙ୍କ ସହିତ ଭେଟ ହୁଏ, ସେତେବେଳେ ମୋର ମନ କିଛିଏ ଖୋଲିବାର ସୁବିଧା ପାଏ ।

ସ୍କୁଲରେ ଭଲ କାର୍ଯ୍ୟ ଯୋଗୁଁ ମୁଁ ଜି ଏମ୍ ଟ୍ରେଭେଲ୍ୟନ୍ଙ୍କର ଗାରିବାଲ୍ଡି ବହିସବୁ ପୁରସ୍କାର ରୂପେ ପାଇଥିଲି । ଏଥିରେ ମୁଁ ମୁଗ୍ଧ ହୋଇଥିଲି । ଅତି ଶୀଘ୍ର ଏହାଙ୍କର ଅନ୍ୟ ଦୁଇଟି ବହି ମୁଁ କିଣିଥିଲି ଏବଂ ସମଗ୍ର ଗାରିବାଲ୍ଡି ଗଳ୍ପ ଯତ୍ନ ସହିତ ପଢ଼ିଥିଲି । ଇଟାଲୀରେ ସେହିପରି ଘଟଣା ସ୍ୱାଧୀନତା ଲାଗି ଭାରତର ଓ ମୁକ୍ତିର ଦୃଶ୍ୟ ମୋ ମନରେ ନାଚି ଉଠିଲା ଏବଂ ଇଟାଲୀ ଓ ଭାରତ ଅଦ୍ଭୁତ ଭାବରେ ମୋ ମନରେ ମିଶିଗଲା । ଏସବୁ ବିଷୟରେ ବେଶି ଜାଣିବା ଲାଗି ହାରୋ ଗୋଟିଏ ଛୋଟ ଓ ସୀମାବଦ୍ଧ ସ୍ଥାନ ଥିଲା ଏବଂ ବିଶ୍ୱ ବିଦ୍ୟାଳୟର ଉନ୍ମୁକ୍ତ ବାୟୁମଣ୍ଡଳକୁ ମୁଁ ଯିବାକୁ ଚାହୁଁଥିଲି । ମୁଁ ବାପାଙ୍କୁ ଏହି ପ୍ରସ୍ତାବରେ ରାଜି କରାଇଲି ଏବଂ ପ୍ରାୟ ଦୁଇ ବର୍ଷ ରହିଲା ପରେ ହାରୋ ଛାଡ଼ିଲି । ସେଠାରେ ସାଧାରଣତଃ ଯେତେ ସମୟ ରହିବାର କଥା, ତାହାଠାରୁ ଏହା କମ୍ ।

ମୁଁ ନିଜେ ଚାହିଁବାରୁ ହାରୋ ଛାଡ଼ିଲି । ଆଜି ମୋର ବେଶ୍ ମନେ ଅଛି, ଯେତେବେଳେ ପ୍ରକୃତରେ ମୋତେ ସେ ସ୍ଥାନ ଛାଡ଼ିବାକୁ ପଡ଼ିଲା ସେତେବେଳେ ମୁଁ ବଡ଼ ଅସୁଖୀ ହେଲି ଏବଂ ମୋ ଆଖିରୁ ଲୁହ ଗଡ଼ିଲା । ସେ ସ୍ଥାନପ୍ରତି ମୋର ମମତା ଜନ୍ମିଥିଲା ଏବଂ ସେ ସ୍ଥାନ ଛାଡ଼ିବା ଦ୍ୱାରା ମୋ ଜୀବନର ଏକ ଅଧ୍ୟାୟ ଶେଷ ହେଲା । ତଥାପି ମୁଁ ପ୍ରକୃତରେ ହାରୋ ଛାଡ଼ି କେତେ ଦୁଃଖିତ ହୋଇଥିଲି ଚିନ୍ତାକରେ । ହାରୋରେ ପରମ୍ପରାଗତ ଗୀତ ଓ ଗାଥା ସହିତ ମୋର ପ୍ରାଣଗତ ଯୋଗ ସ୍ଥାପିତ ହୋଇଥିଲା ସୁତରାଂ ସେଥିଲାଗି ଦୁଃଖ ହେବା ସ୍ୱାଭାବିକ ।

୧୯୦୭ ମସିହା ଅକ୍ଟୋବର ମାସ ପ୍ରଥମରେ ମୁଁ କେମ୍ବ୍ରିଜର ଟ୍ରିନିଟି କଲେଜରେ ଭର୍ତ୍ତି ହେଲି । ସେତେବେଳକୁ ମୋର ବୟସ ୧୭ ବର୍ଷ ଅର୍ଥାତ୍ ୧୮ ବର୍ଷର ପାଖାପାଖି ହୋଇଥାଏ । ମୁଁ ଏକ ଅଣ୍ଡର ଗ୍ରାଜୁଏଟ ହୋଇଛି ଭାବି ଟିକିଏ ଗର୍ବ ଅନୁଭବ କରୁଥିଲି । ସ୍କୁଲ ଅପେକ୍ଷା

ଅଧିକ ସ୍ୱାଧୀନତା ପାଇଲି ଏବଂ ମୁଁ ଯାହା ଇଚ୍ଛା କରୁଥିଲି, ତାହା କରିପାରୁଥିଲି । ମୋର ବାଲ୍ୟକାଳ ବନ୍ଧନରୁ ମୁକ୍ତ ହୋଇଥିଲି ଏବଂ ଗୋଟିଏ ଯୁବକ ବୋଲି ନିଜକୁ ଦାବୀ କରିପାରୁଥିଲି । ଟିକିଏ ଆତ୍ମଶ୍ଳାଘା ମଧ୍ୟ ମୋର ହୋଇଥିଲା । ମୁଁ ବଡ଼ ବଡ଼ କଲେଜ ଓ କେମ୍ବ୍ରିଜର ଅଣଓସାରିଆ ଗଳିମାନଙ୍କରେ ବୁଲୁଥିଲି । ବେଳେ ବେଳେ ପରିଚିତ ଲୋକଙ୍କୁ ଦେଖିଲେ ମନ ଖୁସି ହେଉଥିଲା ।

ମୁଁ କେମ୍ବ୍ରିଜରେ ତିନି ବର୍ଷ ରହିଥିଲି । ଏହି ତିନି ବର୍ଷ ବେଶ୍ ନୀରବରେ କିଛି ଗୋଲମାଳ ନ ହୋଇ କଟିଗଲା ଏବଂ ଜଣେ ଅଳସୁଆ କେମ୍ବ୍ରିଜ ଛାତ୍ରପରି ମୁଁ ଦିନ କଟାଉଥିଲି । ସେ ବର୍ଷଗୁଡ଼ିକ ଖୁବ୍ ଆନନ୍ଦରେ କଟିଯାଇଥିଲା ଅନେକ ସାଥୀ ଥିଲେ । କିଛି କାର୍ଯ୍ୟ ହେଉଥିଲା, ଖେଳ ବି ଚାଲିଥିଲା ଏବଂ କ୍ରମେ ଜ୍ଞାନର ପରିସର ମଧ୍ୟ ବଢ଼ି ଚାଲିଥିଲା । ମୁଁ ପ୍ରକୃତି ବିଜ୍ଞାନ ନେଇଥିଲି । କେମିଷ୍ଟ୍ରି, ଜିଓଲଜି ଓ ଉଦ୍ଭିଦବିଦ୍ୟା ମୋର ପଠନ ବିଷୟ ଥିଲା; ମାତ୍ର ମୋର ମନ ଏତିକିରେ ସୀମାବଦ୍ଧ ନ ଥିଲା । କେମ୍ବ୍ରିଜରେ କିମ୍ବା ଛୁଟି ସମୟରେ ଅନେକ ପିଲାଙ୍କ ସହିତ ଲଣ୍ଡନ କିମ୍ବା ଅନ୍ୟ ସ୍ଥାନରେ ମୋର ଭେଟ ହୁଏ ; ସେମାନେ ପୁସ୍ତକ, ସାହିତ୍ୟ, ରାଜନୀତି, ଅର୍ଥନୀତି ଆଦି ନାନା ବିଷୟରେ କଥାବାର୍ତ୍ତା କରନ୍ତି । ଏହି ସବୁ କଥାବାର୍ତ୍ତା ଶୁଣି ପ୍ରଥମେ ମୋତେ ସବୁ ଗୋଟାଏ ସମୁଦ୍ର ପରି ମନେ ହେଉଥିଲା; କିନ୍ତୁ ମୁଁ କେତେକ ବହି ପଢ଼ିଲି । ଅଳ୍ପ ଦିନ ପରେ ଏହାର ସ୍ୱାଦ ପାଇଲି । ଅନ୍ତତଃ ମୋର ମାନ ରକ୍ଷା କରିପାରିଲି । କୌଣସି ସାଧାରଣ ବିଷୟରେ କଥାବାର୍ତ୍ତା ଚାଲିଥିଲା ବେଳେ ମୁଁ କେବେହେଁ ବେଶୀ ଅଜ୍ଞାନ ପରି ଜଣା ପଡ଼େ ନାହିଁ । ସୁତରାଂ ଆମେମାନେ ସେ [ସେତେବେଳେ ସେ କେମ୍ବ୍ରିଜରେ ଥିଲେ] ଓ ବର୍ଣ୍ଣାଡ଼ ଶ'ଙ୍କର ମୁଖବନ୍ଧ ଏବଂ ଲୋଏ ଡ଼ିକିନ୍‌ସନ୍‌ଙ୍କ ସଦ୍ୟ ପ୍ରକାଶିତ ପୁସ୍ତକ ସମ୍ବନ୍ଧରେ ଆଲୋଚନା କରୁଥିଲୁଁ । ଆମେ ସବୁ ନିଜକୁ ଖୁବ କୁଟିଳ ବୋଲି ବିଚାରୁଥିଲୁ ଏବଂ ଟିକିଏ ଉନ୍ନତ ଭାବରେ ଜନନେନ୍ଦ୍ରିୟ ଓ ନୈତିକତା ସମ୍ବନ୍ଧରେ କଥାବାର୍ତ୍ତା କରୁଥିଲୁଁ । ବେଳେ ବେଳେ ଇଭାନବ୍ଲକ୍, ହ ଭାରକ୍ ଏଲିସ୍, କ୍ରାଫଟ

ଏବଙ୍ଗ୍ କମ୍ପା ଅଟୋ ର୍ଓ୍ୟନାଣ୍ଟର କଥା ଉଲ୍ଲେଖ କରୁଥିଲେ । ଆମେ ବୁଝୁଥିଲୁ ଯେ, ଏ ତଥ୍ୟ ସମ୍ବନ୍ଧରେ ଜଣେ ବିଶେଷଜ୍ଞ ଯେପରି ଜାଣିବାର କଥା, ଆମେ ମଧ୍ୟ ସେତିକି ଜାଣିଥିଲୁ ।

ପ୍ରକୃତରେ କହିବାକୁ ଗଲେ ଆମେ ଏଠି ବଡ଼ କଥା କହିବା ସତ୍ତ୍ୱେ ବି ଆମ ଭିତରୁ ଅନେକ ଇନ୍ଦ୍ରିୟ ସମ୍ବନ୍ଧରେ କଥାବାର୍ତ୍ତା ବେଳେ ବିକଏ ଭୀରୁ ହେଉଁ । ଅନ୍ତତଃ ମୁଁ ସେପରି ଥିଲି ଏବଂ ମୁଁ କୈଶୋର ଛାଡ଼ିବାର ଅନେକ ଦିନ ପର୍ଯ୍ୟନ୍ତ ଏ ସମ୍ବନ୍ଧରେ କେବଳ ତତ୍ତ୍ୱରେ ସୀମାବଦ୍ଧ ଥିଲି । ଏହା କାହିଁକି ଏପରି ହୋଇଥିଲା, କହିବା ବିକଏ କଷ୍ଟକର । ଆମ ଭିତରୁ ଅନେକ ଇନ୍ଦ୍ରିୟ ଦ୍ୱାରା ଆକୃଷ୍ଟ ହେଉଥିଲେ ଏବଂ ଏଥିରେ କିଛି ପାପ ଆମ ଭିତରୁ କାହାର ମନରେ ଥିଲା ବୋଲି ମୋର ସନ୍ଦେହ ହେଉଛି । ମୋର ତ ନିଶ୍ଚୟ ସେପରି କିଛି ଭାବ ନ ଥିଲା; କୌଣସି ଧାର୍ମିକ ସଂଯମ କଥା ବି ନ ଥିଲା । ଆମେ ଏହା ନୈତିକ ବା ଅନୈତିକ ନୁହେଁ ବୋଲି କହୁଥିଲେ । ତଥାପି ଏ ସବୁ ସତ୍ତ୍ୱେ ବି କପରି ଗୋଟିଏ ପରମ ଭାବ ମୋତେ ସେଥିରୁ ଅଲଗା ରଖିଥିଲା ଏବଂ ସାଧାରଣତଃ ଯେଉଁ ସବୁ ପନ୍ଥା ଗ୍ରହଣ କରାଯାଏ, ସେଥି ପ୍ରତି ମୋର ଆଶଙ୍କା ଜନ୍ମିଥିଲା । କାରଣ ସେତେବେଳେ ମୁଁ ଏକ ଲଜ୍ଜାଶୀଳ ବାଳକ ଥିଲି । ବୋଧହୁଏ ମୁଁ ପିଲାଦିନେ ଏକୁଟିଆ ରହିଥିବାରୁ ଏପରି ହୋଇଥିଲି ।

ଜୀବନ ପ୍ରତି ମୋର ସାଧାରଣ ଭାବ ସେତେବେଳେ ଏକ ଅସ୍ପଷ୍ଟ ଧରଣର ଥିଲା । ଯୁବକ ପକ୍ଷରେ ଏହା ହେବା ସ୍ୱାଭାବିକ ଏବଂ ଆଂଶିକ ଭାବରେ ଓସ୍କାର ଓ୍ୟାଇଲ୍ଡ୍ ଓ ଓ୍ୟାଲ୍ଟର ପାଟରଙ୍କ ପ୍ରଭାବ ଯୋଗୁଁ ଏପରି ହୋଇଥିଲା । ଗୋଟିଏ କୋମଳ ଜୀବନ ଓ ଆନନ୍ଦଦାୟକ ଅନୁଭୂତିକୁ ଏପରି ଲମ୍ବା ଗ୍ରୀକ୍ ନାମରେ ଡାକିବା ବେଶ୍ ସହଜ ଓ ତୃପ୍ତିପ୍ରଦ । କିନ୍ତୁ ତାହା ଅପେକ୍ଷା ଏଥିରେ ଆଉ କିଛି ଥିଲା—କାରଣ ମୁଁ ବିଶେଷ ଭାବରେ ବିଳାସୀ ଜୀବନ ପ୍ରତି ଆକୃଷ୍ଟ ହେଉ ନ ଥିଲି । ଧାର୍ମିକ ମନୋଭାବ ନ ଥିବାରୁ ଏବଂ ଧର୍ମର ଅତ୍ୟାଚାର ଯୋଗୁଁ

ସେଥିପ୍ରତି ବୀତସ୍ପୃହ ହୋଇଥିବାରୁ ଅନ୍ୟ କୌଣସି ଅନୁସନ୍ଧାନରେ ମୁଁ ଥିବା ସ୍ୱାଭାବିକ । ମୁଁ ଟିକିଏ ଉପଟୋଉଡ଼ିଆ ଏବଂ କୌଣସି ବିଷୟରେ ଭିତରକୁ ପଶି ନ ଥିଲି । ତେଣୁ ଜୀବନର ସୌନ୍ଦର୍ଯ୍ୟ ସହାନୁଭୂତିଶୀଳ ମୋତେ ଭଲ ଲାଗୁଥିଲା । ଜୀବନକୁ ଅମୂଲ୍ୟ ଭାବରେ କଟାଇ ଅଳ୍ପ କାମରେ ଦିନ ନ କଟାଇ ଅଧିକ ଜୀବନ୍ତ କରିବା ଲାଗି ଏବଂ ନାନା କାର୍ଯ୍ୟରେ ନିମଗ୍ନ ରହିବା ଲାଗି ମୁଁ ଆକୃଷ୍ଟ ହେଉଥିଲି । ମୁଁ ଜୀବନକୁ ଉପଭୋଗ କଲି ଏବଂ ଏହାକୁ ଏକ ପାପ ଜିନିଷ ବୋଲି ଭାବିବାକୁ ମୁଁ ରାଜି ନ ଥିଲି । ଏହା ସଙ୍ଗେ ସଙ୍ଗେ ଗୋଟିଏ ବିପଦ ବରଣ କରିବା ଏବଂ ଦୁଃସାହସ କାର୍ଯ୍ୟ କରିବାକୁ ମୋତେ ଆନନ୍ଦ ଲାଗୁଥିଲା । ମୁଁ ସର୍ବଦା ମୋର ବାପାଙ୍କ ପରି ଏକ ଜୁଆଖେଳାଳୀ ଥିଲି । ପ୍ରଥମେ ଟଙ୍କାରେ ଖେଳୁଥିଲି, ପରେ ବଡ଼ ବଡ଼ ଜିନିଷରେ, ଜୀବନର ବଡ଼ ବଡ଼ ସମସ୍ୟାରେ ଖେଳିବାରେ ଲାଗିଲି । ୧୯୦୭ ଓ ୧୯୦୮ ମସିହାରେ ଭାରତୀୟ ରାଜନୀତି ଏକ ଉନ୍ନତ ଅବସ୍ଥାରେ ଥିଲା ଏବଂ ମୁଁ ସେଥିରେ ଏକ ସାହସୀ ଲୋକ ପରି ଭାଗ ନେବାକୁ ଇଚ୍ଛା କରିଥିଲି । ଏହା ସୁଖୀ ଓ ବିଳାସୀ ଜୀବନ ପ୍ରତି ଅନୁରାଗର ଚିହ୍ନ ନୁହେଁ । ଏହି ସବୁ ମିଶ୍ରିତ ଏବଂ ସାମର୍ଥ୍ୟକ ବିରୁଦ୍ଧ ଆକାଂକ୍ଷା ସବୁ ମୋ ମନ ଭିତରେ ଗୋଟିଏ ଗୋଳଘାଣ୍ଟ ସୃଷ୍ଟି କରିଥିଲା । ଏହା ଅତ୍ୟନ୍ତ ଅସ୍ପଷ୍ଟ ଓ ଗୋଳମାଳିଆ ରୂପେ ଥିଲା; ତଥାପି ମୁଁ ସେଥିପାଇଁ ବ୍ୟସ୍ତ ହୋଇ ନ ଥିଲି—କାରଣ କୌଣସି କାର୍ଯ୍ୟ ସମ୍ବନ୍ଧରେ ମୋ ପକ୍ଷରେ ନିଷ୍ପତ୍ତିରେ ପହଞ୍ଚିବାକୁ ଆହୁରି ଅନେକ ଦିନ ବାକି ଥିଲା । ଏଥି ଭିତରେ ଜୀବନ, ଶାରୀରିକ ଓ ମାନସିକ ଉଭୟ ଦିଗରେ ବେଶ୍ ସୁଖରେ ଥିଲା । ମୋ ଆଗରେ ନୂତନ କଥା ସବୁ ଆସୁଥାଏ । ଏତେ କଥା କରିବାର ଅଛି; ଏତେ ଦେଖିବାର ଜିନିଷ ଅଛି ଏବଂ ଏତେ ନୂଆ ନୂଆ କଥା ଆବିଷ୍କାର କରିବାର ଅଛି; ଲାଗୁଥାଏ । ଖୁବ ଜାଡ଼ଦିନେ ସନ୍ଧ୍ୟାବେଳେ ଆମେ ସବୁ ନିଆଁ ପାଖରେ ବସି ଅନେକ ରାତି ପର୍ଯ୍ୟନ୍ତ ଅସରନ୍ତି ଗପ କରୁଥିବୁ; ଆଲୋଚନା କରୁଥିବୁ । ଶେଷକୁ ନିଆଁ ଲିଭିଯାଇ ଆମେ ଯେତେବେଳେ ଶୀତରେ ଥରିଯାଉଁ; ସେତେବେଳ ଥରି ଥରି

ବନ୍ଧଣାକୁ ପଳାଉ । ବେଳେବେଳେ ଆମର ଆଲୋଚନାବେଳେ ଆମର ସ୍ୱର ତାର ସାଧାରଣ ଶବ୍ଦ ହରାଏ ଏବଂ କୌଣସି ଉତ୍ସାହଜନକ ଆଲୋଚନାରେ ଉତ୍ତେଜିତ ହୋଇ ସ୍ୱର ବହୁତ ଉଚ୍ଚ ବି ହୋଇଯାଏ । ମାତ୍ର ଏହା ସବୁ କେବଳ କଥାର କଥା ପରି । ଆମେ ସବୁ ଏକପ୍ରକାର ପରିହାସ ଓ ଗୁରୁତ୍ୱ ମିଶ୍ରିତ ଭାବରେ ଜୀବନର ସମସ୍ୟା ସହିତ ଖେଳା କରୁଥିଲୁ, କାରଣ ସେତେବେଳ ପର୍ଯ୍ୟନ୍ତ ସେଗୁଡ଼ିକ ଆମର ପ୍ରସ୍ତୁତ ସମସ୍ୟା ହୋଇ ନ ଥାଏ ଏବଂ ସଂସାରର ଘଟଣାମାନଙ୍କରେ ଆମେ ସେତେବେଳକୁ ବନ୍ଦୀ ହୋଇ ନ ଥାଉ । ଏହା ହେଉଛି ବିଂଶ ଶତାବ୍ଦୀ ପ୍ରଥମ ଭାଗରେ ମହାସମର ଲାଗିବାର ପୂର୍ବାବସ୍ଥା । ଏହି ଦୁନିଆ ଅଳ୍ପଦିନ ତଳେ ଲୋପ ପାଇବ, ତାହା ସ୍ଥାନରେ ଆଉ ଏକ ନୂତନ ଦୁନିଆ ସୃଷ୍ଟି ହେବ—ସେଥିରେ ମୃତ୍ୟୁ, ଧ୍ୱଂସ, ଯନ୍ତ୍ରଣା, ହୃଦବେଦନାର ବହ୍ନିଶିଖାରେ ଯୁବକ ବ୍ୟଥିତ ଓ ପୀଡ଼ିତ ହୋଇ ପଡ଼ିବ; ମାତ୍ର ଭବିଷ୍ୟତର ଆବରଣ ତାହାକୁ ଲୁଚାଇ ଦେଇଥିଲା ଏବଂ ଆମେ ଆମ ସମ୍ମୁଖରେ ଏକ ଜାଗ୍ରତ ଓ କାନ୍ତିତ ଜଗତ ଗଢ଼ି ଉଠିଥିବାର ଦେଖିଥିଲୁ ଏବଂ ଯେଉଁମାନେ ଏଥିରେ ନିଜକୁ ଚଳାଇ ନେଇ ପାରିଥିଲେ, ତାଙ୍କ ପକ୍ଷେ ଏହା ଆନନ୍ଦଦାୟକ ହୋଇଥିବ ।

ମୁଁ ଗୁଞ୍ଜବାଦ ବା ଜନପ୍ରବାଦ ରୂପ ଯେଉଁ ସବୁ ଭାବଧାରା ମୋ ଉପରେ ପ୍ରଭାବ ବିସ୍ତାର କରିଥିଲା, ସେ ସମ୍ବନ୍ଧରେ ଲେଖିଛି । ମାତ୍ର ଏଥିରୁ କେହି ଯେପରି ଅନୁମାନ ନ କରନ୍ତି ଯେ, ଏହି ସବୁ ସମ୍ବନ୍ଧରେ ମୋର ଚିନ୍ତାଧାରା ସ୍ପଷ୍ଟ ଥିଲା କିମ୍ବା ସେତେବେଳେ ଏ ସମ୍ବନ୍ଧରେ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ହେବାର ଆବଶ୍ୟକତା ମୁଁ ବୋଧ କରୁଥିଲି । ଏଗୁଡ଼ିକ ଅନିର୍ଦ୍ଦିଷ୍ଟ କୌତୂହଳ ପରି ମୋ ମନରେ ଭାସି ଉଠୁଥିଲା ଏବଂ ଅଳ୍ପ ବା ଅଧିକ ପରିମାଣରେ ଏହିରୂପେ ମୋ ଉପରେ ତାହାର ପ୍ରଭାବ ପକାଉଥିଲା । ଏହି ସବୁ ବିଷୟ ଅନୁଧାନ କରି ମୁଁ କେବେହେଁ ନିଜକୁ ବ୍ୟସ୍ତ କରୁ ନାହିଁ । କାର୍ଯ୍ୟ, ଖେଳ ଓ ଆମୋଦରେ ମୋର ଜୀବନ ପୂର୍ଣ୍ଣ ଥିଲା ଏବଂ ଭାରତରେ ରାଜନୈତିକ ସଂଗ୍ରାମହିଁ କେବଳବେଳେ ବେଳେ ମୋ ମନ ଅସ୍ଥିର କରୁଥିଲା । ମେରେଡ଼ିଥ୍ ଟାଉନ୍‌ସେଣ୍ଡଙ୍କ ରଚିତ 'ଏସିଆ

ଇଉରୋପ’ ପୁସ୍ତକ ମୋଠାରେ ଗୋଟିଏ ରାଜନୀତିକ ଭାବଧାରା ଖେଳାଇଥିଲା ।

୧୯୦୭ ମସିହା ପରେ କେତେକ ବର୍ଷ ପର୍ଯ୍ୟନ୍ତ ଭାରତରେ ଅଶାନ୍ତର ଆନ୍ଦୋଳନ ହେଉଥିଲା । ୧୮୫୭ ବିଦ୍ରୋହ ପରେ ପ୍ରଥମ ଥର ଲାଗି ଭାରତ ମୁଣ୍ଡ ଟେକୁଥିଲା ଏବଂ ବିଦେଶୀ ଶାସନ ଆଗରେ ଆଉ ପୂର୍ବପରି ମୁଣ୍ଡ ନୁଆଇଁବାକୁ ଅସ୍ୱୀକାର କରୁଥାଏ । ତିଳକଙ୍କ କାର୍ଯ୍ୟ ଓ କାରାଦଣ୍ଡ, ଅରବିନ୍ଦ ଘୋଷ ଏବଂ ବଙ୍ଗଳାର ଜନସାଧାରଣ ଯେପରି ଭାବରେ ସ୍ୱଦେଶୀ ଗ୍ରହଣ ଓ ବିଦେଶୀ ବର୍ଜନର ଶପଥ ଗ୍ରହଣ କରୁଥିଲେ, ସେ ସମ୍ବାଦ ଇଂଲଣ୍ଡରେ ଥିବା ଭାରତୀୟଙ୍କ ମନରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଭାରତ ନୂଆ ଦଳସବୁର ଯେପରି ନାମକରଣ ହୋଇଥିଲା, ସେହିପରି ଆମେ ସମସ୍ତେ ପ୍ରାୟ ତିଳକବାଦୀ ବା ଉଗ୍ରବାଦୀ ହୋଇଗଲୁଁ ।

କେମ୍ବ୍ରିଜର ଭାରତୀୟମାନଙ୍କର ‘ମଜଲିସ୍’ ବୋଲି ଏକ ସୋସାଇଟି ଥିଲା । ଆମେ ସେଠାରେ ଅନେକ ସମୟରେ ରାଜନୀତିକ ସମସ୍ୟା ଆଲୋଚନା କରୁଥିଲୁ; ମାତ୍ର ଆଲୋଚନା ସବୁ ଏକପ୍ରକାର ଅବାସ୍ତବ ହେଉଥିଲା । ବିଷୟ ପ୍ରତି ଅନୁଧ୍ୟାନ କରିବା ଅପେକ୍ଷା ବିଶ୍ୱବିଦ୍ୟାଳୟ ଓ ପାର୍ଲିମେଣ୍ଟାରୀ ଇଉନିୟନର ରୀତି ଓ ପଦ୍ଧତିକୁ ଅନୁକରଣ କରିବାରେ ବେଶୀ ଧ୍ୟାନ ଦିଆଯାଉଥିଲା । ମୁଁ ଅନେକ ସମୟରେ ମଜଲିସକୁ ଯାଉଥିଲି । ମାତ୍ର ତିନି ବର୍ଷ ଭିତରେ ମୁଁ ପ୍ରାୟ ସେଠାରେ ବକ୍ତୃତା କରି ନାହିଁ । ମୁଁ ମୋର ଲଜ୍ଜା ଓ ସଙ୍କୋଚ କୌଣସି ପ୍ରକାରେ ଅତିକ୍ରମ କରିପାରି ନ ଥିଲି । “ଦି ମାଗପି ଓ ଷ୍ଟମ୍ପ” ବୋଲି ଆମ କଲେଜରେ ଯେଉଁ ତର୍କ ସଭା ଥିଲା; ସେଠାରେ ବି ମୁଁ ଏହି ଅସୁବିଧା ଭୋଗ କରୁଥିଲି । ସେଠାରେ ନିୟମ ଥିଲା ଯେ, ଯଦି କୌଣସି ସଭ୍ୟ ନିର୍ଦ୍ଦିଷ୍ଟ ସମୟ ଭିତରେ ବକ୍ତୃତା ନ କରିବ; ତେବେ ତାକୁ ଜୋରିମାନା ଦେବାକୁ ପଡ଼ିବ । ମୋତେ ଅନେକ ସମୟରେ ଜୋରିମାନା ଦେବାକୁ ପଡ଼ିଥିଲା ।

ମୋର ମନେ ଅଛି, ପରେ ଭାରତ ସଚିବ ହୋଇଥିବା ଇଡୱିନ୍ ମଣ୍ଟେଗୁ ବେଳେବେଳେ "ଦି ମାଗପି କ୍ଲବ"କୁ ଆସନ୍ତି। ସେ ସେ ଟ୍ରିନିଟି କଲେଜର ପୁରାତନ ଛାତ୍ର ଏବଂ ସେତେବେଳେ କେମ୍ବ୍ରିଜରୁ ପାର୍ଲିମେଣ୍ଟ ମେମ୍ବର ହୋଇ ଥାଆନ୍ତି। ତାଙ୍କଠାରୁହିଁ ମୁଁ ପ୍ରଥମେ ବିଶ୍ୱାସର ଆଧୁନିକ ସଂଜ୍ଞା ଶିଖିଲି। ନିଜର ମନ ଯାହାକୁ ସତ୍ୟ ବୋଲି ଗ୍ରହଣ କରେ, ତାହା ବିଶ୍ୱାସ କରିବା କଠିନ, କାରଣ ତମ ମନ ଯଦି ଏହା ଅନୁମୋଦନ କରେ, ତେବେ ସେଠାରେ ଅନ୍ଧବିଶ୍ୱାସର ପ୍ରଶ୍ନ ଉଠେ ନାହିଁ। ମୁଁ ମୋର ବିଶ୍ୱବିଦ୍ୟାଳୟରେ ବିଜ୍ଞାନ ପାଠକରି କେତେକ ବୈଜ୍ଞାନିକ ସିଦ୍ଧାନ୍ତକୁ ସତ୍ୟ ବୋଲି ଗ୍ରହଣ କରିଥିଲି। କାରଣ ଊନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବିଜ୍ଞାନ ବର୍ତ୍ତମାନ ପରି ନ ଥିଲା—ଜୀବନ ଓ ଜଗତ ସମ୍ବନ୍ଧରେ କେତେକ ସ୍ଥିର ସିଦ୍ଧାନ୍ତ ଥିଲା।

ମଜଲିସ୍‌ରେ ଓ ପରସ୍ପର ଭିତରେ କଥାବାର୍ତ୍ତାରେ ଭାରତୀୟ ରାଜନୀତି ଆଲୋଚନା କଲାବେଳେ ଭାରତୀୟ ଛାତ୍ରମାନେ ଖୁବ୍ ଉଗ୍ରଭାଷା ବ୍ୟବହାର କରୁଥିଲେ। ସେତେବେଳେ ବଙ୍ଗଳାରେ ଯେଉଁ ହିଂସା କାର୍ଯ୍ୟର ଆରମ୍ଭ ହୋଇଥିଲା, ତାକୁ ସେମାନେ ଖୁବ୍ ପ୍ରଶଂସା କରୁଥିଲେ। ପରେ ଦେଖିଲି ଯେ, ଏହି ଲୋକେ ସବୁ ଭାରତ ସିଭିଲ ସର୍ଭିସରେ ପଶିଲେ, ହାଇକୋର୍ଟ ବିଚାରପତି ବା ଶାନ୍ତଶିଷ୍ଟ ବ୍ୟାରିଷ୍ଟର ଇତ୍ୟାଦି ହେଲେ। କେତେକ ଅଳ୍ପ ଲୋକଙ୍କ ବ୍ୟତୀତ ଏହି ବୈଠକ ଚରମପନ୍ଥୀମାନଙ୍କ ଭିତରୁ କେହି ପରବର୍ତ୍ତୀ କାଳରେ ଭାରତ ରାଜନୈତିକ ଆନ୍ଦୋଳନମାନଙ୍କରେ କୌଣସି ଅଂଶ ନେଇ ନାହାନ୍ତି।

ଭାରତର କେତେକ ପ୍ରସିଦ୍ଧ ରାଜନୈତିକ ନେତା କେମ୍ବ୍ରିଜକୁ ଯାଇଥିଲେ। ଆମ୍ଭେ ସେମାନଙ୍କୁ ସମ୍ମାନ ଦେଖାଇଲୁ; ମାତ୍ର ଆମ ମନରେ ଗୋଟାଏ ହାମ୍‌ବଡ଼ା ଭାବ ଥିଲା। ଆମେ ମନେ କରୁଥିଲୁ ଯେ, ଆମର ସଂସ୍କୃତିର ପରିସର ବିସ୍ତୃତ ଏବଂ ଯେ କୌଣସି ବିଷୟରେ ଆମେ ଅଧିକ ଉଦାରତାର ସହିତ ଆଲୋଚନା କରି ପାରିବୁଁ। ସେତେବେଳେ ଭାରତୀନ-

ରାଜ୍ୟ ପାଳ, ଲାଲା ଲଜପତ ରାୟ ଓ ଗୋପାଳକୃଷ୍ଣ ଗୋଖେଲ ସେଠାକୁ ଯାଇଥିଲେ । ଆମର ଏକ ବୈଠକ ଘରେ ଆମେ ବିପିନ ପାଲଙ୍କୁ ଭେଟିଲୁ । ପ୍ରାୟ ୧୨ ଜଣ ହେବ ସେଠାରେ ଉପସ୍ଥିତ ଥିଲେ । ମାତ୍ର ସେ ପ୍ରାୟ ୧୦ ହଜାର ଲୋକଙ୍କର ସାଧାରଣ ସଭାରେ ବକ୍ତୃତା କଲା ପରି ଗର୍ଜନ କରି ବକ୍ତୃତା ଦେଲେ । ଏତେ ଉଚ୍ଚ ସ୍ୱର ହେଉଥିଲା ଯେ, ତାଙ୍କ ବକ୍ତୃତାର ଖୁବ୍ ଅଳ୍ପ ଅଂଶ ମୁଁ ବୁଝି ପାରିଲି । ଲାଲାଜୀ ଆମକୁ ଟିକିଏ ଅଧିକ ସ୍ନେହପୂର୍ଣ୍ଣ ଭାବେ କହିଥିଲେ, ଏବଂ ତାଙ୍କ କଥା ମୋତେ ଭଲ ଲାଗିଥିଲା । ମୁଁ ବିପିନ ପାଲଙ୍କ ଅପେକ୍ଷା ଲାଲାଜୀଙ୍କ କଥାକୁ ପସନ୍ଦ କଲି ବୋଲି ବାପାଙ୍କୁ ଚିଠି ଲେଖିଥିଲି । ସେ ସେଥିରେ ଖୁସି ହେଲେ । କାରଣ ବଙ୍ଗଳାର ସେକାଳର ଚରମପନ୍ଥୀମାନଙ୍କୁ ସେ ଭଲ ପାଉ ନ ଥିଲେ । କେମ୍ବ୍ରିଜରେ ଏକ ସାଧାରଣ ସଭାରେ ଗୋଖଲେ ବକ୍ତୃତା କରିଥିଲେ । ସଭା ଶେଷକୁ ଏ. ଏମ୍. ଖାଜା ଏକ ପ୍ରଶ୍ନ ପଚାରିଥିବା କଥା ମୋର ମନେ ଅଛି । ଖାଜାଙ୍କ ପ୍ରଶ୍ନ ଏପରି ଥିଲା ଯେ, ଶେଷକୁ ତା ଉପରେ ଆଲୋଚନାରେ ଏହା କପରି ଓ କାହିଁକି ଆରମ୍ଭ ହେଲା, ଆମ ଭିତରୁ ଅନେକ ଆମୋଦ ମନାଇଲେ ।

ଭାରତୀୟମାନଙ୍କ ଭିତରେ ହରଦୟାଲଙ୍କ ନାମ ଥିଲା—ମାତ୍ର ମୋର କେମ୍ବ୍ରିଜ ଆସିବାର ଅଳ୍ପଦିନ ପୂର୍ବରୁ ସେ ଅକ୍ସଫୋର୍ଡ ଯାଇଥିଲେ । ମୁଁ ହାରୋରେ ଥିଲାବେଳେ ତାଙ୍କୁ ଲଣ୍ଡନରେ ଥରେ ଦୁ'ଥର ଦେଖିଛି ।

ମୋର କେମ୍ବ୍ରିଜ ସାଥୀମାନଙ୍କ ଭିତରୁ କେତେକ ପରବର୍ତ୍ତୀ କାଳରେ ଭାରତୀୟ ରାଜନୀତିରେ ବିଶେଷ ରୂପେ ଭାଗ ନେଇଥିଲେ । ମୁଁ ଯିବାର ଅଳ୍ପଦିନ ପରେ ଜେ. ଏମ୍. ସେନଗୁପ୍ତ କେମ୍ବ୍ରିଜ ଛାଡ଼ିଲେ । ସୈଫୁଦ୍ଦିନ କିଚଲୁ, ସୟଦ ମାମୁଦ ଏବଂ ତାସାଦୁକ ଅହମଦ ଶେରୱାନୀ ଅଳ୍ପ ଅଧିକେ ମୋର ସମସାମୟିକ ଥିଲେ । ମୋ ସମୟରେ ବର୍ତ୍ତମାନ ଏଲାହାବାଦ ହାଇକୋର୍ଟର ପ୍ରଧାନ ବିଚାରପତି ଏସ୍. ଏମ୍. ସୁଲେମାନ

ବ ଜେଲ୍‌ରେ ଥିଲେ । ଅନ୍ୟ ସାଥୀ ସବୁ କେହି କେନ୍ଦ୍ର ମନ୍ତ୍ରୀ ହୋଇଛନ୍ତି ଏବଂ କେହି କେହି ଭାରତୀୟ ସିଭିଲ ସର୍ଭିସରେ ଯୋଗ ଦେଇଛନ୍ତି ।

ଲଣ୍ଡନରେ ଆମେ ଶ୍ୟାମଜି କୃଷ୍ଣ ବର୍ମା ଓ ତାଙ୍କ 'ଇଣ୍ଡିଆ ହାଉସ' ସମ୍ବନ୍ଧରେ ଶୁଣୁଥିଲୁ । ମାତ୍ର । ତାଙ୍କୁ କିମ୍ବା ତାଙ୍କ ଘର ଦେଖିନାହିଁ । ବେଳେ ବେଳେ ଆମେ ତାଙ୍କର "ଇଣ୍ଡିଆନ ସୋସିଓଲଜିଷ୍ଟ" ନାମକ କାଗଜ ଦେଖିବାକୁ ପାଉ । ଅନେକ ଦିନ ପରେ ୧୯୨୭ ମସିହାରେ ଜେନେଭାରେ ମୋର ଶ୍ୟାମଜୀଙ୍କ ସହିତ ସାକ୍ଷାତ ହେଲା । "ଇଣ୍ଡିଆନ ସୋସିଓଲଜିଷ୍ଟ" କାଗଜର ପୁରୁଣା ସଂଖ୍ୟା ତାଙ୍କ ପକେଟରେ ଥାଏ, ମାତ୍ର ତାଙ୍କ ନିକଟକୁ ଯାଉଥିବା ପ୍ରତ୍ୟେକ ଭାରତୀୟଙ୍କୁ ସେ ବ୍ରିଟିଶ ସରକାରର ଗୁପ୍ତଚର ବୋଲି ସନ୍ଦେହ କରୁଥାନ୍ତି ।

ଲଣ୍ଡନରେ ମଧ୍ୟ 'ଇଣ୍ଡିଆ ଅଫିସ' ନାମରେ ଛାତ୍ରଙ୍କର ଏକ ବିଭାଗ ଖୋଲାଥାଏ । ଭାରତୀୟ ଛାତ୍ରଙ୍କଠାରୁ ଗୁପ୍ତ ଭାବରେ ସେମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ଖବର ନେବା ପାଇଁ ଏହା କରାଯାଇଛି ବୋଲି ସାଧାରଣତଃ ଭାରତୀୟମାନେ ମନେ କରନ୍ତି । ଏହା କହିବାରେ କେତେକ ଯଥାର୍ଥତା ବି ରହିଛି । ମାତ୍ର ପସନ୍ଦ ହେଉ ବା ନ ହେଉ, ଅନେକ ଭାରତୀୟଙ୍କୁ ଏଥିରେ ଯୋଗ ଦେବାକୁ ହେଉଥିଲା । କାରଣ ଏହାର ଅନୁମୋଦନ ବ୍ୟତୀତ କୌଣସି ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିବା ପ୍ରାୟ ଅସମ୍ଭବ ଥିଲା ।

ଭାରତର ରାଜନୀତିର ପରିସ୍ଥିତି ମୋ ପିତାଙ୍କୁ ତା ଭିତରକୁ ଅଧିକ ଭାବରେ ଟାଣି ନେଇଥିଲା । ଏହା ଜାଣି ମୁଁ ଆନନ୍ଦିତ ହୋଇଥିଲି । ଅବଶ୍ୟ ମୁଁ ତାଙ୍କ ରାଜନୀତି ସହିତ ଏକମତ ନ ଥିଲି । ମଡ୍‌ରେଟ୍ ବା ମାନ୍ଧାମାନଙ୍କ ଭିତରୁ ଅନେକଙ୍କୁ ସେ ଜାଣିଥିଲେ ଓ ତାଙ୍କର ଓକିଲ ବ୍ୟବସାୟରେ ବି ଅନେକେ ତାଙ୍କର ସାଥୀ ଥିଲେ । ସୁତରାଂ ସେମାନଙ୍କ ସହିତ ଯୋଗଦେବା ତାଙ୍କ ପକ୍ଷେ ସ୍ୱାଭାବିକ । ତାଙ୍କ ନିଜ ପ୍ରଦେଶରେ ଏକ ପ୍ରାଦେଶିକ ସମ୍ମିଳନୀରେ ସେ ସଭାପତି ହୋଇଥିଲେ ଏବଂ ବଙ୍ଗଳା

ଓ ମହାରାଷ୍ଟ୍ରର ଚରମପନ୍ଥୀଙ୍କ ଉକ୍ତିରେ ଖୁବ୍ ଜୋରରେ କହୁଥିଲେ । ସେ ମୁକ୍ତପ୍ରଦେଶ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହୋଇଥିଲେ । ୧୯୦୭ ରେ ଗୋଳମାଳରେ ଯେଉଁ ସୁରାଟ କଂଗ୍ରେସ ଭାଙ୍ଗିଯାଇ ପରେ ମାଡାଦଳରୂପେ ଟିକି ରହିଲା, ସେଥିରେ ସେ ଉପସ୍ଥିତ ଥିଲେ ।

ସୁରାଟ କଂଗ୍ରେସର କେତେଦିନ ପରେ କିଛୁଦିନ ସକାଶେ ବାପାଙ୍କର ଅତିଥି ରୂପେ ଏବଂ ଓକିଲ ଭାବେ ନେଭିନସନ୍ ଏଲାହାବାଦରେ ଥିଲେ ଏବଂ ସେ ତାଙ୍କର ଭାରତ ସମ୍ପର୍କରେ ଲେଖିଥିବା ବହିରେ ଲେଖିଛନ୍ତି ଯେ, “ବଦାନ୍ୟତା ଛଡ଼ା ଅନ୍ୟସବୁ ବିଷୟରେ ସେ ହେଉଛନ୍ତି ମଡ଼େରେଟ” । ଏହା ଏକ ଭ୍ରାନ୍ତ ଧାରଣା, କାରଣ ରାଜନୀତି ଛଡ଼ା ଅନ୍ୟ କୌଣସିଥିରେ ବାପା ଆଦୌ ମଡ଼େରେଟ୍ ନ ଥିଲେ ଏବଂ ଧୀରେ ଧୀରେ ଏହି ମଡରେଟ୍ ମନୋବୃତ୍ତି ଭାଙ୍ଗି ଯାଉଥିଲା । ତାଙ୍କ ଚରିତ୍ରରେ ଗଭୀର ଭାବପ୍ରବଣତା ତୀବ୍ର ଆବେଗ, ଦୃଢ଼ ଆତ୍ମମର୍ଯ୍ୟାଦାଜ୍ଞାନ ଏବଂ ପ୍ରବଳ ଇଚ୍ଛାଶକ୍ତି ଦେଖା ଯାଉଥିଲା । ଏହା ମଡ଼େରେଟ୍ ମନୋବୃତ୍ତିର ସମ୍ପୂର୍ଣ୍ଣ ବିପରୀତ, ତଥାପି ୧୯୦୭, ୧୯୦୮ ଓ ତାପରେ କେତେକ ବର୍ଷ ପର୍ଯ୍ୟନ୍ତ ସେ ନିଶ୍ଚୟ ମଡ଼େରେଟଙ୍କ ଅପେକ୍ଷା ମଡ଼େରେଟ ଥିଲେ ଏବଂ ଚରମପନ୍ଥୀଙ୍କର ଖୁବ୍ ବିରୋଧୀ ଥିଲେ । ଅବଶ୍ୟ ମୋର ବିଶ୍ୱାସ ଯେ, ସେ ଲୋକଙ୍କୁ ସେ ପ୍ରଶଂସା କରୁଥିଲେ ।

ଏହା କାହିଁକି ହେଉଥିଲା ? ତାଙ୍କ ପରି ଜଣେ ଓକିଲ ଓ ନିୟମ-ତନ୍ତ୍ରବାଦୀ ପକ୍ଷେ ରାଜନୀତିକୁ ସେହି ରୂପେ ଦେଖିବା ସ୍ୱାଭାବିକ । ତାଙ୍କର ସ୍ପଷ୍ଟ ଚିନ୍ତାଦ୍ୱାରା ସେ ଦେଖି ପାରୁଥିଲେ ଯେ, କଥାନୁସାରେ କାର୍ଯ୍ୟ ନ ହେଲେ ବଡ଼ ଓ ଚରମ କଥାର କୌଣସି ମୂଲ୍ୟ ନାହିଁ । ସେ ସମ୍ମୁଖରେ କୌଣସି ଫଳପ୍ରଦ କାର୍ଯ୍ୟ ଦେଖୁ ନ ଥିଲେ । ସ୍ୱଦେଶୀ ଓ ବୟକଟ୍ ଆନ୍ଦୋଳନ ଦ୍ୱାରା ଆମେ ଅଧିକ ଦୂର ଅଗ୍ରସର ହୋଇ ପାରିବୁ, ଏ ବିଶ୍ୱାସ ତାଙ୍କର ନ ଥିଲା । ଆହୁରି ମଧ୍ୟ ଏହି ସବୁ ଜାତୀୟତାର ଭିତ୍ତି ଧର୍ମ ଉପରେ ପ୍ରତିଷ୍ଠିତ ଥିଲା—ଧର୍ମ ତାଙ୍କ ପକ୍ଷେ ସଂପୂର୍ଣ୍ଣ ଅପରିଚିତ ଜିନିଷ । ଭାରତରେ ପ୍ରାଚୀନ ଯୁଗ ପୁନର୍ବାର ଫେରାଇ ଆଣିବାକୁ ସେ ଚାହୁଁ ନ

ଥିଲେ । ସେଗୁଡ଼ିକ ପ୍ରତି ତାଙ୍କର ଆଦୌ ସହାନୁଭୂତି ନ ଥିଲା । ସେ ତାର କୌଣସି ଅର୍ଥ ବୁଝୁ ନ ଥିଲେ ଏବଂ ଅନେକ ପୁରାତନ ସାମାଜିକ ସଂସ୍କାର ଜାତି ଇତ୍ୟାଦି ଅତି ପ୍ରତିକ୍ରିୟାଶୀଳ କଥା ବୋଲି ବିଗୃହୀ ସେଗୁଡ଼ିକ ଆଦୌ ପସନ୍ଦ କରୁ ନ ଥିଲେ । ସେ ପାଶ୍ଚାତ୍ୟ ଦେଶର ପ୍ରଗତିରେ ଅତ୍ୟନ୍ତ ଆକୃଷ୍ଟ ହୋଇଥିଲେ ଏବଂ ଇଂଲଣ୍ଡ ସହିତ ସହଯୋଗ କରିବା ଫଳରେ ସେପରି ପ୍ରଗତି ଏଠାରେ ସମ୍ଭବ ବୋଲି ଭାବୁଥିଲେ ।

ସାମାଜିକ ଦୃଷ୍ଟିରେ ଦେଖିଲେ ୧୯୦୭ ମସିହାରେ ଭାରତୀୟ ଜାତୀୟତାର ପୁନରୁତ୍ଥାନ ବାସ୍ତବକ ପ୍ରତିକ୍ରିୟାଶୀଳ ଥିଲା । ଅତଏବ ଭାରତ ଜମ୍ବୁ ପ୍ରାଚ୍ୟ ଖଣ୍ଡରେ ନୂତନ ଜାତୀୟତା ଅର୍ଥ ହେଉଛି ଧର୍ମମୂଳକ ଜାତୀୟତାବାଦ । ସୁତରାଂ ମଡ଼ରେଟମାନଙ୍କ ସାମାଜିକ ଦୃଷ୍ଟିକୋଣ ଅଧିକ ପ୍ରଗତିଶୀଳ ଥିଲା, ମାତ୍ର ସେମାନଙ୍କର ସଂଖ୍ୟା ମୁଷ୍ଟିମେୟ ଓ ଜନ-ସାଧାରଣଙ୍କ ସହିତ ତାଙ୍କର କୌଣସି ସମ୍ପର୍କ ନ ଥିଲା । ମଡ଼ରେଟମାନେ କଥିତ ପରିମାଣରେ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଲୋକ । ସେମାନେ ଚାକିରି ଲାଭର ଆଶା କରୁଥିଲେ । ସୁତରାଂ ଏହି ଦୃଷ୍ଟି ଛଡ଼ା କୌଣସି ଅର୍ଥନୈତିକ ଦୃଷ୍ଟି ସେମାନଙ୍କର ନ ଥିଲା । ସେମାନେ ଜାତି ପ୍ରଥାକୁ କୋହଳ କରିବା ନିମନ୍ତେ ଛୋଟ ଛୋଟ ସମାଜ ସଂସ୍କାର କଥା କହୁଥିଲେ ଏବଂ ଯେଉଁ ସବୁ ପୁରାତନ ସାମାଜିକପ୍ରଥା ପ୍ରଗତିରେ ବାଧା ଦେଉଥିଲା, ତାହା ଲୋପ କରିବାକୁ ଚାହୁଁଥିଲେ ।

ମଡ଼ରେଟ୍‌ମାନଙ୍କ ସହିତ ଯୋଗ ଦେଇ ତିଳକ ଏକ ଆକ୍ରମଣ-ମୂଳକ କାର୍ଯ୍ୟପନ୍ଥା ଅବଲମ୍ବନ କଲେ । ବଙ୍ଗଳା ଓ ପୁନାରେ କେତେକ ନେତାଙ୍କ ବ୍ୟତୀତ ଅନ୍ୟ ସମସ୍ତ ଚରମପନ୍ଥୀମାନେ ଯୁବକ ଥିଲେ ଏବଂ ଏହି ଯୁବକମାନେ ସ୍ୱେଚ୍ଛାଚାରୀ ହୋଇ ଯାଇଛନ୍ତି ବୋଲି ସେ ଅତ୍ୟନ୍ତ ବିରକ୍ତ ହେଉଥିଲେ । ପ୍ରତିବାଦ ହେଲେ ସେ ଅସହିଷ୍ଣୁ ଓ ଧୈର୍ଯ୍ୟଚ୍ୟୁତ ହେଉଥିଲେ ଏବଂ ଯାହାଙ୍କୁ ସେ ମୂର୍ଖ ବୋଲି ଭାବୁଥିଲେ, ସୁଯୋଗ ପାଇବାମାତ୍ରେ ନିର୍ଦ୍ଦୟ ଭାବରେ ସେ ସେମାନଙ୍କୁ ଆକ୍ରମଣ କରୁଥିଲେ ।

ମୋର ମନେ ହେଉଛି, ବୋଧହୁଏ କେମ୍ବ୍ରିଜ ଛାଡ଼ିବା ପରେ ତାଙ୍କର ଗୋଟିଏ ପ୍ରବନ୍ଧ ପଢ଼ି ଅତ୍ୟନ୍ତ ବିରକ୍ତ ହୋଇଗଲେ । ଠିକ୍ ଏହି ସମୟରେ ମୁଁ ତାଙ୍କ ନିକଟକୁ ଲେଖି ପଠାଇଲି ଯେ, ଆପଣଙ୍କ ରାଜନୈତିକ କାର୍ଯ୍ୟରେ ବ୍ରିଟିଶ ସରକାର ଯେ ଖୁବ ସନ୍ତୁଷ୍ଟ ହେଉଥିବେ, ଏଥିରେ ସନ୍ଦେହ ନାହିଁ । ଏପରି କଥାରେ ସେ ଭୀଷଣ ଚିଡ଼ିବାର କଥା ଏବଂ ସେ ଚିଡ଼ି ଲାଗିଲେ । ସେ ମତେ ସଙ୍ଗେ ସଙ୍ଗେ ଇଂଲଣ୍ଡରୁ ଫେରି ଆସିବା ନିମନ୍ତେ ଲେଖିଥିଲେ ।

ମୁଁ କେମ୍ବ୍ରିଜରେ ଥିଲାବେଳେ ଭବିଷ୍ୟତରେ କଣ କରିବି, ସେ ପ୍ରଶ୍ନ ଉଠୁଥିଲା । ଇଣ୍ଡିଆନ୍ ସିଭିଲ ସର୍ଭିସରେ ପଶିବାର କଥା କଳ୍ପନା ହେଉଥିଲା । ସେ କାଳରେ ଏଥିପ୍ରତି ଗୋଟାଏ ବେଶ୍ ମୋହ ଥାଏ । ମାତ୍ର ମୋ ପିତା ବା ମୁଁ ଏଥିପ୍ରତି ବିଶେଷ ଆଗ୍ରହୀ ନ ଥିବାରୁ ଏକଥା ବାଦ ପଡ଼ିଲା । ମୋର ମନେ ହେଉଛି ଏହାର ପ୍ରଧାନ କାରଣ ହେଉଛି, ସେଥିଲାଗି ମୋର ବୟସ କମ ଥିଲା ଏବଂ ଏଥିରେ ପଶିବାକୁ ହେଲେ ମୁଁ ଗ୍ରାଜୁଏଟ ହୋଇ ସାରି ମୋତେ ଆଉ ବର୍ଷେ ଅପେକ୍ଷା କରିବାକୁ ପଡ଼ିଥାନ୍ତା । ମୁଁ କେମ୍ବ୍ରିଜର ଗ୍ରାଜୁଏଟ ପାସ୍ କଲାବେଳକୁ ମୋର ବୟସ ଥିଲା ୨୦ ଏବଂ ସେ କାଳର ୨୨ । ୨୪ ବର୍ଷ ବୟସରେ ଆଇ. ସି. ଏସରେ ପ୍ରବେଶ କରି ପାରୁଥିଲେ । କୃତକାର୍ଯ୍ୟ ଲଭ କଲେ ଆଉ ଅଧିକା ବର୍ଷେ ଇଂଲଣ୍ଡରେ ରହିବାକୁ ପଡ଼ିବ । ମୁଁ ଇଂଲଣ୍ଡରେ ଦୀର୍ଘକାଳ ରହିଯିବାରୁ ଘରର ଅସ୍ଥିର ହୋଇଥିଲେ ଏବଂ ମୁଁ ଫେରିଯିବାକୁ ସେମାନେ ଚାହୁଁଥିଲେ । ଆଉ ଏହି କାରଣ ଯୋଗୁଁ ବାପା ଏଥିରେ ମନ ଦେଲେ ନାହିଁ । ସେ ହେଉଛି ମୁଁ ଆଇ, ସି, ଏସ୍‌ରେ ପଶିଲେ ଆମ ଘରଠୁଁ ବହୁଦୂରରେ ନିଯୁକ୍ତ ହୋଇପାରେ ! ମୋର ଦୀର୍ଘକାଳ ଅନୁପସ୍ଥିତିରେ ପିତା ମାତା ଉଭୟେ ମୋତେ ତାଙ୍କ ପାଖରେ ରଖିବାକୁ ଚାହୁଁଥିଲେ । ଏହିସବୁ କାରଣରୁ ସିଭିଲ୍ ସର୍ଭିସ ଅପେକ୍ଷା ପୈତୃକ ବ୍ୟବସାୟରେ ପ୍ରବେଶ କରିବାକୁ ସ୍ଥିର ହେଲା । ମୁଁ ଇନର ଟେମ୍ପଲ୍‌ରେ ଯୋଗ ଦେଲି ।

 

ମୁଁ ଖୁବ ଚରମପନ୍ଥୀ ରାଜନୀତି କଥା କହିବା ସତ୍ତ୍ୱେ ବି ଆଇ. ସି ଏସ୍‌.ରେ ଯୋଗ ଦେଇ ଭାରତରେ ବ୍ରିଟିଶ ସରକାରର ଶାସନତନ୍ତ୍ରର ଏକ ଅଙ୍ଗ ହେବାଟାକୁ ସେତେବେଳେ ମେ ଘୃଣା କରୁ ନ ଥିଲି, ଏହାହିଁ ଆଶ୍ଚର୍ଯ୍ୟ କଥା । ପରେ ଏହା ମୋ ପକ୍ଷରେ କ୍ଷେପବିଧି ମନେ ହୁଅନ୍ତା ।

୧୯୧୦ ମସିହାରେ ମୁଁ ଉପାଧି ପ୍ରାପ୍ତ ହୋଇ କେମ୍ବ୍ରିଜରୁ ଫେରିଲି । ବିଜ୍ଞାନ 'ଟ୍ରାଇପୋସ' ପରୀକ୍ଷାରେ ମୁଁ ସାଧାରଣ ଭାବରେ ପାସ କରି ଦ୍ୱିତୀୟ ଶ୍ରେଣୀ 'ଅନର୍ସ' ପାଇଥିଲି । ତାପରେ ଦୁଇବର୍ଷ ପର୍ଯ୍ୟନ୍ତ ମୁଁ ଲଣ୍ଡନରେ ରହିଲି । ଆଇନ ପଢ଼ା ମୋର ବେଶି ସମୟ ନେଇ ନ ଥିଲା ଏବଂ ଗୋଟିକ ପରେ ଗୋଟିଏ ସାଧାରଣ ଭାବରେ ପାସ୍ କରି ଯାଉଥିଲି ପ୍ରଚୁର ଅବସର ମିଳୁଥିଲା; ତେଣୁ ସମୟର ସ୍ରୋତ ସହିତ ଭାସୁଥିଲି । କିଛି ସାଧାରଣ ପଢ଼ାପଢ଼ି କରୁଥିଲି । "ଫେବିଆନ" ଓ ସାମ୍ୟବାଦ ପ୍ରତି ଅସ୍ପଷ୍ଟ ଭାବରେ ଆକୃଷ୍ଟ ହେଉଥିଲି ଏବଂ ସେ ବେଳାର ରାଜନୈତିକ ଆନ୍ଦୋଳନରେ ମଧ୍ୟ ଉତ୍ସାହାନ୍ୱିତ ହେଉଥିଲି । ବିଶେଷତଃ ଆୟର୍ଲାଣ୍ଡରେ ନାରୀମାନଙ୍କର ଭୋଟାଧିକାରପ୍ରାପ୍ତି ଆନ୍ଦୋଳନ ଖୁବ୍ ମନଦେଇ ଲକ୍ଷ୍ୟ କରୁଥିଲି । ମୋର ମନେ ଅଛି, ୧୯୧୦ ମସିହା ଗ୍ରୀଷ୍ମକାଳରେ ଆୟର୍ଲାଣ୍ଡ ଯାଇଥିଲିବେଳେ ମୁଁ ସେଠାର ସିନ୍ ଫିନ୍ ଆନ୍ଦୋଳନର ପ୍ରାରମ୍ଭ ସମୟ ଲକ୍ଷ୍ୟ କରିଥିଲି ।

ମୁଁ ମୋର ପୁରାତନ ହାରୋ ବନ୍ଧୁମାନଙ୍କ ସହିତ ପଡ଼ି ଟିକିଏ ବିଳାସ ଜୀବନ କଟାଇଲି । ବାପା ମୋ ପାଖକୁ ଯାହା ଟଙ୍କା ପଠାଉଥିଲେ, ତାହା ଅପେକ୍ଷା ଅଧିକ ମୁଁ ଖରଚ କରୁଥିଲି ଏବଂ ମୁଁ ଏତେ ଖରଚ କରି ଖରାପ ହୋଇଯାଉଛି ବୋଲି ସେ ବ୍ୟସ୍ତ ହୋଇ ପଡ଼ୁଥିଲେ, ମାତ୍ର ବାସ୍ତବିକ ଦେଖିବାକୁ ଗଲେ ମୁଁ ସେପରି କିଛି କାର୍ଯ୍ୟ କରି ନ ଥିଲି । ଯେଉଁ ସବୁ ଧନୀ ମସ୍ତିଷ୍କହୀନ ଇଂରେଜ ଯୁବକଙ୍କୁ "ସହରିଆ ବାବୁ" ବୋଲି କହନ୍ତି, ସେହିମାନଙ୍କୁ କେବଳ ମୁଁ ଅନୁକରଣ କରିବା ଶିଖିଥିଲି । ଏହି ବିଳାସୀ ଓ ଲକ୍ଷ୍ୟହୀନ ଜୀବନ ଯେ ମୋର କିଛି ଉନ୍ନତି କରି ନ ଥିଲା,

ଏହା କହିବା ଅନାବଶ୍ୟକ । ମୋର ପ୍ରଥମ ଉତ୍ସାହ ମଉଳି ଯାଇଥିଲା ଏବଂ ମୁଁ ଦିନକୁ ଦିନ ଉଚ୍ଛୃଙ୍ଖଳ ହୋଇ ଯାଉଥିଲି ।

ଛୁଟିରେ ମଝିରେ ମଝିରେ ଇଉରୋପରେ ବୁଲୁଥିଲି । ୧୯୦୯ ମସିହା ଗ୍ରୀଷ୍ମ ଋତୁରେ ଯେତେବେଳେ କାଉଣ୍ଟ୍ ଜେପେଲିନ୍ ତାଙ୍କର ନୂତନ ଉଡ଼ାଜାହାଜରେ ଚଢ଼ି ଫେଡ଼ରିକ୍‌ସେଫନ୍‌ରୁ କନଷ୍ଟାନସ ହ୍ରଦ ଉପରେ ଉଡ଼ି ଆସି ବର୍ଲିନରେ ପହଞ୍ଚିଲେ, ସେତେବେଳେ ମୁଁ ଓ ମୋର ପିତା ସେଠାରେ ଥିଲୁଁ । ମୋର ବିଶ୍ୱାସ ପ୍ରଥମ ଥର ପାଇଁ ଏତେ ଦୂର ତାହା ଉଡ଼ି ଆସି ଥିଲା ଏବଂ କାଇଜର ତାଙ୍କୁ ଖୁବ୍ ଆଡ଼ମ୍ବର ସହ ଅଭ୍ୟର୍ଥନା କରିଥିଲେ । ପ୍ରାୟ ୧୦ ଲକ୍ଷ ଲୋକ ବର୍ଲିନର ଟେମ୍ପେଲହଫ୍ ପଡ଼ିଆରେ ରୁଣ୍ଡ ହୋଇଥାନ୍ତି । ଜେପେଲିନ ଠିକ୍ ସମୟରେ ଆମ ମୁଣ୍ଡ ଉପରେ [illegible] ମାତ୍ର ଆସି ପହଞ୍ଚିଲା । ଆଡ୍‌ଲନ୍ ହୋଟେଲରେ ସେଦିନ ଯେତେ ଲୋକ ଥିଲେ, ସମସ୍ତଙ୍କୁ ହୋଟେଲ ମାଲିକ କାଉଣ୍ଟ ଜେପେଲିନର ଗୋଟିଏ ଲେଖାଏଁ ଛବି ଦେଇଥିଲେ । ମୋ ନିକଟରେ ସେ ଛବି ଆଜି ପର୍ଯ୍ୟନ୍ତ ରହିଛି ।

ପ୍ରାୟ ଦୁଇମାସ ପରେ ରାଇମ୍‌ସ ସହର ଉପରେ ପ୍ରଥମ ଉଡ଼ାଜାହାଜ ଉଡ଼ୁଥିବାର ଓ 'ଇଙ୍ଗଲିଶ୍ ଚାନେଲ' [illegible] ଉଡ଼ୁଥିବାର ଆମେ ଦେଖିଥିଲୁ । ସେ ଉଡ଼ାଜାହାଜ ଚାଳକଙ୍କ ନାମ ମୋର ମନେହୁଏ ଲେଥମ ଓ ଲାମ୍ବର୍ଟ ହେବ । ୧୮ ବର୍ଷ ପରେ ମୁଁ ପ୍ୟାରିସରେ ଥିଲାବେଳେ [illegible] ଆଟଲାଣ୍ଟିକ ମହାସାଗର ଉପରେ ଆସି ଥିଲା ।

କେମ୍ବ୍ରିଜରୁ ଉପାଧି ଲାଭ କରି ସାରି ମୁଁ ମୋର ବନ୍ଧୁମାନଙ୍କ ସହ ନରୱେକୁ ଆନନ୍ଦ ଭ୍ରମଣ କରିବା ନିମନ୍ତେ ଥରେ ଯାଇଥିଲାବେଳେ ଅଳ୍ପ ଅଳ୍ପକେ ରକ୍ଷା ପାଇଥିଲି । ଆମେ ପାହାଡ଼ିଆ ଅଞ୍ଚଳରେ ଯାଉଥିଲୁ । ଖୁବ୍ ଗ୍ରୀଷ୍ମ ହୋଇଥାଏ । ଆମେ କ୍ଲାନ୍ତ ହୋଇ ଆମ ଲକ୍ଷ୍ୟସ୍ଥଳ ହୋଟେଲରେ ପହଞ୍ଚିଲୁ । ସ୍ନାନ କରିବା ଦରକାର ପଡ଼ିଲା । ସ୍ନାନ କକ୍ଷ

ସେମାନେ ଆଦୌ ଜାଣି ନ ଥିଲେ; ସୁତରାଂ ସାଧାରଣ ଘରେ ସେପରି କାଛି ବ୍ୟବସ୍ଥା ନ ଥିଲା। ଆମେ ନେକଟାଇ ଝରଣାରେ ସ୍ନାନ କରିବାରୁ ବୋଲି ଆମକୁ କହିଲେ। ସୁତରାଂ ହାତରେ ଟେକି ଘୋଡ଼ାଇବା ପାଣି ଏବଂ ହୋଟେଲବାଲା ଆମକୁ ଦେଇଥିବା ଛୋଟ ତଉଲିଆ ସାଙ୍ଗରେ ନେଇ ମୁଁ ଓ ଆଉ ଜଣେ ଇଂରେଜ ନେକଟାଇ ଝରଣାକୁ ଗଲୁ। ନିକଟସ୍ଥ ତୁଷାର ସ୍ତୂପରୁ ପ୍ରବଳ ବେଗରେ ଝରଣା ଜଳ ଜଳଧ୍ୱନିରେ ବହୁଥାଏ। ମୁଁ ଗାଧି ଭିତରକୁ ପଶିଲି—ମୁଁ ବେଶି ଭିତରକୁ ଯାଇନାହିଁ ଥିବାକୁ ଲାଗିଲି, ତଳଟା ମଧ୍ୟ ଖୁବ ଖସଡ଼ା ହୋଇଥାଏ। ମୋ ଗୋଡ଼ ଖସିଗଲା ଏବଂ ମୁଁ ପଡ଼ିଗଲି। ମୋର ସମସ୍ତ ଶରୀର ଥଣ୍ଡା ହୋଇ ହାତ ଗୋଡ଼ ଅକର୍ମଣ୍ୟ ହୋଇଗଲା। ମୁଁ ମୋର ଗୋଡ଼ ଆଉ ଧରି ପାରିଲି ନାହିଁ ଏବଂ ସ୍ରୋତରେ ଦ୍ରୁତ ବେଗରେ ଭାସିଗଲି। ମୋର ସାଥୀ ଇଂରେଜଟି ପାହାଡ଼ର କୌଣସି ପ୍ରକାରେ ଉଠି ଯାଇ ପାରିଥିଲେ ଏବଂ ସେ କୂଳେ କୂଳେ ମୋ ସହିତ ଦୌଡ଼ି ଦୌଡ଼ି ମୋ ଗୋଡ଼ଟିଏ ଧରି ପାରିଲେ ଏବଂ ମୋତେ ଉପରକୁ ଟାଣି ନେଲେ। ଏହାପରେ ଆମେ କେତେ ବିପଦରେ ପଡ଼ିବାକୁ ଯାଉଥିଲୁ ବୁଝିପାରିଲୁ। ପ୍ରାୟ ୨।୩ ଶହ ଗଜ ଆଗରେ ଏହି ସ୍ରୋତ ପାହାଡ଼ ଉପରୁ ତଳକୁ ଗଡ଼ିପଡ଼ି ଏକ ଜଳପ୍ରପାତ ସୃଷ୍ଟି କରିଛି। ଜଳପ୍ରପାତ ଏଠାରେ ଏକ ଦର୍ଶନୀୟ ବସ୍ତୁ।

୧୯୧୨ ମସିହାର ଗ୍ରୀଷ୍ମ ଋତୁରେ ମୁଁ ଓକିଲାତି ପାସ କଲି ଏବଂ ଇଂଲଣ୍ଡରେ ପ୍ରାୟ ସାତବର୍ଷ ରହିଲା ପରେ ସେହିବର୍ଷ ଭାରତକୁ ଫେରି ଆସିଲି। ସ୍କୁଲ ଭିତରେ ଛୁଟିବେଳେ ମୁଁ ଦୁଇଥର ଘରକୁ ଯାଇଥିଲି। ମାତ୍ର ଏଥର ସ୍ଥାୟୀଭାବେ ଫେରିଲି। ମୁଁ ବମ୍ବେରେ ଆସି ପହଞ୍ଚିଲାବେଳେ ମନେ କଲି ମୁଁ କେତେ ଅଦ୍ଭୁତ ବାଳକ—ମୋଠାରେ ପ୍ରଶଂସା କଲାପରି କିଛି ନାହିଁ।



# ଗୃହପ୍ରତ୍ୟାବର୍ତ୍ତନ ଏବଂ ମହାସମରର ସମସାମୟିକ ରାଜନୀତି

୧୯୧୨ ସାଲ ଶେଷବେଳକୁ ଭାରତର ରାଜନୀତିକ ଅବସ୍ଥା ମାନ୍ଦା ଥିଲା । ତିଲକ ଜେଲରେ ଥିଲେ, ଚରମପନ୍ଥୀମାନେ କୌଣସି ବଳିଷ୍ଠ ନେତୃତ୍ୱ ଅଭାବରୁ ନୀରବ ହୋଇ ଯାଇଥିଲେ । ବଙ୍ଗବିଚ୍ଛେଦ ସମସ୍ୟା ସମାଧାନ ପରେ ବଙ୍ଗଳା ଶାନ୍ତ ହୋଇ ଯାଇଥିଲା ଏବଂ ମଡରେଟମାନେ ସମସ୍ତେ ମିଣ୍ଟୋମର୍ଲେ ସଂସ୍କାରର କାଉନ୍‌ସିଲରେ ଭର୍ତ୍ତି ହୋଇଥିଲେ । ବାହାରେ ଥିବା ଭାରତୀୟ, ବିଶେଷତଃ ଦକ୍ଷିଣ ଆଫ୍ରିକାରେ ଥିବା ଭାରତୀୟ-ମାନଙ୍କ ଅବସ୍ଥା ସମ୍ବନ୍ଧରେ ସ୍ୱତନ୍ତ୍ରରେ କିଛି କିଛି ଆନ୍ଦୋଳନ ହେଉଥିଲା । କଂଗ୍ରେସ ମଡରେଟମାନଙ୍କର ମଜଲିସ୍ ଥିଲା । ପ୍ରତିବର୍ଷ ଅଧିବେଶନ ହେଉଥିଲା । କେତେକ ଦୁର୍ବଳ ପ୍ରସ୍ତାବ ପାସ୍ ହେଉଥିଲା । ସେଥିରେ ସେପରି କିଛି ଉତ୍ସାହ ଦେଖାଯାଉ ନ ଥାଏ ।

୧୯୧୨ ମସିହା ବଡ଼ଦିନ ଛୁଟିରେ ମୁଁ ଜଣେ ପ୍ରତିନିଧି ଭାବରେ ବାଙ୍କିପୁର କଂଗ୍ରେସକୁ ଯାଇଥିଲି । ଏହା ଗୋଟିଏ ଇଂରେଜି ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀଙ୍କର ଆଡ୍ଡା ଥିଲା ଏବଂ ଭଲ କୋଟ ଓ ଲମ୍ବା ଲମ୍ବା ପାଇଜାମା ପିନ୍ଧି ସେଠାରେ ଲୋକ ବେଶି ପହଞ୍ଚିଥିଲେ । ପ୍ରକୃତରେ ଏହା ଏକ ସାମାଜିକ ସମ୍ମିଳନୀ, ସେଥିରେ କୌଣସି ରାଜନୀତିକ ଉତ୍ସାହ ବା ଉନ୍ମାଦନା ନ ଥିଲା । ଗୋଖଲେ ନିକଟରେ ଦକ୍ଷିଣ ଆଫ୍ରିକାରୁ ଫେରିଥାଆନ୍ତି ଏବଂ ସେ ଅଧିବେଶନରେ ସେ ଏକ ପ୍ରଧାନ ଲୋକ ହୋଇଥାନ୍ତି । ଯେଉଁ କେତୋଟି ଲୋକ ରାଜନୀତିକ ଏବଂ ସାଧାରଣ ସମସ୍ୟା ଗୁରୁତର ଭାବରେ ଆଲୋଚନା କରୁଥିଲେ, ସେମାନଙ୍କ ଭିତରେ ଗୋଖଲେ ଶୀର୍ଷ ସ୍ଥାନୀୟ । ତାଙ୍କର ଉଦ୍ୟମ, ମାନସିକ ବଳ ଓ ଶକ୍ତି ଦେଖି ମୁଁ ମୁଗ୍ଧ ହୋଇଥିଲି ।

ଗୋଖଲେ ବାଙ୍କିପୁର ଛାଡ଼ିଲାବେଳେ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିଲା । ସେ ସେତେବେଳେ ପବ୍ଲିକ୍ ସର୍ଭିସ କମିଶନର ସଭ୍ୟ

ଥିଲେ ଏବଂ ରେଲରେ ପ୍ରଥମ ଶ୍ରେଣୀରେ ତାଙ୍କର ଯାତ୍ରା କରିବାର କଥା । ତାଙ୍କର ଶରୀର ସୁସ୍ଥ ନ ଥିଲା ଏବଂ ଲୋକଭିଡ଼ ଓ ଅବାଞ୍ଛନୀୟ ବନ୍ଧୁମାନଙ୍କ କୋଳାହଳ ଯୋଗୁଁ ସେ ଅତ୍ୟନ୍ତ ବ୍ୟସ୍ତ ହୋଇ ପଡ଼ିଥିଲେ । ସେ ଟିକିଏ ଏକାକୀ ରହିବାକୁ ଚାହୁଁଥିଲେ ଏବଂ କଂଗ୍ରେସ ଅଧିବେଶନର କ୍ଳାନ୍ତି ପରେ ସେ ରେଲରେ ସୁସ୍ଥରେ ଯିବାକୁ ଚାହୁଁଥିଲେ । ସେ ତାଙ୍କ ଡବାରେ ଚଢ଼ିଲେ, ରେଳର ଅନ୍ୟ ଡବାରେ କଲିକତା ଫେରୁଥିବା ପ୍ରତିନିଧିଙ୍କ ଯୋଗୁଁ ଭିଡ଼ ହୋଇଥାଏ । କିଛିକ୍ଷଣ ପରେ ଭୂପେନ୍ଦ୍ରନାଥ ବସୁ ଗୋଖଲେଙ୍କ ନିକଟକୁ ଆସି ତାଙ୍କ ଡବାରେ ଯାଇ ପାରିବେ କି ବୋଲି ପଚାରିଲେ । ଭୂପେନ୍ଦ୍ର ବସୁ ପରେ ଇଣ୍ଡିଆ କାଉନ୍‌ସିଲର ସଭ୍ୟ ହୋଇଥିଲେ । ଶ୍ରୀ ବସୁଙ୍କ ମୁହଁ ଖୋଲିଲେ ଆଉ ରକ୍ଷା ନାହିଁ, ଏକଥା ଗୋଖଲେଙ୍କୁ ମାଲୁମ ଥାଏ । ସେ ତେଣୁ ରାଜି ହେଲେ । କେତେକ ମିନିଟ ପରେ ଶ୍ରୀ ବସୁଙ୍କର ଜଣେ ବନ୍ଧୁ ଆସି ମଧ୍ୟ ସେହି ଡବାରେ ଗଲେ । ସେ ଗୋଖଲେଙ୍କର କିଛି ଆପତ୍ତି ଅଛି କି ବୋଲି ପଚାରିଲେ । ଗୋଖଲେ ସେଥିରେ ବି ରାଜି ହେଲେ । ରେଲ ଛାଡ଼ିବାର କିଛି କ୍ଷଣ ପୂର୍ବରୁ ଶ୍ରୀ ବସୁ କହିଲେ ଯେ, ସେ ଓ ତାଙ୍କ ବନ୍ଧୁ ଉପରେ ଶୋଇବାକୁ ଟିକିଏ ଅସୁବିଧା ବୋଧ କରୁଛନ୍ତି । ଗୋଖଲେ ଯଦି ଉପରକୁ ଉଠନ୍ତେ, ସେମାନେ ତଳେ ଦୁଇଟିଯାକ 'ବାର୍ଥ' ଅଧିକାର କରି ବସନ୍ତେ ! ମୋର ମନେହୁଏ ଶେଷକୁ ସେହି ବ୍ୟବସ୍ଥା ହେଲା । ବିଚରା ଗୋଖଲେ ଉପରକୁ ଉଠିଲେ ଏବଂ ସାରା ରାତି କଷ୍ଟରେ କଟାଇଲେ ।

ମୁଁ ଆଇନ ବ୍ୟବସାୟ ଆରମ୍ଭ କରି ହାଇକୋର୍ଟରେ କାର୍ଯ୍ୟ କଲି । ଏହି କାର୍ଯ୍ୟରେ କେତେକ ପରିମାଣରେ ମୋର ଆଗ୍ରହ ଜନ୍ମିଲା । ମୋର ଇଉରୋପରୁ ପ୍ରତ୍ୟାବର୍ତ୍ତନର ପ୍ରଥମ କେତେ ବର୍ଷ ବେଶ୍ ଆନନ୍ଦ-ଦାୟକ ଥିଲା । ମୁଁ ଘରକୁ ଫେରି ପୁଣି ପୁରୁଣା ବନ୍ଧୁମାନଙ୍କ ସହିତ ମିଳିମିଶି ରହିବାକୁ ମୋତେ ଖୁସି ଲାଗିଲା । ମାତ୍ର କ୍ରମେ ମୁଁ ଅନ୍ୟମାନଙ୍କ ସହ ମିଶି ଯେଉଁ ଜୀବନ କଟାଇଲି, ତାହା ସମସ୍ତ ନୂତନତ୍ୱ ହରାଇଲା ଏବଂ ଲକ୍ଷ୍ୟହୀନ ଓ ବ୍ୟର୍ଥ ଜୀବନର କାର୍ଯ୍ୟକ୍ରମ ମୁଁ କଟାଉଥିଲି । ପରି

ନେ'ନ୍ତେ ବୋଧ ହେଲା । ମୋର ଶାରୀରିକ ଅବସ୍ଥା ପ୍ରତି ଏପରି ଅସନ୍ତୋଷ ଜନ୍ମିବାର କାରଣ ଲାଗି ମୋ ମତରେ ମିଶ୍ରିତ ଶିକ୍ଷା ଦାୟୀ । ଇଂଲଣ୍ଡରେ ୭ ବର୍ଷ ରହିବା ହେତୁ ମୋର ଯେଉଁ ଅଭ୍ୟାସ ସବୁ ହୋଇ ଥିଲା, ଯେଉଁ ସବୁ ଧାରଣା ଜନ୍ମିଥିଲା, ଏଠାରେ ମୁଁ ଯାହାସବୁ ଦେଖିଲି ତାହା ସେଥି ସହିତ ଖାପ ଖାଉନାହିଁ । ଦୌର୍ଭାଗ୍ୟର କଥା ଆମ ଘରର ବାୟୁମଣ୍ଡଳ ଏକ ପ୍ରକାର ଚଳଣୀୟ ଥିଲା, ଏହା ମୋତେ ସାହାଯ୍ୟ କଲା । ମାତ୍ର ଯଥେଷ୍ଟ ବୋଧ ହେଲା ନାହିଁ । ଅନ୍ୟ ସମୟରେ ମୁଁ ଓକିଲଖାନା (ବାରଲାଇବ୍ରେରୀ) ଓ କ୍ଲବମାନଙ୍କୁ ଯାଉଥିଲି । ମାତ୍ର ସେଠାରେ ସେହି ଏକା ଲୋକ ଦେଖିବାକୁ ପାଉଥିଲି—ସେମାନେ ପୁରୁଣା ଆଇନ ବ୍ୟବସାୟ ସଂକ୍ରାନ୍ତ କଥା ବାରମ୍ବାର ଆଲୋଚନା କରନ୍ତି । ମୋଟାମୋଟି ଏଠାରେ ମାନସିକ ଚଳନା ପାଇଁ କିଛି ନ ଥିଲା—ମୋ ନିକଟରେ ଜୀବନ ସ୍ୱାଦହୀନ (ବିସ୍ୱାଦ) ବୋଧ ହେଲା । ଏଠାରେ ଅବସର ସମୟ କଟାଇବା ନିମନ୍ତେ ସେପରି କିଛି ଆମୋଦ ପ୍ରମୋଦ ବି ନ ଥିଲା ।

ଇ. ଏମ୍. ଫଷ୍ଟର୍‌ଙ୍କ ପ୍ରକାଶିତ ଜି. ଲୋଏ ଡିକନ୍‌ସନ୍‌ଙ୍କ ବହିରେ ଭାରତ ସମ୍ପର୍କରେ ଲେଖାଯାଇଛି—ଦୁଇ ଜାତିଙ୍କ ଭିତରେ କାହିଁକି ମେଳ ହୋଇପାରୁ ନାହିଁ ? ଏହାର କାରଣ ଅତି ସରଳ । ଭାରତୀୟଙ୍କ ଦାଣ୍ଟସୁଖ ଇଂରେଜଙ୍କ ପକ୍ଷେ ପୀଡ଼ାଦାୟକ । ଏହା ଏକ ପ୍ରକୃତ ଘଟଣା । ଅନେକ ଇଂରେଜ ଲୋକ ଏହିପରି ବୋଧ କରିବା ସମ୍ଭବ ଏବଂ ଏଥିରେ ଆଶ୍ଚର୍ଯ୍ୟ କିଛି ନାହିଁ । ଫଷ୍ଟର୍‌ଙ୍କ ଆଉ ଏକ ବହିରେ ଲେଖାଅଛି—ଭାରତରେ ପ୍ରତ୍ୟେକ ଇଂରେଜ ପ୍ରକୃତ ମନେକରେ, ସତେ କି ସେ ଜବରଦସ୍ତ ଦଖଲ କରୁଥିବା ସୈନ୍ୟଶ୍ରେଣୀର ସଭ୍ୟ ଏବଂ ସେହିପରି ସେ ମଧ୍ୟ କାର୍ଯ୍ୟକରେ । ଏପରି ଅବସ୍ଥାରେ ଦୁଇ ଜାତିଙ୍କ ଭିତରେ ସମ୍ବନ୍ଧ ଯେ ଅବାଞ୍ଛନୀୟ ହେବ, ଏହା ସ୍ୱାଭାବିକ । ଇଂରେଜ ଓ ଭାରତୀୟ ଉଭୟେ ପରସ୍ପରକୁ ଦେଖାଉ ନ ଥାନ୍ତି ଏବଂ ପରସ୍ପର ସାଥୀ ହେଲେ ବଡ଼ ଅସ୍ୱସ୍ତି ବୋଧ କରିବା ସ୍ୱାଭାବିକ । ପ୍ରତ୍ୟେକ ପ୍ରତ୍ୟେକକୁ ଭଲପାଆନ୍ତି ନାହିଁ

ଏବଂ କୌଣସି ପ୍ରକାର ସଙ୍ଗ ଓ ସ୍ୱାଧୀନ ଭାବରେ ବୁଝିବାକୁ ସେମାନେ ଚାହିଁ ବସିଥାନ୍ତି ।

ସାଧାରଣତଃ ଏକପ୍ରକାର ଭାରତୀୟ, ଯଥା ଚାକର ବାକରରେ ସଂଯୁକ୍ତ ଥିବା ଲୋକମାନଙ୍କ ସମ୍ପର୍କରେ ଇଂରେଜମାନେ ଆସନ୍ତି । ସେ ପ୍ରାୟ ମଜାଦାର ଲୋକଙ୍କ ପାଖରେ ପହଞ୍ଚନ୍ତି ନାହିଁ, ପହଞ୍ଚିଲେ ବି ସେମାନଙ୍କ ସହିତ ମିଶନ୍ତି ନାହିଁ । ଭାରତରେ ଇଂରେଜ ଶାସନ ହେତୁ ଇଂରେଜ ଓ ଭାରତୀୟ ଉଭୟ ଅଫିସର ଶ୍ରେଣୀ ସାମାଜିକ ହିସାବରେ ପୂଜା କରିଥିବା ଲକ୍ଷଣ ଏବଂ ଏହି ଶ୍ରେଣୀ ଅତ୍ୟନ୍ତ ନିର୍ବୋଧ ଓ ସଙ୍କୀର୍ଣ୍ଣମନା । ଏପରି କି ଏକ ଶିକ୍ଷିତ ଇଂରେଜ ଭାରତକୁ ଆସିବାର ଅଳ୍ପ ଦିନ ପରେ ତାର ସମସ୍ତ ଶିକ୍ଷା ଓ ସଂସ୍କୃତି ଭୁଲି ସମଗ୍ର ଜୀବନର ଚିନ୍ତା ଓ ଆନ୍ଦୋଳନରୁ ଦୂରେଇ ରହିବ । ଦିନ ସାରା ଅଫିସରେ ସେହି ଏକପ୍ରକାର ଅସରନ୍ତି ଫାଇଲ ଘାଣ୍ଟି ଘାଣ୍ଟି ଘରକୁ ଆସିବ—ତାପରେ ବ୍ୟାୟାମ କସରତ୍ କରିସାରି କ୍ଲବକୁ ଯିବ । ସେଠାରେ ନିଜ ଜାତିର ଲୋକଙ୍କ ସହିତ ମିଳାମିଶା କରିବ—ମଦ ପିଇବ, 'ପଞ୍ଚ' ଏବଂ ଇଂଲଣ୍ଡରୁ ଆସିଥିବା ସଚିତ୍ର ସାପ୍ତାହିକ କାଗଜ ପଢ଼ିବ । ସେମାନେ ଖୁବ୍ କମ୍ ବହି ପଢ଼ନ୍ତି ଏବଂ ପଢ଼ିବାକୁ ଇଚ୍ଛା ହେଲେ ପୁରୁଣା ବହି ପାଆନ୍ତି । ଧୀରେ ଧୀରେ ଏହି ଅବନତି ଯୋଗୁଁ ସେମାନେ ଭାରତକୁ ଦୋଷ ଦିଅନ୍ତି, ଜଳବାୟୁର ନିନ୍ଦା କରନ୍ତି । ଶେଷରେ ଆନ୍ଦୋଳନକାରୀମାନଙ୍କୁ ଦୋଷ ଦେଇ ଅସନ୍ତୋଷ ଦିଅନ୍ତି । ମାତ୍ର ଭାରତରେ ଯେଉଁ ଏକଚ୍ଛତ୍ର ଓ ସ୍ୱେଚ୍ଛାଚାରୀ ଶାସନ ପ୍ରଚଳିତ ଓ ଯାହାର ସେ ଗୋଟିଏ ଅଙ୍ଗ ସ୍ୱରୂପ, ସେଥିପାଇଁ ଏପରି ମାନସିକ ଅଧୋଗତି ଘଟୁଛି ବୋଲି ସେମାନେ ବୁଝିପାରନ୍ତି ନାହିଁ ।

---

ଇଂରେଜ ଅଫିସରମାନେ ଅଧିକ ଛୁଟି ଓ ସୁବିଧା ଭୋଗ କରୁଥିବା ସତ୍ତ୍ୱେ ଯଦି ସେମାନଙ୍କର ଅବସ୍ଥା ଏପରି ହୁଏ, ତେବେ ସେମାନଙ୍କ ସହିତ ବା ସେମାନଙ୍କ ଅଧୀନରେ ଯେଉଁ ଭାରତୀୟ

କର୍ମଚାରୀ କାର୍ଯ୍ୟ କରନ୍ତି ଏବଂ ଇଂରେଜ ଢଙ୍ଗଢାଙ୍ଗ ଅନୁକରଣ କରନ୍ତି, ସେମାନଙ୍କ ଅବସ୍ଥା କୌଣସି ଗୁଣରେ ଭଲ ନ ହେବାର କଥା। ସାମ୍ରାଜ୍ୟର ରାଜଧାନୀ ଦିଲ୍ଲୀ ସମ୍ବନ୍ଧରେ ଇଂରେଜ ଓ ଭାରତୀୟ ଉଚ୍ଚସ୍ଥ-ଅଫିସରଙ୍କ ପାଖରେ ବସି ତାଙ୍କଠାରୁ ପଦୋନ୍ନତି, ଛୁଟି, କମିସନ, ଫର୍ଲୋ, ବଦଳି ଏବଂ ଗୃହକାର୍ଯ୍ୟ ସମ୍ବନ୍ଧରେ ଅନ୍ୟ କିଛି କଥା ଶୁଣିବା ଅପେକ୍ଷା ଗୌରବମୟ ଅନୁଭୂତି ଆଉ କିଛି ନାହିଁ।

ଅତୀତରେ କଲିକତା ଓ ବମ୍ବେ ପରି ସହରର କିୟଦଂଶ ନେତା ସରକାରୀ ଚାକିରିଆମାନଙ୍କର ଏବଂ ବାୟୁମଣ୍ଡଳଦ୍ୱାରା ସମସ୍ତ ମଧ୍ୟବିତ୍ତ ଶ୍ରେଣୀ ବିଶେଷତଃ ଇଂରେଜ ଶିକ୍ଷିତ ବୃତ୍ତିଜୀବୀମାନେ ପ୍ରଭାବିତ। ବ୍ୟବସାୟୀ ଲୋକେ, ଓକିଲ, ଡାକ୍ତର ଓ ଅନ୍ୟମାନେ ଏହି ପାଳରେ ପଡ଼ିଥିଲେ ଏବଂ ଅର୍ଦ୍ଧ ସରକାରୀ ବିଶ୍ୱବିଦ୍ୟାଳୟର ଶିକ୍ଷାଲବ୍ଧ ସବୁରି ମଧ୍ୟ ଅବସ୍ଥା ସେଇଆ। ଏହିସବୁ ଲୋକେ ଆଉ ଏକ ଅଲଗା ଦୁନିଆରେ ବାସ କରନ୍ତି। ଜନସାଧାରଣ, ଏପରିକି ନିମ୍ନ ମଧ୍ୟବିତ୍ତ ଶ୍ରେଣୀଙ୍କଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇଥାନ୍ତି। ଉପର ମହଲର ଲୋକଙ୍କ ଭିତରେ ରାଜନୀତି ସୀମାବଦ୍ଧ ଥିଲା। ୧୯୦୬ ମସିହା ପରଠାରୁ ବଙ୍ଗଳାର ଜାତୀୟ ଆନ୍ଦୋଳନ ପ୍ରଥମ ଥର ପାଇଁ ଏହାକୁ ଦୋହଲାଇ ଦେଇଥିଲା ଏବଂ ବଙ୍ଗଳାର ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ଓ କେତେକ ପରିମାଣରେ ଜନସାଧାରଣଙ୍କ ଭିତରେ ନୂତନ ଜୀବନ ଦେଇଥିଲା। ପରବର୍ତ୍ତୀ କାଳରେ ଗାନ୍ଧିଜୀଙ୍କ* ନେତୃତ୍ୱରେ ଏହା ଅତି ଶୀଘ୍ର ବୃଦ୍ଧି ପାଇଲା। କିନ୍ତୁ ଜାତୀୟ ସଂଗ୍ରାମ ଜୀବନ ଦେଇ ପାରୁଥିଲେ ସୁଦ୍ଧା ଏକ ସଂକୀର୍ଣ୍ଣ ନୀତି ଏବଂ ଏହା ଅନେକ ଶକ୍ତି ଓ ନିଷ୍ଠା ନେଇଯାଏ—ଅନ୍ୟ କାର୍ଯ୍ୟ କରିବା ଲାଗି ଶକ୍ତି ରହେନାହିଁ।

---

* ମୁଁ ମହାତ୍ମା ଗାନ୍ଧୀଙ୍କୁ ଏ ବହିରେ 'ଗାନ୍ଧିଜୀ' ବୋଲି ବରାବର କହି ଆସିଛି। କାରଣ ସେ ନିଜେ ମହାତ୍ମା ଅପେକ୍ଷା ଏହି ନାମକୁ ପସନ୍ଦ କରନ୍ତି। କିନ୍ତୁ ଇଂରେଜ ଲେଖକ ଏହି 'ଜୀ'ର ଅଦ୍ଭୁତ ଅର୍ଥ

ସୁତରାଂ ଇଂଲଣ୍ଡରୁ ଫେରିବାର ପ୍ରଥମ କେତେ ବର୍ଷ ପର୍ଯ୍ୟନ୍ତ ମୁଁ ବଡ଼ ଅସନ୍ତୋଷ ଜୀବନ କଟାଇଲି । ମୋର ବ୍ୟବସାୟରେ ପୂର୍ଣ୍ଣପ୍ରାଣରେ ଲାଗିହୁ ପାରିଲି ନାହିଁ । ମୁଁ ରାଜନୀତି ବୋଇଲେ ବିଦେଶୀ ଶାସନ ବିରୁଦ୍ଧରେ ଉଗ୍ର ଜାତୀୟବାଦୀ କାର୍ଯ୍ୟପନ୍ଥା ବୁଝୁଥିଲି—ସେଥିପାଇଁ ଏଥିରେ କୌଣସି ସ୍ଥାନ ନ ଥିଲା । ମୁଁ କଂଗ୍ରେସରେ ଯୋଗ ଦେଲି ଏବଂ ଏହାର ସାମୟିକ ସଭା-ସମିତିରେ ମଧ୍ୟ ଭାଗନେଲି । ଯେତେବେଳେ ଫିଜିରେ ଭାରତୀୟ କୁଲି ଏବଂ ଦକ୍ଷିଣ ଆଫ୍ରିକାରେ ଭାରତୀୟ ସମସ୍ୟା ପରି ବିଶେଷ ସମସ୍ୟା ଆସି ପହଞ୍ଚେ, ମୁଁ ସେଥିରେ ମୋର ସମସ୍ତ ଶକ୍ତି ଦେଇ ମାତିଯାଏ ଓ କଠିନ ପରିଶ୍ରମ କରେ । ମାତ୍ର ଏହି ସବୁ କାର୍ଯ୍ୟ ଅଳ୍ପକ୍ଷଣ ସ୍ଥାୟୀ ।

ମୁଁ ବେଳେ ବେଳେ ଶିକାରକୁ ଯାଏ; ମାତ୍ର ଏଥିପ୍ରତି ମୋର ବିଶେଷ ଆଗ୍ରହ ବା ଇଚ୍ଛା ନ ଥାଏ । ମୁଁ ବାହାରେ ବୁଲିବା ଓ ଜଙ୍ଗଲକୁ ଯିବାଟାକୁ ଭଲ ପାଉଥିଲି—ମାରିବାରେ ବେଶୀ ଧ୍ୟାନ ଦେଉ ନ ଥିଲି ।

---

କରିଥିବାର ମୁଁ ଦେଖିଛି । ଅନେକ ମନେ କରନ୍ତି, ଏହା ଏକ ପ୍ରିୟ ନାମ—ଏହାର ଅର୍ଥ ହେଉଛି "ପ୍ରିୟ ଶ୍ରେଷ୍ଠ ଗାନ୍ଧୀ ।" ଏହା ଅମୂଳକ ଏବଂ ଭାରତୀୟ ଜୀବନ ସମ୍ବନ୍ଧରେ ଅବୋଧତାର ପରିଚୟ । ଭାରତରେ 'ଜୀ' ସାଧାରଣ ବ୍ୟବହାର—ସ୍ତ୍ରୀ, ପୁରୁଷ, ବାଳକ, ବାଳିକା ସମସ୍ତଙ୍କ ନାମରେ ଲାଗେ ।

ଇଂରେଜୀରେ ମିଷ୍ଟର, ମିସେସ୍ କିମ୍ବା ମିସ୍ ବୋଲି ଯେପରି ଲେଖନ୍ତି, ଏହା ଏକ ପ୍ରକାର ସେହି ଅର୍ଥ ବୁଝାଏ । ହିନ୍ଦୁସ୍ତାନୀ ଭାଷାରେ ଅନେକ ଉପାଧି ଅଛି । ଏଥିଭିତରୁ 'ଜୀ' ହେଉଛି ସବୁଠାରୁ ଶ୍ରେଷ୍ଠ । ମୁଁ ମୋ ଭିଣୋଇ ରଣଜିତ୍ ଏସ୍ ପଣ୍ଡିତଙ୍କଠାରୁ ଶୁଣିଛି ଯେ, ଅନେକ କାଳରୁ ଏହି ଜୀ ଚଳିଆସିଛି । ଏହା ସଂସ୍କୃତର ଆର୍ଯ୍ୟ ଶବ୍ଦ-ଅର୍ଥ ଭଦ୍ରଲୋକ ଓ ଭଦ୍ରବଂଶଜ (ଆର୍ଯ୍ୟ ଶବ୍ଦର ନାଜି ଯେପରି ଅର୍ଥ କରନ୍ତି ତାହା ନୁହେଁ) ଆର୍ଯ୍ୟ କ୍ରମେ ଅଜ ହେଲା ଏବଂ ଅଜରୁ ଜୀ ହେଲା ।

ବାହୁବଳ ଏକ ଅହିଂସ ଶିକାରୀ ଖବରରେ ମୋର ଖ୍ୟାତି ଥିଲା । କେବଳ ଦୈବକ୍ରମେ ଥରେ କାଶ୍ମୀରରେ ଗୋଟାଏ ଗୁଳି ମାତ୍ର ଚଳାଇଥିଲି । ଫଳେ ଏକ କୃଷ୍ଣସାର ମୃଗ ଶିଶୁ ମାରି ମୋର ଶିକାର ପ୍ରତି ଯାହା ବା ଅନୁରକ୍ତି ଥିଲା, ତାହା ଶେଷ ପାଇଲା । ସେହି ନିରୀହ ଆହତ ଛୋଟ ପ୍ରାଣୀଟି ମୋ ପାଦତଳେ ପଡ଼ି ମୋ ଆଡ଼କୁ ଛଳ ଛଳ ନେତ୍ରରେ ଅନାଇଲା । ସେହିଦିନଠାରୁ ସେହି ଆଖିଯୋଡ଼ିକ ମନେ ପଡ଼ି ମୋ ମନକୁ ଆଘାତ କରେ । ସେହି ସମୟରେ ଗୋଖଲେଙ୍କର ଭାରତ ସେବକ ସମିତି ପ୍ରତି ମୁଁ ଆକୃଷ୍ଟ ହୋଇଥିଲି । ମୁଁ ଏଥିରେ କେବେହେଲେ ଯୋଗ ଦେବାକୁ ଇଚ୍ଛା କରି ନ ଥିଲି; କାରଣ ମୋ ପକ୍ଷରେ ଏହାର ରାଜନୀତି ଅତ୍ୟନ୍ତ ମନ୍ଥର ଧରଣର ମନେ ହେଉଥିଲା ଏବଂ ଆହୁରି ଏକ କାରଣ ହେଉଛି ମୁଁ ମୋ ଓକିଲାତି ବ୍ୟବସାୟ ଛାଡ଼ିବାକୁ ଚାହୁଁ ନ ଥିଲି । ମାତ୍ର ସେହି ସମିତିର ସଭ୍ୟମାନେ ସାମାନ୍ୟ ମାସ ବେତନ ନେଇ ନିଜକୁ ଦେଶ କାର୍ଯ୍ୟରେ ନିଯୁକ୍ତ କରୁଥିବା କାର୍ଯ୍ୟକୁ ଖୁବ୍ ପ୍ରଶଂସା କରୁଥିଲି । ଏହା ଯଦିଓ ଠିକ୍ ଧାରାରେ ଚାଲୁ ନ ଥିଲା, ତଥାପି ଏକ ଉଦ୍ଦେଶ୍ୟରେ ମନୋନିବେଶ କରି କାର୍ଯ୍ୟ କରୁଛନ୍ତି ବୋଲି ମୁଁ ମନେ କଲି ।

ଯାହାହେଉ ରାଜନୀତି ସହିତ କୌଣସି ସମ୍ପର୍କ ନ ଥିବା ଆଉ ଏକ ଘଟଣାରେ ଶ୍ରୀ ଶ୍ରୀନିବାସ ଶାସ୍ତ୍ରୀଙ୍କ କଥାରେ ମୁଁ ମର୍ମାହତ ହୋଇଥିଲି । ସେ ଏଲାହାବାଦରେ ଏକ ଛାତ୍ର ସଭାରେ ବକ୍ତୃତା କରି କହିଲେ, ତମେମାନେ ଶିକ୍ଷକ ଓ ଅଧ୍ୟାପକମାନଙ୍କୁ ମାନ୍ୟ କରି, କର୍ତ୍ତୃପକ୍ଷମାନେ ଯେଉଁ ନିୟମକାନୁନ କରିଛନ୍ତି, ତାହା ଯଥାସମ୍ଭବରେ ପାଳନ କର । ଏହିସବୁ ମଧୁର କଥା ମୋତେ ଭଲ ଲାଗିଲା ନାହିଁ, କର୍ତ୍ତୃପକ୍ଷଙ୍କ ନିକଟରେ ସର୍ବଦା ମୁଣ୍ଡ ନୁଆଁଇ ମାନିନେବା ଲାଗି ଜୋର ଦେଇ କହିବା ଅତ୍ୟନ୍ତ ଅବାଞ୍ଛନୀୟ । ମୋର ମନେହେଲା ଭାରତରେ ଯେଉଁ ଅଧ୍ୟା ସହକାରୀ ବାୟୁମଣ୍ଡଳ ରହିଛି, ସେଥିଯୋଗୁଁ ବୋଧହୁଏ ଏହା ହେଉଛି । ପିଲାମାନେ ସେମାନଙ୍କର ଦୋଷତ୍ରୁଟି ସଙ୍ଗେ

ସଙ୍ଗେ କର୍ତ୍ତୃପକ୍ଷଙ୍କୁ ଜଣାଇ ଦିଅନ୍ତୁ ବୋଲି ଶ୍ରୀ ଶାସ୍ତ୍ରୀ କହୁଥିଲେ । ଏହାର ଅର୍ଥ ସେମାନେ ପ୍ରତ୍ୟେକର କାର୍ଯ୍ୟକଳାପ ପ୍ରତି ନଜର ରଖି ଗୁପ୍ତଚର ରୂପେ କାର୍ଯ୍ୟ କରିବେ । ଶ୍ରୀ ଶାସ୍ତ୍ରୀ ଏପରି ଖୋଲି ଖୋଲି କହି ନ ଥିଲେ, ମାତ୍ର ସେ ଯାହା କହିଲେ, ତାହାର ପରିଷ୍କାର ଅର୍ଥ ଏହିୟା । ଜଣେ ବଡ଼ ନେତାଙ୍କର ଏପରି ପରାମର୍ଶ ଶୁଣି ମୁଁ ଅବାକ୍ ହେଲି । ମୁଁ ନିକଟରେ ଇଂଲଣ୍ଡରୁ ଫେରିଥାଏ ଏବଂ ସେଠା ସ୍କୁଲ କଲେଜରେ ଏକ ବଡ଼ କଥା ହେଉଛି ଯେ, ନିଜର ସାଥୀପ୍ରତି କେବେହେଁ ବିଶ୍ୱାସଘାତକତା କରିବ ନାହିଁ । ନିଜ ସାଥୀର କାର୍ଯ୍ୟପ୍ରତି ଗୁପ୍ତରୂପେ ନଜର ଦେବା, କର୍ତ୍ତୃପକ୍ଷଙ୍କୁ ଜଣାଇ ଦେଇ ତାହାକୁ ବିପଦରେ ପକାଇବା ପରି ଆଉ ବଡ଼ ଘୃଣ୍ୟକାର୍ଯ୍ୟ କିଛି ନାହିଁ । ଏହି ନୀତିର ସମ୍ପୂର୍ଣ୍ଣ ବିପରୀତ କଥା ଶୁଣି ମୁଁ ହଠାତ୍ ବିଚଳିତ ହୋଇଗଲି ଏବଂ ମୁଁ ବୋଧକଲି ମୋତେ ଯେଉଁ ନୈତିକତା ଶିକ୍ଷା ଦିଆଯାଇଛି ଏବଂ ଶ୍ରୀ ଶାସ୍ତ୍ରୀଙ୍କ ନୈତିକତା ଭିତରେ ଅନେକ ପାର୍ଥକ୍ୟ ରହିଛି ।

ପୃଥିବୀ ଯୁଦ୍ଧ ବା ମହାସମର ଆସି ପହଞ୍ଚିଲେ, ଆମମାନଙ୍କ ଦୃଷ୍ଟି ସେଥିପ୍ରତି ଗଲା । ଏହା ଅନେକ ଦୂରରେ ହେଉଥିଲା ଏବଂ ପ୍ରଥମେ ଆମେ ବିଶେଷ କିଛି ଅନୁଭବ କରିପାରୁ ନ ଥିଲୁଁ ଏବଂ ଏହାର ଭୀଷଣତା ଭାରତରେ ଆଦୌ ମାଲୁମ ହେଉ ନ ଥିଲା । ରାଜନୈତିକ ଆନ୍ଦୋଳନ ମାନ୍ଦା ପଡ଼ି ଅଚଳ ପରି ହୋଇଗଲା । ଭାରତ ରକ୍ଷା ଆଇନ (ବ୍ରିଟିଶ ଡି: ଓ: ଆର:ଏ: ଶ) ଦେଶରେ ଜାରି ହୋଇଗଲା । ଦ୍ୱିତୀୟ ବର୍ଷ ପରଠାରୁ ଷଡ଼ଯନ୍ତ୍ର ଓ ଗୁପ୍ତହତ୍ୟା ଆଦି ସମ୍ବାଦ ଆସି ପହଞ୍ଚିଲା ଏବଂ ପଞ୍ଜାବରେ ସୈନ୍ୟ ସଂଗ୍ରହ ନିମନ୍ତେ ଜୋର ଜବରଦସ୍ତି କରାଗଲା ।

ଖୁବ୍ ରାଜଭକ୍ତ ଦେଖାଇ ହେଉଥିଲେ ସୁଦ୍ଧା ବ୍ରିଟିଶମାନଙ୍କ ସହିତ ଖୁବ୍ କମ୍ ସହାନୁଭୂତି ଥିଲା । ମଡରେଟ ଓ ଚରମ ପନ୍ଥୀ ଉଭୟେ ଜର୍ମାନ ବିଜୟ ଶୁଣି ଆନନ୍ଦିତ ହେଉଥିଲେ । ଅବଶ୍ୟ ଜର୍ମାନୀ ପ୍ରତି ଶ୍ରଦ୍ଧା ନ ଥିଲା, କେବଳ ନିଜର ଶାସକ ପରାସ୍ତ ହେବାର ଇଚ୍ଛା ପ୍ରବଳ ଥିଲା ।

ଅନେକ ସାମ୍ରାଜ୍ୟରେ ନିଜର ପ୍ରଭୁତ୍ୱ ଚରିତାର୍ଥ କରିବା ଲାଗି ଏହା ସ୍ୱାଭାବିକ ଓ ଅସହାୟ ଲୋକର ମନୋବୃତ୍ତି । ମୋତି ମନେ ହୁଏ ଆମ ଭିତରୁ ଅନେକ ଏହିପରି ଭାବରେ ଏହାର ଆଲୋଚନା କରୁଥିଲୁ । ମନରେ ଯେତେ ଦୋଷ ସମ୍ପୃକ୍ତ ଥିଲେ, ସେଥିମଧ୍ୟରୁ ସମ୍ଭବତଃ ଫ୍ରାନ୍ସ ପ୍ରତି ମୋର ବେଶି ସହାନୁଭୂତି ଥିଲା । ମିତ୍ରଶକ୍ତି ପକ୍ଷରୁ ଯେଉଁସବୁ ଅବସ୍ଥାନ୍ତର ବର୍ଣ୍ଣିତ ପ୍ରଚାର ହେଉଥିଲା, ତାହାକୁ ଆମେ ଅତିକ୍ରମ କରିବାକୁ ଚେଷ୍ଟା କରୁଥିଲୁ ସୁଦ୍ଧା ଏହାର ପ୍ରଭାବ ଆମ ଉପରେ ପଡୁଥିଲା ।

ଧୀରେ ଧୀରେ ପୁଣି ରାଜନୀତିକ ଜୀବନ ବୃଦ୍ଧି ପାଇବାକୁ ଲାଗିଲା । ଲୋକମାନ୍ୟ ତିଲକ ଜେଲରୁ ଖଲାସ ହେଲେ ଏବଂ ସେ ଓ ଆନିବେଶାନ୍ତ 'ହୋମ ରୁଲ ଲିଗ୍' ସ୍ଥାପନ କଲେ । ଭାରତ ରାଜନୀତି କ୍ଷେତ୍ରରେ ଶ୍ରୀମତୀ ବେଶାନ୍ତ ଅଧିକ ପ୍ରଭାବ ବିସ୍ତାର କରିବାକୁ ଲାଗିଲେ । କଂଗ୍ରେସର ବାର୍ଷିକ ଅଧିବେଶନଗୁଡ଼ିକ ଟିକିଏ ଉତ୍ସାହପ୍ରଦ ହେଲା ଏବଂ କଂଗ୍ରେସ ସହିତ ମୁସଲମ୍ ଲିଗ୍ ବି ମିଳିଲା । ବାୟୁମଣ୍ଡଳ ଉଦ୍ଦୀପ୍ତ ହୋଇଗଲା । ଆମେ ଯୁବକମାନେ ଖୁବ୍ ଆବେଗପୂର୍ଣ୍ଣ ଭାବରେ ନିକଟ ଭବିଷ୍ୟତରେ ବଡ଼ ବଡ଼ ଘଟଣା ଘଟିବ ବୋଲି ଆଶା କରି ବସିଲୁ । ଶ୍ରୀମତୀ ବେଶାନ୍ତ ଅଟକ ରହିବାରୁ ବୁଦ୍ଧିଜୀବୀଙ୍କ ଭିତରେ ଉତ୍ତେଜନା ବୃଦ୍ଧି ପାଇଲା ଏବଂ ଦେଶସାରା ହୋମ ରୁଲ ଆନ୍ଦୋଳନ ସଜୀବ ହୋଇ ଉଠିଲା । ୧୯୦୭ ସାଲଠାରୁ ଯେଉଁ ପୁରୁଣା ଲୋକେ କଂଗ୍ରେସରୁ ଅଲଗା ହୋଇଥିଲେ, ସେମାନେ ଯେ କେବଳ ହୋମରୁଲରେ ଯୋଗ ଦେଲେ ତାହା ନୁହେଁ, ଅନେକ ମଧ୍ୟବିତ୍ତ ଶ୍ରେଣୀର ନୂତନ ଯୁବକ ଏଥିରେ ଯୋଗଦେଲେ । ଏହା ଜନ ସାଧାରଣଙ୍କ ଭିତରେ ପ୍ରବେଶ କରି ନ ଥିଲା ।

ଶ୍ରୀମତୀ ବେଶାନ୍ତ ଅଟକ ରହିବାଦ୍ୱାରା ଅନେକ ମଡ଼ରେଟ୍ ନେତାଙ୍କ ସମେତ ପୁରୁଣା ଲୋକଙ୍କ ଭିତରେ ଗୁରୁତ୍ୱ ସୃଷ୍ଟି କଲା । ମୋର ମନେ ଅଛି, ଠିକ୍ ତାଙ୍କର ନଜରବନ୍ଦୀ ହେବା ପୂର୍ବରୁ ଶ୍ରୀନିବାସ ଶାସ୍ତ୍ରୀଙ୍କର ଜ୍ୱାଲାମୟୀ ବକ୍ତୃତା ଆମେ ଖବର କାଗଜରେ ପଢ଼ି

ଅତ୍ୟନ୍ତ ଉତ୍ତେଜିତ ହୋଇ ପାଉଥିଲୁ । ମାତ୍ର ତାଙ୍କର ନଜର ବନ୍ଦୀର ଠିକ୍ ପରେ ବା ପୂର୍ବେ ଶ୍ରୀ ଶାସ୍ତ୍ରୀ ନୀରବ ହୋଇଗଲେ । କାର୍ଯ୍ୟର ଆହ୍ୱାନ ବେଳେ ସେ ପଛାଇଲେ ଏବଂ ଏକ ନେତୃତ୍ୱର ଆବଶ୍ୟକତା ସମୟରେ ତାଙ୍କର ନୀରବତାଦ୍ୱାରା ଆମେ ହତାଶ ଓ ଅସନ୍ତୁଷ୍ଟ ହେଲୁଁ । ମୋର ସେତେବେଳେ ବିଶ୍ୱାସ ଜନ୍ମିଥିଲା ଯେ, ଶାସ୍ତ୍ରୀ କର୍ମକ୍ଷେତ୍ରର ଲୋକ ନୁହନ୍ତି ଏବଂ ସଙ୍କଟ ମଧ୍ୟ ଦେଇ କାର୍ଯ୍ୟ କରିବା ତାଙ୍କର ପ୍ରକୃତିବିରୁଦ୍ଧ ।

ଯାହା ହେଉ ଅନ୍ୟ ମଡ଼ରେଟ୍ ନେତାମାନେ ଅଗ୍ରସର ହେଲେ, କେତେକ ପରେ ନୀରବ ହେଲେ ଏବଂ କେତେକ ସେହିପରି ରହିଲେ । ମୋର ମନେହେଉଛି ଇଉରୋପୀୟ ଡ଼ିଫେନ୍ସ (ରାଜ୍ୟରକ୍ଷୀ) ସୈନ୍ୟମାନଙ୍କ ଅନୁକରଣରେ ଭାରତରେ ମଧ୍ୟବିତ୍ତ ଶ୍ରେଣୀର ଯୁବକମାନଙ୍କ ଭିତରୁ ସରକାର ଯେଉଁ ଭାରତୀୟ ଡିଫେନ୍ସ ସୈନ୍ୟ ଗଢ଼ିଥିଲେ, ସେ ସମୟରେ ସେ ସମ୍ବନ୍ଧରେ ଖୁବ୍ ଆଲୋଚନା ହୋଇଥିଲା । ଅନେକ ବିଷୟରେ ଇଉରୋପୀୟ ସୈନ୍ୟମାନଙ୍କଠାରୁ ପୃଥକ ଭାବରେ ଏମାନଙ୍କ ପ୍ରତି ବ୍ୟବହାର କରାଯାଉଥିଲା ଏବଂ ଏହି ଅପମାନଜନକ ପାର୍ଥକ୍ୟ ହଟି ନ ଥିଲେ ଏହାକୁ କୌଣସି ପ୍ରକାର ସହଯୋଗ କରିବା ଉଚିତ ନୁହେଁ ବୋଲି ଆମେମାନେ ଅନୁଭବ କଲୁଁ । ଅନେକ ଆଲୋଚନା ପରେ ଯୁକ୍ତପ୍ରଦେଶରେ ଆମେ ସାହାଯ୍ୟ କରିବା ଲାଗି ସ୍ଥିର କଲୁ; ଏହି ସର୍ତ୍ତ ମାନି ମଧ୍ୟ ଆମର ଯୁବକମାନେ ସାମରିକ ଶିକ୍ଷା ପାଇବା ଉଚିତ ବୋଲି ସେତେବେଳେ ମନେ କରାଯାଉଥିଲା । ମୁଁ ଏହି ନୂଆ ସୈନ୍ୟଦଳରେ ଯୋଗ ଦେବା ନିମନ୍ତେ ଦରଖାସ୍ତ ପଠାଇଲି ଏବଂ ଏଲାହାବାଦରେ ଏହି ଯୋଜନା କାର୍ଯ୍ୟକାରୀ କରିବା ନିମନ୍ତେ ଆମେ ଏକ କମିଟି ଗଢ଼ିଲୁଁ । ଏହି ସମୟରେ ଶ୍ରୀମତୀ ବେଶାନ୍ତଙ୍କ ନଜରବନ୍ଦୀ ଖବର ଆସି ପହଞ୍ଚିଲା ଏବଂ ଏହି ଅବସରରେ ସରକାରୀ କାର୍ଯ୍ୟର ପ୍ରତିବାଦ ସ୍ୱରୂପ ଡିଫେନ୍ସ ସୈନ୍ୟ ସମ୍ବନ୍ଧରେ ଚାଲୁଥିବା ଆମ କମିଟି ଓ ତାହାର ସମସ୍ତ କାର୍ଯ୍ୟ ବନ୍ଦ କରିବା ଲାଗି ମୁଁ ପ୍ରବର୍ତ୍ତାଇଲି ଏବଂ ତାହା ବନ୍ଦ ହେଲା । କମିଟିରେ ମୋର ପିତା, ସାର୍ ତେଜବାହାଦୁର ସାପ୍ରୁ, ଶ୍ରୀ. ସି. ଓ୍ୱାଇ.

ଚିନ୍ତାମଣି ଏବଂ ଅନ୍ୟ ମଡରେଟ୍ ନେତାମାନେ ଥିଲେ । ଆମେ ସେଠାରେ ସାଙ୍ଗେ ସାଧାରଣରେ ମଧ୍ୟ ଏହା ପ୍ରକାଶ କରିଦେଲୁ । ମୋର ମନେହୁଏ ପରେ ମୁକ୍ତ ସମ୍ମୁଖରେ ଏପରି କାର୍ଯ୍ୟ କରିଥିବା ହେତୁ କେତେକ ବୟୋବୃଦ୍ଧମାନେ ଅନୁତାପ କରିଥିଲେ । ଶ୍ରୀମତୀ ବେଶାନ୍ତଙ୍କ ନଜରବନ୍ଦୀ ଫଳରେ ମୋର ପିତା ଏବଂ ଆଉ କେତେକ ମଡରେଟ୍ ନେତା ହୋମରୁଲ ଲିଗ୍‌ରେ ଯୋଗ ଦେଲେ । କେତେ ମାସ ପରେ କେତେକ ମଡରେଟ୍ ସଭ୍ୟ ଲିଗ୍‌ରୁ ଇସ୍ତଫା ଦେଇଥିଲେ । ମୋର ପିତା ଏଥିରେ ରହିଥିଲେ ଏବଂ ଲିଗ୍‌ର ଏଲାହାବାଦ ଶାଖାର ସଭାପତି ହେଲେ ।

କ୍ରମଶଃ ଗଣଶୀଳ ମଡରେଟ୍ ଦଳଠାରୁ ପିତା ଖସିବାକୁ ଲାଗିଲେ । ଅତ୍ୟଧିକ ଅନୁସରଣ ଏବଂ ଘୃଣା ଦୃଷ୍ଟିରେ ଦେଖୁଥିବା ବା ଅବହେଳା କରୁଥିବା ଶତ୍ରୁପକ୍ଷଙ୍କ ନିକଟରେ ବାରମ୍ବାର ନିବେଦନ କରିବା ବିରୁଦ୍ଧରେ ସେ ଗଲେ । ମାତ୍ର ସେ ପୁରୁଣା ଚରମପନ୍ଥୀ ନେତାମାନଙ୍କୁ ବି ପସନ୍ଦ କରୁ ନ ଥିଲେ; ସେମାନଙ୍କ ଭାଷା ଓ କାର୍ଯ୍ୟପନ୍ଥା ତାଙ୍କ ଲାଗି ଦ୍ଵାର ରୁଦ୍ଧ କରିଥିଲା । ଶ୍ରୀମତୀ ବେଶାନ୍ତଙ୍କ ନଜରବନ୍ଦୀ ଓ ତାର ପରବର୍ତ୍ତୀ ଘଟଣାସବୁ ତାଙ୍କ ଉପରେ ପ୍ରଚୁର ପ୍ରଭାବ ପକାଉଥିଲା; ତଥାପି ନିର୍ଦ୍ଦିଷ୍ଟ ଭାବେ ଆଗୁଆ ହୋଇ କୌଣସି କାର୍ଯ୍ୟ କରିବାକୁ ସେ ଇତସ୍ତତଃ କଲେ । ସେତେବେଳେ ସେ ମଡରେଟ୍‌ଙ୍କ କର୍ମକୌଶଳ ଭଲ ନୁହେଁ ବୋଲି ପ୍ରାୟ କହୁଥିଲେ; ମାତ୍ର ହିନ୍ଦୁ ମୁସଲମାନ ସମସ୍ୟା ସମାଧାନ ନ ହେବା ପର୍ଯ୍ୟନ୍ତ କିଛି ଫଳପ୍ରଦ କାର୍ଯ୍ୟ ହେବା ସମ୍ଭବ ନୁହେଁ ବୋଲି ସେ କହୁଥିଲେ । ଏହା ହେବ ବୋଲି ପ୍ରତିଶ୍ରୁତି ପାଇଲେ ଯୁବକମାନଙ୍କ ସହିତ ମିଶି କାର୍ଯ୍ୟ କରିବାକୁ ସେ ରାଜି ଅଛନ୍ତି ବୋଲି କହୁଥିଲେ । ଆମ ଘରେ ନିଖିଳ ଭାରତ କଂଗ୍ରେସ କମିଟିର ଗୋଟିଏ ବୈଠକ ହୋଇ କଂଗ୍ରେସ ଓ ଲିଗ୍‌ର ଏକ ମିଳିତ ଯୋଜନା ତିଆରି ହୋଇଥିଲା । ୧୯୧୬ ମସିହାରେ ଲକ୍ଷ୍ନୌଠାରେ କଂଗ୍ରେସ ଏହା ଗ୍ରହଣ କରିବାରୁ ସେ ଅତ୍ୟନ୍ତ ପ୍ରୀତ ହେଲେ । ଏଥିରେ

ଏକ ମିଳିତ ଜାତୀୟ ମଞ୍ଚ ହେଲା ଏବଂ ନିଜର ପୁରାତନ ମଡରେଟ୍ ସାଥୀମାନଙ୍କଠାରୁ ଅଲଗା ହୋଇ ଏଥିରେ କାର୍ଯ୍ୟ କରିବାକୁ ସେ ପ୍ରସ୍ତୁତ ହେଲେ । ତତ୍କାଳୀନ ମଣ୍ଟେଗୁ ଚେମ୍ସଫୋର୍ଡଙ୍କୁ ଉଚିତ ମହତ୍ତ୍ୱ ଭାବରେ ଆସିବା ସମୟରେ ଓ ସେହି ପର୍ଯ୍ୟନ୍ତ ମଡରେଟମାନଙ୍କ ସହିତ ଏକତ୍ର ମିଶି ସେ କାର୍ଯ୍ୟ କରୁଥିଲେ । ମଣ୍ଟେଗୁ-ଚେମ୍ସଫୋର୍ଡ ରିପୋର୍ଟ ପ୍ରକାଶିତ ହେବାର ଅଳ୍ପଦିନ ପରେ ପାର୍ଥକ୍ୟ ଜାତ ହେଲା ଏବଂ ମୋ ପିତାଙ୍କ ସଂପର୍କରେ ୧୯୧୮ ମସିହା ଗ୍ରୀଷ୍ମକାଳରେ ଲକ୍ଷ୍ନୌଠାରେ ହୋଇଥିବା ଯୁକ୍ତପ୍ରଦେଶୀୟ ସମ୍ମିଳନୀରେ ସମ୍ପୂର୍ଣ୍ଣ ପାର୍ଥକ୍ୟ ହୋଇଗଲା । ଏହି ସମ୍ମିଳନୀରେ ମଣ୍ଟେଗୁ-ଚେମ୍ସଫୋର୍ଡ ପ୍ରସ୍ତାବ ବିରୁଦ୍ଧରେ ତୀବ୍ର ମତ ପ୍ରକାଶ ହେବାରୁ ମଡରେଟ୍-ମାନେ ସମ୍ମିଳନୀ ବର୍ଜନ କଲେ । ଏହି ପ୍ରସ୍ତାବମାନ ଆଲୋଚନା କରିବା ନିମନ୍ତେ ହୋଇଥିବା କଂଗ୍ରେସର ବିଶେଷ ଅଧିବେଶନକୁ ମଧ୍ୟ ଏମାନେ ବର୍ଜନ କଲେ । ସେହିଦିନଠାରୁ ସେମାନେ କଂଗ୍ରେସରୁ ଅଲଗା ହୋଇଛନ୍ତି ।

ମଡରେଟମାନେ ଏପରି ନୀରବ ହିସାବରେ ଅଲଗା ହୋଇ ଯିବା କଂଗ୍ରେସ ଅଧିବେଶନ ଏବଂ ସାଧାରଣ ସଂସ ସମ୍ପର୍କରୁ ଅଲଗା ରହିବା ଅଧିକ ସଂଖ୍ୟକ ମତ ତାଙ୍କ ବିରୁଦ୍ଧରେ ଥିଲେ ମଧ୍ୟ ସେମାନଙ୍କର ନିଜର ମତ ସ୍ଥାପନ ନ କରିବା ଓ ସେଥିପାଇଁ ଲଢ଼ାଇ ନ କରିବା ଖୁବ ଦୌର୍ବଲ୍ୟ ସାଧାରଣ କର୍ମୀ ପକ୍ଷରେ ଅମର୍ଯ୍ୟାଦାକର ବୋଲି ମୋର ମନେ ହେଲା । ମୋର ମନେହୁଏ, ଏ ଦେଶର ଅନେକ ଲୋକଙ୍କର ମଧ୍ୟ ସାଧାରଣ ଭାବରେ ସେହି ଧାରଣା ଏବଂ ଏହି କାରଣରୁ ମନୋବୃତ୍ତିରୁ କେତେକାଂଶରେ ଭାରତ ରାଜନୀତି କ୍ଷେତ୍ରରେ ମଡରେଟମାନେ ସମ୍ପୂର୍ଣ୍ଣରୂପେ ପ୍ରତ୍ୟାଖ୍ୟାତ ହୋଇ ଯାଇଛନ୍ତି । କଂଗ୍ରେସକୁ ମଡରେଟମାନେ ଦଳ ହିସାବରେ ବର୍ଜନ କରିଥିଲେ ଏବଂ ମୋର ମନେହୁଏ, ମଡରେଟ ନେତାଙ୍କ ଭିତରୁ ଏକମାତ୍ର ଶାସ୍ତ୍ରୀ କଂଗ୍ରେସ ଅଧିବେଶନରେ ଯୋଗ ଦେଇ ନିଜର ମତ ସ୍ଥାପନ କରିଥିଲେ । ଏହି କାରଣରୁ ସାଧାରଣରେ ତାଙ୍କର ସମ୍ମାନ ବଢ଼ି ଯାଇଥିଲା ।

ଯୁଦ୍ଧ ଆରମ୍ଭର ପ୍ରଥମ ଭାଗରେ ମୁଁ ସାଧାରଣ ଭାବରେ ରାଜନୀତିକ ଓ ସାଧାରଣ କାର୍ଯ୍ୟ କରୁଥିଲି ଏବଂ ସାଧାରଣ ସଭାରେ ବକ୍ତୃତା କରୁ ନ ଥିଲି । ସାଧାରଣ ବକ୍ତୃତା କରିବାକୁ ମୁଁ ଏବେ ସୁଦ୍ଧା ଭୟ କରୁଥିଲି ଏବଂ ମୋର ସାହସ କୁଳାଉ ନ ଥିଲା । ଆଉ ମଧ୍ୟ ଇଂରେଜୀରେ ସାଧାରଣ ବକ୍ତୃତା ଦେବା ଠିକ୍ ହେବ ନାହିଁ ବୋଲି ମୁଁ ଭାବୁଥିଲି -- ହିନ୍ଦୁସ୍ଥାନୀରେ କହିପାରିବା ଭଳି ଶକ୍ତି ମୋର ନ ଥିଲା । ମୁଁ ପ୍ରଥମେ ଯେତେବେଳେ ଏଲାହାବାଦରେ ସାଧାରଣ ସଭାରେ ବକ୍ତୃତା କରିଥିଲି, ସେତେବେଳର ଗୋଟିଏ ଛୋଟ ଘଟଣା ମୋର ମନେ ଅଛି । ଏହା ସମ୍ଭବତଃ ୧୯୧୫ ସାଲର କଥା—ତାରିଖ ମୋର ମନେ ନାହିଁ ଏବଂ ଘଟଣାଟି ମୋ ମନରେ ଗୋଳମାଳିଆ ହୋଇ ଯାଇଛି । ସମ୍ବାଦପତ୍ର ଦମନର ନୂତନ ଆଇନର ପ୍ରତିବାଦ କରିବା ଲାଗି ଏ ସଭା ହୋଇଥିଲା । ମୁଁ ଇଂରେଜୀରେ ସଂକ୍ଷେପରେ କହିଥିଲି । ସଭା ଶେଷ ହେଲାବେଳକୁ ଡାକ୍ତର (ସାର) ତେଜବାହାଦୁର ସାପ୍ରୁ ଆସି ସେହି ମଞ୍ଚମଣ୍ଡପ ଉପରେ ମୋତେ କୁଣ୍ଢାଇ ପକାଇ ଆଲିଙ୍ଗନ କଲେ । ମୁଁ ଯାହା କହିଲି ଏବଂ ଯେପରି କହିଲି ସେଥିଲାଗି ଯେ ସେ ଆଦର ଦେଖାଇଲେ ତାହା ନୁହେଁ, ମୁଁ ଯେ ସାଧାରଣରେ ବକ୍ତୃତା କରିପାରିଲି, ଏହା ତାଙ୍କ ମନରେ ଅତ୍ୟନ୍ତ ଆନନ୍ଦ ଦେଲା ଏବଂ ସାଧାରଣ କାର୍ଯ୍ୟ ସକାଶେ ଜଣେ ନୂତନ କର୍ମୀ ମିଳିଲା ବୋଲି ସେ ମନେ କଲେ । କାରଣ ସେତେବେଳେ ସାଧାରଣ କାର୍ଯ୍ୟ ବୋଇଲେ ଖାଲି ବକ୍ତୃତାଇ ଥିଲା ।

ଏଲାହାବାଦରେ ଆମେ ଅନେକ ଯୁବକ ସେତେବେଳେ ବୃଥା ଆଶାପୋଷଣ କରୁଥିଲୁଁ ଯେ, ସମ୍ଭବତଃ ଡାକ୍ତର ସାପ୍ରୁ ରାଜନୀତିରେ ଆମମାନଙ୍କ ପନ୍ଥା ଧରିବେ । ମଡରେଟ ଦଳଙ୍କ ଭିତରେ ସେ ଭାବପ୍ରବଣ ଏବଂ ବେଳେ ବେଳେ ଉତ୍ସାହରେ ଭାସି ଯାଉଥିବାରୁ ତାଙ୍କ ଠାରେ ଏହା ସମ୍ଭବ ହୋଇପାରେ ବୋଲି ଆଶା କରାଯାଉଥିଲା । ତାଙ୍କ ତୁଳନାରେ ମୋର ପିତା ଅତ୍ୟନ୍ତ ସାଦା ବୋଧ ହେଉଥିଲେ;

ମାତ୍ର ଏହି ଆବରଣ ତଳେ ନିଆଁ ଲୁଚି ରହିଥିଲା । ମାତ୍ର ପିତାଙ୍କର ପ୍ରବଳ ମାନସିକ ଇଚ୍ଛା ଶକ୍ତି ଯୋଗୁଁ ତାଙ୍କଠାରୁ ଆମେ ଭିନ୍ନ ଆଶା କରୁ ନ ଥିଲୁ ଏବଂ କେତେବେଳା ପର୍ଯ୍ୟନ୍ତ ଆମେ ତାଙ୍କର ସାଙ୍ଗମାନଙ୍କଠାରୁ ବଡ଼ ବଡ଼ କଥା ଆଶା କରୁଥିଲୁ । ଅବଶ୍ୟ ସେତେବେଳେ ପଣ୍ଡିତ ମଦନମୋହନ ମାଳବ୍ୟ ଦୀର୍ଘକାଳ ପର୍ଯ୍ୟନ୍ତ ସାଧାରଣ କାର୍ଯ୍ୟ ଜନ୍ୟ ପ୍ରସିଦ୍ଧି ପାଇଥାନ୍ତି—ଆମେମାନେ ତାଙ୍କ ସହିତ ଅନେକ ଥର କଥା-ବାର୍ତ୍ତା କରି ଦେଶକୁ ଏକ ବଳିଷ୍ଠ ନେତୃତ୍ୱ ଦେବା ନିମନ୍ତେ ଜୋର ଦେଇଥିଲୁଁ ।

ସେତେବେଳେ ଅବସ୍ଥାରେ ଆମ ଘରେ ରାଜନୈତିକ ସମସ୍ୟା ଆଲୋଚନା କରିବାଟା ଶାନ୍ତିପ୍ରଦ ନ ଥିଲା ଏବଂ ସେ ପ୍ରସଙ୍ଗରେ କଥା ଉଠାଇଲାମାତ୍ରେ ଏକ ଉଷ୍ଣ ବାୟୁମଣ୍ଡଳ ସୃଷ୍ଟି ହେଉଥିଲା । ମୁଁ ଯେ କ୍ରମେ ଚରମପନ୍ଥା ଧରୁଛି, ଖାଲି ବାକ୍ୟବିତଣ୍ଡାର ରାଜନୀତିକୁ ସମାଲୋଚନା କରୁଛି ଏବଂ କାର୍ଯ୍ୟ ଲାଗି ଜୋର ଦେଉଛି, ଏକଥା ବାପା ଲକ୍ଷ୍ୟ କରୁଥାନ୍ତି । କେଉଁପରି କାର୍ଯ୍ୟହେବ, ସେ ସମ୍ବନ୍ଧରେ ମୋର ସ୍ପଷ୍ଟ ଧାରଣା ନ ଥିଲା ଏବଂ ବଙ୍ଗଳାର କେତେକ ଯୁବକ ଯେଉଁ ହିଂସା ପଥ ଧରିଛନ୍ତି, ମୁଁ ସେହି ବାଟରେ ଗତି କରୁଛି ବୋଲି ପିତା ଅନୁମାନ କରିଥିଲେ । ଏଥିରେ ସେ ଭାରି ବ୍ୟସ୍ତ ହୋଇ ପଡ଼ିଲେ । ପ୍ରକୃତରେ କହିବାକୁ ଗଲେ ମୁଁ ସେଥିପ୍ରତି ଆକୃଷ୍ଟ ହୋଇ ନ ଥିଲି, ମାତ୍ର ପ୍ରଚଳିତ ଅବସ୍ଥାକୁ ଧୀରୁ ଭାବରେ ସ୍ୱୀକାର କରିବା ଉଚିତ ନୁହେଁ ଏବଂ କିଛି ହେବା ଦରକାର—ଏହିକଥା ବାରମ୍ବାର ମତେ ଅସ୍ଥିର କରିବାକୁ ଲାଗିଲା । ଜାତୀୟତା ଦୃଷ୍ଟିରୁ କୌଣସି ସଫଳ କାର୍ଯ୍ୟ କରିବା ସେତେ ସହଜ ନ ଥିଲା; ମାତ୍ର ମୁଁ ଅନୁଭବ କଲି ଯେ ବ୍ୟକ୍ତି ଓ ଜାତିର ସମ୍ମାନ ରକ୍ଷା କରିବା ନିମନ୍ତେ ବିଦେଶୀ ଶାସନ ବିରୁଦ୍ଧରେ ଏକ ଉଗ୍ର କର୍ମ ପନ୍ଥାରେ ଲଢ଼ାଇ ହେବା ଉଚିତ । ବାପା ମଧ୍ୟ ମଡରେଟମାନଙ୍କ କର୍ମପନ୍ଥାରେ ଅସନ୍ତୁଷ୍ଟ ଥିଲେ ଓ ତାଙ୍କ ମନ ମଧ୍ୟରେ ଏକ ବିରୋଧ ଗୃହିଥାଏ । ମାଉକଛି କରିବାର ଅଛି ବୋଲି ନ ବୁଝିବା ପର୍ଯ୍ୟନ୍ତ

ସେ ଗୋଟିଏ କଥା ସହଜରେ ଗ୍ରହଣ କରୁ ନ ଥିଲେ । ଦୀର୍ଘ ଓ କଠିନ ମାନସିକ ଅନୁଧ୍ୟାନ ପରେ ସେ ସିଦ୍ଧାନ୍ତ କରୁଥିଲେ ଏବଂ ସେ ପଦକ୍ଷେପ ନେବା ନିମନ୍ତେ ସିଦ୍ଧାନ୍ତ କଲାପରେ ଆଉ ପଛକୁ ନ ଥିଲେ । ଉପାଧ୍ୟର ବଶବର୍ତ୍ତୀ ହୋଇ ସେ କିଛି କରୁ ନ ଥିଲେ, ମାତ୍ର ତାଙ୍କର ଅନେକ ଚିନ୍ତା ପରେ ଯାହା ମନସ୍ଥ କଲେ ସେ କାର୍ଯ୍ୟ କରୁଥିଲେ ଏବଂ ତାହା କରିସାରିବା ପରେ ତାଙ୍କର ଗଭୀର ଆତ୍ମମର୍ଯ୍ୟାଦାବୋଧ ହେତୁ ସେ ପଶ୍ଚାତ୍ପଦ ହେଉ ନ ଥିଲେ ।

ଆଜିଠାରୁ ନଜରବନ୍ଦ ବେଳୁ ତାଙ୍କର ରାଜନୈତିକ ମତ ପରିବର୍ତ୍ତିତ ହେବାକୁ ଲାଗିଲା ଏବଂ ସେହିଦିନଠାରୁ ସେ କ୍ରମେ କ୍ରମେ ଅଗ୍ରସର ହେବାକୁ ଲାଗିଲେ । ତାଙ୍କର ପୁରାତନ ମଡ଼ରେଟ ବନ୍ଧୁମାନଙ୍କୁ ବହୁତ ପଛରେ ପକାଇ ଦେଇ ଶେଷରେ ୧୯୧୯ ସାଲର ପଞ୍ଜାବର ଶୋଚନୀୟ ଘଟଣା ହେତୁ ସେ ତାଙ୍କର ପୁରାତନ ଜୀବନ ଯାପନ ପ୍ରଣାଳୀ ଓ ବ୍ୟବସାୟ ଛାଡ଼ି ଗାନ୍ଧୀଜୀଙ୍କ ଦ୍ୱାରା ହୋଇଥିବା ନୂତନ ଆନ୍ଦୋଳନକୁ ଡେଇଁ ପଡ଼ିଥିଲେ ।

ମାତ୍ର ଏହା ଅନେକ ଦିନ ପରେ ଘଟିଥିଲା । ୧୯୧୫ ରୁ ୧୯୧୭ ପର୍ଯ୍ୟନ୍ତ ସେ କଣ କରିବେ ସ୍ଥିର କରି ନ ଥିଲେ । ତାଙ୍କ ନିଜ ଭିତରେ ଥିବା ସନ୍ଦେହ ଏବଂ ମୋ ସମ୍ବନ୍ଧରେ ତାଙ୍କର ଚିନ୍ତା ହେତୁ ସେ କାଳର ସାଧାରଣ ସମସ୍ୟା ସମ୍ବନ୍ଧରେ ସେ ସ୍ଥିର ମତ ଦେଇ ପାରୁ ନ ଥିଲେ । ଅନେକ ସମୟରେ ଆମ ଭିତରେ ରାଜନୈତିକ ସମସ୍ୟା ସମ୍ବନ୍ଧରେ କଥା-ବାର୍ତ୍ତା ବେଳେ ସେ ରାଗି ଯାଉଥିବାରୁ ହଠାତ୍ କଥାବାର୍ତ୍ତା ଶେଷ ହୋଇଯାଉଥିଲା ।

୧୯୧୬ ମସିହା ବଡ଼ଦିନ ଛୁଟିରେ ଲକ୍ଷ୍ନୌ କଂଗ୍ରେସ ସମୟରେ ମୋର ଗାନ୍ଧିଜୀଙ୍କ ସହିତ ପ୍ରଥମ ସାକ୍ଷାତ । ସେ ଦକ୍ଷିଣ ଆଫ୍ରିକାରେ କରିଥିବା ସାହସିକ ସଂଗ୍ରାମ ସକାଶେ ଆମ୍ଭେମାନେ ତାଙ୍କୁ ପ୍ରଶଂସା

କରୁଥିଲୁଁ, ମାତ୍ର ଆମ ଭିତରୁ ଅନେକ ଯୁବକଙ୍କ ଦୃଷ୍ଟିରେ ସେ ଅତି ପୁରାତନ, ପୃଥକ୍ ଓ ଅରାଜନୈତିକ ପରି ମନେ ହେଉଥିଲେ । ସେତେବେଳେ କଂଗ୍ରେସ ବା ଜାତୀୟ ରାଜନୀତିରେ ଭାଗ ନେବାକୁ ସେ ଅସ୍ୱୀକାର କରୁଥିଲେ ଏବଂ କେବଳ ଦକ୍ଷିଣ ଆଫ୍ରିକାର ଭାରତୀୟଙ୍କ ସମସ୍ୟାରେ ନିଜକୁ ସୀମାବଦ୍ଧ ରଖିଥିଲେ । ଅଳ୍ପଦିନପରେ ନୀଳ ଚାଷୀମାନଙ୍କ ପକ୍ଷରୁ ସେ ଚମ୍ପାରଣରେ ଯେଉଁ ବୀରତ୍ୱପୂର୍ଣ୍ଣ କାର୍ଯ୍ୟ କରି ଜୟଲାଭ କଲେ, ସେଥିରେ ଆମ୍ଭେମାନେ ଉତ୍ସାହିତ ହେଲୁଁ । ଆମେ ଦେଖିଲୁଁ ଯେ, ସେ ଭାରତରେ ମଧ୍ୟ ତାଙ୍କ କାର୍ଯ୍ୟପନ୍ଥା ଚଳାଇବାକୁ ଚାହାନ୍ତି ଏବଂ ସେଥିରେ ସଫଳତା ମିଳିପାରେ ବୋଲି ଆମର ମନେ ହେଲା ।

ମୋର ମନେ ଅଛି, ସେତେବେଳେ ସରୋଜିନୀ ନାଇଡୁଙ୍କର କେତେକ ଉତ୍ସାହପ୍ରଦ ବକ୍ତୃତା ଏଲାହାବାଦରେ ଶୁଣି ମୁଁ ଉତ୍ତେଜିତ ହୋଇଥିଲି । ଏଥିରେ ଜାତୀୟବାଦ ଓ ଦେଶପ୍ରେମ ଭରିଥିଲା ଏବଂ ମୁଁ ଜଣେ ପୂର୍ଣ୍ଣ ଜାତୀୟବାଦୀ ହୋଇଗଲି । ମୋର କଲେଜବେଳର ସାମ୍ୟବାଦୀ ଧାରଣା କୁଆଡ଼େ ପଛରେ ପଡ଼ିଗଲା । ଗୋଟିଏ ପରାଧୀନ ଜାତିର ଲୋକ କପରି ଅନୁଭବ କରିବା, ସେ ସମ୍ବନ୍ଧରେ ୧୯୧୬ ମସିହାରେ ତାଙ୍କର ବିଚାରବେଳେ ରୋଜର କେସମେଣ୍ଟ ଯାହା ଦର୍ଶାଇଥିଲେ ତାହା ଠିକ ପରି ମନେହେଲା । ଆୟାରଲଣ୍ଡର 'ଇଷ୍ଟରଉଇକ୍' ବିଦ୍ରୋହ ବିଫଳ ହେଲା ପରେ ଏବଂ ସେହି ବିଫଳତା ଯୋଗୁ ମଧ୍ୟ ଯେଉଁ ଦୁଃସାହସ ଦେଖାଯାଉଥିଲା, ସେଥିରେ ପୃଥିବୀରେ କୌଣସି ଶାରୀରବଳ ଜାତିର ଅଦମ୍ୟ ଦେଶାତ୍ମବୋଧ ଲୋପ କରିପାରିବ ନାହିଁ ବୋଲି କଣ ଦେଖା ଦେଉନାହିଁ ?

ଏହିରୂପେ ମୋର ଚିନ୍ତାଧାରା ଗତି କରୁଥିଲା । ତଥାପି ନୂଆ ନୂଆ ବହି ପଢ଼ି ସାମ୍ୟବାଦୀ ଧାରଣା ମୋ ମୁଣ୍ଡ ଭିତରେ ପଶୁଥିଲା । ଏଗୁଡ଼ିକ ଅସ୍ପଷ୍ଟ, ଅଧିକ ମାନବିକତାପୂର୍ଣ୍ଣ ଓ ପୋଥିଗତ ବୈଜ୍ଞାନିକ ନ ଥିଲା । ସେତେବେଳେ ଓ ପରେ ମୁଁ ବର୍ଟ୍ରେଣ୍ଡ ରସେଲଙ୍କ ବହି ପଢ଼ିବାକୁ ପସନ୍ଦ କରୁଥିଲି ।

ଏହି ସବୁ ବିମର୍ଶକ ଚିନ୍ତା ଓ ଆକାଙ୍କ୍ଷା ମୋ ମନରେ ଏକ ଦ୍ୱନ୍ଦ୍ୱ ଚହଟାଇଲା ଏବଂ ମୁଁ ମୋର ଆଇନ ବ୍ୟବସାୟରେ ମଧ୍ୟ ସନ୍ତୁଷ୍ଟ ହେଲିନାହିଁ । ଆଉ କିଛି କରିବାକୁ ନ ଥିବାରୁ ମୁଁ ଏଥିରେ ଲାଗିଥିଲି । କିନ୍ତୁ ମୁଁ ଅଧିକରୂପେ ଉପଲବ୍ଧି କଲି ଯେ, ଯେଉଁ ସଙ୍ଘର୍ଷମୂଳକ ରାଜନୀତି କରିବା ନିମନ୍ତେ ମୋର ଇଚ୍ଛା ହେଉଛି, ସେଥିସହିତ ଓକିଲାତି କାର୍ଯ୍ୟ ଖାପ ଖାଇବ ନାହିଁ । ଏଥିରେ ନୀତି କଥା ନାହିଁ । ମାତ୍ର ସମୟ ଓ ଶକ୍ତିର ଅଭାବର କଥା ଉଠୁଛି । କଲିକତାର ପ୍ରସିଦ୍ଧ ଓକିଲ ସାର୍ ରାସବିହାରୀ ଘୋଷ କୌଣସି ଅଜ୍ଞାତ କାରଣରୁ ମୋତେ ଶ୍ରଦ୍ଧା କରୁଥିଲେ ଏବଂ ମୁଁ କିପରି ଓକିଲାତିରେ ଭଲ କରିବି ସେଥିଲାଗି ଅନେକ ସତ୍‌ପରାମର୍ଶ ଦେଉଥିଲେ । ବିଶେଷରୂପେ ମୋ ନିଜ ଇଚ୍ଛାନୁସାରେ ଆଇନ ବିଷୟରେ ଏକ ବହି ଲେଖିବାକୁ ସେ ମତେ ପରାମର୍ଶ ଦେଇଥିଲେ । ଏହା ଜଣେ ଜୁନିଅର୍ ଓକିଲ ପକ୍ଷରେ ଓକିଲାତି ଶିଖିବାର ଉତ୍କୃଷ୍ଟ ଉପାୟ । ଏହି ବହି ଲେଖାରେ ସେ ମୋତେ ସାହାଯ୍ୟ କରିବାକୁ ଓ ଏହା ଦେଖି ସଂଶୋଧନ କରି ଦେବାକୁ ମଧ୍ୟ କହିଥିଲେ । ମାତ୍ର ମୋର ଆଇନ ବହି ବ୍ୟବହାର ପ୍ରତି ତାଙ୍କର ଏ ଶ୍ରଦ୍ଧା ବ୍ୟର୍ଥ ହୋଇଥିଲା ଏବଂ ଆଇନ ବହି ଲେଖି ମୋର ସମୟ ଶକ୍ତି ନଷ୍ଟ କରିବା ଅପେକ୍ଷା ମୋ ପକ୍ଷରେ ଅନ୍ତର୍ମୁଖର ବିଷୟ ଆଉ କିଛି ନ ଥିଲା ।

ବୃଦ୍ଧ ବୟସ ବେଳକୁ ସାର୍ ରାସବିହାରୀ ଖୁବ୍ କ୍ରୋଧୀ ଥିଲେ ଏବଂ ତାଙ୍କ ଜୁନିଅର୍ ଓକିଲମାନେ ତାଙ୍କୁ ଭୟ କରୁଥିଲେ । ମୁଁ ବରଂ ତାଙ୍କ ଭକ୍ତି ପାଉଥିଲି ଏବଂ ତାଙ୍କର ଦୁର୍ବଳତା ଓ ତ୍ରୁଟି ସତ୍ତ୍ୱେ ତାଙ୍କଠାରେ ଅନେକ ଆକର୍ଷଣ ଶକ୍ତି ଥିଲା । ଥରେ ମୁଁ ଓ ବାପା ସିମଳାରେ ତାଙ୍କର ଅତିଥି ହୋଇଥିଲୁ । ମୋର ମନେହୁଏ ତାହା ୧୯୧୮ ମସିହାରେ ମଣ୍ଟେଗୁ ଚେମସ୍‌ଫୋର୍ଡ ରିପୋର୍ଟ ପ୍ରକାଶିତ ହୋଇଥିବା ବେଳ ହେବ । ସେ ଥରେ ଏକ ସାନ୍ଧ୍ୟ ଭୋଜନକୁ କେତେକ ବନ୍ଧୁଙ୍କୁ ନିମନ୍ତ୍ରଣ କରିଥିଲେ ଏବଂ ବୃଦ୍ଧ ଆପଣେ ବି

ଥିଲେ । ଭୋଜନ ପରେ ସାର୍ ରାସବିହାରୀ ଓ ଖାପର୍ଡେ ଦୁହେଁ ଯୁକ୍ତି କରି ଖୁବ୍ ରାଗିଗଲେ ଓ ଫାଟିଗଲେ । ଦୁହେଁ ଦୁଇଟି ଭିନ୍ନ ରାଜନୀତିକ ମତ ପୋଷଣ କରୁଥିଲେ । ରାସବିହାରୀ ଜଣେ ନିଷ୍ଠାପର ମଡରେଟ୍ ଥିଲେ ଏବଂ ଖାପର୍ଡେ ସେତେବେଳେ ଜଣେ ନେତୃସ୍ଥାନୀୟ ତିଳକମତବାଦୀ-ରୂପେ ପରିଚିତ ଥିଲେ । ଅବଶ୍ୟ ପରେ ସେ କଷୋଡ଼ ପନ୍ଥୀରେ ନିଜ ଏବଂ ମଡରେଟଙ୍କ ଅପେକ୍ଷା ଆହୁରି ମଡରେଟ୍ ହୋଇ ଯାଇଥିଲେ । ଖାପର୍ଡେ ଗୋଖଲେଙ୍କୁ ସମାଲୋଚନା କରିବାକୁ ଲାଗିଲେ (କେତେକ ବର୍ଷ ପୂର୍ବରୁ ଗୋଖଲେ ମରିଯାଇଛନ୍ତି) ଏବଂ କହୁଥିଲେ ଯେ, ସେ ଇଂଲଣ୍ଡରେ ଥିଲାବେଳେ ଗୋଖଲେ ବ୍ରିଟିଶ ସରକାରର ଗୁପ୍ତଚର ଭାବରେ ତାଙ୍କୁ ଜଗୁଥିଲେ । ତେଣୁ ସେ ବ୍ରିଟିଶ ଏଜେଣ୍ଟ ଥିଲେ । ଏଥିରେ ସାର୍ ରାସବିହାରୀ କ୍ରୋଧ କରିଥିଲେ ଏବଂ ସେ କହିଲେ, ଗୋଖଲେ ଜଣେ ଉତ୍ତମ ଲୋକ । ସେ ତାଙ୍କର ବନ୍ଧୁ ଥିଲେ ଏବଂ ତାଙ୍କ ବିରୁଦ୍ଧରେ ପଦେ କଥା ସେ ସହ୍ୟକରି ପାରିବେ ନାହିଁ । ତା ପରେ ଖାପର୍ଡେ ଶ୍ରୀନିବାସ ଶାସ୍ତ୍ରୀଙ୍କ କଥା କହିଲେ । ସାର୍ ରାସବିହାରୀ ଏହାକୁ ପସନ୍ଦ କରି ନ ଥିଲେ, ମାତ୍ର ଏହାକୁ ସେ ବେଶୀ ବିରୋଧ କରି ନ ଥିଲେ । ବୋଧହୁଏ ସେ ଗୋଖଲେଙ୍କର ଯେପରି ସ୍ତାବକ ଥିଲେ, ଶାସ୍ତ୍ରୀଙ୍କ ସେପରି ମାନୁ ନ ଥିଲେ । ସେ ପ୍ରକୃତରେ କହିଲେ ଯେ, ଗୋଖଲେ ବଞ୍ଚିଥିବା ପର୍ଯ୍ୟନ୍ତ ସେ ବରାବର ଭାରତ ସେବକ ସମିତିକୁ ସାହାଯ୍ୟ କରୁଥିଲେ, ମାତ୍ର ତାଙ୍କ ମୃତ୍ୟୁପରେ ତାଙ୍କର ସାହାଯ୍ୟ ବନ୍ଦ କରିଛନ୍ତି । ତା ପରେ ଖାପର୍ଡେ ତିଳକଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ଜଣେ ବାସ୍ତବିକ ମହାପୁରୁଷ ସେ ଏକ ଅଦ୍ଭୁତ ଲୋକ ବୋଲି ସେ କହି ଉଠିଲେ । ସାର୍ ରାସବିହାରୀ ସାଙ୍ଗେ ସାଙ୍ଗେ ଜବାବ ଦେଲେ—'ଆଃ, ଋଷି ! ମୁଁ ଋଷିମାନଙ୍କୁ ଘୃଣା କରେ । ସେମାନଙ୍କ ସହିତ କୌଣସି ସମ୍ପର୍କ ରଖିବା ମୋର ଇଚ୍ଛା ନାହିଁ ।'

— —

# ମୋର ବିବାହ ଓ ହିମାଳୟ ଭ୍ରମଣ

୧୯୧୭ ମସିହାରେ ଦିଲ୍ଲୀ ସହରରେ ମୋର ବିବାହ ହେଲା । ବସନ୍ତ ପଞ୍ଚମୀ ଦିନ ମୋର ବିବାହ ହେଲା । ସେହିଦିନ୍ ଭାରତରେ ବସନ୍ତ ଋତୁର ଆରମ୍ଭ ହୁଏ । ସେହିବର୍ଷ ଗ୍ରୀଷ୍ମ ଋତୁରେ ଆମେ କେତେକ ମାସ କାଶ୍ମୀରରେ କଟାଇଲୁ । ମୁଁ ସେଠାରେ ମୋ ପରିବାରଙ୍କୁ ଛାଡ଼ିଦେଇ ମୋର ଜଣେ ଭାଇ ସହିତ ପର୍ବତରେ କେତେକ ସପ୍ତାହ ବୁଲିଲି ଏବଂ ଆମେ ଲଦାଖ ରୋଡ୍ ପର୍ଯ୍ୟନ୍ତ ଯାଇଥିଲୁ ।

ଏତେ ଉଚ୍ଚରେ ଏପରି ଅପ୍ରଶସ୍ତ ଓ ନିର୍ଜନ ଉପତ୍ୟକାକୁ ମୁଁ ପ୍ରଥମ-ଥରପାଇଁ ଆସିଥିଲି—ଏହି ରାସ୍ତା ତିବ୍‌ବତ ସମତଳ ଭୂମିକୁ ପଡ଼ିଛି । ଜୋଜିଲା ଗିରିସଙ୍କଟ ଉପରେ ଠିଆହୋଇ ମୁଁ ଏକ ପାଖରେ ତଳେ ଶ୍ୟାମଳ ଗିରିମାଳା ଓ ଅନ୍ୟ ପାଖରେ ଶ୍ୟାମଳ ଶୃଙ୍ଗ ଦେଖିଲି । ଆମେ ସେହି ଉପତ୍ୟକାରେ ଉପରକୁ ଚଢ଼ିକରି ବୁଲିଲୁ । ଦୁଇପାଖରେ ତୁଷାରମଣ୍ଡିତ ପର୍ବତ; ତୁଷାର-ଆବୃତ ଶୃଙ୍ଗ ସବୁ ଉଜ୍ଜ୍ୱଳ ଦିଶୁଥାଏ ଓ ବରଫ ଖଣ୍ଡ ସବୁ ଆମ ଆଗରେ ଥାଏ । ବଡ଼ ଶୀତଳ ଓ ମନ୍ଦବାୟୁ ବହୁଥାଏ; ମାତ୍ର ଦିନବେଳେ ରୌଦ୍ର ବେଶ ଉଷ୍ଣ ହୋଇଥାଏ । ଏତେ ନିର୍ମଳ ବାୟୁ ସମୟ ସମୟରେ ବୋଧ ହେଉଥିଲା ଯେ, ଆମେ ଆମର ସୁଦୂର ଲକ୍ଷ୍ୟ ଅତି ନିକଟ ହୋଇଗଲାଣି ବୋଲି ଭ୍ରମ ହେଉଥିଲା । ନିର୍ଜନତା କ୍ରମେ ବଢ଼ିଲା, ଗୋଟିଏ ହେଲେ ଗଛ ବା ଫଳଗଛ ନାହିଁ । କେବଳ ଖୋଲା, ଶୃଙ୍ଗ ତୁଷାର ଏବଂ ସମୟ ସମୟରେ ଖୁବ୍ ଭଲ ବର୍ଷାଜଳ । ତଥାପି ଏହି ବଣ୍ୟ ଓ ନିର୍ଜନ ଯାତ୍ରାରେ ମୁଁ ଅତ୍ୟନ୍ତ ଖୁସି ହୋଇଥିଲି । ମୋର ଯଥେଷ୍ଟ ଶକ୍ତି ଥିଲା ଏବଂ ଖୁବ୍ ଉତ୍ସାହରେ ଥିଲି ।

ଏହି ଯାତ୍ରା ସମୟରେ ମୋର ଏକ ଉତ୍ସାହପୂର୍ଣ୍ଣ ଅଭିଜ୍ଞତା ହେଲା । ଆମେ ଜୋଜିଲା ଶୃଙ୍ଗ ଉପରେ ମାଡ଼ିଥିଲାବେଳେ ବୋଧହୁଏ ମାଟାୟନ ନାମକ ସ୍ଥାନରେ ଆମେ ଶୁଣିଲୁ ଯେ; ଅମରନାଥ ଗୁହା

ମୋଟେ ୮ ମାଇଲ ଅଛୁ । ସେଠାରେ ପହଞ୍ଚିବାକୁ ହେଲେ ତୁଷାର-ଆବୃତ ଅନେକ ପର୍ବତ ଅତିକ୍ରମ କରି ଯିବାକୁ ହେବ ମାତ୍ର ସେଥିଲାଗି ଖାତର କରୁଛୁ କିଏ ? ୮ ମାଇଲ ଆମକୁ ଅତି କମ୍ ପରି ମାଲୁମ ହେଲା । କୌଣସି ଅଭିଜ୍ଞତା ନ ଥାଇ ସୁଦ୍ଧା ଆମେ ଉତ୍ସାହରେ ସେଠାକୁ ଯିବାକୁ ସ୍ଥିର କଲୁଁ । ତେଣୁ ଆମେ ଆମର ଶିବିର ଛାଡ଼ିଲୁ ( ଏହା ମଧ୍ୟ ପ୍ରାୟ ୧୧,୫୦୦ ଫୁଟ ସମୁଦ୍ର ଉପରେ ଥିଲା ) ଏବଂ ଅଳ୍ପ ଲୋକଙ୍କ ସହ ପାହାଡ଼ ଉପରକୁ ଉଠିଲୁଁ । ସେଠାକାର ଏକ ମେଷରକ୍ଷକ ଆମର ଗାଇଡ଼ ରୂପେ ସାଥିରେ ଥାଏ ।

କେତେକ ତୁଷାର ଖଣ୍ଡ ଆମେ ବହୁତ ଆଗ୍ରହରେ ଅତିକ୍ରମ କଲୁ, ଆମର ଦୁର୍ଦ୍ଦଶା ବଢ଼ିଲା ଏବଂ ଶ୍ୱାସ ନେବା କଷ୍ଟକର ହେଲା । ଆମର କୁଲିଙ୍କ ବୋଝ ବହୁତ ଓଜନ ନଥିଲେ ସୁଦ୍ଧା ସେମାନଙ୍କଠାରୁ ରକ୍ତ ବାହାରି ପଡ଼ିଲା । ବରଫ ବୃଷ୍ଟି ହେବାକୁ ଲାଗିଲା ଏବଂ ବରଫ ପ୍ରବଳ ସବୁ ଭାରି ଖସଡ଼ା ହେଲା—ଆମେ ଧର୍ମ ସଙ୍ଗେ ହୋଇଗଲୁଁ ଏବଂ ପ୍ରତ୍ୟେକ ପଦକ୍ଷେପ ଅତି କ୍ଳେଶକର ହେଉଥାଏ । ତଥାପି ଆମେ ଆମର ଉଦ୍ୟମରେ ଅଗ୍ରସର ହେଲୁଁ ।

ଆମେ ସକାଳ ୪ଟାବେଳେ ଶିବିର ଛାଡ଼ିଲୁ ଏବଂ ଚଢ଼ି ଚଢ଼ି ପ୍ରାୟ ୧୨ ଘଣ୍ଟା ପରେ ଏକ ପ୍ରକାଣ୍ଡ ତୁଷାର-ପ୍ରାନ୍ତରରେ ପହଞ୍ଚିଲୁ । ଏହାର ଦୃଶ୍ୟ ଅତି ଚମତ୍କାର । ତୁଷାରଖଚିତ ଏହି ମରୁଭୂମି ଯେପରିକି ଏକ ମଣିଖଚିତ ମକୁଟ ବା ଦେବଲୋକ ସଦୃଶ ମନେ ହେଉଥିଲା । ମାତ୍ର ପୁନର୍ବାର ବରଫ ଓ କୁହୁଡ଼ି ଯୋଗୁଁ ସେ ଦୃଶ୍ୟ ଦୃଷ୍ଟିର ଅଗୋଚର ହୋଇଲା । ଆମେ ସମୁଦ୍ରଠାରୁ କେତେ ଉଚ୍ଚରେ ଥିଲୁ ମୋତେ ଜଣାନାହିଁ; ତେବେ ମୋର ଅନୁମାନ ୧୫,୦୦୦ ବା ୧୬,୦୦୦ ଫୁଟ ଉଚ୍ଚରେ ଥିଲୁ । କାରଣ ଆମେ ଅମରନାଥ ଗୁମ୍ଫାଠାରୁ ବହୁତ ଉପରେ ଥିଲୁଁ । ଆମକୁ ବର୍ତ୍ତମାନ ସେହି ଅର୍ଦ୍ଧ ମାଇଲ ବ୍ୟାପୀ ତୁଷାର-ପ୍ରାନ୍ତର ଅତିକ୍ରମ କରିବାକୁ ହେବ ଏବଂ ତାପରେ ଗୁମ୍ଫାର ଅନ୍ୟ ପାଖକୁ ଯିବୁଁ । ଆମେ

ଭାବିଲୁ ଆମେ ସେତେବେଳେ ପ୍ରାୟ ଯାତ୍ରା ଚଢ଼ିବାର କଥା ଚିନ୍ତି ସାରିଲୁଣି, ସମସ୍ତ ବଡ଼ ବଡ଼ ବାଧା ଅତିକ୍ରମ କରି ଆସି ସାରିଲୁଣି, ଏଣୁ ଖୁବ୍ ଉତ୍ସାହରେ ଆମେ ଆମର ଏହି ଯାତ୍ରା ଆରମ୍ଭ କଲୁ । ମାତ୍ର ଏହା ଏକ କଠିନ କାର୍ଯ୍ୟ । ପଥରେ ନୂତନ ତୁଷାର ଆବୃତ ଆହୁରି ବିପଦ ସ୍ଥାନ ଆମକୁ ଅତିକ୍ରମ କରିବାକୁ ପଡ଼ିଲା । ଏହି ନୂତନ ତୁଷାରରେ ମୁଁ ଅକର୍ମଣ୍ୟ ପ୍ରାୟ ହୋଇଗଲି । ମୁଁ ଏଥିରେ ଗୋଡ ଦେଇ ଦେଇ ହଠାତ୍ ଗୋଡ଼ ଖସିଗଲା ଏବଂ ମୁଁ ଖସିଯାଇ ଏକ ପ୍ରକାଣ୍ଡ ଗାତରେ ପଡ଼ିଗଲି । ଏହା ଅତି ବଡ଼ ଏବଂ ଏଥିରେ ରହି ଯାଇଥିଲେ ମୋର ଭବିଷ୍ୟତ ଭୌଗଳିକମାନଙ୍କର ଅନୁସନ୍ଧାନ ପାଇଁ ରହିଥାନ୍ତା । ମାତ୍ର ଦଉଡ଼ି ମୋତେ ରକ୍ଷା କଲା ଏବଂ ମୁଁ ତାହା ସାହାଯ୍ୟରେ ସେହି ଖାଲର ଗୋଟାଏ କଡ଼କୁ ଆସି ଉପରକୁ ଉଠିଗଲି । ଏଥିରେ ଆମେମାନେ ବିଚଳିତ ହୋଇଗଲୁ, ତଥାପି ଆମର ଯାତ୍ରା ବନ୍ଦ ହେଲା ନାହିଁ । ଆହୁରି ବହୁତ ବସ୍ତୁତ ଖୋଲ ସବୁ ଦେଖି ଦେଖି ପଡ଼ିଲା । ଏବଂ ତାକୁ ଅତିକ୍ରମ କରିବା ନିମନ୍ତେ ଆମ ନିକଟରେ କିଛି ଅବଲମ୍ବନ ନ ଥିଲା ; ତେଣୁ ଶେଷରେ ଅମରନାଥ ଗୁମ୍ଫା ଦେଖି ନ ପାରି ଆମେ କ୍ଳାନ୍ତ ଓ ହତାଶ ହୋଇ ଫେରି ଆସିଲୁଁ ।

ଏହି ଉପତ୍ୟକା ଓ ପର୍ବତମାଳା ମୋତେ ଏତେ ବିମୋହିତ କଲା ଯେ, ମୁଁ ପୁଣି ଥରେ ଫେରି ଆସିବା ଲାଗି ସଂକଳ୍ପ କଲି । ମୁଁ ଅନେକ ଥର କଳ୍ପନା କଲି, ଦିନ ସ୍ଥିର କଲି ଏବଂ ମାନସସରୋବର ଆଶ୍ଚର୍ଯ୍ୟଜନକ ଉଦ୍‌ବତ ହ୍ରଦ ଓ ତାହା ନିକଟସ୍ଥ ତୁଷାର ଆବୃତ କୈଳାସ ଦେଖିବା କଥା ଭାବିଲାକ୍ଷଣି ମୋର ହୃଦୟ ଆନନ୍ଦରେ ପୂରି ଯାଉଥାଏ ; ଏହା ୧୮ ବର୍ଷ ତଳର କଥା ଏବଂ ମୁଁ କୈଳାସ ଓ ମାନସସରୋବରଠାରୁ ବହୁତ ଦୂରରେ ଏବେ ସୁଦ୍ଧା ଅଛି । ମୁଁ ଅନେକ ଥର ଚେଷ୍ଟା କରିଥିଲେ ସୁଦ୍ଧା ଥରେ କାଶ୍ମୀର ଦେଖିବା ମୋ ପକ୍ଷେ ସମ୍ଭବ ହୋଇ ନାହିଁ ଏବଂ ଦିନକୁ ଦିନ ରାଜନୀତି ଓ ସାଧାରଣ କାର୍ଯ୍ୟରେ ମୁଁ ଅଧିକରୁ ଅଧିକ ବନ୍ଧା ହୋଇ ଯାଉଛି । ପର୍ବତ ଉପରକୁ

ଯିବା ବା ସମୁଦ୍ର ଅତିକ୍ରମ କରିବା ପ୍ରବୃତ୍ତି ମୋତେ କେଉଁ ଭିତରେ ରହି ଶାନ୍ତ କରିବାକୁ ପଡ଼ୁଛି । ତଥାପି ଆଜି ମୁଁ କଳ୍ପନା କରୁଛି— କାରଣ କଳ୍ପନା କରିବାକୁ ଜେଲରେ କିଏ ମନା କରିବ ଏବଂ ତାହା ଛଡ଼ା ଜେଲରେ ଆଉ ବା କଣ କରିବ ? ମୁଁ କେବେ ହିମାଳୟ ଚତୁର୍ଦ୍ଦିଗରେ ଭ୍ରମଣ କରିପାରିବି, ମୋର ଈପ୍ସିତ ହ୍ରଦ ଓ ପର୍ବତ ଅତିକ୍ରମ କରିପାରିବି, ସେ ଦିନକୁ ମୁଁ ସ୍ୱପ୍ନପରି ଚାହିଁ ରହିଛି । ମାତ୍ର ଏଥିମଧ୍ୟରେ ଜୀବନ ଗଡ଼ି ଚାଲିଛି । ଯୌବନ ପରେ ପ୍ରୌଢ଼ତ୍ୱ ଏବଂ ଏହା ପରେ ଦିନେ ବୃଦ୍ଧ କାଳ ଆସିବ ଏବଂ ମୁଁ ବେଳେ ବେଳେ ଭାବି ଦୁଃଖିତ ହେଉଛି, କୈଳାଶ ଓ ମାନସସରୋବର ଯିବାଲାଗି ମୁଁ ଅତ୍ୟନ୍ତ ଅସମର୍ଥ ହୋଇ ଯାଇଥିବି । ମାତ୍ର ଲକ୍ଷ୍ୟସ୍ଥଳ ଦୃଷ୍ଟିପଥର ବହୁଦୂରରେ ଥିଲେ ସୁଦ୍ଧା କଳ୍ପନା ସର୍ବଦା ଆନନ୍ଦ ଦାନ କରେ ।

"ମୋର ମନ ମଧ୍ୟରେ ଏହି ପର୍ବତ ଶିଖର ଉନ୍ନତ ଓ ଅଟଳ ହୋଇ ରହିଛି । ସନ୍ଧ୍ୟାରକ୍ତରାଗରେ ତାହାର ଦୁର୍ଗମ ଦୁରାରୋହ ସ୍ଥାନଗୁଡ଼ିକ ଆବୃତ ହେଉଛି ଏବଂ ମୋର ଆତ୍ମା ଚକ୍ଷୁପ୍ରାନ୍ତରେ ରହି ସେହି ଚିର ଶାନ୍ତ ତୁଷାର ପାଇବାଲାଗି ଅଧୀର ହୋଇ ପଡ଼ୁଛି ।

ଓ୍ୱାଲ୍ଟାର ଡ ଲ ମେୟାର ।"

# ଗାନ୍ଧିଜୀଙ୍କ ଆଗମନ, ସତ୍ୟାଗ୍ରହ ଓ ଅମୃତସର

ମହାସମରର ଯୋଗୁଁ ଭାରତରେ ଏକ ଭୀଷଣ ଉତ୍ତେଜନା ଖେଳିଗଲା । ଶିଳ୍ପୋନ୍ନତି ହେଲା ଏବଂ ପୁଞ୍ଜିପତି ଶ୍ରେଣୀଙ୍କର ଧନ ଓ କ୍ଷମତା ବୃଦ୍ଧି ପାଇଲା । ଉପରେ ଏହି କେତେକ ମୁଷ୍ଟିମେୟ ଲୋକେ ଉନ୍ନତି କଲେ ଏବଂ ସେମାନଙ୍କର ସଞ୍ଚିତ ଧନକୁ ଅନ୍ୟ କାର୍ଯ୍ୟରେ ଲଗାଇ ଅଧିକ ଧନ ଉପାର୍ଜ୍ଜନ କରିବା ନିମନ୍ତେ ଅଧିକ ସୁଯୋଗ ଓ କ୍ଷମତା ଲୋଡ଼ିଲେ; ମାତ୍ର ଅଧିକ ସଂଖ୍ୟକ ଲୋକ ସେପରି ଭାଗ୍ୟବାନ ନ ଥିଲେ ଏବଂ ଯେଉଁ ବୋଝ ତଳେ ସେମାନେ ପେଷି ହୋଇ ଯାଉଥିଲେ, ତାହାକୁ ହାଲୁକା କରିବା ନିମନ୍ତେ ସେମାନେ ଚାହିଁ ବସିଥିଲେ । ମଧ୍ୟବିତ୍ତ ଶ୍ରେଣୀମାନେ ଏକ ବିଧାନଗତ ପରିବର୍ତ୍ତନ ହେବ ବୋଲି ଆଶା କରି ବସିଥିଲେ ଏବଂ ସେଥିରେ ସ୍ୱାୟତ୍ତ ଶାସନ ମିଳିବ ଓ ପ୍ରଗତି ନିମନ୍ତେ ନୂତନ ଉପାୟ ଖୋଲି ହେବ ବୋଲି ସେମାନେ ଚାହିଁ ବସିଥିଲେ । ଶାନ୍ତିପୂର୍ଣ୍ଣ ଏବଂ ବୈଧାନିକ ଭାବରେ ଯେଉଁସବୁ ରାଜନୈତିକ ଆନ୍ଦୋଳନ ଚାଲୁଥିଲା, ତାହା କ୍ରମେ ଅଗ୍ରସର ହେଲା ଏବଂ ଲୋକେ ଅଧିକ ଆତ୍ମ-ନିୟନ୍ତ୍ରଣ ଓ ସ୍ୱାୟତ୍ତ ଶାସନ ଲାଗି ଅଧିକ ଦୃଢ଼ତାର ସହିତ ଦାବୀ କଲେ । ଏପରି ଅଶାନ୍ତି ଜନସାଧାରଣ ବିଶେଷତଃ କୃଷକମାନଙ୍କ ମଧ୍ୟରେ ଦେଖାଯାଉଥିଲା । ପଞ୍ଜାବର ଗାଁ ଗହଳରେ ଯେପରି ଜୋର ଜବରଦସ୍ତି ସୈନ୍ୟ ସଂଗ୍ରହ କରାଯାଉଥିଲା, ସେ କଥା ମନରେ ଜାଗ୍ରତ ଥାଏ ଏବଂ "କୋମାଗାଟା ମାରୁ"ର ଲୋକ ଓ ଅନ୍ୟମାନଙ୍କୁ ଯେପରି ଷଡ଼ଯନ୍ତ୍ର ମାମଲାରେ ପକାଇ ଦମନ କରାଗଲା, ସେଥିରେ ଚାରିଆଡ଼େ ଅସନ୍ତୋଷ ବଢ଼ି ଚାଲିଗଲା । ସୁଦୂର ଯୁଦ୍ଧକ୍ଷେତ୍ରରୁ ଲଢ଼ାଇକରି ଯେଉଁ ସୈନ୍ୟମାନେ ଫେରୁଥିଲେ, ସେମାନେ ପୂର୍ବପରି ଅନ୍ଧବତ ଆଦେଶ ପାଳନକାରୀ ନ ଥିଲେ । ସେମାନଙ୍କର ମାନସିକ ଉନ୍ନତି ହୋଇଥିଲା ଏବଂ ସେମାନଙ୍କ ମନରେ ବହୁତ ଅସନ୍ତୋଷ ବୃଦ୍ଧି ପାଇଲା ।

ତୁର୍କି ପ୍ରତି ବ୍ୟବହାର ଏବଂ ଖିଲାଫତ୍ ସମସ୍ୟା ହେତୁ ମୁସଲମାନଙ୍କ ମଧ୍ୟରେ ଅସନ୍ତୋଷ ପ୍ରକାଶ ପାଉଥିଲା ଏବଂ ସେମାନଙ୍କ ଭିତରେ ତ ଆନ୍ଦୋଳନ ହେଉଥିଲା । ତୁର୍କି ସମ୍ବନ୍ଧରେ ପର୍ଯ୍ୟନ୍ତ ସନ୍ଧିପତ୍ର ସ୍ଥିର ହୋଇ ନ ଥାଏ, ମାତ୍ର ସମଗ୍ର ପରିସ୍ଥିତି ଆଶଙ୍କାଜନକ ଥିଲା । ସୁତରାଂ ସେମାନେ ଉତ୍କଣ୍ଠିତ ହୋଇ ଯୁଦ୍ଧ ଅପେକ୍ଷା କରୁଥିଲେ ।

ବସ୍ତୁତ ଆଶା ଓ ଉତ୍କଣ୍ଠାର ସହିତ ସାରା ଭାରତ ଅପେକ୍ଷା କରୁଥିଲା; ଅବଶ୍ୟ ଏହି ଆଶା ଭୟ ଓ ଉତ୍କଣ୍ଠା ମିଶ୍ରିତ ଥିଲା । ଏହି ସମୟରେ ରାଉଲଟ୍ ଆଇନ ଆସିଲା । ଆଇନରେ ସାଧାରଣତଃ ଯେଉଁ କାନୁନ ଥିବାର କଥା, ତାହା ଏଥିରେ ନ ଥାଇ ଗିରଫ ଓ ବିଚାର ଲାଗି ଦଫାମାନ ଖଞ୍ଜା ଯାଇଥିଲା । ଏଥିରେ ସମଗ୍ର ଭାରତରେ ଏକ କ୍ରୋଧ ଖେଳିଗଲା, ଏପରିକି ମଡରେଟ୍‌ମାନେ ମଧ୍ୟ ଯୋଗ ଦେଇ ଏହି ଆଇନର ଦୃଢ଼ ପ୍ରତିବାଦ କଲେ । ବାସ୍ତବିକ୍ ଭାରତର ସବୁ ମତର ଲୋକେ ଏହାର ବିରୋଧ କରିଥିଲେ । ଏହା ସତ୍ତ୍ୱେ କର୍ତ୍ତୃପକ୍ଷ ଶ୍ରେଣୀ ଏହି ବିଲ୍‌କୁ ଆଇନରେ ପରିଣତ କଲେ । ଏହା କେବଳ ତିନିବର୍ଷ ପର୍ଯ୍ୟନ୍ତ ଜାରି ରହିବ ବୋଲି ସୀମାବଦ୍ଧ କରାଗଲା ।

୧୫ ବର୍ଷ ପରେ ଏହି ବିଲ୍ ବିଷୟ ଏବଂ ଏହା ହେତୁ ଯେଉଁ ବିଦ୍ରୋହ ହେଲା, ସେ କଥା ଭାବିଲେ ଅନେକ ଶିକ୍ଷଣୀୟ ଜିନିଷ ମିଳେ । ଏଗୁଡ଼ିକ ଆଇନରେ ପରିଣତ ହେଲା; ମାତ୍ର ୧୮୫୭ ବିଦ୍ରୋହ ପରେ ଭାରତରେ ତିନିବର୍ଷ ପର୍ଯ୍ୟନ୍ତ ଖୁବ୍ ଅଶାନ୍ତି ଥିଲେ ମଧ୍ୟ ମୋତେ ଯେତେ ଦୂର ଜଣାଅଛି, ଏହି ତିନିବର୍ଷ ଭିତରେ ଏହି ଆଇନ କେବେ ବ୍ୟବହାର କରାଯାଇ ନ ଥିଲା । ଏହିରୂପେ ବ୍ରିଟିଶ୍ ସରକାର ଭାରତବର୍ଷର ସବୁ ଶ୍ରେଣୀ ଓ ସବୁ ମତର ଲୋକଙ୍କ ବିରୋଧ ସତ୍ତ୍ୱେ ଏହାକୁ ଆଇନରେ ପରିଣତ କଲେ; ଏହାକୁ କେବେ ପରେ ବ୍ୟବହାର କରାଯାଇ ନ ଥିଲା, ଅଥଚ ଖାଲି ଏଥିଲାଗି ଏକ ଆନ୍ଦୋଳନ

ଜାଗି ଉଠିଲି । କୌଣସି ବିଦ୍ରୋହ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଏହି ଆଇନ ଦିଆଯାଇଥିଲା ବୋଲି କୁହାଯାଇପାରେ ।

ଆହୁରି ମଜାର କଥା ହେଉଛି, ବର୍ତ୍ତମାନ ୧୫ ବର୍ଷ ପରେ କେତେ କେତେ ନୂଆ ନୂଆ ଆଇନ ଧାର୍ଯ୍ୟ ହୋଇ ଗଲାଣି—ରାଉଲାଟ ଆଇନଠାରୁ ଆହୁରି କଡ଼ା ଆଇନସବୁ ଦିନକୁ ଦିନ ବଢ଼ୁଛି । ଆଜିକାଲି ବ୍ରିଟିଶ ଶାସନର ଆଶୀର୍ବାଦ ହେତୁ ଆମେ ଯେଉଁ ସବୁ ଆଇନ ଓ ଅର୍ଡ଼ିନାନ୍ସ ଉପଭୋଗ କରୁଥାଉଁ, ତାହା ସହିତ ତୁଳନା କଲେ ରାଉଲାଟ ବିଲ୍‌କୁ ସ୍ୱାଧୀନତାର ଦାବିପତ୍ର ବୋଲି କୁହାଯାଇପାରେ । ଅବଶ୍ୟ ସେଥିରେ ଏତିକି ପାର୍ଥକ୍ୟ ରହିଛି; ୧୯୧୯ ମସିହାରୁ ଆମେ ମଣ୍ଟେଗୁ ଚେମସ୍‌ଫୋର୍ଡ଼ ଯୋଜନା ନାମରେ କଥିତ ଏକ ସ୍ୱାୟତ୍ତଶାସନ ପାଇଛୁ ଏବଂ ଆଉ ଏକ ଦଫାରେ ଆମେ ଆଉ କିଛି ଶୀଘ୍ର ପାଇବୁ ବୋଲି କୁହାଯାଉଛି ଆମେ ଆଶା କରୁଛୁ ।

୧୯୧୯ର ପ୍ରଥମ ଭାଗରେ ଗାନ୍ଧିଜୀ କଠିନ ରୋଗାକ୍ରାନ୍ତ ହୋଇଥିଲେ । ସେ ତାଙ୍କ ରୋଗଶଯ୍ୟାରୁ ରାଉଲାଟ ବିଲ୍‌କୁ ସମ୍ମତି ନ ଦେବା ନିମନ୍ତେ ଭାଇସରାୟ ବା ବଡ଼ଲାଟଙ୍କୁ ଅନୁରୋଧ କରିଥିଲେ । ଅନ୍ୟ ସବୁ ଥର ପରି ତାଙ୍କର ଏହି ଅନୁରୋଧ ରକ୍ଷା କରାଗଲା ନାହିଁ ଏବଂ ତାଙ୍କର ଇଚ୍ଛା ବିରୁଦ୍ଧରେ ସେ ସାରା ଭାରତର ଆନ୍ଦୋଳନର ନେତୃତ୍ୱ ନିଜ ହାତରେ ନେଲେ । ସେ 'ସତ୍ୟାଗ୍ରହ ସଙ୍ଘ' ଆରମ୍ଭ କଲେ । ଏହାର ସଭ୍ୟମାନେ ଶପଥ ନେଲେ ଯେ, ଯଦି ସେମାନଙ୍କ ଉପରେ ରାଉଲାଟ ଆଇନ ଜାରି ହୁଏ, ତେବେ ସେମାନେ ତାହା ଅମାନ୍ୟ କରିବେ । ଆହୁରି ମଧ୍ୟ ଯେଉଁ ସବୁ ଆପତ୍ତିଜନକ ଆଇନ ଅମାନ୍ୟ କରିବା ନିମନ୍ତେ ନିର୍ଦ୍ଦେଶ ଦିଆଯିବ, ତାହା କରିବେ । ଅନ୍ୟ କଥାରେ କହିବାକୁ ଗଲେ ସେମାନେ ଜାଣିଶୁଣି ଖୋଲାଖୋଲି ରୂପେ ଜେଲ ବରଣ କରିବେ ।

ମୁଁ ପ୍ରଥମେ ଖବରକାଗଜରେ ଏହି ପ୍ରସ୍ତାବ ପଢ଼ିବା ମାତ୍ରେ ମୋ ମନ ଖୁବ୍ ଉତ୍ସାହିତ ହୋଇଗଲା । ଶେଷରେ, ଏହି ଅସ୍ପଷ୍ଟ ଅଚଳ

ଦେଖିବା ନିମନ୍ତେ ଶେଷକୁ ଏକ ଉପାୟ ଦେଖାଗଲା । ଏହା ପ୍ରକୃତରେ ସିଧା ଓ ପ୍ରକାଶ୍ୟ କାର୍ଯ୍ୟ ଏବଂ ସମ୍ଭବତଃ ଫଳପ୍ରଦ ହେବ । ମୁଁ ଅତ୍ୟନ୍ତ ଉତ୍ସାହିତ ହୋଇଉଠିଲି ଓ ସଙ୍ଗେ ସଙ୍ଗେ ସତ୍ୟାଗ୍ରହ ସଭାରେ ଯୋଗ ଦେବା ନିମନ୍ତେ ଇଚ୍ଛା କଲି । ମୁଁ ଏହାର ଫଳାଫଳ ଅର୍ଥାତ୍ ଆଇନ ଭଙ୍ଗ, ଜେଲ ଇତ୍ୟାଦି ତଥା ସେତେବେଳେ ଆଦୌ ଭାବି ନ ଥିଲି ଏବଂ ଭାବିଥିଲେ ସୁଦ୍ଧା ସେଥିଲାଗି ଖାତିର କରି ନ ଥିଲି । ମାତ୍ର ହଠାତ ମୋର ଉତ୍ସାହ ମଉଳି ପଡ଼ିଲା ଏବଂ ଏହା ଏତେ ସହଜ ନୁହେଁ ବୋଲି ମୁଁ ବୁଝି ପାରିଲି । ବାପା ଏହି ନୂତନ କାର୍ଯ୍ୟର ଖୁବ୍ ବିରୁଦ୍ଧରେ ଥିଲେ । ଖାଲି ନୂଆ ପ୍ରସ୍ତାବକୁ ଗ୍ରହଣ କରିବାର ଲୋକ ସେ ନୁହନ୍ତି; ସେ ପ୍ରତ୍ୟେକ ନୂତନ ପଦକ୍ଷେପର ଫଳାଫଳ ବିଷୟରେ ଯତ୍ନର ସହିତ ଚିନ୍ତା କରନ୍ତି । ସେ ସତ୍ୟାଗ୍ରହ ସଭା ଓ ତାର କାର୍ଯ୍ୟପନ୍ଥା ସମ୍ବନ୍ଧରେ ଯେତେ ଚିନ୍ତା କଲେ, ତାହା ତାଙ୍କର ସେତେ ନାପସନ୍ଦ ହେଲା । କେତେ ଜଣ ବ୍ୟକ୍ତିବିଶେଷ ଜେଲ ଯିବା ଦ୍ୱାରା କଣ ହେବ ? ସରକାର ଉପରେ ତାହାର ପ୍ରଭାବ କଣ ପଡ଼ିବ ? ଏହି ସାଧାରଣ କଥା ଛଡ଼ା ପ୍ରକୃତରେ ବ୍ୟକ୍ତିଗତ କଥାହିଁ ତାଙ୍କୁ ବେଶୀ ଖରାପ ଲାଗୁଥିଲା । ମୁଁ ଜେଲ ଯିବି, ଏହା ତାଙ୍କୁ ବଡ଼ ଅଯୌକ୍ତିକ ମନେ ହେଲା । ସେତେବେଳକୁ ଜେଲ ଯିବା ପାଇଁ ଆରମ୍ଭ ହୋଇନାହିଁ ଏବଂ ଜେଲ ଯିବା ଧାରଣାହିଁ ଅତ୍ୟନ୍ତ ବିରକ୍ତିକର ବୋଧ ହେଉଥିଲା । ପିତାଙ୍କର ତାଙ୍କର ସନ୍ତାନମାନଙ୍କ ପ୍ରତି ଅତ୍ୟନ୍ତ ଆସକ୍ତି ଥିଲା । ତାଙ୍କ ସ୍ନେହ ବାହାରେ ପ୍ରକାଶ ପାଉ ନ ଥିଲା; ମାତ୍ର ଏହି ସଂଯମ ପଛରେ ଗଭୀର ପ୍ରେମ ଥିଲା ।

ଅନେକ ଦିନ ପର୍ଯ୍ୟନ୍ତ ଏହି ମାନସିକ ଦ୍ୱନ୍ଦ୍ୱ ଚାଲିଲା ଏବଂ ଆମେ ଦୁହେଁ ବୁଝି ପାରୁଥିଲୁ ଯେ, ଏହି ବଡ଼ ବଡ଼ ସମସ୍ୟାରେ ହସ୍ତକ୍ଷେପ କଲେ ଆମର ଜୀବନ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯିବ, ତେଣୁ ପରସ୍ପରର ମତ ପ୍ରତି ଯଥାସମ୍ଭବ ଖାତିର କରୁଥିଲୁଁ । ମୁଁ ଯେତେଦୂର ପାରେ ତାଙ୍କର ମାନସିକ ଦୁଃଖ କମାଇବାଲାଗି ଚେଷ୍ଟା କରୁଥିଲି ।

ମାତ୍ର ମୋତେ ଯେ ପୁଣି ସତ୍ୟାଗ୍ରହ ବାଟରେ ଯିବାକୁ ହେବ, ଏଥିରେ ମୋର ସନ୍ଦେହ ନ ଥିଲା । ଉଭୟେ ବଡ଼ ସନ୍ତୁଷ୍ଟ ଭାବରେ ଦିନ କଟାଇଲୁଁ । ଏହି ମାନସିକ ବେଦନାରୁ କିପରି ମୁଁ ଏକ ଉପାୟ ବାହାର କରିପାରିବି, ସେଥିଲାଗି ଅନେକ ଦିନ ରାତିରେ ଏକାକୀ ଗୁରୁ ଚିନ୍ତା କରିବାକୁ ଲାଗିଲି । ମୁଁ ଜେଲ ଗଲେ ତଳେ ଶୋଇବାକୁ ହେବ ବୋଲି ଭାବି ପିତା ପ୍ରକୃତରେ ନିଜେ ତଳେ ଶୋଇ ଏହା କିପରି ଲାଗିବ ବୋଲି ଦେଖୁଥିବାର ମୁଁ ପରେ ଜାଣି ପାରିଥିଲି ।

ପିତାଙ୍କ ଅନୁରୋଧ କ୍ରମେ ଗାନ୍ଧିଜୀ ଏଲାହାବାଦ ଆସିଲେ ଏବଂ ସେମାନଙ୍କ ମଧ୍ୟରେ ଦୀର୍ଘକାଳ ପର୍ଯ୍ୟନ୍ତ କଥାବାର୍ତ୍ତା ହେଲା । ସେଠାରେ ମୁଁ ଉପସ୍ଥିତ ନ ଥିଲି । ଫଳରେ ଆଗତ୍ତୁରା ହୋଇ କୌଣସି କାର୍ଯ୍ୟ ନ କରିବାକୁ ଗାନ୍ଧିଜୀ ମୋତେ କହିଲେ ଏବଂ ବାପାଙ୍କୁ କଷ୍ଟ ଦେବା ଭଳି କୌଣସି କାର୍ଯ୍ୟ କରିବାକୁ ମନା କଲେ । ଏଥିରେ ମୁଁ ଖୁସୀ ହେଲି ନାହିଁ, ମାତ୍ର ଏହା ପରେ ଭାରତରେ ଆଉ କେତେକ ଘଟଣା ଯୋଗୁ ସମଗ୍ର ପରିସ୍ଥିତି ବଦଳି ଗଲା ଏବଂ ସତ୍ୟାଗ୍ରହ ସଭା ତାର କାର୍ଯ୍ୟ ସ୍ଥଗିତ ରଖିଲା ।

ସତ୍ୟାଗ୍ରହ ଦିବସ—ସମଗ୍ର ଭାରତ ବ୍ୟାପୀ ହରତାଳ; କାର୍ଯ୍ୟ ସମ୍ପୂର୍ଣ୍ଣରୂପେ ବନ୍ଦ—ଦିଲ୍ଲୀ ଓ ଅମୃତସରରେ ପୁଲିସର ଗୁଳିଚାଳନା ଓ ଅନେକ ଲୋକଙ୍କ ମୃତ୍ୟୁ—ଅମୃତସର ଓ ଅହମଦାବାଦରେ ଜନତାର ଉପଦ୍ରବ—ଜାଲିଆନାୱାଲା ବାଗର ହତ୍ୟାକାଣ୍ଡ—ପଞ୍ଜାବରେ ସାମରିକ ଆଇନ ହେତୁ ପ୍ରବଳ ଅତ୍ୟାଚାର ଓ ପ୍ରଚଣ୍ଡ ଭୟ । ପଞ୍ଜାବ ସାରା ଭାରତଠାରୁ ବିଚ୍ଛିନ୍ନ ହୋଇଗଲା ଏବଂ ଏକ ଘନ ଆବରଣ ଏହାକୁ ବାହାର ଚକ୍ଷୁର ଅନ୍ତରାଳରେ ରଖିଲା ପରି ମନେ ହେଲା । ସେଠାରୁ କୌଣସି ସଂବାଦ ମିଳିଲା ନାହିଁ—ଲୋକେ ସେଠୁ ଆସିପାରିଲେ ନାହିଁ କି ସେଠାକୁ ଯାଇପାରୁ ନ ଥିଲେ ।

ଯେ କେତେ ଜଣ ସେ ନରକରୁ କୌଣସି ପ୍ରକାରେ ପଳାଇ ଆସିପାରିଥିଲେ, ସେମାନେ ଏପରି ଭୟଭୀତ ହୋଇଥିଲେ ଯେ, କୌଣସି

ପରସ୍ପର ଖବରଟି ଦେଇପାରୁ ନ ଥିଲେ । ଅସହାୟ ଓ ନିର୍ଭୀକ ଭାବରେ ଆମେ ବାହାରେ ସମ୍ବାଦ ଲାଗି ଅପେକ୍ଷା କରି ରହୁଥାଉ ଏବଂ ଆମର ହୃଦୟ ବିରକ୍ତିରେ ପୂର୍ଣ୍ଣ ହୋଇଥାଏ । ଆମ ଭିତରୁ କେତେକ ପ୍ରକାଶ୍ୟଭାବରେ ପଞ୍ଜାବର ସେହି ଅଂଶକୁ ଯାଇ ସାମରିକ ଆଇନ ଅମାନ୍ୟ କରିବାକୁ ଚାହୁଁଥିଲେ । ମାତ୍ର ଆମମାନଙ୍କୁ ମନା କରାଗଲା ଏବଂ ଏଥିମଧ୍ୟରେ ସାହାଯ୍ୟ ଓ ଅନୁସନ୍ଧାନ ନିମନ୍ତେ କଂଗ୍ରେସ ତରଫରୁ ଏକ ବୃହତ୍ ଅନୁଷ୍ଠାନ ସ୍ଥାପନ କରାଗଲା ।

ପଞ୍ଜାବର ପ୍ରଧାନ ପ୍ରଧାନ ଅଞ୍ଚଳରୁ ସାମରିକ ଆଇନ ଉଠିଗଲା ମାତ୍ରେ ଏବଂ ବାହାର ଲୋକଙ୍କୁ ଯିବା ନିମନ୍ତେ ଅନୁମତି ମିଳିବାମାତ୍ରେ କଂଗ୍ରେସବାଲା ଏବଂ ଅନ୍ୟମାନେ ସାହାଯ୍ୟ ଓ ଅନୁସନ୍ଧାନ କାର୍ଯ୍ୟରେ ସାହାଯ୍ୟ କରିବା ନିମନ୍ତେ ପଞ୍ଜାବ ଗଲେ । ପଣ୍ଡିତ ମଦନ ମୋହନ ମାଳବ୍ୟ ଓ ସ୍ୱାମୀ ଶ୍ରଦ୍ଧାନନ୍ଦ ସାହାଯ୍ୟ କାର୍ଯ୍ୟ କରୁଥିଲେ । ଅନୁସନ୍ଧାନ କାର୍ଯ୍ୟ ମୁଖ୍ୟ ଭାବରେ ମୋ ପିତା ଓ ସି. ଆର. ଦାସଙ୍କ ଉପରେ ନ୍ୟସ୍ତ ଥିଲା । ଗାନ୍ଧିଜୀ ଏଥିରେ ଖୁବ୍ ମନ ଦେଉଥିଲେ ଏବଂ ତାଙ୍କର ପରାମର୍ଶ ନିଆଯାଉଥିଲା । ବିଶେଷ ଭାବରେ ଅମୃତସର ଜିଲ୍ଲା ଦେଶବନ୍ଧୁ ଦାସ ନିଜେ ନେଲେ ଏବଂ ତାଙ୍କର ଇଚ୍ଛାମତେ ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ମୋତେ ତାଙ୍କ ସହିତ ପଠାଗଲା । ତାଙ୍କ ସହିତ ଓ ତାଙ୍କ ଅଧୀନରେ କାର୍ଯ୍ୟ କରିବାର ପ୍ରଥମେ ମୁଁ ସେଠି ସୁଯୋଗ ପାଇଲି । ମୋର ମୂଲ୍ୟବାନ ଅଭିଜ୍ଞତା ଲାଭ ହେଲା ଏବଂ ମୁଁ ତାଙ୍କୁ ଖୁବ୍ ପ୍ରଶଂସା କରିବାକୁ ଲାଗିଲି । ଜାଲିଆନ ୱାଲା ବାଗ ସମ୍ପର୍କୀୟ ଅଧିକାଂଶ ପ୍ରମାଣ ଏବଂ ଯେଉଁ ଗଳିରେ ଲୋକମାନଙ୍କୁ ତାଙ୍କ ପେଟରେ ହାମୁଡ଼େଇ ଯିବାକୁ ହୁକୁମ ହୋଇଥିଲା, ଏ ସବୁ ବିଷୟ ଆମ ଉପସ୍ଥିତିରେ ସଂଗ୍ରହ କରାଯାଇଥିଲା । ପରେ କଂଗ୍ରେସ ତଦନ୍ତ କମିଟି ରିପୋର୍ଟରେ ଏହା ପ୍ରକାଶିତ ହୋଇଥିଲା । ଆମେ ତଥାକଥିତ ବାଗକୁ ଅନେକ ଥର ଯାଇଥିଲୁ ଏବଂ ଏହାର ପ୍ରତ୍ୟେକ ସ୍ଥାନ ଯତ୍ନର ସହିତ ଚହଡ଼ା କରିଥିଲୁ ।

ମୋର ମନେହୁଏ ଏଡୱାର୍ଡ ଥମ୍ପସନ୍ ଲେଖିଛନ୍ତି ଯେ, ସେହି ବାଗରୁ ବାହାରି ଆସିବାପାଇଁ ଅନ୍ୟ ଦୁଆର ଥିଲା ବୋଲି ଧାରଣା କରି ଜେନେରାଲ ଡାୟାର ଏତେ ଦୀର୍ଘ ସମୟ ପର୍ଯ୍ୟନ୍ତ ଗୁଳି ଚଳାଇଥିଲେ । ପ୍ରକୃତରେ ଆଉ କେତୋଟି ଦ୍ୱାର ଅଛି । ଡାୟାରଙ୍କର ସେହି ଧାରଣା ହୋଇଥିଲେ ସୁଦ୍ଧା ତାଙ୍କର ଦାୟିତ୍ୱ କମ ହୋଇ ପାରେ ନାହିଁ । ମାତ୍ର ତାଙ୍କର ଏପରି ଧାରଣା ହେବା ବି ଅଦ୍ଭୁତ କଥା । ସେ ଯେଉଁ ସ୍ଥାନରେ ଠିଆ ହୋଇଥିଲେ ସେଠାରେ ଯେ କୌଣସି ଲୋକ ଠିଆ ହେଲେ ଦେଖିପାରିବ ଯେ, ଚତୁର୍ଦ୍ଦିଗରେ ବଡ଼ ବଡ଼ ମହଲା ଘରସବୁ ହେତୁ ଏହା କିପରି ଆବଦ୍ଧ ହୋଇଛି । ଏକ ପାର୍ଶ୍ୱରେ ପ୍ରାୟ ୧୦୦ ଫୁଟ ପର୍ଯ୍ୟନ୍ତ କୌଣସି ଘର ନ ଥିଲା, ମାତ୍ର ପ୍ରାୟ ୫ ଫୁଟ ଉଚ୍ଚରେ ଗୋଟିଏ ଛୋଟ କାନ୍ଥ ଥିଲା । ଅବିଶ୍ରାନ୍ତ ଗୁଳିବର୍ଷଣରେ ମରଣାହତ ଜନତା ପଳାଇବାର ଅନ୍ୟ ଉପାୟ ନ ଦେଖି ଏହି କାନ୍ଥ ଉପରେ ଚଢ଼ି ପଳାଇବାକୁ ଚେଷ୍ଟା କରିଥିଲେ । ମାତ୍ର ଲୋକଙ୍କୁ ଏଥିରୁ ବାଧା ଦେବା ସକାଶେ ଏହି କାନ୍ଥ ନିକଟକୁ ଗୁଳିବର୍ଷଣ ଚାଲିଲା । ( ଏହା ଆମର ସାଥୀ ଓ କାନ୍ଥରେ ଯେଉଁ ଅସଂଖ୍ୟ ଗୁଳିଦାଗ ସବୁ ଅଛି ସେଥିରୁ ପ୍ରମାଣ ମିଳେ ) ଏହା ଶେଷ ହେବାପରେ ଦେଖାଗଲା, କାନ୍ଥର ଦୁଇପାର୍ଶ୍ୱରେ ମୃତ ଓ ଆହତ ଲୋକ ବଡ଼ ବଡ଼ ସ୍ତୂପ ଆକାରରେ ଜମା ହୋଇଛନ୍ତି ।

ସେହି ବର୍ଷ (୧୯୧୯) ଶେଷବେଳକୁ ମୁଁ ରାତି ଗାଡ଼ିରେ ଅମୃତସରରୁ ଦିଲ୍ଲୀକୁ ଯାତ୍ରା କଲି । ମୁଁ ଯେଉଁ ଡବାରେ ଗଲି ତାହା ପ୍ରାୟ ପୂର୍ଣ୍ଣ ହୋଇଥିଲା । ଉପରେ ଗୋଟିଏ ସ୍ଥାନ ଛଡ଼ା ଆଉ ସବୁଥିରେ ଯାତ୍ରୀ ଶୋଇ ଥାଆନ୍ତି । ମୁଁ ଉପରେ ସେ ଖାଲି ସ୍ଥାନକୁ ଗଲି । ସକାଳେ ଦେଖିଲି, ସେ ଡବାରେ ଯେତେ ଲୋକ ଥିଲେ, ସମସ୍ତେ ହେଉଛନ୍ତି ସାମରିକ କର୍ମଚାରୀ ( ମିଲିଟାରୀ ଅଫିସର ) । ସେମାନେ ଦଢ଼ ପାଟିରେ ନିଜ ଭିତରେ କଥାବାର୍ତ୍ତା କରୁଥିଲେ ଏବଂ ମୁଁ ସେ ସବୁ ଶୁଣୁଥିଲି । ତାଙ୍କ ଭିତରୁ ଜଣେ ବଡ଼ ଦର୍ପୀ ଓ ଗର୍ବୀ ଭାବରେ ବଡ ପାଟିରେ କଥା କହୁଥିଲେ । ମୁଁ

ଜାଣିଲି ଯେ, ସେ ଜାଲିଆନାୱାଲାବାଗରେ 'ମାର' ଜାଗାରେ ଏବଂ ସେ ଅମୃତସରର ଅଳିଗଳି ସବୁ ବର୍ଣ୍ଣନା କରୁଥାଆନ୍ତି। ଜଣେ ସମଗ୍ର ସହରକୁ ତାଙ୍କ ଅନୁଗ୍ରହ ଉପରେ ନିର୍ଭର କରୁଥିଲା, ସେ ସେହି ବିଦ୍ରୋହୀ ସହରକୁ ଏକ ଭସ୍ମଗଦାରେ ପରିଣତ କରିବାକୁ ବସିଥିଲେ, ମାତ୍ର ସେମାନଙ୍କ ପ୍ରତି ଦୟା ବହି ସେଥିରୁ ସେ କ୍ଷାନ୍ତ ହେଲେ। ସମ୍ଭବତଃ ହଣ୍ଟର ତଦନ୍ତ କମିଟି ଆଗରେ ସାକ୍ଷ୍ୟ ଦେଇ ସେ ଲାହୋରରୁ ଫେରୁଥିଲେ। ତାଙ୍କର କାହାଣୀ ଓ କଥାବାର୍ତ୍ତାର ଢଙ୍ଗ ଦେଖି ମୁଁ ମର୍ମାହତ ହେଲି। ସେ ଗୋଲାପୀ ଡୋରା ପାଇଜାମା ଏବଂ ଏକ ଗାଉନ ପିନ୍ଧି ଦିଲ୍ଲୀ ଷ୍ଟେସନରେ ଓହ୍ଲାଇଲେ।

ପଞ୍ଜାବ ତଦନ୍ତ ସମୟରେ ମୁଁ ଗାନ୍ଧିଙ୍କୁ ବହୁଥର ଦେଖିଥିଲି। ଅନେକ ସମୟରେ ତାଙ୍କର ପ୍ରସ୍ତାବ ସବୁ ଆମ କମିଟିକୁ ନୂଆ ମନେ ହେଉଥିଲା ଏବଂ ସେଗୁଡ଼ିକ ସେମାନେ ଗ୍ରହଣ କରୁ ନ ଥିଲେ। ମାତ୍ର ସର୍ବଦା ସେ ତାଙ୍କ ପ୍ରସ୍ତାବ ଗ୍ରହଣ କରାଇନେବା ସମୟରେ ଯୁକ୍ତି ଦେଇ ବୁଝାଉଥିଲେ ଏବଂ ପରବର୍ତ୍ତୀ ଘଟଣା ସବୁରେ ତାଙ୍କ କଥାର ଦୂରଦର୍ଶିତା ବୁଝାପଡ଼ୁଥିଲା। ତାଙ୍କର ରାଜନୀତିକ ଦୂରଦୃଷ୍ଟିରେ ମୋର ବିଶ୍ୱାସ ବଢ଼ିଲା।

ପଞ୍ଜାବ ଘଟଣା ଏବଂ ତାହାର ତଦନ୍ତ ପିତାଙ୍କ ମନରେ ଗୋଟିଏ ପ୍ରଭାବ ପକାଇଲା। ତାଙ୍କର ସମଗ୍ର ଆଇନ ଓ ନିୟମତାନ୍ତ୍ରିକ ମନୋଭାବ ଦୋହଲି ଗଲା ଏବଂ ତାଙ୍କ ମନ ଧୀରେ ଧୀରେ ବଦଳି ବର୍ଷକ ପରେ ନୂଆ ପନ୍ଥା ଧରିଲା। ସେ ତାଙ୍କର ପୁରୁଣା ମଡରେଟ ସହଯୋଗୀଙ୍କୁ ଅନେକଦିନୁ ଛାଡ଼ିଥିଲେ। 'ଏଲାହାବାଦର ପ୍ରଧାନ ମଡରେଟ ସମ୍ବାଦପତ୍ର 'ଲିଡର' ଉପରେ ଅସନ୍ତୁଷ୍ଟ ହୋଇ ସେ ନିଜେ ୧୯୧୯ର ପ୍ରାରମ୍ଭରେ ଏଲାହାବାଦରୁ "ଇଣ୍ଡିପେଣ୍ଡେଣ୍ଟ" ନାମକ କାଗଜ ବାହାର କଲେ। ଏହାର ଖୁବ୍ ପ୍ରସାର ହୋଇଥିଲା, ମାତ୍ର ଆରମ୍ଭ ବେଳୁ ଏହି କାଗଜ ପରିଚାଳନାରେ ସବୁପ୍ରକାର 'ଅସାମର୍ଥ୍ୟ' ଦେଖାଗଲା। ଏଥିପାଇଁ

ଏଥିସହିତ ସଂପୃକ୍ତ ଡ଼ିରେକ୍ଟରଗଣ, ସମ୍ପାଦକ, ପରିଚାଳକବର୍ଗ—ସମସ୍ତେ ଦାୟୀ । ମୋର କୌଣସି ଅଭିଜ୍ଞତା ନ ଥାଇ ସୁଦ୍ଧା ମୁଁ ଜଣେ ଡ଼ିରେକ୍ଟର ହୋଇଥିଲି ଏବଂ କାଗଜରେ ଯେଉଁ ସବୁ ଅସୁବିଧା ଘଟିଲା ଏବଂ ଗୋଳମାଳ ହେଉଥିଲା, ତାହା ମୋତେ ସ୍ପଷ୍ଟ ଭାବେ ସ୍ୱାଭାବିକ ମନେ ହେଉଥାଏ । ଅତି ଶୀଘ୍ର କାର୍ଯ୍ୟ ସଂକ୍ରାନ୍ତରେ ବାପା ଓ ମୁଁ ପଞ୍ଜାବକୁ ଆସିଲୁଁ ଏବଂ ଆମର ଦୀର୍ଘକାଳ ଅନୁପସ୍ଥିତିରେ କାଗଜର ଅବନତି ଘଟିଲା ଏବଂ ଅର୍ଥର ଅଭାବ ଘଟିଥିଲା । ଏଥିରୁ ଏହା ଉଦ୍ଧାରପାଇଲା ନାହିଁ । ୧୯୨୦ ଏବଂ ୧୯୨୧ ସାଲରେ କିଛି ଲାଭ ହୋଇଥିଲେ ସୁଦ୍ଧା ଆମେ ଜେଲ ଯିବାରୁ ଏହା ଏକଦମ ନଷ୍ଟ ହୋଇଗଲା । ୧୯୨୩ ମସିହାର ପ୍ରାରମ୍ଭରେ ଏହା ସମ୍ପୂର୍ଣ୍ଣରୂପେ ଲୋପ ପାଇଲା । ସମ୍ପାଦକ ମାଲିକ ହେବାର ଏହି ଅଭିଜ୍ଞତା ହେତୁ ମୋ ମନରେ ଗୋଟିଏ ଭୟ ଜାତ ହୋଇଯାଇଛି ଏବଂ ସେଥିପାଇଁ ମୁଁ ଡ଼ିରେକ୍ଟର ଭାବରେ କୌଣସି ସମ୍ବାଦପତ୍ରର ଦାୟିତ୍ୱ ନେଇନାହିଁ । ବାସ୍ତବିକ୍ ଜେଲଖାନା ଯାଉଥିବା ହେତୁ ଏବଂ ବାହାରେ ଅନ୍ୟ କାର୍ଯ୍ୟରେ ନିୟୁକ୍ତ ଥିବା ହେତୁ ମୋ ପକ୍ଷରେ ତାହା କରିବା ସମ୍ଭବ ନ ଥିଲା ।

୧୯୧୯ ବଡ଼ଦିନ ଛୁଟିରେ ଅମୃତସରରେ ହୋଇଥିବା କଂଗ୍ରେସ ଅଧିବେଶନରେ ପିତା ସଭାପତି ହେଲେ । ସାମରିକ ଆଇନର ଅତ୍ୟାଚାର ହେତୁ ଯେଉଁ ନୂଆ ପରିସ୍ଥିତି ସୃଷ୍ଟି ହେଲା, ସେଥିଲାଗି କଂଗ୍ରେସରେ ଯୋଗ ଦେବା ନିମନ୍ତେ ସେ ମଡ଼ରେଟମାନଙ୍କୁ ଏକ କରୁଣ ନିବେଦନ କରିଥିଲେ । ସେ ସମୟରେ ମଡ଼ରେଟମାନଙ୍କୁ ଲିବରାଲ ବୋଲି କହିଲେଣି । ସେ ଲେଖିଲେ, "ପଞ୍ଜାବର କ୍ଷତ ବିକ୍ଷତ ହୃଦୟ ସେମାନଙ୍କୁ ଆହ୍ୱାନ କରୁଛି, ସେମାନେ କଣ ତାହା ଶୁଣିବେ ନାହିଁ ?" ସେ ଯେଉଁ ପ୍ରକାରେ ଆଶା କରିଥିଲେ ସେପରି ଜବାବ ପାଇଲେ ନାହିଁ ଏବଂ ମଡ଼ରେଟମାନେ ଯୋଗ ଦେବାକୁ ଅସ୍ୱୀକାର କଲେ । ମଣ୍ଟେଗୁ ଚେମ୍ସଫୋର୍ଡ ଯୋଜନା ଫଳରେ ଯେଉଁ ନୂଆ ସଂସ୍କାର ଆସିବାର କଥା, ସେଥିପ୍ରତି ସେମାନଙ୍କର ଦୃଷ୍ଟି ଥିଲା । ଏହି ଅସ୍ୱୀକାର ହେତୁ ପିତା ଆଘାତ ପାଇଲେ ଏବଂ

ସେଣ୍ଟ୍ରାଲ୍ ଲିବରାଲ୍ (ମାଦ୍ରା) ଦଳ ଓ ତାଙ୍କ ଭିତରେ ମତଭେଦ ବଢ଼ିଗଲା ।

ଅମୃତସରଠାରେ ପ୍ରଥମ ଗାନ୍ଧୀ କଂଗ୍ରେସ ହେଲା । ଲୋକମାନ୍ୟ ତିଳକ ମଧ୍ୟ ଉପସ୍ଥିତ ଥିଲେ ଏବଂ ଅଧିବେଶନରେ ବିଶେଷ ଭାବରେ ଭାଗ ନେଇଥିଲେ । ମାତ୍ର ଏଥିରେ ସନ୍ଦେହ ନାହିଁ, ପ୍ରତିନିଧିମାନଙ୍କ ଭିତରୁ ଅଧିକାଂଶ ଏବଂ ଏପରିକି ବାହାରେ ଯେଉଁ ବିରାଟ ଜନତା ଦର୍ଶକରୂପେ ଜମା ହୋଇଥିଲେ ସେମାନେ, ଗାନ୍ଧୀଙ୍କ ନେତୃତ୍ୱକୁ ଚାହିଁ ବସିଥିଲେ । ଭାରତର ରାଜନୀତି ଆକାଶ "ମହାତ୍ମା ଗାନ୍ଧୀଙ୍କ ଜୟ" ଧ୍ୱନିରେ ପ୍ରକମ୍ପିତ ହେଲା । ନିକଟରେ କାରାବନ୍ଦୀରୁ ମୁକ୍ତ ହୋଇ ଆଲିଭାଇମାନେ କଂଗ୍ରେସରେ ଯୋଗ ଦେଲେ ଏବଂ ଜାତୀୟ ଆନ୍ଦୋଳନ ନୂତନ ରୂପ ଓ ଆକୃତି ଧାରଣ କଲା ।

ଅଳ୍ପଦିନ ପରେ ଏକ ଖିଲାଫତ ଡେପୁଟେସନ ନେଇ ମହମ୍ମଦ ଆଲି ଇଉରୋପ ଗଲେ । ଭାରତରେ ଖିଲାଫତ୍ କମିଟି ଗାନ୍ଧିଜୀଙ୍କ ଆଦେଶ ଅନୁସାରେ ପ୍ରାୟ କାର୍ଯ୍ୟ କଲା ଏବଂ ତାଙ୍କର ଅହିଂସା ଅସହଯୋଗ କର୍ମପନ୍ଥା ଗ୍ରହଣ କଲା । ୧୯୨୦ ମସିହା ଜାନୁଆରୀ ମାସରେ ଦିଲ୍ଲୀରେ ଖିଲାଫତ୍ ନେତା, ମୌଲବୀ, ଉଲେମାମାନଙ୍କର ଏକ ସଭାରେ ମୁଁ ଉପସ୍ଥିତ ଥିବା କଥା ମୋର ମନେ ଅଛି । ବଡ଼ଲାଟଙ୍କ ନିକଟକୁ ଏକ ଖିଲାଫତ୍ ଡେପୁଟେସନ ଯିବାର ଥିଲା ଏବଂ ଗାନ୍ଧିଜୀ ସେଥିରେ ଯୋଗ ଦେବାର କଥା । ପ୍ରଥାନୁସାରେ ସେ ଦିଲ୍ଲୀରେ ପହଞ୍ଚିବା ପୂର୍ବରୁ ତାଙ୍କ ପ୍ରସ୍ତାବର ଏକ ନକଲ ଆଗତୁରା ବଡ଼ଲାଟଙ୍କ ନିକଟକୁ ପଠାଯାଇଥିଲା । ଗାନ୍ଧିଜୀ ସେତେବେଳେ ଦିଲ୍ଲୀରେ ପହଞ୍ଚି ସେହି ଲେଖା ପଢ଼ିଲେ, ସେ ତାକୁ ବଡ଼ ନାପସନ୍ଦ କଲେ ଏବଂ କହିଲେ ଯେ, ଏହା ଅନେକାଂଶରେ ପରିବର୍ତ୍ତନ ହେଲେ ସେ ଡେପୁଟେସନରେ ଯୋଗ ଦେବେ ନାହିଁ । ତାଙ୍କର ଆପତ୍ତି ହେଲା ଯେ, ଏହା ବଡ଼ ଅସ୍ପଷ୍ଟ ଓ ଅତ୍ୟୁକ୍ତିପୂର୍ଣ୍ଣ ହୋଇଛି । ମୁସଲମାନମାନଙ୍କର ସର୍ବନିମ୍ନ ଦାବୀ ଏଥିରେ ପରିଷ୍କାରରୂପେ ଲେଖା

ନାହିଁ । ସେ କହିଲେ, ଏଥିରେ ଆମ ପକ୍ଷେ, ଲୋକଙ୍କ ପକ୍ଷେ, ବଡ଼ଲାଟ ଓ ବ୍ରିଟିଶ ଗଭର୍ଣ୍ଣମେଣ୍ଟ କାହାର ପ୍ରତି ନ୍ୟାୟ କରି ହେଉନାହିଁ । ସେମାନେ ଦାବୀ କରୁ ନ ଥିବା ଅତିରଞ୍ଜିତ କଥାସବୁ ଲେଖିବା ଉଚିତ ନୁହେଁ । ମାତ୍ର ନିଃସନ୍ଦେହରେ ନ୍ୟୁନତମ ଦାବୀର ପରିଷ୍କାର ରୂପେ ଉଲ୍ଲେଖ କରି ମୃତ୍ୟୁ ପର୍ଯ୍ୟନ୍ତ ସେଥିଲାଗି ଠାଣି ଧରି ପଡ଼ି ରହିବା ଲାଗି ସେ କହିଲେ । ସେମାନେ ତାହା ବାସ୍ତବରେ ପ୍ରତିଜ୍ଞାବଦ୍ଧ ହୋଇଥିଲେ, ଏହାହିଁ ଉତ୍କୃଷ୍ଟ ଓ ସମ୍ମାନଜନକ ପନ୍ଥା ହେବ ।

ଭାରତରେ ରାଜନୀତି ଜଗତରେ ଏହା ନୂତନ ପନ୍ଥା । ଆମେ ଅଧିକାଂଶ, ଅତିବାହୁଲ୍ୟ ଓ ସ୍ପଷ୍ଟୋକ୍ତିରେ ଥାଉ ଏବଂ ସର୍ବଦା ଦରକଷାକଷି କରିବା ନୀତି ରୀତିର କଥା ଆମ ମନ ମଧ୍ୟରେ ଥାଏ । ଯାହାହେଉ ଗାନ୍ଧିଜୀଙ୍କ କଥା ରହିଲା । ଯେଉଁ ଚିଠିଟା ବଡ଼ଲାଟଙ୍କ ନିକଟକୁ ପଠାଯାଇଥିଲା, ସେଥିର ଦୋଷ ଓ ତ୍ରୁଟି ଦେଖି ଆଉ କେତେକ ଅଧିକା ଯାହା ସେଥିରେ ଯୋଗକରି ସେ ବଡ଼ଲାଟଙ୍କ ପ୍ରାଇଭେଟ ସେକ୍ରେଟେରୀଙ୍କ ପାଖକୁ ଲେଖିଲେ । ଏଥିରେ ସର୍ବନିମ୍ନ ଦାବୀର ଉଲ୍ଲେଖ ରହିଲା । ବଡ଼ଲାଟଙ୍କ ଉତ୍ତର ବିଲ୍କୁଲ ନକାର । ସେ ନୂତନ ବନ୍ଧୁସୂତ୍ରକୁ ଗ୍ରହଣ କରିବାକୁ ଅସ୍ୱୀକାର କଲେ ଏବଂ ତାଙ୍କ ମତରେ ପୂର୍ବ ପ୍ରସ୍ତାବଟି ଠିକ୍ ଥିଲା । ଗାନ୍ଧିଜୀ ବିଚାରିଲେ ଯେ, ଏହି ଚିଠିପତ୍ର ଦ୍ୱାରା ତାଙ୍କର ଓ ଖିଲାଫତ୍ କମିଟିର ମତ ପରିଷ୍କାର ହୋଇଯାଇଛି । ତେଣୁ ଶେଷରେ ସେ ଡେପୁଟେସନରେ ଯୋଗ ଦେଲେ ।

ଏକଥା ଜଣା ଥିଲା, ଗଭର୍ଣ୍ଣମେଣ୍ଟ ଖିଲାଫତ୍ କମିଟିର ଦାବୀ ଗ୍ରହଣ କରିବ ନାହିଁ ଏବଂ ଏକ ସଂଗ୍ରାମ ଆବଶ୍ୟକ ହେବ । ମୌଲବୀ ଓ ଉଲେମାମାନଙ୍କ ସହିତ ଦୀର୍ଘ ସମୟ ପର୍ଯ୍ୟନ୍ତ କଥାବାର୍ତ୍ତା ଚାଲିଲା । ଅହିଂସ ଅସହଯୋଗ, ବିଶେଷତଃ ଅହିଂସା ସମ୍ବନ୍ଧରେ ଖୁବ୍ ଆଲୋଚନା ହେଲା । ଗାନ୍ଧିଜୀ କହିଲେ ଯେ, ଅହିଂସାର ସମସ୍ତ ତାତ୍ପର୍ଯ୍ୟ ବୁଝି ସେମାନେ ଯଦି ତାହା ଗ୍ରହଣ କରିବାକୁ ପ୍ରତିଶ୍ରୁତି ଦେବେ, ତେବେ ସେ ତାଙ୍କ ସହିତ ଯୋଗଦେବାକୁ ପ୍ରସ୍ତୁତ ଅଛନ୍ତି ।

ଅହିଂସା ସମ୍ବନ୍ଧରେ କୌଣସି ପ୍ରକାର ଦୁର୍ବଳତା, ସନ୍ଦେହ ଏବଂ ମନ ମଧ୍ୟରେ ଅନ୍ତଃକରଣ ନ ଥିବା ଉଚିତ ନୁହେଁ । ଏହି ଭାବ ଅନୁସରଣ କରିବା ମୌଲବୀମାନଙ୍କ ପକ୍ଷରେ ସହଜ ନ ଥିଲା । ସେମାନେ ସେଥିରେ ରାଜି ହେଲେ, ଏବଂ ସଙ୍ଗେ ସଙ୍ଗେ ପରିଷ୍କାର କରି କହିଦେଲେ ଯେ, ସେମାନେ ଏହାକୁ ଉପାୟ ହିସାବରେ ଗ୍ରହଣ କରୁଛନ୍ତି, ନୀତି ହିସାବରେ ନୁହେଁ । କାରଣ ଅନ୍ୟାୟର ଦମନ ଲାଗି ହିଂସା ପ୍ରୟୋଗ କରିବାକୁ ତାଙ୍କ ଧର୍ମ ଶାସ୍ତ୍ରରେ ମନା ନାହିଁ ।

ପଞ୍ଜାବ ଓ ଖିଲାଫତ୍ ଆନ୍ଦୋଳନ ୧୯୨୦ ମସିହାରେ ଏକ ସଙ୍ଗରେ ଚାଲୁଥାଏ—ଦୁହେଁ ଏକାଠି ଗତି କରୁଥାନ୍ତି । ସେଥିରେ ଗାନ୍ଧୀଙ୍କର ଅହିଂସା ଅସହଯୋଗ କଂଗ୍ରେସ ଗ୍ରହଣ କରିବାରେ ଏହା ମିଶିଗଲା । ଖିଲାଫତ୍ କମିଟି ପ୍ରଥମେ ଏହି କାର୍ଯ୍ୟକ୍ରମ ଗ୍ରହଣ କଲା ଏବଂ ଏହି ଆନ୍ଦୋଳନ ଆରମ୍ଭ ନିମନ୍ତେ ଅଗଷ୍ଟ ପହିଲା ତାରିଖ ଦିନଟି ସ୍ଥିର କରାଗଲା ।

ସେହି ପ୍ରଥମ ଯୁଗରେ ଏଲାହାବାଦରେ ଏହି କାର୍ଯ୍ୟକ୍ରମ ଆଲୋଚନା କରିବା ନିମନ୍ତେ ଏକ ମୁସଲମାନ ସଭା ହୋଇଥିଲା ( ମୋର ମନେ-ହେଉଛି ମୁସଲିମ୍ ଲିଗ୍‌ର କାର୍ଯ୍ୟକାରୀ ସମିତି ) । ଏହା ସୈୟଦ ରେଜା ଅଲିଙ୍କ ଘରେ ବସିଥିଲା । ମୌଲାନା ମହମ୍ମଦ ଅଲି ୟୁରୋପରେ ଥିଲେ, ମାତ୍ର ମୌଲାନା ସୌକତ ଅଲି ଏଥିରେ ଉପସ୍ଥିତ ଥିଲେ । ଏହି ବୈଠକ ଦେଖି ମୁଁ ବଡ଼ ହତାଶ ହୋଇଥିଲି ବୋଲି ମୋର ଆଜି ମଧ୍ୟ ମନେ ଅଛି । ଅବଶ୍ୟ ସୌକତ ଅଲି ଖୁବ୍ ଉତ୍ସାହରେ ଥିଲେ, ମାତ୍ର ଅନ୍ୟ-ମାନେ ବଡ଼ ଅସ୍ୱସ୍ତି ଅନୁଭବ କରୁଥିଲେ । ଅଗ୍ରସର ହେବାକୁ ସେମାନଙ୍କର ସାହସ ନ ଥିଲା । ମାତ୍ର କିଛି ଗୋଟାଏ ଉଗ୍ରତର କାର୍ଯ୍ୟ କରିବାଲାଗି ସେମାନଙ୍କର ଇଚ୍ଛା ନ ଥିଲା । ମୁଁ ଭାବିଲି ଏମାନେ କପରି ଗୋଟାଏ ବିପ୍ଳବାତ୍ମକ ଆନ୍ଦୋଳନର ନେତୃତ୍ୱ କରିବେ ଏବଂ ବ୍ରିଟିଶ ସାମ୍ରାଜ୍ୟକୁ ଚାଲେଞ୍ଜ ଦେବେ ? ଗାନ୍ଧିଜୀ ସେଠି ସଭାରେ ବକ୍ତୃତା

ଥିଲେ ଏବଂ ତାଙ୍କ ବକ୍ତୃତା ଶୁଣିଲାପରେ ସେମାନେ ଅଧିକ ଉତ୍ସାହିତ ହେଲେ । ତାଙ୍କ ବକ୍ତୃତାରେ ବେଶ୍ ଗୋଟାଏ ଆତ୍ମ-ପ୍ରତ୍ୟୟର ଭାବ ଥିଲା । ମାତ୍ର ସେ ଅତି ନମ୍ର, ପରିଷ୍କାର, ହୀରକପରି ଦୃଢ଼ ଉଜ୍ଜ୍ୱଳ ଅଥଚ ଅତ୍ୟନ୍ତ ସାଧୁଭାବରେ କହୁଥିଲେ । ତାଙ୍କର ଚକ୍ଷୁଦ୍ୱୟ ବଡ଼ ସ୍ଥିର ଓ ମଧୁର ଦେଖାଯାଉଥାଏ, ଅଥଚ ତାହା ଭିତରୁ ଅସମ୍ଭବ ଶକ୍ତି ଓ ପ୍ରତିଜ୍ଞାର ଜ୍ୟୋତି ଫୁଟି ବାହାରୁଥାଏ । ସେ କହିଲେ, ଜଣେ ଶକ୍ତିଶାଳୀ ଶତ୍ରୁ ବିପକ୍ଷରେ ଆମର ଏହି ସଂଗ୍ରାମ ବହୁତ ବଡ଼ ହେବ । ଏହି ଆନ୍ଦୋଳନ ଚଳାଇବାକୁ ହେଲେ ତୁମକୁ ସମସ୍ତ ହରାଇବା ଲାଗି ପ୍ରସ୍ତୁତ ହେବାକୁ ପଡ଼ିବ ଏବଂ ନିଜକୁ କଠୋର ଅହିଂସା ଓ ଶୃଙ୍ଖଳା ମାନି ଚଳିବାକୁ ପଡ଼ିବ । ଯୁଦ୍ଧ ଘୋଷଣା ହେଲେ ସାମରିକ ଆଇନ୍ ଜାରି ହୁଏ । ଆମକୁ ଜୟଲାଭ କରିବାକୁ ହେଲେ ଆମ ପକ୍ଷରୁ ଅହିଂସ ଯୁଦ୍ଧରେ ଏକନାୟକତ୍ୱ ଓ ସାମରିକ ନିୟମ କାନୁନ୍ ମାନିବାକୁ ପଡ଼ିବ । ମୋତେ ଗୋଇଠା ମାରି ପକାଇ ଦେବାର ଅଧିକାର ତୁମର ଅଛି । ତୁମେ ମୋର ମୁଣ୍ଡକାଟ କରିପାର ଏବଂ ଯେତେବେଳେ ଓ ଯେଉଁ ପ୍ରକାରେ ଇଚ୍ଛା ମୋତେ ଶାସ୍ତି ବିଧାନ କରିପାର । ମାତ୍ର ଯେ ପର୍ଯ୍ୟନ୍ତ ତୁମେ ମୋତେ ନେତା ହିସାବରେ ସ୍ୱୀକାର କରିଛ, ସେ ପର୍ଯ୍ୟନ୍ତ ତୁମକୁ ମୋର ସର୍ତ୍ତ ମାନିବାକୁ ହେବ, ମୋର ଏକନାୟକତ୍ୱ ସ୍ୱୀକାର କରିବାକୁ ପଡ଼ିବ ଏବଂ ସାମରିକ ଆଇନର ଶୃଙ୍ଖଳା ପାଳନ କରିବାକୁ ପଡ଼ିବ । ମାତ୍ର ଏହି ଏକନାୟକତ୍ୱ ତୁମର ଶୁଭକାମନା ଉପରେ, ତୁମର ଗ୍ରହଣ କରିବା ଉପରେ ଏବଂ ସହଯୋଗ ଉପରେ ନିର୍ଭର କରେ । ମୁଁ ଯେ ମୁହୂର୍ତ୍ତରେ ଭୁଲ କରୁଛି ବୋଲି ଦେଖିବ, ସେହି ମୁହୂର୍ତ୍ତରେ ମୋତେ ଫୋପାଡ଼ି ଦିଅ—ମୋର କୌଣସି ଆପତ୍ତି ନାହିଁ ।

ଏହାପରି ଭାବରେ ସେ କହିଲେ ଏବଂ ତାଙ୍କର ସାମରିକ ଉପମା ଓ ଅଟଳ ନିଷ୍ଠା ଦେଖି ପ୍ରତ୍ୟେକ ଶ୍ରୋତାର ହୃଦୟ କମ୍ପିତ ହେଲା । ମାତ୍ର ସୌଜନ୍ୟ ଅଛି ସଂଶୟୀମାନଙ୍କୁ ଆଶ୍ୱାସନା ଦେଉଥାଆନ୍ତି ଏବଂ

ଭୋଟ ସମୟରେ ଅଧିକାଂଶ ଲୋକ ନୀରବରେ ଏବଂ ଲଜ୍ଜାଶୀଳ ଭାବରେ ପ୍ରସ୍ତାବ ସପକ୍ଷରେ ଅର୍ଥାତ୍ ସଂଗ୍ରାମ ଲାଗି ଭୋଟ ଦେଲେ ।

ଆମେ ଘରକୁ ଫେରିଲାବେଳେ ଗୋଟାଏ ବଡ ସଂଗ୍ରାମ ଆରମ୍ଭ କରିବାର ଏହି ଜଣ ପନ୍ଥା ବୋଲି ମୁଁ ଗାନ୍ଧିଜୀଙ୍କି ଚିହ୍ନିଲି । ମୁଁ ଖୁବ୍ ଉନ୍ମାଦମୟୀ ବାଣୀ ଓ ଜ୍ୱଳନ୍ତ ରୂପ ଦେଖିବି ବୋଲି ଆଶା କରିଥିଲି, ମାତ୍ର ତାହା ବଦଳରେ ଦେଖିଲି ଦଳେ ଛୋଟ, ମଧ୍ୟ ବୟସ୍କ ଲୋକ । ଅଥଚ ଜନସାଧାରଣଙ୍କ ମତର ରୂପ ଏପରି ଯେ, ଏହିମାନେ ସଂଗ୍ରାମ ସପକ୍ଷରେ ଭୋଟ ଦେଲେ । ଅବଶ୍ୟ ମୁସଲିମ ଲିଗର ଖୁବ୍ ଅଳ୍ପ ସଂଖ୍ୟକ ଲୋକେ ପରେ ଏହି ସଂଗ୍ରାମରେ ଯୋଗ ଦେଇଥିଲେ । ସେଥିଭିତରୁ ଅନେକ ସରକାରୀ ଚାକିରୀରେ ପ୍ରବେଶ କଲେ । ସେତେବେଳେ ବା ତାପରେ ମୁସଲିମ ଲିଗ ମୁସଲମାନମାନଙ୍କ ଭିତରୁ ଅଧିକାଂଶର ମତ ପ୍ରକଟିତ କରୁ ନ ଥିଲା ବା କରୁନାହିଁ । ୧୯୨୦ ରେ ଖିଲାଫତ୍ କମିଟି ଅତି ଅଧିକ ଶକ୍ତିଶାଳୀ ଓ ପ୍ରତିନିଧିମୂଳକ ଥିଲା ଏବଂ ଏହି କମିଟି ଉତ୍ସାହର ସହିତ ସଂଗ୍ରାମରେ ଯୋଗ ଦେଲା ।

ଗାନ୍ଧିଜୀ ଅସହଯୋଗ ଆରମ୍ଭ ସକାଶେ ଅଗଷ୍ଟ ପହିଲା ତାରିଖ ସ୍ଥିର କଲେ । ଅବଶ୍ୟ କଂଗ୍ରେସ ସେ ପର୍ଯ୍ୟନ୍ତ ପ୍ରସ୍ତାବକୁ ଗୃହୀତ ବା ଗ୍ରହଣ କରି ନ ଥିଲା । ସେହିଦିନ ବମ୍ବେରେ ଲୋକମାନ୍ୟ ତିଲକ ମଲେ । ସେହିଦିନ ସକାଳେ ସିନ୍ଧରୁ ଫେରିଆସି ଗାନ୍ଧିଜୀ ବମ୍ବେରେ ପହଞ୍ଚିଥାନ୍ତି । ମୁଁ ତାଙ୍କ ସହିତ ଥିଲି । ସେହିଦିନ ସେହି ବଡ ନେତାଙ୍କୁ ସମ୍ମାନ ଦେଖାଇବା ନିମନ୍ତେ ବମ୍ବେରୁ ଲକ୍ଷ ଲକ୍ଷ ଲୋକ ଯେ ଶୋଭାଯାତ୍ରା କରି ବାହାରି ଆସିଥିଲେ, ସେଥିରେ ଆମେ ଯୋଗ ଦେଲୁ ।



# ମୋର ବହିଷ୍କାର ଓ ତାର ଫଳାଫଳ

ମୋ ରାଜନୀତି ମୋ ଶ୍ରେଣୀର ଅର୍ଥାତ୍ ବୁର୍ଜୋୟା ଶ୍ରେଣୀର ରାଜନୀତି ଥିଲା । ବାସ୍ତବରେ ସେତେବେଳର ସମସ୍ତ ପ୍ରକାଶିତ ରାଜନୀତି (ଅନେକ ପରିମାଣରେ ଆଜିକାଲି ମଧ୍ୟ) ମଧ୍ୟବିତ୍ତ ଶ୍ରେଣୀର ଏବଂ ମଡରେଟ ଓ ଚରମପନ୍ଥୀ ସମସ୍ତେ ଭିନ୍ନ ପ୍ରକାରରେ ତାହାର ପ୍ରତିନିଧିତ୍ୱ କରୁଛନ୍ତି ଏବଂ ଉନ୍ନତି କରିବା ନିମନ୍ତେ ଚେଷ୍ଟା କରୁଛନ୍ତି । ଫଳତଃ ବ୍ରିଟିଶ ଶାସନ ଅଧୀନରେ ଉନ୍ନତି ଲଭିଥିବା [illegible] ଉଚ୍ଚ ଓ ମଧ୍ୟବିତ୍ତ ଶ୍ରେଣୀର ବିଶେଷତଃ ମଡରେଟମାନେ ପ୍ରତିନିଧିତ୍ୱ କରୁଥିଲେ ଏବଂ କୌଣସି ହଠାତ୍ ପରିବର୍ତ୍ତନ ଚାହୁଁ ନ ଥିଲେ; କାରଣ ତଦ୍ୱାରା ସେମାନଙ୍କର ବର୍ତ୍ତମାନ ଅବସ୍ଥା ଓ ସ୍ୱାର୍ଥ ହାନି ଘଟିବାର ଆଶଙ୍କା ଥିଲା । ସେମାନଙ୍କର ବ୍ରିଟିଶ ସରକାର ଓ ବଡ଼ ଜମିଦାର ଶ୍ରେଣୀମାନଙ୍କ ସହିତ ସମ୍ବନ୍ଧ ଥିଲା । ଚରମପନ୍ଥୀମାନେ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ପ୍ରତିନିଧିତ୍ୱ କରୁଥିଲେ । ମୁଖପରେ କାରଖାନା ଶ୍ରମିକଙ୍କ ସଂଖ୍ୟା ବଢ଼ିଥିଲା । କୌଣସି କୌଣସି ଅଞ୍ଚଳରେ ସେମାନଙ୍କର ସଙ୍ଗଠନ ଥିଲା ଏବଂ ପ୍ରାୟ କିନ୍ତୁ ପ୍ରଭାବ ନ ଥିଲା । କୃଷକ ଜନସାଧାରଣ ମୂକ, ଦାରିଦ୍ର୍ୟପ୍ରପୀଡ଼ିତ ଏବଂ ନିଷ୍ପେଷିତ ହୋଇ ନିଜ ଭାଗ୍ୟକୁ ଆଦରି ପଡ଼ିଥିଲେ ଏବଂ ଗଭର୍ଣ୍ଣମେଣ୍ଟ, ଜମିଦାର, ମହାଜନ, ଛୋଟ ଛୋଟ ଅଫିସର, ପୁଲିସ, ଓକିଲ ଏବଂ ପୁରୋହିତ ଯେ କେହି ସେମାନଙ୍କ ସମ୍ପର୍କରେ ଆସୁଥିଲେ, ସେମାନେ ତାଙ୍କ ଉପରେ ପ୍ରଭୁତ୍ୱ କରୁଥିଲେ ଓ ଶୋଷଣ କରୁଥିଲେ ।

ସେକାଳର ସମ୍ବାଦପତ୍ର ପଢ଼ିଲେ ଭାରତରେ ଏତେ ଅଧିକ ସଂଖ୍ୟକ କୃଷକ ଓ ଶ୍ରମିକ ଥିବାର କଥା ସେମାନଙ୍କର କୌଣସି ସ୍ଥାନ ଅଛି ବୋଲି ଆଦୌ ଅନୁମାନ କରାଯାଇ ପାରିବ ନାହିଁ । ବ୍ରିଟିଶ-ମାନଙ୍କ ଆଙ୍ଗ୍ଲୋ-ଇଣ୍ଡିଆନ ସମ୍ବାଦପତ୍ରମାନଙ୍କରେ [illegible]

କର୍ମଚାରୀଙ୍କ କାର୍ଯ୍ୟ-କଳାପ ଭରା ହୋଇଥାଏ । ବଡ଼ ବଡ଼ ସହରରେ ହେଉଥିବା ଇଂରେଜମାନଙ୍କ ସାମାଜିକ ଜୀବନ, ପୋଷାକ ନୃତ୍ୟ ଏବଂ ଥିଏଟର ଆଦି ବର୍ଣ୍ଣନାରେ ଭରା ଥାଏ । ଇଂରେଜୀୟ ଦୃଷ୍ଟିକୋଣରୁ ଭାରତ ରାଜନୀତିକୁ ସେମାନେ ଆଦୌ ସ୍ଥାନ ଦେଉ ନ ଥଲେ ଏବଂ ପଛପୃଷ୍ଠାରେ କେତେକ ଧାଡ଼ିରେ କଂଗ୍ରେସ ଅଧିବେଶନର ସମ୍ବାଦ ପ୍ରକାଶିତ ହେଉଥିଲା । ତାକୁ ଆଦୌ ମୂଲ୍ୟବାନ ସମ୍ବାଦ ଭାବରେ ବିଚାର କରାଯାଉ ନ ଥିଲା; କେବଳ କୌଣସି ଇଂରେଜୀୟ ଯଦି କଂଗ୍ରେସକୁ ସମାଲୋଚନା କରେ ବା ଗାଳିଦିଏ, ତେବେ ତାହା ପ୍ରକାଶ ପାଏ । ବେଳେ ବେଳେ ଧର୍ମଘଟ ସମ୍ବନ୍ଧରେ ସଂକ୍ଷିପ୍ତ ସମ୍ବାଦ ବାହାରେ ଏବଂ କେବଳ ଡକାୟତି ହେଲେ ମଫସଲ ଅଞ୍ଚଳର ସମ୍ବାଦ ପ୍ରକାଶିତ ହୁଏ ।

ଭାରତୀୟ ସମ୍ବାଦପତ୍ରଗୁଡ଼ିକ ଆଙ୍ଗ୍ଲୋଇଣ୍ଡିଆନ କାଗଜମାନଙ୍କ ଆଦର୍ଶ ଅନୁସରଣ କଲେ, ତେବେ ସେଗୁଡ଼ିକ ଜାତୀୟ ଆନ୍ଦୋଳନକୁ ବେଶୀ ପ୍ରାଧାନ୍ୟ ଦିଅନ୍ତି । ଅନ୍ୟ ସବୁଥିରେ ବଡ଼ ଓ ଶ୍ରେଷ୍ଠ ଇଂରେଜୀୟ ଅଫିସରଙ୍କ ପଦୋନ୍ନତି, ବଦଳି ସମ୍ବାଦ ବାହାରେ ଏବଂ କୌଣସି ଅଫିସର ବିଦାୟ ଉତ୍ସବରେ ଭୋଜି ଆଦି ହେଲେ ସେ ସମ୍ବାଦ ବାହାରେ "ଅତ୍ୟନ୍ତ ଉତ୍ସାହ ଦେଖାଯାଉଥିଲା" ବୋଲି ପ୍ରକାଶିତ ହୁଏ । କୌଣସି ମଫସଲ ଅଞ୍ଚଳରେ ପୁନର୍ବାର ବନ୍ଦୋବସ୍ତ ହେଲେ ସାଧାରଣତଃ ରାଜସ୍ୱ ବଢ଼େ ଏବଂ ସେତେବେଳେ ଜମିଦାରଠାରୁ ବହୁତ ଧନ ମିଳିବ ବୋଲି ମଧ୍ୟ ସମ୍ବାଦପତ୍ରମାନେ ପ୍ରତିବାଦ କରନ୍ତି । ଏ ସବୁ ନିରୀହ ରଇତଙ୍କ କଥା କେଉଁଠାରେ ଶୁଣାଯାଏ ନାହିଁ । ସମ୍ବାଦପତ୍ର ମୁଖ୍ୟଭାବରେ ଜମିଦାର ଓ କାରଖାନା ମାଲିକମାନଙ୍କ ଦ୍ୱାରା ଚାଳିତ ହୁଏ । ଏହାକୁହିଁ "ଜାତୀୟବାଦୀ" ସମ୍ବାଦପତ୍ର କୁହାଯାଏ ।

କଂଗ୍ରେସ ମଧ୍ୟ ପ୍ରଥମ କେତେବର୍ଷ ପର୍ଯ୍ୟନ୍ତ ବନ୍ଦୋବସ୍ତ ନ ହୋଇଥିବା ଅଞ୍ଚଳରେ ବନ୍ଦୋବସ୍ତ କରିବା ନିମନ୍ତେ ବାରମ୍ବାର ଦାବି

କରି ଆସୁଥିଲା; କାରଣ ଏଦ୍ୱାରା ଜମିଦାରମାନଙ୍କର ସ୍ୱାର୍ଥ ରକ୍ଷା ହେବ । ଏଥିରେ ପ୍ରଜାର ନାମ ଗନ୍ଧ ନ ଥିଲା ।

ଜାତୀୟତା ଆନ୍ଦୋଳନର ପ୍ରଗତି ହେତୁ ଗତ ୨୦ ବର୍ଷ ହେଲା ଅବସ୍ଥାର ଅନେକ ପରିବର୍ତ୍ତନ ଘଟିଛି ଏବଂ ଏବେ ସୁଦ୍ଧା ଭାରତୀୟ ପାଠକମାନଙ୍କ ସକାଶେ ପରିଚାଳିତ ସମ୍ବାଦପତ୍ରମାନଙ୍କୁ ଭାରତୀୟ ରାଜନୈତିକ ସମସ୍ୟା ସମ୍ବନ୍ଧରେ ସମ୍ବାଦ ପ୍ରକାଶ କରିବାକୁ ପଡ଼ୁଛି । ସେମାନେ ଏହା ନିଜ ରୁଚି ଅନୁସାରେ ଏକ ଅଦ୍ଭୁତ ପ୍ରକାରେ କରନ୍ତି । ଭାରତୀୟ ସମ୍ବାଦପତ୍ରମାନଙ୍କ ଦୃଷ୍ଟିକୋଣ ଟିକିଏ ବିସ୍ତୃତ ହୋଇଛି ଏବଂ ସେମାନେ କୃଷକ ଓ ଶ୍ରମିକମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କରୁଛନ୍ତି । କାରଣ ଏହା ଆଜିକାଲି ଫେସନ୍ ହୋଇଛି ଏବଂ ପାଠକମାନଙ୍କ ମଧ୍ୟରେ କାରଖାନା ଓ କୃଷି ମୂଲିଆଙ୍କ ସମସ୍ୟା ସମ୍ବନ୍ଧରେ ଜାଣିବା ଲାଗି ଆଗ୍ରହ ଦେଖାଯାଉଛି; ମାତ୍ର ସେଗୁଡ଼ିକ ମୋଟାମୋଟି ଆଗପରି ସେହି ଭାରତୀୟ ପୁଞ୍ଜିପତି ଓ ଜମିଦାର ଶ୍ରେଣୀ ସେମାନଙ୍କୁ ସ୍ୱତ୍ୱ ଦେଇଛନ୍ତି, ସେହିମାନଙ୍କ ସ୍ୱାର୍ଥରକ୍ଷା ଲାଗି ଦାବୀ କରନ୍ତି । ଅନେକ ଭାରତୀୟ ଦେଶୀୟ ରାଜା ମଧ୍ୟ ସମ୍ବାଦପତ୍ରରେ ଅର୍ଥ ଖଟାଇଛନ୍ତି ଏବଂ ସେମାନେ ସେମାନଙ୍କ ଧନର ଉପଯୁକ୍ତ ପାଉଣା ବି ସେମାନଙ୍କଠାରୁ ଆଦାୟ କରନ୍ତି । ଅଥଚ ଏଥିଭିତରୁ ଅନେକ ସମ୍ବାଦପତ୍ରକୁ "କଂଗ୍ରେସ" କାଗଜ ବୋଲି କୁହାଯାଏ; ମାତ୍ର ତାହାର ପରିଚାଳକମାନେ କଂଗ୍ରେସର ସଭ୍ୟ ସୁଦ୍ଧା ହୋଇ ନ ଥାନ୍ତି । ମାତ୍ର କଂଗ୍ରେସ ସାଧାରଣଙ୍କ ସମ୍ମୁଖରେ ଲୋକପ୍ରିୟ ଶବ୍ଦ ଏବଂ ଏହାକୁ ଅନେକ ବ୍ୟକ୍ତିବିଶେଷ ଓ ଦଳ ନିଜର ସୁବିଧା ଲାଗି ବ୍ୟବହାର କରନ୍ତି । ଅବଶ୍ୟ ଯେଉଁ ସବୁ ସମ୍ବାଦପତ୍ର ଅଧିକ ପ୍ରଗତିଶୀଳ ଭାବ ପ୍ରକଟ କରନ୍ତି, ସେଗୁଡ଼ିକର ସର୍ବଦା ବହୁତ ଜୋରିମାନା କିମ୍ବା କଡ଼ା ଆଇନ ଓ ଯାଞ୍ଚ ଇତ୍ୟାଦିରେ ଦମନ ହେବାର ଆଶଙ୍କା ବରାବର ଥାଏ ।

୧୯୨୦ରେ କାରଖାନା ଓ କୃଷିଜମିର ମୂଲିଆଙ୍କ ଅବସ୍ଥା ସମ୍ବନ୍ଧରେ ମୁଁ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲି ଏବଂ ମୋର ରାଜନୈତିକ ଦୃଷ୍ଟିକୋଣ ସମ୍ପୂର୍ଣ୍ଣ

ବୂର୍ଜୋଆ ବା ମଧ୍ୟବିତ୍ତ ଶ୍ରେଣୀର ଥିଲି । ଅବଶ୍ୟ କୃଷକ ଦୁଃଖ ଦାରିଦ୍ର୍ୟ ରହିଛି ବୋଲି ମୁଁ ଜାଣିଥିଲି ଏବଂ ରାଜନୈତିକ ସ୍ୱାଧୀନତା ପାଇବାମାତ୍ରେ ଏହି ଦାରିଦ୍ର୍ୟ ସମସ୍ୟା ସମାଧାନ ଲାଗି ଚେଷ୍ଟା କରିବା ପ୍ରଥମ କାର୍ଯ୍ୟ ହେବ ବୋଲି ମୁଁ ଅନୁଭବ କରୁଥିଲି । ମାତ୍ର ମଧ୍ୟବିତ୍ତ ଶ୍ରେଣୀଙ୍କ ପ୍ରାଧାନ୍ୟ ଯୋଗୁଁ ରାଜନୈତିକ ସ୍ୱାଧୀନତାହିଁ ଏକମାତ୍ର ପନ୍ଥା ବୋଲି ମୋର ମନେ ହେଉଥିଲା । ଗାନ୍ଧିଜୀଙ୍କର ଚମ୍ପାରଣ (ବିହାର) ଏବଂ କଏରା (ଗୁଜରାଟ)ରେ କୃଷକ ଆନ୍ଦୋଳନ ଦ୍ୱାରା ମୁଁ କୃଷକ ସମସ୍ୟା ପ୍ରତି ଟିକିଏ ଅଧିକ ଦୃଷ୍ଟି ଦେଲି । ମାତ୍ର ୧୯୨୦ର ରାଜନୈତିକ ଆବହାୱା ଏବଂ ଆସେମ୍ବ୍ଲି ଅସହଯୋଗ ଆନ୍ଦୋଳନ ସମ୍ପର୍କରେ ମୋର ମନ ଭରି ରହିଥିଲା ।

ଠିକ ଏହି ସମୟରେ ଏକ ନୂତନ ବିଷୟ ପ୍ରତି ମୋର ଆଗ୍ରହ ଜାତ ହେଲା ଏବଂ ପରେ ଏହା ମୋ ଜୀବନରେ ଏକ ପ୍ରଧାନ ଅଂଶରୂପେ ରହିଲା । ମୋର ନିଜ ଇଚ୍ଛା ବ୍ୟତିରେକେ ମୁଁ କୃଷକମାନଙ୍କ ସହିତ ହଠାତ୍ ସମ୍ପର୍କରେ ଆସିଲି—ଏହା ଏକ ଅଦ୍ଭୁତ ପ୍ରକାରରେ ହୋଇଥିଲା ।

ମୋର ମା ଏବଂ କମଳା (ମୋ ସ୍ତ୍ରୀ) ଉଭୟେ ଅସୁସ୍ଥ ଥିଲେ ଏବଂ ୧୯୨୦ ମସିହା ମେ ମାସ ପ୍ରଥମ ଭାଗରେ ମୁଁ ସେମାନଙ୍କୁ ମସୋରିକୁ ନେଇଗଲି । ମୋ ପିତା ସେତେବେଳେ ଗୋଟିଏ ବଡ଼ ରାଜା ମକଦ୍ଦମାରେ ବ୍ୟସ୍ତ ଥିଲେ, ସେଥିରେ ସେ ସି. ଆର. ଦାସଙ୍କୁ ବିରୋଧ କରୁଥିଲେ । ଆମେ ମସୋରୀରେ ସାଭୟ ହୋଟେଲରେ ରହିଲୁଁ । ସେ ସମୟରେ ଆଫଗାନ ଓ ବ୍ରିଟିଶ ପ୍ରତିନିଧିଙ୍କ ମଧ୍ୟରେ ଶାନ୍ତି କଥାବାର୍ତ୍ତା ମସୋରୀଠାରେ ଚାଲିଥାଏ (ଏହା ୧୯୧୯ ମସିହା ଆଫଗାନ ଯୁଦ୍ଧ ପରେ, ଯେତେବେଳେ ଅମାନୁଲ୍ଲା ଗାଦିନସିନ୍ ହୋଇଥିଲେ ସେହି ସମୟର) ଏବଂ ଆଫଗାନ ପ୍ରତିନିଧିମାନେ ସାଭୟ ହୋଟେଲରେ ଥାଆନ୍ତି । ସେମାନେ ନିଜେ ଚୁପ୍ ଚାପ ରହୁଥିଲେ, ଅଲଗା ସେମାନଙ୍କୁ ଖାଇବାକୁ ଦିଆଯାଉଥିଲା ଏବଂ ସାଧାରଣ ସ୍ଥାନକୁ ବାହାରୁ ନ ଥିଲେ ।

ମୁଁ ମଧ୍ୟ ସେମାନଙ୍କ ସମ୍ମୁଖରେ ବିଶେଷଭାବରେ ଆଗ୍ରହ ପ୍ରକାଶ କରି ନ ଥିଲି ଏବଂ ମାସଖ ପର୍ଯ୍ୟନ୍ତ ସେହି ପ୍ରତିନିଧିଙ୍କ ଭିତରୁ ଜଣକୁ ହେଲେ ମୁଁ ଦେଖି ନ ଥିଲି ଏବଂ ଦେଖିଥିଲେ ସୁଦ୍ଧା ଚିହ୍ନିପାରି ନ ଥାନ୍ତି । ହଠାତ୍ ଦିନେ ସନ୍ଧ୍ୟାବେଳେ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଆସି ପହଞ୍ଚିଲେ ଓ ସ୍ଥାନୀୟ ସରକାରଙ୍କଠାରୁ ଏକ ହୁକୁମ ମୋ ନିକଟକୁ ଆଣିଥିଲେ । ସେଥିରେ ଥିଲା ଯେ, ମୁଁ ଆଫଗାନ ଡେଲିଗେସନ ସହିତ କୌଣସି ସମ୍ପର୍କ ରଖିବି ନାହିଁ ବୋଲି ଏକ ଏକରାର ଦେବି । ମୁଁ ଏକମାସ ପର୍ଯ୍ୟନ୍ତ ସେଠାରେ ରହି ସୁଦ୍ଧା ଥରେ ହେଲେ ସେମାନଙ୍କ ସହିତ ସାକ୍ଷାତ୍ କରି ନ ଥିବା ସ୍ଥଳେ ଏହା ମୋତେ ଅତି ଅଦ୍ଭୁତ ଜଣାଗଲା ଏବଂ ସେମାନଙ୍କ ସହିତ ମୋର ସାକ୍ଷାତ କରିବାର ସମ୍ଭାବନା ମଧ୍ୟ କମ୍ ଥିଲା । ଡେଲିଗେସନକୁ ପୁଲିସ ଖୁବ୍ ଜଗୁଥିଲେ ଏବଂ ଗୁପ୍ତଚର ପୁଲିସ ବି ଅନେକ ଥିଲେ । ମୋ ସହିତ ସମ୍ପର୍କ ନାହିଁ ବୋଲି ସୁପରିଣ୍ଟେଣ୍ଡେଣ୍ଟ ନିଶ୍ଚୟ ଆଗରୁ ଜାଣିଥିବେ । ମାତ୍ର କୌଣସି ଏକରାର ଦେବା ମୋର କଳ୍ପନା ବାହାରେ ଏବଂ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ତାହା ଶୁଣାଇଦେଲି । ସେ ମୋତେ ନିଜ ମାଜିଷ୍ଟ୍ରେଟ ଓ ଡେରାଡୁନର ସୁପରିଣ୍ଟେଣ୍ଡେଣ୍ଟଙ୍କ ସହ ସାକ୍ଷାତ କରିବାକୁ କହିଲେ ଏବଂ ମୁଁ ତାହା କଲି । ମୁଁ କୌଣସି ଏକରାର ଲେଖିଦେବାକୁ ରାଜି ନ ହେବାରୁ ମୋ ଉପରେ ଏକ ବହିଷ୍କାର ଆଦେଶ ଜାରି କରାଗଲା ଏବଂ ୨୪ ଘଣ୍ଟା ଭିତରେ ଡେରାଡୁନ ଜିଲ୍ଲା ଛାଡ଼ି ଯିବାକୁ ମୋତେ ଆଦେଶ ହେଲା । ତାହାର ଅର୍ଥ କେତେକ ଘଣ୍ଟା ଭିତରେ ମସୌରି ଛାଡ଼ିବାକୁ ହେବ । ମୋର ସ୍ତ୍ରୀ ଓ ମା ଦୁହେଁ ସେତେବେଳେ ବେମାର ଥିଲେ । ସେମାନଙ୍କୁ ଛାଡ଼ି ଆସିବାକୁ ମୋର ଇଚ୍ଛା ନ ଥିଲା; ମାତ୍ର ମୁଁ ହୁକୁମ ଅମାନ୍ୟ କରିବାକୁ ମଧ୍ୟ ଠିକ୍ ମନେ କଲି ନାହିଁ । ସେତେବେଳେ କୌଣସି ଆଇନ ଅମାନ୍ୟ ହୋଇ ନ ଥିଲା । ତେଣୁ ମୁଁ ମସୌରି ଛାଡ଼ିଲି ।

ସେତେବେଳେ ସାର ହାର୍କୋର୍ଟ ବଟଲର ଯୁକ୍ତ ପ୍ରଦେଶର ଗଭର୍ଣ୍ଣର ଥିଲେ । ମୋ ପିତା ତାଙ୍କୁ ଭଲରୂପେ ଜାଣିଥିଲେ । ଏପରି ଏକ-

ନବୋଧ ଆଦେଶ ସେ କେବେହେଁ ଦେଇ ନ ଥିବେ ବୋଲି ଲେଖି ବନ୍ଧ ସ୍ଥବରେ ଏକ ଚିଠି ସେ ତାଙ୍କ ନିକଟକୁ ପଠାଇଲେ । ଯିମକାର କୌଣସି ଉଚ୍ଚାମସ୍ତିଷ୍କ ଅଫିସର ଏଥିଲାଗି ଦାୟୀ ହୋଇଥିବ । ସାର ହାର୍କୋର୍ଟ ଲେଖିଲେ ଯେ, ସେ ହୁକୁମ୍ଟି କିଛି ଅଧିକାରକ ନ ଥିଲା ଏବଂ ଜହ୍ଵରଲାଲ ତାକୁ ମାନିଥିଲେ ତାଙ୍କ ମର୍ଯ୍ୟାଦା କିଛି ହାନି ହୋଇ ନ ଥାନ୍ତା । ଉତ୍ତରରେ ପିତା ସେଥିରେ ଏକମତ ହେଲେ ନାହିଁ ଏବଂ ଲେଖିଲେ ଯେ, ସରକାରରେ ଆଦେଶ ଅମାନ୍ୟ କରିବାକୁ ଇଚ୍ଛା ନ ଥିଲେ ସୁଦ୍ଧା ଯଦି ମୋର ମାଆ ଓ ସ୍ତ୍ରୀଙ୍କ ଅସୁସ୍ଥ ଶରୀର ଯୋଗୁଁ ମୋର ସେଠାକୁ ଯିବା ଦରକାର ପଡ଼େ, ତେବେ ଆଦେଶ ଥାଉ ବା ନ ଥାଉ ମୁଁ ନିଶ୍ଚୟ ଯିବି । ଏପରି ଘଟଣା ପଡ଼ିଥିଲା ଯେ, ମୋ ମାଆଙ୍କ ଦେହ ବେଶି ଖରାପ ହେଲା ଏବଂ ମୁଁ ଓ ପିତା ଦୁହେଁ ମସୋରୀ ଯାତ୍ରା କଲୁ । ଠିକ୍ ଯିବାପୂର୍ବରୁ ସେ ଆଦେଶ ପ୍ରତ୍ୟାହାର ହୋଇଛି ବୋଲି ଆମେ ତାରଦ୍ଵାରା ସମ୍ବାଦ ପାଇଲୁ ।

ତତ୍ପରଦିନ ସକାଳେ ମୁଁ ମସୋରୀରେ ପହଞ୍ଚି ଦେଖିଲି ଯେ, ହୋଟେଲରେ ଆମେ ଥିବା ଘର ଅଗଣାରେ ମୋର ଛୋଟ ଝିଅଟିକୁ କୋଳରେ ଧରି ଜଣେ 'ଆଫଗାନ ଠିଆ' ହୋଇଛନ୍ତି । ମୁଁ ଖବର ନେଲି ଯେ, ସେ ଜଣେ ମନ୍ତ୍ରୀ ଓ ଆଫଗାନ ଡେଲିଗେସନ୍‌ର ସଭ୍ୟ । ମୋର ବହିଷ୍କାର ହେବା ସଙ୍ଗେ ସଙ୍ଗେ ଆଫଗାନ୍‌ମାନେ ସମ୍ବାଦପତ୍ରରୁ ସେ ସମ୍ବାଦ ପଢ଼ିଲେ ଏବଂ ସେମାନେ ଏଥିରେ ଏପରି ମୁଗ୍‌ଧ ହୋଇଗଲେ ଯେ, ଆଫଗାନ୍ ଡେଲିଗେସନର ସଭାପତି ପ୍ରତିଦିନ ମୋ ମାଆଙ୍କ ନିକଟକୁ ଏକ ଟୋକେଇ ଫଳ ଓ ଫୁଲ ପଠାଇବାକୁ ଲାଗିଲେ ।

ପରେ ପିତା ଓ ମୁଁ ଆଫଗାନ ଡେଲିଗେସନର ଜଣେ ଦୁଇ ଜଣ ସଭ୍ୟଙ୍କ ସହିତ ସାକ୍ଷାତ କଲୁ, ଏବଂ ଆଫଗାନିସ୍ଥାନ ଯିବାଲାଗି ସେମାନେ ଆମକୁ ନିମନ୍ତ୍ରଣ ଦେଲେ । ମାତ୍ର ଦୁଃଖର କଥା, ଆମେ

ଏହା ରକ୍ଷା କରିବାଲାଗି ସମସ୍ତ ଚାହାନ୍ତି ନାହିଁ ଏବଂ ବର୍ତ୍ତମାନ ଆଫଗାନି-ସ୍ଥାନର ନୂଆ ସରକାର ହେବାପରେ ସେ ନିମନ୍ତ୍ରଣ ଆମ ପ୍ରତି ପ୍ରଯୁଜ୍ୟ ଅଛି କି ନା, ମୁଁ ଜାଣେ ନା ।

ବହିଷ୍କାର ଆଦେଶ ହେତୁ ମୋତେ ପ୍ରାୟ ଦୁଇ ସପ୍ତାହ ଏଲ୍ଲାହାବାଦରେ କଟାଇବାକୁ ହେଲା ଏବଂ ଏହି ସମୟ ଭିତରେ କୃଷକ ଆନ୍ଦୋଳନ ସହିତ ମୁଁ ସଂପୃକ୍ତ ହେଲି । ଏହି ସମ୍ପର୍କ ପରେ ବଢ଼ିବାକୁ ଲାଗିଲା ଏବଂ ଅନେକ ପରିମାଣରେ ମୋର ମାନସିକ ଚିନ୍ତାରେ ପ୍ରଭାବ ପକାଇଲା । ମୁଁ ବେଳେ ବେଳେ ମନେ କରେ ମୋ ଉପରେ ଯଦି ବହିଷ୍କାର ଆଦେଶ ନ ହୋଇଥାନ୍ତା ଏବଂ କୌଣସି କାର୍ଯ୍ୟ ନ ଥାଇ ମୋତେ ସେ କେତେଦିନ ଏଲ୍ଲାହାବାଦରେ କଟାଇବାକୁ ପଡ଼ି ନ ଥାନ୍ତା, ତେବେ ଅବସ୍ଥା କଣ ହୋଇଥାନ୍ତା । ଖୁବ୍ ସମ୍ଭବତଃ ଶୀଘ୍ର ବା ପରେ ମୁଁ କୃଷକମାନଙ୍କ ନିକଟକୁ ଯାଇଥାନ୍ତି । ମାତ୍ର ତାହା ଅନ୍ୟ ରକମର ହୋଇଥାନ୍ତା ଓ ମୋ ଉପରେ ମାନସିକ ପ୍ରଭାବ ଅନ୍ୟ ପ୍ରକାର ହୋଇ ଥାଆନ୍ତା ।

୧୯୨୦ ମସିହା ଜୁନ ମାସ ପ୍ରଥମ ଭାଗରେ [ ମୋର ଯେତେଦୂର ମନେ ଅଛି ] ପ୍ରତାପଗଡ଼ ଜିଲାର ମଫସଲରୁ ପ୍ରାୟ ୨୦୦ କୃଷକ ସେମାନଙ୍କର ଦୁଃଖଜନକ ଅବସ୍ଥା ରାଜନୈତିକ ନେତାମାନଙ୍କୁ ଜଣାଇବା ନିମନ୍ତେ ପ୍ରାୟ ୫୦ ମାଇଲ ଚାଲି ଚାଲି ଏଲ୍ଲାହାବାଦ ସହରକୁ ଆସିଥିଲେ । ରାମଚନ୍ଦ୍ର ବୋଲି ଜଣେ ଲୋକ ତାଙ୍କର ନେତା ଥିଲେ—ସେ ସେ ସ୍ଥାନର କୃଷକ ନୁହନ୍ତି । ମୁଁ ଖବର ପାଇଲି ଯେ, ଏହି କୃଷକମାନେ ଯମୁନାର ଏକ ଘାଟରେ ପଡ଼ି ରହିଛନ୍ତି । କେତେକଜଣ ବନ୍ଧୁଙ୍କ ସହ ମୁଁ ସେଠାକୁ ଗଲି । ତାଲୁକଦାର ସେମାନଙ୍କଠାରୁ କରପଦ ବହୁତ ଆଦାୟ କରୁଛି, ଅମାନୁଷିକ ବ୍ୟବହାର କରୁଛି ଏବଂ ସେମାନଙ୍କର ଅବସ୍ଥା ଅସହ୍ୟ ହୋଇଗଲାଣି, ସେ ସମ୍ବନ୍ଧରେ ସେମାନେ ଆମକୁ କହିଲେ । ସେମାନେ କହିଲେ ଯେ, ସେମାନେ

ଏଲାହାବାଦ ଆସିବା ଦ୍ୱାରା ତାଲୁକଦାର ତାଙ୍କ ଉପରେ କ୍ରୋଧ କରି ପ୍ରତିଶୋଧ ନେବ । ସେଥିରୁ ରକ୍ଷାକରିବା ପାଇଁ ଏବଂ ଏ ସମ୍ବନ୍ଧରେ ଅନୁସନ୍ଧାନ କରିବା ନିମନ୍ତେ ତାଙ୍କ ସହିତ ଯିବାକୁ ସେମାନେ ଆମକୁ ଅନୁରୋଧ କଲେ । ସେମାନେ ଆମର ମନା ମାନିଲେ ନାହିଁ ଏବଂ ଏକପ୍ରକାର ଯିବାକୁ ବାଧ କଲେ । ଶେଷରେ ଦୁଇ ବା ତିନି ଦିନ ପରେ ମୁଁ ଯିବାଲାଗି ପ୍ରସ୍ତୁତ ହେଲି ।

ସେ ଗ୍ରାମଗୁଡ଼ିକ ରେଲ୍‌ଓ୍ୱେ ଏବଂ ଏପରି କି ପକ୍କା ରାସ୍ତାରୁ ବହୁଦୂରରେ ଏବଂ ମୁଁ ସେଠାରେ ଅନ୍ୟ କେତେକ ବନ୍ଧୁଙ୍କ ସହ ତିନିଦିନ କଟାଇଲି । ଆମେ ସେ ଅଞ୍ଚଳରେ ଅପୂର୍ବ ଉତ୍ସାହ ଓ ଉନ୍ମାଦନା ଦେଖିବାକୁ ପାଇଲୁଁ । ଖାଲି କହିବା ମାତ୍ରେ ଅଳ୍ପ ସମୟ ଭିତରେ ବଡ଼ ବଡ଼ ଜନସମାଗମ ହୋଇପାରୁ ଥିଲା । ଏକ ଗ୍ରାମରୁ ଅନ୍ୟ ଗ୍ରାମକୁ ସମ୍ବାଦ ଯାଏ, ସେଥିରୁ ଆଉ ଏକ ଗ୍ରାମ—ଏହିପରି ଭାବରେ ଖବର ବ୍ୟାପିଯାଏ ଏବଂ ଶେଷରେ ଦେଖାଯାଏ, ଗ୍ରାମକୁ ଗ୍ରାମ ଖାଲି କରି ଚାରିଆଡ଼ୁ ଦଳ ଦଳ ହୋଇ ସ୍ତ୍ରୀ ପୁରୁଷ ସଭାସ୍ଥଳକୁ ଚାଲିଛନ୍ତି । କିମ୍ବା ଆହୁରି ଶୀଘ୍ର କରିବାକୁ ହେଲେ ସୀତାରାମ - ସୀତା ରା ଆ ଆ ଆ ମ—ବୋଲି ଚିତ୍କାରରେ ଚାରିଆଡ଼ ଭରିଯିବ । ଅନ୍ୟ ଗ୍ରାମବାସୀମାନେ ମଧ୍ୟ ସେହିପରି ଚିତ୍କାର କରିବେ— ତାହାପରେ ଗ୍ରାମର ଲୋକେ ଯେତେ ଶୀଘ୍ର ଦୌଡ଼ିପାରନ୍ତି ସ୍ରୋତ ପରି ମାଡ଼ି ଆସିବେ । ସେମାନେ ଛିଣ୍ଡା କପଡ଼ା ପିନ୍ଧି ଥାନ୍ତି । ମାତ୍ର ସେମାନଙ୍କ ମୁଖ ଉତ୍ସାହରେ ପୂର୍ଣ୍ଣ ହୋଇଥାଏ, ଚକ୍ଷୁର ଜ୍ୟୋତି ସ୍ଫୁଟି ଉଠୁଥାଏ ଏବଂ ସେମାନେ ଯେପରି ଏପରି କିଛି ଏକ ଅଦ୍ଭୁତ କାର୍ଯ୍ୟ ଆଶା କରୁଥାନ୍ତି, ଯେଉଁଥିରେ ସେମାନଙ୍କର ଦୁଃଖ ନାଶ ହୋଇଯିବ ।

ସେମାନେ ଆମମାନଙ୍କୁ ଖୁବ୍ ଆଦର କଲେ ଏବଂ ଅତି ଆଶାପୂର୍ଣ୍ଣ ଓ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଆମପ୍ରତି ଚାହିଁ ରହିଲେ । ସତେ କି ଆମେ-ଶୁଭ ସମ୍ବାଦ ନେଇ ଆସିଛୁଁ ଏବଂ ପ୍ରତ୍ୟାଶିତ ସ୍ୱର୍ଗର ଆମେ ସତେ କି

ହୁଏ । ସେମାନଙ୍କ ଦୁର୍ଦ୍ଦଶା ଓ ଅତ୍ୟଧିକ ଆଦର ଦେଖି ମୋର ହୃଦୟ ଲଜ୍ଜା ଓ ଦୁଃଖଭରା ହୋଇଗଲା । ମୋର ନିଜର ସ୍ୱଚ୍ଛନ୍ଦ ଜୀବନ ଏବଂ ସହରର ଶ୍ରେଷ୍ଠ ରାଜନୀତିରେ ପଡ଼ି ଆମେ ଭାରତର ଏହି ଅର୍ଦ୍ଧନଗ୍ନ ନରନାରୀଙ୍କୁ ଯେ ଭୁଲିଯାଉ, ଏକଥା ଭାବି ମୋର ଲଜ୍ଜା ହେଲା ଏବଂ ଭାରତର ଅବନତି ଏବଂ ଦାରିଦ୍ର୍ୟ କଥା ଭାବି ମୋର ଦୁଃଖ ହେଲା । ନଗ୍ନ କ୍ଷୁଧିତ ନିଷ୍ପେଷିତ ଏବଂ ଅତ୍ୟନ୍ତ ଦୁର୍ଦ୍ଦଶାଗ୍ରସ୍ତ ଭାରତର ଏକ ନୂତନ ଚିତ୍ର ମୋ ଆଖି ଆଗରେ ନାଚି ଉଠିଲା । ଆମେମାନେ ଦୂରର ସହରରୁ ସେଠାକୁ କ୍ଷଣକାଳ ଲାଗି ଯାଇଥିଲୁ, ଅଥଚ ଆମପ୍ରତି ସେମାନଙ୍କର ବିଶ୍ୱାସ ଦେଖି ମୁଁ ଚକିତ ଓ ଚିନ୍ତିତ ହୋଇଗଲି ଏବଂ ମୋ ଉପରେ ପଡ଼ିଥିବା ଦାୟିତ୍ୱ କଥା ଭାବି ଆଶଙ୍କିତ ବି ହେଲି ।

ମୁଁ ସେମାନଙ୍କର ଅଶେଷ ଦୁର୍ଦ୍ଦଶା କାହାଣୀ ଶୁଣିଲି—ସେମାନଙ୍କର ଅସହ୍ୟନୀୟ ଓ କ୍ରମବର୍ଦ୍ଧିଷ୍ଣୁ କର ବୋଝ, ବେ-ଆଇନ ପାଉଣା, ମାଟିକୁଟୀର ଓ ଜମିରୁ ଉଚ୍ଛେଦ, ପ୍ରହାର, ଚାରିଆଡ଼େ ଶାଗୁଣା ପରି ଜମିଦାର, ଗୁମାସ୍ତା, ମହାଜନ ଓ ପୋଲିସ ପରିବେଷ୍ଟିତ, ସାରାଦିନ ଅଜସ୍ର ପରିଶ୍ରମ କରି ଯାହା ଉପାର୍ଜ୍ଜନ କରନ୍ତି, ତାହା ସେମାନଙ୍କ ପାଖକୁ ଆସେ ନାହିଁ, ତାର ପୁରସ୍କାର ରୂପେ ସେମାନେ ଗୋଇଠାମାଡ଼ ଓ ଗାଳି ଖାଆନ୍ତି ଏବଂ ଭୋକ ଉପାସରେ ଦିନ କାଟନ୍ତି । ସେଠି ଉପସ୍ଥିତ ଥିବା ଲୋକଙ୍କ ଭିତରୁ ଅଧିକାଂଶ ଭୂମିଶୂନ୍ୟ ଲୋକ— ଜମିଦାର ସେମାନଙ୍କୁ ଜମିରୁ ଉଚ୍ଛେଦ କରିଥିଲେ । ସେମାନଙ୍କର ମୁଣ୍ଡ ଗୁଞ୍ଜିବାକୁ ଘର ବା ଜମି ନ ଥାଏ । ତାଙ୍କର ଜମି ଖୁବ ଉର୍ବର ଥିଲା । ମାତ୍ର କରଭାର ଅତ୍ୟନ୍ତ ବେଶି, ଜମିଖଣ୍ଡସବୁ ଅତି ଛୋଟ ଏବଂ ସେଥିରେ ପୁଣି ଅନେକ ଲୋକଙ୍କୁ ତାହା ଉପରେ ନିର୍ଭର କରିବାକୁ ପଡ଼ୁଥିଲା । ଲୋକମାନଙ୍କର ଜମିପ୍ରତି ଏପରି ମମତା ଦେଖି ଜମିଦାର ଆଇନ ଅନୁସାରେ ନିର୍ଦ୍ଦିଷ୍ଟ ହାର ଛଡ଼ା ଆହୁରି ଅଧିକ କର ବୃଦ୍ଧି କରିବା ନିମନ୍ତେ ସମର୍ଥ ନ ହୋଇ ବହୁତ ବେଆଇନ ପାଉଣା ଅସୁଲ କରୁଥିଲେ ।

ପ୍ରଜା ଅନ୍ୟ ଉପାୟ ନ ଦେଖି ମହାଜନଠାରୁ ଟଙ୍କା କରଜ କରି ସେ ଯାଉଣା ଦେଉଥିଲେ ଏବଂ ଶେଷରେ ସେ ଋଣ ସୁଝି ନ ପାରି ଜମି ଛାଡ଼ି ଦେଇ ନ ପାରିବାରୁ ଜମିରୁ ବିତାଡ଼ିତ ହେଉଥିଲେ ଏବଂ ସର୍ବସ୍ୱ ହରାଉଥିଲେ ।

ଅନେକ କାଳରୁ ଏପରି ହୋଇ ଆସୁଥିଲା ଏବଂ ଅନେକ କୃଷକମାନେ କ୍ରମେ ନିଃସ୍ୱ ହୋଇ ଯାଇଛନ୍ତି । ମାତ୍ର ହଠାତ୍ କି କାରଣରୁ ଏହା ଏ ସୀମାରେ ପହଞ୍ଚିଲା ଏବଂ ମଫସଲର ଲୋକେ ଜାଗି ଉଠିଲେ ? ଅବଶ୍ୟ ଅର୍ଥନୈତିକ ଅବସ୍ଥା ହେତୁ । ସମଗ୍ର ଯୁକ୍ତପ୍ରଦେଶରେ ଏ ପ୍ରକାର ଅବସ୍ଥା ଥିଲା, ଅଥଚ ୧୯୨୦ ଓ ୧୯୨୧ରେ ଯେଉଁ ବିଦ୍ରୋହ ହେଲା, ତାହା କେବଳ ପ୍ରତାପଗଡ଼, ରାୟବରେଲି ଓ ଫୟଜାବାଦ ଏହି ତିନୋଟି ଜିଲ୍ଲାରେ ଦେଖାଗଲା । ରାମଚନ୍ଦ୍ର ବୋଲି ଜଣେ ଅଦ୍ଭୁତ ଲୋକର ନେତୃତ୍ୱ ଯୋଗୁଁ ଏହା ସମ୍ଭବ ହୋଇଥିଲା । ଲୋକେ ତାଙ୍କୁ ବାବା ରାମଚନ୍ଦ୍ର ବୋଲି ଡାକୁଥିଲେ ।

ରାମଚନ୍ଦ୍ର ପଶ୍ଚିମ ଭାରତର ମହାରାଷ୍ଟ୍ର ପ୍ରଦେଶର ଲୋକ ଏବଂ ଚୁକ୍ତିବଦ୍ଧ ଶ୍ରମିକ ଭାବରେ ସେ ଫିଜିକୁ ଯାଇଥିଲେ । ସେଠାରୁ ଫେରି ଆସିବା ପରେ ସେ କ୍ରମେ ଯୁକ୍ତପ୍ରଦେଶର ଏହି ଜିଲ୍ଲାମାନଙ୍କୁ ଚାଲି ଆସିଲେ ଏବଂ ତୁଳସୀଦାସ ରାମାୟଣ ପଢ଼ି ଚାରିଆଡ଼େ ବୁଲିଲେ ଏବଂ କୃଷକଙ୍କ ଆପତ୍ତି ଶୁଣୁଥିଲେ । ତାଙ୍କର କିଛି ଶିକ୍ଷା ନ ଥିଲା ଏବଂ ନିଜର ସୁବିଧା ସକାଶେ ସେ ଅନେକ ପରିମାଣରେ ସେ କୃଷକଙ୍କୁ ଶୋଷଣ କରୁଥିଲେ । ଏହା ସତ୍ତ୍ୱେ ତାଙ୍କର ଅଦ୍ଭୁତ ସଙ୍ଗଠନ ଶକ୍ତି ଥିଲା । କୃଷକମାନେ ଏକାଠି ସଭାକରି ତାଙ୍କର ଅସୁବିଧା ଆଲୋଚନା କରିବାକୁ ଏବଂ ଏହିରୂପେ କ୍ରମେ ସେମାନଙ୍କର ଭିତରେ ଏକତାର ଭାବ ଆଣିବା ନିମନ୍ତେ ସେମାନଙ୍କୁ ଶିଖାଇଲେ । ବେଳେ ବେଳେ ପ୍ରକାଣ୍ଡ ସାଧାରଣ ସଭା ହେଉଥିଲା ଏବଂ ଏଥିରେ ଲୋକଙ୍କ ଭିତରେ ଅଦ୍ଭୁତ ଶକ୍ତି ଅଛି ବୋଲି ବୋଧ କରୁଥିଲେ । ସୀତାରାମ କଥାଟା ଅନେକ ପୁରୁଣା ରହିଛି, ମାତ୍ର ଏହାକୁ

ସେ ଏକପ୍ରକାର ମୁକ୍ତଧ୍ୱନି କରିପାରିଲେ ଏବଂ କୌଣସି ଜରୁରୀ କାର୍ଯ୍ୟ ଓ କୃଷକ ଗ୍ରାମ ସହିତ ସମ୍ବନ୍ଧ ସ୍ଥାପନ ନିମନ୍ତେ ସେ ଏହାକୁ ଏକ ସଙ୍କେତ ଭାବେ ପ୍ରବୃତ୍ତ କଲେ । ଫୟଜାବାଦ, ପ୍ରତାପଗଡ଼ ଓ ରାୟବରେଲି ଜିଲ୍ଲାରେ ରାମଚନ୍ଦ୍ର ଓ ସୀତାଙ୍କର ପ୍ରାଚୀନ ବହୁଳ ପ୍ରଚଳିତ—ଏହି ଉପକଥା ଅଯୋଧ୍ୟା ରାଜ୍ୟର ଏକ ଅଂଶ ଥିଲା—ତୁଳସୀଦାସଙ୍କ ରାମାୟଣ ଏ ଅଞ୍ଚଳ ଲୋକଙ୍କ ମଧ୍ୟରେ ଆଦୃତ । ଏହି ବହିରୁ ଅନେକ ଲୋକ ଶହ ଶହ ପଦ ମୁଖସ୍ଥ କରିଛନ୍ତି । ରାମଚନ୍ଦ୍ର ଏହି ବହି ଆବୃତ୍ତି କରୁଥିଲେ ଏବଂ ଏଥିରୁ ଅନେକ ସମୟରେ ସେ ଉଦ୍ଧାର କରୁଥିଲେ । କୃଷକମାନଙ୍କୁ ସଙ୍ଘବଦ୍ଧ କରି ସାରିବା ପରେ ସେ ସେମାନଙ୍କୁ ଅନେକ ପ୍ରତିଶ୍ରୁତି ଦେଉଥିଲେ—ସେଗୁଡ଼ିକ ଅନେକ ସମୟରେ ଅସ୍ପଷ୍ଟ ଓ ନିରର୍ଥକ ହେଉଥିଲେ ସୁଦ୍ଧା ଲୋକଙ୍କ ମନରେ ଆଶା ଜାଗ୍ରତ ହୋଇଥିଲା । ତାଙ୍କର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ନ ଥିଲା ଏବଂ ଲୋକେ ଅତ୍ୟଧିକ ଉତ୍ତେଜିତ ହୋଇଗଲେ ସେ ଦାୟିତ୍ୱ ଅନ୍ୟମାନଙ୍କ ଉପରେ ଲଦି ଦେଉଥିଲେ । ଏଥିପାଇଁ ଆନ୍ଦୋଳନରେ ଆଗ୍ରହ ଜନ୍ମାଇବା ପାଇଁ କେତେକ କୃଷକଙ୍କୁ ସାଙ୍ଗରେ ନେଇ ସେ ଏଲାହାବାଦ ଆସିଥିଲେ ।

ଆଉରି ଏକବର୍ଷ ପର୍ଯ୍ୟନ୍ତ ରାମଚନ୍ଦ୍ର କୃଷକ ଆନ୍ଦୋଳନରେ ଅଗ୍ରଣୀ ହୋଇ ରହିଲେ ଏବଂ ଦୁଇ ତିନି ଥର ଜେଲ ବରଣ କଲେ । ମାତ୍ର ପରେ ଅତ୍ୟନ୍ତ ଦାୟିତ୍ୱହୀନ ଓ ଅବିଶ୍ୱାସୀ ଲୋକବୋଲି ପ୍ରତିପନ୍ନ ହେଲେ ।

ବିଶେଷତଃ କୃଷକ ଆନ୍ଦୋଳନ ନିମନ୍ତେ ଅଯୋଧ ଏକ ଭଲ ଅଞ୍ଚଳ । ଏଠାରେ ତାଲୁକଦାରୀ ପ୍ରଥା ପ୍ରଚଳିତ ଅଛି—ତାଲୁକଦାରମାନେ ନିଜକୁ "ଅଯୋଧର ବାରନ" ବୋଲି ପରିଚୟ ଦିଅନ୍ତି—ଅତି ଉତ୍କଟ ଧରଣର ଜମିଦାରୀ ପ୍ରଥା ଏଠାରେ ପ୍ରଚଳିତ । ଜମିଦାରମାନଙ୍କର ବେଆଇନ ପାଉଣା ଅସହ୍ୟ ହୋଇ ପଡ଼ିଥିଲା ଏବଂ ଭୂମିଶୂନ୍ୟ ଶ୍ରମିକଙ୍କ ସଂଖ୍ୟା ବୃଦ୍ଧି ପାଉଥିଲା । ମୋଟାମୋଟି ସେଠାରେ ଏକ ଶ୍ରେଣୀର କୃଷକ ଥିଲେ ଏବଂ ଏଥିଯୋଗୁଁ ସଙ୍ଘବଦ୍ଧ କାର୍ଯ୍ୟ ହେବାରେ ସୁବିଧା ହେଲା ।

ଭାରତକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ—ଜମିଦାରୀ ଅଞ୍ଚଳ, ଏଠାରେ ବଡ ବଡ଼ ଜମିଦାରଙ୍କ ପ୍ରାଦୁର୍ଭାବ ଏବଂ କୃଷକ ଭୂମଧିକାରୀ ହୋଇଥିବା ଅଞ୍ଚଳ । ମାତ୍ର ଏହାର ବ୍ୟତିକ୍ରମ ବି ରହିଛି । ବଙ୍ଗଳା, ବିହାର ଏବଂ ମୁକ୍ତ ପ୍ରଦେଶରେ ଜମିଦାରୀ ପ୍ରଥା ପ୍ରଚଳିତ । ଯେଉଁଠାରେ କୃଷକ ଜମିର ମାଲିକ, ସେଠାରେ କୃଷକଙ୍କ ଅବସ୍ଥା ଟିକିଏ ଭଲ; ମାତ୍ର ବେଳେବେଳେ ତାହା ମଧ୍ୟ ବଡ଼ ଦୁଃଖଦାୟକ । ପଞ୍ଜାବ ଓ ଗୁଜରାଟର [ଯେଉଁଠାରେ କୃଷକମାନେ ଜମିର ମାଲିକ] କୃଷକଙ୍କ ଅବସ୍ଥା ଜମିଦାରୀ ଅଞ୍ଚଳର କୃଷକଙ୍କଠାରୁ ଯଥେଷ୍ଟ ପରିମାଣରେ ଭଲ । ଜମିଦାରୀ ଅଞ୍ଚଳର ଅନେକାଂଶରେ ପୁଣି ଆଉ କେତେ ପ୍ରଥା ରହିଛି । ଦଖଲସ୍ୱତ୍ୱ ବିଶିଷ୍ଟ ରୟତ, ଦଖଲ ସ୍ୱତ୍ୱ ନ ଥିବା ରୟତ ଏବଂ ଭାଗ ଚାଷୀ ଇତ୍ୟାଦି । ବିଭିନ୍ନ ଶ୍ରେଣୀର କୃଷକଙ୍କର ଅନେକ ସ୍ଥାନରେ ପରସ୍ପର ବିରୋଧୀ ସ୍ୱାର୍ଥ ଦେଖାଯାଏ; ସେହି ହେତୁ ସେମାନଙ୍କ ମଧ୍ୟରେ କୌଣସି ମିଳିତ ଆନ୍ଦୋଳନ ସମ୍ଭବପର ହୁଏ ନାହିଁ । ମାତ୍ର ଯାହା ହେଉ ଅଉଧରେ ୧୯୨୦ ମସିହାରେ କୌଣସି ଦଖଲସ୍ୱତ୍ୱ ବିଶିଷ୍ଟ ରୟତ ବା ଜୀବନସାରା ଜମି ଭୋଗ କରିପାରିବା ରୟତ ନ ଥିଲେ । ସେଠାରେ ଜମିରେ ରୟତ ଅଳ୍ପ ସମୟ ଲାଗି ମାଲିକ ହେଉଥିଲେ ଏବଂ ଅନ୍ୟ କେହି ବେଶୀ ଦେଲେ ସେମାନଙ୍କୁ ତାଙ୍କ ଜମିରୁ ଉଚ୍ଛେଦ କରାଯାଉଥିଲା । ସେଠାରେ ପ୍ରଧାନତଃ ଏହି ଶ୍ରେଣୀର ରୟତ ଥିବାରୁ ସଙ୍ଘବଦ୍ଧ କାର୍ଯ୍ୟ ପାଇଁ ସଂଗଠନ କରିବା ସହଜ ଥିଲା ।

ଅଳ୍ପ ସମୟ ଲାଗି ମଧ୍ୟ ଯେଉଁ ଚୁକ୍ତି ହେଉଥିଲା, ତାହା ବି ଠିକ୍ ନ ଥିଲା । ଜମିଦାର ଖଜଣା ନେଇ ପ୍ରାୟ ରସିଦ ଦେଉ ନ ଥିଲେ ଏବଂ ଖଜଣା ନ ଦେଇପାରିବା ବାହାନା କରି ସେ ରୟତଙ୍କୁ ତା' ଜମିରୁ ଉଚ୍ଛେଦ କରି ପାରୁଥିଲେ । ଖଜଣା ଦେଇଛି ବୋଲି ରୟତ ପ୍ରମାଣ ଦେଇପାରୁ ନ ଥିଲା । ଖଜଣା ବ୍ୟତୀତ ଅତ୍ୟଧିକ ବେଆଇନ ପାଉଣା ଥିଲା । ମୁଁ ଶୁଣିଲି ଯେ, ଗୋଟିଏ ତାଲୁକାରେ ଏପରି ୫୦ ପ୍ରକାର ବେଆଇନ ପାଉଣା ଆଦାୟ ହେଉଥିଲା । ଏହା ହୁଏ ତ

ଅତିରଂଜିତ ହୋଇଥାଇ ପାରେ । ମାତ୍ର ତାଲୁକଦାରମାନେ ଯେ ପ୍ରତ୍ୟେକ ବିଶେଷ ଖର୍ଚ୍ଚ ସକାଶେ ପ୍ରଜାଙ୍କଠାରୁ କର ଅସୁଲ କରନ୍ତି, ଏହା ଅତ୍ୟନ୍ତ ଗର୍ହିତ କଥା-ପରିବାରର ବିବାହ ଉତ୍ସବ, ନିଜ ପୁତ୍ରକୁ ବିଦେଶରେ ପଢ଼ାଇବା ଖରଚ, ଗଭର୍ଣ୍ଣରଙ୍କୁ କିମ୍ବା କୌଣସି ଉଚ୍ଚପଦସ୍ଥ କର୍ମଚାରୀଙ୍କ ଭୋଜି, ମଟର ଗାଡ଼ି କିମ୍ବା ହାତୀ ଖର୍ଚ୍ଚ ଲାଗି ପ୍ରଜାଙ୍କଠାରୁ ପାଉଣା ଅସୁଲ ହୁଏ । ଏହି ପାଉଣାର ପୁଣି ଅଲଗା ଅଲଗା ନାମ ଅଛି— ମଟ୍ରାନା (ମଟରଗାଡ଼ି ଖରିଦ ଲାଗି ଟିକସ), ହାଥିଆନା (ହାତୀ ଖରିଦ ଲାଗି ଟିକସ) ଇତ୍ୟାଦି ।

ତେଣୁ ଆଉ ଥରେ ଗୋଟିଏ ବଡ଼ କୃଷକ ଆନ୍ଦୋଳନ ଗଢ଼ି ଉଠିବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ । ମୋତେ ଆଶ୍ଚର୍ଯ୍ୟ ଲାଗିଲା ଯେ କୌଣସି ସହରବାସୀଙ୍କ ବିନା ସାହାଯ୍ୟରେ କିମ୍ବା ରାଜନୀତିକମାନଙ୍କ ବିନା ହସ୍ତକ୍ଷେପରେ ଏହା ଆପଣାଛାଏଁ ଗଢ଼ି ଉଠିଥିଲା । କୃଷକ ଆନ୍ଦୋଳନ କଂଗ୍ରେସଠାରୁ ସମ୍ପୂର୍ଣ୍ଣ ପୃଥକ୍ ଥିଲା ଏବଂ କ୍ରମେ ବଢ଼ୁଥିବା ଅସହଯୋଗ ସହିତ ଏହାର କିଛି ସମ୍ପର୍କ ନ ଥିଲା । ଅଥବା ଦୁଇଟି ଯାକ ବ୍ୟାପକ ଓ ଶକ୍ତିଶାଳୀ ଆନ୍ଦୋଳନ ଏ ମୌଳିକ କାରଣରୁ ହେଲା ବୋଲି କହିବା ବୋଧହୁଏ ଠିକ ହେବ । ଅବଶ୍ୟ ୧୯୧୯ରେ ଗାନ୍ଧିଜୀ ଯେଉଁ ବିରାଟ ହରତାଳ ପାଇଁ ଘୋଷଣା କରିଥିଲେ, ସେଥିରେ କୃଷକମାନେ ଯୋଗ ଦେଇଥିଲେ ଏବଂ କ୍ରମେ ଗାଁ ଲୋକଙ୍କ ଭିତରେ ତାଙ୍କ ନାମ ମନ୍ତ୍ରଶକ୍ତି ହୋଇ ଉଠିଥିଲା ।

ଆମେ ସହରରେ ଯେ ଏହି ବିରାଟ କୃଷକ ଆନ୍ଦୋଳନ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲୁ, ଏହା ମୋତେ ଆହୁରି ଆଶ୍ଚର୍ଯ୍ୟ ଲାଗିଲା । କୌଣସି ସମ୍ବାଦପତ୍ରରେ ଏ ସମ୍ବନ୍ଧରେ ଧାଡ଼ିଏ ବାହାରି ନ ଥିଲା । ସେମାନେ ମଫସଲ ଅଞ୍ଚଳରୁ ସମ୍ବାଦ ନିଅନ୍ତି ନାହିଁ । କିପରି ଆମେ ଜନସାଧାରଣଙ୍କଠାରୁ ଅଲଗା ହୋଇ ରହିଛୁ, ଆମେ କିପରି ସେମାନଙ୍କଠାରୁ ଏକ ଅଲଗା ଦୁନିଆରେ କାର୍ଯ୍ୟ କରୁ, ବାସ କରୁ ଓ ଆନ୍ଦୋଳନ କରୁ, ଏହା ମୁଁ ଉପଲବ୍ଧି କଲି ।

# କୃଷକଙ୍କ ଭିତରେ ଭ୍ରମଣ

ମୁଁ ତିନି ଦିନ ମଫସଲ ଗ୍ରାମରେ କଟାଇ ଏଲାହାବାଦ ଫେରି ଆସିଲି ଏବଂ ପୁଣି ସେଠାକୁ ଗଲି । ଏହି କେତେ ଦିନ ଭିତରେ ଆମେ ଗ୍ରାମ ଗ୍ରାମ ହୋଇ ଅନେକ ଗ୍ରାମରେ ବୁଲିଲୁ, କୃଷକମାନଙ୍କ ସହିତ ଖାଇଲୁ, ତାଙ୍କ ମାଟି କୁଡ଼ିଆରେ ବାସ କଲୁ, ସେମାନଙ୍କ ସହିତ ଅନେକ କଥାବାର୍ତ୍ତା କଲୁ ଏବଂ ବେଳେ ବେଳେ ଛୋଟ ବଡ଼ ସଭାରେ ବକ୍ତୃତା ବି କରିଥିଲୁ । ଆମେ ପ୍ରଥମେ ଏକ ଛୋଟିଆ ମଟରଗାଡ଼ି ନେଇ ଯାଇଥିଲୁ । କୃଷକମାନଙ୍କ ଭିତରେ ଏତେ ଆଗ୍ରହ ହେଲା ଯେ, ସେମାନଙ୍କ ଭିତରୁ ଶହ ଶହ ଲୋକ ରାତାରାତି କାମ କରି ଆମ ଗାଡ଼ି ଗାଁ ଗହଳ ଭିତରକୁ ଯାଇ ପାରିବ ବୋଲି ଅସ୍ଥାୟୀ ରାସ୍ତା ସବୁ ତିଆରି କରି ପକାଇଲେ । ଅନେକ ସମୟରେ ଗାଡ଼ି ଅଟକି ଯାଉଥିଲା, ତାକୁ ଲୋକେ ଆଗ୍ରହରେ ଠେଲି ନେଉଥିଲେ । ମାତ୍ର ଶେଷକୁ ଆମକୁ ମଟର ଗାଡ଼ି ଛାଡ଼ିବାକୁ ପଡ଼ିଲା ଏବଂ ପଦବ୍ରଜରେ ଆମେ ଅନେକ ଯାତ୍ରା କଲୁ । ଆମେ ଯେଉଁ ସ୍ଥାନକୁ ଗଲୁ ଆମ ସହିତ ଲକ୍ଷ୍ନୌରୁ ଜଣେ ଡେପୁଟି କଲେକ୍ଟର, ପୁଲିସ ଓ ଗୁଇନ୍ଦା ପୁଲିସ ଯାଉଥାନ୍ତି । ମୋର ଆଶଙ୍କା ଯେ ଆମେ କ୍ରମାନ୍ୱୟରେ ଏପରି ଯାତ୍ରା କରିବା ଦ୍ୱାରା ସେମାନେ ଖୁବ୍ ହଇରାଣ ହେଲେ, କ୍ଲାନ୍ତ ହୋଇ ପଡ଼ିଲେ ଏବଂ ଆମ ଉପରେ ଓ କୃଷକମାନଙ୍କ ଉପରେ ବିରକ୍ତ ହେଲେ । ଲକ୍ଷ୍ନୌର ଡେପୁଟି କଲେକ୍ଟରଟି ଟିକିଏ ମାଇଚିଆ ଲୋକ ଏବଂ ସେ ତାଙ୍କ ଗୋଡରେ ପାତଳା ଚମଡ଼ାର 'ପାମ୍ପସ୍' ପିନ୍ଧିଥାନ୍ତି । ଆସ୍ତେ ଆସ୍ତେ ବୁଲିବା ନିମନ୍ତେ ବେଳେ ବେଳେ ସେ ଆମକୁ ଅନୁରୋଧ କରୁଥିଲେ ଏବଂ ଶେଷକୁ ଆମ ସହିତ ନ ଯାଇପାରି ସେ ରହିଗଲେ ।

ଜୁନମାସ—ବର୍ଷାର ପୂର୍ବମାସ, ଭୀଷଣ ଗ୍ରୀଷ୍ମ ହେଉଥାଏ । ସୂର୍ଯ୍ୟ କିରଣ ବଡ଼ ପ୍ରଚଣ୍ଡ । ମୋର ଖରାରେ ଯିବା ଅଭ୍ୟାସ ନ ଥିଲା ଏବଂ ମୁଁ ଇଂଲଣ୍ଡରୁ ଫେରିଲା ଦିନୁ ଗ୍ରୀଷ୍ମ କାଳରେ ବରାବର ପାହାଡ଼କୁ ଯାଏ ।

ମାତ୍ର ଏତେବେଳେ ମୁଣ୍ଡରେ ଟୋପି ପିନ୍ଧା ନ ଥାଏ, ଏକ ଛୋଟ ଗାମୁଛା ମୁଣ୍ଡରେ ବାନ୍ଧି ମୁଁ ପ୍ରାୟ ସାରା ଦିନ ଖରାରେ ବୁଲୁଥାଏ । ଅନ୍ୟ ସମୟରେ ମୁଁ ଏପରି ମସ୍ତ ଥିଲି ଯେ ଗରମ କଥା ମୁଁ ଏକଦମ ଭୁଲି ଯାଇଥିଲି ଏବଂ ଏଲାହାବାଦକୁ ଫେରି ଖରାଯୋଗୁଁ ମୋ ଦେହରେ ହୋଇଥିବା କଳାଦାଗ ଦେଖି ମୋ ଦେହ କେତେ ସହୁଛି ମୁଁ ଜାଣିପାରିଲି । ମୁଁ ଅତିଶୟ ଗ୍ରୀଷ୍ମ ସହ୍ୟ କରିପାରିଲି ବୋଲି ଭାବି ଖୁସି ହେଲି ଏବଂ ମୋର ଏଥିପ୍ରତି ଅକାରଣ ଭୟ ଥିଲା । ମୁଁ ଦେଖିଛି ଯେ, ମୁଁ ବିନା ଦ୍ୱିଧାରେ ଅତିଶୟ ଗ୍ରୀଷ୍ମ ଓ ଶୀତ ସହ୍ୟ କରିପାରେ ଏବଂ ଏହା ମୋର ବାହାରେ କାର୍ଯ୍ୟ ଓ ଜେଲ ଭିତରେ ଅନେକ ସାହାଯ୍ୟ କରିଛି । ମୋର ସାଧାରଣ ସୁସ୍ଥତା ଓ ମୁଁ ପ୍ରତିଦିନ କସରତ କରୁଥିବା ଯୋଗୁଁ ଏହା ସମ୍ଭବ ହୋଇଛି । ପ୍ରତିଦିନ ବ୍ୟାୟାମ କରିବା ଅଭ୍ୟାସ ମୁଁ ପିତାଙ୍କଠାରୁ ଶିଖିଥିଲି । ସେ ଏକ ଖେଳୁଆଡ଼ ଥିଲେ ଏବଂ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ପ୍ରାୟ ପ୍ରତିଦିନ କସରତ କରୁଥିଲେ । ତାଙ୍କର ମସ୍ତକ ଶେଷପରେ ଶୁଭ୍ର କେଶରେ ପୂରିଥିଲା; ମୁହଁରେ ଗଭୀର ରେଖାପାତ ହୋଇଥିଲା, ଚିନ୍ତାରେ ସେ କ୍ଳାନ୍ତ ଓ ଅବଶ ହୋଇଯାଇଥିଲେ, ମାତ୍ର ତାଙ୍କର ମୃତ୍ୟୁର ୨।୩ ବର୍ଷ ପୂର୍ବରୁ ସମସ୍ତ ଶରୀର ମୁହଁ ତୁଳନାରେ ତାଙ୍କ ବୟସରୁ ୨୦ ବର୍ଷ କମ୍ ପରି ମନେ ହେଉଥିଲା ।

୧୯୨୦ ମସିହା ଜୁନ ମାସରେ ପ୍ରତାପଗଡ଼ ଯିବା ପୂର୍ବରୁ ମଧ୍ୟ ମୁଁ ଅନେକ ଥର ଗ୍ରାମ ମଧ୍ୟ ଦେଇ ଯାଇଛି, ଗ୍ରାମରେ ରହିଛି ଏବଂ କୃଷକମାନଙ୍କ ସହିତ କଥାବାର୍ତ୍ତା କରିଛି । ବଡ଼ ବଡ଼ ମେଳାମାନଙ୍କରେ ଗଙ୍ଗାକୂଳରେ ମୁଁ ହଜାର ହଜାର କୃଷକଙ୍କୁ ଦେଖିଛି ଏବଂ ସେମାନଙ୍କ ଭିତରେ ଆମେ 'ହୋମରୁଲ' ପ୍ରଚାର ବି କରିଛୁଁ । ମାତ୍ର ସେମାନେ କଣ ଏବଂ ଭାରତରେ ସେମାନଙ୍କର କି ସ୍ଥାନ, ଏହା ମୁଁ ବୁଝିନଥିଲି । ଆମ ଭିତରୁ ଅନେକଙ୍କ ପରି ମୁଁ ଏମାନଙ୍କୁ ସ୍ୱାଭାବିକ ବୋଲି ଧରୁଥିଲି । ଏହି ପ୍ରତାପଗଡ଼ ଭ୍ରମଣବେଳେ ମୁଁ ସେମାନଙ୍କୁ ବୁଝିପାରିଲି ଏବଂ ସେହି ଦିନଠାରୁ ମୋର ମାନସପଟରେ ଭାରତ ବୋଇଲେ ଏହି ନଗ୍ନ ଓ

ଗୃହୀତ ଜନ ସାଧାରଣ ବୋଲି ବୁଝିଲି । ଦେଶବ୍ୟାପୀ ଏହି ନୂତନ ଉନ୍ମାଦନା ଯୋଗୁଁ ହେଉ କିମ୍ବା ମୋର ମନର ଅତ୍ୟଧିକ ଆଗ୍ରହ ବ୍ୟତୀତଃ ହେଉ, ମୁଁ ଯେଉଁ ଚିତ୍ର ଦେଖିଲି ଏବଂ ଯେଉଁ ଧାରଣା ମୋ ମନରେ ଅଙ୍କିତ ହେଲା, ସେ ଧାରଣା ଚିର ଦିନ ଲାଗି ମୋ ମନରେ ରହିଗଲା ।

ଏହି କୃଷକମାନଙ୍କ ଯୋଗୁଁ ମୋର ସଙ୍କୋଚ ଦୂରୀଭୂତ ହେଲା ଏବଂ ମୁଁ ସାଧାରଣ ସଭାରେ ବକ୍ତୃତା କରି ପାରିଲି ତାହା ପୂର୍ବରୁ ମୁଁ କେବେ ହେଲେ ସାଧାରଣ ସଭାରେ ବକ୍ତୃତା କରି ନ ଥିଲି— ସାଧାରଣତଃ ହିନ୍ଦୁସ୍ଥାନରେ ବକ୍ତୃତା ହେଉଥାଏ ଏବଂ ସେ କଥା ଭାବିଲାବେଳକୁ ମୋତେ ଡର ଲାଗେ । ମାତ୍ର କୃଷକ ସଭାରେ ମୁଁ ବକ୍ତୃତା ନ କରି ରହି ପାରିଲି ନାହିଁ ଏବଂ ଏହି ଦରିଦ୍ର ଓ ସରଳ ଲୋକଙ୍କ ନିକଟରେ ସଙ୍କୋଚ ବା କଣ କରିବି ? ମୋତେ ବକ୍ତୃତା ଭଙ୍ଗୀ ଜଣା ନ ଥିଲା । ସୁତରାଂ ସେମାନଙ୍କ ସହିତ କଥାବାର୍ତ୍ତା କଲା ପରି ମୋ ମନର ଭାବ ପ୍ରକାଶ କରି କହିଲି । ସଭାରେ ଅଳ୍ପ ଲୋକ ହୋଇଥାନ୍ତୁ ବା ଦଶ ହଜାରରୁ ଅଧିକ ଲୋକ ହୋଇଥାନ୍ତୁ ପଛକେ ମୁଁ ମୋର ଏହି କଥାବାର୍ତ୍ତା କରିବା ଢଙ୍ଗ ଛାଡ଼ି ନ ଥିଲି । ଯେତେ ତ୍ରୁଟି ଓ ଭୁଲ ଥାଉ ପଛକେ ମୁଁ ଅନର୍ଗଳ କହି ପାରୁଥିଲି । ସମ୍ଭବତଃ ଅନେକେ ମୋ କଥାର ଅଧିକାଂଶ ବୁଝିପାରୁ ନ ଥିଲେ । ମୋର ଭାଷା ବା ଚିନ୍ତାଧାରା ବୁଝିବା ସେମାନଙ୍କ ପକ୍ଷେ ସହଜ ନ ଥିଲା । ବହୁ ଲୋକସମାଗମ ହୋଇଥିଲାବେଳେ ମୋର ସ୍ୱର ବହୁତ ଦୂର ପହଞ୍ଚିପାରୁ ନ ଥିବାରୁ ଅନେକେ ଶୁଣି ପାରନ୍ତି ନାହିଁ । ମାତ୍ର ଥରେ ସେମାନେ ଜଣେ ଲୋକଙ୍କ ଉପରେ ଆସ୍ଥା ସ୍ଥାପନ କରିଥିବାରୁ ଏ ସବୁକୁ ଆଦୌ ଖାତିର କରନ୍ତି ନାହିଁ ।

ମୁଁ ମୋର ମାଆ ଓ ସ୍ତ୍ରୀଙ୍କ ନିକଟକୁ ମସୌରୀକୁ ଫେରିଲି; ମାତ୍ର ମୋର ମନ କୃଷକମାନଙ୍କ ବିଷୟରେ ଭରିଥିଲା ଏବଂ ସେମାନଙ୍କ ପାଖକୁ ଫେରିଯିବା ଲାଗି ବ୍ୟଗ୍ର ଥିଲି । ମୁଁ ଫେରିବା ମାତ୍ରକେ ଗ୍ରାମ ଗହଳକୁ ଗଲି ଏବଂ କୃଷକ ଆନ୍ଦୋଳନ କ୍ରମେ ଶକ୍ତିଶାଳୀ ହେଉଥିବାର

ଲକ୍ଷ୍ୟ କଲି । ତଳେ ପଡ଼ିଥିବା କୃଷକ ଭିତରେ ନୂତନ ଆତ୍ମ-ବିଶ୍ୱାସ ଜାଗ୍ରତ ହେଲା ଏବଂ ମସ୍ତକ ଉପରକୁ ଟେକି ସେମାନେ ଅଗ୍ରସର ହେଲେ । ଜମିଦାରର ଗୁମାସ୍ତା ଓ ପୁଲିସ ଉଚ୍ଛେଦ କମିଗଲା ଏବଂ କେହି କୌଣସି ଜମିରୁ ଉଚ୍ଛେଦ ହେଲାବେଳେ ଅନ୍ୟ କେହି କୃଷକ ସେ ଜମିକୁ ଆଦରୁ ନ ଥିଲେ । ଜମିଦାର ଚାକରମାନଙ୍କ ଶାରୀରିକ ପ୍ରହାର ଓ ବେଆଇନ ପାଉଣା ଆଦାୟ ବହୁତ କମିଗଲା ଏବଂ ଏପରି ଘଟଣା ଘଟିବାମାତ୍ରେ ସେ ସମ୍ବାଦ ମୋ ପାଖକୁ ଆସୁଥିଲା ଏବଂ ତଦନ୍ତ ହେଉଥିଲା । ଏଥିରେ ଜମିଦାରଙ୍କର ଗୁମାସ୍ତା ଓ ପୁଲିସ ମଧ୍ୟ ଟିକିଏ ସତର୍କ ହୋଇଗଲେ । ତାଲୁକଦାରମାନେ ଭୟଭୀତ ହୋଇ ଆତ୍ମରକ୍ଷା କରିବା ଲାଗି ବ୍ୟସ୍ତ ହେଲେ ଏବଂ ପ୍ରାଦେଶିକ ସରକାର ଆଉଥରେ ପ୍ରଜାସତ୍ୱ ସଂଶୋଧନ କରିଦେବେ ବୋଲି ପ୍ରତିଶ୍ରୁତି ଦେଲେ ।

ବଡ଼ ବଡ଼ ଜମିଦାର ଓ ତାଲୁକଦାରମାନେ ନିଜକୁ ଜନସାଧାରଣଙ୍କର "ସ୍ୱାଭାବିକ ନେତା" ବୋଲି କହି ଗର୍ବ ଅନୁଭବ କରନ୍ତି — ସେମାନେ ବ୍ରିଟିଶ ସରକାରର ଗେହ୍ଲା ପୁଅ । ସେମାନଙ୍କ ଲାଗି ବିଶେଷ ଶିକ୍ଷା ବା ଉଚିତ ସୁବିଧା କରିବା ନ କରି ସେମାନଙ୍କୁ ସରକାର ଏକ ଶ୍ରେଣୀ ହିସାବରେ ବୁଦ୍ଧିମତ୍ତାରେ ନିର୍ଜୀବ କରି ଦେଇଛନ୍ତି । ଅନ୍ୟ ଦେଶରେ ଜମିଦାରମାନେ ଯାହା ବା ଟିକିଏ ହେଲେ ପ୍ରଜାଙ୍କର ଉନ୍ନତି ଲାଗି କିଛି କରିଛନ୍ତି, ଏମାନେ ତାଙ୍କ ପ୍ରଜାମାନଙ୍କ ଉନ୍ନତି ଲାଗି ଆଦୌ ଚେଷ୍ଟା କରି ନାହାନ୍ତି । ଭୂମି ଓ ଲୋକଙ୍କ ଉପରେ ପରାଙ୍ଗପୁଷ୍ଟ ପରି ରହିଛନ୍ତି । ସେମାନଙ୍କର ପ୍ରଧାନ କାର୍ଯ୍ୟ ହେଉଛି ସ୍ଥାନୀୟ କର୍ମଚାରୀମାନଙ୍କୁ ହାତ କରିବା, ତାଙ୍କ ସାହାଯ୍ୟ ବିନା ସେମାନେ ଏକ ମୁହୂର୍ତ୍ତ ଶକ୍ତିରେ ରହି ପାରିବେ ନାହିଁ । ସର୍ବଦା ତାଙ୍କ ଶ୍ରେଣୀର ସ୍ୱାର୍ଥ ଓ ସୁବିଧା ରକ୍ଷା ନିମନ୍ତେ ଏମାନେ ଦାବୀ କରୁଥାନ୍ତି ।

ଜମିଦାର ଶବ୍ଦ ଅର୍ଥ ବୁଝିବାରେ ଟିକିଏ ଭୁଲ ଧାରଣା ଘଟିଥାଏ । "ଜମିଦାର" ଶବ୍ଦ ଟିକିଏ ଖରାପ ଅର୍ଥବ୍ୟଞ୍ଜକ ଏବଂ ଜମିଦାର ବୋଇଲେ ବଡ଼ ବଡ଼ ଜମିଦାର (ଲର୍ଡ଼ଲର୍ଡ୍) ବୋଲି ଅନେକେ ଭାବିବା ସ୍ୱାଭାବିକ ।

ରୟତୱାରୀ ପ୍ରଥା ପ୍ରଚଳିତ ପ୍ରଦେଶମାନଙ୍କରେ ଜମିରେ ମାଲିକାନା ପାଉଥିବା ଚାଷୀକୁ ଜମିଦାର ବୁଝାଯାଏ । ଜମିଦାରୀ ପ୍ରଥା ପ୍ରଚଳିତ ପ୍ରଦେଶମାନଙ୍କରେ ମଧ୍ୟ ଜମିଦାର ବୋଇଲେ ବଡ଼ ବଡ଼ ଜମିଦାର, ହଜାର ହଜାର ମଧ୍ୟ-ସ୍ୱତ୍ୱାଧିକାରୀ, ଲକ୍ଷ ଲକ୍ଷ ଲୋକ ଯେଉଁମାନେ ଅତ୍ୟଧିକ ଦରିଦ୍ର ଓ କୃଷକମାନଙ୍କଠାରୁ କୌଣସି ପ୍ରକାର ସେମାନଙ୍କ ଅବସ୍ଥା ଭଲ ନୁହେଁ, ସେମାନଙ୍କୁ ବୁଝାଏ । ମୋର ଯେତେଦୂର ମନେ ଅଛି, ଯୁକ୍ତପ୍ରଦେଶରେ ପ୍ରାୟ ୧,୫୦୦,୦୦୦ ଲୋକ ଜମିଦାର ଶ୍ରେଣୀରେ ଯାଆନ୍ତି । ସମ୍ଭବତଃ ଏହାଙ୍କ ଭିତରୁ ଶତକଡ଼ା ୯୦ ଜଣଙ୍କ ଅବସ୍ଥା ଅତି ଦରିଦ୍ର କୃଷକଙ୍କ ସହିତ ସମାନ ଏବଂ ୯ ଜଣଙ୍କ ଅବସ୍ଥା ମଧ୍ୟବିତ୍ତ ଭଳି । ସାରା ପ୍ରଦେଶରେ ବଡ଼ ଜମିଦାରଙ୍କ ସଂଖ୍ୟା ପାଞ୍ଚ ହଜାରରୁ ବେଶୀ ହେବ ନାହିଁ ଏବଂ ଏହି ସଂଖ୍ୟାରୁ ଦଶମାଂଶଙ୍କୁ ପ୍ରକୃତରେ ବଡ଼ ଜମିଦାର ଓ ତାଲୁକଦାର ଭାବରେ ଗଣ୍ୟ କରାଯାଇପାରେ । କେତେକ ସ୍ଥଳରେ ଛୋଟ ଜମିଦାରଙ୍କ ଅପେକ୍ଷା ବଡ଼ ବଡ଼ ଚାଷୀଙ୍କ ଅବସ୍ଥା ଭଲ । ଏହି ଛୋଟ ଓ ମଧ୍ୟମ ଶ୍ରେଣୀର ଜମିଦାରମାନେ ପ୍ରାୟ ଶିକ୍ଷିତ ନୁହନ୍ତି; ମାତ୍ର ମୋଟାମୋଟି ଏଗୁଡ଼ିକ ଭଲଲୋକ ଏବଂ ଉପଯୁକ୍ତ ଶିକ୍ଷା ପାଇଲେ ଏମାନେ ଅତି ସୁନ୍ଦର ନାଗରିକ ହୋଇ ପାରିବେ । ସେମାନେ ଜାତୀୟ ଆନ୍ଦୋଳନରେ ବେଶୀ ସଂଖ୍ୟାରେ ଯୋଗ ଦେଇଛନ୍ତି । ଅଳ୍ପ କେତେ ଜଣଙ୍କ ବ୍ୟତିରେକେ ବଡ଼ ବଡ଼ ଜମିଦାର ଓ ତାଲୁକଦାରମାନେ ଏପରି କରି ନାହାନ୍ତି । ସେମାନଙ୍କର ଆରିଷ୍ଟୋକ୍ରେସି ବା ବଡ଼ଲୋକୀ ଗୁଣ ବି ନାହିଁ—ଶ୍ରେଣୀ ହିସାବରେ ଶାରୀରିକ ଓ ମାନସିକ ଉଭୟ ଦିଗରେ ଅଧୋଗତି ଘଟିଛି ଏବଂ ସେମାନଙ୍କର କାଳ ପୂରି ଆସିଲଣି । ଯେ ପର୍ଯ୍ୟନ୍ତ ବ୍ରିଟିଶ ସରକାର ପରି ଏକ ବାହାର ଶକ୍ତି ସେମାନଙ୍କୁ ସାହାଯ୍ୟ ଦେଉଥିବ, ସେ ପର୍ଯ୍ୟନ୍ତ ହିଁ ସେମାନେ ରହିଥିବେ ।

୧୯୨୧ ମସିହା ସାରା ମୁଁ ମଫସଲ ଅଞ୍ଚଳ ବୁଲିବାରେ ଲାଗିଲି । ମୋର କାର୍ଯ୍ୟ ପରିସର ବଢ଼ି ସାରା ଯୁକ୍ତପ୍ରଦେଶ ବ୍ୟାପିଗଲା ।

ଅସହଯୋଗ ଆରମ୍ଭ ହୋଇଥାଏ—ତାର ବାର୍ତ୍ତା ଗାଁ ଗହଳରେ ପ୍ରବେଶ କଲା । ପ୍ରତ୍ୟେକ ଜିଲ୍ଲାରେ ଦଳ ଦଳ ହୋଇ କଂଗ୍ରେସ କର୍ମୀ ଏହି ନୂତନ ବାର୍ତ୍ତା ଯେଉଁ ପଲ୍ଲୀ ଅଞ୍ଚଳରେ ପ୍ରଚାର କଲେ ଏବଂ ଅନେକ ସମୟରେ ସେମାନେ ଏଥି ସହିତ ଅସ୍ପଷ୍ଟରୂପେ କୃଷକମାନଙ୍କ ଦୁର୍ଦ୍ଦଶା ଦୂର ହୋଇଯିବ ବୋଲି ପ୍ରଚାର କରି ଦେଉଥିଲେ । ସ୍ୱରାଜ ଶବ୍ଦ ଏତେ ବିସ୍ତୃତ ଯେ, ସେ ଶବ୍ଦର ଅର୍ଥ କରିବାକୁ ଗଲେ ଅନେକ କଥା ବୁଝାଇବ । ତଥାପି ଅସହଯୋଗ ଏବଂ କୃଷକ ଆନ୍ଦୋଳନ ଦୁଇଟି ଅଲଗା ଅଲଗା ଜିନିଷ ଏବଂ ଆମ ପ୍ରଦେଶରେ ପରସ୍ପର ପରସ୍ପରକୁ ସାହାଯ୍ୟ କରୁଥିଲା । କଂଗ୍ରେସ ପ୍ରଚାର ଫଳରେ ମାଲି ମକଦ୍ଦମା ଅତି ଶୀଘ୍ର କମିଗଲା ଏବଂ ଲୋକମାନଙ୍କର କଳହ ନିଷ୍ପତ୍ତି କରିବା ନିମନ୍ତେ ଗ୍ରାମ-ମାନଙ୍କରେ ପଞ୍ଚାୟତ ସ୍ଥାପିତ ହୋଇଗଲା । ବିଶେଷତଃ କଂଗ୍ରେସର ପ୍ରଚାର ଅହିଂସ ରହିବାରେ ବଡ଼ ପ୍ରଭାବ ପକାଉଥିଲା; କାରଣ କଂଗ୍ରେସ କର୍ମୀମାନେ ଯେଉଁଠାକୁ ଯାଉଥିଲେ, ସେଠାରେ ଅହିଂସା ଉପରେ ଜୋର ଦେଉଥିଲେ । ଏହାକୁ ହୁଏତ କୃଷକମାନେ ସମ୍ପୂର୍ଣ୍ଣରୂପେ ବୁଝି ପାରୁ ନ ଥିବେ ବା ପସନ୍ଦ କରୁ ନ ଥିବେ; ମାତ୍ର ଲୋକଙ୍କୁ ହିଂସା କାର୍ଯ୍ୟ କରିବାରୁ ଏହା ବିରତ କରୁଥିଲା ।

ଏହା କିଛି କମ କଥା ନୁହେଁ । କୃଷକ ଆନ୍ଦୋଳନ ସାଧାରଣତଃ ହିଂସାମୂଳକ ବିଦ୍ରୋହ ଆକାର ଧାରଣ କରେ । ସେତେବେଳେ ପୁଣି ଆଉଧର କୃଷକମାନେ ଅତ୍ୟନ୍ତ ହତାଶ ହୋଇଥିଲେ ଓ କ୍ରୋଧାନ୍ୱିତ ଥିଲେ । ଏକ ଅଗ୍ନିକଣରୁ ବିରାଟ ଅଗ୍ନିରାଶି ବାହାରି ପଡ଼ନ୍ତା । ତଥାପି ସେମାନେ ଅଦ୍ଭୁତ ପ୍ରକାରରେ ଶାନ୍ତିପୂର୍ଣ୍ଣ ରହିଥିଲେ । ମୋର ମନେ ଅଛି, ଥରେ ଜଣେ ତାଲୁକଦାର ଉପରେ ହିଂସା ପ୍ରୟୋଗ କରାଯାଇ ଥିଲା । ତାହା ହେଉଛି, ତାଲୁକଦାର ତା ଘରେ ବନ୍ଧୁ ଆତ୍ମୀୟ ସ୍ୱଜନବେଷ୍ଟିତ ହୋଇ ବସିଥିବାବେଳେ ଜଣେ କୃଷକ ତାହା ପାଖକୁ ଗଲା ଏବଂ ସେ (ତାଲୁକଦାର) ଅତ୍ୟନ୍ତ ନୈତିକତାହୀନ ଓ ଶୃଙ୍ଖଳଶୂନ୍ୟ ବୋଲି ତାଙ୍କୁ ଏକ ଚାଟକଣା ଦେଇଥିଲା ।

ପରେ ଆଉ ଏକପ୍ରକାର ହିଂସା ହୋଇଥିଲା ଏବଂ ସେଥିଲାଗି ସରକାର ସହିତ ସଙ୍ଘର୍ଷ ହୋଇଥିଲା । ଏହି ସଙ୍ଘର୍ଷ ଅନିବାର୍ଯ୍ୟ ହୁଅନ୍ତା; କାରଣ କୃଷକମାନଙ୍କର ସଙ୍ଘବଦ୍ଧ ଶକ୍ତି ଯେ କ୍ରମେ ବଢ଼ୁଥିଲା, ଏହା ସରକାର ସହ୍ୟ କରିପାରନ୍ତା ନାହିଁ । କୌଣସି ଷ୍ଟେସନରେ ରେଲଗାଡ଼ିରେ ହଜାର ହଜାର କୃଷକ ଯିବାକୁ ଲାଗିଲେ, ବିଶେଷତଃ ଯେତେବେଳେ ଖାଲି ଏ ସବୁଠୀ ହଜାର କୃଷକଙ୍କ ସଙ୍ଗରେ ସେମାନେ ଯୋଗ ଦେବାକୁ ଯାଉଥିଲେ, ସେତେବେଳେ ଏହା ବେଶୀ ଦେଖାଯାଉଥିଲା । ସେମାନଙ୍କୁ ହଟାଇବା ଦୁଃସାଧ୍ୟ ଥିଲା । ରେଲବାଇ କର୍ମଚାରୀମାନଙ୍କ ସେମାନେ ପ୍ରକାଶ୍ୟରେ ଅମାନ୍ୟ କରୁଥିଲେ ଏବଂ ସେ ପୁରୁଣା କାଳ ଗଲଣି ବୋଲି କହୁଥିଲେ । କାହା ପ୍ରରୋଚନାରେ ସେମାନେ ଦଳ ଦଳ ହୋଇ କୌଣସି ଷ୍ଟେସନରେ ଯିବାକୁ ଲାଗିଲେ, ମୋତେ ଜଣା ନାହିଁ । ଆମେ ତାଙ୍କୁ ଏ ପରାମର୍ଶ ଦେଇ ନ ଥିଲୁ । ଆମେ ହଠାତ୍ ଶୁଣିଲୁ ଯେ, ସେମାନେ ଏପରି କରୁଛନ୍ତି । ପରେ ରେଲବାଇ କଡ଼ା ନିୟମ ଯୋଗୁଁ ତାହା ହୋଇ ପାରିଲା ନାହିଁ ।

୧୯୨୦ ମସିହା ଶରତ୍‌ଋତୁରେ (ମୁଁ ସେତେବେଳେ କଲିକତାରେ ବିଶେଷ ଅଧିବେଶନରେ ଯୋଗ ଦେବାକୁ ଯାଉଥିଲି) ସାମାନ୍ୟ ଅପରାଧରେ କେତେକ କୃଷକ ନେତା ଗିରଫ ହୋଇଥିବା ସମ୍ବାଦ ମୁଁ ପାଇଲି । ସେମାନଙ୍କର ପ୍ରତାପଗଡ଼ ସହରରେ ବିଚାର ହେବାର ଥିଲା; ମାତ୍ର ବିଚାର ଦିନ ବହୁ ସଂଖ୍ୟାରେ କୃଷକ ଆସି କଚେରୀ ପୂର୍ଣ୍ଣ ହୋଇଗଲା ଏବଂ କୃଷକ ନେତାମାନେ ଥିବା ଜେଲଠାରୁ କଚେରୀ ପର୍ଯ୍ୟନ୍ତ ରାସ୍ତାରେ ସେମାନେ ଭର୍ତ୍ତି ହୋଇଗଲେ । ମାଜିଷ୍ଟ୍ରେଟ ହତ-ବାହୋଇ ଗଲେ ଏବଂ ତତ୍ପରଦିନ ପର୍ଯ୍ୟନ୍ତ ବିଚାର ସ୍ଥଗିତ ରଖିଲେ । ମାତ୍ର ଲୋକଭିଡ଼ ବଢ଼ିଲା ଏବଂ ଜେଲ ଚାରିପଟରେ ପ୍ରାୟ ଘେରି ଗଲେ । ମୁଠାଏ ଚଣାବୁଟ ଖାଇ କୃଷକମାନେ ଅକ୍ଳେଶରେ ଅନେକ ଦିନ ଚଳିଯାଇ-ପାରନ୍ତି । ଶେଷରେ ବୋଧହୁଏ କମନ୍ତେ ଜେଲ ଭିତରେ ଗୋଟାଏ ବିଚାର କରାଯାଇ ସେମାନଙ୍କୁ ଛାଡ଼ି ଦିଆଗଲା । ଏହା ଉପରେ ଘଟିଲା ମୁଁ ଭୁଲି

ଯାଉଛନ୍ତି; ମାତ୍ର କୃଷକମାନଙ୍କ ପକ୍ଷରେ ଏହା ଏକ ବଡ଼ ବିଜୟ ହେଲା ଏବଂ ସେମାନେ ଭାବିବାକୁ ଲାଗିଲେ ଯେ, ସେମାନଙ୍କ ସଂଖ୍ୟା ଜୋରରେ ସେମାନେ ତାଙ୍କ ନାମ ହାସଲ କରି ବନ୍ଧବଳ କରିପାରିବେ । ସରକାର ପକ୍ଷରେ ଏହା ଅସହ୍ୟ ହୋଇ ଉଠିଲା । ଅଳ୍ପଦିନ ପରେ ସେହିପରି ଆଉ ଏକ ଘଟଣା ଘଟିଲା । ମାତ୍ର ଏଥରକ ଏହା ଅନ୍ୟ ପ୍ରକାରେ ଦମନ ହୋଇଗଲା ।

୧୯୨୧ ମସିହା ଜାନୁୟାରୀ ମାସ ପ୍ରଥମ ଭାଗ—ମୁଁ ନାଗପୁର କଂଗ୍ରେସରୁ ଏଲାହାବାଦ ଫେରିଥାଏ । ହଠାତ୍ ରାୟବରେଲି ଜିଲ୍ଲାରୁ ଏକ ତାର ପାଇଲି ଯେ, ସେଠାରେ ଗୋଳମାଳର ଆଶଙ୍କା ଅଛି—ମୋର ଜରୁରୀ ଉପସ୍ଥିତି ଦରକାର । ତହିଁପରଦିନ ମୁଁ ସେଠାକୁ ଯାତ୍ରା କଲି । ମୁଁ ଖବର ପାଇଲି ଯେ, କେତେ ଜଣ ନେତୃସ୍ଥାନୀୟ କୃଷକ କେତେଦିନ ତଳେ ଗିରଫ ହୋଇଛନ୍ତି ଏବଂ ସେମାନଙ୍କୁ ସ୍ଥାନୀୟ ଜେଲରେ ରଖା ଯାଇଛି । ପ୍ରତାପଗଡ଼ରେ ସେମାନଙ୍କର ଯେଉଁ ସଫଳ ହୋଇଥିଲା ଏବଂ ସେଠାରେ ଯେଉଁ କୌଶଳ ପ୍ରୟୋଗ କରିଥିଲେ, ସେହିପରି ଏଠାରେ ଏକ ବିରାଟ ମେଳା କରିବା ନିମନ୍ତେ କୃଷକମାନେ ଦଳଦଳ ହୋଇ ସହରକୁ ଆସୁଛନ୍ତି । ମାତ୍ର ଏଥରକ ସରକାର ଏହା କରାଇଦେବାକୁ ପ୍ରସ୍ତୁତ ନ ଥିଲା ଏବଂ ଅଧିକା ପୁଲିସ ଓ ଫୌଜ କୃଷକମାନଙ୍କୁ ଦବାଇବା ସକାଶେ ନିଯୁକ୍ତ କରାଯାଇଥିଲା । ଗୋଟିଏ ଛୋଟ ନଦୀର ଆର ପାରିରେ ବହୁ ସଂଖ୍ୟକ କୃଷକଙ୍କୁ ଅଟକାଇ ଦିଆଗଲା । ଅନ୍ୟ ଅଞ୍ଚଳରୁ ଅନେକ ଅବଶ୍ୟ ଆସି ପହଞ୍ଚିଲେ । ମୁଁ ଷ୍ଟେସନରେ ପହଞ୍ଚି ଏ ପରିସ୍ଥିତି ସବୁ ଶୁଣି ପାରିଲି ଏବଂ ସଙ୍ଗେ ସଙ୍ଗେ ନଦୀକୂଳରେ ଯେଉଁଠି ଫୌଜ କୃଷକମାନଙ୍କୁ ଅଟକାଇଥିଲେ, ସେଠାକୁ ଯାଇ ପହଞ୍ଚିଲି । ବାଟରେ ଜିଲ୍ଲାମାଜିଷ୍ଟ୍ରେଟ ମୋତେ ଫେରିଯିବା ଲାଗି ଏକ ଲେଖା ଅତି ଶୀଘ୍ର ଲେଖି ପଠାଇଲେ । ମୁଁ ତାହା ପଛରେ ଉତ୍ତରରେ ଲେଖିଦେଲି କେଉଁ ଆଇନର କେଉଁ ଦଫା ଅନୁସାରେ ସେ ମୋତେ ଏହା କରିବାକୁ କହୁଛନ୍ତି ଏବଂ ତାହା ଜାଣିବା ପର୍ଯ୍ୟନ୍ତ ମୁଁ ମୋର

ଗନ୍ତବ୍ୟ ସ୍ଥାନକୁ ଗଢ଼ କରିବ । ମୁଁ ନଦୀ ପାଖରେ ପହଞ୍ଚିଲା ବେଳକୁ ଗୁଳି ଶବ୍ଦ ଶୁଣିପାରିଲି । ଫୌଜ ମୋତେ ପୋଲ ଉପରେ ଅଟକାଇ ଦେଲେ ଏବଂ ମୁଁ ସେଠାରେ ଅପେକ୍ଷା କରିଥିଲି । ଏହି ସମୟରେ ଭୟରେ ଲୁଚି ରହିଥିବା ଅସଂଖ୍ୟ କୃଷକ ଆସି ମୋତେ ଘେରିଥିଲେ । ତେଣୁ ମୁଁ ପ୍ରାୟ ଦୁଇ ହଜାର କୃଷକଙ୍କର ସଭା କରି ସେମାନଙ୍କର ଭୟ ଦୂର କରିବାକୁ ଚେଷ୍ଟା କଲି ଏବଂ ଉତ୍ତେଜନା କମାଇବାକୁ ଉଦ୍ୟମ କଲି । ଅବଶ୍ୟ ଏହା ଏକ ଅସାଧାରଣ ଅବସ୍ଥା ହୋଇଥିଲା—ଅତି ଅଳ୍ପ ଦୂରରେ ନଦୀ ଆରପାରିରେ ତାଙ୍କର ନିଜ ଭାଇଙ୍କ ଉପରେ ଗୁଳି ଚାଲୁଛି ଏବଂ ଗୁରୁଅଞ୍ଚେ ଫୌଜ ଜମିରହିଛନ୍ତି । ମାତ୍ର ସଭାଟି ସଫଳ ହୋଇଥିଲା ଏବଂ କୃଷକମାନଙ୍କ ଭୟ କମିଗଲା । ତାପରେ ଗୁଳି ସ୍ଥାନରୁ ଜିଲା ମାଜିଷ୍ଟ୍ରେଟ ଫେରିଲେ ଏବଂ ତାଙ୍କ ଅନୁରୋଧକ୍ରମେ ତାଙ୍କ ସହିତ ମୁଁ ତାଙ୍କ ଘରକୁ ଗଲି । କୌଣସି ପ୍ରକାର ଛଳନା କରି ସେଠାରେ ସେ ମୋତେ ପ୍ରାୟ ଦୁଇ ଘଣ୍ଟାରୁ ଅଧିକ ସମୟ ପର୍ଯ୍ୟନ୍ତ ଅଟକାଇ ଦେଲେ—ସହରରେ ଥିବା କୃଷକ ଓ ମୋର ଅନ୍ୟ ବନ୍ଧୁମାନଙ୍କଠାରୁ ମୋତେ ଅଲଗା କରିଦେବା ପାଇଁ ସମ୍ଭବତଃ ସେ ଏହା କରିଥିଲେ ।

ଆମେ ପରେ ଦେଖିଲୁ ଗୁଳିଚାଳନାରେ ଅନେକ ଲୋକ ମରିଯାଇଛନ୍ତି । କୃଷକମାନେ ସଭା ଭାଙ୍ଗି ଦେବାଲାଗି ଏବଂ ଫେରିଯିବା ନିମନ୍ତେ ଅସ୍ୱୀକାର କଲେ, ତଥାପି ସେମାନେ ଶାନ୍ତିପୂର୍ଣ୍ଣ ଥିଲେ । ମୋର ପୂର୍ଣ୍ଣ ବିଶ୍ୱାସ, ମୁଁ କିମ୍ବା ତାଙ୍କର ବିଶ୍ୱାସଭାଜନ ଅନ୍ୟ କେହି ଲୋକ ସେମାନଙ୍କୁ ଯଦି ଏହା କରିବାକୁ କହିଥାନ୍ତା, ସେମାନେ ତାହା କରିଥାନ୍ତେ । ସେମାନେ ତାଙ୍କର ଅବିଶ୍ୱସ୍ତ ଲୋକଙ୍କ ହୁକୁମ ମାନିବାକୁ ରାଜି ନ ଥିଲେ । ମୋର ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବା ନିମନ୍ତେ କେହି କେହି ମାଜିଷ୍ଟ୍ରେଟଙ୍କୁ ପରାମର୍ଶ ଦେଇଥିଲେ, ମାତ୍ର ସେ ତାହା ଶୁଣିଲେ ନାହିଁ । ଯେଉଁଠି ତାଙ୍କ କଥା ରହୁ ନାହିଁ, ସେଠାରେ ଜଣେ ଆନ୍ଦୋଳନକାରୀ

କଥା ଉଦ୍ଭବ, ଏହା ବୁଝନ୍ତି ନ ଥିଲେ । ଯେଉଁସବୁ ସ୍ୱଦେଶୀ ସରକାର-ମାନେ ସମ୍ମାନ ଉପରେ ଚାଲନ୍ତି, ସେମାନେ ଏ ବାଟ ଧରନ୍ତି ନାହିଁ ।

ସେହି ସମୟରେ ରାୟବରେଲି ଜିଲ୍ଲାରେ ଦୁଇଥର ଗୁଳି ହୋଇଥିଲା ଏବଂ ଅତି ଖରାପ କଥା ଘଟିଥିଲା । ତାପରେ ପ୍ରତ୍ୟେକ ଜଣାଶୁଣା କୃଷକ କର୍ମୀ ଏବଂ ପଞ୍ଚାୟତ ସଭ୍ୟଙ୍କ ଉପରେ ଦମନ ଚାଲିଲା । ଏହି ଆନ୍ଦୋଳନକୁ ଧ୍ୱଂସ କରିବା ନିମନ୍ତେ ସରକାର ସ୍ଥିର କରିଥିଲା । କଂଗ୍ରେସ ନିର୍ଦ୍ଦେଶମତେ ସେ ସମୟରେ ଚରଖାରେ ସୂତା ଲୋକେ କାଟୁଥିଲେ । ସୁତରାଂ ଚରଖା ହିଁ ରାଜଦ୍ରୋହର ପ୍ରତୀକ ରୂପେ ଧରାହେଲା—ଚରଖା ରଖିଥିବା ଲୋକଙ୍କୁ ହଇରାଣ କରାଗଲା – କେତେ ଚରଖା ମଧ୍ୟ ପୋଡ଼ି ଦିଆଗଲା । ଏହିପରି ଭାବରେ ରାୟବରେଲି ଓ ପ୍ରତାପଗଡ଼ ଜିଲ୍ଲାରୁ ଶହ ଶହ ଗିରଫ କରି ଓ ଅନ୍ୟ ଉପାୟ ଦ୍ୱାରା ସରକାର କଂଗ୍ରେସ ଓ କୃଷକ ଉଭୟ ଆନ୍ଦୋଳନକୁ ଦବାଇବାକୁ ଚେଷ୍ଟା କଲା । ପ୍ରଧାନ କର୍ମୀଙ୍କ ଭିତରୁ ଅଧିକାଂଶ ଦୁଇ ଆନ୍ଦୋଳନରେ କାର୍ଯ୍ୟ କରୁଥିଲେ ।

କିଛିଦିନ ପରେ ୧୯୨୧ ମସିହାରେ ଫରୁଖାବାଦ ଜିଲ୍ଲାରେ ଅଦ୍ଭୁତ ଭାବରେ ଦମନଲୀଳା ଚାଲିଲା । ସେଠାରେ ଏକ ବଡ଼ ଧରଣର ଗୋଳମାଲ ଆରମ୍ଭ ହେଲା । କେତେକ ଗ୍ରାମର କୃଷକ ଯାଇ ତାଲୁକଦାରର ସମ୍ପତ୍ତି ଲୁଟ କଲେ । ପରେ ଜଣା ପଡ଼ିଲା ଯେ, ଏହି ତାଲୁକଦାର ସହିତ ଅନ୍ୟ ଏକ ଜମିଦାରର ଦାଉଆ ଥିଲା ଏବଂ ଏହି ଜମିଦାରର ଚାକରମାନେ କୃଷକଙ୍କୁ ମତାଇ ଏ କାର୍ଯ୍ୟ କଲେ । ପ୍ରକୃତରେ ଏହିସବୁ ଲୁଟ କରିବା ମହାତ୍ମା ଗାନ୍ଧିଙ୍କ ଇଚ୍ଛା ବୋଲି ସେମାନଙ୍କୁ ବୁଝା-ଯାଇଥିଲା ଏବଂ ସେମାନେ "ମହାତ୍ମା ଗାନ୍ଧି କି ଜୟ" କହି ଏହା କରିବାକୁ ବାହାରି ପଡ଼ିଲେ ।

ମୁଁ ଏହା ଶୁଣି ଅତ୍ୟନ୍ତ ଚିଡ଼ିଗଲି । ଏହା ଫରୁଖାବାଦ ଜିଲ୍ଲାର ଆକବରପୁର ନାମକ ସ୍ଥାନର ନିକଟବର୍ତ୍ତୀ ଅଞ୍ଚଳରେ ଘଟିଥିଲା ଏବଂ

ଘଟଣା ଘଟିବାର ୨।୩ ଦିନ ଭିତରେ ମୁଁ ଯାଇ ସେଠାରେ ପହଞ୍ଚିଲି । ମୁଁ ପହଞ୍ଚି ସେହି ଦିନ ଏକ ସଭା ଡକାଇଲି ଏବଂ କେତେକ ଘଣ୍ଟା ଭିତରେ ପ୍ରାୟ ଦଶମାଇଲ ଦୂରବର୍ତ୍ତୀ ଅନେକ ଗ୍ରାମରୁ ୭।୮ ହଜାର ଲୋକ ଆସି ଜମା ହେଲେ । ସେମାନଙ୍କ କାର୍ଯ୍ୟ ଫଳରେ ତାଙ୍କ ନିଜର ଓ ଆମ ଆନ୍ଦୋଳନର କ୍ଷତି ହୋଇଛି ବୋଲି ମୁଁ ବଡ଼ କଡ଼ା ଭାବରେ ସେମାନଙ୍କୁ ନିନ୍ଦିଲି ଏବଂ ଦୋଷୀ ଲୋକ ପ୍ରକାଶ୍ୟ ଭାବରେ ସ୍ୱୀକାର କରିବା ନିମନ୍ତେ ଦାବି କଲି । (ସେତେବେଳେ ଗାନ୍ଧିଜୀଙ୍କ ସତ୍ୟାଗ୍ରହର ଭାବନାରେ ମୁଁ ମାତି ଥାଏ) । ଯେଉଁମାନେ ଲୁଟ କରିଥିଲେ, ସେମାନଙ୍କୁ ହାତ ଉଠାଇବା ନିମନ୍ତେ ମୁଁ ସେହି ସଭାରେ ଡାକିଲି ଏବଂ ଅତି ଆଶ୍ଚର୍ଯ୍ୟର କଥା ଯେ, ଅନେକ ପୁଲିସ କର୍ମଚାରୀଙ୍କ ଉପସ୍ଥିତିରେ ମଧ୍ୟ ପ୍ରାୟ ୨୦ ଜଣ ଲୋକ ହାତ ଉଠାଇଲେ । ଏଥିଯୋଗୁ ସେମାନେ ବିପଦରେ ପଡ଼ିଲେ; ଅର୍ଥାତ୍ ପୁଲିସ ଗିରଫ ଆଦି କଲେ ।

ପରେ ମୁଁ ସେମାନଙ୍କ ସହିତ ଯେତେବେଳେ ଘନିଷ୍ଠ ଭାବରେ କଥାବାର୍ତ୍ତା କଲି ଏବଂ ସେମାନଙ୍କୁ କିପରି ଭୁଲାଇ ଦିଆ ଯାଇଥିଲା ତାହା ଶୁଣିଲି, ସେତେବେଳେ ସେମାନଙ୍କ ଲାଗି ମୋର ଦୁଃଖ ହେଲା ଏବଂ ଏହି ନିରୀହ ନିର୍ବୋଧ ଲୋକଙ୍କୁ ମୁଁ ଫନ୍ଦାରେ ପକାଇଦେଲି ଏବଂ ସେମାନେ ଦୀର୍ଘ କାରାବାସ ପାଇଲେ ବୋଲି ମୋର ଦୁଃଖ ବଢ଼ିଲା । ମାତ୍ର ଗାଁର ୨।୩ ଦୁର୍ଜନ ଲୋକ ଯେ ଦଣ୍ଡ ପାଇଲେ, ତାହା ନ୍ୟାୟ ହେଲା; ଏପରି ସୁଯୋଗ ସରକାର ସହଜରେ ହରାଏ ନାହିଁ ଏବଂ ସେହି ଅଞ୍ଚଳର କୃଷକ ଆନ୍ଦୋଳନକୁ ଦବାଇବା ନିମନ୍ତେ ପୂର୍ଣ୍ଣ ସୁବିଧା ଉଠାଇଲେ । ପ୍ରାୟ ହଜାରେରୁ ବେଶୀ ଲୋକ ଗିରଫ ହେଲେ, ଲକ୍ଷ୍ନୌ ଜେଲ ଭର୍ତ୍ତିହୋଇଗଲା ଏବଂ ଅନେକ ମାସ ପର୍ଯ୍ୟନ୍ତ ବିଚାର ଚାଲିଲା । ସେହି ବିଚାର ବେଳେ ଅନେକ ଲୋକ ଜେଲ ଭିତରେ ମରିଗଲେ । ଅନେକଙ୍କୁ ଦୀର୍ଘ କାରାବାସ ଦିଆଗଲା ଏବଂ ମୁଁ ଜେଲ ଗଲାପରେ ଜେଲ ଭିତରେ ଏମାନଙ୍କ ଭିତରୁ ଅନେକ ବାଳକ ଓ ଯୁବକ ସେମାନଙ୍କର ଯୌବନ ସମୟ ଜେଲ ଭିତରେ କଟାଉଥିବାର ଦେଖିଲି ।

ଭାରତୀୟ କୃଷକମାନଙ୍କର ସହ୍ୟ କରିବାର ବା ଦୀର୍ଘକାଳ ପର୍ଯ୍ୟନ୍ତ ପ୍ରତିରୋଧ କରିବାର ଶକ୍ତି କମ । ଦୁର୍ଭିକ୍ଷ ଓ ସଂକ୍ରାମକ ରୋଗରେ ଲକ୍ଷ ଲକ୍ଷ ଲୋକ ମରନ୍ତି । ବିସ୍ମୟର କଥା ଯେ, ସରକାର ଓ ଜମିଦାରଙ୍କ ମିଳିତ ଶକ୍ତି ବିରୁଦ୍ଧରେ ସେମାନେ ଏକବର୍ଷ କାଳ ପ୍ରତିରୋଧ କରି ରହିଲେ । ମାତ୍ର ସେମାନେ ଟିକିଏ କ୍ଲାନ୍ତ ହୋଇ ପଡ଼ିଲେ ଏବଂ ସରକାର ବାରମ୍ବାର ସେମାନଙ୍କ ଆନ୍ଦୋଳନକୁ ଦମନ କରିବାରୁ ଶେଷରେ କ୍ଷଣକାଳ ଲାଗି ତାଙ୍କର ଉତ୍ସାହ ଭାଙ୍ଗିଗଲା । ମାତ୍ର ସେମାନଙ୍କ ହୃଦୟ ଭିତରେ ସେ ଭାବ ଦବିଥିଲା । ପୂର୍ବପରି ଉତ୍ସାହ ବା ଉଦ୍ଭଟ ଜନତା ନ ଥିଲେ ସୁଦ୍ଧା ଅନେକ ପୁରୁଣା କର୍ମୀ ଶିକ୍ଷିତ ହୋଇ ନ ଥିଲେ ଏବଂ ସେମାନେ ଅଳ୍ପ ଅଳ୍ପ କାର୍ଯ୍ୟ କରୁଥିଲେ । ଏହାସବୁ ୧୯୨୧ ମସିହାରେ କଂଗ୍ରେସ ଜେଲ ଯିବାଲାଗି ଦେଶବାସୀଙ୍କୁ ଡାକିବାର ପୂର୍ବରୁ ଘଟିଥିଲା । ଅସହଯୋଗ ଆନ୍ଦୋଳନରେ ମଧ୍ୟ କୃଷକମାନେ ପୂର୍ବ ବର୍ଷରୁ ଅତ୍ୟନ୍ତ ଅତ୍ୟାଚାର ସହ୍ୟ କରି ସୁଦ୍ଧା ଅନେକ ସଂଖ୍ୟାରେ ଯୋଗଦେଇଥିଲେ ।

କୃଷକ ଆନ୍ଦୋଳନରେ ଆଶଙ୍କିତ ହୋଇ ସରକାର ପ୍ରଜାସ୍ୱତ୍ୱ ଆଇନ ଶୀଘ୍ର ପ୍ରଣୟନ କରିବାକୁ ଲାଗିଲା । ଏଥିରେ କୃଷକମାନଙ୍କ ଉପକାର ହେବା ଭଳି କେତେକ ଧାରା ଥିଲା; ମାତ୍ର ଆନ୍ଦୋଳନ ଦବିଗଲାଣି ବୋଲି ଦେଖିବା ମାତ୍ରକେ ଏହାକୁ କୋହଳ କରିଦିଆଗଲା । ଏଥିରେ ଗୋଟିଏ ପ୍ରଧାନ ପରିବର୍ତ୍ତନ ହୋଇ ଅଯୋଧ୍ୟାରେ କୃଷକମାନଙ୍କୁ ଜୀବନବ୍ୟାପୀ ଜମି ଭୋଗ କରିବାର ଅଧିକାର ଦିଆଯାଇଥିଲା । ଏହା ଲୋକଙ୍କର ଖୁବ୍ ପସନ୍ଦ ହୋଇଥିଲା । ମାତ୍ର ପରେ ଦେଖାଗଲା ଏହା କିଛି ଭଲ ନୁହେଁ ।

ଆଉଧରେ ଅତି ଅଳ୍ପ ପରିମାଣରେ କୃଷକ ଆନ୍ଦୋଳନ ଲାଗି ରହିଲା । ୧୯୨୯ ମସିହାରେ ଯେଉଁ ଜଗତ୍‌ବ୍ୟାପୀ ଅର୍ଥ ସଙ୍କଟ ଦେଖାଦେଲା ଏବଂ ମୂଲ୍ୟ ହ୍ରାସ ଘଟିଲା, ସେଥିରେ ଏକ ଭୀଷଣ ସଙ୍କଟ ଉପସ୍ଥିତ ହେଲା ।

—*—

# ଅସହଯୋଗ

ମୁଁ ଅଉଧର କୃଷକ ବିଦ୍ରୋହ ସମ୍ବନ୍ଧରେ କିଛିଏ ବିସ୍ତୃତ ଭାବରେ ବର୍ଣ୍ଣନା କଲି; କାରଣ ଏଥିରେ ମୋଠାରୁ ଏକ ଆବରଣ ଦୂର ହୋଇଗଲା। ଭାରତୀୟ ସମସ୍ୟାର ଏକ ପ୍ରଧାନ ଦିଗ ପ୍ରତି ମୋର ଦୃଷ୍ଟି ଗଲା। ସେତେବେଳେ ଜାତୀୟବାଦୀମାନେ ଏଥିପ୍ରତି ଆଦୌ ଦୃଷ୍ଟି ଦେଉ ନ ଥିଲେ। ଦୀର୍ଘକାଳ ବ୍ୟାପୀ ଅସନ୍ତୋଷର ଚିହ୍ନସ୍ୱରୂପ ଭାରତର ଅନେକ ସ୍ଥାନରେ ପ୍ରାୟ କୃଷକ ବିଦ୍ରୋହ ଲାଗି ରହିଛି ଏବଂ ୧୯୨୦ ଓ ୨୧ ସାଲରେ ହୋଇଥିବା ଅଉଧ ବିଦ୍ରୋହ ଏହାର ଏକ ଅଂଶ ମାତ୍ର। ଅବଶ୍ୟ ଏହା ଏକ ଅଦ୍ଭୁତ ଧରଣର ଏବଂ ଅନେକ ରହସ୍ୟ ଏଥିରୁ ପ୍ରକାଶ ପାଉଥିଲା। ଆରମ୍ଭ-ବେଳେ ଏଥିରେ ରାଜନୀତି ବା ରାଜନୀତିକଙ୍କର କୌଣସି ସମ୍ପର୍କ ନ ଥିଲା ଏବଂ ଆନ୍ଦୋଳନ ଉପରେ ମଧ୍ୟ ବାହାର ଲୋକ ଏବଂ ରାଜନୀତିକମାନଙ୍କର ଖୁବ୍ କମ୍ ପ୍ରଭାବ ଥିଲା। ସାରା ଭାରତ ଦୃଷ୍ଟିରୁ ଏହାକୁ ଏକ ସ୍ଥାନୀୟ ସମସ୍ୟା ବୋଲି କହୁଥିଲେ ଏବଂ ଏଥିପ୍ରତି ପ୍ରାୟ ଦୃଷ୍ଟି ଦିଆ ଯାଉ ନ ଥିଲା। ଏପରିକି ଯୁକ୍ତପ୍ରଦେଶର ସମ୍ବାଦପତ୍ରମାନେ ମଧ୍ୟ ଏହି ଆନ୍ଦୋଳନ ସମ୍ପର୍କରେ ସମ୍ବାଦ ପ୍ରକାଶ କରି ନ ଥିଲେ। କାଗଜର ସମ୍ପାଦକ ଓ ନାଗରିକ ପାଠକମାନଙ୍କ ଦୃଷ୍ଟିରେ ଅର୍ଦ୍ଧନଗ୍ନ କୃଷକମାନଙ୍କ କାର୍ଯ୍ୟର କୌଣସି ପ୍ରକୃତ ରାଜନୀତିକ ବା ଅନ୍ୟ ପ୍ରଭାବରେ ଗୁରୁତ୍ୱ ନ ଥିଲା।

ସେକାଳରେ ପଞ୍ଜାବ ଓ ଖିଲାଫତ ଅତ୍ୟାଚାରହିଁ ପ୍ରଧାନ ଆଲୋଚ୍ୟ ବିଷୟ ଥିଲା। ଏବଂ ଏହି ଅତ୍ୟାଚାରର ପ୍ରତିକାର ଲାଗି ଯେଉଁ ଅସହଯୋଗ କଳ୍ପନା କରାଯାଉଥିଲା ତାହା ଏକ ମୁଖ୍ୟ ବିଷୟ ଥିଲା। ସେତେବେଳେ ଜାତୀୟ ସ୍ୱାଧୀନତା ବା ସ୍ୱରାଜ ଆଦି ବଡ଼ ବଡ଼ ସମସ୍ୟା ଉପରେ ଜୋର ଦିଆଯାଉ ନ ଥିଲା। ଗାନ୍ଧିଜୀ ଅସ୍ପଷ୍ଟ ଓ ବିରାଟ ଲକ୍ଷ୍ୟ ପସନ୍ଦ କରୁ ନ ଥିଲେ; ବରାବର କୌଣସି ବିଶେଷ ଓ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଉପରେ ବିଶେଷ ରୂପେ ଜୋର ଦେବାକୁ ପସନ୍ଦ କରନ୍ତି। ଏଥିରେ

ସନ୍ଦେହ ନାହିଁ । ଦେଶସାରା ଓ ଲୋକଙ୍କ ମନ ଭିତରେ ସ୍ୱରାଜ ଚିନ୍ତା ଦେଖାଦେଉଥିଲା ଏବଂ ଅସଂଖ୍ୟ ସଭା ସମିତି ଓ ସମ୍ମିଳନୀମାନଙ୍କରେ ପ୍ରାୟ ଏକଥା ଉଠୁଥିଲା ।

୧୯୨୦ ସାଲ ଶରତ ଋତୁରେ ଏଥିଲାଗି କଣସବୁ କାର୍ଯ୍ୟ କରିବାକୁ ହେବ, ବିଶେଷତଃ ଅସହଯୋଗ ସମ୍ବନ୍ଧରେ ନିଷ୍ପତ୍ତି କରିବା ନିମନ୍ତେ କଲିକତାରେ କଂଗ୍ରେସର ବିଶେଷ ଅଧିବେଶନ ବସିଲା । ଲାଲା ଲଜପତ୍ ରାୟ ଅନେକ ଦିନ ପର୍ଯ୍ୟନ୍ତ ନିର୍ବାସନ ହେତୁ ଆମେରିକାରେ ଥିଲେ, ସେ ଫେରି ଆସିଥାନ୍ତି । ତାଙ୍କୁ ସଭାପତି କରାଗଲା । ସେ ଏହି ଅସହଯୋଗର ନୂତନ ଧାରାକୁ ପସନ୍ଦ କଲେ ନାହିଁ ଏବଂ ତାର ବିରୋଧ କଲେ । ସାଧାରଣତଃ ଭାରତ ରାଜନୀତିରେ ତାଙ୍କୁ ଜଣେ ଚରମପନ୍ଥୀ ବୋଲି କହୁଥିଲେ; ମାତ୍ର ତାଙ୍କର ଦୃଷ୍ଟିକୋଣ ନିୟମତନ୍ତ୍ରଗତ ଓ ମଧ୍ୟପନ୍ଥୀ ଥିଲା । ଅବସ୍ଥାଚକ୍ରରେ ପଡ଼ି ସେହି ଶତାବ୍ଦୀରେ ଥିବା ଚରମପନ୍ଥୀ ତିଳକ ଓ ଅନ୍ୟ ଅନ୍ୟମାନଙ୍କ ସହ ସେ ଯୋଗ ଦେଇଥିଲେ; ନିଜ ଇଚ୍ଛା ବା ବିଶ୍ୱାସ ଯୋଗୁଁ ନୁହେଁ । ସେ ଅନେକ ଦିନ ବାହାରେ ରହିଥିବା ହେତୁ ତାଙ୍କର ସାମାଜିକ ଓ ଅର୍ଥନୈତିକ ଦୃଷ୍ଟିକୋଣ ବୃଦ୍ଧି ପାଇଥିଲା ଏବଂ ଏହି ହେତୁ ଅନେକ ଭାରତୀୟ ନେତାଙ୍କ ଅପେକ୍ଷା ତାଙ୍କର ଟିକିଏ ଉନ୍ନତ ଦୃଷ୍ଟିକୋଣ ଥିଲା ।

ଉଇଲଫିଲ୍ଡ ସ୍କାଉଏନ୍ ବ୍ଲଣ୍ଟ ତାଙ୍କର "ଡାଇରୀ" ରେ ଗୋଖଲେ ଓ ଲାଲାଜୀଙ୍କ ସହ ଏକ ସାକ୍ଷାତ୍ (ପ୍ରାୟ ୧୯୦୯ ମସିହା କଥା) ବର୍ଣ୍ଣନା କରିଛନ୍ତି । ସେ ଦୁହିଁଙ୍କୁ ବଡ଼ କଡ଼ା ସମାଲୋଚନା କରିଛନ୍ତି ଏବଂ ଦୁହେଁ ଯାକ ଅତି ସାବଧାନ ଓ ବାସ୍ତବତାର ସମ୍ମୁଖୀନ ହେବା ନିମନ୍ତେ ଭୀତ ବୋଲି ଲେଖିଛନ୍ତି । ଅଥଚ ଅନ୍ୟ ସବୁ ଭାରତୀୟ ନେତାଙ୍କ ଅପେକ୍ଷା ଲାଲାଜୀହିଁ ବେଶୀ ବାସ୍ତବତାର ସମ୍ମୁଖୀନ ହୋଇଛନ୍ତି । ବ୍ଲଣ୍ଟଙ୍କ ଧାରଣାରୁ ସେକାଳର ରାଜନୀତି କିପରି ନିମ୍ନସ୍ତରର ଥିଲା, ରାଜନୈତିକ ନେତାମାନେ କିପରି ଥିଲେ ଏବଂ ଜଣେ ବିଦେଶୀର

ତାଙ୍କ ପ୍ରତି ବିପରି ଅନୁଭୂତି ହୋଇନଥିବା ଜଣାପଡ଼େ; ମାତ୍ର ପରେ ଏହି ଅବସ୍ଥାର ଅଦ୍ଭୁତ ପରିବର୍ତ୍ତନ ଘଟି ଯାଇଛି ।

ଲାଲା ଲଜପତ ରାୟ ଏକାନ୍ତ ଏହାର ବିରୋଧ କରୁ ନ ଥିଲେ, ତାଙ୍କ ସହିତ ଆହୁରି ଅନେକ ପ୍ରସିଦ୍ଧ ଲୋକ ଥିଲେ । ବାସ୍ତବରେ କଂଗ୍ରେସର ପ୍ରାୟ ସବୁ ପୁରୁଣା ନେତା ଗାନ୍ଧୀଙ୍କ ଅସହଯୋଗ ପ୍ରସ୍ତାବର ବିରୋଧ କରୁଥିଲେ । ସି. ଆର. ଦାସ ବିରୋଧୀ ଦଳର ନେତା ଥିଲେ । ସେ ଯେ ଏହି ପ୍ରସ୍ତାବର ଉଦ୍ଦେଶ୍ୟ ବିରୋଧରେ ଥିଲେ ଏହା ନୁହେଁ, ବରଂ ତାଠାରୁ ଆହୁରି ଅଧିକ ଆଗକୁ ଅଗ୍ରସର ହେବାକୁ ସେ ପ୍ରସ୍ତୁତ ଥିଲେ; ମାତ୍ର ନୂତନ ବ୍ୟବସ୍ଥା ସଭା ବର୍ଜନ ପ୍ରସ୍ତାବରେ ତାଙ୍କର ପ୍ରଧାନ ଆପତ୍ତି ଥିଲା ।

ସେହି ପୁରୁଣା ନେତାମାନଙ୍କ ଭିତରୁ ସେତେବେଳେ କେବଳ ମୋ ପିତା ଗାନ୍ଧିଜୀଙ୍କୁ ସମର୍ଥନ କରୁଥିଲେ । ଏହା କରିବା ତାଙ୍କ ପକ୍ଷରେ କିଛି ସହଜ କଥା ନ ଥିଲା । ତାଙ୍କର ପୁରୁଣା ବନ୍ଧୁମାନେ ଯେଉଁସବୁ କାରଣରୁ ଆପତ୍ତି କରୁଥିଲେ, ସେଥିରେ ସେ ଖୁବ୍ ପ୍ରଭାବିତ ହୋଇଥିଲେ । ଅନ୍ୟମାନଙ୍କ ପରି ଏକ ଅଭିନବ ନିରୁଦ୍ଦେଶ ପଥରେ ଯାତ୍ରା କରିବାକୁ ସେ ଇତସ୍ତତ କରୁଥିଲେ—ଏଥିରେ ନିଜର ପୂର୍ବ ଠାଟ ବଜାୟ ରଖିବା ସମ୍ଭବ ନ ଥିଲା । କୌଣସି ଏକ ଫଳପ୍ରଦ କାର୍ଯ୍ୟ କରିବାର ଆବେଗ ତାଙ୍କ ଭିତରେ ଥିଲା । ଏହି ପ୍ରସ୍ତାବ ଠିକ ତାଙ୍କର ଚିନ୍ତାଧାରା ଅନୁଯାୟୀ ନ ହୋଇଥିଲେ ମଧ୍ୟ ଏଥିରେ ନିର୍ଦ୍ଦିଷ୍ଟ କର୍ମପ୍ରେରଣା ଥିବାରୁ ସେ ଏହାକୁ ପସନ୍ଦ କଲେ । ନିଜ ମତ ସେ ଅନେକ ସମୟ ପରେ ସ୍ଥିର କଲେ । ସେ ସି. ଆର. ଦାସ ଓ ଗାନ୍ଧିଜୀଙ୍କ ସହ ଦୀର୍ଘ ଆଲୋଚନା କରିଥିଲେ । ଗୋଟିଏ ବଡ଼ ମଫସଲ ମକଦ୍ଦମାରେ ବିରୁଦ୍ଧ ପକ୍ଷରେ ଦୁହେଁଯାକ ଥିଲାପରି ମିଷ୍ଟର ଦାସ ଓ ମୋର ପିତା ସେତେବେଳେ ଏ ସମସ୍ୟାକୁ ଦେଖୁଥିଲେ । ସେମାନେ ଏକା ଦୃଷ୍ଟିରୁ ପ୍ରସ୍ତାବର ଆଲୋଚନା କରୁଥିଲେ ଏବଂ ଏହାର ଫଳାଫଳ ସମ୍ବନ୍ଧରେ ମଧ୍ୟ ଦୁହିଁଙ୍କର ସମାନ

ଧାରଣା ଥିଲା । ମାତ୍ର ମକଦ୍ଦମାରେ ମତଭେଦ ଯୋଗୁଁ ବିଶେଷ ଅଧିବେଶନର ପ୍ରଧାନ ପ୍ରସ୍ତାବରେ ଦୁଇ ପାଖରେ ଦୁହେଁ ରହିଲେ । ତିନିମାସ ପରେ ଦୁହିଁଙ୍କର ନାଗପୁର କଂଗ୍ରେସରେ ଭେଟ ହେଲା ଏବଂ ସେହି ଦିନଠାରୁ ସେମାନଙ୍କର ସମ୍ପର୍କ ଘନିଷ୍ଠ ହେଲା ଓ ସେମାନେ ଏକ ସଙ୍ଗରେ ଗଢିକଲେ ।

ସେ ସମୟରେ କଲିକତା କଂଗ୍ରେସ ପୂର୍ବରୁ ମୋର ପିତାଙ୍କ ସହିତ ଅଳ୍ପ ଦେଖାସାକ୍ଷାତ ହେଉଥିଲା । ମାତ୍ର ମୁଁ ତାଙ୍କୁ ଯେତେବେଳେ ଦେଖୁଥିଲି ସେ ଏହି ସମସ୍ୟା ଘେନି ଅନବରତ ବିବ୍ରତ ଥିବାର ଦେଖେ । ଏହି ସମସ୍ୟାଟିକୁ ଜାତୀୟ ଦୃଷ୍ଟି ଛଡ଼ା ନିଜ ବ୍ୟକ୍ତିଗତ ଦୃଷ୍ଟିରୁ ମଧ୍ୟ ଦେଖୁଥିଲେ । ଅସହଯୋଗ ଫଳରେ ତାଙ୍କୁ ତାଙ୍କର ଓକିଲାତି ଛାଡ଼ିବାକୁ ହେବ, ତାଙ୍କର ଜୀବନ ଧାରା ବଦଳାଇ ନୂତନ ଜୀବନ ଆରମ୍ଭ କରିବାକୁ ପଡ଼ିବ—୬୦ ବର୍ଷ ବୟସରେ ପହଞ୍ଚିବା ଲୋକ ପକ୍ଷରେ ଏହା କିଛି ସହଜ ନୁହେଁ । ଏତଦ୍ଦ୍ୱାରା ତାଙ୍କର ପୁରାତନ ବନ୍ଧୁ, ଓକିଲାତି ବ୍ୟବସାୟ, ଯେଉଁ ସାମାଜିକ ଜୀବନରେ ସେ ଆଜି ପର୍ଯ୍ୟନ୍ତ ଚଳି ଆସିଥିଲେ ସେଥିରୁ ବିଚ୍ଛିନ୍ନ ହେବାକୁ ହେବ ଏବଂ ତାଙ୍କର ଯେଉଁସବୁ ବ୍ୟୟବହୁଳ ବିଳାସବ୍ୟସନ ଥିଲା, ତାହା ଛାଡ଼ିବାକୁ ହେବ । ଅର୍ଥନୈତିକ ଦୃଷ୍ଟିରୁ ମଧ୍ୟ ଏହା କମ କଥା ନ ଥିଲା, କାରଣ ତାଙ୍କର ଓକିଲାତି ରୋଜଗାର କମିଗଲେ ତାଙ୍କର ଜୀବନ-ନିର୍ବାହ ଢ଼ଙ୍ଗ ତ ନିଶ୍ଚୟ କମାଇବାକୁ ପଡ଼ିବ ।

ମାତ୍ର ତାଙ୍କର ଯୁକ୍ତି, ଆତ୍ମମର୍ଯ୍ୟାଦା-ବୋଧ ଓ ଆତ୍ମବଡ଼ିମା ହେତୁ ଧୀରେ ଧୀରେ ସେ ଏହି ନୂତନ ଆନ୍ଦୋଳନକୁ ସମ୍ପୂର୍ଣ୍ଣରୂପେ ଗ୍ରହଣ କଲେ । ପଞ୍ଜାବ ଅତ୍ୟାଚାର ଏବଂ ତାପରେ ଘଟିଥିବା ଘଟଣାବଳୀରେ ତାଙ୍କର ହୃଦୟ ଭିତରରେ ପୂର୍ଣ୍ଣ ଥିଲା; ତାହାର ଅନ୍ୟାୟ ଏବଂ ଜାତୀୟ ଅପମାନର ଗୋଟାଏ କିଛି ପ୍ରତିକାର ହେବା ବାଞ୍ଛନୀୟ ବୋଲି ସେ ଅନୁଭବ କରୁଥିଲେ । ମାତ୍ର ସେ ଉଚ୍ଛ୍ୱାସ ତରଙ୍ଗରେ ଭାସିଯିବା ବ୍ୟକ୍ତି ନୁହନ୍ତି । ସେ ଓକିଲ ହୋଇଥିବା ଯୋଗୁଁ ବିଷୟଟିକୁ

ସ୍ୱତନ୍ତ୍ରଗତ ରୂପେ ସବୁଦଗର ଆଲୋଚନା କରି ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଲେ ଏବଂ ଗାନ୍ଧିଜୀଙ୍କ ସହ ଯୋଗ ଦେଲେ ।

ଜଣେ ମନୁଷ୍ୟ ହିସାବରେ ଗାନ୍ଧିଜୀଙ୍କ ପ୍ରତି ସେ ଆକୃଷ୍ଟ ହୋଇଥିଲେ ଏବଂ ଏହା ମଧ୍ୟ ତାଙ୍କ ଉପରେ ପ୍ରଭାବ ପକାଇଥିଲା । ତାଙ୍କର ଗାନ୍ଧିଜୀଙ୍କ ପ୍ରତି ଆଦର ଓ ଅନାଦର ଭାବ ଥିଲା । ସେ ଯେଉଁ ଲୋକଙ୍କୁ ଘୃଣା କରୁଥିବେ, ତାହା ସହିତ କେବେହେଁ ଘନିଷ୍ଠ ସମ୍ପର୍କ ସ୍ଥାପନ କରିପାରିବେ ନାହିଁ । ମାତ୍ର ଏହା ଏକ ଅଦ୍ଭୁତ ସଂମିଶ୍ରଣ—ଜଣେ କଠୋର ତପସ୍ୱୀ ଧାର୍ମିକ, ଜୀବନର ଦୈହିକ ଭୋଗ ବାସନା ତ୍ୟାଗ କରି ଜୀବନ କଟାଉଛି ଏବଂ ଆଉ ଜଣେ ଭୋଗବାଦୀ ଜୀବନ ଉପଭୋଗ କରୁଛି, ଭଗବାନଙ୍କ ଦାନ ସ୍ୱାଭାବିକ ରୂପେ ଭୋଗ କରୁଛି ଏବଂ ପରଜୀବନରେ କଣ ହେବ, ସେଥିପ୍ରତି ଆଦୌ ତାର ଖାତର ନାହିଁ । ମନସ୍ତତ୍ତ୍ୱବିତ୍‌ଙ୍କ ଭାଷାରେ ଜଣେ ଅନ୍ତର୍ମୁଖ ଓ ଅନ୍ୟ ଜଣକ ବହିର୍ମୁଖ । ମାତ୍ର ଦୁହିଁଙ୍କୁ ଏକ ସାଧାରଣ ବନ୍ଧନ, ସାଧାରଣ ସ୍ୱାର୍ଥ ଏକତ୍ର କଲା ଓ ବାନ୍ଧି ରଖିଥିଲା । ପରବର୍ତ୍ତୀ ସମୟରେ ରାଜନୀତିରେ ସେମାନଙ୍କର ପାର୍ଥକ୍ୟ ଘଟିଥିଲେ ସୁଦ୍ଧା ସେମାନଙ୍କ ମଧ୍ୟରେ ଘନିଷ୍ଠ ମିତ୍ରତା ରହିଥିଲା ।

ଓ୍ୟାଲଟର ପେଟର ତାଙ୍କର ଏକ ବହିରେ ଲେଖିଛନ୍ତି—ଯୋଗୀ ଓ ଭୋଗବାଦୀଙ୍କ ଦୃଷ୍ଟିକୋଣ ପୃଥକ୍ ହୋଇଥିଲେ ସୁଦ୍ଧା, ସେମାନେ ଭିନ୍ନ ପଥରେ ଗତି କରୁଥିଲେ ସୁଦ୍ଧା, ଜଣେ ଧାର୍ମିକ ଓ ଅନ୍ୟ ଜଣକ ଧର୍ମବିରୋଧୀ ହୋଇଥିଲେ ସୁଦ୍ଧା, ଦୁହିଁଙ୍କ ଭିତରେ ଅସମ୍ଭବ ରକମ ଦୃଢ଼ତା ଓ ଏକାତ୍ମିକତାର ସାଦୃଶ୍ୟ ରହିଛି । ଉଭୟଙ୍କର ପ୍ରକୃତ ସ୍ୱରୂପତା-ବର୍ଜିତ ହୋଇଥିବାରୁ ପରସ୍ପର ପରସ୍ପରକୁ ଚିହ୍ନିପାରିବାର ସୁବିଧା ହୁଏ । ସାଧାରଣ ମନୁଷ୍ୟ ପକ୍ଷରେ ତାହା ସମ୍ଭବ ନୁହେଁ ।

କଲିକତାରେ ହୋଇଥିବା ବିଶେଷ ଅଧିବେଶନ ଦିନ କଂଗ୍ରେସରେ ଗାନ୍ଧି-ଯୁଗ ଆରମ୍ଭ ହେଲା ଏବଂ ସେହି ଦିନଠୁ ଏହା ରହିଛି ।

କେବଳ ୧୯୨୦-୩୦ ମସିହା ଭିତରେ କେତେକ ବର୍ଷ ପର୍ଯ୍ୟନ୍ତ ସେ ପନ୍ଥରେ ଚାଲିଗଲେ ଏବଂ ସେହି ଅବସ୍ଥାରେ ଦେଶବନ୍ଧୁ ସି. ଆର. ଦାସ ଓ ମୋ ପିତାଙ୍କ ନେତୃତ୍ୱରେ ସ୍ୱରାଜ୍ୟ ଦଳ କାର୍ଯ୍ୟ କରୁଥିଲା । କଂଗ୍ରେସର ସମଗ୍ର ଦୃଷ୍ଟିକୋଣ ବଦଳିଗଲା; ସାହେବର ପୋଷାକ ଗଲା, ତା ବଦଳରେ ସମସ୍ତେ ଖଦୀ ପୋଷାକ ପିନ୍ଧିଲେ; ପ୍ରଧାନତଃ ନିମ୍ନମଧ୍ୟବିତ୍ତ ଶ୍ରେଣୀଙ୍କ ପ୍ରତିନିଧି ଆସିଲେ ଏବଂ ନୂତନ କଂଗ୍ରେସବାଲା ଭାବରେ ପରିଚିତ ହେଲେ । ଅଧିକ ଭାବରେ ହିନ୍ଦୁସ୍ଥାନୀ ଭାଷା ପ୍ରଚଳିତ ହେଲା କିମ୍ବା ଯେଉଁ ପ୍ରଦେଶରେ କଂଗ୍ରେସ ଅଧିବେଶନ ହେଉଥିଲା, ପ୍ରତିନିଧିମାନଙ୍କ ଭିତରୁ ଅନେକ ଇଂରାଜୀ ବୁଝିପାରୁ ନ ଥିବାରୁ ସେହି ପ୍ରଦେଶର ଭାଷା ବ୍ୟବହାର ହେଉଥିଲା ଏବଂ ଆମ ଜାତୀୟ କାର୍ଯ୍ୟରେ ବିଦେଶୀ ଭାଷା ବ୍ୟବହାର କରିବା ବିରୁଦ୍ଧରେ ମତ ଥିଲା । କଂଗ୍ରେସ ସଭା ସମିତିରେ ନୂତନ ଜୀବନ, ଉତ୍ସାହ ଓ ନିଷ୍ଠା ଦେଖାଗଲା ।

କଂଗ୍ରେସ ଅଧିବେଶନରେ ଅମୃତ ବଜାର ପତ୍ରିକାର ସୁଯୋଗ୍ୟ ସମ୍ପାଦକ ମୋତିଲାଲ ଘୋଷ ରୋଗଶଯ୍ୟାରେ ପଡ଼ିଥିବାରୁ ତାଙ୍କୁ ଗାନ୍ଧିଜୀ ଦେଖିବାକୁ ଗଲେ । ମୁଁ ତାଙ୍କ ସହିତ ଯାଇଥିଲି । ମୋତିଲାଲ ବାବୁ ଗାନ୍ଧିଜୀ ଏବଂ ତାଙ୍କର ଆନ୍ଦୋଳନକୁ ଆଶୀର୍ବାଦ କଲେ ଏବଂ ସେ କହିଲେ, ସେତ ନିଜେ ଅମରପୁରକୁ ଯାଉଛନ୍ତି । ମାତ୍ର ସେ ଯେଉଁଠିକି ଯାଆନ୍ତୁ ଅଧିକ ସନ୍ତୁଷ୍ଟ ହୋଇ ରହିବେ; କାରଣ ସେଠାରେ ବ୍ରିଟିଶ ସାମ୍ରାଜ୍ୟ ନ ଥିବ; ଅନ୍ତତଃ ସେଠାରେ ବ୍ରିଟିଶ ସାମ୍ରାଜ୍ୟ ପହଞ୍ଚି ପାରିବ ନାହିଁ ।

କଲିକତା କଂଗ୍ରେସ ଅଧିବେଶନରୁ ଫେରିଲାବେଳେ ଗାନ୍ଧିଜୀ ରବୀନ୍ଦ୍ରନାଥ ଠାକୁର ଓ ତାଙ୍କର ବଡ଼ଭାଇ ( ବଡ଼ ଦାଦା )ଙ୍କ ସହିତ ସାକ୍ଷାତ କରିବା ସକାଶେ ଶାନ୍ତିନିକେତନ ଗଲେ । ଆମେ ସେଠାରେ କେତେ ଦିନ ରହିଲୁ ଏବଂ ମୋର ମନେ ଅଛି, ମୋତେ ସି. ଏଫ୍. ଆଣ୍ଡ୍ରୁଜ ସେତେବେଳେ କେତେକ ପୁସ୍ତକ ଦେଇଥିଲେ—ସେଗୁଡ଼ିକ ମୋତେ

ପଢ଼ି ଭଲ ଲାଗିଲା ଏବଂ ମୋ ଉପରେ ଖୁବ୍ ପ୍ରଭାବ ପକାଇଲା । ଅଙ୍ଗ୍ରେଜ ଜାତିର ସାମ୍ରାଜ୍ୟର ଅର୍ଥନୈତିକ ଅବସ୍ଥା ସମ୍ବନ୍ଧରେ ସେଥିରେ ବର୍ଣ୍ଣନା ହୋଇଥିଲା । ସେଥିରୁ ମରେଲଙ୍କ ରଚିତ "ଧଳା ଲୋକର ବୋଝ" (Black mans burden) ବହି ପଢ଼ି ମୁଁ ଅତ୍ୟନ୍ତ ବିଚଳିତ ହୋଇଗଲି ।

ଏହି ସମୟରେ ବା ଟିକିଏ ପରେ ଭାରତର ସ୍ୱାଧୀନତା ବିଷୟ ଉଲ୍ଲେଖ କରି ସି. ଏଫ୍. ଆଣ୍ଡ୍ରୁଜ ଏକ ଲେଖା ଲେଖିଥିଲେ । ମୋର ମନେହୁଏ ଏହାର ନାମ ଥିଲା 'ସ୍ୱାଧୀନତା—ଅତି ଜରୁରୀ ଦରକାର' (Indepenbence-The Immediate Need) । ସେଲିଙ୍କ ଭାରତ ସମ୍ବନ୍ଧରେ କେତେକ ଲେଖା ଉପରେ ଭିତ୍ତି କରି ଏହି ପ୍ରବନ୍ଧଟି ଲେଖା ହୋଇଥିଲା । ଏଥିରେ ସ୍ୱାଧୀନତା ସମ୍ବନ୍ଧରେ ଏକ ଅଖଣ୍ଡନୀୟ ମାନ୍ଧର ସେ ଅବତାରଣା କରିଥିଲେ ଏବଂ ଭାରତୀୟ ମର୍ମକଥା ବ୍ୟକ୍ତ କରିଥିଲେ । ସେ ଅତି ସରଳ ଓ ଆବେଗମୟୀ ଭାଷାରେ ଆମ ହୃଦୟର ଗଭୀର ଆଲୋଚନା ଓ ଆକାଂକ୍ଷା ବ୍ୟକ୍ତ କରିପାରିଥିଲେ । ସେ ଲେଖାଟି ଅର୍ଥନୈତିକ ବା ସାମ୍ୟବାଦ ଦୃଷ୍ଟିରୁ ଲେଖା ହୋଇ ନ ଥିଲା । କେବଳ ଜାତୀୟତା ଦୃଷ୍ଟିରୁ, ଭାରତର ଅପମାନ ବୋଧ ଏବଂ ସେଥିରୁ ମୁକ୍ତ ପାଇବା ନିମନ୍ତେ ତୀବ୍ର ଆକାଂକ୍ଷା ଏବଂ କ୍ରମବର୍ଦ୍ଧିତ ଅଧୋଗତି ଶେଷ କରିବାପାଇଁ ଉଦ୍ୟମ—ଏହି କଥା ବର୍ଣ୍ଣିତ ଥିଲା । ଜଣେ ବିଦେଶୀ ଏବଂ ଭାରତରେ ପ୍ରାଧାନ୍ୟ କରୁଥିବା ଜାତିର ଲୋକ ହୋଇ ସି. ଏଫ୍. ଆଣ୍ଡ୍ରୁଜ ଯେ ଆମ ହୃଦୟର ଭାବ ବ୍ୟକ୍ତ କରିପାରିଛନ୍ତି, ଏହା ଏକ ବିଚିତ୍ର କଥା । ସେଇ ଅନେକଦିନ ପରେ ଲେଖିଥିଲେ, "ବିଦେଶକୁ ତାର ପ୍ରାଧାନ୍ୟ ବଜାୟ ରଖିବାରେ ସାହାଯ୍ୟ କରିବା ରୂପ ଲଜ୍ଜା ଭିତରୁ ଅସହଯୋଗ ଭାବର ଜନ୍ମ" ଏବଂ ଆଣ୍ଡ୍ରୁଜ ଲେଖିଥିଲେ— "ଆଭ୍ୟନ୍ତରୀଣ ଶକ୍ତିକୁ ଜାଗ୍ରତ କରିବାହିଁ ଆତ୍ମମୁକ୍ତିର ଏକମାତ୍ର ପଥ । ଏହି ବିଦ୍ରୋହ ଲାଗି ଆବଶ୍ୟକ ବିକାଶ ଶକ୍ତି ଭାରତର ଆତ୍ମାରେ ଜାତ ହେବା ଦରକାର । ଏହା କାହାରି ଦାନ, ଅନୁଗ୍ରହ, ଅନୁକମ୍ପାରୁ

ାରୀ ଘୋଷଣାରୁ ଆସି ନ ପାରେ । ଏହା ଅଭ୍ୟନ୍ତରରୁ ଆସିବା ଦରକାର···ସୁତରାଂ ଏକ ଅସହ୍ୟ ବୋଝରୁ ମୁକ୍ତ ଯାଇବାଲାଗି ମୁଁ ଅପୂର୍ବ ତୃପ୍ତିର ସହିତ ଏହି ଆଭ୍ୟନ୍ତରୀଣ ବିସ୍ଫୋରଣ ନିମନ୍ତେ ଅପେକ୍ଷା କରିଥିଲି । ଗାନ୍ଧୀ ଯେତେବେଳେ ଭାରତକୁ "ସ୍ୱାଧୀନ ହୁଅ, ଆଉ ଦାସ ହୋଇ ରହ ନାହିଁ" ମନ୍ତ୍ର ଶିଖାଇଲେ, ସେତେବେଳେ ଏହା ବାସ୍ତବରେ ଘଟିଲା— ଭାରତ ସାରା ଜାଗ୍ରତ ହୋଇ ଉଠିଲା । ହଠାତ୍ ଏକ ଆନ୍ଦୋଳନରେ ତାହାର ଶୃଙ୍ଖଳ ଖୋଲା ହୋଇଗଲା ଏବଂ ସ୍ୱାଧୀନତାର ପଥ ଉନ୍ମୁକ୍ତ ହେଲା ।"

ଆଗାମୀ ଛଅମାସ ପର୍ଯ୍ୟନ୍ତ ସାରା ଭାରତରେ ଅସହଯୋଗର ଜୁଆର ବହିଗଲା । ନୂତନ ବ୍ୟବସ୍ଥା ସଭା ବର୍ଜନପାଇଁ ନିବେଦନ ଖୁବ୍ ସଫଳ ହୋଇଥିଲା । ଏହା ସମସ୍ତଙ୍କୁ କାଉନ୍‌ସିଲ ପ୍ରବେଶରୁ ବନ୍ଦ କରିପାରି ନ ଥିଲା କିମ୍ବା ବ୍ୟବସ୍ଥା ସଭାର ସ୍ଥାନ ଖାଲି ପଡ଼ିଲା ନାହିଁ । ମୁଷ୍ଟିମେୟ ଲୋକ ଭୋଟ ଦେଲେ ବି ନିର୍ବାଚନ ହୋଇଗଲା କିମ୍ବା ବିନା ପ୍ରତିଦ୍ୱନ୍ଦ୍ୱିତାରେ ବି ନିର୍ବାଚନ ହୋଇ ପାରିଥିଲା । ମାତ୍ର ଅଧିକସଂଖ୍ୟକ ଲୋକର ଭୋଟ ଦେବାରୁ ନିବୃତ୍ତ ହେଲେ ଏବଂ ଦେଶର ପ୍ରବଳ ବିରୁଦ୍ଧ ଜନମତକୁ ଖାତିର କରୁଥିବା ଲୋକେ ବ୍ୟବସ୍ଥା ସଭାକୁ ପ୍ରାର୍ଥୀ ହେଲେ ନାହିଁ । ସାର୍ ଭାଲେଣ୍ଟାଇନ୍ ଚିରୋଲି ନିର୍ବାଚନ ଦିବସରେ ଏଲାହାବାଦରେ ଥିଲେ ଏବଂ ସେ ନିର୍ବାଚନ ସ୍ଥଳୀସବୁ ଦେଖିବାକୁ ଯାଇଥିଲେ । ବର୍ଜନର ସଫଳତା ଦେଖି ସେ ଚମତ୍କୃତ ହୋଇଥିଲେ । ଏଲାହାବାଦରୁ ୧୫ ମାଇଲ ଦୂରରେ ମଫସଲର ଏକ ଭୋଟ ସ୍ଥଳୀରେ ସେ ଦେଖିଲେ ଯେ, ଜଣେ ହେଲେ ଲୋକର ଭୋଟ ଦେବାକୁ ଆସି ନାହାନ୍ତି । ଭାରତ ସମ୍ବନ୍ଧରେ ରଚିତ ତାଙ୍କର ଏକ ପୁସ୍ତକରେ ସେ ତାଙ୍କର ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି ।

ସି. ଆର. ଦାସ ଓ ଅନ୍ୟମାନେ ଏହି ବର୍ଜନଦ୍ୱାରା କିଛି ଲାଭ ନାହିଁ ବୋଲି କଲିକତାର ଅଧିବେଶନରେ କହୁଥିଲେ; ମାତ୍ର ଶେଷରେ କଂଗ୍ରେସର ନିଷ୍ପତ୍ତିକୁ ସେମାନେ ଗ୍ରହଣ କଲେ । ନିର୍ବାଚନ ଶେଷହେବା

ପରେ ଏହି ମତଭେଦ ଦୂର ହୋଇଗଲା ଏବଂ ୧୯୨୦ ମସିହା ଡିସେମ୍ବର ମାସରେ ନାଗପୁରରେ ହୋଇଥିବା କଂଗ୍ରେସ ଅଧିବେଶନରେ ଅସହଯୋଗ ପ୍ରସ୍ତାବରେ ସମସ୍ତ ପୁରୁଣା କଂଗ୍ରେସ ନେତାମାନେ ଏକମତ ହେଲେ । ଏହି ଆନ୍ଦୋଳନରେ ସଫଳତା ଅନେକ ସନ୍ଦେହୀଙ୍କ ମନରୁ ସନ୍ଦେହ ଦୂର କରିଥିଲା ।

ଯାହାହେଉ କଲିକତା ପରେ କେତେକ ପୁରୁଣା ନେତା କଂଗ୍ରେସରୁ ଅଲଗା ହୋଇଗଲେ ଏବଂ ଏମାନଙ୍କ ଭିତରୁ ଏମ୍. ଏ. ଜିନ୍ନା ହେଉଛନ୍ତି ବେଶ ଜଣାଶୁଣା ଓ ଲୋକପ୍ରିୟ । ସରୋଜିନୀ ନାଇଡୁ ତାଙ୍କୁ "ହିନ୍ଦୁ ମୁସଲମାନ ଏକତାର ଦୂତ" ବୋଲି କହିଥିଲେ ଏବଂ ତାଙ୍କରି ଯୋଗୁଁ ମୁସଲିମ ଲିଗ୍ ଅନେକ ପରିମାଣରେ କଂଗ୍ରେସ ସହିତ ମିଳିମିଶି ଚାଲୁଥିଲା । ମାତ୍ର କଂଗ୍ରେସରେ ଘଟିଥିବା ନୂତନ କଥା—ଅସହଯୋଗ ଓ ନୂତନ ଶାସନବିଧାନ, ଯାହା ଫଳରେ କଂଗ୍ରେସ ଜନସାଧାରଣଙ୍କର ଏକ ଲୋକପ୍ରିୟ ଅନୁଷ୍ଠାନ ହୋଇ ପଡ଼ିଲା—ସେ ତାକୁ ବହୁ ନାପସନ୍ଦ କଲେ । ସେ ରାଜନୀତି ଦୃଷ୍ଟିରୁ ଅସମ୍ମତ ହେଲେ; ମାତ୍ର ମୁଖ୍ୟ ଭାବରେ କେବଳ ରାଜନୀତି ଯୋଗୁଁ ସେ ଅଲଗା ହୋଇ ନ ଥିଲେ । କଂଗ୍ରେସରେ ତାଙ୍କ ଅପେକ୍ଷା ରାଜନୀତିରେ କମ୍ ପ୍ରଗତିପନ୍ଥୀ ଲୋକ ବି ଥିଲେ । ମାତ୍ର ନୂତନ କଂଗ୍ରେସ ସହିତ ତାଙ୍କର ପ୍ରକୃତିଗତ ଏକତା ସମ୍ଭବ ହେଲାନାହିଁ । ଜନତା ଖଦଡ଼ ପିନ୍ଧି ହିନ୍ଦୁସ୍ଥାନୀରେ ବକ୍ତୃତା କରିବା ନିମନ୍ତେ ଦାବୀ କରିବାଟା ସେ ସହ୍ୟ କରି ପାରିଲେ ନାହିଁ । ଲୋକଙ୍କ ଉତ୍ସାହକୁ ସେ ଜନତାର ପାଗଳାମି ବୋଲି ମନେ କଲେ । ସାଭିଲ ରୋ ଓ ବଣ୍ଡଷ୍ଟ୍ରିଟ ସହିତ ଭାରତୀୟ ଗ୍ରାମର ପର୍ଣ୍ଣକୁଟୀରର ପାର୍ଥକ୍ୟ ପରି ତାଙ୍କ ଭିତରେ ଓ ଭାରତୀୟ ଜନସାଧାରଣଙ୍କ ଭିତରେ ପ୍ରଭେଦ ଥିଲା । ସେ ଥରେ ଘରୋଇ ଭାବରେ ପରାମର୍ଶ ଦେଇଥିଲେ ଯେ, କେବଳ ମାଟ୍ରିକୁଲେସନ ପାସ କରିଥିବା ଲୋକ କଂଗ୍ରେସରେ ଗ୍ରହଣ କରିବା ଉଚିତ । ମୁଁ ଜାଣେ ନା, ଏହି ମତ ସେ ନିଷ୍ଠାର ସହିତ କରିଥିଲେ କି ନା; ମାତ୍ର ତାହା ତାଙ୍କର ସାଧାରଣ ଦୃଷ୍ଟିକୋଣ ସହିତ ଖାପ ଖାଉଥିଲା । ତେଣୁ ସେ କଂଗ୍ରେସରୁ

ଖସିଗଲେ ଏବଂ ଭାରତ ରାଜନୀତିରେ ଜଣେ ନିଃସଙ୍ଗ ରାଜନୀତିକ ରୂପେ ରହିଲେ । ଅତି ଦୁଃଖର କଥା, ଏକତାର ଏହି ପୁରାତନ ଦୂତ ପରେ ଦେଶର ପ୍ରତିକ୍ରିୟା ପନ୍ଥୀ ମୁସଲମାନ ସାମ୍ପ୍ରଦାୟିକତାବାଦୀଙ୍କ ସହ ଯୋଗ ଦେଇଥିଲେ ।

ଅବଶ୍ୟ ମଡରେଟ ବା ଲିବରାଲମାନଙ୍କର କଂଗ୍ରେସ ସହିତ କିଛି ସମ୍ପର୍କ ନ ଥିଲା । ସେମାନେ ଯେ ଏଥିରୁ ଅଲଗା ରହିଲେ ତାହା ନୁହେଁ, ସେମାନେ ସରକାର ସହିତ ମିଶିଗଲେ, ନୂତନ ଶାସନ ବିଧାନରେ ମନ୍ତ୍ରୀ ଓ ବଡ଼ ବଡ଼ ଅଫିସର ହେଲେ ଏବଂ କଂଗ୍ରେସ ଓ ଅସହଯୋଗ ବିରୁଦ୍ଧରେ ସରକାରଙ୍କୁ ସାହାଯ୍ୟ କଲେ । ସେମାନଙ୍କର ଆକାଙ୍କ୍ଷା ପୂର୍ଣ୍ଣ ହୋଇଥିଲା, କେତେକ ସଂସ୍କାର ଆସିଲା, ସୁତରାଂ ଆଉ ଆନ୍ଦୋଳନ କରିବା ଦରକାର ନାହିଁ । ସାରା ଦେଶ ଉତ୍ସାହରେ ଝୁଲୁଥିଲା ବେଳେ ଏବଂ ଅଧିକରୁ ଅଧିକ ବିଦ୍ରୋହୀ ହୋଇ ଉଠୁଥିଲା ବେଳେ, ଏମାନେ ପୁରସ୍କାର ରୂପେ ସରକାରର ଏକ ଅଙ୍ଗ ହେଲେ ଏବଂ ପରିବର୍ତ୍ତନ ବିରୋଧୀ ହୋଇଗଲେ । ସେମାନେ ଲୋକଙ୍କଠାରୁ ସମ୍ପୂର୍ଣ୍ଣ ସମ୍ପର୍କ ତୁଟାଇ ଅଲଗା ହୋଇଗଲେ ଏବଂ ସେହିଦିନଠାରୁ ସମସ୍ୟାଗୁଡ଼ିକୁ ସରକାରୀ ଦୃଷ୍ଟିରୁ ଆଲୋଚନା କରିବାର ଭାବ ଆଜିଯାଏ ଏମାନଙ୍କ ଭିତରେ ରହିଯାଇଛି । ପ୍ରକୃତରେ ଦେଖିବାକୁ ଗଲେ ସେମାନଙ୍କର ଆଉ କୌଣସି ଦଳ ନ ଥିଲା । କେବଳ କେତେକ ବଡ଼ ସହରରେ ଅଳ୍ପସଂଖ୍ୟକ ବ୍ୟକ୍ତିବିଶେଷ ହୋଇ ରହିଲେ । ଶ୍ରୀନିବାସ ଶାସ୍ତ୍ରୀ ବ୍ରିଟିଶ ଗଭର୍ଣ୍ଣମେଣ୍ଟର ନିର୍ଦ୍ଦେଶମତେ ସାମ୍ରାଜ୍ୟବାଦୀ ପ୍ରତିନିଧିରୂପେ ବ୍ରିଟିଶ ଡୋମିନିୟନ ଏବଂ ଆମେରିକାକୁ ଯାଇ ସରକାର ବିରୁଦ୍ଧରେ ଲଢ଼ୁଥିବା ହେତୁ କଂଗ୍ରେସ ଓ ତାଙ୍କ ନିଜ ଦେଶବାସୀଙ୍କୁ ତୀବ୍ର ସମାଲୋଚନା କରି ବୁଲିଲେ ।

ଏହା ସତ୍ତ୍ୱେ ଲିବରାଲମାନେ ଯେ ସନ୍ତୁଷ୍ଟ ଥିଲେ, ତାହା ନୁହେଁ । ନିଜ ଲୋକଙ୍କଠାରୁ ବିଚ୍ଛିନ୍ନ ହେବା ଏବଂ ଜଣେ ନ ଦେଖୁ ଓ ନ ଶୁଣୁ ଅନ୍ତକେ ଗୋଟାଏ ବିରୋଧ ସବୁବେଳେ ଜଣଙ୍କ ବିରୁଦ୍ଧରେ ରହୁଥିବା

କିଛୁ ତୃପ୍ତ କରି ନାହିଁ । ଗଣଆନ୍ଦୋଳନ ସଶସ୍ତ୍ରାତ୍ମକମାନଙ୍କ ପ୍ରତି ଦୟାଭାବ ଦେଖାଏ ନାହିଁ । ଅବଶ୍ୟ ଗାନ୍ଧିଜୀଙ୍କର ବାରମ୍ବାର ସତର୍କବାଣୀ ହେତୁ ବିରୋଧୀମାନଙ୍କ ପ୍ରତି ଯେପରି ମନୋଭାବ ଦେଖାଇବାର କଥା, ତାହା ଅପେକ୍ଷା ଅଧିକ ଭଦ୍ର ଓ ନମ୍ରଭାବ ଲୋକେ ଦେଖାଉଥିଲେ । ତଥାପି ଯେଉଁମାନେ ଆନ୍ଦୋଳନର ବିରୋଧ କରୁଥିଲେ, ସେମାନଙ୍କ ଚାରିପଟରେ ବାୟୁମଣ୍ଡଳ ତୀବ୍ର ହୋଇ ଉଠିଲା ଏବଂ ସେହିପରି ଯେଉଁମାନେ ଏହାକୁ ସମର୍ଥନ କରୁଥିଲେ, ସେମାନଙ୍କ ହୃଦୟରେ ନୂତନ ଜୀବନ ଓ ଶକ୍ତିର ସଞ୍ଚାର ହେଲା । ଗଣବିରୋଧ ଏବଂ ବିପ୍ଳବୀ ଆନ୍ଦୋଳନମାନଙ୍କରେ ସର୍ବଦା ଏହିପରି ଦୁଇ ପ୍ରକାର ଫଳ ହୁଏ । ଯେଉଁ ଲୋକେ ଜନସାଧାରଣଙ୍କ ବିରୁଦ୍ଧ ଥାଆନ୍ତି ବା ତାଙ୍କୁ ସମର୍ଥନ କରୁଥାଆନ୍ତି, ସେମାନଙ୍କ ବ୍ୟକ୍ତିତ୍ୱ ଏଥିରେ ଫୁଟି ଉଠେ ଓ ସେମାନେ ଉତ୍ସାହିତ ହୁଅନ୍ତି ଏବଂ ତାହା ସଙ୍ଗେ ସଙ୍ଗେ ବିରୋଧୀମାନଙ୍କର ମାନସିକ ଚିନ୍ତା ନିସ୍ତେଜ ହୋଇଯାଏ ।

ଏହି କାରଣରୁ କେତେ ଲୋକ ଆପତ୍ତି କରନ୍ତି ଯେ, ଅସହଯୋଗ ଆନ୍ଦୋଳନ ବଡ ଅସହିଷ୍ଣୁ ଏବଂ ସମସ୍ତ ମତ ଓ କାର୍ଯ୍ୟକୁ ଲୋପ କରି ଏକ ପ୍ରାଣହୀନ ସାମଞ୍ଜସ୍ୟ ଜାତ କରାଏ । ଏହି ଅଭିଯୋଗରେ ସତ୍ୟତା ଅଛି ଏବଂ ସେହି ସତ୍ୟ ହେଉଛି ଯେ, ଅସହଯୋଗ ଏକ ଗଣ ଆନ୍ଦୋଳନ ଏବଂ ଏହା ଏକ ପ୍ରଖର ବ୍ୟକ୍ତିର ନେତୃତ୍ୱରେ ଚାଲିଥିଲା । ସେ ବ୍ୟକ୍ତି ଭାରତର ଲକ୍ଷ ଲକ୍ଷ ଜନସାଧାରଣଙ୍କ ଭିତରେ ପ୍ରବଳ ଉତ୍ସାହ ଆଣି ଦେଇଥିଲା । ଆଉ ଏକ ଜୀବନ୍ତ ସତ୍ୟ ହେଉଛି, ଜନସାଧାରଣଙ୍କ ଉପରେ ଏହାର ପ୍ରଭାବ । ଲୋକଙ୍କ ମନରେ ମୁକ୍ତିର ଏକ ଅଦ୍ଭୁତ ପ୍ରେରଣା ଏବଂ ସ୍ୱାଧୀନତାର ନୂତନ ଆକାଙ୍କ୍ଷା ଜାଗ୍ରତ ହେଲା । ସେମାନଙ୍କ ମୁଣ୍ଡରୁ ଏକ ଶକ୍ତ ବୋଝ ଖସିଗଲା ବୋଲି ସେ ବୋଧ କଲେ । ଯେଉଁ ଭୟରେ ସେମାନେ ଧ୍ୱଂସ ପାଉଥିଲେ, ତାହା ଦୂର ହୋଇଗଲା ଏବଂ ସେମାନେ ତାଙ୍କର ମେରୁଦଣ୍ଡ ସିଧା କରି ମୁଣ୍ଡ ଟେକିଲେ । ଏପରି କି ହାଟ ମୁଦୁର ବଜାରମାନଙ୍କରେ ସୁଦ୍ଧା କଂଗ୍ରେସ ଓ ସ୍ୱରାଜ

ବିଷୟ ଆଲୋଚନା କଲେ (ନାଗପୁର କଂଗ୍ରେସରେ 'ସ୍ୱରାଜ୍ୟ' କଂଗ୍ରେସର ଲକ୍ଷ୍ୟ ବୋଲି ଗୃହୀତ ହୋଇଥିଲା) । ପଞ୍ଜାବ ଅତ୍ୟାଚାର ଓ ଖିଲାଫତ୍ ସମ୍ବନ୍ଧେ ଚର୍ଚ୍ଚା ଚାଲିଲା । ମାତ୍ର ମଫସଲ ଅଞ୍ଚଳରେ "ଖିଲାଫତ୍" ଶବ୍ଦର ଏକ ଅଦ୍ଭୁତ ଅର୍ଥ କରୁଥାନ୍ତି । ଲୋକେ ଭାବୁଥିଲେ ଏହା ଉର୍ଦ୍ଦୁ ଶବ୍ଦ "ଖିଲାଫ"ରୁ ଆସିଛି ; ଖିଲାଫର ଅର୍ଥ ବିରୋଧ । ସୁତରାଂ ସେମାନେ ଏହାର ଅର୍ଥ ସରକାରର ବିରୋଧ ବୋଲି ମନେ କରୁଥିଲେ । ଅବଶ୍ୟ ସେମାନେ ନିଜର ଅର୍ଥନୈତିକ ଆପତ୍ତି ସବୁ ଆଲୋଚନା କରୁଥାନ୍ତି । ଅସଂଖ୍ୟ ସଭା ସମ୍ମିଳନୀଦ୍ୱାରା ସେମାନଙ୍କର ରାଜନୈତିକ ଶିକ୍ଷା ବଢ଼ିଲା ।

ଆମ ଭଳି ଯେଉଁମାନେ କଂଗ୍ରେସ କାର୍ଯ୍ୟପନ୍ଥା କାର୍ଯ୍ୟକାରୀ କରୁଥିଲୁଁ ଆମକୁ ୧୯୨୦ ରେ ଏକ ପ୍ରକାର ନିଶା ଧରିଥିଲା । ଆମ ଭିତରେ ଉତ୍ସାହ, ଆଶା ଓ ଅତ୍ୟଧିକ ଆଗ୍ରହ ଭରିଥିଲା । ଆମେ ଏକ ମହତ୍ ଉଦ୍ଦେଶ୍ୟ ନିମନ୍ତେ ଆତ୍ମସମର୍ପଣ କରୁଥିବା ପରି ସୁଖ ଅନୁଭବ କରୁଥିଲୁ । କୌଣସି ସନ୍ଦେହ ବା ଦ୍ୱିଧାଭାବ ଆମକୁ ଘାରି ନ ଥିଲା; ଆମ ସମ୍ମୁଖରେ ଆମର ପଥ ଆଗକୁ ପରିଷ୍କାର ଦେଖାଯାଉଥାଏ ଏବଂ ଅନ୍ୟମାନଙ୍କ ଉତ୍ସାହରେ ପ୍ରେରଣା ପାଇ ଏବଂ ଅନ୍ୟମାନଙ୍କୁ ଉତ୍ସାହିତ କରି ଆମେ ଅଗ୍ରସର ହେବାକୁ ଲାଗିଲୁ । ଆମେ କଠିନ ଭାବରେ ପରିଶ୍ରମ କଲୁ— ପୂର୍ବେ ଏପରି କେବେ ପରିଶ୍ରମ କରି ନଥିଲୁ, କାରଣ ମୁଁ ବୁଝିପାରୁଥିଲି ସରକାର ସହିତ ଶୀଘ୍ର ସଂଘର୍ଷ ହେବ ଏବଂ ଆମେ ଗିରଫ ହେବା ପୂର୍ବରୁ ଯେତେ ସମ୍ଭବ ସେତେ କାର୍ଯ୍ୟ କରିଯିବା ଦରକାର ।

ସର୍ବୋପରି ଆମ ମନରେ ସ୍ୱାଧୀନତା ଓ ସେ ସ୍ୱାଧୀନତାରେ ଏକ ଆତ୍ମଗରିମା ଭାବ ଥିଲା । ପୁରୁଣା ଉତ୍ପୀଡ଼ନ ବା ହତାଶ ଭାବ ଦୂରୀଭୂତ ହୋଇଥିଲା । ଫୁସଫାସ କରି କଥା କହିବା ଏବଂ କାଳେ ବିପଦରେ ପଡ଼ିବୁ ବୋଲି ଭୁଲେଇ ଚୁଲେଇ ଆଇନ କାଇଦାରେ କଥା କହିବା ଛାଡ଼ିଲୁ । ଆମେ ଯାହା ଅନୁଭବ କରୁଥିଲୁ, ତାହା କହିଲୁ ଏବଂ ଗଡ଼ ଗିଡ଼

ସ୍ଥାନରୁ ଘୋଷଣା କଲୁ । ଏହାର ଫଳାଫଳକୁ କିଏ ଖାତିର କରୁଛୁ ? କେଳ ହେବ ? ଆମେ ତାକୁ ସାଦରେ ଗୃହି ବସିଥାଉ; ଏତଦ୍ୱାରା ଆମର ଉଦ୍ଦେଶ୍ୟ ସିଦ୍ଧିରେ ଅଦ୍ଭୁତ ସାହାଯ୍ୟ ହେବ । ଯେଉଁସବୁ ଅସଂଖ୍ୟ ଗୁପ୍ତଚର ଓ ଗୁପ୍ତଦଳର ଲୋକେ ଆମ ପଛରେ ଲାଗିଥିଲେ, ସେମାନେ ଦନ୍ତାର ପାଦ ହୋଇଗଲେ; କାରଣ ଆମ ପାଖରେ ଗୁପ୍ତ କିଛି ନଥିଲା ଯେ, ସେ ଖୋଜି ବାହାର କରନ୍ତେ । ଆମେ ଆମର ସମସ୍ତ କଥା ପ୍ରକାଶ୍ୟରେ କରୁଥିଲୁ ।

ଆମର ରାଜନୀତିକ କାର୍ଯ୍ୟଦ୍ୱାରା ଆମ ଆଖି ଆଗରେ ଭିତରର ଅପୂର୍ବ ପରିବର୍ତ୍ତନ ଦେଖି ଆମେ ସନ୍ତୁଷ୍ଟ ହେଉଥିଲୁ ଏବଂ ସ୍ୱାଧୀନତା ଖୁବ୍ ନିକଟ ହୋଇଗଲାଣି ବୋଲି ବୋଧ କରୁଥିଲୁ । ଆମର ଲକ୍ଷ୍ୟ ଓ ଉପାୟ ଆମ ଶତ୍ରୁଙ୍କଠାରୁ ଉନ୍ନତ ଧରଣର ଥିଲା ବୋଲି ଏକ ପ୍ରକାର ଲୁବ ଲାଗୁଥିଲା । ଆମର ନେତା ଯେଉଁ ନୂତନ ଉପାୟ ବାହାର କଲେ, ମନରେ ସେଥିଲାଗି ତାଙ୍କ ପାଇଁ ଆମେ ଗର୍ବ ଅନୁଭବ କଲୁ ଏବଂ ଅନେକ ସମୟରେ ଏହି ଗର୍ବ ଆମକୁ ଧର୍ମ ଉନ୍ମାଦନାରେ ଭର୍ତ୍ତି କରେ । ଆମେ ନିଜେ ଚାରିଆଡ଼େ ସଂଘର୍ଷ ସୃଷ୍ଟି କରିଥିଲେ ସୁଦ୍ଧା ସେହି ସଂଘର୍ଷ ଭିତରେ ହିଁ ଏକ ଅପୂର୍ବ ଶାନ୍ତି ବୋଧ କରୁଥିଲୁ ।

ଆମର ନୈତିକ ଶକ୍ତିର ବୃଦ୍ଧି ସଙ୍ଗେ ସଙ୍ଗେ ସରକାରର ଶକ୍ତି ହ୍ରାସ ହେଲା । କଣ ଘଟୁଛି ସେମାନେ ବୁଝିପାରୁ ନଥିଲେ, ପୁରାତନ ଭିତ୍ତି ଓଲଟି ପଡ଼ୁଛି ବୋଲି ସେମାନେ ମନେ କରୁଥିଲେ । ଚାରିଆଡ଼େ ଏକ ନୂତନ ଆକ୍ରମଣ କରିବାର ଭାବ, ଆତ୍ମବିଶ୍ୱାସ ଓ ନିର୍ଭୟ ଭାବ ଦେଖାଗଲା ଏବଂ ବ୍ରିଟିଶ ଶାସନର ପ୍ରଧାନ ସ୍ତମ୍ଭ—ସମ୍ମାନ ଯେପରି କି ଭୁଷୁଡ଼ି ପଡ଼ିଲା । ଅଳ୍ପ ବହୁତ ଅତ୍ୟାଚାରଦ୍ୱାରା ଆନ୍ଦୋଳନ ଅଧିକ ଶକ୍ତିଶାଳୀ ହେଲା ଏବଂ ବଡ଼ ବଡ଼ ନେତାଙ୍କ ବିରୁଦ୍ଧରେ ଶାସ୍ତି ବିଧାନ କରିବା ଲାଗି ସରକାରଙ୍କୁ ଅନେକ ଦିନ ପର୍ଯ୍ୟନ୍ତ ଚିନ୍ତା କରିବାକୁ ପଡ଼ିଲା । ଏହାର ଫଳାଫଳ କଣ ହେବ ସରକାର ଜାଣି ନଥିଲା । ଭାରତୀୟ ସୈନ୍ୟମାନେ

କଣ ବିଶ୍ୱାସଯୋଗ୍ୟ ? ପୁଲିସ କଣ ସରକାର ହୁକୁମ ତାମିଲ କରିବ ? ୧୯୨୧ ଡିସେମ୍ବର ମାସରେ ଲର୍ଡ ରିଡ଼ିଂଙ୍କ କହିବା ଅନୁସାରେ ସେମାନେ "ହତବୁଦ୍ଧି ଓ କିଂକର୍ତ୍ତବ୍ୟ ବିମୂଢ଼" ହୋଇ ଯାଇଥିଲେ ।

୧୯୨୧ ମସିହା ଗ୍ରୀଷ୍ମକାଳରେ ଯୁକ୍ତପ୍ରଦେଶ ସରକାର ଜିଲ୍ଲା ଅଫିସରମାନଙ୍କ ନିକଟକୁ ଗୁପ୍ତ ଭାବରେ ବଡ଼ କୌତୁକପୂର୍ଣ୍ଣ ଇସ୍ତାହାର ପଠାଇଥିଲେ । ଏହି ଇସ୍ତାହାରଟି ପରେ ଏକ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା । ସେଥିରେ ଲେଖା ଥିଲା ଯେ, "ଶତ୍ରୁ" ଅର୍ଥାତ୍ କଂଗ୍ରେସ ସର୍ବଦା "ଅଗ୍ରଭାଗ" ମାଡ଼ି ବସିଛନ୍ତି ଜାଣି ସରକାର ଦୁଃଖିତ ଏବଂ ଏଥିରେ ଅତି ଅସୁବିଧା ଅବସ୍ଥା ଜାତ ହୋଇଛି । ତେଣୁ ସରକାର ତରଫରୁ କିପରି ଅଗ୍ରଭାଗ ସବୁ କାର୍ଯ୍ୟ ହେବ, ସେଥିରେ କେତେକ ପରାମର୍ଶ ଦିଆଯାଇ ଥିଲା । "ଅମନ୍ ସଭା" ନାମକ ଗୋଟାଏ ହାସ୍ୟକର ସମିତି ଗଠନ ମଧ୍ୟ ସେଥି ସହିତ ଥିଲା । ପରେ ଶୁଣାଗଲା ଯେ, କୌଣସି ଲିବରାଲ ମନ୍ତ୍ରୀଙ୍କ ପରାମର୍ଶ ମତେ ଅସହଯୋଗ ଦମନ ପାଇଁ ଏହି ଉପାୟ ଅବଲମ୍ବନ କରା ହୋଇଥିଲା ।

ଅନେକ ବ୍ରିଟିଶ ଅଫିସରଙ୍କର ହୃତ୍‌କମ୍ପ ହେଲା । ସେମାନଙ୍କ ଉପରେ ଅତ୍ୟଧିକ ଚାପ ହେଲା । କ୍ରମବର୍ଦ୍ଧିଷ୍ଣୁ କ୍ରୋଧ ଏବଂ ଅମାନ୍ୟର ଭାବ ଯେପରି ବର୍ଷାକାଳ ମେଘପରି ସରକାରଙ୍କ ମନରେ ଆଚ୍ଛାଦିତ ହୋଇଗଲା; ତଥାପି ଶାନ୍ତିପୂର୍ଣ୍ଣ ଉପାୟ ହେତୁ ଏହାକୁ ଜବରଦସ୍ତ ଦବାଇବା ନିମନ୍ତେ ସେମାନେ କୌଣସି ସୁଯୋଗ ଓ ସୁବିଧା ପାଇ ନ ଥିଲେ । ସାଧାରଣ ଇଂରେଜ ଲୋକ ଅହିଂସାର ନିଷ୍କାଚରଣରେ ବିଶ୍ୱାସ କରୁ ନ ଥିଲେ; ସେମାନେ ଭାବୁଥିଲେ ଏହା ଏକ ଛଳନା, ଦିନେ ଏହା ଏକ ବିରାଟ ହିଂସାତ୍ମକ ବିପ୍ଳବ କରିବା ନିମନ୍ତେ ଗୁପ୍ତ ସଞ୍ଚାଳିତ ଷଡ଼ଯନ୍ତ୍ର ଭୂପକ ଆବରଣ । ପ୍ରାଚ୍ୟଖଣ୍ଡ ଏକ ରହସ୍ୟମୟ ସ୍ଥାନ ବୋଲି ଭିକ୍ଟୋରିଆଙ୍କ ଇଂରେଜମାନଙ୍କ ମନରେ ବଦ୍ଧମୂଳ ଧାରଣା ହୋଇଥାଏ । ସେମାନେ ଭାବୁଥିଲେ, ଭାରତର ବଜାର ଓ ସଙ୍କୀର୍ଣ୍ଣ ଗଳିମାନଙ୍କରେ କେଜାଣି

କେତେ ଗୁପ୍ତ ଷଡ଼ଯନ୍ତ୍ର ଚାଲିଛି, ଏହି ରହସ୍ୟଜନକ ସ୍ଥାନରେ ଯେ ସବୁ କଥା ସାଧାସିଧା ଭାବରେ ଚାଲିଛି, ତାହା କୌଣସି ଇଂରେଜ ଲୋକ ପ୍ରାୟ କଳ୍ପନା କରିପାରେ ନା । ପ୍ରାଚ୍ୟବାସୀ ଯେ ଅତି ସାଧାରଣ ଏବଂ ରହସ୍ୟହୀନ ଲୋକ ଏହା ଜାଣିବା ନିମନ୍ତେ ସେ ଚେଷ୍ଟା ସୁଦ୍ଧା କରେ ନା । ସେ ତାଙ୍କଠାରୁ ନିଜକୁ ଅଲଗା ରଖନ୍ତି ଏବଂ ଗୁମ୍ଫରର ଗୁପ୍ତସମ୍ବାଦ ପାଇ ସବୁ ପଡ଼ ତାହା ମନରେ ଅଦ୍ଭୁତ ଧାରଣା ଜନ୍ମେ ଓ ସେ ଆତଙ୍କିତ ହୋଇଯାଏ । ୧୯୧୯ ମସିହା ଏପ୍ରିଲର ପ୍ରଥମ ଭାଗରେ ଶାସକମାନଙ୍କୁ ହଠାତ୍ ଏ ଭୟ ଘାରିଥିଲା । ସାଧାରଣତଃ ଇଂରେଜ ଲୋକେ ପ୍ରତ୍ୟେକ ସ୍ଥାନରେ ବିପଦ ଥିବାର ଅନୁମାନ କଲେ, ଗୃହଯୁଦ୍ଧ ବିଦ୍ରୋହ ହେବ; ପୁଣି ଥରେ ସିପାହୀ ବିଦ୍ରୋହ ପରି ଘଟଣା ହୋଇ ଲୋକହତ୍ୟା ଚାଲିବ, ଏଥିରୁ କୌଣସି ପ୍ରକାରେ ଆତ୍ମରକ୍ଷା ନିମନ୍ତେ ସେମାନେ ଅନ୍ଧ ଓ ଜ୍ଞାନ ଶୂନ୍ୟ ହୋଇ ଉଠିଲେ । ଜାଲିଆନାୱାଲା ଓ ଅମୃତସରରେ ପେଟରେ ଘୁଷୁରିବା ଗଳିଟି ଏହି ଚିହ୍ନସ୍ୱରୂପ ରହିଅଛି ।

୧୯୨୧ ମସିହାରେ ଖୁବ୍ ଅଶାନ୍ତି ସୃଷ୍ଟି ହୋଇଥିଲା ଏବଂ ସରକାରୀ ଅଫିସରମାନଙ୍କୁ ଆତଙ୍କିତ, ବିରକ୍ତ ଓ ଉତ୍ତ୍ୟକ୍ତ କରିବା ଭଳି ଅନେକ ଜିନିଷ ଥିଲା । କାର୍ଯ୍ୟରେ ଯାହା ଘଟିଥିଲା, ତାହା ତ ତାଙ୍କ ମତରେ ମନ୍ଦ ଥିଲା, କିନ୍ତୁ ସେମାନେ ସେମାନଙ୍କ ଯାହା କଳ୍ପନା ଚକ୍ଷୁରେ ଦେଖିଥିଲେ, ତାହା ଆହୁରି ମନ୍ଦ ବୋଧ ହେଉଥିଲା । ସେମାନଙ୍କର ହଇଚଇ କଲାର ଏହି ଉଦାହରଣ ମୋର ମନେ ଅଛି । ସାଧାରଣ ବୋଧ ଉଦ୍ଦେଶ୍ୟରେ ପଞ୍ଜିକା ଆଦି ଗଣନା କରି ଏକ ଶୁଭଦିନ ସ୍ଥିର୍ ହୁଏ ଏବଂ ସେହି ଅନୁସାରେ ମୋର ଭଉଣୀ ସ୍ୱରୂପର ବିବାହ ଉତ୍ସବ ୧୯୨୧ ମସିହା ମେ ମାସ ତା୧୦ରିଖରେ ହେବା ନିମନ୍ତେ ନିର୍ଦ୍ଧିଷ୍ଟ ହୋଇଥିଲା । ଗାନ୍ଧିଜୀ ଆଦି ଉକ୍ତ ଉତ୍ସବ ଏବଂ ଆହୁରି ଅନେକ ନେତୃସ୍ଥାନୀୟ କଂଗ୍ରେସ ଲୋକଙ୍କୁ ନିମନ୍ତ୍ରଣ କରାଯାଇଥିଲା ଏବଂ ସେମାନଙ୍କର ସୁବିଧା ଲାଗି କଂଗ୍ରେସ କାର୍ଯ୍ୟକାରୀ ସମିତିର ଏକ ବୈଠକ ମଧ୍ୟ ସେହି ସମୟରେ ଏଲାହାବାଦରେ ହେବା ନିମନ୍ତେ ସ୍ଥିର୍ ହୋଇଥିଲା । ବଡ଼ ବଡ଼ ନେତାଙ୍କର ଉପସ୍ଥିତିର

ସୁବିଧା ସ୍ଥାନୀୟ କଂଗ୍ରେସ ଲୋକେ ଉଠାଇବାକୁ ଚାହିଁଥିଲେ । ତେଣୁ ସେମାନେ ଏକ ବଡ଼ ଧରଣର ଜିଲ୍ଲା ସମ୍ମିଳନୀର ଆୟୋଜନ କଲେ ଏବଂ ନିକଟବର୍ତ୍ତୀ ଅଞ୍ଚଳରୁ ବହୁସଂଖ୍ୟକ କୃଷକ ସେଥିରେ ଯୋଗ ଦେବେ ବୋଲି ଆଶା କରୁଥିଲେ ।

ଏହି ସବୁ ଘଟଣାଠାରୁ ୫୯ ବର୍ଷ ପୂର୍ବେ ଏଲ୍ଲାହାବାଦରେ ଅତ୍ୟଧିକ ଉତ୍ସାହ ଓ ଉନ୍ମାଦନା ଖେଳିଥିଲା । ଏଥିରେ କେତେକ ଲୋକଙ୍କର ହୃତ୍‌କମ୍ପ ଘଟିଲା । ମୁଁ ଦିନେ ମୋର ଏକ ବାନ୍ଧବୀଙ୍କର ବନ୍ଧୁଙ୍କଠାରୁ ଶୁଣିଲି ଯେ, ଅନେକ ଇଂରେଜ ବଡ଼ ବ୍ୟସ୍ତ ହୋଇ ଯାଇଛନ୍ତି ଏବଂ ସହରରେ ହଠାତ୍ ଏକ ବିଦ୍ରୋହ ହୋଇପାରେ ବୋଲି ସେମାନେ ଆଶଙ୍କା କରୁଛନ୍ତି । ସେମାନେ ନିଜର ଭାରତୀୟ ଚାକରମାନଙ୍କୁ ଅବିଶ୍ୱାସ କରୁଛନ୍ତି ଏବଂ ନିଜ ପକେଟରେ ବନ୍ଧୁକ ଧରି ବୁଲୁଛନ୍ତି । ଏଲ୍ଲାହାବାଦ ଫୋର୍ଟକୁ ମଧ୍ୟ ପ୍ରସ୍ତୁତ ରହିବା ଲାଗି ଗୁପ୍ତଭାବରେ କୁହାଯାଇ ଥିଲା ଏବଂ ଦରକାର ପଡ଼ିଲେ ସେମାନେ ଇଂରେଜମାନେ ବାସ କରୁଥିବା ଅଞ୍ଚଳକୁ ଚାଲି ଆସିବା ନିମନ୍ତେ ପ୍ରସ୍ତୁତ ହୋଇ ରହିଲେ । ମୁଁ ବଡ଼ ବିସ୍ମିତ ହେଲି ଏବଂ ଏଲ୍ଲାହାବାଦର ଏକ ସୁନ୍ଦର ଓ ନିଶ୍ଚଳ ସହରରେ ବିଶେଷତଃ ଯେତେବେଳେ ଅହିଂସାର ଦୂତ ସେଠାକୁ ଆସୁଛନ୍ତି, ସେତେ-ବେଳେ ଏପରି ଏକ ବିଦ୍ରୋହର ସମ୍ଭାବନା କିପରି କାହା ମନରେ ହେଉଛି, ମୁଁ କଳ୍ପନା କରିପାରିଲି ନାହିଁ । ୧୦ ତାରିଖ (ଘଟଣାକ୍ରମେ ମୋ ଭଉଣୀର ବିବାହ, ଏହି ଦିନକୁ ନିର୍ଦ୍ଦିଷ୍ଟ ହୋଇଥିଲା ) ହେଉଛି ୧୮୫୭ ରେ ମିରଟରେ ହେଉଥିବା ବିଦ୍ରୋହ ଦିବସ ଏବଂ ଏହା ଏଠାରେ ପାଳିତ ହେବାକୁ ଯାଉଛି ବୋଲି କଳ୍ପନା କରି ଇଂରେଜମାନେ ଏତେ ସବୁ ବ୍ୟସ୍ତ ହୋଇ ପଡ଼ିଥିଲେ ।

୧୯୨୧ ରେ ଖିଲାଫତ୍ ଆନ୍ଦୋଳନ ପ୍ରତି ବିଶେଷ ବୃଦ୍ଧି ଦେବା ହେତୁ ମୌଲବୀ ଓ ଆଲ୍ଲିମ ଅନେକ ମୁସଲମାନ ଧର୍ମନେତା ରାଜନୀତିକ ସଂଗ୍ରାମରେ ଯୋଗ ଦେଲେ । ସେମାନେ ସାଧାରଣତଃ ଏହି ଆନ୍ଦୋଳନକୁ

ଧର୍ମ ସହିତ ସଂପୃକ୍ତ କଲେ ଏବଂ ମୁସଲମାନ ଜନସାଧାରଣ ଏଥିରେ ଖୁବ ପ୍ରଭାବିତ ହେଉଥିଲେ । ଧର୍ମଭାବ ପ୍ରତି ଆକୃଷ୍ଟ ହୋଇ ନ ଥିବା ଅନେକ ପାଶ୍ଚାତ୍ୟ ଶିକ୍ଷିତ ମୁସଲମାନ ମଧ୍ୟ ଦାଢ଼ୀ ରଖିବାକୁ ଆରମ୍ଭ କଲେ । ଏବଂ ଧର୍ମର ସମସ୍ତ ରକ୍ଷଣଶୀଳ ଉପଦେଶ ମାନିବାକୁ ଆରମ୍ଭ କଲେ । ପାଶ୍ଚାତ୍ୟ ଶିକ୍ଷା ଏବଂ ନୂତନ ଧାରଣା ଯୋଗୁଁ ମୌଲବୀମାନଙ୍କର ପ୍ରଭାବ କମି ଆସୁଥିଲା—ମୁସଲମାନ ସମ୍ପ୍ରଦାୟ ଉପରେ ସେମାନଙ୍କ ପ୍ରଭାବ ପୁଣି ବୃଦ୍ଧି ପାଇଲା, ସେମାନେ ପ୍ରାଧାନ୍ୟ ଲାଭ କଲେ । ଆଲିଭାଇ ଦ୍ୱୟ ମଧ୍ୟ ଧାର୍ମିକ ଥିଲେ । ସେମାନେ ଏଥିରେ ସାହାଯ୍ୟ କଲେ ଏବଂ ଗାନ୍ଧୀଜୀ ମଧ୍ୟ ମୌଲବୀ ଓ ମୌଲାନାମାନଙ୍କୁ ଅତ୍ୟନ୍ତ ଭକ୍ତି ଦେଖାଉଥିଲେ ।

ବାସ୍ତବିକ ଗାନ୍ଧୀଜୀ ଆନ୍ଦୋଳନର ଧାର୍ମିକ ଓ ଆଧ୍ୟାତ୍ମିକ ଦିଗ ପ୍ରତି ବିଶେଷ ଜୋର ଦେଉଥିଲେ । ତାଙ୍କର ଧର୍ମଭାବ ଏକଦେଶଦର୍ଶୀ ନ ଥିଲା (dogmatic) । ତଥାପି ସମଗ୍ର ଆନ୍ଦୋଳନରେ ଏକ ନିର୍ଦ୍ଦିଷ୍ଟ ଧାର୍ମିକ ଭାବ ଦେଖାଦେଲା ଏବଂ ଜନସାଧାରଣଙ୍କ ମଧ୍ୟରେ ମଧ୍ୟ ଏହା ଏକ ଧର୍ମ ଜାଗରଣ ସୃଷ୍ଟି ହେଲା । ସ୍ୱଭାବତଃ ଅଧିକାଂଶ କଂଗ୍ରେସ କର୍ମୀ ତାଙ୍କର ନେତାଙ୍କ ଆଦର୍ଶ ଅନୁକରଣ କରୁଥିଲେ । ଏପରିକି ତାଙ୍କ ଭାଷାରେ କଥା ବି କହିବାକୁ ଲାଗିଲେ । ତଥାପି କାର୍ଯ୍ୟକାରୀ ସମିତିରେ ଗାନ୍ଧୀଜୀଙ୍କର ମୁଖ୍ୟ ସାଥି —ମୋର ପିତା, ଦେଶବନ୍ଧୁ ଦାସ; ଲାଲା ଲଜପତ୍ ରାୟ ଓ ଅନ୍ୟମାନେ ସାଧାରଣ ଧର୍ମ ବୋଇଲେ ଯାହା ବୁଝାଏ, ସେଥିପ୍ରତି ଆଦୌ ଆକୃଷ୍ଟ ନ ଥିଲେ ଏବଂ କେବଳ ରାଜନୀତି ଦୃଷ୍ଟିରୁ ରାଜନୀତି ସମସ୍ୟା ବିଚାର କରୁଥିଲେ । ସେମାନେ ସାଧାରଣ ବକ୍ତୃତା ଆଦିରେ ଧର୍ମ କଥା ଉଲ୍ଲେଖ କରୁ ନ ଥିଲେ । ମାତ୍ର ସେମାନଙ୍କର କଥା ଅପେକ୍ଷା ନିଜର ବ୍ୟକ୍ତିଗତ ଜୀବନରେ ଯେଉଁ ଆଦର୍ଶ ଦେଖାଉଥିଲେ, ତାହା ଅଧିକ ପ୍ରଭାବ ପକାଇଥିଲା—ସେମାନେ କେତେବଡ଼ କାର୍ଯ୍ୟ ସବୁ ତ୍ୟାଗ କରି ଏପରି ସରଳ ଜୀବନ କଟାଉଛନ୍ତି ? ତାହା ଲୋକେ ବହୁତ ବଡ଼ କାର୍ଯ୍ୟ ବୋଲି ବିଚାରୁଥିଲେ । ଏହାକୁ ମଧ୍ୟ ଲୋକେ ଧର୍ମର ଏକ ଚିହ୍ନ ବୋଲି ମନେ କରୁଥିଲେ ଏବଂ ଏହା ଧର୍ମଭାବ ଜାଗରଣରେ ସାହାଯ୍ୟ କରୁଥିଲା ।

କି ହିନ୍ଦୁ, କି ମୁସଲମାନ—ସମସ୍ତଙ୍କ ଭିତରେ ଆମ ରାଜନୀତିରେ ଏହି ଧର୍ମଭାବର ବୃଦ୍ଧି ଦେଖି ମୁଁ ଅନେକ ସମୟରେ ବଡ଼ ବିବ୍ରତ ହୋଇଛି । ମୁଁ ଆଦୌ ଏହାକୁ ପସନ୍ଦ କରୁ ନ ଥିଲି । ମେ ଲବୀ ମୌଲାନା ଏବଂ ସ୍ୱାମୀ ପ୍ରଭୃତି ଯାହା ସବୁ ସଭାରେ କହୁଥିଲେ; ତାହା ମୋତେ ଅତ୍ୟନ୍ତ ଦୁଃଖଦାୟକ ବୋଲି ମନେ ହେଉଥିଲା । ସେମାନଙ୍କର ଇତିହାସ, ସମାଜ, ବିଜ୍ଞାନ ଓ ଅର୍ଥନୀତି ସବୁ ମୋତେ ଭୁଲ ବୋଲି ମନେ ହେଉଥିଲା ଏବଂ ପ୍ରତ୍ୟେକ କଥାରେ ଗୋଟାଏ ଧର୍ମଭାବ ଦେବା ହେତୁ ସ୍ପଷ୍ଟ ଚିନ୍ତାରେ ବାଧା ପଡ଼ୁଥିଲା । ଏପରି କି ଗାନ୍ଧୀଜୀଙ୍କର କେତେକ ବକ୍ତୃତାରେ ମୁଁ ବଡ଼ ଚିନ୍ତିତ ହୋଇ ଯାଉଥିଲି । ସେହି ସୁବର୍ଣ୍ଣ ଯୁଗ ରାମରାଜ ଫେରି ଆସିବ ବୋଲି ସେ ଯାହା କହୁଥିଲେ, ତାହା ମୋର ପସନ୍ଦ ହେଉ ନ ଥିଲା । ମାତ୍ର ଏଥିରେ ହସ୍ତକ୍ଷେପ କରିବାର କ୍ଷମତା ମୋର ନ ଥିଲା ଏବଂ ଜନସାଧାରଣଙ୍କୁ ଭଲରୂପେ ଏହି ଶବ୍ଦ ଜଣା ଅଛି ଓ ସେମାନେ ଭଲରୂପେ ବୁଝି ପାରିବେ ବୋଲି ଗାନ୍ଧିଜୀ ଏପରି ଶବ୍ଦ ବ୍ୟବହାର କରୁଛନ୍ତି ଭାବି ମୁଁ ନିଜକୁ ସାନ୍ତ୍ୱନା ଦେଉଥିଲି । ଲୋକଙ୍କ ହୃଦୟ ସ୍ପର୍ଶ କରିପାରିବା ଏକ ଅଦ୍ଭୁତ ଶକ୍ତି ତାଙ୍କର ଥିଲା ।

ମାତ୍ର ଏହିସବୁ ବିଷୟରେ ମୁଁ ବେଶି ବ୍ୟସ୍ତ ହେଲି ନାହିଁ । ମୁଁ ମୋ କାର୍ଯ୍ୟରେ ବ୍ୟସ୍ତ ଥିଲି ଏବଂ ଆମର ଆନ୍ଦୋଳନ ଏପରି ଅଗ୍ରସର ହେଉଥାଏ ଯେ; ସେତେବେଳେ ଏ ସବୁ ଛୋଟ ଛୋଟ କଥା ପ୍ରତି ମୁଁ ଦୃଷ୍ଟି ଦେଉ ନ ଥିଲି । ଗୋଟିଏ ବିରାଟ ଆନ୍ଦୋଳନରେ ସକଳ ପ୍ରକାର ଲୋକ ଆସନ୍ତି ଏବଂ ଆମର ପ୍ରଧାନ ଲକ୍ଷ୍ୟସ୍ଥଳ ଠିକ ଥିବା ପର୍ଯ୍ୟନ୍ତ ଏହି ସବୁ ଛୋଟ ଛୋଟ ଦୋଷ ବା ସଙ୍କୀର୍ଣ୍ଣତାରେ କିଛି ଯାଏ ଆସେ ନା । ଗାନ୍ଧିଜୀଙ୍କୁ ମଧ୍ୟ ବୁଝିବା ବଡ଼ କଷ୍ଟକର ଥିଲା । ବେଳେ ବେଳେ ସେ ଏପରି କଥା କହୁଥିଲେ, ଯାହା ସାଧାରଣତଃ ଆଧୁନିକ ଲୋକ ପକ୍ଷରେ ଅବୋଧ୍ୟ ଥିଲା ମାତ୍ର ଆମେ ତାଙ୍କୁ ଏକ ମହତ, ଅଦ୍ଭୁତ ଓ ଯଶସ୍ୱୀ ନେତା ହେବାର ଯୋଗ୍ୟ ବୋଲି ସେତେବେଳେ ବୁଝି ପାରିଥିଲୁ । ସେଥିଲାଗି ତାଙ୍କ ଉପରେ ଆସ୍ଥା ସ୍ଥାପନ କରି ସେତେବେଳେ ତାଙ୍କ

ପୂର୍ଣ୍ଣ କ୍ଷମତା ଦେଇ ଦେଇଥିଲୁ । ବେଳେ ବେଳେ ଆମେ ନିଜ ଭିତରେ ତାଙ୍କର ଶିଆଳ ଓ ବିଶେଷତ୍ୱ ସବୁ ରହସ୍ୟ ଛଳରେ ଆଲୋଚନା କରୁ ଏବଂ ସ୍ୱରାଜ୍ୟ ହେଲେ ଏସବୁ କଥା ରହିବ ନାହିଁ ବୋଲି କହୁଥିଲୁ ।

ଆମ ଭିତରୁ ଅନେକ ରାଜନୀତି ଓ ଅନ୍ୟାନ୍ୟ ବ୍ୟାପାରରେ ତାଙ୍କ ଦ୍ୱାରା ଅଧିକ ପ୍ରଭାବିତ ହେଉଥିବା ଯୋଗୁଁ ଧର୍ମ ବ୍ୟାପାରରେ ମଧ୍ୟ ଜଡ଼ିତ ନ ହୋଇ ରହି ପାରୁ ନ ଥିଲୁ । ପ୍ରତ୍ୟକ୍ଷ ଭାବରେ ମୋ ଭିତରେ ଏହା ପ୍ରବେଶ କରି ନ ପାରିଲେ ସୁଦ୍ଧା ପରୋକ୍ଷଭାବରେ ମୁଁ ଏହାର ପ୍ରଭାବରୁ ଆତ୍ମରକ୍ଷା କରିପାରି ନାହିଁ । ଧର୍ମର ବାହ୍ୟିକ ଆଡ଼ମ୍ବର ସବୁ ମୁଁ ଆଦୌ ପସନ୍ଦ କରୁ ନ ଥିଲି ଏବଂ ବିଶେଷତଃ ତଥାକଥିତ ଧାର୍ମିକ ଲୋକ ଯେ ସାଧାରଣ ଲୋକଙ୍କୁ ଶୋଷଣ କରୁଥିଲେ, ଏହା ମୁଁ ଘୃଣା କରୁଥିଲି । ତଥାପି ମୁଁ ଏହାର ବିଶେଷ ବିରୋଧ କଲି ନାହିଁ । ୧୯୨୧ ସାଲରେ ଧର୍ମ ମନୋବୃତ୍ତି ଯେତେ ନିକଟ ହୋଇଗଲା, ମୋର ପିଲାବେଳୁ କେବେ ସେପରି ହୋଇ ନ ଥିଲା । ଏହା ସତ୍ତ୍ୱେ ମୁଁ ଧର୍ମର ବହୁତ ଦୂରରେ ଥିଲି ।

ମୁଁ ଆମ ଆନ୍ଦୋଳନ ଓ ସତ୍ୟାଗ୍ରହର ନୈତିକ ଓ ବାଧ୍ୟବାଧ୍ୟ ଧର୍ମ ପ୍ରଣାଳୀକୁ ପ୍ରଶଂସା କରୁଥିଲି । ମୁଁ ଅହିଂସା ପଥ ଚିରନ୍ତନରୂପେ ମାନିଲି ନାହିଁ କିମ୍ବା କେବେ ଚିରଦିନ ଲାଗି ଗ୍ରହଣ କରିନାହିଁ, ମାତ୍ର ଏଥିପ୍ରତି ମୁଁ ଅଧିକ ଆକୃଷ୍ଟ ହୋଇଗଲି ଏବଂ କ୍ରମେ ମୋର ଏ ବିଶ୍ୱାସ ଜନ୍ମିଲା ଯେ ଭାରତରେ ଆମେ ଯେ ପରିସ୍ଥିତିରେ ରହିଛେ ଏବଂ ଆମର ମନୋବୃତ୍ତି ଓ ପ୍ରଚଳିତ ପ୍ରଥା ପ୍ରତି ଦୃଷ୍ଟି ଦେଲେ ତାହା ବୋଧହୁଏ ଉତ୍ତମ ପନ୍ଥା । ରାଜନୀତିର ଆଧ୍ୟାତ୍ମିକତା—ନିଶ୍ଚୟ ଧାର୍ମିକ ଅର୍ଥରେ ନୁହେଁ—ମୋତେ ଗୋଟାଏ ଭଲଭାବ ପରି ମନେ ହେଲା । ଏକ ମହତ୍ ଲକ୍ଷ୍ୟ ହାସଲ କରିବା ନିମନ୍ତେ ମହତ୍ ଉପାୟ ମଧ୍ୟ ହେବା ଦରକାର । ଏହା ଯେ, ଖାଲି ଏକ ଉତ୍ତମ ନୀତିବାକ୍ୟ; ତାହା ନୁହେ, ବାସ୍ତବ ରାଜନୀତି ଦୃଷ୍ଟିରେ ମଧ୍ୟ ଶ୍ରେୟସ୍କର, କାରଣ ଉପାୟ ଭଲ ନ ଥିଲେ ଅନେକ ସମୟରେ

ଉଦ୍ଦେଶ୍ୟରେ ବି ବାଧା ପହଞ୍ଚିପାରେ ଏବଂ ନୂତନ ସମସ୍ୟା ଓ ଅସୁବିଧା ଉପୁଜିପାରେ । ସେତେବେଳେ ମୁଁ ଭାବୁଥିଲି ପଙ୍କିଳ ପନ୍ଥା ଆବଲମ୍ବନ କରିବା କି ଜାତି କି ବ୍ୟକ୍ତି ପ୍ରତ୍ୟେକ ପକ୍ଷରେ ଅଶୋଭନୀୟ ଓ ମର୍ଯ୍ୟାଦା-ହାନିକର । ଏଥିରୁ ରକ୍ଷା ପାଇବାର ଉପାୟ କଣ ? ଆମେ ଯଦି ସର୍ବସ୍ୱପଣ ତଳେ ଟେଣାଇ ମୂଲ୍ୟ ବା ତଳକୁ ଯାଉ, ତେବେ ଆମେ ଦ୍ରୁତବେଗରେ ଓ ମର୍ଯ୍ୟାଦାର ସହିତ କିପରି ଅଗ୍ରସର ହୋଇପାରିବା ?

ସେତେବେଳେ ମୋର ଚିନ୍ତାଧାରା ଏହିପରି ଥିଲା । ମୁଁ ଯାହା ଚାହୁଁଥିଲି, ଅସହଯୋଗ ଆନ୍ଦୋଳନ ମୋତେ ତାହା ଆଣି ଦେଲା । କାରଣ ସ୍ୱାଧୀନତା ଆମର ଲକ୍ଷ୍ୟ ଏବଂ ମୁଁ ସେତେବେଳେ ଭାବିଲି ଏଥିରେ ନିଷ୍ପେଷିତ ଲୋକର ଶୋଷଣ ଲୋପ ହେବ, ସେଥିରେ ମୋର ମନ ଅତ୍ୟନ୍ତ ପ୍ରୀତ ହେଲା ଏବଂ ମୁଁ ଏକପ୍ରକାର ବ୍ୟକ୍ତିଗତ ସ୍ୱାଧୀନତାର ସ୍ୱାଦ ବୋଧ କଲି । ଏପରି ଭାବରେ ଆତ୍ମତୃପ୍ତି ବୋଧ ଜନ୍ମିଥିଲା ଯେ, ବିଫଳ ହେଲେ କିଛି ଆସେ ନା ଏବଂ ହେଲେ ମଧ୍ୟ ତାହା ଅସ୍ଥାୟୀ ହେବ ବୋଲି ବିଚାରୁଥିଲି । ମୁଁ ଗୀତା ବୁଝିପାରୁ ନ ଥିଲି କିମ୍ବା ଏହାର ଧାର୍ମିକ ଅଂଶ ପ୍ରତି ଆଦୌ ଆକୃଷ୍ଟ ହୋଇ ନ ଥିଲି; ମାତ୍ର ମୁଁ ଶ୍ଳୋକ ପଢ଼ିବାକୁ ଭଲ ପାଉଥିଲି ଏବଂ ପ୍ରତ୍ୟେକ ଦିନ ସନ୍ଧ୍ୟାବେଳେ ଗାନ୍ଧିଜୀଙ୍କ ଆଶ୍ରମ ପ୍ରାର୍ଥନାରେ ଯୋଗ ଦେଇ ଗୀତା ପାଠ କରୁଥିଲି । ମଣିଷ କିପରି ହେବା ଉଚିତ, ସେଥିରେ କୁହାଯାଇଥିଲା । ଧୀର, ବିଗତସ୍ପୃହ, ଅନ୍ତର୍ଦ୍ୱନ୍ଦ୍ୱ ହୋଇ ନିଜର କାର୍ଯ୍ୟ କର । ଫଳଲାଗି ଲୋଭ କରନା । ମୁଁ ନିଜେ ଅତ୍ୟନ୍ତ ଧୀର ବା ବୀତସ୍ପୃହ ନ ଥିବାରୁ ମୋର ମନେ ହେଉଛି, ଏହି ଆଦର୍ଶ ପ୍ରତି ଆକୃଷ୍ଟ ହେଉଥିଲି ।

---

# ୧୯୨୧ ଓ ମୋର ପ୍ରଥମ କାରାଦଣ୍ଡ

୧୯୨୧ ମସିହା ଆମ୍ଭମାନଙ୍କ ପକ୍ଷରେ ଏକ ସ୍ମରଣୀୟ ବର୍ଷ। ଅଦ୍ଭୁତପ୍ରକାରେ ଜାତୀୟତା, ରାଜନୀତି, ଧର୍ମ, ରହସ୍ୟବାଦ ଓ ଧର୍ମୋନ୍ମାଦର ସମିଶ୍ରଣ ହୋଇଥିଲା। ଏହା ଛଡ଼ା କୃଷକ ଆନ୍ଦୋଳନ ହେଉଥିଲା। ଏବଂ ବଡ଼ ବଡ଼ ସହରରେ ଶ୍ରମିକ ଆନ୍ଦୋଳନ ମଧ୍ୟ ଉଠିଉଠୁଥିଲା। ଜାତୀୟତା ଏବଂ ଅତ୍ୟନ୍ତ ତୀବ୍ର ଆଦର୍ଶବାଦ ଯୋଗୁଁ ଏହି ସବୁ ବର୍ଗ ଏବଂ ଅନେକାଂଶରେ ପ୍ରତିରୋଧାତ୍ମକ ଅସନ୍ତୋଷ ସବୁ ଏକତ୍ର ହୋଇ ପାରୁଥିଲା। ତଥାପି ଜାତୀୟତା ଏକ ସମଷ୍ଟି ଥିଲା ଏବଂ ଏହା ପଛରେ ହିନ୍ଦୁ ଜାତୀୟବାଦ ପୃଥକ ଭାବରେ ପରିଚିତ ହେଉଥିଲା। ମୁସଲମାନ ଜାତୀୟତା ଭାରତ ସୀମାନ୍ତ ବାହାରକୁ ଅନାଇ ରହିଥିଲା ଏବଂ ସବୁଠାରୁ ଏହି ସମୟର ବିଶେଷତ୍ୱ ହେଉଛି, ଭାରତରେ ସର୍ବତ୍ର ଜାତୀୟତା ଫୁଟି ଉଠିଥିଲା। ଏହି ସମୟରେ ଏଗୁଡ଼ିକ ସବୁ ଏକାଠି ହୋଇ ଗତି-କଲା। ସର୍ବତ୍ର 'ହିନ୍ଦୁ ମୁସଲମାନ କି ଜୟ' ଚିତ୍କାର ଉଠୁଥିଲା। ଗାନ୍ଧିଜୀ ସବୁ ଶ୍ରେଣୀ ଓ ସମ୍ପ୍ରଦାୟ ଲୋକଙ୍କ ଉପରେ ପ୍ରଭାବ ପକାଇ ପାରୁଥିଲେ ଏବଂ ଗୋଟିଏ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନିମନ୍ତେ ମୁକ୍ତି କରିବା ପାଇଁ ଏକ ସମ୍ମିଳିତ ଜନଶକ୍ତି ଠିଆ କରି ପକାଇଲେ। ଏହା ବାସ୍ତବିକ ଲକ୍ଷ୍ୟ କରିବାର କଥା। ସେ ପ୍ରକୃତରେ "ଲୋକଙ୍କର ଅସ୍ପଷ୍ଟ ଆକାଂକ୍ଷାର ପ୍ରତୀକ" ହେଉଥିଲେ। (ଆଉ ଜଣେ ନେତାଙ୍କୁ ଲକ୍ଷ୍ୟ କରି ଜଣେ ଏହି କଥା ଲେଖିଥିଲେ)

ସବୁଠାରୁ ବିସ୍ମୟର କଥା ହେଉଛି, ଏହି ସବୁ ଆକାଂକ୍ଷା ଓ ଉନ୍ମାଦନା ବିଦେଶୀ ଶାସକଙ୍କ ବିରୁଦ୍ଧରେ ହେଉଥିଲେ ସୁଦ୍ଧା ସେମାନଙ୍କ ପ୍ରତି ଆଦୌ ଘୃଣା ନ ଥିଲା। ମୋଟାମୋଟି ଜାତୀୟତା ଏକ ବିରୁଦ୍ଧଭାବ ସୃଷ୍ଟି କରେ ଏବଂ ଅନ୍ୟ ଜାତି, ବିଶେଷତଃ ପରାଧୀନ ଦେଶ ହୋଇଥିଲେ ବିଦେଶୀ ଶାସକଙ୍କ ବିରୁଦ୍ଧରେ ଏହା କ୍ରୋଧ ଓ ଘୃଣା ବଢ଼ାଏ। ୧୯୨୧ ମସିହାରେ

ଭିତରେ ଇଂରେଜଙ୍କ ବିରୁଦ୍ଧରେ ଅବଶ୍ୟ ଏହି ଘୃଣା ଓ କ୍ରୋଧ ଥିଲା, ମାତ୍ର ଅନ୍ୟ ଦେଶମାନଙ୍କ ତୁଳନାରେ ଏହା ଅତ୍ୟନ୍ତ କମ୍ । ଗାନ୍ଧିଜୀ ଅହିଂସାର ତାତ୍ପର୍ଯ୍ୟ ଉପରେ ଜୋର ଦେବାରୁ ଏହା ଯେ ଏପରି ହୋଇ ପାରୁଥିଲା, ଏଥିରେ ସନ୍ଦେହ ନାହିଁ । ଏହି ଆନ୍ଦୋଳନର ଆରମ୍ଭ ସଙ୍ଗେ ସଙ୍ଗେ ସାରା ଦେଶରେ ଗୋଟାଏ ଶକ୍ତି ଓ ଶକ୍ତିର ବାୟୁମଣ୍ଡଳ ଖେଳିଗଲା । ନିକଟ ଭବିଷ୍ୟତରେ ସଫଳତା ଲାଭ ହେବାର ବିଶ୍ୱାସ ଜାତ ହେବାରୁ ଏପରି ହୋଇଥିଲା । ଆନ୍ଦୋଳନ ଏତେ ସୁନ୍ଦର ରୂପେ ଚାଲିଥିଲା ବେଳେ ଏବଂ ଶୀଘ୍ର ଜୟଲାଭର ସମ୍ଭାବନା ଥିଲାବେଳେ ଆମ ଭିତରେ ଘୃଣା ଓ କ୍ରୋଧ ହୁଅନ୍ତା କାହିଁକି ? ଆମେ ଉଦାରତା ଦେଖାଇଲେ କ୍ଷତି କଣ ?

ଆମର କାର୍ଯ୍ୟାନୁରାଗ ଓ କର୍ତ୍ତବ୍ୟପରତା ଥିଲେ ମଧ୍ୟ ଯେଉଁ କେତେକ ବ୍ୟକ୍ତିମାନେ ଦେଶବାସୀ ଆମ ବିରୁଦ୍ଧରେ ନିଜ ଜାତୀୟ ଆନ୍ଦୋଳନର ବିରୋଧ କରୁଥିଲେ, ସେମାନଙ୍କ ପ୍ରତି ଆମେମାନେ ଉଦାରତା ଦେଖାଉ ନ ଥିଲୁ । ବିଦ୍ୱେଷ ବା କ୍ରୋଧର ପ୍ରଶ୍ନ ନ ଥିଲା, କାରଣ ସେମାନଙ୍କର କୌଣସି ଗୁରୁତ୍ୱ ନ ଥିଲା ଆମେ ସେମାନଙ୍କୁ ଅବଜ୍ଞା କରୁଥିବାରୁ ମାତ୍ର ସେମାନଙ୍କର ଦୁର୍ବଳତା, ସୁବିଧାବାଦ, ଜାତୀୟ ସମ୍ମାନ ଓ ଆତ୍ମମର୍ଯ୍ୟାଦାରେ ଆସ୍ଥାସଙ୍ଗୀନତା ହେତୁ ଆମ ମନରେ ସେମାନଙ୍କ ପ୍ରତି ଲୁଚ୍ଚିତ ଘୃଣା ଜାତ ହୋଇଥିଲା ।

ଏହିରୂପେ ଆମେମାନେ ଅସ୍ପଷ୍ଟରୂପେ ହେଉ ପଛକେ ତୀବ୍ର ଭାବରେ କାର୍ଯ୍ୟରେ ବ୍ରତୀ ହେଲୁ ମାତ୍ର ଆମର ଲକ୍ଷ୍ୟ ବିଷୟରେ ସ୍ପଷ୍ଟ ଚିନ୍ତାର ଅଭାବ ଥିଲା । ଆମେ କିପରି ସେତେବେଳେ ଆନ୍ଦୋଳନର ତଥ୍ୟ କଣ, ଆନ୍ଦୋଳନର ଦର୍ଶନ ଏବଂ ଆମର କି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହେବା ଉଚିତ, ଏ ସମ୍ବନ୍ଧରେ ଆଦୌ ଚିନ୍ତା କରି ନ ଥିଲୁ, ଏହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଆମେମାନେ ସମସ୍ତେ ସ୍ୱରାଜ୍ୟ କଥା ବୁଝାଇବାରେ ମାତି ଯାଉଥିଲୁ; ମାତ୍ର ପ୍ରତ୍ୟେକେ ତାର ନିଜ ମନଇଚ୍ଛା

ସମ୍ଭବତଃ ଏହାର ଅର୍ଥ କରୁଥିଲେ । ଅନେକ ଯୁବକ ସ୍ୱରାଜ ବୋଇଲେ ରାଜନୈତିକ ସ୍ୱାଧୀନତା କିମ୍ବା ସେହିପରି ଏକ ଜିନିଷ ଓ ଗଣତନ୍ତ୍ରମୂଳକ ଶାସନ ବୁଝୁଥିଲେ ଏବଂ ଆମେମାନେ ସାଧାରଣ ବକ୍ତୃତାରେ ଏହା କହୁଥିଲୁ । ଆମ ଭିତରୁ ଅନେକ ଭାବୁଥିଲେ, ଏହା ହେଲେ କୃଷକ ଓ ଶ୍ରମିକଙ୍କ ବୋଝ ମଧ୍ୟ ହାଲୁକା ହେବ ମାତ୍ର ଆମ ନେତାମାନଙ୍କ ଭିତରୁ ଅଧିକାଂଶ ସ୍ୱରାଜ ବୋଇଲେ ସ୍ୱାଧୀନତାଠାରୁ କିଛି କମ ବୋଲି ବୁଝୁଥିଲେ । ଗାନ୍ଧିଜୀ ଏ ସମ୍ପର୍କରେ ଅତି ଅସ୍ପଷ୍ଟ ଥିଲେ ଏବଂ ଏ ସମ୍ବନ୍ଧରେ ସ୍ପଷ୍ଟ ଚିନ୍ତା କରିବା ନିମନ୍ତେ ସେ ଆଦୌ ଉତ୍ସାହିତ କରୁ ନ ଥିଲେ । ମାତ୍ର ସେ ସର୍ବଦା ଅସ୍ପଷ୍ଟ ଭାଷାରେ ନିଶ୍ଚିତରୂପେ ଦୁର୍ବଳ ଲୋକପାଇଁ ଦାବୀ କରୁଥିଲେ । ଏଥିରେ ଆମେମାନେ ଅନେକ ପରିମାଣରେ ନିଶ୍ଚିନ୍ତ ହେଉଥିଲୁ । ଅବଶ୍ୟ ମହାତ୍ମା ଗାନ୍ଧି ଏହା ସଙ୍ଗେ ସଙ୍ଗେ ଧନୀ ଶ୍ରେଣୀଙ୍କୁ ବି ନିର୍ଭରତା ଦେଉଥିଲେ । ଗାନ୍ଧିଜୀ କେବେ କୌଣସି ସମସ୍ୟାକୁ ଯୁକ୍ତିବାଦ ଦୃଷ୍ଟିରୁ ଦେଖନ୍ତି ନାହିଁ; ସେ ଚରିତ୍ର ଓ ପବିତ୍ରତା ଉପରେ ଜୋର ଦେଉଥିଲେ । ତାଙ୍କ ଯୋଗୁଁ ଭାରତୀୟ ଜନତା ଅଭୂତପୂର୍ବ ଭାବରେ ଦୃଢ଼ ଓ ଚରିତ୍ରବାନ ହୋଇ ପଡ଼ିଲେ । ଅବଶ୍ୟ ଏପରି ଅନେକ ଲୋକ ଥିଲେ, ଯେଉଁମାନଙ୍କର ଶକ୍ତି ବା ଚରିତ୍ର କିଛି ନ ଥିଲା ଏବଂ ସେମାନେ ବୁଝୁଥିଲେ ଯେ ଶରୀର ପ୍ରତି ଅଯତ୍ନ ଏବଂ ଉଦାସ ଦୃଷ୍ଟିହିଁ ଧର୍ମଭାବର ଅଭିବ୍ୟକ୍ତି ।

ଜନସାଧାରଣଙ୍କର ଏହି ଅଲୌକିକ ଦୃଢ଼ତା ଦେଖି ଆମମାନଙ୍କ ମନରେ ବିଶ୍ୱାସ ଜନ୍ମୁଥିଲା । ଏକ ମ୍ରିୟମାଣ, ପଶ୍ଚାତ୍‌ପଦ ଏବଂ ଭଗ୍ନ ଜନତା ହଠାତ୍ ମେରୁଦଣ୍ଡ ସିଧାକରି ମୁଣ୍ଡ ଟେକିଲେ ଏବଂ ଶୃଙ୍ଖଳିତରୂପେ ଦେଶବ୍ୟାପୀ ମିଳିତ ଭାବରେ କାର୍ଯ୍ୟ କଲେ । ଆମେ ଅନୁଭବ କରୁଥିଲୁ ଯେ, ଏହି କାର୍ଯ୍ୟହିଁ ଜନସାଧାରଣଙ୍କ ଭିତରେ ଅପ୍ରତିହତ ଶକ୍ତି ସଞ୍ଚାର କରିବ । କାର୍ଯ୍ୟ ପଛରେ ଯେ ଚିନ୍ତା ଆବଶ୍ୟକ, ଏହା ଆମେ ଭୁଲିଗଲୁ—ଏକ ସଚେତନ ଆଦର୍ଶ ଏବଂ ଲକ୍ଷ୍ୟ ବ୍ୟତୀରେକେ ଜନସାଧାରଣଙ୍କର ସମସ୍ତ ଶକ୍ତି ଓ ଉତ୍ସାହ ଯେ

ଅକାରଣରେ ଯିବ, ଏହା ଆମେ ଭୁଲିଗଲୁ । ଆନ୍ଦୋଳନର ଧର୍ମ ଭାବରେ ଆମେ ଅନେକ ପରିମାଣରେ ହରାଇଗଲୁ । ରାଜନୀତିକ ଓ ଅର୍ଥନୈତିକ ଆନ୍ଦୋଳନ ଲାଗି ଏବଂ ଅନ୍ୟାୟ ବିରୁଦ୍ଧରେ ଏହି ଯେଉଁ ଅହିଂସାର ପ୍ରୟୋଗ ଆମର ଜନସାଧାରଣ କରୁଛନ୍ତି, ଏହା ଜଗତକୁ ଏକ ନୂତନ ସନ୍ଦେଶ ଦେବ ବୋଲି ଆମେ ବୋଧ କଲୁ । ଅନ୍ୟ ଦେଶର ଲୋକେ ବା ଅନ୍ୟ ଜାତି ଯେ ଭାଗ୍ୟବାନ ଜାତି ଏହିପରି ଏକ ମାୟାରେ ଆମେ ବିଶ୍ୱାସ କଲୁ । ଅହିଂସା ହେଉଛି ସମସ୍ତ ପ୍ରକାର ଯୁଦ୍ଧ ଏବଂ ହିଂସା ନିବାରଣ ସଙ୍ଗେ ସମାନ । ଏହା ଯେ ଖାଲି ନୀତି ଦୃଷ୍ଟିର ଠିକ୍ ତାହା ନୁହେଁ, କାର୍ଯ୍ୟକାରୀ ଦୃଷ୍ଟିରୁ ମଧ୍ୟ । ମୋର ମନେ ହୁଏ, ଯନ୍ତ୍ରପାତି ଓ ଆଧୁନିକ ସଭ୍ୟତା ବିଷୟରେ ଗାନ୍ଧୀଜୀଙ୍କର ପୁରୁଣା ଧାରଣାକୁ ଖୁବ୍ କମ ଲୋକେ ଗ୍ରହଣ କରୁଥିଲେ । ଆମେ ବିଚାରୁଥିଲୁ ସେ ମଧ୍ୟ ଏହାକୁ ଏକ ଅବାସ୍ତବ କଳ୍ପନା ଏବଂ ଆଧୁନିକ ଅବସ୍ଥାରେ ଚଳନୋପଯୋଗୀ ନୁହେଁ ବୋଲି ଭାବୁଥିବେ । ଭାରତୀୟ ଅବସ୍ଥାକୁ ଲକ୍ଷ୍ୟ କରି କେତେକ ପରିବର୍ତ୍ତନ ଆବଶ୍ୟକ ବୋଲି ବିଚାରୁଥିଲେ ମଧ୍ୟ ଆଧୁନିକ ସଭ୍ୟତାର ଲାଭ ସବୁ ଆମେ ଛାଡ଼ିବାକୁ ରାଜି ନ ଥିଲୁ । ବ୍ୟକ୍ତିଗତ ଭାବରେ ମୁଁ ବଡ଼ ଯନ୍ତ୍ରପାତି ଏବଂ ଶୀଘ୍ର ଭ୍ରମଣ କରିବା ପ୍ରତି ଆକୃଷ୍ଟ ହେଉଥିଲି । ତଥାପି ଗାନ୍ଧୀଙ୍କର ଆଦର୍ଶ ଅନେକ ଲୋକଙ୍କ ଉପରେ ପ୍ରଭାବ ପକାଇଲା ଏବଂ ସେମାନେ ଯନ୍ତ୍ର ଓ ତାହାର ପ୍ରତିକ୍ରିୟାକୁ ସମାଲୋଚନା କରିବାକୁ ଲାଗିଲେ । ସୁତରାଂ ଅନେକେ ଭବିଷ୍ୟତ ପ୍ରତି ଦୃଷ୍ଟି ଦେଉଥିଲା ବେଳେ ଆଉ କେତେକ ଅତୀତ ପ୍ରତି ଦୃଷ୍ଟି ନିକ୍ଷେପ କଲେ । ଏତି ଅଦ୍ଭୁତ କଥା ସେ ଧର୍ମ୍ମଯାକ ମିଳିତ କାର୍ଯ୍ୟର ଉପାଦେୟତା ଅନୁଭବ କରୁଥିଲେ ଏବଂ ସେଥିଯୋଗୁଁ ତ୍ୟାଗ ଓ ନିଃସ୍ୱାର୍ଥ ହେବାକୁ ବାଧ୍ୟ ହେଉଥିଲେ ।

ମୁଁ ଆନ୍ଦୋଳନରେ ସମ୍ପୂର୍ଣ୍ଣରୂପେ ଜଡ଼ିତ ହୋଇଗଲି । ମୋପରି ଆହୁରି ଅନେକ ଲୋକ ବି ହୋଇଗଲେ । ମୋର ଅନ୍ୟ ସମ୍ପର୍କ, ସମ୍ବନ୍ଧ,

ପୁରୁଣା ବହି, ପୁସ୍ତକ ପାଠ ଏପରି କି ଆମେ ଯେଉଁ କାର୍ଯ୍ୟରେ ନିମଗ୍ନ ଥିଲୁ, ତାହାଛଡ଼ା ସମ୍ବାଦ ପତ୍ରରେ ଅନ୍ୟ ବିଷୟ ପାଠ ସବୁ ମୁଁ ଛାଡ଼ିଲି । ସେ ପର୍ଯ୍ୟନ୍ତ ମୁଁ ଆଧୁନିକ ପୁସ୍ତକ ସବୁ ପଢ଼ୁଥିଲି ଏବଂ ଦୁନିଆର ଅବସ୍ଥାର ପ୍ରଗତି ଲକ୍ଷ୍ୟ କରୁଥିଲି; ମାତ୍ର ସେଥିଲାଗି ବର୍ତ୍ତମାନ ଆଉ ସମୟ ମିଳିଲା ନାହିଁ । ମୋର ଘନିଷ୍ଠ ପରିବାର ବନ୍ଧନ ସତ୍ତ୍ୱେ ମୁଁ ପ୍ରାୟ ମୋର ପରିବାର ସ୍ତ୍ରୀ ଓ ଝିଅକୁ ଭୁଲିଗଲି । ସେତେବେଳେ ସେମାନଙ୍କ ପ୍ରତି ଏହା କିପରି ବୋଝ ଓ କଷ୍ଟ ହୋଇଥିବ ଏବଂ ମୋର ସ୍ତ୍ରୀ କିପରି ଅଦ୍ଭୁତ ସହନଶୀଳତା ଓ ଧୈର୍ଯ୍ୟ ଦେଖାଇଛି, ତାହା ଅନେକ ଦିନ ପରେ ମୁଁ ବୁଝିପାରିଲି । ମୁଁ ଅଫିସ, କମିଟି ବୈଠକ ଏବଂ ଜନତାଙ୍କ ଭିତରେ ରହୁଥିଲି । "ଗ୍ରାମକୁ ଯାଅ" ବୋଲି ଚାରିଆଡ଼େ ଧ୍ୱନି ଉଠୁଥାଏ ଏବଂ ଆମେ ଅନେକ ମାଇଲ ଭ୍ରମଣ କଲୁ, ଅନେକ ସୁଦୂର ଗ୍ରାମକୁ ଗଲୁ ଏବଂ ଅନେକ କୃଷକ ସଭାରେ ବକ୍ତୃତା କଲୁ । ଜନସାଧାରଣଙ୍କ ଭିତର ଉନ୍ମାଦନା ଓ ସେମାନଙ୍କୁ ପ୍ରଭାବିତ କରିବାର ଶକ୍ତି ମୁଁ ଅନୁଭବ କଲି । ଜନତାର ମନସ୍ତତ୍ତ୍ୱ ମୁଁ ସାମାନ୍ୟରୂପେ ବୁଝିପାରିଲି ଏବଂ ସହର ଜନତା ଓ ମଫସଲ କୃଷକଙ୍କ ଭିତରେ ପାର୍ଥକ୍ୟ ବୁଝିପାରିଲି । ସେମାନଙ୍କର ଅସନ୍ତୋଷ ଓ ଅପଢ୍ୟାର ଭିତରେ ବଡ଼ ବଡ଼ ଜନସଭାର ଧକ୍କାରେ ମୁଁ ଅତ୍ୟନ୍ତ ଆନନ୍ଦ ଅନୁଭବ କଲି । ଅବଶ୍ୟ ସେମାନଙ୍କ ଭିତରେ ଶୃଙ୍ଖଳାର ଅଭାବ ଦେଖି ବେଳେ ବେଳେ ମୁଁ ଅତ୍ୟନ୍ତ ବିରକ୍ତ ହେଉଥିଲି । ସେନ୍ମଦନ୍ତି ଅନେକ ସମୟରେ ମୋତେ ବଡ଼ କ୍ରୁଦ୍ଧ ଓ ଚରୁଛ ଜନତାଙ୍କର ସମ୍ମୁଖୀନ ହେବାକୁ ପଡ଼ୁଛି; ଖାଲି ଠିକଏ ନିଆଁ ଲଗାଇଦେଲେ ପୋଡ଼ି ଭସ୍ମ ହୋଇଯିବା ଅବସ୍ଥାରେ ଥିଲାବେଳେ କାର୍ଯ୍ୟ କରିଛି ଏବଂ ମୁଁ ଦେଖିଛି ମୋର ସେହି ପୁରୁଣା ଅଭିଜ୍ଞତା ଓ ବିଶ୍ୱାସ ମୋତେ ଖୁବ୍ ସାହାଯ୍ୟ କରିଛି । ମୁଁ ସର୍ବଦା ଜନତା ଭିତରକୁ ସିଧା ଚାଲିଯାଇଛି ଏବଂ ସେମାନଙ୍କୁ ବିଶ୍ୱାସ କରିଛି । ମୁଁ ସେମାନଙ୍କ ସହିତ ଏକମତ ନ ହୋଇଥିଲେ ସୁଦ୍ଧା ସର୍ବଦା ସେମାନେ ମୋତେ ପସନ୍ଦ କରନ୍ତି ଓ ଭଦ୍ରତା ଦେଖାଇଛନ୍ତି । ମାତ୍ର ଜନତା ବଡ଼ ଦୁର୍ବଳ ଏବଂ ଭବିଷ୍ୟତରେ ମୋର ଅନ୍ୟପ୍ରକାର ଅଭିଜ୍ଞତା ହୋଇପାରେ ।

ମୁଁ ଜନତା ସହିତ ମିଶିଛି ଏବଂ ଜନତା ମୋତେ ଆଦରରେ ଗ୍ରହଣ କରିଛି; ତଥାପି ମୁଁ ତାହା ସହିତ ସମ୍ପୂର୍ଣ୍ଣରୂପେ ମିଶିପାରି ନାହିଁ, ନିଜକୁ ସର୍ବଦା ସ୍ୱତନ୍ତ୍ର ବୋଲି ଭାବିଛି । ମୋର ସ୍ୱତନ୍ତ୍ର ମାନସିକ ସ୍ତରରୁ ମୁଁ ସେମାନଙ୍କୁ ସମାଲୋଚନା ଦୃଷ୍ଟିରେ ଦେଖିଛି । ମୁଁ ବେଳେ ବେଳେ ଭାବିଲେ ଆଶ୍ଚର୍ଯ୍ୟ ହୁଏ ଯେ, ମୁଁ ମୋ ପରିବେଷ୍ଟିତ ଏହି ସହସ୍ର ସହସ୍ର ଲୋକଙ୍କଠାରୁ କିପରି ପ୍ରତ୍ୟେକ ଦିଗରେ ପୃଥକ ହୋଇଛି—ମୋର ଅଭ୍ୟାସ ଅଲଗା, ଆକାଂକ୍ଷା ପୃଥକ, ମାନସିକ ଓ ସାଂସ୍କୃତିକ ଦୃଷ୍ଟିଭଙ୍ଗୀ ମଧ୍ୟ ପୃଥକ—ତଥାପି ମୁଁ କିପରି ଏହି ଲୋକଙ୍କର ଶୁଭକାମନା ପାଇଛି ଓ ବିଶ୍ୱାସଭାଜନ ହୋଇପାରିଛି । ସେମାନେ କଣ ମୁଁ ଯାହା ନୁହେଁ ମୋତେ ସେଇଆ ଭାବି ଏପରି କରୁଛନ୍ତି ? ମୋତେ ସେମାନେ ଭଲରୂପେ ଚିହ୍ନିପାରିଲେ ଏପରି ଆପଣାର ମନେ କରିବେ ତ ? ମୁଁ ମିଥ୍ୟା ଛଳନା ଦ୍ୱାରା ସେମାନଙ୍କର ଶୁଭେଚ୍ଛା ଲାଭ କରୁଛି କି ? ମୁଁ ସେମାନଙ୍କ ନିକଟରେ ସହଜଭାବରେ ଓ ଖୋଲାଖୋଲି କଥାବାର୍ତ୍ତା କରିଛି; ଅନେକ ସମୟରେ ସେମାନଙ୍କୁ ବଡ଼ କର୍କଶ ଭାବରେ କହିଛି ଓ ସେମାନଙ୍କର ପ୍ରିୟ ବିଶ୍ୱାସ ଓ ପ୍ରଚଳିତ ରୀତିର ମଧ୍ୟ କଡ଼ା ସମାଲୋଚନା କରିଛି । ତଥାପି ସେମାନେ ମୋତେ ସହ୍ୟ କରିଛନ୍ତି । ଏ ସବୁ ସତ୍ତ୍ୱେ ମୋ ମନରୁ ଧାରଣା ଗଲା ନାହିଁ ଯେ, ମୁଁ ଯେପରି ଲୋକ ମୋ ପ୍ରତି ସେମାନେ ଶ୍ରଦ୍ଧା ଦେଖାନ୍ତେ ନାହିଁ; ମାତ୍ର ସେମାନେ କଳ୍ପନାରେ ମୋର ଆଉ ଏକ ସ୍ୱତନ୍ତ୍ରମୂର୍ତ୍ତି ଗଢ଼ି ଏପରି କରିଛନ୍ତି ! ଏହି ମିଥ୍ୟା କଳ୍ପନା କେତେ ଦିନ ରହିବ ? ଏପରି ଏହାକୁ କରିବାକୁ ଦିଆଯିବ ବା କାହିଁକି ? ଯେତେବେଳେ ଏହା ଦୂର ହେବ ଏବଂ ସେମାନେ ବାସ୍ତବତା ଦେଖିପାରିବେ, ସେତେବେଳେ ଅବସ୍ଥା କଣ ହେବ ?

ଆମେ ସବୁ ଅନେକ ସମୟରେ ଅହଙ୍କାରୀ ହୋଇଥାଉଁ; ମାତ୍ର ଏହି ସରଳ ଜନତାଙ୍କ ପକ୍ଷରେ ଅହଙ୍କାରର ପ୍ରଶ୍ନ ଉଠି ପାରେ ନା । ଆମେ ସବୁ ମଧ୍ୟବର୍ତ୍ତୀ ଶ୍ରେଣୀର ଲୋକ ଏବଂ ଆମ ଭିତରୁ ଅନେକେ ନିଜକୁ

ଜନତାଙ୍କଠାରୁ ଉଚ୍ଚ ବୋଲି ଜ୍ଞାନ କରୁ; ମାତ୍ର ଏହି ଜନସାଧାରଣଙ୍କ ଭିତରେ ସେ ସବୁ ଦେଖାଣିଆ ବା ଅଳୀକତା ନଥିଲା । ସେମାନେ ଅବଶ୍ୟ ନିର୍ବୋଧ, ବ୍ୟକ୍ତିଗତଭାବରେ ବୈଚିତ୍ର୍ୟହୀନ, ମାତ୍ର ଜନସାଧାରଣ ହିସାବରେ ସେମାନଙ୍କୁ ଦେଖିଲେ ମନରେ ଅତିଶୟ କରୁଣା ଓ ବିଷାଦ ଭାବ ଖେଳିଯାଏ ।

ଯେଉଁଠାରେ ମୁଁ ବା ଆମର ଶିକ୍ଷିତ କର୍ମୀସବୁ ସମ୍ମିଳନୀ କରୁଥିଲୁ, ସେ ବକ୍ତୃତା ମଞ୍ଚ ଖୁବ୍ ସ୍ୱତନ୍ତ୍ର । ସେଠାରେ ନିଜକୁ ଜାହିର କରିବା-ପାଇଁ ଏବଂ ନିରର୍ଥକ ଓ ଅତିରଞ୍ଜିତ ଭାଷାରେ ବକ୍ତୃତା କରି ଆମେ ଆମର ମୂଳରୁଚିର ପରିଚୟ ଦେବାରେ ପଶ୍ଚାତ୍‌ପଦ ହେଉ ନା । ଏଥିଲାଗି ଅନେକ ପରିମାଣରେ ଆମେ ସମସ୍ତେ ପ୍ରାୟ ଦୋଷୀ; ମାତ୍ର ଶ୍ରେଷ୍ଠ ଖିଲାଫତ୍ ନେତାଙ୍କର ଦୋଷ ସର୍ବାପେକ୍ଷା ଅଧିକ । ବହୁତ ଲୋକଙ୍କ ସାମନାରେ ବକ୍ତୃତା ମଞ୍ଚରେ ସ୍ୱାଭାବିକ ରୂପେ ବ୍ୟବହାର କରିବା ସହଜ ନୁହେଁ ଏବଂ ଏପରି ପ୍ରକୃତିର ସମ୍ବନ୍ଧରେ ଆମ ଭିତରୁ କମ ଲୋକଙ୍କର ପୂର୍ବରୁ ଅଭିଜ୍ଞତା ଥିଲା । ସୁତରାଂ ଆମେ ନେତାମାନେ ଭାବିଲୁପରି ଭାବ୍ ଚିନ୍ତାଶୀଳ ଓ ଗୁରୁତ୍ୱପୂର୍ଣ୍ଣ ହେବାକୁ ଚେଷ୍ଟା କରୁଥିଲୁ । ସେତେବେଳେ ନେତାମାନେ ଏହିପରି ହେବା ଦରକାର ବୋଲି ଆମେ ବିଚାରୁଥିଲୁ । ଆମେ ଚାଲିଲାବେଳେ, କଥାବାର୍ତ୍ତା କଲାବେଳେ ଏବଂ ହସିଲାବେଳେ ହଜାର ହଜାର ଲୋକ ଆମ ଆଡ଼କୁ ଦୃଷ୍ଟିପାତ କରୁଛନ୍ତି ବୋଲି ସର୍ବଦା ଜାଗ୍ରତ ରହି ସେହି ପ୍ରକାରେ କାର୍ଯ୍ୟ କରୁଥିଲୁ । ଅନେକ ସମୟରେ ଆମର ଭାଷଣ ବଡ଼ ଜ୍ୱାଳାମୟୀ ହେଉଥିଲା; ମାତ୍ର ସେଥି ସଙ୍ଗେ ସଙ୍ଗେ ଏହା ଅତ୍ୟନ୍ତ ଲକ୍ଷ୍ୟହୀନ ହେଉଥିଲା । ଜଣକୁ ଅନ୍ୟମାନେ ଯେପରି ବୁଝି-ପାରନ୍ତି, ସେହିପରି ଜଣେ ନିଜକୁ ଦେଖିବା କଷ୍ଟକର । ସୁତରାଂ ମୁଁ ନିଜକୁ ସମାଲୋଚନା କରିବାରେ ଅସମର୍ଥ ହେବାରୁ ଅନ୍ୟମାନଙ୍କର ଗତିବିଧି ସାବଧାନତାର ସହିତ ଲକ୍ଷ୍ୟ କଲି ଏବଂ ଏଥିରେ ମୁଁ ଖୁବ୍ ଆମୋଦ ଲାଭ କଲି । ତାପରେ ମୋତେ ମଧ୍ୟ ଲୋକେ ସେହିପରି

ପଶହାସ ଦୃଷ୍ଟିରେ ଦେଖୁଥିବେ ବୋଲି ମୋ ମନରେ ଚିନ୍ତା ପ୍ରବେଶ କରୁଥାଏ ।

୧୯୨୧ ମସିହା ସାରା ବ୍ୟକ୍ତିଗତରୂପେ କଂଗ୍ରେସ କର୍ମୀମାନେ ଗିରଫ ହେଉଥିଲେ ଏବଂ ଜେଲ ଦଣ୍ଡ ପାଉଥିଲେ, ମାତ୍ର ସାଧାରଣ ଭାବରେ ଗିରଫ ହେଉ ନ ଥିଲା । ଭାରତୀୟ ସୈନ୍ୟଙ୍କ ମଧ୍ୟରେ ବିଦ୍ରୋହ ପ୍ରଚାର ଯୋଗୁ ଅଲିଭାଇମାନଙ୍କୁ ଦୀର୍ଘ କାରାବାସ ଦଣ୍ଡ ଦିଆଗଲା । ଯେଉଁ କଥା କହିଥିବା ହେତୁ ସେମାନଙ୍କୁ ଶାସ୍ତି ଦିଆଗଲା, ହଜାର ହଜାର ଲୋକେ ବକ୍ତୃତା ମଞ୍ଚରେ ସେହି କଥାକୁ ଘୋଷଣା କଲେ । ମୋର କେତେକ ବକ୍ତୃତା ଯୋଗୁ ମୋ ବିରୁଦ୍ଧରେ ରାଜଦ୍ରୋହ ଅଭି-ଯୋଗ କରାଯିବ ବୋଲି ଗ୍ରୀଷ୍ମଋତୁରେ ମୋତେ କୁହାଗଲା । ମାତ୍ର ଯାହା ହେଉ ସେତେବେଳେ କୌଣସି ଶାସ୍ତି ଦିଆଗଲା ନାହିଁ । ବର୍ଷ ଶେଷ ବେଳକୁ ଅବସ୍ଥା ଗୁରୁତର ହେଲା । ପ୍ରିନ୍‌ସ ଅଫ ଓଏଲ୍‌ସ ଅର୍ଥାତ୍ ଇଂଲଣ୍ଡର ଯୁବରାଜ ଭାରତକୁ ଆସୁଥାନ୍ତି ଏବଂ ତାଙ୍କ ଆଗମନ ଉପଲକ୍ଷେ ହେଉଥିବା ସମସ୍ତ ପ୍ରକାର କାର୍ଯ୍ୟକୁ ବୟକଟ୍ କରିବା ପାଇଁ କଂଗ୍ରେସ ଘୋଷଣା କଲା । ନଭେମ୍ବର ଶେଷବେଳକୁ ବଙ୍ଗଳାର କଂଗ୍ରେସ ସ୍ୱେଚ୍ଛାସେବକ ବାହିନୀକୁ ବେଆଇନ ଘୋଷଣା କରାଗଲା ଏବଂ ଯୁକ୍ତ-ପ୍ରଦେଶରେ ମଧ୍ୟ ସେହିପରି ଏକ ଘୋଷଣା ହେଲା । ଦେଶବନ୍ଧୁ ଦାସ ବଙ୍ଗଳାକୁ ଏକ ଉଦ୍ଦୀପନାମୟୀ ବାଣୀ ଦେଇଥିଲେ—"ମୁଁ ମୋର ହାତରେ ହାତକଡ଼ି ଓ ଶରୀରରେ ଲୁହା ଜଞ୍ଜିରର ବୋଝ ଅନୁଭବ କରୁଛି । ଏହା ପରାଧୀନତା ବନ୍ଧନର କ୍ଲେଶ । ସାରା ଭାରତବର୍ଷ ଏକ ବିରାଟ କାରାଗାର । କଂଗ୍ରେସ କାର୍ଯ୍ୟ ଚଳାଇବାକୁ ପଡ଼ିବ । ମୁଁ ଧରାପାଏ ବା ରହେ, ସେଥିରେ କିଛି ଯାଏ ଆସେ ନା, ମୋର ମରିବାରେ ବା ବଞ୍ଚିବାରେ କିଛି ଯାଏ ଆସେ ନା ।" ଆମେ ଯୁକ୍ତପ୍ରଦେଶରେ ଏହି ଇସ୍ତାହାରର ପ୍ରତ୍ୟୁତ୍ତର ଦେଲୁ । ଆମର ସ୍ୱେଚ୍ଛାସେବକ ଅନୁଷ୍ଠାନ ସରକାରୀ ଘୋଷଣା ସତ୍ତ୍ୱେ ପୂର୍ବପରି ଚାଲିବ ବୋଲି ଯେ କେବଳ ଘୋଷଣା କଲୁ ତାହା ନୁହେଁ, ଦୈନିକ ସମ୍ବାଦପତ୍ରମାନଙ୍କରେ ସ୍ୱେଚ୍ଛାସେବକଙ୍କର ନାମ

ଛପାଇଲୁ । ପ୍ରଥମ ତାଲିକାରେ ମୋ ପିତାଙ୍କ ନାମ ଆଗରେ ଦିଆଯାଇ-ଥିଲା । ସେ ସ୍ୱେଚ୍ଛାସେବକ ନ ଥିଲେ, କେବଳ ସରକାରୀ ନିଷେଧାଜ୍ଞା ଅମାନ୍ୟ କରିବା ନିମନ୍ତେ ସେ ଏଥିରେ ଯୋଗ ଦେଇଥିଲେ । ଡିସେମ୍ବର ମାସ ପ୍ରଥମ ସପ୍ତାହରେ ଯୁବରାଜ ଆମ ପ୍ରଦେଶକୁ ଆସିବାର କେତେଦିନ ପୂର୍ବରୁ ଅନେକ ସଂଖ୍ୟାରେ ଗିରଫ ହୋଇଗଲୁ ।

ଆମେ ଦେଖିଲୁ, ଶେଷରେ ଅବସ୍ଥା ଗୁରୁତର ହେଲା । ସରକାର ଓ କଂଗ୍ରେସ ଭିତରେ ଅବଶ୍ୟମ୍ଭାବୀ ସଂଘର୍ଷ ଆସି ପହଞ୍ଚିଲା । ବନ୍ଦୀ ଘର ଅଜଣା ସ୍ଥାନ ଥିଲା—ଜେଲ ଯିବା ଧାରଣା ମଧ୍ୟ ସମ୍ପୂର୍ଣ୍ଣ ନୂତନ ଥିଲା । ଦିନେ ମୁଁ ଏଲାହାବାଦ କଂଗ୍ରେସ ଅଫିସରେ ବାକି କାର୍ଯ୍ୟ ସବୁ ଶେଷ କରିଦେବା ନିମନ୍ତେ ଅନେକ ବିଳମ୍ବ ସମୟ ପର୍ଯ୍ୟନ୍ତ ବସିଲି । ଜଣେ କିରାଣୀ ଖୁବ ଉତ୍ତେଜିତ ହୋଇ ମୋତେ ଆସି ଖବର ଦେଲେ ଯେ, ପୁଲିସ ଏକ ଖାନତଲାସି ୱ୍ୟାରେଣ୍ଟ ବା ପରୁଆନା ନେଇ ଆସିଛନ୍ତି ଏବଂ ଅଫିସ ଘର ଚାରିଆଡ଼େ ଘେରି ରହିଛନ୍ତି । ମୁଁ ମଧ୍ୟ ଟିକିଏ ଚଞ୍ଚଳ ହୋଇଗଲି, କାରଣ ଏପରି ଅଭିଜ୍ଞତା ମୋର ପ୍ରଥମ । ମାତ୍ର ନିଜର ଗାମ୍ଭୀର୍ଯ୍ୟ, ଅତ୍ୟନ୍ତ ଶାନ୍ତ ଓ ଧୀର ଭାବ ପୁଲିସର ଯିବା ଆସିବାରେ ଅବିଚଳିତ ବୋଲି ଦେଖାଇବାର ପ୍ରବଳ ଇଚ୍ଛା ମନରେ ଥିଲା । ସୁତରାଂ ପୁଲିସ ଅଫିସ ଘର ଖାନତଲାସ କଲାବେଳେ ତାଙ୍କ ସହିତ ରହିବାପାଇଁ ମୁଁ ଜଣେ କିରାଣୀଙ୍କୁ କହିଲି ଏବଂ ଅନ୍ୟ କର୍ମଚାରୀମାନେ ପୁଲିସପ୍ରତି ଦୃଷ୍ଟି ନ ଦେଇ ନିଜର ଦୈନନ୍ଦିନ କାର୍ଯ୍ୟରେ ଲାଗି ରହିବାପାଇଁ କହିଲି । କିଛି ସମୟ ପରେ ଠିକ ଅଫିସ ସମ୍ମୁଖରେ ଗିରଫ ହୋଇଥିବା ଜଣେ ବନ୍ଧୁ ମୋଠାରୁ ବିଦାୟ ନେବାଲାଗି ଜଣେ ପୁଲିସ କର୍ମଚାରୀ ସହ ଆସି ପହଞ୍ଚିଲେ । ଏହିସବୁ ନୂତନ ଘଟଣାଗୁଡ଼ିକ ପ୍ରତ୍ୟେକ ଦିନର ସାଧାରଣ କଥା ବୋଲି ଭାବିବ ବୋଲି ମୁଁ ଏତେ ଅହଙ୍କାରପୂର୍ଣ୍ଣ ଥିଲି ଯେ, ମୋର ବନ୍ଧୁ ପ୍ରତି ଅତ୍ୟନ୍ତ ଉଦାସୀନତା ଦେଖାଇଲି । ମୁଁ ଯେଉଁ ଚିଠି ଲେଖୁ-ଥିଲି, ତାହା ଶେଷ କରିବା ପର୍ଯ୍ୟନ୍ତ ଅପେକ୍ଷା କରିବା ନିମନ୍ତେ ମୁଁ ମୋର ବନ୍ଧୁ ଓ ପୁଲିସ କର୍ମଚାରୀଙ୍କୁ କହିଲି । ଏହା ପରେ ପରେ ସହରରେ ଅନ୍ୟ

ସବୁ ଗିରଫ ହେବାର ଅର୍ଥ ବୁଝୁଥିଲା । ଶେଷରେ ମୁଁ ଘରକୁ ଯାଇ ସେଠାରେ କଣ ହେଉଛି ଦେଖିବାକୁ ସ୍ଥିର କଲି । ସେଠାରେ ମଧ୍ୟ ଦେଖିଲି ଯେ, ଆମର ସେହି ବଡ଼ଘର ମଧ୍ୟରେ ଏକ ଅଂଶ ପୁଲିସ ଖାନତଲାସ କରୁଛନ୍ତି । ମୋତେ ଓ ପିତାଙ୍କୁ ଗିରଫ କରିବାକୁ ଆସିଛନ୍ତି ବୋଲି ଶୁଣିଲି ।

ଯୁବରାଜଙ୍କ ଆଗମନ ବହିଷ୍କାର କରିବା କାର୍ଯ୍ୟତାଲିକାର ଅନ୍ୟ କୌଣସି କାର୍ଯ୍ୟ ଏପରି ସାଫଲ୍ୟ ମଣ୍ଡିତ ହୋଇ ନ ଥାନ୍ତା । ସେ ଯେଉଁଠାକୁ ଗଲେ, ସେଠାରେ ହରତାଳ ହୋଇଥିଲା, ସହର ସବୁ ଖାଲି ପଡ଼ିଥିଲା । ସେ ଏଲାହାବାଦ ଆସିଲାବେଳକୁ ଏହା ଏକ ମୃତ ସହରପରି ହୋଇଥିଲା । କେତେକ ଦିନ ପରେ କଲିକତା ପରି ବଡ଼ ସହରରେ ହଠାତ୍ ଜନୋଳ ପାଇଁ ସମସ୍ତ କାର୍ଯ୍ୟ ବନ୍ଦ ହୋଇଗଲା । ଏହା ଯୁବରାଜଙ୍କ ପ୍ରତି କଠୋରତା ହେଲା; ମାତ୍ର ତାଙ୍କୁ ଦୋଷ ଦେବାର କଥା ନୁହେଁ; ତାଙ୍କ ପ୍ରତି କୌଣସି ଅସନ୍ତୋଷ ଭାବ ନ ଥିଲା । ମାତ୍ର ତାଙ୍କର ଆଗମନର ସୁବିଧାରେ ଭାରତ ସରକାର ତାଙ୍କ ଲୋକପ୍ରିୟ ମର୍ଯ୍ୟାଦାକୁ ଫେରାଇବାକୁ ଚେଷ୍ଟା କରୁଥିଲେ ।

ବିଶେଷତଃ ଯୁକ୍ତପ୍ରଦେଶରେ ଓ ବଙ୍ଗଳାରେ ବହୁତ ଗିରଫଦାରୀ ହେଲା । ଏହି ପ୍ରଦେଶଗୁଡ଼ିକର ସମସ୍ତ ପ୍ରଧାନ କଂଗ୍ରେସ ନେତା ଓ କର୍ମୀ ଗିରଫ ହୋଇଗଲେ ଏବଂ ହଜାର ହଜାର ସଂଖ୍ୟାରେ ସାଧାରଣ ସ୍ୱେଚ୍ଛାସେବକ ଜେଲ ଗଲେ । ପ୍ରଥମେ ଅଧିକାଂଶ ସଂଖ୍ୟାରେ ସହର ଲୋକେ ସ୍ୱେଚ୍ଛାସେବକ ହୋଇ ଆସୁଥିଲେ ଏବଂ ଜେଲ ଯିବାଲାଗି ଅସଙ୍ଖ୍ୟ ସ୍ୱେଚ୍ଛାସେବକ ହେଲେ । ଯୁକ୍ତପ୍ରଦେଶ ପ୍ରାଦେଶିକ କଂଗ୍ରେସ କମିଟିର ସମସ୍ତ ମେମ୍ବର (୫୫ ଜଣ) ବୈଠକ କରୁଥିଲାବେଳେ ଗିରଫ ହେଲେ । ଯେଉଁ ଲୋକେ ଏଥିପୂର୍ବରୁ କଂଗ୍ରେସ କାର୍ଯ୍ୟରେ କିଛି ଭାଗ ନେଇ ନଥିଲେ, ସେମାନେ ମଧ୍ୟ ଉତ୍ସାହରେ ଭାସିଯାଇ ଗିରଫହେବା ନିମନ୍ତେ ଜୋରକଲେ । କେତେକ ସ୍ଥାନରେ ସରକାରୀ ଅଫିସର କିରାଣୀମାନେ ଅଫିସରୁ କାର୍ଯ୍ୟ ସାରି ସନ୍ଧ୍ୟା ବେଳେ ଘରକୁ ଫେରୁଥିବାବେଳେ ଏହି ସ୍ରୋତରେ ଭାସିଯାଇ ଅଭ

ଘରକୁ ନ ଫେରି ଜେଲ ବରଣ କରୁଥିଲେ । ଯୁବକ ଓ ଶ୍ରେଷ୍ଠ ଶ୍ରେଷ୍ଠ ପିଲମାନେ ପୁଲିସ ମଠରେ ଭର୍ତ୍ତି ହୋଇଯାଆନ୍ତି ଏବଂ ବାହାରିବାଲାଗି ଅସ୍ୱୀକାର କରନ୍ତି । ବାହାରେ ଜନ୍ମଧିକ କହେ ଲାଖ ଲାଖ ଲୋକ ଜେଲ ଯାଉଛନ୍ତି ବୋଲି ଆମେ ଜେଲ ଭିତରୁ ଶୁଣିପାରୁ । ଜେଲମାନେ ଭର୍ତ୍ତି ହୋଇଗଲା ଏବଂ ଏହି ଅଦ୍ଭୁତ କାରଣ ଦେଖି ଜେଲ କର୍ମଚାରୀଙ୍କ ବୁଦ୍ଧି ହଜିଗଲା । ଅନେକ ସମୟରେ ଏପରି ହୁଏ ଯେ, ପୁଲିସ ଓ୍ୱାରେଣ୍ଟ ଅନୁସାରେ କେତେକ ବନ୍ଦୀଙ୍କୁ ନେଇ ଆସି ପହଞ୍ଚନ୍ତି; ମାତ୍ର କେତେକଙ୍କର ନାମ ନ ଥାଏ କିମ୍ବା ନାମ ଖୋଜି ବାହାର କରାଯାଇପାରେ ନା । ବାସ୍ତବିକ ଯେତେ ଲେଖାଯାଇଥାଏ, ତାହାଠାରୁ ଅଧିକ ସଂଖ୍ୟକ ଲୋକ ଲରିରୁ ବାହାରନ୍ତି ଏବଂ ଏହି ଅଦ୍ଭୁତ ପରିସ୍ଥିତିରେ କଣ କରାଯିବ ଜେଲ କର୍ମଚାରୀ-ମାନେ ସ୍ଥିର କରିପାରନ୍ତି ନାହିଁ । ଜେଲ ମାନୁଏଲ ବା ନିୟମାବଳୀରେ ଏ ସମ୍ବନ୍ଧରେ କିଛି ଲେଖା ନ ଥାଏ ।

କ୍ରମେ ଯାହାକୁ ତାକୁ ଗିରଫ କରିବା କଥା ସରକାର ଛାଡ଼ିଦେଲେ, କେବଳ ବଛିଲା କର୍ମୀମାନଙ୍କୁ ଗିରଫ କରାଗଲା । ଲୋକଙ୍କ ଭିତରେ ପ୍ରଥମ ଉତ୍ସାହ ତରଙ୍ଗ ଥଣ୍ଡା ପଡ଼ିଗଲା ଏବଂ ସମସ୍ତ ଶ୍ରେଷ୍ଠ କର୍ମୀ ଜେଲ ଭିତରେ ରହିଥିବାରୁ ଗୋଟାଏ ଅବଶ୍ୟମ୍ଭ ଓ ଅସହାୟ ଭାବ ଲୋକଙ୍କ ଭିତରେ ଦେଖାଗଲା । ମାତ୍ର ଏହି ପରିବର୍ତ୍ତନ କେବଳ ବାହାରେ ଦେଖାଯାଉଥିଲା; ବାୟୁମଣ୍ଡଳ ତଥାପି ବିପ୍ଳବୀ ଥିଲା ଏବଂ ବୈପ୍ଳବିକ ସମ୍ଭାବନାପୂର୍ଣ୍ଣ ହୋଇଥିଲା । ହିସାବରେ ଦେଖାଗଲା ଯେ, ୧୯୨୧ ମସିହା ଡିସେମ୍ବର ଏବଂ ୧୯୨୨ ଜାନୁଆରୀ ମାସ ଭିତରେ ଅସହଯୋଗ ଆନ୍ଦୋଳନ ସଂକ୍ରାନ୍ତରେ ପ୍ରାୟ ୩୦ ହଜାର ଲୋକ ଜେଲ ଯାଇଛନ୍ତି । ଅନେକ ପ୍ରସିଦ୍ଧ ଲୋକ ଓ କର୍ମୀ ଜେଲ ଭିତରେ ଥିଲେ ସୁଦ୍ଧା ଏହି ସଂଗ୍ରାମର ନେତା ମହାତ୍ମା ଗାନ୍ଧୀ ବାହାରେ ଥିଲେ ଏବଂ ଦିନକୁ ଦିନ ସେ ତାଙ୍କ ବାଣୀ ଓ ନିର୍ଦ୍ଦେଶ ଦେଉ-ଥିଲେ—ସେଥିରେ ଲୋକେ ଉତ୍ସାହିତ ହେଉଥିଲେ ଏବଂ ଅନେକ ଅବାଞ୍ଛନୀୟ କାର୍ଯ୍ୟ ମଧ୍ୟ ବନ୍ଦ ହେଉଥିଲା । ସରକାର ତାଙ୍କୁ ସେ ପର୍ଯ୍ୟନ୍ତ ଛୁଇଁ ନ ଥିଲେ, କାରଣ ଏହାର ଫଳାଫଳ ବିଶେଷତଃ ଭାରତୀୟ

ଫୌଜ ଓ ପୁଲିସ ଉପରେ କି ପ୍ରକାର ହେବ, ସେଥିଲାଗି ସେମାନେ ଭୟ ପାଉଥିଲେ ।

୧୯୨୨ ମସିହା ଫେବୃୟାରୀ ପ୍ରଥମ ଭାଗରେ ହଠାତ୍ ସମଗ୍ର ଅବସ୍ଥାର ପରିବର୍ତ୍ତନ ହୋଇଗଲା ଏବଂ ଆମେ ଜେଲରେ ଶୁଣି ଆଶ୍ଚର୍ଯ୍ୟ ହେଲୁ ଯେ, ଗାନ୍ଧିଜୀ ଆମ ଆନ୍ଦୋଳନର ସମସ୍ତ ଆକ୍ରମଣମୂଳକ କାର୍ଯ୍ୟପନ୍ଥା ବନ୍ଦ କରି ଦେଇଛନ୍ତି । ସେ ଆଇନ ଅମାନ୍ୟ ସ୍ଥଗିତ ରଖିଛନ୍ତି । ଆମେ ପଢ଼ିଲୁ ଯେ ଚୌରିଚୌରା ଗ୍ରାମରେ କେତେକ ଜନତା ପୁଲିସଙ୍କ ଉପରେ ପ୍ରତିଶୋଧ ନେବା ନିମନ୍ତେ ଥାନାରେ ନିଆଁ ଲଗାଇ ଦେଇଥିବାରୁ ଏବଂ ପ୍ରାୟ ଅଧ-ଡଜନ ବା କେତେକ ପୁଲିସ ଲୋକଙ୍କୁ ସେଥିରେ ପୋଡ଼ି ପକାଇଥିବାରୁ ସେ ଏହା ବନ୍ଦ କଲେ ।

ଆମର ଅବସ୍ଥା ଦୃଢ଼ ହେଉଥିଲା ବେଳେ ଏବଂ ସବୁ ପ୍ରକାରେ ଆମେ ଅଗ୍ରସର ହେଉଥିଲା ବେଳେ ସଂଗ୍ରାମ ବନ୍ଦ ହୋଇଯିବା କଥା ଶୁଣି ଆମେମାନେ କ୍ରୋଧାନ୍ୱିତ ହେଲୁ । ମାତ୍ର ଜେଲ ଭିତରେ ଆମର କ୍ରୋଧ ଏବଂ ହତାଶ ହେବାରେ ଯାଏ ଆସେ କେତେ ? ଆଇନ ଅମାନ୍ୟ ବନ୍ଦ ହେଲା ଏବଂ ଅସହଯୋଗ ମଉଳିଗଲା । ଅନେକ ଦିନ ଦୁଶ୍ଚିନ୍ତା ଓ ଉଦ୍‌ବେଗ ପରେ ସରକାର ସ୍ୱସ୍ତି ନିଃଶ୍ୱାସ ମାରିଲା ଏବଂ ନିଜେ ଆଗଭର ହେବା ଲାଗି ପ୍ରଥମ ସୁଯୋଗ ପାଇଲା । କେତେକ ସପ୍ତାହ ପରେ ସେମାନେ ଗାନ୍ଧିଜୀଙ୍କୁ ଗିରଫ କଲେ ଏବଂ ଦୀର୍ଘ କାରାବାସ ଦଣ୍ଡ ଦେଲେ ।

---

# ଅହିଂସା ଓ ତରବାରୀର ପଥ

ଗାନ୍ଧିଜୀଙ୍କ ବ୍ୟତୀତ ପ୍ରାୟ ସମସ୍ତ ମୁଖିଆ କଂଗ୍ରେସ ନେତା ଚୌରି-ଚୌରା ଘଟଣା ଯୋଗୁ ଆମର ଆନ୍ଦୋଳନ ସ୍ଥଗିତ ରଖାଯିବାରେ ଅସନ୍ତୋଷ ପ୍ରକାଶ କଲେ । ମୋର ପିତା (ସେ ସେତେବେଳେ ଜେଲରେ ଥିଲେ) ବଡ଼ ବିବ୍ରତ ହୋଇ ପଡ଼ିଲେ । ଯୁବକମାନେ ସ୍ୱଭାବତଃ ବେଶୀ ଉତ୍ତେଜିତ ହେବାର କଥା । ଏହାର ପ୍ରତିକ୍ରିୟାରୂପେ ଆମର ଉଚ୍ଚ ଆଶା ଧୂଳିସାତ୍ ହୋଇଗଲା । ଯେଉଁ କାରଣରୁ ଏହା ସ୍ଥଗିତ ରଖାଗଲା ଏବଂ ଏହାର ଯାହା ଫଳାଫଳ ହେବ ତାହା ନେଇ ଆମେ ବେଶୀ ଅଧୀର ହେଲୁ । ଚୌରିଚୌରା ଏକ ଦୁଃଖଦାୟକ ଘଟଣା ହୋଇ ପଡ଼ିଥାଏ ଏବଂ ହୋଇଥିଲା ମଧ୍ୟ, ଏହା ଅହିଂସା ଆନ୍ଦୋଳନ ଦୃଷ୍ଟିରୁ ସମ୍ପୂର୍ଣ୍ଣ ବିପରୀତ । ମାତ୍ର କୌଣସି ଏକ ସୁଦୂର ଗ୍ରାମ ବା ଅଜଣା ସ୍ଥାନର ଉତ୍ତେଜିତ ଜନତାଙ୍କ କାର୍ଯ୍ୟ ଯୋଗୁଁ ସ୍ୱାଧୀନତା ଲାଗି ଚାଲିଥିବା ଆମର ଜାତୀୟ ସଂଗ୍ରାମ ଅନ୍ତତଃ କିଛି ଦିନ ଲାଗି ଚାଲିଥିବା କ'ଣ ବନ୍ଦ ହୋଇ ପାରେକି ? କୌଣସି ସ୍ଥାନରେ ହଠାତ୍ ଏକ ହିଂସା-ମୂଳକ କାର୍ଯ୍ୟ ହେଲେ ତାହାର ଯଦି ଏହି ଫଳାଫଳ ହୁଏ, ତେବେ ଅହିଂସା ସଂଗ୍ରାମର କୌଶଳ ଓ ଦର୍ଶନରେ ବହୁତ ଅଭାବ ରହିଛି ବୋଲି କହିବାକୁ ହେବ । କାରଣ ଏପରି ଅପ୍ରୀତିକର ଘଟଣା ନ ଘଟିବ ବୋଲି ଠିକ ପ୍ରତିଶ୍ରୁତି ଦେବା ଅସମ୍ଭବ ପରି ଆମକୁ ମନେ ହେଉଥିଲା । ତା ହେଲେ କଣ ଭାରତର ୩୦ କୋଟି * ନର ନାରୀଙ୍କୁ ଅହିଂସାର ତତ୍ତ୍ୱ ଓ ବ୍ୟବହାରରେ ଶିକ୍ଷିତ କରି ଆମକୁ ତା ପରେ ଅଗ୍ରସର ହେବାକୁ ହେବ ? ତାହା ହେଲେ ମଧ୍ୟ ପୁଲିସର କାର୍ଯ୍ୟ ଅତ୍ୟାଚାରରେ ଆମ ଭିତରୁ କେତେ ଜଣ ବା ସମ୍ପୂର୍ଣ୍ଣ ଶାନ୍ତିପୂର୍ଣ୍ଣ ହୋଇ ରହିପାରିବେ ? ଆମେ ଧରି ରହିଲୁ; ମାତ୍ର

* ସେତେବେଳେ ଭାରତର ଜନସଂଖ୍ୟା ୩୦ କୋଟି ଥିଲା । ୧୯୪୧ ଜନସଂଖ୍ୟାରେ ଏହା ମୋଟାମୋଟି ୪୦ କୋଟି ବୋଲି ଧରା ଯାଇଛି ।

ଅନୁବାଦକ

ଆମ ଆନ୍ଦୋଳନରେ ଯେଉଁସବୁ ପ୍ରରୋଚକ ଚର (agent provocaters) ଏବଂ ଅନ୍ୟାନ୍ୟ ଲୋକେ ପଶି ହିଂସା କରିବେ କିମ୍ବା ତାହା କରିବା ଲାଗି ଲୋକଙ୍କୁ ପ୍ରବର୍ତ୍ତାଇବେ, ସେତେବେଳେ ଆମେ କଣ କରିବା ? ଅହିଂସା ଚଳାଇବାର ଏହା ଯଦି ପ୍ରଧାନ ସର୍ତ୍ତ ହୋଇଥାଏ, ତେବେ ଅହିଂସା ପଥରେ ପ୍ରତିରୋଧ ସର୍ବଦା ବିଫଳ ହେବ ।

ଅହିଂସାର କାର୍ଯ୍ୟକାରିତାରେ ବିଶ୍ୱାସ କରି ଆମେ ଏହି ପନ୍ଥାକୁ ଗ୍ରହଣ କରିଥିଲୁ ଏବଂ କଂଗ୍ରେସ ମଧ୍ୟ ଏହାକୁ ନିଜର ପନ୍ଥା ବୋଲି ସ୍ୱୀକାର କରିଥିଲା । ଏହା ଏକମାତ୍ର ଠିକ୍ ପନ୍ଥା ବୋଲି ଗାନ୍ଧିଜୀ ଦେଶ ସମ୍ମୁଖରେ ରଖି ନ ଥିଲେ, ମାତ୍ର ସର୍ବାପେକ୍ଷା କାର୍ଯ୍ୟକାରୀ ପନ୍ଥା ବୋଲି ସେ ଦେଶ ସମ୍ମୁଖରେ ଏହା ରଖିଥିଲେ । "ଅହିଂସା" ନାମଟି ନାସ୍ତିବାଚକ ହେଲେ ମଧ୍ୟ ଏହା ଏକ କ୍ରିୟାଶୀଳ ପନ୍ଥା ଏବଂ ଅତ୍ୟାଚାରୀ ନିକଟରେ ଇଚ୍ଛାକ୍ରମେ ବଶ୍ୟତା ସ୍ୱୀକାରର ବିପରୀତ । ଏହା କାପୁରୁଷର କର୍ମବିମୁଖତା ନୁହେଁ, ସାହସୀ ଲୋକର ଅନ୍ୟାୟ ଓ ଜାତୀୟ ପରାଧୀନତା ବିରୁଦ୍ଧରେ ଅଭିଯାନ । ମାତ୍ର ଯଦି କେତେକ ଲୋକ—ସେମାନେ ପୁଣି ବାହ୍ୟ ହୋଇ ଛଦ୍ମବେଶରେ ଶତ୍ରୁ ରୂପେ ଆମ ଭିତରେ ରହିଥାଇ ପାରନ୍ତି—ସେମାନଙ୍କର ଖରାପ ଆଚରଣ ଦ୍ୱାରା ଆମ ଆନ୍ଦୋଳନ ବନ୍ଦକରି ଦେଇ ପାରନ୍ତି, ତାହାହେଲେ ସାହସୀ ବା ଶକ୍ତିଶାଳୀ ଲୋକର ଆବଶ୍ୟକତା କଣ ଅଛି ?

ଗାନ୍ଧିଜୀ ତାଙ୍କର ଅତୁଳନୀୟ ବାଗ୍ମୀ ଶକ୍ତିଦ୍ୱାରା ଅହିଂସା ଓ ଶାନ୍ତିପୂର୍ଣ୍ଣ ଅସହଯୋଗ ପନ୍ଥା ଗ୍ରହଣ କରାଇ ପାରିଥିଲେ । ତାଙ୍କ ଭାଷା ସରଳ ଓ ଅନାଡ଼ମ୍ବର ଥିଲା, ତାଙ୍କର ସ୍ୱର ଓ ଚେହେରା ଅତ୍ୟନ୍ତ ଧୀର ଓ ଭାବପ୍ରବଣଶୂନ୍ୟ ଥିଲା, ମାତ୍ର ଏହି ବାହାରର ଆବରଣ ତଳେ ଉତ୍ତପ୍ତ ଅଗ୍ନି ଓ ପ୍ରଚଣ୍ଡ ପ୍ରେରଣା ଜାଗ୍ରତ ଥିଲା ଏବଂ ତାଙ୍କ ମୁଖନିଃସୃତ ଭାଷା ଆମ ହୃଦୟର ଅନ୍ତରତମ ପ୍ରଦେଶରେ ପ୍ରବେଶ କରୁଥିଲା ଓ ଆମ

ଭିତରେ ଅପୂର୍ବ ଉନ୍ମାଦନା ସୃଷ୍ଟି କରୁଥିଲା । ତାଙ୍କ ନିର୍ଦ୍ଦେଶିତ ପଥ ଅତ୍ୟନ୍ତ କଠିନ ଓ କଣ୍ଟକର ଥିଲା । ମାତ୍ର ଏହା ଏକ ସାହସିକ ପନ୍ଥା ଏବଂ ଏହା ଆମର ଈପ୍ସିତ ସ୍ୱାଧୀନ ଭୂଖଣ୍ଡରେ ଆମକୁ ପହଞ୍ଚାଇବ ବୋଲି ଆମକୁ ବୋଧ ହେଉଥିଲା । ଏହି ଆଶାରେ ଆମେ ବିଶ୍ୱାସ ବାନ୍ଧି ଅଗ୍ରସର ହେଲୁ । "ତରବାରୀର ପଥ" ଶୀର୍ଷକ ଏକ ପ୍ରବନ୍ଧରେ ସେ ୧୯୨୦ ମସିହାରେ ଲେଖିଥିଲେ—

"ମୁଁ ବିଶ୍ୱାସ କରେ ଯେ, ଯେତେବେଳେ କାପୁରୁଷତା ଓ ହିଂସା ମଧ୍ୟରୁ କାହାକୁ ବରଣ କରିବାର ପ୍ରଶ୍ନ ଉଠିବ, ସେତେବେଳେ ମୁଁ ହିଂସାକୁ ବରଣ କରିବ । ଭାରତ ତାର ଆତ୍ମମର୍ଯ୍ୟାଦା ହରାଇ କାପୁରୁଷଭାବରେ ଏକ ଅସହାୟ ଶିକାର ରୂପରେ ରହିବା ଅପେକ୍ଷା ମୁଁ ବରଂ ତାର ସମ୍ମାନ ରକ୍ଷା ନିମନ୍ତେ ଶସ୍ତ୍ର ଧରି ଯୁଦ୍ଧ କରିବାକୁ ପସନ୍ଦ କରିବି । ମାତ୍ର ମୁଁ ବିଶ୍ୱାସ କରେ ଯେ ଅହିଂସା ଅନେକଗୁଣରେ ହିଂସାଠାରୁ ଉନ୍ନତପନ୍ଥା; ଶାସ୍ତି ଅପେକ୍ଷା କ୍ଷମାଦେବା ଅଧିକ ମାନବିକତାର ପରିଚାୟକ । କ୍ଷମା ବୀରସ୍ୟ ଭୂଷଣମ୍ ।"

"କ୍ଷମା ସୈନିକର ଭୂଷଣ । ମାତ୍ର ଶାସ୍ତି ଦେବାର ଶକ୍ତି ଥାଇ ମଧ୍ୟ ସେଥିରୁ ନିବୃତ୍ତ ହେବାହିଁ ପ୍ରକୃତ କ୍ଷମା, ଅସହାୟ ହୋଇଥିବା ହେତୁ କ୍ଷମା ଦେବା ନିରର୍ଥକ । ମୂଷା ଯେତେବେଳେ ଖଣ୍ଡ ଖଣ୍ଡ ହୋଇ ବିରାଡ଼ିର ଆହାର ହୁଏ, ସେତେବେଳେ ସେ ତାକୁ କ୍ଷମା ଦିଏନା—ମାତ୍ର ଭାରତ ଅସହାୟ ବୋଲି ମୁଁ ବିଶ୍ୱାସ କରେନା; ମୁଁ ଏକ ଅସହାୟ ଜୀବ ବୋଲି ମଧ୍ୟ ନିଜକୁ ମୁଁ ବିଚାରେ ନାହିଁ ।"

"ମୋତେ କେହି ଭୁଲ ବୁଝନ୍ତୁ ନାହିଁ । କେବଳ ଦୈହିକ ବଳରୁ ଶକ୍ତି ଆସେନା । ଅଦମ୍ୟ ଇଚ୍ଛାଶକ୍ତିରୁ ମଧ୍ୟ ତାହା ଆସେ ।"

"ମୁଁ ସ୍ୱପ୍ନରେ ବିଚରଣ କରିବାକୁ ଚାହେଁ । ମୁଁ ଜଣେ ବାସ୍ତବ ଆଦର୍ଶବାଦୀ ବୋଲି ନିଜକୁ ଦାବୀ କରେ । ଅହିଂସା ଧର୍ମ କେବଳ ଋଷି

ମୁନିଙ୍କ ଲାଗି ହୋଇନାହିଁ । ଏହା ସର୍ବସାଧାରଣଙ୍କ ଲାଗ ମଧ୍ୟ ହୋଇଛି । ହିଂସା ପାଶବିକତାର ଧର୍ମ; ଅହିଂସାଭାବ ମନୁଷ୍ୟତାର ପରିଚୟ । ପଶୁଠାରେ ଆତ୍ମବୋଧ ନିର୍ଜୀବ ହୋଇ ପଡ଼ିଥାଏ, ସେ ଦୈହିକ ବଳ ଛଡ଼ା ଆଉ କିଛି ଜାଣେନା । ମାତ୍ର ଉଚ୍ଚ ଆଦର୍ଶକୁ ସ୍ୱୀକାର କରିବା ଏବଂ ଆତ୍ମ-ବୋଧର ଶକ୍ତି ବୃଦ୍ଧିପାଇଲେ ମନୁଷ୍ୟର ମର୍ଯ୍ୟାଦା ବୃଦ୍ଧିପାଏ ।"

"ମୁଁ ସେହିହେତୁ ଭାରତ ସମ୍ମୁଖରେ ପୁରାତନ ଆତ୍ମତ୍ୟାଗ ଆଦର୍ଶ ରଖିବାକୁ ସାହସ କରିଛି । ସତ୍ୟାଗ୍ରହ, ତାର ଶାଖା ପ୍ରଶାଖା, ଅସହଯୋଗ ଓ ନିରୁପଦ୍ରବ ପ୍ରତିରୋଧ—ଏହାସବୁ ତ୍ୟାଗର ନାମାନ୍ତର ମାତ୍ର । ଯେଉଁ ଋଷିମାନେ ହିଂସା ମଧ୍ୟରେ ସୁଦ୍ଧା ଅହିଂସାର ଆଦର୍ଶ ରଖିପାରିଥିଲେ, ସେମାନେ ନିଉଟନଙ୍କ ଅପେକ୍ଷା ଅଧିକ ବିଦ୍ୱାନ, ସେମାନେ ୱେଲିଙ୍ଗଟନ୍‌ଙ୍କ ଅପେକ୍ଷା ଅଧିକ ଯୋଦ୍ଧା । ଶସ୍ତ୍ର ପ୍ରୟୋଗ ଜାଣି ସୁଦ୍ଧା ସେମାନେ ଏହାର ଅପକାରିତା ବୁଝି ପାରିଥିଲେ ଏ ଏକ କ୍ଲାନ୍ତ ପୃଥିବୀର ମୁକ୍ତି ହିଂସାଦ୍ୱାରା ନୁହେଁ, ଅହିଂସାଦ୍ୱାରା ସମ୍ଭବ ବୋଲି ଶିଖାଇଲେ ।"

"କ୍ରିୟାଶୀଳ ଅହିଂସାର ଅର୍ଥ ହେଉଛି, ସଚେତନ ଭାବରେ କଷ୍ଟ ବରଣ କରିବା । ଅନ୍ୟାୟକାରୀର ଇଚ୍ଛା ନିକଟରେ ବଶ୍ୟତା ସ୍ୱୀକାର କରିବା ଅହିଂସା ନୁହେଁ; ମାତ୍ର ଏହାର ଅର୍ଥ ହେଉଛି ଅତ୍ୟାଚାରୀର ଇଚ୍ଛା ବିରୁଦ୍ଧରେ ନିଜର ସମସ୍ତ ଶକ୍ତି ନିୟୋଜିତ କରାଇବା । ଏହି ନୀତି ମାନି ଜୀବନ ଗଢିପାରିଲେ ଜଣେ ବ୍ୟକ୍ତିବିଶେଷ ମଧ୍ୟ ଏକ ଅନ୍ୟାୟ ରଚିତ ସାମ୍ରାଜ୍ୟକୁ ଉପେକ୍ଷା କରି ନିଜର ସମ୍ମାନ, ଧର୍ମ ଓ ଆତ୍ମରକ୍ଷା କରିପାରେ ଏବଂ ସେହି ସାମ୍ରାଜ୍ୟକୁ ପତନ ବା ପୁନର୍ଗଠନର ମୂଳଭିତ୍ତି ଗଢ଼ିପାରେ ।"

"ସୁତରାଂ ଭାରତ ଆଜି ଦୁର୍ବଳ ବୋଲି ମୁଁ ଅହିଂସା ଗ୍ରହଣ କରିବା ନିମନ୍ତେ କହୁନାହିଁ । ତାହାର ଶକ୍ତି ଓ ସାମର୍ଥ୍ୟ ସମ୍ବନ୍ଧେ ସଚେତନ ଥାଇ

ସୁଦ୍ଧା ମୁଁ ଅହିଂସା ପ୍ରୟୋଗ କରିବା ନିମନ୍ତେ କହୁଛି । ମୁଁ ବୁଝେଁ ଭାରତ ବୁଝେ ଯେ, ତାହାର ଆତ୍ମା ଧ୍ୱଂସ ହୋଇ ପାରେ ନା, ତାହା ସମସ୍ତ ଶାରୀରିକ ଦୁର୍ବଳତା ସତ୍ତ୍ୱେ ଜୟଲାଭ କରିପାରେ ଏବଂ ସମଗ୍ର ଜଗତର ଶାରୀରିକ ଶକ୍ତି ସମଷ୍ଟି ବିରୁଦ୍ଧରେ ଠିଆ ହୋଇପାରେ ।"

"ମୁଁ ସିନଫିନ୍ ଆନ୍ଦୋଳନଠାରୁ ଏହି ଅସହଯୋଗକୁ ପୃଥକ୍-ରୂପେ ଦେଖୁଛି; କାରଣ ଏହା ହିଂସା ସଙ୍ଗେ ସଙ୍ଗେ ଚଳିପାରିବାକୁ ଅସମର୍ଥ । କିନ୍ତୁ ଯେଉଁମାନେ ହିଂସାରେ ବିଶ୍ୱାସ କରନ୍ତି; ସେମାନେ ଏହି ଶାନ୍ତିପୂର୍ଣ୍ଣ ଅସହଯୋଗକୁ ଥରେ ପରୀକ୍ଷା କରିବା ନିମନ୍ତେ କହୁଛି । ଏହା ଆଭ୍ୟନ୍ତରିକ ଦୁର୍ବଳତା ହେତୁ ଵିଫଳ ହେବ ନାହିଁ । ଏହା ସମର୍ଥକ ଅଭାବରୁ ହୁଏତ ବ୍ୟର୍ଥ ହୋଇପାରେ । ସେତେବେଳେ ପ୍ରକୃତ ବିପଦ ସମୟ ଆସି ପହଞ୍ଚିବ । ଯେଉଁ ଉଚ୍ଚାତ୍ମା ପୁରୁଷମାନେ ଜାତିର ଅପମାନ ସହ୍ୟ କରିବାକୁ ଅସମର୍ଥ ହେବେ, ସେମାନେ ତାଙ୍କର କ୍ରୋଧ ପ୍ରକାଶ କରିବାକୁ ଇଚ୍ଛା କରିବେ । ସେମାନେ ହିଂସା ପଥ ଧରି ପାରନ୍ତି । ମାତ୍ର ମୋତେ ଯେତେଦୂର ଜଣା ପଡୁଛି; ସେମାନେ ନିଜର ମୁକ୍ତି ବା ଅନ୍ୟାୟ କବଳରୁ ଦେଶକୁ ରକ୍ଷା କରିବା ପୂର୍ବରୁ ନିଜେ ଧ୍ୱଂସ ପାଇଯିବେ । ଭାରତ ତରବାରୀର ପଥ ନେଲେ କ୍ଷଣିକ ଜୟଲାଭ କରିପାରେ, ମାତ୍ର ସେତେବେଳେ ସେ ଭାରତବର୍ଷରେ ମୁଁ ଗର୍ବ ଅନୁଭବ କରି ପାରିବି ନାହିଁ । ମୋର ସମସ୍ତ ଜୀବନ ଭାରତବର୍ଷର ଦାନ ବୋଲି ମୁଁ ଭାରତ ପ୍ରତି ଆସକ୍ତ । ସାରା ଜଗତକୁ ତାର ଏକ ସନ୍ଦେଶ ଦେବାର ଅଛି ବୋଲି ମୁଁ ପୂର୍ଣ୍ଣରୂପେ ବିଶ୍ୱାସ କରେ ।

ଏହିସବୁ ମନ୍ତ୍ରରେ ଆମେ ତରଳିଗଲୁ, ମାତ୍ର ଆମ ପକ୍ଷରେ କିମ୍ବା ଜାତୀୟ କଂଗ୍ରେସ ପକ୍ଷରେ ଅହିଂସାପନ୍ଥା ଏକ ଧର୍ମ ବା ଅପରିବର୍ତ୍ତନୀୟ ମୂଳନୀତି ନୁହେଁ; ଏହିରୂପେ କଂଗ୍ରେସ ତାହା ଗ୍ରହଣ କରିନାହିଁ । ଏହା କେବଳ ଏକ ଉପାୟ ଏବଂ ସେହି ଉପାୟର କିଛି ଫଳ ବାଛି କରାଯାଉଥିଲା ଏବଂ ଏହି ଫଳ ଦୃଷ୍ଟିରୁହିଁ ଏହାକୁ ବିଚାର କରାଯାଉଥିଲା ।

ବ୍ୟକ୍ତିବିଶେଷ ଏହାକୁ ଏକ ଧର୍ମ ଏବଂ ଅପରିବର୍ତ୍ତନଶୀଳ ନୀତି ରୂପେ ଗ୍ରହଣ କରି ପାରନ୍ତି । ମାତ୍ର କୌଣସି ରାଜନୀତି ଅନୁଷ୍ଠାନ, ଯେତେଦିନ ପର୍ଯ୍ୟନ୍ତ ଏହା ରାଜନୀତିକ ହୋଇ ରହିଥିବ, ଏହା କରିପାରେନା !

ଚୌରୀଚୌରା ଓ ତାର ଫଳାଫଳ ପରେ ଆମେ ଏକ ପନ୍ଥା ହିସାବରେ ଅହିଂସାର ତାତ୍ପର୍ଯ୍ୟ ପରୀକ୍ଷା କରିବାରେ ଲାଗିଲୁ ଏବଂ ଆମେ ଭାବି ନେଲୁ ଯେ, ଗାନ୍ଧିଜୀ ସବିନୟ ପ୍ରତିରୋଧ ସ୍ଥଗିତ ରଖିବା ନିମନ୍ତେ ଯେଉଁ ଯୁକ୍ତି କରୁଛନ୍ତି, ତାହା ଯଦି ଠିକ୍ ବୋଲି ଧରାଯାଏ, ତେବେ ଆମ ଶତ୍ରୁମାନେ ସର୍ବଦା ଏପରି ପରିସ୍ଥିତି ସୃଷ୍ଟି କରିଦେବେ, ଯାହାଫଳରେ ଆମ ଆନ୍ଦୋଳନ ବରାବର ସ୍ଥଗିତ ରଖିବାକୁ ପଡ଼ିବ । ଏହା ଗାନ୍ଧିଜୀଙ୍କର ବ୍ୟାଖ୍ୟାରେ, ନା ଅହିଂସା ପନ୍ଥାର ଦୋଷ ? ସେ ଏହାର ଜନକ ଓ କର୍ତ୍ତା ଏବଂ ଏହା ଜାଣି ବା ଜାଣି ନୁହେଁ । ଏହା ତାଙ୍କ ଛଡ଼ା ଆଉ କିଏ ବିଚାର କରିବ ? ତାଙ୍କୁ ବାଦ ଦେଲେ ଆମ ଆନ୍ଦୋଳନ କେଉଁଠି ରହିବ ?

ଅନେକ ବର୍ଷ ପରେ ୧୯୩୦ ମସିହାରେ ଆଇନ ଅମାନ୍ୟ ଆନ୍ଦୋଳନ ପୂର୍ବରୁ ଗାନ୍ଧିଜୀ ଏହି ବିଷୟ ପରିଷ୍କାର କରି ଦେଇଥିଲେ ଓ ଆମେ ସନ୍ତୁଷ୍ଟ ହୋଇଥିଲୁ । ସେ କହିଲେ ଯେ; କେଉଁଠି କଦବା ହିଂସା ହୋଇଯିବା ହେତୁ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖା ଯାଇପାରିବ ନାହିଁ । ଏହିସବୁ ଅବଶ୍ୟମ୍ଭାବୀ ଘଟଣା ଯୋଗୁଁ ଯଦି ଅହିଂସା ମୂଳକ ସଂଗ୍ରାମ ଚାଲି ନ ପାରେ, ଏହା ସର୍ବଦା ଆଦର୍ଶ ପନ୍ଥା ନୁହେଁ ବୋଲି ବୁଝିବାକୁ ହେବ-ମାତ୍ର ଏହା ସ୍ୱୀକାର କରିବା ନିମନ୍ତେ ଗାନ୍ଧିଜୀ ପ୍ରସ୍ତୁତ ନ ଥିଲେ । ସେ ଏହି ପନ୍ଥାକୁ ଉପଯୁକ୍ତ ପନ୍ଥା ଓ ସର୍ବ ସ୍ଥଳରେ ପ୍ରଯୁଜ୍ୟ ବୋଲି ମନେ କରୁଥିଲେ ଏବଂ ଅତ୍ୟନ୍ତ ବିରୁଦ୍ଧ ବାୟୁମଣ୍ଡଳରେ ସୁଦ୍ଧା ସୀମାବଦ୍ଧଭାବରେ କାର୍ଯ୍ୟ କରିପାରେ-ଏହି ବ୍ୟାଖ୍ୟାଦ୍ୱାରା ଅହିଂସାର ପରିସର ବିସ୍ତୃତ ହୋଇଗଲା । ଏହା ତାଙ୍କର ନିଜ ମନର ଗତି ଯୋଗୁଁ ସମ୍ଭବ ହେଲା କି ନା, ମୁଁ ଜାଣେ ନାହିଁ ।

ପ୍ରକୃତରେ କହିବାକୁ ଗଲେ ୧୯୨୨ ମସିହା ଫେବ୍ରୁୟାରୀ ମାସରେ ନିରୁପଦ୍ରବ ପ୍ରତିରୋଧ କେବଳ ଚୌରୀଚୌରା ଘଟଣା ଯୋଗୁ ସ୍ଥଗିତ ରଖାଯାଇ ନ ଥିଲା; ଅବଶ୍ୟ ଅନେକ ଲୋକ ସେପରି ଅନୁମାନ କରନ୍ତି । ଏହା ଏକ ଶେଷ ଘଟଣା ଥିଲା । ଅନେକ ସମୟରେ ଗାନ୍ଧିଜୀ ତାଙ୍କର ବିବେକର ଅନୁଭୂତି ଦ୍ୱାରା ଚାଳିତ ହୁଅନ୍ତି । ଦୀର୍ଘକାଳ ହେଲା ଜନ-ସାଧାରଣଙ୍କ ଘନିଷ୍ଠ ସମ୍ପର୍କରେ ଆସିଥିବା ହେତୁ ଅନ୍ୟ ବଡ ବଡ଼ ନେତାଙ୍କ ପରି ଜନସାଧାରଣ କିପରି ବୋଧ କରୁଛନ୍ତି; କଣ କରୁଛନ୍ତି ଏବଂ କଣ କରିପାରନ୍ତି, ଏହା' ଜାଣିପାରିବା ଭଳି ଏକ ଭାବ ତାଙ୍କଠାରେ ହୋଇ-ଯାଇଛି । ସେ ଏହି ଭାବ ଅନୁସାରେ ନିଜର କାର୍ଯ୍ୟ ଚାଳନା କରନ୍ତି ଏବଂ ପରେ ତାଙ୍କ କାର୍ଯ୍ୟରେ ଆଶ୍ଚର୍ଯ୍ୟ ଓ ଅସନ୍ତୋଷ ହୋଇଥିବା ସହକର୍ମୀଙ୍କୁ ସେ ପ୍ରଶ୍ନର ସନ୍ତୋଷଜନକ ନିଷ୍ପତ୍ତି ବୁଝାଇ ଦିଅନ୍ତି । ଅନେକ ସମୟରେ ଏହି ପ୍ରଶ୍ନ ପର୍ଯ୍ୟାପ୍ତ ମନେ ହୁଏ ନା—ଚୌରୀଚୌରା ଘଟଣାରେ ଯେପରି ହେଲା । ସେତେବେଳେ ଆମର ଆନ୍ଦୋଳନରେ ବାହାରେ ଜଣାପଡୁଥିବା କ୍ଷମତା ଓ ଉତ୍ସାହ ସତ୍ତ୍ୱେ ଆନ୍ଦୋଳନ ପ୍ରାୟ ଭାଙ୍ଗି ପଡ଼ିବା ଅବସ୍ଥାରେ ଥିଲା । ସଙ୍ଗଠନ ଓ ଶୃଙ୍ଖଳା ଚାଲିଯାଇଥିଲା—ଆମର ସବୁ ଉତ୍ତମ ଲୋକ ପ୍ରାୟ ଜେଲଖାନାରେ ଥିଲେ ଏବଂ ନିଜେ କାର୍ଯ୍ୟ ଚଳାଇଦେବା ଭଳି ଶିକ୍ଷା ଜନସାଧାରଣ ପାଇ ନ ଥିଲେ । ଯେ କୌଣସି ଅପରିଚିତ ଲୋକ ଆସି କଂଗ୍ରେସ ସଙ୍ଗଠନ ଭାର ନେଇ ପାରୁଥିଲା ଏବଂ ପ୍ରକୃତରେ ଅନେକ ଅବାଞ୍ଛନୀୟ ଲୋକ ପ୍ରରୋଚକ ଶ୍ରେଣୀର ଆଗୁଆ ହୋଇ ଆସି ସ୍ଥାନୀୟ କଂଗ୍ରେସ ଓ ଖିଲଫତ ଅନୁଷ୍ଠାନରେ କର୍ତ୍ତୃତ୍ୱ କରୁଥିଲେ । ଏହାକୁ ବନ୍ଦ କରିବାର ବାଟ ନ ଥିଲା ।

ଏପରି ଏକ ସଂଗ୍ରାମରେ ଏପରି ଘଟଣା ହେବା ପ୍ରାୟ ସମ୍ଭବ । ସେମାନେ ଜେଲ ଯିବା ସଙ୍ଗେ ସଙ୍ଗେ ଅନ୍ୟମାନେ ଏହା ଚାଳନା କରିବେ ବୋଲି ଭାବିବା ଦରକାର । ଜନସାଧାରଣଙ୍କୁ କେତେକ ସାଧାରଣ କଥାରେ ଶିକ୍ଷା ଦିଆଯାଇ ପାରେ କିମ୍ବା ଅତି ବଡ଼ ହେଲେ କେତେକ କାର୍ଯ୍ୟ ନ କରିବା ନିମନ୍ତେ କୁହାଯାଇ ପାରେ । ୧୯୩୦ ବେଳକୁ

ଆମେ ସେପରି ଶିକ୍ଷା ଦେବାରେ କେତେ ବର୍ଷ କଟାଇଥିଲୁ ଏବଂ ସେ ବର୍ଷ ଓ ୧୯୩୨ ମସିହାର ଆଇନ ଅମାନ୍ୟ ଆନ୍ଦୋଳନ ସେଥିଲାଗି ଅଧିକ ଶକ୍ତିଶାଳୀ ଓ ସଙ୍ଗଠିତ ହୋଇଥିଲା । ୧୯୨୧ ଓ ୧୯୨୨ ରେ ଏହି ଅଭାବ ଥିଲା । ଲୋକଙ୍କର ଉତ୍ସାହ ଓ ଉନ୍ମାଦନା ଛଡ଼ା ଅନ୍ୟ ଶକ୍ତି କିଛି ନ ଥିଲା । ଆନ୍ଦୋଳନ ଚାଲିଥିଲେ ସ୍ଥାନେ ସ୍ଥାନେ ଯେ ଟିକିଏ ହିଂସା କାର୍ଯ୍ୟ ହୋଇ ଥାଆନ୍ତା, ଏଥିରେ ତିଳେ ହେଲେ ସନ୍ଦେହ ନାହିଁ । ସରକାର ଏହାକୁ ଅତି ନିର୍ମମ ଭାବରେ ଦମନ କରି ଦେଇଥାଆନ୍ତା ଏବଂ ଗୋଟାଏ ଆତଙ୍କ ସୃଷ୍ଟି ହୋଇଥାଆନ୍ତା ଏବଂ ଲୋକ ବଡ଼ ମ୍ରିୟମାଣ ହୋଇ ପଡ଼ିଥାନ୍ତେ ।

ସମ୍ଭବତଃ ଏହିସବୁ କାରଣରେ ପ୍ରଭାବ ଗାନ୍ଧୀଜୀଙ୍କ ମନରେ ପଡ଼ିଥିଲା । ଅହିଂସା କୌଶଳ ପ୍ରୟୋଗ କରିବା ସମ୍ବନ୍ଧରେ ତାଙ୍କର ଇଚ୍ଛା ଓ ପଦ୍ଧତି ଦେଖିଲେ, ତାଙ୍କର ସିଦ୍ଧାନ୍ତ ଠିକ୍ ଥିଲା ବୋଲି କହିବାକୁ ହେବ । ସେ କ୍ରମେ ଅବନତ ଘଟିଥିବା ଭାରତକୁ ଏକପ୍ରକାର ନୂତନ କରି ଗଢ଼ିବାକୁ ଚେଷ୍ଟାକଲେ । ଆଉ ଗୋଟିଏ ସମ୍ପୂର୍ଣ୍ଣ ଭିନ୍ନ ଦୃଷ୍ଟିକୋଣରୁ ତାଙ୍କର ସିଦ୍ଧାନ୍ତ ଭୁଲ ବୋଲି ଧରିପାରିପାରେ, ମାତ୍ର ଏ ଦୃଷ୍ଟିକୋଣର ଅହିଂସା ଉପାୟ ସହିତ କୌଣସି ସମ୍ପର୍କ ନ ଥିଲା । ଦୁଇ କଥା ଏକାଠି ହେବା ସମ୍ଭବ ନୁହେଁ । ଆନ୍ଦୋଳନ ଏପରି ଅବସ୍ଥାରେ ପହଞ୍ଚିଥିଲା ବେଳେ ଆମ ଆନ୍ଦୋଳନକୁ ଅତିଶୀଘ୍ର ଦମନ କରି ବନ୍ଦ କରି ଦେବା ଅବଶ୍ୟ ସମ୍ଭବ ନ ଥିଲା । କାରଣ ଏହିସବୁ ଆନ୍ଦୋଳନ ସାଧାରଣତଃ ଭସ୍ମ ଉପରୁ ଗଢ଼ି ଉଠେ । ଐହିକ ପରାଜୟ ଅନେକ ସମୟରେ ଆମର ସମସ୍ୟାକୁ ପରିଷ୍କାର କରେ ଏବଂ ବଳ ଦାନ କରେ—ଆନ୍ଦୋଳନ ଦବିଯିବା ବା ସାମୟିକ ପରାଜୟରେ କିଛି ଯାଏ ଆସେନା, ନୀତି ଓ ଆଦର୍ଶକୁ ହିଁ ଲକ୍ଷ୍ୟ କରିବାର କଥା । ଜନସାଧାରଣ ଯଦି କୌଣସି ଭୁଲ ନକରି ଏହି ନୀତି ଠିକ୍ ରଖିପାରନ୍ତି, ତେବେ ଶକ୍ତି ଶୀଘ୍ର ଫେରି ଆସିବ । ମାତ୍ର ୧୯୨୧ ଓ ୨୨ ମସିହାରେ ଆମର ନୀତି ଏବଂ ଲକ୍ଷ୍ୟ କଣ ଥିଲା ? ଗୋଟିଏ ଅସ୍ପଷ୍ଟ ସ୍ୱରାଜ୍ୟ ଆମ ଆଗରେ ଥିଲା—ସେ ସମ୍ବନ୍ଧରେ ପରିଷ୍କାର କଳ୍ପନା ନ ଥିଲା ଏବଂ ଅହିଂସା

ସଂଗ୍ରାମର ଏକ ବିଶେଷ ଉପାୟ ଆମେ ଜାଣିଥିଲୁ । ଯଦି ବ୍ୟାପକଭାବରେ ଆକସ୍ମିକ ହିଂସା ବଡ଼ ଆକାରରେ ଦେଶସାରା ଦେଖାଯାଇଥାନ୍ତା, ତାହାହେଲେ ଅହିଂସା ଲୁଆଡ଼େ ଲୁଲିପାଇଥାନ୍ତା, ପୂର୍ବକଥିତ ସ୍ୱଦେଶୀ ଆଉ କେହିକେ ଧରି ରହି ନ ଥାନ୍ତେ । ଲୋକଙ୍କର ସାଧାରଣତଃ ଦୀର୍ଘକାଳବ୍ୟାପୀ ସଂଗ୍ରାମ ଚଳାଇବା ଭଳି ଶକ୍ତି ନ ଥିଲା । ବିଦେଶୀ ଶାସନ ପ୍ରତି ପ୍ରାୟ ସମସ୍ତଙ୍କର ଅସନ୍ତୋଷ ଥାଏ ଏବଂ କଂଗ୍ରେସ ପ୍ରତି ପୂର୍ଣ୍ଣ ସହାନୁଭୂତି ଥିବା ସତ୍ତ୍ୱେ ମଧ୍ୟ ଦେଶର ସେଭଳି ଶକ୍ତି ବା ସଙ୍ଗଠନ ନଥିଲା । ସଙ୍ଗଠନ ରହିପାରୁ ନ ଥିଲା । ଏପରି କି ଯେଉଁ ଜନତା ଜେଲ ଯାଉଥିଲେ, ସେମାନେ ହଠାତ୍ ଉତ୍ସାହରେ ପଡ଼ି ଯାଉଥିଲେ ଏବଂ ଅତି ଶୀଘ୍ର ସମସ୍ତ କଥା ଶେଷ ହୋଇଯିବ ବୋଲି ଆଶା କରିଥିଲେ ।

ଅତଏବ ୧୯୨୨ ସାଲରେ ସବିନୟ ପ୍ରତିରୋଧ ବନ୍ଦ କରିବା ସିଦ୍ଧାନ୍ତ ଠିକ୍ ହୋଇଥିଲା ବୋଲି କୁହାଯାଇପାରେ; ମାତ୍ର ଏହା ଯେପରି ଭାବରେ କରାଗଲା, ସେଥିରେ ଲୋକଙ୍କ ଭିତରେ ଗୋଟାଏ ଅବସାଦ ଆସିବାର ଯଥେଷ୍ଟ କାରଣ ଥିଲା ।

ଏପରି ହଠାତ୍ ଏକ ବିରାଟ ଆନ୍ଦୋଳନ ବନ୍ଦ କରିବା ଯୋଗୁ ଦେଶରେ ଅନେକ ଶୋଚନୀୟ କାଣ୍ଡ ଘଟିଥିବା ସମ୍ଭବ । ରାଜନୀତିକ ସଂଗ୍ରାମ ନିରର୍ଥକ ଓ ଆକସ୍ମିକ ହିଂସା ପଥରୁ ରକ୍ଷା ପାଇଥିଲା; ମାତ୍ର ଦମନ ହୋଇଥିବା ହିଂସା ପ୍ରକାଶ ପାଇବାକୁ ବାଟ ଖୋଜୁଥିଲା ଏବଂ ପରବର୍ତ୍ତୀ ବର୍ଷମାନଙ୍କରେ ସାମ୍ପ୍ରଦାୟିକ ଗୋଳମାଳ ସବୁ ବୃଦ୍ଧି ପାଇଲା । ଅସହଯୋଗ ଓ ସବିନୟ ପ୍ରତିରୋଧ ଆନ୍ଦୋଳନ ଅପୂର୍ବ ପ୍ରକାରେ ଜନସାଧାରଣଙ୍କ ସମର୍ଥନ ପାଇଥିବାରୁ ବିଭିନ୍ନ ସାମ୍ପ୍ରଦାୟିକ ନେତା, ବିଶେଷତଃ ରାଜନୀତିକ ପ୍ରତିକ୍ରିୟାଶୀଳମାନେ ଅତି ତଳେ ପଡ଼ିଯାଇଥିଲେ । ସେମାନେ ତାଙ୍କ କବରରୁ ଏବେ ଉଠିଲେ । ଗୁପ୍ତଚର ବିଭାଗର ଏଜେଣ୍ଟ ଓ ଅନ୍ୟ ଲୋକେ ଶାସକବର୍ଗଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ସାମ୍ପ୍ରଦାୟିକ ବିରୋଧ ସୃଷ୍ଟି କରିବାକୁ ଲାଗି ପଡ଼ିଲେ । ମୋଗଲ

ବିଦ୍ରୋହ ଏବଂ ଏହାକୁ ଅତି ନିଷ୍ଠୁର ଭାବରେ ଦମନ—ବନ୍ଦ ରେଲଡବାରେ ମୋପଲା ବନ୍ଦୀମାନଙ୍କୁ ସେକି ମାରି ପକାଇବା ଭଳି ନିଷ୍ଠୁର କାର୍ଯ୍ୟ—ସାମ୍ପ୍ରଦାୟିକ ଗଣ୍ଡଗୋଳ ଜମୁକାଇବା ଲୋକଙ୍କୁ ଗୋଟାଏ ସୁଯୋଗ ଦେଲା । ସବିନୟ ଆଇନ ଅମାନ୍ୟ ବନ୍ଦ ହୋଇ ନ ଥିଲେ ଏବଂ ସରକାର ତାହାକୁ ଧ୍ୱଂସ କରିଦେଇଥିଲେ, ବୋଧହୁଏ ସାମ୍ପ୍ରଦାୟିକ ଦ୍ୱେଷ ଏତେ ହୋଇ ନ ଥାନ୍ତା ଏବଂ ସାମ୍ପ୍ରଦାୟିକ ଦଙ୍ଗା ଦମନ କରିବା ନିମନ୍ତେ ସରକାରଙ୍କ ପାଖରେ କମ ଶକ୍ତି ଥାଆନ୍ତା ।

ସବିନୟ ପ୍ରତିରୋଧ ସ୍ଥଗିତ ରଖିବା ପୂର୍ବରୁ ଏପରି ଏକ ଘଟଣା ଘଟିଲା, ଯାହା ଯୋଗୁ ଅନ୍ୟପ୍ରକାର ଫଳ ହେଲା । ସବିନୟ ପ୍ରତିରୋଧର ପ୍ରଥମ ଅବସ୍ଥା ଦେଖି ସରକାର ଚମକିତ ଓ ଭୀତ ହେଲା । ଏହି ସମୟରେ ସେତେବେଳର ବଡ଼ଲାଟ ଲର୍ଡ ରେଡ଼ିଂ ଏକ ସାଧାରଣ ବକ୍ତୃତାରେ କହିଥିଲେ, ସେମାନେ ବଡ଼ ବିବ୍ରତ ଓ ହତମାନ ହେଲେଣି । ଇଂଲଣ୍ଡର ଯୁବରାଜ ଭାରତକୁ ଆସିଲେ ଏବଂ ତାଙ୍କର ଆଗମନ ହେତୁ ସରକାରର ଦାୟିତ୍ୱ ଅଧିକ ବଢ଼ିଲା । ଡିସେମ୍ବର ମାସର ପ୍ରଥମ ଭାଗରେ ଅନେକ ଗିରଫଦାରୀ ଚାଲିଲା; ମାତ୍ର ସେହି ମାସ ଶେଷବେଳକୁ କଂଗ୍ରେସ ସହିତ ଗୋଟିଏ ମିଳାମିଶା କରିବା ନିମନ୍ତେ ସରକାର ତରଫରୁ ଏକ ଉଦ୍ୟମ ଚାଲିଲା । ବିଶେଷତଃ ଇଂଲଣ୍ଡ ଯୁବରାଜଙ୍କ କଲିକତା ଆଗମନ ହେତୁ ଏହା ହୋଇଥିଲା । ଦେଶବନ୍ଧୁ ଦାସ ସେତେବେଳେ ଜେଲରେ ଥିଲେ । ତାଙ୍କ ସହିତ ବଙ୍ଗଳା ସରକାରଙ୍କ ପ୍ରତିନିଧିଙ୍କର କେତେକ ଘରୋଇ କଥାବାର୍ତ୍ତା ହୋଇଥିଲା । ସରକାର ଓ କଂଗ୍ରେସକୁ ନେଇ ଏକ ରାଉଣ୍ଡ ଟେବୁଲ ସମ୍ମିଳନୀ ହେବା ନିମନ୍ତେ ଏକ ପ୍ରସ୍ତାବ ହୋଇଥିବାର ଅନୁମାନ ହୁଏ । ଏହି ପ୍ରସ୍ତାବ ନିଷ୍ଫଳ ହେଲା—କାରଣ ସେତେବେଳେ କରାଚୀ ଜେଲରେ ମୌଲାନା ମହମ୍ମଦ ଅଲି ଥାଆନ୍ତି । ତାଙ୍କର ସମ୍ମିଳନୀରେ ଉପସ୍ଥିତି ଲୋଡ଼ା ବୋଲି ଗାନ୍ଧିଜୀ ଦାବି କଲେ । ସରକାର ସେଥିରେ ସମ୍ମତ ହେଲା ନାହିଁ ।

ସି. ଆର. ଦାସ ଏଥିପ୍ରତି ଗାନ୍ଧିଜୀଙ୍କର ମତାମତକୁ ପସନ୍ଦ କଲେ ନାହିଁ ଏବଂ ପରେ ସେ ଜେଲରୁ ଖଲାସ ହୋଇ ଆସି ଗାନ୍ଧିଜୀଙ୍କୁ ପ୍ରକାଶ୍ୟ ଭାବରେ ସମାଲୋଚନା କଲେ ଓ ସେ ଏକ ମହା ଭୁଲ କରିଛନ୍ତି ବୋଲି କହିଲେ । ଆମ ଭିତରୁ ଅନେକ (ଆମେ ଜେଲରେ ଥାଉ) ଏ ଘଟଣାର ବସ୍ତୁତ ଖବର ଜାଣୁନା, ସମସ୍ତ ଘଟଣା ନ ଜାଣି ବିଚାର କରିବା ଠିକ୍ ନୁହେଁ; ମାତ୍ର ମନେ ହେଉଛି, ସେତେବେଳେ ଗୋଟାଏ ସନ୍ଧିଲାଭ ହୋଇ କିଛି ଉପକାର ହୋଇ ନ ଥାନ୍ତା । ଯୁବରାଜଙ୍କର କଲିକତା ଆଗମନ ପର୍ଯ୍ୟନ୍ତ କୌଣସି ପ୍ରକାରେ ଏହାକୁ ଗଡ଼ାଇଦେବା ନିମନ୍ତେ ସରକାର ତରଫରୁ ଉଦ୍ୟମ ଚାଲିଥିଲା । ଆମର ମୂଳ ସମସ୍ୟା ସବୁ ସେହିପରି ରହିଥାନ୍ତା । ନଅବର୍ଷ ପରେ ଆମ ଦେଶ ଓ କଂଗ୍ରେସ ଅଧିକ ଶକ୍ତିଶାଳୀ ଥିଲାବେଳେ ଏହିପରି ଏକ ସନ୍ଧିଲାଭ ହୋଇ କିଛି ଫଳ ହେଲା ନାହିଁ । ଏହାଛଡ଼ା ମଧ୍ୟ ଗାନ୍ଧିଜୀ ମୌଲାନା ମହମ୍ମଦ ଆଲିଙ୍କ ଉପସ୍ଥିତି ଦାବୀ କରିବା ସମ୍ପୂର୍ଣ୍ଣରୂପେ ଯୁକ୍ତିସଙ୍ଗତ ପରି ମୋତେ ବୋଧ ହେଉଛି । କେବଳ ଜଣେ କଂଗ୍ରେସ ନେତା ହିସାବରେ ନୁହେଁ, ଖିଲଫତ୍ ଆନ୍ଦୋଳନର ନେତା ହିସାବରେ—ସେତେବେଳେ ଖିଲଫତ୍ ସମସ୍ୟା କଂଗ୍ରେସ କାର୍ଯ୍ୟପନ୍ଥାରେ ଗୋଟାଏ ବଡ଼ ସମସ୍ୟା ଥିଲା—ତାଙ୍କର ଉପସ୍ଥିତି ଆବଶ୍ୟକ ଥିଲା । ଯଦି କୌଣସି ନୀତି ବା କର୍ମଦ୍ୱାରା ଜଣେ ସହକର୍ମୀଙ୍କୁ ହରାଇବାକୁ ପଡ଼େ, ତେବେ ସେହି କାର୍ଯ୍ୟ ଠିକ୍ ହୋଇପାରେ ନା । ସରକାର ତାଙ୍କୁ ଯେ ଜେଲରୁ ଖଲାସ କରିବା ନିମନ୍ତେ ରାଜି ନ ଥିଲେ, ଏହିଥିରୁ ସେହି ସନ୍ଧି ଲାଗିରେ କିଛି ହୋଇ ନ ଥାନ୍ତା ବୋଲି ପରିଷ୍କାର ଜଣାପଡ଼ୁଛି ।

ମୁଁ ଓ ମୋର ପିତା ଅ—ଗା ଆ—ଗା ଅପରାଧରେ ଭିନ୍ନ ଭିନ୍ନ ଅଦାଲତରେ ୬ ମାସ ଲେଖାଏ କାରାଦଣ୍ଡ ପାଇଥିଲୁ । ଏହି ବିଚାର ଏକ ପ୍ରକାର ପ୍ରହସନ ପରି ହୋଇଥିଲା ଏବଂ ଆମର ନିର୍ଦ୍ଦେଶ ଅନୁସାରେ ଆମେ ସେଥିରେ ଭାଗ ନେଇ ନ ଥିଲୁ । ଆମର ବକ୍ତୃତା ବା ଅନ୍ୟ କାର୍ଯ୍ୟରେ ଗୋଟାଏ ଶାସ୍ତି ଦେବା ପାଇଁ ଯଥେଷ୍ଟ ସାମଗ୍ରୀ ପାଇବା

ସହମତି ଥିଲା । ମାତ୍ର ସେଥିଭିତରୁ ସେମାନେ ଯାହା ବାଛୁଥିଲେ, ତାହା ବେଶ ଆମୋଦପ୍ରଦ । କଂଗ୍ରେସ ସ୍ୱେଚ୍ଛାସେବକବାହିନୀ—ଏକ ବେଆଇନ ଅନୁଷ୍ଠାନର ସଭ୍ୟରୂପେ ପିତାଙ୍କର ବିଚାର ହୋଇଥିଲା ଏବଂ ଏହା ପ୍ରମାଣ କରିବା ନିମନ୍ତେ ତାଙ୍କର ଦସ୍ତଖତ ଥିବା ଏକ ହିନ୍ଦି କାଗଜ କୋଠରେ ସାକ୍ଷରେ ଦର୍ଶାଇଲେ । ଏଥିରେ ଅବଶ୍ୟ ତାଙ୍କର ଦସ୍ତଖତ ଥିଲା । ମାତ୍ର ସେ ପ୍ରାୟ ହିନ୍ଦିରେ ଦସ୍ତଖତ କରନ୍ତି ନାହିଁ ଏବଂ ଖୁବ୍ କମ ଲୋକେ ତାଙ୍କର ହିନ୍ଦି ଦସ୍ତଖତ ଦେଖିଛନ୍ତି; ମାତ୍ର ଏକ ଦରିଦ୍ର ଲୋକ ସାକ୍ଷୀରୂପେ ଆସି ଏହା ତାଙ୍କର ଦସ୍ତଖତ ବୋଲି କହିଲା । ସେ ଲୋକଟି ସମ୍ପୂର୍ଣ୍ଣ ନିରକ୍ଷର ଥିଲା ଏବଂ ସେ ସାକ୍ଷ୍ୟ ଦେଲାବେଳେ ଦସ୍ତଖତ ହୋଇଥିବା କାଗଜଟିକୁ ଓଲଟା କରି ଧରିଥାଏ । ମୋ ଝିଅକୁ ସେତେବେଳେ ୪ ବର୍ଷ ହୋଇଥାଏ—ସେ ପ୍ରଥମେ ଡକ୍‌ରେ ପଶିଲା, କାରଣ ବାପା ବିଚାର ସମୟରେ ତାକୁ କୋଳରେ ଧରିଥାନ୍ତି ।

ମୋର ଅପରାଧ ହେଉଛି, ମୁଁ ହରତାଳ ପାଇଁ ନୋଟିସ ବାଣ୍ଟୁଥିଲି । ସେତେବେଳେ ଆଇନ ଅନୁସାରେ ଏହା କିଛି ଅପରାଧ ନ ଥିଲା; ଅବଶ୍ୟ ବର୍ତ୍ତମାନ ଏହା ହେଲାଣି ବୋଲି ମୋର ବିଶ୍ୱାସ, କାରଣ ଆମେ ସ୍ୱାୟତ୍ତଶାସନ ଆଡ଼କୁ ଅଗ୍ରସର ହେଉଛୁ । ଯାହାହେଉ ମୋତେ ଶାସ୍ତି ଦିଆଗଲା । ମୁଁ ବାପାଙ୍କ ସହ ଜେଲରେ ଥିଲି । ତିନିମାସ ପରେ ମୋତେ ଖବର ମିଳିଲା ଯେ, କୌଣସି ଉପରସ୍ଥ କର୍ମଚାରୀ ଦେଖି ବୁଝି ପାଉଛନ୍ତି ମୋତେ ଭୁଲରେ ଶାସ୍ତି ଦିଆ ହୋଇଯାଇଛି ଏବଂ ଖଲାସ କରିଦିଆଯିବ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି, କାରଣ ମୋ ତରଫରୁ କେହି କିଛି ଆପତ୍ତି ବା ଅପିଲ କରି ନ ଥିଲେ । ସବିନୟ ପ୍ରତିରୋଧ ବନ୍ଦ ହୋଇ ଯିବା ଯୋଗୁଁ ବିଚାରପତିମାନେ ଟିକିଏ ତାଙ୍କର ପୂର୍ବକାର୍ଯ୍ୟ ସବୁ ପୁଣି ଥରେ ଦେଖିବାପାଇଁ ଫୁରୁସତ ପାଇଲେ । ପିତାଙ୍କୁ ଜେଲରେ ଛାଡ଼ି ଖଲାସ ହୋଇ ଆସିବାରୁ ମୋର ଦୁଃଖ ହେଲା ।

ମୁଁ ସଙ୍ଗେ ସଙ୍ଗେ ଅହମଦାବାଦରେ ଗାନ୍ଧିଜୀଙ୍କ ପାଖକୁ ଯିବାକୁ ସ୍ଥିର କଲି । ମୁଁ ସେଠାରେ ପହଞ୍ଚିବା ପରେ ସେ ଗିରଫ ହୋଇ

ଯାଉଥିଲେ ଏବଂ ସାବରମତୀ ଜେଲରେ ତାଙ୍କ ସହିତ ମୋର ସାକ୍ଷାତ ହେଲା । ତାଙ୍କର ବିଚାରବେଳେ ମୁଁ ଉପସ୍ଥିତ ଥିଲି । ଏହା ଏକ ସ୍ମରଣୀୟ ଦିବସ ଏବଂ ଯେଉଁମାନେ ସେଠାରେ ଉପସ୍ଥିତ ଥିଲେ, ସେମାନେ ଏହା ଭୁଲିପାରିବେ ନାହିଁ । ବିଚାରପତି ଇଂରେଜ ବଡ଼ ମର୍ଯ୍ୟାଦାର ସହିତ ବ୍ୟବହାର କରିଥିଲେ । ଗାନ୍ଧୀଜୀଙ୍କର କଚେରୀରେ ବିବୃତି (statement) ବଡ଼ ମର୍ମସ୍ପର୍ଶୀ ହୋଇଥିଲା ଏବଂ ଆମେମାନେ ତାଙ୍କର କଥା ଓ ତାଙ୍କ ମୂର୍ତ୍ତି ମନ ମଧ୍ୟରେ ନେଇ ଖୁବ୍ ଭାବପ୍ରଣୋଦିତ ହୋଇ ଫେରି ଆସିଲୁ ।

ମୁଁ ଏଲାହାବାଦକୁ ଚାଲି ଆସିଲି । ମୋର ଏତେ ବନ୍ଧୁ ଓ ସହକର୍ମୀ ଜେଲ ଭିତରେ ଥିବାରୁ ମୁଁ ବଡ଼ ଅସୁଖୀ ଓ ନିଃସଙ୍ଗ ମନେକଲି । କଂଗ୍ରେସ ଅନୁଷ୍ଠାନ ଠିକ୍‌ରୂପେ ଚାଲୁ ନ ଥିବାର ମୁଁ ଦେଖିଲି ଏବଂ ତାକୁ ଠିକ କରିବା ନିମନ୍ତେ ଚେଷ୍ଟା କଲି । ବିଶେଷରେ ବିଦେଶୀ ଲୁଗା ବହିଷ୍କାର କାର୍ଯ୍ୟକୁ ମୁଁ ଭଲଭାବରେ ଚଲାଇବାକୁ ଚେଷ୍ଟା କଲି । ସବିନୟ ପ୍ରତିରୋଧ ବନ୍ଦ ହେବା ସତ୍ତ୍ୱେ ଆମର ଏହି କାମ ଚାଲିଥାଏ । ଏଲାହାବାଦରେ ପ୍ରାୟ ସମସ୍ତ ଲୁଗା ବେପାରୀ ବିଦେଶୀ ଲୁଗା ଆଣିବେ ନାହିଁ ବା କିଣିବେ ନାହିଁ ବୋଲି ଶପଥ କରିଥିଲେ ଏବଂ ସେହି ଉଦ୍ଦେଶ୍ୟରେ ଏକ ସମିତି ଗଢ଼ାହେଲା । ଏଥିରେ ଏକ ନିୟମ ରହିଲା ଯେ ନିୟମର ବ୍ୟତିକ୍ରମ ହେଲେ ଜୋରିମାନା ଦଣ୍ଡ ଦିଆଯିବ । ମୁଁ ଦେଖିଲି, କେତେକ ବଡ଼ ଲୁଗା ବେପାରୀ ତାଙ୍କର ଶପଥ ଭାଙ୍ଗି ବିଦେଶୀ ଲୁଗା ଆଣୁଛନ୍ତି । ଶପଥ ମାନିଥିବା ଲୋକଙ୍କ ପ୍ରତି ଏହା ଅନ୍ୟାୟ । ଆମେ ଏହାର ପ୍ରତିବାଦ କଲୁ; ମାତ୍ର କିଛି ଫଳ ହେଲା ନାହିଁ ଏବଂ ଲୁଗା ଦୋକାନୀ ସମିତିର ମଧ୍ୟ ଏହା ବିରୁଦ୍ଧରେ କିଛି କରିପାରିବା ଭଳି କ୍ଷମତା ନ ଥିଲା । ତେଣୁ ଭୁଲ କରିଥିବା ଦୋକାନୀମାନଙ୍କର ଦୋକାନ ପିକେଟିଂ କରିବା ନିମନ୍ତେ ଆମେ ସ୍ଥିର କଲୁ । କେବଳ ପିକେଟିଂ ହେବ ବୋଲି ଟିକିଏ ସୂଚନା ଯଥେଷ୍ଟ ଥିଲା । ସେମାନେ ଜୋରିମାନା ଦେଲେ ଏବଂ ଶପଥ ପୁଣି ଗ୍ରହଣ କଲେ । ସେହି ଜୋରିମାନା ଟଙ୍କା ଲୁଗା ଦୋକାନୀ ସମିତିକୁ ଦିଆଗଲା ।

ଦୁଇ ତିନି ଦିନ ପରେ ମୁଁ ସେହି ମିଳାମିଶାରେ ଯୋଗ ଦେଇଥିବା ଆଉ କେତେକ ସହକର୍ମୀଙ୍କ ସହିତ ଗିରଫ ହେଲି । ଆମ ବିରୁଦ୍ଧରେ ବଳପୂର୍ବକ ଜବରଦସ୍ତି ଓ ହଇରାଣ କରିଥିବା ଅଭିଯୋଗ ଆସିଲା । ମୁଁ ରାଜଦ୍ରୋହ ସହ ଆଉ କେତେକ ଦଫାରେ ଅଭିଯୁକ୍ତ ହେଲି । ମୁଁ ମୋର ମକଦ୍ଦମା ଲଢିଲି ନାହିଁ; ମାତ୍ର କଚେରୀରେ ଏକ ଦୀର୍ଘ ବକ୍ତୃତା ଦେଲି । ମୋତେ ଜବରଦସ୍ତି ଇତ୍ୟାଦି ଅଭିଯୋଗ ସହ ତିନୋଟି ଦଫାରେ ଶାସ୍ତି ଦିଆଗଲା; ମାତ୍ର ରାଜଦ୍ରୋହ ଅପରାଧ ମକଦ୍ଦମା ଆଉ ଚଳାଇଲେ ନାହିଁ—କାରଣ ମୋତେ ଯେତେ ଜେଲ ହେବାର କଥା ମୁଁ ତାହା ପ୍ରାପ୍ତ ହୋଇ ସାରିଥିଲି । ମୋର ଯେତେଦୂର ମନେ ଅଛି, ମୋତେ ତିନୋଟି ଶାସ୍ତି ମିଳିଥିଲା—ସେଥିରୁ ଦୁଇଟିରେ ୧୮ମାସ ଲେଖାଏ ହୋଇଥିଲା ଏବଂ ତାହା ଏକ ସଙ୍ଗରେ ଭୋଗ କରିବାକୁ ପଡ଼ିବ ବୋଲି ଆଦେଶ ହେଲା । ମୋଟରେ ମନେହୁଏ ମୁଁ ଏକବର୍ଷ ନଅମାସ ଜେଲଦଣ୍ଡ ପାଇଲି । ଏହା ଦ୍ୱିତୀୟଥର ପାଇଁ ମୋର କାରାବାସ । ମୁଁ ପ୍ରାୟ ଛଅ ସପ୍ତାହ ବାହାରେ ରହିବା ପରେ ପୁଣି ଜେଲକୁ ଫେରିଗଲି ।

— — —

## ଲକ୍ଷ୍ନୌ ଜେଲ

୧୯୨୨ ମସିହାରେ ରାଜନୈତିକ ଅପରାଧ ଯୋଗୁଁ ଜେଲ ଯିବା ଭାରତରେ କିଛି ନୂତନ କଥା ନ ଥିଲା । ବିଶେଷତଃ ବଙ୍ଗ ଭଙ୍ଗ ଆନ୍ଦୋଳନ ଦିନୁଁ ଜନତା ସୁଅ ପରି ଜେଲ ଯାଉଛନ୍ତି ଓ ଅନେକ ଦୀର୍ଘକାଳ କାରାଦଣ୍ଡ ପାଉଛନ୍ତି । ବିନା ବିଚାରରେ ଅନେକ ନଜରବନ୍ଦ ହୋଇ ମଧ୍ୟ ରହିଥିଲେ । ଭାରତର ଏକ ପ୍ରଧାନ ନେତା ତାଙ୍କ ଜୀବନର ଅବସାନ କାଳକୁ ୬ବର୍ଷ କାରାବାସ ପାଇଥିଲେ । ମହାସମର ଯୋଗୁଁ ନଜରବନ୍ଦି ଓ ଜେଲ ସଂଖ୍ୟା ବୃଦ୍ଧି ପାଇଲା—ଅନେକ ଷଡ଼ଯନ୍ତ୍ର

ମକଦ୍ଦମା ହେଲା ଓ ତା ଫଳରେ କେତେକ ଲୋକ ଫାଶୀ ଏବଂ ଦୀର୍ଘ କାରାବାସ ପାଇଲେ । ଆଲି ଭାଇ ଦ୍ଵୟ ଏବଂ ମୌଲନା ଆବୁଲ କାଲାମ ଆଜାଦ ପ୍ରାୟ ସମୟରେ ନଜରବନ୍ଦୀ ହୋଇଥିଲେ । ଯୁଦ୍ଧ ଶେଷ ହେବାର ଅଳ୍ପଦିନ ପରେ ପଞ୍ଜାବରେ ସାମରିକ ଆଇନ ହେବା ଫଳରେ ଅନେକ କାଣ୍ଡ ଘଟିଗଲା । ଷଡ଼ଯନ୍ତ୍ର ମକଦ୍ଦମା ଏବଂ ବିଶେଷ ଟ୍ରିବ୍ୟୁନାଲରେ ବହୁ ସଂଖ୍ୟକ ଲୋକଙ୍କୁ ଜେଲ ଦିଆଗଲା । ଏହିରୂପେ ରାଜନୀତିକ ଅପରାଧ ଯୋଗୁଁ ଜେଲ ପ୍ରାୟ ଭାରତରେ ହେଉଥାଏ; ମାତ୍ର ଜାଣି ଶୁଣି କେହି ଜେଲ ବରଣ କରୁ ନ ଥିଲେ । କାର୍ଯ୍ୟ କରୁ କରୁ ଯାହାଙ୍କୁ ଜେଲ ହେଉଥିଲା, ସେମାନେ ଯାଉଥିଲେ, କିମ୍ବା ଗୁପ୍ତ ଢଙ୍ଗ ପୂର୍ବରୁ ଯାହା କାହାକୁ ଭଲା ପାଉ ନ ଥିଲେ, ତେବେ ସେ ଜେଲ ଯାଉଥିଲା ଏବଂ ଆଇନ ଅଦାଲତରେ ମକଦ୍ଦମା ଲଢ଼ି ଖଲାସ ହେବାକୁ ସକଳ ଉଦ୍ୟମ କରି ଯାଉଥିଲା । ଅବଶ୍ୟ ଦକ୍ଷିଣ ଆଫ୍ରିକାରେ ଗାନ୍ଧୀଜୀ ଅନ୍ୟ ପ୍ରକାର ଆଦର୍ଶ ଦେଖାଇଥିଲେ ଏବଂ ସତ୍ୟାଗ୍ରହ କରି ହଜାର ହଜାର ଲୋକ ଜେଲ ବରଣ କରିଥିଲେ ।

ତଥାପି ୧୯୨୧ ମସିହାରେ ଜେଲ ଏକ ଅଜଣା ସ୍ଥାନ ହୋଇ ରହିଥିଲା ଏବଂ ଏହି କଏଦୀମାନଙ୍କ ପ୍ରତି ଜେଲର ବନ୍ଦ ଫାଟକ ଭିତରେ କପରି ବ୍ୟବହାର କରାଯାଉଥିଲା ତାହା ଅଳ୍ପ ଲୋକେ ଜାଣିଥିଲେ । ଆମେମାନେ ଅସ୍ପଷ୍ଟରୂପେ ଅନୁମାନ କରୁଥିଲୁ ଯେ, ଏହା ଭିତରେ ଥିବା ଲୋକେ ଅତ୍ୟନ୍ତ ନିଷ୍ଠୁର ଓ ଭୀଷଣ ଅପରାଧୀ । ଆମ ମନରେ ଏହା ଏକ ନିର୍ଜନ, ଅପମାନଜନକ ଓ କଷ୍ଟଦାୟକ ସ୍ଥାନ—ଯେଉଁଠାରେ ପୁଣି ଅଚିହ୍ନା ଲୋକ ସହିତ ମିଳାମିଶା କରି ରହିବାର ଭୟ ଥାଏ । ୧୯୨୦ ମସିହା ଠାରୁ ବରାବର ଜେଲ ଯିବା ସମ୍ବନ୍ଧରେ ଶୁଣାଯିବାରୁ ଏବଂ ଆମର ଅନେକ ସହକର୍ମୀ ଜେଲ ଯିବାରୁ, ଜେଲ ସମ୍ବନ୍ଧରେ ଧାରଣା ବଦଳି ଗଲା ଏବଂ ଏଥିପ୍ରତି ଯେଉଁ ଘୃଣା ଓ ଅବଜ୍ଞା ଭାବ ଥିଲା, ତାହା ପ୍ରାୟ ଦୂର ହୋଇଗଲା । ମାତ୍ର ଆମେ ମାନସିକ ଯେତେ ପ୍ରସ୍ତୁତ ହୋଇଥିଲେ ସୁଦ୍ଧା, ପ୍ରଥମେ ଲୁହା ଫାଟକ ଭିତରେ ପହଞ୍ଚିବା ମାତ୍ରେ ସେ ଉଦ୍‌ବେଗ ଓ

ଭୟ ମିଶ୍ରିତ ଉତ୍ତେଜନା ଯାଇ ନ ଥିଲା । ସେହିଦିନଠାରୁ ଅର୍ଥାତ୍ ୩ ବର୍ଷ ହେଲା ମୋର ମନେ ହୁଏ ରାଜନୈତିକ ଅପରାଧ ଯୋଗୁଁ ପ୍ରାୟ ତିନିଲକ୍ଷ ନରନାରୀ ଭାରତରେ ଜେଲ ଯାଇଛନ୍ତି—ଅବଶ୍ୟ ସେ ଭିତରୁ ଅନେକଙ୍କୁ ଫୌଜଦାରୀ ଆଇନର ଅନ୍ୟ ଦଫାମାନଙ୍କରେ ମଧ୍ୟ ଅଭିଯୁକ୍ତ କରାଯାଇଛି । ଅନେକ ଥର ହଜାର ହଜାର ଲୋକ ଜେଲ ଯାଇଛନ୍ତି ଓ ଫେରି ଆସିଛନ୍ତି; ଭିତରେ କପଟ ଚଳିବାକୁ ହେବ, ସେମାନଙ୍କୁ ପ୍ରାୟ ଜଣା ଅଛି । ସେହି ଅସାଧାରଣ ଏବଂ ନିରାନନ୍ଦ ଜୀବନ ସହିତ ଖାପ ଖୁଆଇ ନିଜକୁ ଚଳାଇବାଲାଗି ଯେତେଦୂର ସମ୍ଭବ ଚେଷ୍ଟା ମଧ୍ୟ କରିଛନ୍ତି । ଜଣେ ଲୋକ ଯେକୌଣସି ବିଷୟକୁ ଚଳାଇ ନେଇପାରେ, ସେହିପରି ଆମେ ଏହିପରି ବି ଚଳିଯାଉଥିଲୁ, ତଥାପି ଆମେ ଯେତେଥର ଏହି ଫାଟକ ଭିତରେ ପହଞ୍ଚୁ ଏକପ୍ରକାର ପୁରାତନ ଉତ୍ତେଜନା; ବୈଚିତ୍ର୍ୟ ଆମ ଭିତରେ ଜାତ ହୁଏ । ବାହାରର ଶ୍ୟାମଳ ଓ ବିସ୍ତୃତ ଭୂଖଣ୍ଡ, ଜନ ସମାଗମ ଓ ଯାନବାହନ ଏବଂ ପରିଚିତ ମୁଖ ସବୁ ଯାହାକୁ ଅନେକ କାଳ ପର୍ଯ୍ୟନ୍ତ ଲୋକ ଆଉ ଦେଖି ନ ପାରିବ, ସ୍ୱତଃ ସେଥିପ୍ରତି ଲୋକ ଜେଲ ଢିବା ପୂର୍ବରୁ ଶେଷ ଦୃଷ୍ଟି ନିକ୍ଷେପ କରିଯାଏ ।

ମୋର ପ୍ରଥମ ଥର ଜେଲ ହଠାତ୍ ଛଅମାସ ପରେ ଶେଷ ହୋଇଗଲା ଏବଂ ଏହି ସମୟରେ ଆମେ ଓ ଜେଲ କର୍ତ୍ତୃପକ୍ଷ ସମସ୍ତେ ବଡ଼ କର୍ମବ୍ୟସ୍ତ ଥିଲୁ । ନୂତନ ପ୍ରକାର କଏଦୀ ଆସିଥିବା ହେତୁ ଜେଲ କର୍ମଚାରୀମାନେ ପ୍ରାୟ ଅଧା ଜୀବନ ହରାଇଥିଲେ । ଏହି ନୂତନ ଲୋକଙ୍କ ସଂଖ୍ୟା ଦିନକୁ ଦିନ ଅଦ୍ଭୁତ ପ୍ରକାରେ ବୃଦ୍ଧି ପାଇବାକୁ ଲାଗିଲା । ଏବଂ ଏହି ବନ୍ୟାରେ ସମସ୍ତ ପୁରାତନ ବିଧି ଧୋଇଯିବ ବୋଲି ଧାରଣା ହେଉଥିଲା । ଯେଉଁ ଧରଣର ଲୋକ ଆସୁଥିଲେ ସେଥିରେ ସେମାନେ ଆହୁରି ବ୍ୟସ୍ତ ହୋଇ ଯାଉଥିଲେ । ସବୁ ଶ୍ରେଣୀର ଲୋକେ ଜେଲ ଆସୁଥିଲେ, ମାତ୍ର ମଧ୍ୟବିତ୍ତ ଶ୍ରେଣୀର ଲୋକ ଅଧିକ ସଂଖ୍ୟାରେ ଆସୁଥିଲେ । ଯାହାହେଉ ସବୁ ଶ୍ରେଣୀ ମଧ୍ୟରେ ଏତିକି ସାଧାରଣ କଥା ଥିଲା—ସାଧାରଣ କଏଦୀଠାରୁ ସେମାନେ ସମ୍ପୂର୍ଣ୍ଣ ପୃଥକ୍ ଥିଲେ ଏବଂ

ସୁନ୍ଦୁଣା ଧରଣରେ ସେମାନଙ୍କ ପ୍ରତି ବ୍ୟବହାର କରିବା ସହଜ ନୁହେଁ । କର୍ତ୍ତୃପକ୍ଷମାନେ ଏ କଥା ଜାଣି ପାରୁଥିଲେ; ମାତ୍ର ପ୍ରଚଳିତ ନିୟମ ଛଡ଼ା ଆଉ କିଛି ହେବାର ନୁହେଁ—ଆଗରୁ ମଧ୍ୟ କୌଣସି ପ୍ରଥା ଏବଂ ଅଭିଜ୍ଞତା ବି ନ ଥିଲା । ସାଧାରଣ କଂଗ୍ରେସ ବନ୍ଦୀ ବଡ଼ ସାଦାସିଧା ଓ ଶାନ୍ତ ନ ଥିଲେ ଏବଂ ସଂଖ୍ୟାଧିକ୍ୟ ହେତୁ ଜେଲ ଭିତରେ ମଧ୍ୟ ସେମାନେ ଗୋଟାଏ ଶକ୍ତି ଅନୁଭବ କରୁଥିଲେ । ଏହା ଛଡ଼ା ବାହାର ଆନ୍ଦୋଳନ ଏବଂ ଜେଲ ଭିତରେ ଘଟୁଥିବା ଘଟଣା ପ୍ରତି ସାଧାରଣ ଲୋକଙ୍କର ବ୍ୟଗ୍ରତା ମଧ୍ୟ ଏଥିରେ ସାହାଯ୍ୟ ହେଉଥିଲା । ଏହି ସବୁ ଏକପ୍ରକାର ଆକ୍ରମଣକାରୀ ମନୋଭାବ ସତ୍ତ୍ୱେ ଜେଲ-କର୍ତ୍ତୃପକ୍ଷଙ୍କ ସହ ସହଯୋଗ କରିବା ଆମର ସାଧାରଣ ନୀତି ଥିଲା । ଆମର ସାହାଯ୍ୟ ନ ପାଇଥିଲେ ଜେଲ କର୍ତ୍ତୃପକ୍ଷଙ୍କ ମୁସ୍କିଲ ଆହୁରି ବଢ଼ିଯାଆନ୍ତା । ଜେଲର ପ୍ରାୟ ଆମ ନିକଟକୁ ଆସି ଅନ୍ୟ ଘରେ ଆମର ଯେଉଁ ସ୍ୱେଚ୍ଛାସେବକ ସବୁ ଥାଆନ୍ତି, ସେମାନଙ୍କୁ ବୋଧ କରିବା ଲାଗି କିମ୍ବା ଆଉ କୌଣସି କଥାରେ ସେମାନଙ୍କୁ ଠିକ କରାଇବା ନିମନ୍ତେ କହୁଥିଲେ ।

ଆମେ ନିଜ ଇଚ୍ଛାନୁସାରେ ଜେଲ ଯାଇଥିଲୁ । ପ୍ରକୃତରେ ଅନେକ ସ୍ୱେଚ୍ଛାସେବକଙ୍କୁ ମନା କରିବା ସତ୍ତ୍ୱେ ସେମାନେ ଜେଲ ଚାଲି ଯାଇଥିଲେ । ସୁତରାଂ ସେମାନଙ୍କ ଭିତରୁ କେହି କେବେ ପଳାଇ ଯିବାକୁ ଚେଷ୍ଟା କରିବାର ପ୍ରଶ୍ନ ଉଠି ନ ପାରେ । କାହାର ଯଦି ଯିବାର ଇଚ୍ଛା ଥାଏ, ତେବେ ସେ ନିଜ କାର୍ଯ୍ୟଲାଗି ଦୁଃଖ ପ୍ରକାଶ କରି କିମ୍ବା ଭବିଷ୍ୟତରେ ଆଉ ସେପରି କାର୍ଯ୍ୟ କରିବ ନାହିଁ ବୋଲି ମୁଚୁଲିକା ଲେଖିଦେଇ ଖୁସିରେ ଯାଇପାରେ, ମାତ୍ର ପଳାଇଯିବାକୁ ଉଦ୍ୟମ କରିବା ଅର୍ଥ ଏକ ଅପମାନ ଏବଂ ନିରୁପଦ୍ରବ ପ୍ରତିରୋଧମୂଳକ ରାଜନୀତିକ କାର୍ଯ୍ୟରୁ ଆପେ ଆପେ ଅଲଗା ହୋଇଯିବା ସଙ୍ଗେ ସମାନ । ଆମର ଲାକ୍ଷ୍ନୌ ଜେଲର ସୁପରିଣ୍ଟେଣ୍ଡେଣ୍ଟ ଏକଥା ସମ୍ପୂର୍ଣ୍ଣରୂପେ ପସନ୍ଦ କରୁଥିଲେ ଏବଂ ଜେଲରଙ୍କୁ କହୁଥିଲେ ( ସେ ଜଣେ ବେରେଲି ଖାଁ ସାହେବ ଥିଲେ ) ଯେ, ଯଦି କେତେକ କଂଗ୍ରେସ ବନ୍ଦୀଙ୍କୁ ଏହିପରି ଚାଲିଯିବା ଲାଗି ସେ ପ୍ରବର୍ତ୍ତାଇ

ପାରିବେ, ତେବେ ତାଙ୍କୁ ଖାଁ ବାହାଦୂର ଉପାଧି ଦେବା ନିମନ୍ତେ ସେ ସରକାରକୁ ସୁପାରିଶ କରିବେ ।

ଆମର ଅନେକ ସତ୍ତ୍ୱ-ବନ୍ଦୀଙ୍କୁ ଜେଲ ଭିତର ଅଞ୍ଚଳରେ ବଡ଼ ବଡ଼ ଘର (Barrack) ରେ ରଖା ଯାଉଥିଲା । ଆମ ଭିତରୁ ପ୍ରାୟ ୧୮ ଜଣଙ୍କୁ ଭଲ ବ୍ୟବହାର ଦେବା ଲାଗି ସୁପାରିଶ ହୋଇଥିଲା ଏବଂ ଏକ ସ୍ୱତନ୍ତ୍ର ଲଗା କୁଣିବା ଘରେ ଆମକୁ ରଖା ହୋଇଥିଲା । ଏକ ବଡ଼ ଖୋଲା ସ୍ଥାନ ତାହା ସହିତ ଲାଗିଥାଏ । ମୋ ପିତା, ଦୁଇଟି ଭାଇ ଏବଂ ମୁଁ ଏକାଠି ପ୍ରାୟ ୨୦ X ୧୬ ଫୁଟ ହେବ ଏକ ଛୋଟ କମାଣ ଘରେ (Shed) ରେ ଥାଉ । ଗୋଟିଏ ବାଗାନରୁ (ଘର) ଅନ୍ୟ ବାଗାନକୁ ଯିବା ନିମନ୍ତେ ଆମକୁ ଖବ୍ ସ୍ୱାଧୀନତା ମିଳିଥିଲା । ଆମର ଆତ୍ମୀୟମାନଙ୍କ ସହ ଆମେ ବାରମ୍ବାର ସାକ୍ଷାତ କରି ପାରୁଥିଲୁ । ଖବରକାଗଜ ପାଉଥିଲୁ ଏବଂ ପ୍ରତିଦିନ ନୂତନ ଗିରଫ ଓ ଆନ୍ଦୋଳନର ଗତି ଲକ୍ଷ୍ୟ କରି ବାୟୁମଣ୍ଡଳଟା ବେଶି ସରଗରମ ଥାଏ । ପରସ୍ପର ଆଲୋଚନା ଏବଂ କଥାବାର୍ତ୍ତାରେ ପ୍ରଚୁର ସମୟ କଟିଯାଏ ଏବଂ ମୁଁ ପଢିବା ବା ଅନ୍ୟ କାର୍ଯ୍ୟ କରିବା ନିମନ୍ତେ ପ୍ରାୟ ସମୟ ପାଉ ନ ଥିଲି । ମୁଁ ସକାଳବେଳା ଆମ ଘର ପରିଷ୍କାର କରୁଥିଲି, ମୋର ବାପାଙ୍କର ଲୁଗା ପରିଷ୍କାର କରୁଥିଲି ଏବଂ ସୂତା କାଟୁଥିଲି । ଶୀତଦିନଟି ଉତ୍ତର ଭାରତରେ ସବୁଠାରୁ ଭଲ ଦିନ — ଆମେ ସେହି ସମୟରେ ଜେଲରେ ଥାଉ । ପ୍ରଥମ କେତେକ ସପ୍ତାହ ଆମେ ସ୍ୱେଚ୍ଛାସେବକମାନଙ୍କ ଲାଗି କ୍ଲାସ ଖୋଲିଥିଲୁ, କିମ୍ବା ଯେଉଁମାନେ ନିରକ୍ଷର ଶ୍ରେଣୀର ସେମାନଙ୍କୁ ହିନ୍ଦି, ଉର୍ଦ୍ଦୁ କିମ୍ବା ଅନ୍ୟ ପ୍ରାଥମିକ ଶିକ୍ଷା ଦେଉଥିଲୁ । ଅପରାହ୍ନବେଳା ଆମେ ଭଲିବଲ * ଖେଳୁଥିଲୁ ।

---

* ସମ୍ବାଦପତ୍ରରେ ଗୋଟାଏ ହାସ୍ୟଜନକ ସମ୍ବାଦ ବାହାରିଥିଲା ଏବଂ ବାରମ୍ବାର ପ୍ରତିବାଦ ସତ୍ତ୍ୱେ ଏହା ବରାବର ପ୍ରକାଶିତ ହେଉଥିଲା । ସେଥିରେ ଲେଖାଥିଲା ଯେ, ସେତେବେଳର ଯୁକ୍ତପ୍ରଦେଶ ଗଭର୍ଣ୍ଣର ସାର୍ ହାର୍କୋର୍ଟ ବଟଲର ବାପାଙ୍କ ନିକଟକୁ ଜେଲ ଭିତରକୁ ସାମ୍ପେନ୍

କ୍ରମେ କଡ଼ାକଡ଼ି ବେଶି ବଢ଼ିଲା । ଆମକୁ ଆମ ବେଡ଼ା ବାହାରକୁ ଯିବାକୁ ଦିଆଗଲା ନାହିଁ ଏବଂ ଆମ ସ୍ୱେଚ୍ଛାସେବକଙ୍କ ସହିତ ଜେଲରେ ସାକ୍ଷାତ କରିବାକୁ ଦିଆଗଲା ନାହିଁ । ସୁତରାଂ କ୍ଲାସସବୁ ବନ୍ଦ ହେଲା । ପ୍ରାୟ ଏହି ସମୟରେ ମୁଁ ଖଲାସ ହୋଇ ଆସିଲି ।

ମୁଁ ମାର୍ଚ୍ଚ ମାସ ପ୍ରଥମ ଭାଗରେ ଖଲାସ ହୋଇ ଆସିଲି ଏବଂ ପ୍ରାୟ ୬।୭ ସପ୍ତାହ ପରେ ଏପ୍ରିଲ ମାସରେ ଫେରିଗଲି । ଅବସ୍ଥାର ଅନେକ ପରିବର୍ତ୍ତନ ହୋଇଯିବାର ଦେଖିଲି । ତାହା ନୈନି ଜେଲ, ଜେଲର ବଦଳି ହୋଇ ଯାଇଥାନ୍ତି ।

ତାଙ୍କ ବଦଳି ପରେ ପରେ ନୂତନ ନିୟମ ସବୁ ଚାଲୁ ହେଲା । ପୂର୍ବରୁ ଆମେ ଯେଉଁ ଲମ୍ବା ବାରଣ୍ଡା ଥିବା ଘରେ ଥିଲୁ, ସେଠୁ ସମସ୍ତ ବନ୍ଦୀ ଭିତରକୁ ନିଆଯାଇ ଗୋଟିଏ ଲେଖାଁ ଏକୁଟିଆ ଘରେ ରଖାଯାଇ ଥାନ୍ତି । ପ୍ରତ୍ୟେକ ବାରିକ ଜେଲ ଭିତରେ ଆଉ ଗୋଟିଏ ଜେଲ ପରି ଏବଂ ଗୋଟିଏ ବାରିକରୁ ଅନ୍ୟ ବାରିକକୁ ଯିବା ନିମନ୍ତେ ବାଟ ନ ଥିଲା । ମୁଲାକାତ ଓ ଚିଠି ଲେଖା ମାସକେ ଥରେ ହେଉଥିଲା । ଖାଦ୍ୟ ଆହୁରି ସାଦାସିଧା ହୋଇ ଯାଇଥିଲା, ଅବଶ୍ୟ ଆମେ ବାହାରୁ ମଗାଇ ଖାଇବାକୁ ଅନୁମତି ପାଇଥିଲୁ ।

ମୁଁ ଯେଉଁ ବାରିକରେ ଥିଲି, ସେଠାରେ ପ୍ରାୟ ୬୦ ଜଣ ଥିଲେ । ଆମେ ସମସ୍ତେ ଏକାଠି ଜାକଜୁକ ହୋଇଥାଉ ଏବଂ ଆମ ଖଟଣା ଭିତରେ ପ୍ରାୟ ୩ । ୪ ଫୁଟ ସ୍ଥାନ ଥାଏ । ଭାଗ୍ୟର କଥା, ପ୍ରାୟ ସେଠାରେ ଥିବା ପ୍ରତ୍ୟେକ ଲୋକଙ୍କ ସହିତ ମୋର ପରିଚୟ ଥିଲା । ସେଠାରେ ଅନେକ

---

( ଏକ ପ୍ରକାର ମଦ ) ପଠାଉଥିଲେ । ମାତ୍ର ସାର ହାର୍କୋର୍ଟ ମୋ ପିତାଙ୍କ ନିକଟକୁ କିଛି ପଠାଇ ନ ଥିଲେ । ଆଉ କେହି କୌଣସି ପ୍ରକାର ମାଦକ ଦ୍ରବ୍ୟ ପିତାଙ୍କ ନିକଟକୁ ପଠାନ୍ତି ନ ଥିଲେ । ବାସ୍ତବରେ ୧୯୨୦ର କଂଗ୍ରେସର ଅସହଯୋଗ ଆନ୍ଦୋଳନ ପରେ ସେ ମାଦକ ଦ୍ରବ୍ୟ ସେବନ ଛାଡ଼ି ଦେଇଥିଲେ ଏବଂ ସେତେବେଳେ କୌଣସି ମଦ ଖାଉ ନ ଥିଲେ ।

ବନ୍ଦ ଥିଲେ । ମାତ୍ର ସାରା ଦିନ ରାତି ଗୋପନୀୟତା ଅଭାବରୁ ଦିନକୁ ଦିନ ଏହା ଅସହ୍ୟ କଣକା କଷ୍ଟକର ହୋଇଗଲା । ସର୍ବଦା ଏକ ପ୍ରକାର ଜନତା ବୃଦ୍ଧି ରହୁଛି, ସେହି ଛୋଟ ଛୋଟ ବିରକ୍ତି ଓ ଅସହିଷ୍ଣୁତା, ଏଥିରୁ ରକ୍ଷା ପାଇବା ଲାଗି କୌଣସି ନିସ୍ତବ୍ଧ ସ୍ଥାନ ନାହିଁ । ଆମେ ଖୋଲା ସ୍ଥାନରେ ସ୍ନାନ କରୁଥିଲୁ, ପ୍ରକାଶ୍ୟରେ ଲୁଗା ସଫା କରୁଥିଲୁ; ବାହାର ପ୍ରାଙ୍ଗ-ଣରେ ବ୍ୟାୟାମ କରିବା ନିମନ୍ତେ ଦୌଡ଼ୁଥିଲୁ । କୌଣସି ଚିନ୍ତାଶୀଳ କଥାବାର୍ତ୍ତା କରିବା ନିମନ୍ତେ ପ୍ରତ୍ୟେକ ଅସମର୍ଥ ହୋଇ ପଡ଼ିବା ପର୍ଯ୍ୟନ୍ତ ପ୍ରତ୍ୟେକେ ଦୌଡ଼ି ଓ କଥାବାର୍ତ୍ତା କରି କ୍ଲାନ୍ତ ହୋଇ ପଡ଼ୁଥିଲୁ । ଏହି ଗୃହସ୍ଥ ଜୀବନର ନିମ୍ନତର ଅଂଶ ଏଠାରେ ଶହେ ଗୁଣ ବଢ଼ିଗଲା; ମାତ୍ର ତାହାର କମନୀୟତା ଓ ମାଧୁରୀ ଏଠାରେ ନ ଥାଏ — ପୁଣି ସବୁପ୍ରକାର ଓ ନାନା ରୁଚିର ଲୋକ ଏଠି ଥାଆନ୍ତି । ସମସ୍ତଙ୍କ ପକ୍ଷରେ ଏହା ଯନ୍ତ୍ରଣାଦାୟକ ହୋଇ ପଡ଼ିଲା ଏବଂ ମୁଁ ସର୍ବଦା ନିର୍ଜନତା ଖୋଜି ବୁଲିଲି । ପରବର୍ତ୍ତୀ ବର୍ଷମାନଙ୍କରେ ଅବଶ୍ୟ ମୁଁ ଜେଲରେ ନିର୍ଜନତା ଓ ଗୋପନୀୟତା ଖୁବ ପାଇଲି—ସେ ସମୟ ଭିତରେ ଅନେକ ମାସ ପର୍ଯ୍ୟନ୍ତ ବେଳେ ବେଳେ ଜେଲ କର୍ମଚାରୀଙ୍କ ଛଡ଼ା ଆଉ କାହାରିକୁ ମୁଁ ଦେଖିପାରେ ନାହିଁ; ମାତ୍ର ଏଥିରେ ମୁଁ ଯନ୍ତ୍ରଣା ଲାଭ କରି ମୋର ମନୋମତ ସାଥୀ ପାଇବା ପାଇଁ ବ୍ୟାକୁଳ ହୋଇପଡ଼ୁଥିଲି । ୧୯୨୨ରେ ମୁଁ ଲକ୍ଷ୍ନୌ ଜିଲ୍ଲା ଜେଲରେ ବହୁ ଲୋକ ସମାଗମରେ ଥିବା ବେଳ କଥା ଭାବି ମନରେ ଈର୍ଷା ହୁଏ—ଏଥର ମୁଁ ଜାଣେ ଯେ ମୁଁ ପଢ଼ିବା ଓ ଲେଖିବା ପାଇଁ ସୁବିଧା ପାଏ । ତେବେ ଏହି ଦୁଇଟି ମଧ୍ୟରୁ ନିର୍ଜନତାକୁହିଁ ମୁଁ ବେଶୀ ପସନ୍ଦ କରେ ।

ଏ ସବୁ ସତ୍ତ୍ୱେ ଏହି ସାଙ୍ଗସୁଖ ଅସାଧାରଣ ଭାବରେ ସୁନ୍ଦର ଓ ଆରାମଦାୟକ ଥିଲା ଏବଂ ଆମେ ଏକାଠି ଭଲରୂପେ ଚଳୁଥିଲୁ; ମାତ୍ର ମୋର ମନେହୁଏ ଆମେ ସବୁ ସମୟେ ସମସ୍ତେ ପରସ୍ପର ପ୍ରତି ବିରକ୍ତ ହେଉଥିଲୁ ଏବଂ ଏଥିରୁ ଅଲଗା ହୋଇ ଟିକିଏ ଗୋପନୀୟତା ଖୋଜୁଥିଲୁ । ମୁଁ ମୋର ଦାଦାଙ୍କର ବାହାରକୁ ଯାଇ ପାଟେଲ୍‌ଙ୍କ ଖୋଲା

ଜାଗାରେ ବସିଲେହିଁ ଚିତ୍ରବ ଗୋଚରୀଭୂତ ପାଉଥିଲି । ସେତେବେଳେ ବର୍ଷାକାଳ—ଆକାଶରେ ମେଘ ଥିବାରୁ ଏହା କରିବା ସାଧାରଣତଃ ସମ୍ଭବ ହେଉଥିଲା । ମୁଁ ସେ ତାର ଓ ସମସ୍ତ ସମୟରେ କ୍ଷୀଣ ଜଳବୃଷ୍ଟି ସହ୍ୟ କରୁଥିଲି ଏବଂ ବାଗ୍ରକ ବାହାରେ ଯେତେ ସମୟ ଘରେ ସମୟ କଟାଉଥିଲି ।

ମୁଁ ସେ ଖୋଲା ଜାଗାରେ ଶୋଇ ଆକାଶ ଓ ମେଘକୁ ଲକ୍ଷ୍ୟ କରୁଥିଲି ଏବଂ ରଙ୍ଗ ପରିବର୍ତ୍ତନର ଏପରି ଅଦ୍ଭୁତ ଜମଗୀମୂତ୍ତା ମୁଁ ଏଥିପୂର୍ବରୁ କେବେ ଦେଖି ନ ଥିଲି । "ପ୍ରତି ଋତୁରେ ମେଘର ପରିବର୍ତ୍ତନ ଶୋଇ ଶୋଇ ଦେଖିବା କି ମଧୁମୟ । ସମୟର କି ଆନନ୍ଦମୟ ସମ୍ଭୋଗ ।"

ମାତ୍ର ଆମ ନିକଟରେ ସମ୍ଭୋଗ ପାଇଁ ସମୟ ନ ଥିଲା—ବୋଧହୁଏ ଅପେକ୍ଷା ଢେର ଅଧିକ ଥିଲା । ମାତ୍ର ସେହି ଘଣ୍ଟାଗୁଡ଼ିକ ବର୍ଷା ଋତୁରେ ମେଘମାଳାକୁ ଲକ୍ଷ୍ୟ କରି ମୁଁ ଆନନ୍ଦ ଅନୁଭବ କଲି ଏବଂ ଗୋଟାଏ ସ୍ୱପ୍ନିର ଭାବ ଜାତ ହେଲା । ଗୋଟାଏ ଏତେ ବଡ଼ ଆବିଷ୍କାର କରୁଥିବାରୁ ବୋଲି ମୋର ଆନନ୍ଦ ଜାତ ହେଲା ଏବଂ କାରାଗୃହ ଭାବ ସେଠାରୁ ଲୋପ ହୋଇଗଲା । କାହିଁକି ଏହି ନିର୍ଦ୍ଦିଷ୍ଟ ଋତୁ ମୋ ଉପରେ ଏପରି ଏକ ପ୍ରଭାବ ପକାଇଲା, ମୋତେ ଜଣାନାହିଁ—ଏଥି ପୂର୍ବରୁ ବା ପରେ କୌଣସି ଋତୁ ମୋତେ ଏପରି ଭାବରେ ବଦଳାଇ ଦେଇନାହିଁ । ମୁଁ ପର୍ବତ ଓ ସମୁଦ୍ର ଉପରେ ଅନେକ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଦେଖି ତାର ପ୍ରଶଂସା କରିଛି ଏବଂ ତାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଯାଇଛି—ତାହାର ଅପୂର୍ବ ରୂପ ଦେଖି କ୍ଷଣକାଳ ଲାଗି ଅଭିଭୂତ ହୋଇଛି । ଏହା ଦେଖି ଏହିପରି ହେବା ସ୍ୱାଭାବିକ ବୋଲି ପୁଣି ଆଉ ଏକ ଋତୁକୁ ଲକ୍ଷ୍ୟ କରେ; ମାତ୍ର ଜେଲ ଭିତରେ ସୂର୍ଯ୍ୟୋଦୟ ଏବଂ ସୂର୍ଯ୍ୟାସ୍ତ ଦେଖା ହୁଏ ନାହିଁ—ଦିଗ୍‌ବଳୟ ଆମଠାରୁ ଦୂରରେ ଥାଏ ଏବଂ ସକାଳ ହେବାର ଅନେକ ସମୟ ପରେ ସୂର୍ଯ୍ୟକିରଣ ପ୍ରଖର ହେବା ପରେ ପ୍ରାଚୀର ଉପରେ ଦୃଷ୍ଟିଗୋଚର ହୁଏ । କୌଣସିଠାରେ ରଙ୍ଗର

ଉଜ୍ଜ୍ୱଳବର୍ଣ୍ଣ ନ ଥାଏ—ସେହି ମାଟିଆ ବର୍ଣ୍ଣର ପ୍ରାଚୀର ଓ ବାରିକ ଦେଖି ଉତ୍ୟକ୍ତ ହୋଇଯାଏ । ଆଲୋକ, ଅନ୍ଧାର ଏବଂ ରଙ୍ଗ ଦେଖିବା ନିମନ୍ତେ ଚକ୍ଷୁ କ୍ଷୁଧିତ ହୋଇଥାଏ । ଯେତେବେଳେ ବର୍ଷାର ଆଗମ ହେତୁ ମେଘମାଳା ମନ୍ଥର ବେଗରେ ଗତି କରେ, ନାନା ଅଦ୍ଭୁତ ଆକୃତି ହୁଏ ଏବଂ ନାନା ରଙ୍ଗ ବିଚିତ୍ର ଦେଖାଯାଏ, ସେତେବେଳେ ମୁଁ ଆନନ୍ଦରେ ଆତ୍ମହରା ହୋଇଯାଏ ଏବଂ ମୁଁ ଏକାଗ୍ରଚିତ୍ତରେ ମଗ୍ନ ହୋଇ ତାକୁ ଲକ୍ଷ୍ୟ କଲାପରି ମନେହୁଏ । ବେଳେ ବେଳେ ବର୍ଷା ହୁଏ ଏବଂ ତା ଅନ୍ତରାଳରେ ଅପୂର୍ବ ମେଘର ରୂପ ଏବଂ ଗଭୀର ନୀଳ ଆକାଶରେ ବର୍ଷାର ବିଚିତ୍ର ଦୃଶ୍ୟ ଲକ୍ଷ୍ୟ କଲେ ଯେପରି ଏହା ଅନ୍ତରର ଏକ ଅଂଶ ପରି ମନେହୁଏ ।

କ୍ରମେ ଆମ ଉପରେ କଟକଣା ସବୁ ବେଶି ବଢ଼ିଲା ଏବଂ ଅଧିକ କଡ଼ା ନିୟମ ଜାରି ହେଲା । ସରକାର ଆମ ଆନ୍ଦୋଳନର ମାଡ଼ନାଟି ପାଇ ଆମେ ସରକାରଙ୍କ ବିରୋଧ ଅତ୍ୟନ୍ତ ସ୍ପର୍ଦ୍ଧାର ସହିତ କରିଥିବାରୁ ସେ କଥାରେ ଅସନ୍ତୁଷ୍ଟ; ତାହା ପୂର୍ଣ୍ଣରୂପେ ଆମକୁ ଅନୁଭବ କରାଇଦେବାକୁ ଚାହୁଁଥିଲେ । ନୂତନ ନିୟମର ପ୍ରଚଳନ କିମ୍ବା ଯେଉଁ ପ୍ରକାରେ ତାହାର ପ୍ରଚଳନ କରାଗଲା, ସେଥିରେ ଜେଲ କର୍ତ୍ତୃପକ୍ଷ ଏବଂ ରାଜନୈତିକ ବନ୍ଦୀଙ୍କ ଭିତରେ ପ୍ରାୟ ବିବାଦ ଲାଗିଲା । କେତେକ ମାସପର୍ଯ୍ୟନ୍ତ ପ୍ରାୟ ଆମେ ସମସ୍ତେ—ସେ ଜେଲରେ ସେତେବେଳେ ଆମେ ପ୍ରାୟ ୧୦୦ ଜଣ ଥିଲୁ—ପ୍ରତିବାଦ ସ୍ୱରୂପ ମୁଲାକାତ ( Interview ) ଛାଡ଼ି ଦେଲୁ । ଆମ ଭିତରୁ କେତେକଙ୍କୁ ଗଣ୍ଡଗୋଳକାରୀ ବୋଲି ବାଛି ଆମ ୭ ଜଣଙ୍କୁ ପ୍ରଧାନ ବାରିକରୁ ଅଲଗା କରି ଜେଲ ଭିତରେ ଏକ ଦୂରବର୍ତ୍ତୀ ସ୍ଥାନରେ ରଖାଗଲା । ପୁରୁଷୋତ୍ତମ ଦାସ ଟାଣ୍ଡନ, ମହାଦେବ ଦେଶାଇ, ଜର୍ଜ ଜୋସେଫ, ବାଳକୃଷ୍ଣ ଶର୍ମା, ଦେବଦାସ ଗାନ୍ଧୀ ଓ ମୋତେ ଏହିରୂପେ ରଖାଯାଇଥିଲା ।

ଆମକୁ ଏକ ଛୋଟ ସ୍ଥାନକୁ ପଠାଗଲା ଏବଂ ସେଠାରେ ରହିବାକୁ କିଛିଏ ଅସୁବିଧା ହେଉଥାଏ, ମାତ୍ର ମୋଟରେ ଏ ପରିବର୍ତ୍ତନରେ ମୁଁ

ଖୁସିହେଲ । ଏଠାରେ ଲୋକ ଭିଡ଼ ନ ଥିଲା; ଆମେ ଅଧିକ ଶାନ୍ତି ଏବଂ ଟିକିଏ ଗୋପନୀୟତା ପାଇଲୁ । ପଢ଼ିବା ବା ଅନ୍ୟ କାର୍ଯ୍ୟ କରିବା ନିମନ୍ତେ ଅଧିକ ସମୟ ମିଳିଲା । ଆମେ ଜେଲର ଅନ୍ୟ ଅଂଶରେ ଥିବା ଆମର ସହକର୍ମୀ ଏବଂ ତାହାର ଜଗତଠାରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇଗଲୁ । ରାଜବନ୍ଦୀଙ୍କୁ ସମ୍ବାଦପତ୍ର ଆଉ ଦିଆଗଲା ନାହିଁ ।

ଆମ ନିକଟକୁ ସମ୍ବାଦପତ୍ର ଆସୁ ନ ଥାଏ; ମାତ୍ର ଜେଲକୁ ଯେପରି ସବୁ ଖବର ଆସେ, ସେହିପରି ବାହାରର କିଛି କିଛି ଖବର ଆମ ପାଖରେ ଆସି ପହଞ୍ଚୁଥାଏ । ମାସକୁ ମାସ ଆମର ଯେଉଁସବୁ ମୁଲାକାତ ହେଉଥିଲା ଏବଂ ଚିଠି ଆସୁଥିଲା, ସେଥିରେ ଥୋଡ଼ା ଥୋଡ଼ା କିଛି ଖବର ପାଉଥିଲୁ । ଆମେ ଦେଖିଲୁ ଯେ ଆମ ଆନ୍ଦୋଳନ ଖୁବ ତଳେ ପଡ଼ିଗଲାଣି । ସେ ଅପୂର୍ବ ମୁହୂର୍ତ୍ତ ପାଇଛି ଏବଂ ଭବିଷ୍ୟତର ଅନ୍ଧାର ଭିତରେ ସଫଳତା ଲୁଚିଗଲା ପରି ମନେ ହେଉଛି । ବାହାରେ କଂଗ୍ରେସ ମଧ୍ୟରେ ଦୁଇଟି ଦଳ ହୋଇଛି । ପରିବର୍ତ୍ତନବାଦୀ ଓ ଅପରିବର୍ତ୍ତନବାଦୀ । ପରିବର୍ତ୍ତନ-ବାଦୀମାନଙ୍କର ନେତା ଥିଲେ ମୋର ପିତା ଏବଂ ଦେଶବନ୍ଧୁ ଦାସ । ସେମାନେ କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥା ସଭାମାନଙ୍କରେ ଯୋଗ ଦେଇ ଏବଂ ସମ୍ଭବ ହେଲେ ବ୍ୟବସ୍ଥା ସଭା ଦଖଲ କରିବା ସପକ୍ଷରେ ଥିଲେ । ମାତ୍ର ଅପରିବର୍ତ୍ତନବାଦୀମାନେ ଶ୍ରୀ ସି, ରାଜଗୋପାଳଚାରିଙ୍କ ନେତୃତ୍ୱରେ ପୁରୁଣା ଅସହଯୋଗ କର୍ମପନ୍ଥାର କୌଣସି ପରିବର୍ତ୍ତନ ଚାହୁଁ ନ ଥିଲେ । ସେତେବେଳେ ଗାନ୍ଧିଜୀ ଅବଶ୍ୟ ଜେଲରେ ଥିଲେ । ଜୁଆର ଉଠୁଥିଲାବେଳେ ଉପରକୁ ଲୋକ ଉଠିଆସିଲାପରି ଯେଉଁ ଆନ୍ଦୋଳନର ସୁନ୍ଦର ଆଦର୍ଶ ଆମକୁ ଅଗ୍ରସର କରାଉଥିଲା, ତାହା ଛୋଟ ଛୋଟ କଳହ ଏବଂ କ୍ଷମତା ଲାଗି ଷଡ଼ଯନ୍ତ୍ରରେ ପରିଣତ ହେଲା । ଉତ୍ସାହ ଓ ଉତ୍ତେଜନା ସମୟରେ ବଡ଼ ଓ ଦୁଃସାହସିକ କାର୍ଯ୍ୟ କରିବା ଯେପରି ସହଜ, ସେ ଉତ୍ତେଜନା ଦବିଗଲାପରେ ଦୈନନ୍ଦିନ କାର୍ଯ୍ୟ କରିବା ସେପରି ସହଜ ନୁହେଁ । ବାହାର ସମ୍ବାଦ ପାଇ ଆମେମାନେ ଦବିଗଲୁ ଏବଂ ଏହା ସଙ୍ଗେ ସଙ୍ଗେ ଜେଲରେ ଯେଉଁ ସବୁ ଉପହାସ ଜାତ ହୁଏ

ତାହା ଆମ ଜୀବନକୁ ଆହୁରି ଦୁର୍ବହ କରି ପକାଇଲା । ତଥାପି ଆମେ ଭିତରେ ଏକପ୍ରକାର ଶାନ୍ତି ଅନୁଭବ କଲୁ ଯେ, ଆମେ ଆମର ଆତ୍ମସମ୍ମାନ ଓ ମର୍ଯ୍ୟାଦା ରକ୍ଷା କରିଛୁ ଏବଂ ଫଳାଫଳ ଯାହାହେଉ ପଛକେ ଠିକ ବାଟରେ ଚାଲିଛୁ । ଭବିଷ୍ୟତ ଅନ୍ଧକାରମୟ ଥିଲା, ମାତ୍ର ଏହା ଯେପରି ଆକାର ଧରୁ ପଛକେ ଆମ ଭିତରୁ ଅନେକଙ୍କୁ ତାଙ୍କ ଜୀବନର ଅଧିକ ସମୟ କାରାବାସରେ କଟାଇବାକୁ ପଡ଼ିବ ବୋଲି ବୋଧ ହେଉଥିଲା । ଏହିରୂପେ ଆମେ ନିଜ ଭିତରେ ଆଲୋଚନା କରୁଥିଲୁ, ଏବଂ ଜର୍ଜ ଜୋସେଫଙ୍କ ସହିତ ଏକ ଆଲୋଚନାରେ ଆମେ ବିଶେଷ ଭାବରେ ଏହି ପୂର୍ବୋକ୍ତ ସିଦ୍ଧାନ୍ତରେ ପହଞ୍ଚିଥିଲୁ ବୋଲି ମୋର ମନେ ଅଛି । ସେହିଦିନଠାରୁ ଜୋସେଫ୍ ଆମଠାରୁ ଅଲଗା ହୋଇ ଯାଇଛନ୍ତି ଏବଂ ଆମ କାର୍ଯ୍ୟକୁ କଡ଼ାଭାବରେ ସମାଲୋଚନା କରୁଛନ୍ତି ମଧ୍ୟ । ଶୀତ ଋତୁରେ ଲକ୍ଷ୍ନୌ ଜିଲ୍ଲା ଜେଲର ସ୍ପେଶିଆଲ ୱାର୍ଡରେ ଆମର ଯେ କଥାବାର୍ତ୍ତା, ସେ ମନେ ରଖିଛନ୍ତି କି ନାହିଁ ବେଳେ ବେଳେ ମୁଁ ଭାବେ ।

ଆମେ ଏକ ନିର୍ଦ୍ଦିଷ୍ଟ ରୁଟିନ କରି କାର୍ଯ୍ୟ ଓ ବ୍ୟାୟାମ ଇତ୍ୟାଦି କରୁଥାଉ । ନିୟମିତ ସକାଳେ ଆମେ ଖାରେବୀ ଢେର ସ୍ଥାନଟିର ଚାରିଆଡ଼େ ଦୌଡ଼ୁଥାଉ କିମ୍ବା ଆମ ଭିତରୁ ଦୁଇ ଜଣ ଦୁଇଟି ବଳଦ ଏକାଠି ଟାଣିଲାପରି ଆମ ସେଠାରେ ଥିବା ଏକ କୂଅ ଭିତରୁ ଚମଡ଼ା ବାଲ୍ଟିରେ ପାଣି ଉଠାଉଥିଲୁ । ଏହିପରି ଭାବରେ ସେଠି ଥିବା ଏକ ଫଳ ବଗିଚାରେ ଆମେ ପାଣି ଦେଉଥିଲୁ । ଆମ ଭିତରୁ ଅଧିକାଂଶ ପ୍ରତିଦିନ ଅଳ୍ପ ସମୟ ଲାଗି ସୂତା କାଟୁଥିଲେ; ମାତ୍ର ଏହି ଶୀତ ଦିନର ବଡ଼ ରାତିରେ ପଢ଼ିବା ହିଁ ମୋର ପ୍ରଧାନ କାର୍ଯ୍ୟଥିଲା । ସୁପରିଣ୍ଟେଣ୍ଡେଣ୍ଟ ଯେତେବେଳେ ଆମ ପାଖକୁ ଆସନ୍ତି, ସେ ମୋତେ ପଢ଼ୁଥିବାର ଦେଖନ୍ତି । ଏପରି ଅଧିକ ପଢ଼ିବାଟାକୁ ବୋଧହୁଏ ସେ ପସନ୍ଦ କରୁ ନ ଥିଲେ । ସେଥିଲାଗି ଦିନେ କଥାବାର୍ତ୍ତା ଛଳରେ ସେ କହିଲେ ଯେ ସାଧାରଣ ପଢ଼ାପଢ଼ି ସେ ତାଙ୍କର ବାରବର୍ଷ ବୟସ ବେଳୁ ଶେଷ କରିଛନ୍ତି । ଏପରି ପଢ଼ାରୁ ନିବୃତ୍ତ ହେବା ଯୋଗୁଁ ସେହି ନିର୍ଭୀକ ଇଂରେଜ କର୍ଣ୍ଣେଲ ଅନେକ

ବିରକ୍ତିଜନକ ଚିନ୍ତାରୁ ରକ୍ଷା ପାଇଥିବେ ସନ୍ଦେହ ନାହିଁ । ସମ୍ଭବତଃ ପରେ ଯୁକ୍ତପ୍ରଦେଶର ଜେଲ ବିଭାଗର ଇନ୍‌ସପେକ୍ଟର-ଜେନେରାଲ ହେବାରେ ଏହାହିଁ ତାଙ୍କୁ ସାହାଯ୍ୟ କଲା ।

ଶୀତକାଳର ଦୀର୍ଘ ସନ୍ଧ୍ୟା ଏବଂ ନିର୍ମଳ ହେତୁ ତାରକାମାନଙ୍କ ପ୍ରତି ଆମର ଦୃଷ୍ଟି ଗଲା ଏବଂ କେତେକ ଚିତ୍ର ସାହାଯ୍ୟରେ ଆମେ ସେଥିରୁ ଅନେକ ଚିହ୍ନି ପାରିଲୁ । ପ୍ରତି ରାତିରେ ଆମେ ସେଗୁଡ଼ିକର ଆବିର୍ଭାବକୁ ଅପେକ୍ଷା କରିଥିଲୁ ଏବଂ ପୁରାତନ ବନ୍ଧୁ ର ସାକ୍ଷାତ ପରି ସେମାନଙ୍କୁ ଦେଖି ଆନନ୍ଦ ଅନୁଭବ କରୁ ।

ଏହିରୂପେ ଆମେ ଦିନ ପରେ ଦିନ, ମାସ ପରେ ମାସ କଟାଇଲୁ । ଆମେ ଆମର ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥାରେ ନିଜକୁ ଚଳାଇ ନେଲୁ, ମାତ୍ର ବାହାରେ ପ୍ରକୃତ ବୋଝ ଆମର ନାରୀମାନଙ୍କ ଉପରେ—ମାଆ, ସ୍ତ୍ରୀ ଓ ଝିଅମାନଙ୍କ ଉପରେ ପଡ଼ିଲା । ସେମାନେ ଦୀର୍ଘକାଳ ଅପେକ୍ଷା କରି କ୍ଲାନ୍ତ ହୋଇପଡ଼ିଲେ ଏବଂ ତାଙ୍କର ପ୍ରିୟ ଲୋକମାନେ ବନ୍ଦୀଗୃହରେ ଥିବା ହେତୁ ସ୍ୱାଧୀନତା ତାଙ୍କ ପକ୍ଷରେ ଏକ ଅଭିଶାପ ପରି ମନେ ହେଉଥିଲା ।

୧୯୨୧ ମସିହା ଡିସେମ୍ବର ମାସରେ ଆମର ପ୍ରଥମ ଗିରଫ ପରେ ଆମର ଏଲାହାବାଦ ଘର ଆନନ୍ଦଭବନକୁ ପୁଲିସ ବାରମ୍ବାର ଆସନ୍ତି । ମୋ' ଉପରେ ଓ ପିତାଙ୍କ ଉପରେ ହୋଇଥିବା ଜୋରିମାନା ଅସୁଲ କରିବା ନିମନ୍ତେ ସେମାନେ ଯାଉଥିଲେ । ଜୋରିମାନା ନ ଦେବା ଥିଲା କଂଗ୍ରେସର ନୀତି । ତେଣୁ ପୁଲିସ ଦିନକୁ ଦିନ ଆସି ଜିନିଷପତ୍ର ସବୁ ବାଜ୍ୟାପ୍ତ କରି ନେଇ ଯାଉଥିଲେ । ମୋର ଚାରିବର୍ଷର ଝିଅ ଇନ୍ଦିରା ପୁଲିସ ଏପରି ବାରମ୍ବାର ଆସି ହଇରାଣ କରୁଥିବାରୁ ବିରକ୍ତ ହୋଇ ପୁଲିସ ନିକଟରେ ପ୍ରତିବାଦ କଲା ଏବଂ ନିଜର ଅସନ୍ତୋଷ ପ୍ରକାଶ କଲା । ମୋର ଆଶଙ୍କା ଯେ, ତାର ଏହି ପିଲାଦିନର ଧାରଣା

ଯୋଗୁ ପୁଲିସଙ୍କ ଉପରେ ତାର ଅତ୍ୟନ୍ତ ଧାରଣା ମଧ୍ଯ ଗଢ଼ା ହୋଇଯିବ ।

ସାଧାରଣ ଅରାଜନୈତିକ କଏଦୀଙ୍କଠାରୁ ଜେଲ ଭିତରେ ଆମକୁ ଅଲଗା ରଖିବା ନିମନ୍ତେ ସବୁପ୍ରକାର ଉଦ୍ୟମ ହେଉଥିଲା—ବିଶେଷ ଜେଲସବୁ ରାଜବନ୍ଦୀମାନଙ୍କ ପାଇଁ ଗଢ଼ା ହେଉଥିଲା । ମାତ୍ର ସମ୍ପୂର୍ଣ୍ଣ ଅଲଗା ରଖିବା ଅସମ୍ଭବ ଥିଲା ଏବଂ ଆମେ ଅନେକ ସମୟରେ ସେମାନଙ୍କ ସମ୍ପର୍କରେ ଆସୁଥିଲୁ । ସେମାନଙ୍କଠାରୁ ପ୍ରତ୍ୟକ୍ଷଭାବରେ ସେକାଳର ପ୍ରକୃତ ବନ୍ଦୀ ଜୀବନ ଦୁର୍ଦ୍ଦଶା ଜାଣି ପାରୁଥିଲୁ । ଏହା ହେଉଛି ଅତ୍ୟାଚାର ଓ ପଦଦଳନର ପାଶବିକତା ଓ ଉତ୍କୋଚଗ୍ରହଣର ମର୍ମାନ୍ତକ କାହାଣୀ । ଖାଦ୍ୟ ଅତ୍ୟନ୍ତ ଖରାପ ଦିଆଯାଉଥିଲା; ମୁଁ ଅନେକ ଥର ଏହି ଖାଦ୍ୟ ପରୀକ୍ଷା କରି ଏହା ଏକଦମ୍ ଖାଇବା ଯୋଗ୍ୟ ନୁହେଁ ବୋଲି ଦେଖିଛି । ଜେଲ କର୍ମଚାରୀମାନେ ସମ୍ପୂର୍ଣ୍ଣଭାବରେ ଅସମର୍ଥ ଏବଂ ସେମାନଙ୍କୁ ଖୁବ୍ କମ୍ ବେତନ ଦିଆଯାଉଥିଲା । ମାତ୍ର ସୁବିଧା ମୁହୂର୍ତ୍ତ ଦେଖି ବନ୍ଦୀ କିମ୍ବା ତାଙ୍କର ଆତ୍ମୀୟ ସ୍ୱଜନଙ୍କଠାରୁ ଟଙ୍କା ଆଦାୟ କରି ନିଜର ଆୟ ବଢ଼ାଇବାରେ ସେମାନେ ସୁବିଧା ପାଉଥିଲେ । ଜେଲ ମାନୁଏଲ (ନିୟମାବଳୀ)ରେ ଜେଲର, ତାଙ୍କ ସହକାରୀ ଓ ୱାର୍ଡରମାନଙ୍କ ଉପରେ ଏତେ କାର୍ଯ୍ୟ ଓ ଦାୟିତ୍ୱ ଲଦି ଦିଆ ଯାଇଛି ଯେ, କୌଣସି ଲୋକ ପକ୍ଷରେ ଭଲରୂପେ ଏବଂ ଠିକ୍ ଭାବରେ ତାହା କରିବା ସମ୍ପୂର୍ଣ୍ଣଭାବରେ ଅସମ୍ଭବ । ଯୁକ୍ତପ୍ରଦେଶରେ [ସମ୍ଭବତଃ ଅନ୍ୟ ପ୍ରଦେଶରେ ମଧ୍ୟ] ଜେଲ ଶାସନର ସାଧାରଣ ନୀତି ସହିତ ବନ୍ଦୀର ସଂସ୍କାର କିମ୍ବା ତାକୁ ଭଲ ଅଭ୍ୟାସ ଏବଂ ଉପଯୋଗୀ ବ୍ୟବସାୟ ଶିକ୍ଷା ଦେବାର କୌଣସି ସମ୍ପର୍କ ନାହିଁ । ଜେଲ ଭିତରେ ପରିଶ୍ରମ କରାଇବାର ଉଦ୍ଦେଶ୍ୟ ହେଉଛି ବନ୍ଦୀକୁ ହଇରାଣ କରାଇବା * । ସେ ଭୟଭୀତ ହୋଇ ଯେପରି ଅନ୍ଧରୂପେ ବଶ୍ୟତା ସ୍ୱୀକାର କରିବ । ଏହା

* ଯୁକ୍ତପ୍ରଦେଶରେ ଜେଲ ମାନୁଏଲର ୯୮୭ ଦଫାରେ ଲେଖାଥିଲା ଏହା ନୂତନ ସଂସ୍କରଣରେ କଟିଯାଇଛି—

ମୂଳରେ ଧାରଣା ହେଉଛି ଯେ, ସେ ଜେଲ ଏତେ ଏପରି ଭୀତ ଓ ତ୍ରସ୍ତ ହୋଇ ଯାଉଥିବ ଯେ; ସେ ବାହାରେ ଆଉ ଅପରାଧ କରିବ ନାହିଁ କିମ୍ବା ଜେଲକୁ ଆଉ ଭବିଷ୍ୟତରେ ଆସିବାକୁ ଚାହିଁବ ନାହିଁ ।

"ସାଧାରଣ ଜେଲରେ ଶ୍ରମକୁ ଏକ ଶାସ୍ତି ରୂପେ ବ୍ୟବହାର କରାଯିବ । ଖାଲି କାର୍ଯ୍ୟ ଯୋଗାଇବା ନୁହେଁ ଏହା ଯେ ଲାଭଜନକ ହେବା ଉଚିତ, ଏ ସମ୍ବନ୍ଧରେ ଜୋର ଦେବା ଦରକାର ନାହିଁ ।"

ସୋଭିଏଟ୍ ଋଷର ଫୌଜଦାରୀ ଆଇନ ସହ ଏହାର ତୁଳନା କରାଯାଇ ପାରେ — ୯ ଦଫା — ସମାଜ ରକ୍ଷା ଉପାୟଗୁଡ଼ିକର ଲକ୍ଷ୍ୟ ଦୈହିକ କଷ୍ଟ ଦାନ କରିବା, ମନୁଷ୍ୟର ମର୍ଯ୍ୟାଦା ହାନି କରିବା କିମ୍ବା ଶାସ୍ତି ଦେବା ଲାଗି ପ୍ରତିଶୋଧ ହେବା ଉଚିତ ନୁହେଁ ।

୨୭ ଦଫା ଜେଲବାସ ଏକ ପ୍ରକାର ରକ୍ଷା ଉପାୟ, ଏଥିରେ କୌଣସି ନିର୍ଯ୍ୟାତନା ଦେବା ଉଚିତ ନୁହେଁ ଏବଂ ଅପରାଧୀକୁ ଅନାବଶ୍ୟକ ବା ଅତ୍ୟନ୍ତ କଷ୍ଟ ଦେବା ଉଚିତ ନୁହେଁ ।

ଆଜିକାଲି ଜେଲର କିଛି ଭଲ ସଂସ୍କାର ହୋଇଛି । ଖାଦ୍ୟ ପୋଷାକ ଏବଂ ଅନ୍ୟ ଜିନିଷ ସବୁ ଟିକିଏ ଭଲ ହୋଇଛି । ରାଜନୈତିକ ବନ୍ଦୀମାନେ ଖଲାସ ହୋଇ ଆସି ବାହାରେ ଆନ୍ଦୋଳନ କରିବା ଫଳରେ ଏହା ଅନେକ ପରିମାଣରେ ଘଟିଛି । ଅସହଯୋଗ ଆନ୍ଦୋଳନ ଯୋଗୁ ଓ୍ୱାର୍ଡରମାନେ, ଯେପରି ସରକାରଭକ୍ତ ହୋଇ ରହନ୍ତି, ଏଥିଲାଗି ସେମାନଙ୍କ ବେତନ ବଢ଼ାଇ ଦିଆ ଯାଇଥିଲା । ଆଜିକାଲି ବାଳକ ଓ ଯୁବକ ବନ୍ଦୀମାନଙ୍କୁ ଲେଖା ପଢ଼ା ଶିଖାଇବାର କ୍ଷୀଣ ଉଦ୍ୟମ ହେଉଛି । ଏସବୁ ପରିବର୍ତ୍ତନ ଅବଶ୍ୟ ଭଲ, ମାତ୍ର ଏହା

---

"ଜେଲ କାର୍ଯ୍ୟର ପ୍ରଧାନ ଓ ମୁଖ୍ୟ ଲକ୍ଷ୍ୟ ହେବ ଯେ, ଏହା ଅନ୍ୟାୟକାରୀ ପକ୍ଷରେ ଅତ୍ୟନ୍ତ କଷ୍ଟଦାୟକ, ଭୟଙ୍କର ଓ ଭୀତିପ୍ରଦ ହୋଇ ଉଠିବ ।

ସମସ୍ୟାର କିଛି ସମାଧାନ କରୁନାହିଁ; କାରଣ ପୂର୍ବ ଭଳି ସେହିପରି ରହିଛି ।

ଅଧିକାଂଶ ରାଜବନ୍ଦୀ ମଧ୍ୟ ସାଧାରଣ କଏଦୀଙ୍କ ପରି ବ୍ୟବହାର ପାଉଥିଲେ । ସେମାନଙ୍କୁ କୌଣସି ବିଶେଷ ସୁବିଧା ବା ଅନ୍ୟ ବ୍ୟବହାର କରାଯାଉ ନ ଥିଲା । ମାତ୍ର ସେମାନେ ଟିକିଏ ଅଧିକ ଭଦ୍ର ଓ ଚାଲାଖ ହୋଇଥିବାରୁ ସେମାନଙ୍କୁ ସହଜରେ ଠକାଇ ପାରୁ ନ ଥିଲେ କିମ୍ବା ଠିକ୍ ସେମାନଙ୍କଠାରୁ ମାଗିପାରୁ ନ ଥିଲେ । ଏହି କାରଣରୁ ଜେଲ କର୍ମଚାରୀମାନେ ତାଙ୍କ ଉପରେ ସନ୍ତୁଷ୍ଟ ନ ଥିଲେ ଏବଂ ଜେଲ ନିୟମର ଟିକିଏ ବ୍ୟତିକ୍ରମ ଘଟିଲେ, ସେମାନଙ୍କୁ ଗୁରୁତର ଶାସ୍ତି ଦିଆଯାଉଥିଲା । ଏହିପରି ଏକ ଶୃଙ୍ଖଳାଭଙ୍ଗ ଯୋଗୁ ଆଜାଦ ନାମକ ଏକ ୧୪ । ୧୫ ବର୍ଷର ବାଳକକୁ ବେତ ମାଡ ଦିଆଯାଇଥିଲା । ତାକୁ ବେତମାଡ଼ ଦେବାର ଠିକ୍‌ଠିକରେ ବାନ୍ଧି ଦେଇ ଯେତେବେଳେ ପ୍ରହାର ଉପରେ ପ୍ରହାର ତା ଉପରେ ବର୍ଷୁଥାଏ, ସେ ପ୍ରତ୍ୟେକ ଥର ବେତ ବସିଲାବେଳେ "ମହାତ୍ମା ଗାନ୍ଧିଙ୍କ ଜୟ" ବୋଲି ଚିତ୍କାର କରୁଥାଏ । ଏହି ଚିତ୍କାର ଯୋଗୁଁ ତାକୁ ଆହୁରି ଅଧିକ ମାଡ଼ ହେଉଥାଏ । ଶେଷରେ ସେ ଅଜ୍ଞାନ ହୋଇ ପଡ଼ିଲା । ପରେ ଏହି ବାଳକଟି ଉତ୍ତର ଭାରତରେ ଆତଙ୍କବାଦୀ-ମାନଙ୍କର ଏକ ନେତା ହୋଇଥିଲା ।

---

## ପୁଣି ବାହାରେ

ଲୋକ ଅନେକ ଜିନିଷ ଜେଲରେ ପାଏ ନାହିଁ; ମାତ୍ର ସବୁଠାରୁ ଅଧିକ ଅଭାବ ସ୍ତ୍ରୀଲୋକର ସ୍ୱର ଓ ପିଲାମାନଙ୍କର ହସ । ଯେଉଁ ସ୍ୱର ସାଧାରଣତଃ ଲୋକ ଶୁଣେ ତାହା ଆମୋଦଦାୟକ ନୁହେଁ । ଜେଲରେ ଯେଉଁ ଶବ୍ଦ ଶୁଣାଯାଏ, ତାହା କର୍କଶ, ଭୟମିଶ୍ରିତ ଏବଂ ଭାଷା ଅଶ୍ଳୀଳ ଓ ଅଭଦ୍ରତା ବ୍ୟଞ୍ଜକ । ମୋର ମନେ ଅଛି, ଥରେ ଗୋଟାଏ ବଡ଼ ଅଜବ ଅନୁଭବ କରି ମୁଁ ଅବାକ୍ ହୋଇଯାଇଥିଲି । ମୁଁ ଲକ୍ଷ୍ନୌ

ନିଷ୍ଟ ଜେଲରେ ଥାଏ । ହଠାତ୍ ମୁଁ ବୋଧ କଲି ଯେ, ପ୍ରାୟ ୭ । ୮ ମାସ ହେଲା ମୁଁ କୁକୁର ଭୁକିବା ଶୁଣିନାହିଁ ।

୧୯୨୩ ମସିହା ଜାନୁଆରୀ ମାସର ଶେଷଦିନ ଲକ୍ଷ୍ନୌ ଜେଲରୁ ଆମେ ସମସ୍ତ ରାଜବନ୍ଦୀ ଖଲାସ ହୋଇଗଲୁ । ସେତେବେଳେ ଲକ୍ଷ୍ନୌରେ ୧୦୦ରୁ ୨୦୦ ପର୍ଯ୍ୟନ୍ତ "ବିଶେଷ କ୍ଲାସ"ର ଲୋକେ ଥାନ୍ତି । ଯେଉଁମାନେ ୧୯୨୧ ମସିହା ଡିସେମ୍ବର କିମ୍ବା ୧୯୨୨ ମସିହା ପ୍ରଥମରେ ବର୍ଷେ କିମ୍ବା ତହିଁରୁ କମ ଶାସ୍ତି ପାଇଥିଲେ, ସେମାନେ ସେମାନଙ୍କର ବନ୍ଦୀକାଳ ଭୋଗ କରି ସାରିଥିଲେ । କେବଳ ଦୀର୍ଘ କାରାବାସ ଭୋଗୁଥିବା ଏବଂ ଯେଉଁମାନେ ୨ୟଥର ଲାଗି ଆସିଥିଲେ, ସେମାନେ ରହିଥିଲେ । ଏପରି ହଠାତ୍ ଖଲାସରେ ଆମେ ଆଶ୍ଚର୍ଯ୍ୟ ହୋଇଗଲୁ; କାରଣ ଆଗରୁ ଏପରି ଖଲାସ ହେବାର କୌଣସି ସୂଚନା ଆମେ ପାଇ ନ ଥିଲୁ । ସ୍ଥାନୀୟ ପ୍ରାଦେଶିକ ବ୍ୟବସ୍ଥା ସଭାରେ ରାଜବନ୍ଦୀଙ୍କ ମୁକ୍ତି ଦାବୀ କରି ଏକ ପ୍ରସ୍ତାବ ଗୃହୀତ ହୋଇଥିଲା; ମାତ୍ର ସରକାର ଏପରି ଦାବୀ ପ୍ରତି ପ୍ରାୟ କର୍ଣ୍ଣପାତ କରେ ନାହିଁ । ଯାହାହେଉ ସରକାର ଦୃଷ୍ଟିରୁ ଏହା ସବୁଠାରୁ ଉତ୍କୃଷ୍ଟ ଚାଲ ଥିଲା । କଂଗ୍ରେସ ସରକାର ବିରୁଦ୍ଧରେ କିଛି କରୁ ନ ଥିଲା ଏବଂ କଂଗ୍ରେସ ଲୋକେ ପରସ୍ପର ବିବାଦରେ ବ୍ୟସ୍ତ ଥିଲେ । ନାମଜାଦା କଂଗ୍ରେସ ଲୋକ ଖୁବ୍ କମ ଜେଲରେ ଥିଲେ, ସୁତରାଂ ଏପରି ଅନୁଗ୍ରହ ସରକାର ଦେଖାଇଲା ।

ଜେଲ ଫାଟକରୁ ବାହାର ଆସିଲେ ଗୋଟାଏ ସ୍ୱସ୍ତି ଏବଂ ଅପୂର୍ବ ଉତ୍ସାହ ଭାବ ମନରେ ଜାତ ହୁଏ । ନିର୍ମଳ ବାୟୁ, ଖୋଲା ସ୍ଥାନ, ଚଳନଶୀଳ ଛବିର ଦୃଶ୍ୟ ଏବଂ ପୁରାତନ ବନ୍ଧୁଙ୍କ ସାକ୍ଷାତ ଏହିସବୁ ଖୁବ ଉତ୍ସାହର ସହିତ ଗ୍ରହଲେ । ବାହାର ଜଗତକୁ ଆସିବାର ପ୍ରଥମ ପ୍ରତିକ୍ରିୟା ସ୍ୱରୂପ ଗୋଟାଏ ପ୍ରକାର ପାଗଳାମିର ଭାବ ମନରେ ହୁଏ । ଆମେ ଖୁବ ଉତ୍ସାହରେ ମାତିଗଲୁ, ମାତ୍ର ଏହା ସାମୟିକ ଉତ୍ତେଜନା —କାରଣ କଂଗ୍ରେସ ରାଜନୀତି ବଡ ନିରୁତ୍ସାହଜନକ ଥିଲା । ଆଦର୍ଶ ପରିବର୍ତ୍ତେ ଷଡ଼ଯନ୍ତ୍ର ଥିଲା ଏବଂ ଯେଉଁ ସବୁ କାରଣରୁ ଲୋକେ ରାଜନୀତିକୁ

ଘୃଣା କରନ୍ତି, ସେହିସବୁ କୁଚକ୍ର କରି କଂଗ୍ରେସକୁ ଦଖଲ କରିବା ନିମନ୍ତେ ଚେଷ୍ଟା ଚାଲିଥିଲା ।

ମୋର ନିଜର ମତ କାଉନ୍‌ସିଲ ପ୍ରବେଶର ପୂର୍ଣ୍ଣ ବିରୋଧୀ ଥିଲା; କାରଣ ଏହା ନିଶ୍ଚୟ ମିଳାମିଶାରେ ପରିଣତ ହେବ ଏବଂ ଆମ ଆଦର୍ଶକୁ କ୍ରମେ କୋହଳ କରିଦେବ । ମାତ୍ର ପ୍ରକୃତରେ ସେତେବେଳେ ଦେଶ ଆଗରେ ଆଉ କୌଣସି ରାଜନୈତିକ କର୍ମପନ୍ଥା ନ ଥିଲା । ଅପରିବର୍ତ୍ତନ-ବାଦୀମାନେ "ରଚନାତ୍ମକ କାର୍ଯ୍ୟରେ" ଜୋର ଦେଉଥିଲେ—ଏହା ବାସ୍ତବିକ ଏକ ସମାଜ ସଂସ୍କାର କାର୍ଯ୍ୟ ଏବଂ ଏଥିରେ ପ୍ରଧାନ କଥା ହେଉଛି ଯେ, କର୍ମୀମାନଙ୍କୁ ଜନସାଧାରଣଙ୍କ ସଂସର୍ଗରେ ଏହା ଆଣୁଥିଲା । ରାଜନୈତିକ କାର୍ଯ୍ୟରେ ବିଶ୍ୱାସ କରୁଥିବା ଲୋକ ଏଥିରେ ସନ୍ତୁଷ୍ଟ ହେବା ସମ୍ଭବ ନୁହେଁ ଏବଂ ପ୍ରତ୍ୟକ୍ଷ ସଂଗ୍ରାମର ଏକ ତରଙ୍ଗ ପରେ ଏବଂ ତାହା ପୁଣି ସଫଳକାମ ନ ହେଲେ, ପାର୍ଲିମେଣ୍ଟାରୀ କର୍ମପନ୍ଥା ଆସିବା ଅବଶ୍ୟମ୍ଭାବୀ । ଏହି କାର୍ଯ୍ୟ ନୂତନ ଆନ୍ଦୋଳନର ନେତା ଦେଶବନ୍ଧୁ ଦାସ ଓ ମୋ ପିତାଙ୍କ କଳ୍ପନା ପ୍ରସୂତ ହୋଇଥିଲା—ସେମାନେ ଏଥିରେ ବାଧା ଓ ପ୍ରତିରୋଧର କର୍ମପନ୍ଥା ଦେଖିଥିଲେ, ସହଯୋଗ ଏବଂ ସଂଗଠନର ନୁହେଁ । ଜାତୀୟ ସଂଗ୍ରାମ ଚଳାଇବା ଉଦ୍ଦେଶ୍ୟରେ ସି. ଆର. ଦାସ ବ୍ୟବସ୍ଥା ସଭା ପ୍ରବେଶ ପାଇଁ କହୁଥିଲେ । ମୋର ପିତା ଅନେକ ଅଧିକ ସେହି ଦୃଷ୍ଟି-କୋଣରୁ ଦେଖୁଥିଲେ । ଗାନ୍ଧିଜୀଙ୍କ ମତକୁ ମାନି ୧୯୨୦ରେ ସେ କାଉନସିଲ ବର୍ଜନରେ ରାଜି ହୋଇଥିଲେ । ସେ ତାଙ୍କର ସମସ୍ତ ଶକ୍ତି ଦେଇ ସଂଗ୍ରାମ କରିବାକୁ ଚାହୁଁଥିଲେ ଏବଂ ଏହା କରିବାର ଏକମାତ୍ର ଉପାୟ ହେଉଛି, ସମ୍ପୂର୍ଣ୍ଣରୂପେ ଗାନ୍ଧିଜୀଙ୍କର କର୍ମପନ୍ଥାକୁ ଗ୍ରହଣ କରିବା । ସିନ୍‌ଫିନ ଦଳ ଯେପରି ପାର୍ଲାମେଣ୍ଟର ସଭ୍ୟ ହେବା ପରେ ତହିଁରେ ଯୋଗ ଦେବାକୁ ଅସ୍ୱୀକାର କରିଥିଲେ, ସେହି କୌଶଳ ପ୍ରୟୋଗ-କରିବାର ଭାବ ଯୁବକମାନଙ୍କ ମନରେ ପୂରି ରହିଥାଏ । ମୋର ମନେ ଅଛି, ଏହିପରି ବୟକଟ ଆନ୍ଦୋଳନ ଲାଗି ୧୯୨୦ ମସିହା ଗ୍ରୀଷ୍ମ କାଳରେ ଗାନ୍ଧିଜୀଙ୍କୁ ଅନୁରୋଧ କରିଥିଲି । ମାତ୍ର ଏସବୁ ସମ୍ବନ୍ଧରେ ସେ ବହୁ

ଅଟଳ ଥିଲେ । ସେତେବେଳେ ଏକ ଖିଲାଫତ୍ ଡେପୁଟେସନରେ ମହମ୍ମଦ ଅଲି ଇଉରୋପରେ ଥାଆନ୍ତି । ସେ ଫେରି ମଧ୍ୟ ଯେପରି ଭାବରେ ବର୍ଜନ ପନ୍ଥା ଗ୍ରହଣ କରାଗଲା, ସେଥିଲାଗି ଦୁଃଖ ପ୍ରକାଶ କଲେ । ସେ ସିନଫିନ ପନ୍ଥାକୁ ଗ୍ରହଣ କରିବାକୁ ରାଜି ଥିଲେ । ଅନ୍ୟ ବ୍ୟକ୍ତିବିଶେଷ କିଏ କଣ ଏ ସବୁ ବିଷୟରେ ଭାବୁଛନ୍ତି, ସେଥିରେ କିଛି ଯାଏ ଆସେନା, କାରଣ ଶେଷରେ ଗାନ୍ଧିଜୀଙ୍କ କଥାହିଁ ଦେଶରେ ପ୍ରଚଳିତ ହେବ । ସେ ଆନ୍ଦୋଳନର କର୍ତ୍ତା ଥିଲେ ଏବଂ ଏ ସବୁର ବାସ୍ତବ କାମ ସକାଶେ ତାଙ୍କୁ ସ୍ୱାଧୀନତା ଦିଆଯିବା ଦରକାର । ସିନଫିନ ପନ୍ଥା ପ୍ରତି ତାଙ୍କର ପ୍ରଧାନ ଆପତ୍ତି ହେଉଛି (ଏଥିରେ ଯେଉଁ ହିଂସା କଥା ଥିଲା ତାହା ବାଦ) ସିଧାଭାବରେ ଭୋଟ ଓ ନିର୍ବାଚନ ସ୍ଥାନ ସବୁ ବର୍ଜନ କରିବା ଦ୍ୱାରା ଜନସାଧାରଣ ଯେପରି କଥାଟା ବୁଝି ପାରିବେ, ଏଥିରେ ତାହା ବୁଝି-ପାରିବେ ନାହିଁ । ନିର୍ବାଚିତ ହୋଇ ବ୍ୟବସ୍ଥା ସଭାକୁ ନ ଯିବା ଦ୍ୱାରା ଜନସାଧାରଣଙ୍କ ମନରେ ଗୋଳମାଳିଆ ଭାବ ହୋଇପାରେ । ଆହୁରି ମଧ୍ୟ ଥରେ ଆମ ଲୋକେ ନିର୍ବାଚିତ ହେଲେ ସେମାନେ ବ୍ୟବସ୍ଥା ସଭା ଆଡ଼କୁ ଟାଣି ହୋଇଯିବେ ଏବଂ ସେମାନଙ୍କୁ ସେଥିରୁ ଅଲଗା ରଖିବା କଷ୍ଟକର ହେବ । ଅନେକ ଦିନ ପର୍ଯ୍ୟନ୍ତ ସେମାନଙ୍କୁ କାଉନସିଲରେ ଯୋଗ ଦେବାକୁ ବିରତ କରି ରଖିବା ଭଳି ଆମର ଯଥେଷ୍ଟ ଶୃଙ୍ଖଳା ଓ ଆନ୍ଦୋଳନର ଶକ୍ତି ନ ଥିଲା ଏବଂ କାଉନସିଲ ଜରିଆରେ ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ଭାବରେ ନାନା ପ୍ରକାର ସରକାରୀ ଅନୁଗ୍ରହ ନେବା ପାଇଁ ଲୋକେ ବାହାରିବେ ।

ଏ ସବୁ ଯୁକ୍ତି ବଡ଼ ଗୁରୁତ୍ୱପୂର୍ଣ୍ଣ ଏବଂ ସ୍ୱରାଜ ଦଳ କାଉନସିଲ ପ୍ରବେଶ କଲାପରେ ଏହିସବୁ କଥାର ଅନେକ ଯଥାର୍ଥତା ପ୍ରମାଣିତ ହେଲା-ତଥାପି କଂଗ୍ରେସ ଯଦି ୧୯୨୦ରେ ବ୍ୟବସ୍ଥା ସଭା ଦଖଲ କରିବା ନିମନ୍ତେ ବାହାରି ଥାଆନ୍ତା, ତେବେ ଅବସ୍ଥାଟା କଣ ହୋଇଥାନ୍ତା, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଖିଲାଫତ କମିଟି ଅସହଯୋଗ କରୁଥିବାରୁ ପ୍ରାଦେଶିକ ବ୍ୟବସ୍ଥା ସଭା ଏବଂ କେନ୍ଦ୍ର ଆସେମ୍ବ୍ଲିର ପ୍ରତ୍ୟେକ ନିର୍ବାଚିତ

ସ୍ଥାନ ଯେ କଂଗ୍ରେସ ଦଖଲ କରିଥାନ୍ତା, ଏଥିରେ ସନ୍ଦେହ ନାହିଁ । ଆଜି (ଅଗଷ୍ଟ ୧୯୩୪) ପୁଣି ଆସେମ୍ବ୍ଲିକୁ କଂଗ୍ରେସ ତରଫରୁ ପଠାଇବା ନିମନ୍ତେ କଥା ଚାଲିଛି ଏବଂ ଗୋଟିଏ ପାର୍ଲିମେଣ୍ଟାରୀ ବୋର୍ଡ଼ ଗଠନ କରାଯାଇଛି । ମାତ୍ର ୧୯୨୦ଠାରୁ ଆମ ରାଜନୀତିକ ଓ ସାମାଜିକ ଜୀବନରେ ପାର୍ଥକ୍ୟ କ୍ରମେ ବଢ଼ିଯାଇଥିବାରୁ ଆସନ୍ତା ନିର୍ବାଚନରେ କଂଗ୍ରେସ ଯେତେ ସଫଳ ହେଉ ପଛକେ, ୧୯୨୦ ମସିହାରେ ଯେପରି ହୋଇ ଥାଆନ୍ତା, ସେପରି ହେବ ନାହିଁ ।

ଏହି ଦୁଇ ବିରୁଦ୍ଧ ଦଳଙ୍କ ସହ ଯେଉଁମାନେ ଗୋଟାଏ ମିଳାମିଶା ଆଣିବାକୁ ଚେଷ୍ଟା କରୁଥିଲେ ମୁଁ ଜେଲରୁ ଖଲାସ ହୋଇ ସେମାନଙ୍କ ସହିତ ସହଯୋଗ କଲି । ଆମେ ଖୁବ୍ କମ ସଫଳତା ଲାଭ କଲୁ ଏବଂ ଅପରିବର୍ତ୍ତନ ଓ ପରିବର୍ତ୍ତନ କଥାରେ ମୁଁ ବିରକ୍ତ ହୋଇଗଲି । ଯୁକ୍ତ ପ୍ରଦେଶ ପ୍ରାଦେଶିକ କଂଗ୍ରେସ କମିଟିର ସେକ୍ରେଟାରୀ ଭାବରେ କଂଗ୍ରେସ ଅନୁଷ୍ଠାନର କାର୍ଯ୍ୟରେ ମୁଁ ନିଜକୁ ନିୟୋଗ କଲି । ଗତବର୍ଷର ହଲଚଲ ପରେ ଅନେକ କାର୍ଯ୍ୟ କରିବାର ଥିଲା ! ମୁଁ କଠିନ ପରିଶ୍ରମ କଲି; ମାତ୍ର ଏହା ଉଦ୍ଦେଶ୍ୟ ପୂରଣ କଲା ନାହିଁ । ମାନସିକ ଭାବରେ ମୁଁ ବଡ଼ ବ୍ୟାକୁଳ ଥିଲି । ଶୀଘ୍ର ମୋ ସମ୍ମୁଖରେ ଏକ ନୂତନ କର୍ମ ରାସ୍ତା ଖୋଲିଗଲା । ମୋର ଖଲାସ ହେବାର କେତେ ସପ୍ତାହ ପରେ ଏଲାହାବାଦ ମ୍ୟୁନିସିପାଲିଟିର ଚେୟାରମ୍ୟାନ ପଦ ମୋ ଉପରେ ଲଦାହେଲା । ଏହି ନିର୍ବାଚନ ବଡ଼ ଅପ୍ରତ୍ୟାଶିତ ଭାବରେ ଆସିଲା । ନିର୍ବାଚନର ୪୫ ମିନିଟ ପୂର୍ବରୁ କେହି ମୋ ନାମ ଉଲ୍ଲେଖ କରୁ ନ ଥିଲେ କିମ୍ବା ମୋ କଥା କେହି ଚିନ୍ତା ସୁଦ୍ଧା କରି ନ ଥିଲେ । ମାତ୍ର ଶେଷ ମୁହୂର୍ତ୍ତରେ କଂଗ୍ରେସ ଦଳ ଦେଖିଲେ ଯେ, ତାଙ୍କ ଦଳ ପକ୍ଷରୁ କେବଳ ମୋ ନାମ ପ୍ରସ୍ତାବିତ ହେଲେ ନିଶ୍ଚୟ ନିର୍ବାଚନରେ ସଫଳ ହେବ ।

ଏପରି ହେଲା ଯେ, ସେ ବର୍ଷ ଦେଶସାରା ମୁଖିଆ ଲୋକମାନେ ମ୍ୟୁନିସିପାଲିଟିର କର୍ମକର୍ତ୍ତା ହେଲେ । ସି. ଆର. ଦାସ କଲିକତାର

ପ୍ରଥମ ମେୟର ହେଲେ, ଭିଠଲଭାଇ ପଟେଲ ବମ୍ବେ କର୍ପୋରେସନର ପ୍ରେସିଡେଣ୍ଟ ଏବଂ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଅହମେଦାବାଦ ମ୍ୟୁନିସିପାଲିଟିର ଚେୟାରମାନ ହେଲେ । ଯୁକ୍ତ ପ୍ରଦେଶରେ ଅଧିକାଂଶ ବଡ଼ ମ୍ୟୁନିସିପାଲିଟିମାନଙ୍କରେ କଂଗ୍ରେସ ଲୋକେ ଚେୟାରମାନ ହୋଇଥିଲେ ।

ନାନାପ୍ରକାର ମ୍ୟୁନିସିପାଲ କାର୍ଯ୍ୟରେ ମୋର ଆଗ୍ରହ ଜାତ ହେଲା ଏବଂ ମୁଁ ଏଥିରେ ଅଧିକରୁ ଅଧିକ ସମୟ ଦେଲି । ଏହାର କେତେକ ସମସ୍ୟାରେ ମୁଁ ମୁଗ୍ଧ ହୋଇଗଲି । ମୁଁ ସେ ସମ୍ବନ୍ଧରେ ପଢ଼ିଲି ଏବଂ ମ୍ୟୁନିସିପାଲ ସଂସ୍ଥାର ସମ୍ବନ୍ଧରେ ଅତ୍ୟନ୍ତ ଉଚ୍ଚ ଧାରଣା ସବୁ ଜାତ ହେଲା । ଆଜି ଯେପରି ଭାବରେ ଭାରତୀୟ ମ୍ୟୁନିସିପାଲିଟି ସବୁ ଗଢ଼ା ହୋଇଛି, ସେଥିରେ ଖୁବ୍ ଉଚ୍ଚ ବା ଆଶ୍ଚର୍ଯ୍ୟଜନକ ଉନ୍ନତିମୂଳକ କାର୍ଯ୍ୟ କରିବା ସମ୍ଭବ ନୁହେଁ ବୋଲି ମୁଁ ପରେ ବୁଝି ପାରିଲି । ତଥାପି କାର୍ଯ୍ୟ କରିବାଲାଗି ସଫାଇ ଏବଂ ସେ ଯନ୍ତ୍ରକୁ ଠିକ୍ ଭାବେ କାର୍ଯ୍ୟକ୍ଷମ କରିବା ନିମନ୍ତେ ଏଠାରେ ସୁବିଧା ଥିଲା ଏବଂ ମୁଁ ସେଥିରେ ଖୁବ କଠିନ କାର୍ଯ୍ୟ କଲି । ସେତେବେଳେ ମୋର କଂଗ୍ରେସ କାର୍ଯ୍ୟ ମଧ୍ୟ ବଢ଼ିଥାଏ — ପ୍ରାଦେଶିକ କଂଗ୍ରେସ କମିଟିର ସମ୍ପାଦକ ଛଡ଼ା ନିଖିଳ ଭାରତ କମିଟିର ମଧ୍ୟ ମତେ ସମ୍ପାଦକ କରାଗଲା । ଏହିସବୁ ନାନା ପ୍ରକାର କାର୍ଯ୍ୟରେ ମୋର ଦିନକରୁ ପ୍ରାୟ ୧୫ ଘଣ୍ଟା କଟିଗଲା ଏବଂ ଦିନ ଶେଷ ବେଳକୁ ମୁଁ ବଡ଼ କ୍ଳାନ୍ତ ହୋଇ ପଡ଼ୁଥିଲି ।

ମୁଁ ଜେଲରୁ ଘରେ ପହଞ୍ଚିବା ମାତ୍ରେ ପ୍ରଥମେ ସେତେବେଳର ଏଲ୍ଲାବାଦ ହାଇକୋର୍ଟର ପ୍ରଧାନ ବିଚାରପତି ସାର୍ ଗ୍ରିମଉଡ୍ ମିୟର୍ସଙ୍କଠାରୁ ଖଣ୍ଡେ ଚିଠି ପାଇଲି । ମୋର ଜେଲ୍‌ରୁ ଖଲାସ ପୂର୍ବରୁ ମୁଁ ଖଲାସ ହେବା ଅନୁମାନ କରି ସେ ଚିଠି ଲେଖା ହୋଇଥିଲା । ତାଙ୍କ ଭାଷାର ଭଦ୍ରତା ଦେଖି ମୁଁ ଟିକିଏ ଆଶ୍ଚର୍ଯ୍ୟ ହୋଇଗଲି । ତାଙ୍କ ସହିତ ବାରମ୍ବାର ସାକ୍ଷାତ କରିବା ନିମନ୍ତେ ସେ ମୋତେ ନିମନ୍ତ୍ରଣ କରିଥିଲେ ।

ମୁଁ ତାଙ୍କୁ ପ୍ରାୟ ଚିହ୍ନି ନ ଥିଲି । ୧୯୧୯ରେ ମୁଁ ଆଇନ ବ୍ୟବସାୟ ଛାଡ଼ିବା ବେଳକୁ ସେ ଏଲ୍ଲାହାବାଦକୁ ଆସିଲେ । ମୋର ମନେହୁଏ, ମୁଁ ତାଙ୍କ ଆଗରେ ଗୋଟିଏ ମକଦ୍ଦମା ଚଳାଇଥିଲି ଏବଂ ହାଇକୋର୍ଟରେ ତାହା ମୋର ଶେଷ ମକଦ୍ଦମା । ମୋ ସମ୍ବନ୍ଧରେ ବିଶେଷ କିଛି ନ ଜାଣି ଥିଲେ ମଧ୍ୟ କୌଣସି କାରଣରୁ ତାଙ୍କର ମୋ ପ୍ରତି ଗୋଟାଏ ପକ୍ଷପାତ ଭାବ ଥିଲା ! ସେ ମୋତେ ପରେ କହିଲେ ଯେ, ମୁଁ ଖୁବ୍ ବଡ ଲୋକ ହେବି ବୋଲି ତାଙ୍କର ଧାରଣା ଥିଲା ଏବଂ ମୁଁ ଯେପରି ଇଂରେଜ ମନୋଭାବ ଭଲରୂପେ ବୁଝିପାରେ ସେଥିଲାଗି ସେ ମୋ ଉପରେ ପ୍ରଭାବ ପକାଇବାକୁ ଚାହୁଁ ଥିଲେ । ତାଙ୍କର କୌଶଳ-ମାନ କୋମଳ ଓ ଚାତୁର୍ଯ୍ୟପୂର୍ଣ୍ଣ ଥିଲା । ତାଙ୍କ ମତରେ ଏବଂ ଅନେକ ଇଂରେଜ ଲୋକ ମଧ୍ୟ ଭାବନ୍ତି ଯେ, ଭାରତରେ ସାଧାରଣ "ଚରମପନ୍ଥୀ" ରାଜନୀତିଜ୍ଞମାନେ ଅତ୍ୟନ୍ତ ଇଂରେଜ—ବିରୋଧୀ; କାରଣ ସାମାଜିକ ଆଚାର ବ୍ୟବହାରରେ ସେମାନଙ୍କ ପ୍ରତି ଇଂରେଜ ଲୋକେ ଖରାପ ବ୍ୟବହାର କରୁଥିଲେ । ଏହି ହେତୁରୁ ଅସନ୍ତୋଷ, କ୍ରୋଧ ଏବଂ ଉଗ୍ରତା ବଢିଛି ! ଏକ ପ୍ରଚଳିତ ଗପ ଅଛି; ମୋ ପିତାଙ୍କୁ ଗୋଟିଏ ଇଂରେଜୀ କ୍ଲବରେ ସଭ୍ୟ ହେବାକୁ ଦିଆଗଲା ନାହିଁ; ସେଥିଯୋଗୁଁ ସେ ଇଂରେଜ ବିରୋଧୀ ଓ ଚରମପନ୍ଥୀ ହେଲେ । ଏହି କଥାର ଆଦୌ ଭିତ୍ତି ନାହିଁ ଏବଂ ଗୋଟାଏ ସମ୍ପୂର୍ଣ୍ଣ ବିଭିନ୍ନ ଘଟଣାର ଏକ ମିଥ୍ୟା ବର୍ଣ୍ଣନା ମାତ୍ର ।※ ମାତ୍ର ଏପରି ଘଟଣା ସତ୍ୟ ହେଉ ବା ନ ହେଉ, ଅନେକ ଇଂରେଜ ଲୋକ ଜାତୀୟ ଆନ୍ଦୋଳନର ଏହା ମୂଳ କଥା ବୋଲି ବିଶ୍ୱାସ କରୁଥିଲେ । ପ୍ରକୃତରେ କହିବାକୁ ଗଲେ ମୁଁ ଓ ମୋର ପିତା କାହାର ଏ ସମ୍ବନ୍ଧରେ କିଛି ଆପତ୍ତି ନ ଥିଲା । ବ୍ୟକ୍ତିଗତ ଭାବରେ ଆମେ ସାଧାରଣତଃ ଇଂରେଜଙ୍କଠାରୁ ଭଦ୍ର ବ୍ୟବହାର ପାଉଥିଲୁ ଏବଂ ସେମାନଙ୍କ ସହିତ ଆମେ ଭଲରୂପେ ଚଳିପାରୁ ଥିଲୁ—ଅବଶ୍ୟ ଅନ୍ୟ

---

※ ଏ ସମ୍ବନ୍ଧରେ ବିଶେଷ ବିବରଣୀ ଜାଣିବା ନିମନ୍ତେ ୩୮ଶ ଅଧ୍ୟାୟରେ ଥିବା ନୋଟ ଦେଖନ୍ତୁ ।

ଭାରତୀୟଙ୍କ ପରି ଆମେ ପରାଧୀନ ବୋଲି ସର୍ବଦା ସଚେତନ ଥିଲୁ ଏବଂ ସେଥିରେ ଗଭୀର ଅସନ୍ତୋଷ ପ୍ରକାଶ କରୁଥିଲୁ । ମୁଁ ସ୍ୱୀକାର କରିବାକୁ ଚାହେଁ । ଆଜି ସୁଦ୍ଧା ମୋର ଇଂରେଜ ଲୋକଙ୍କ ସହିତ ଭଲ ପଡ଼େ, ଅବଶ୍ୟ ଯେ ଯଦି କୌଣସି ଅଫିସର ହୋଇ ମୋତେ ଅନୁଗ୍ରହ ଦେଖାଇବାକୁ ଚାହେଁ, ତେବେ ତାହା ଦୂସରା କଥା—ଏପରି ହେଲେ ମଧ୍ୟ ଆମ ଭିତରେ ବେଶ୍ ପ୍ରୀତି ରହେ । ସମ୍ଭବତଃ ଯେଉଁ ଲିବରାଲ ବା ଅନ୍ୟମାନେ ଭାରତ ରାଜନୀତିରେ ସେମାନଙ୍କୁ ସାହାଯ୍ୟ କରନ୍ତି, ସେମାନଙ୍କ ଅପେକ୍ଷା ଇଂରେଜ ଲୋକଙ୍କୁ ମୁଁ ବେଶି ଆପଣାର ମନେ କରେ ।

ବନ୍ଧୁଭାବରେ କଥାବାର୍ତ୍ତା, ଖୋଲା ଏବଂ ଭଦ୍ର ବ୍ୟବହାର ଦ୍ୱାରା ମୋ ଅନ୍ତରରୁ ଏହି ବଳନ୍ତ ଭାବରେ ମୂଳୋତ୍ପାଟନ କରିବା ସାର ଗ୍ରୀମଲନ୍ତ-ଙ୍କର ଉଦ୍ଦେଶ୍ୟ ଥିଲା । ମୁଁ ତାଙ୍କ ସହିତ ଅନେକ ଥର ସାକ୍ଷାତ କରିଥିଲି । କୌଣସି ମ୍ୟୁନିସିପାଲ ଟିକସକୁ ଆପତ୍ତି କରିବା ଛଳନାରେ ସେ ମୋ ପାଖକୁ ଆସୁଥିଲେ ଏବଂ ଅନ୍ୟ କଥା ଆଲୋଚନା କରୁଥିଲେ । ଥରେ ସେ ଭାରତୀୟ ଲିବରାଲଙ୍କ ଉପରେ ଆକ୍ରମଣ ଚଳାଇଲେ—ଭୀରୁ, ଦୁର୍ବଳ, ସୁବିଧାବାଦୀ, ସେମାନଙ୍କର ମେରୁଦଣ୍ଡ ନାହିଁ—ଏହିପରି କର୍କଶ ଓ ଘୃଣିତ ଭାଷା ସେ ସେମାନଙ୍କ ପ୍ରତି ବ୍ୟବହାର କରୁଥିଲେ ଏବଂ କହିଲେ, 'ତୁମେ କଣ ଭାବୁଛ ଆମର ତାଙ୍କପ୍ରତି କୌଣସି ପ୍ରକାର ସମ୍ମାନ ଅଛି ?' ସେ ନାହିଁକି ମୋତେ ଏପରି କହୁଛନ୍ତି ଭାବି ମୁଁ ଆଶ୍ଚର୍ଯ୍ୟ ହେଲି । ସମ୍ଭବତଃ ସେ ଭାବୁଥିଲେ ଏହିପରି କଥାବାର୍ତ୍ତାରେ ମୁଁ ଖୁସି ହେବି । ତା ପରେ ନୂତନ କାଉନ୍‌ସିଲ ମନ୍ତ୍ରୀ ଏବଂ ଦେଶସେବା ଲାଗି ମନ୍ତ୍ରୀମାନେ ଯେ ସୁବିଧା ପାଇବେ ଏହି ସବୁ ସମ୍ବନ୍ଧରେ ସେ ଆଲୋଚନା ଚଳାଇଲେ । ଦେଶ ସମ୍ମୁଖରେ ଶିକ୍ଷା ହେଉଛି ସବୁଠାରୁ ଜୀବନ୍ତ ସମସ୍ୟା । ଜଣେ ଶିକ୍ଷା ମନ୍ତ୍ରୀ ତାର ନିଜ ଇଚ୍ଛାନୁସାରେ ସ୍ୱାଧୀନତା ପାଇଲେ ଲକ୍ଷ ଲକ୍ଷ ଲୋକଙ୍କର ଭାଗ୍ୟ ନିୟନ୍ତ୍ରଣ କରିବାର ସୁବିଧା ପାଇବ ନାହିଁ କି ? ଏହା ଜୀବନରେ କଦବା ମିଳିବା ସୁଯୋଗ । ସେ କହିଲେ, ମନେ କର ତମପରି ଜଣେ ବୁଦ୍ଧିମାନ, ଚରିତ୍ରବାନ, ଆଦର୍ଶବାଦୀ ଏବଂ କାର୍ଯ୍ୟକୁ ସଫଳତାର ସହିତ କରିବାର

ଶକ୍ତିଥିବା ବ୍ଲେକ ହାତରେ ଯଦି ପ୍ରଦେଶର ଶିକ୍ଷାଭାର ପଡ଼େ, ତାହାହେଲେ କିଛି ଅଦ୍ଭୁତ କାମ ହୋଇପାରିବ ନାହିଁ । ସେ ମତେ ନିର୍ଭର ଜବାବ ଦେଇଥିଲେ ଏବଂ ସେ ନିକଟରେ ଗଭର୍ଣ୍ଣର ସହିତ କଥାବାର୍ତ୍ତା କରି ବୁଝିଥିଲେ ଯେ, ମୋତେ ମୋର ନୀତି ଅନୁସାରେ କାର୍ଯ୍ୟ କରିବା ନିମନ୍ତେ ପୂର୍ଣ୍ଣ ସ୍ୱାଧୀନତା ଦିଆଯିବ । ତା ପରେ ସେ ସମ୍ଭବତଃ ବହୁଦୂର ଚାଲିଯାଇ-ଛନ୍ତି ବୋଲି ବୁଝିପାରି କହିଲେ ଯେ, ଅବଶ୍ୟ ସରକାରୀ ଭାବରେ ସେ କାହାରି କଥା କହିପାରିବେ ନାହିଁ; ଏହା ତାଙ୍କର ବ୍ୟକ୍ତିଗତ ମତ ।

ସାର ଗ୍ରୀମଉଡ଼ଙ୍କର ଏହି କୌଶଳପୂର୍ଣ୍ଣ ପ୍ରସ୍ତାବରୁ ଅବଶ୍ୟ ମୁଁ ରକ୍ଷା ପାଇଥିଲି । ମନ୍ତ୍ରୀଭାବରେ ଗଭର୍ଣ୍ଣମେଣ୍ଟ ସହିତ ସଂଯୁକ୍ତ ହେବା ମୋର ଚିନ୍ତାର ବାହାରେ ଥିଲା; ବାସ୍ତବିକ ମୋ ପକ୍ଷରେ ଏହା ଘୃଣାଜନକ ଥିଲା; ମାତ୍ର ସେତେବେଳେ ଏବଂ ପରବର୍ତ୍ତୀ ବର୍ଷମାନଙ୍କରେ ମୁଁ ଅନେକ ସମୟରେ କିଛି ନିର୍ଦ୍ଦିଷ୍ଟ ଗଠନାତ୍ମକ କାର୍ଯ୍ୟ କରିବା ନିମନ୍ତେ ବ୍ୟାକୁଳ ହୋଇଛି । ଧ୍ୱଂସ ଆନ୍ଦୋଳନ ଏବଂ ଅସହଯୋଗ ଏ ସବୁ ମାନବ ପକ୍ଷରେ ସାଧାରଣ କାର୍ଯ୍ୟ ନୁହେଁ; ମାତ୍ର ଆମର କପାଳ ଏପରି ଯେ, ଆମେ ବିଷାଦ ଏବଂ ଧ୍ୱଂସର ମରୁଭୂମି ଅତିକ୍ରମ କଲାପରେ ଯେଉଁ ଭୂମିରେ ପହଞ୍ଚିବୁ, ସେଠାରେ ରଚନାତ୍ମକ କାର୍ଯ୍ୟ ସମ୍ଭବ ହେବ । ମାତ୍ର ଏପରି ହୋଇପାରେ ଯେ, ଆମ ଭିତରୁ ଅନେକଙ୍କର ସମସ୍ତ ଶକ୍ତି ଏବଂ ଜୀବନ କେବଳ ସଂଗ୍ରାମ କରି କରି ଏବଂ ଏହି ସବୁ ଶିଥିଳ ବାଲୁକାରାଶିରେ ସଂଗ୍ରାମ କରି କ୍ଳାନ୍ତ ହୋଇଯିବ ଏବଂ ଗଠନ କାର୍ଯ୍ୟ ଆମର ସନ୍ତାନ କିମ୍ବା ସନ୍ତାନଙ୍କ ସନ୍ତାନ ଦ୍ୱାରା ହେବ ।

ସେ କାଳରେ ମନ୍ତ୍ରୀ ବିଶେଷତଃ ମୁକ୍ତ ପ୍ରଦେଶରେ ବଡ଼ ଶସ୍ତା ପଣ୍ୟ-ଦ୍ରବ୍ୟ ହୋଇଥିଲା । ଯେଉଁ ଦୁଇଜଣ ଲିବରାଲ ମନ୍ତ୍ରୀ ଅସହଯୋଗ ସମୟରେ କାର୍ଯ୍ୟ କରିଥିଲେ ସେମାନେ ଗଲେ । କଂଗ୍ରେସ ଆନ୍ଦୋଳନ ଯେତେବେଳେ ପ୍ରଚଳିତ ସମାଜକୁ ଦୋହଲାଇବାକୁ ବସିଲା, ସେତେ-ବେଳେ ଏହି ମନ୍ତ୍ରୀଙ୍କୁ କଂଗ୍ରେସ ସହିତ ଯୁଦ୍ଧ କରିବାରେ ସରକାର ଲଗାଇ ଦେଲା । ସେତେବେଳେ ସରକାର ସେମାନଙ୍କୁ ଆଦର ଦେଖାଇ

ଥିଲା ଏବଂ ଖୁବ୍ ସମ୍ମାନଜନକ ବ୍ୟବହାର କରୁଥିଲା । କାରଣ ସେତେବେଳର ଗୋଳମାଳଆବେଳେ ସେମାନଙ୍କୁ ସରକାର ସମର୍ଥକ ଭାବରେ [illegible] ପ୍ରକାର ରଖିବା ଦରକାର ଥିଲା । ସେମାନେ ସମ୍ଭବତଃ ଏକ ଅଧିକାର ରୂପେ ଏହି ସମ୍ମାନ ଓ ଆଦର ପାଉଛନ୍ତି ବୋଲି ଭାବୁଥିଲେ ଏବଂ କଂଗ୍ରେସ ସରକାରଙ୍କୁ ଆକ୍ରମଣ କରିବାର ପ୍ରତିକ୍ରିୟା ସ୍ୱରୂପ ଏହା ଯେ ହେଉଛି ସେମାନେ ବୁଝିପାରୁ ନ ଥିଲେ । ସେ ଆକ୍ରମଣ ବନ୍ଦ ହୋଇଗଲା ପରେ ଲିବରାଲ ମନ୍ତ୍ରୀଙ୍କ ମୂଲ୍ୟ ସରକାର ଚକ୍ଷୁରେ ବହୁତ କମିଗଲା ଏବଂ ସେ ଆଦର ଓ ସମ୍ମାନ କମିଗଲା । ମନ୍ତ୍ରୀମାନେ ଏଥିରେ ଅସନ୍ତୋଷ ପ୍ରକାଶ କଲେ; ମାତ୍ର ଏଥିରେ ତାଙ୍କର କିଛି ମୂଲ୍ୟ ରହିଲା ନାହିଁ ଏବଂ ସେମାନେ ଅଳ୍ପଦିନ ପରେ ଇସ୍ତଫା ଦେବାକୁ ବାଧ୍ୟ ହେଲେ । ତା ପରେ ନୂତନ ମନ୍ତ୍ରୀ ଖୋଜା ପଡ଼ିଲା ଏବଂ ଏହା ସହଜେ ସହଜ ହୋଇ ପାରିଲା ନାହିଁ । ତାଙ୍କର ବନ୍ଧୁମାନଙ୍କୁ ଏପରି ବାଦରେ କାଢ଼ି ଦିଆଗଲା ବୋଲି କାଉନ୍ସିଲରେ ଅଜ ଯେଉଁ ସବୁ ଲିବରାଲ ସହଯୋଗୀ ସଭ୍ୟଭାବରେ ଥିଲେ, ସେମାନେ ସହାନୁଭୂତି ଦେଖାଇ ଅଲଗା ହୋଇ ରହିଥିଲେ । ଅନ୍ୟମାନଙ୍କ ଭିତରେ ଅଧିକାଂଶ ଜମିଦାର ଥିଲେ ଏବଂ ସେମାନଙ୍କ ଭିତରୁ କେତେକ ସାଧାରଣ ଭାବରେ ସୁଦ୍ଧା ଶିକ୍ଷା ପାଇ ନ ଥିଲେ । କଂଗ୍ରେସ କାଉନ୍ସିଲ ବର୍ଜନ କରିଥିବା ହେତୁ ଅଦ୍ଭୁତ ପ୍ରକାର ଲୋକ ସବୁ ଏଥିରେ ପ୍ରବେଶ କରିଥିଲେ ।

ଏହି ସମୟରେ ବା କେତେକ ସମୟ ପରେ ଯୁକ୍ତ ପ୍ରଦେଶରେ ଜଣେ ଲୋକଙ୍କୁ କିପରି ମନ୍ତ୍ରୀପଦ ଦାନ କରାଯାଇ ଥିଲା, ସେ ସମ୍ବନ୍ଧରେ ଗୋଟିଏ ଗପ ଅଛି । ଯାହାଙ୍କୁ ମନ୍ତ୍ରୀ କରାଯାଉଥିଲା, ସେ ଏକ ପ୍ରଶ୍ନର ଉତ୍ତର ଦେଲେ ଯେ, ନିଜକୁ ଜଣେ ଅସାଧାରଣ ଚତୁର ଲୋକ ବୋଲି ସେ ମନେ କରୁ ନାହାନ୍ତି, ମାତ୍ର ସେ ନିଜକୁ ସାଧାରଣ ଭାବରେ ବୁଦ୍ଧିମାନ୍ ଏବଂ ସମ୍ଭବତଃ ସାଧାରଣଠାରୁ ଟିକିଏ ଅଧିକ ବୋଲି ମନେ କରୁଛନ୍ତି ଏବଂ ତାଙ୍କର ସେ ଖ୍ୟାତି ଅଛି ବୋଲି

ସେ ଆଶା କରନ୍ତି । ସରକାର କଣ ତାଙ୍କୁ ମନ୍ତ୍ରୀ କରି ସେ ଏକ ନିର୍ବୋଧ-ବୋଲି ସମସ୍ତଙ୍କ ଆଗରେ ପରିଚିତ କରାଇବାକୁ ଚାହାଁନ୍ତି ?

ଏହି ପ୍ରତିବାଦର ଯଥାର୍ଥତା ଥିଲା । ଲିବରାଲ ମନ୍ତ୍ରୀମାନେ ବନ୍ଧୁ-ଗାତମନା ଥିଲେ; ସେମାନଙ୍କର ରାଜନୀତି ବା ସାମାଜିକ ବ୍ୟାପାରରେ ଉଦାର ଦୃଷ୍ଟିକୋଣ ନ ଥିଲା । ଏହା ଲିବରାଲ ନୀତିର ଦୋଷ । ଯାହାହେଉ, ସେମାନଙ୍କର ବ୍ୟବସାୟୀ ଲୋକ ଭାବରେ ସାମର୍ଥ୍ୟ ଥିଲା ଏବଂ ସଚେତନ ଭାବରେ ସେମାନେ ଉନ୍ନତ କାର୍ଯ୍ୟ କରୁଥିଲେ । ତାଙ୍କ ପରେ ଯେଉଁମାନେ ଅଫିସ ଗ୍ରହଣ କଲେ, ସେମାନଙ୍କ ଭିତରୁ କେତେଜଣ ଜମିଦାର ଶ୍ରେଣୀରୁ ଆସିଥିଲେ ଏବଂ ସେମାନଙ୍କ ଶିକ୍ଷା ସୀମାବଦ୍ଧ ଥିଲା । ମୋର ମନେହୁଏ, ସେମାନଙ୍କୁ ଠିକ୍‌ରୂପେ ସାକ୍ଷର ଛଡ଼ା ଆଉ କିଛି କୁହାଯାଇ ପାରିବ ନାହିଁ । ମନେ ହେଲା, ଗଭର୍ଣ୍ଣର ଉଚ୍ଚ ପଦରେ ରହିବା ନିମନ୍ତେ ଏପରି ଲୋକଙ୍କୁ ଥୋଇବାର ଉଦ୍ଦେଶ୍ୟ ହେଉଛି, ଭାରତୀୟମାନଙ୍କର ଅସାମର୍ଥ୍ୟ ଦେଖାଇବା । ସେମାନଙ୍କ ସମ୍ବନ୍ଧରେ ଏକଥା କୁହାଯାଇ ପାରେ :—

"ଭାଗ୍ୟ ଯେତେବେଳେ ସୁପ୍ରସନ୍ନ, ସେତେବେଳେ ସବୁ ବିଷୟରେ ସାହସ କରାଯାଇ ପାରେ । ଭାଗ୍ୟ ପକ୍ଷରେ ଅସାଧ୍ୟ କିଛି ନାହିଁ ।"

ନିର୍ବାଚିତ ହୁଅନ୍ତୁ ବା ନ ହୁଅନ୍ତୁ ଏହି ମନ୍ତ୍ରୀମାନଙ୍କ ସପକ୍ଷରେ ଜମିଦାରଙ୍କର ଭୋଟ ଥିଲା ଏବଂ ସେମାନେ ଉଚ୍ଚପଦସ୍ଥ କର୍ମଚାରୀମାନଙ୍କୁ ଭୋଜି ଦେଇ ପାରୁଥିଲେ । ସୁତରାଂ ପ୍ରଜାଙ୍କ ନିକଟରୁ ତାଙ୍କ ପାଖକୁ ଯେଉଁ ଟଙ୍କା ଆସେ, ସେମାନେ ତାର ଆଉ ଭଲ ସଦ୍‌ବ୍ୟବହାର କରି ପାରନ୍ତେ ।

— ୧୦ —

# ସନ୍ଦେହ ଓ ସଂଘର୍ଷ

ମୁଁ ଅନେକ କାମରେ ନିମଗ୍ନ ହୋଇ ରହୁଥିବାଦ୍ୱାରା ଅଶାନ୍ତ ଜାତ କଲ୍ୟପତ୍ତି ସମସ୍ୟାରୁ ଅଲଗା ହେବାର ସୁବିଧା ପାଇଲି; ମାତ୍ର ଏହାରୁ ଏଡ଼ିବା ସହଜ ନୁହେଁ । ମୋ ମନରେ ସର୍ବଦା ଯେଉଁସବୁ ପ୍ରଶ୍ନ ଉଠୁଥିଲା ଏବଂ ଯାହାର ମୁଁ କୌଣସି ସନ୍ତୋଷଜନକ ଉତ୍ତର ଖୋଜି ପାଉ ନ ଥିଲି, ସେ ସବୁ ପ୍ରଶ୍ନ ଏଡ଼ାଇବା ସହଜ ନୁହେଁ । ଏବେ ଯେଉଁ କାର୍ଯ୍ୟରେ ନିମଗ୍ନ ହେଉଥିଲି, ତାହା କେବଳ ନିଜକୁ ଭୁଲାଇବା ନିମନ୍ତେ । ୧୯୨୦ ଓ ୨୧ ରେ ଯେପରି ପୂର୍ଣ୍ଣପ୍ରାଣରେ ଲାଗିଥିଲି, ତାହା ନ ଥିଲା । ସେତେବେଳେ ଯେଉଁ ଆବରଣ ମୋତେ ରକ୍ଷା କରିଥିଲା, ସେଥିରୁ ବାହାରି ଆସି ମୁଁ ଭାରତ ତଥା ବାହାର ଜଗତର ସମସ୍ୟା ପ୍ରତି ଦୃଷ୍ଟି ପକାଇଥିଲି । ଯେଉଁ ପରିବର୍ତ୍ତନ ଦେଖିଲି ତାହା ଆଗରୁ ନ ଥିଲା, ନୂତନ ଆଦର୍ଶ, ନୂତନ ସଂଘର୍ଷ ଏବଂ ଆଲୋକ ପରିବର୍ତ୍ତେ କ୍ରମବର୍ଦ୍ଧିଷ୍ଣୁ ସଂଶୟର ଅନ୍ଧକାର ଦେଖିଲି । ଗାନ୍ଧିଜୀଙ୍କ ନେତୃତ୍ୱରେ ମୋର ପୂର୍ବପରି ବିଶ୍ୱାସ ଥିଲା, ମାତ୍ର ତାଙ୍କ କର୍ମପନ୍ଥାର କେତେକାଂଶ ମୁଁ ସମାଲୋଚନା କରି ପରୀକ୍ଷା କରିବାକୁ ଲାଗିଲି । ମାତ୍ର ସେ ଜେଲରେ ଥାନ୍ତି, ଆମର ତାଙ୍କ ନିକଟକୁ ଯିବାର ସୁବିଧା ନ ଥାଏ; ତାଙ୍କର ପରାମର୍ଶ ଜଣାଯାଇପାରୁ ନ ଥାଏ । ସେତେବେଳେ କଂଗ୍ରେସ ଭିତରେ କାଉନ୍‌ସିଲ ପାର୍ଟି ଏବଂ ଅପରିବର୍ତ୍ତନବାଦୀ ବୋଲି ଯେଉଁ ଦୁଇ ଦଳ ଥିଲେ, ଏଥିଭିତରୁ କୌଣସି ଗୋଷ୍ଠିକ ପ୍ରତି ମୁଁ ଆକୃଷ୍ଟ ହୋଇ ନ ଥିଲି । ପ୍ରଥମ ଦଳ ସଂସ୍କାରବାଦ ଓ ନିୟମତାନ୍ତ୍ରିକବାଦ ଆଡ଼କୁ ଢଳି ହୋଇ ଯାଉଥିଲେ ଏବଂ ଏମାନେ ଏକ ଅନ୍ଧକାର ଗଳି ଭିତରକୁ ଯାଉଥିବା ପରି ମନେ ହେଲା । ଅପରିବର୍ତ୍ତନବାଦୀମାନେ ମହାତ୍ମାଙ୍କର ଏକନିଷ୍ଠ ଅନୁଚର ଭାବରେ ପରିଚିତ ହେଉଥିଲେ; ମାତ୍ର ବଡ଼ ବଡ଼ ମହାପୁରୁଷଙ୍କ ଚେଲାମାନଙ୍କ ପରି ଏମାନେ ତାହାର ପ୍ରକୃତ ଭାବ ଛାଡ଼ି ଆକ୍ଷରିକ ଅର୍ଥ ପ୍ରତି ବେଶି ଜୋର ଦେଉଥିଲେ । ସେମାନଙ୍କ କାର୍ଯ୍ୟରେ ସକ୍ରିୟ ଭାବ ନ ଥିଲା ଏବଂ କାର୍ଯ୍ୟରେ ସେମାନେ ନିରୀହ ପବିତ୍ର ସମାଜ-

ସମ୍ମାରକ ଥିଲେ; ମାତ୍ର ସେମାନଙ୍କର ଗୋଟାଏ ସୁବିଧା ଥିଲା । ସେମାନେ କୃଷକ ଜନସାଧାରଣଙ୍କ ସହିତ ସମ୍ପର୍କ ରଖିଥିଲେ, ମାତ୍ର ସ୍ୱରାଜ ଦଳର ଲୋକେ ଜାତୀୟ ପରିଷଦରେ ନିୟମତାନ୍ତ୍ରିକ କାର୍ଯ୍ୟରେ ବ୍ୟସ୍ତ ରହିଗଲେ ।

ମୋର ଝଲସ ପରେ ମୋତେ ସ୍ୱରାଜ୍ୟ ଦଳର ମତ ଗ୍ରହଣ କରିବା ନିମନ୍ତେ ଦେଶବନ୍ଧୁ ଦାସ ଚେଷ୍ଟା କଲେ । ମୁଁ ତାଙ୍କ ମତ ପୋଷଣ କରି ପାରିଲି ନାହିଁ; ମାତ୍ର କଣ କରାଯିବା ଉଚିତ, ସେ ସମ୍ବନ୍ଧରେ ମୋର ସଠିକ ଧାରଣା ନ ଥିଲା । ଏ ଆଶ୍ଚର୍ଯ୍ୟ ଓ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି, ମୋର ପିତା ସେତେବେଳେ ସ୍ୱରାଜ୍ୟଦଳ କାର୍ଯ୍ୟରେ ଖୁବ୍ ମାତିଥିଲେ ସୁଦ୍ଧା ସେ ଦିଗରେ ମୋ ଉପରେ ଚାପ ପକାଇବାକୁ କିମ୍ବା ପ୍ରଭାବ ପକାଇବାକୁ କେବେ ଚେଷ୍ଟା କରି ନାହାନ୍ତି । ଏହା ତାଙ୍କ ଚରିତ୍ରର ଏକ ବିଶେଷତ୍ୱ । ଏ କଥା ନିଶ୍ଚିତ ଯେ, ମୁଁ ସେମାନଙ୍କ ଆନ୍ଦୋଳନରେ ଯୋଗ ଦେଇଥିଲେ ସେ ଭାରି ସନ୍ତୁଷ୍ଟ ହୋଇଥାନ୍ତେ; ମାତ୍ର ମୋ ପ୍ରତି ତାଙ୍କର ଅସାଧାରଣ ବିବେଚନା ଥିଲା, ଯେଥିଲାଗି ସେ ସମ୍ବନ୍ଧରେ ମୋତେ ନିଷ୍ପତ୍ତି କରିବାକୁ ସେ ଛାଡ଼ି ଦେଇଥିଲେ ।

ଏହି ସମୟରେ ମୋ ପିତା ଓ ସି. ଆର. ଦାସଙ୍କ ଭିତରେ ଘନିଷ୍ଠ ବନ୍ଧୁତ୍ୱ ସ୍ଥାପିତ ହେଲା । ଏହା ବନ୍ଧୁଙ୍କ ଭିତରେ ରାଜନୈତିକ ସହକର୍ମୀ ହିବ ଅପେକ୍ଷା ଆହୁରି ଅଧିକ । ସେମାନଙ୍କ ଭିତରେ ଏପରି ଘନିଷ୍ଠତା ହେଲା ଯେ, ମୁଁ ଦେଖି ଆଶ୍ଚର୍ଯ୍ୟ ନ ହୋଇ ରହି ପାରି ନ ଥିଲି । କାରଣ ବଡ଼ ବୟସରେ ଘନିଷ୍ଠ ବନ୍ଧୁତା ହେବା କ୍ୱଚିତ ଦେଖାଯାଏ । ମୋର ପିତାଙ୍କର ଅନେକ ଲୋକ ପରିଚିତ ଥିଲେ, ସେମାନଙ୍କ ସହିତ ସେ ମିଶି ଚାଲୁଥିଲେ ମଧ୍ୟ । ମାତ୍ର ବନ୍ଧୁମାନଙ୍କଠାରୁ ସେ ସତର୍କ ରହୁଥିଲେ ଏବଂ ଶେଷ ବୟସରେ ମନୁଷ୍ୟଙ୍କୁ ଅବଜ୍ଞା ଦୃଷ୍ଟିରେ ଦେଖିଲେ । ତଥାପି ଦେଶବନ୍ଧୁ ଦାସ ଓ ତାଙ୍କ ଭିତରେ ଥିବା ପାର୍ଥକ୍ୟ ଦୂର ହୋଇଗଲା ଏବଂ ପରସ୍ପରଙ୍କୁ ଉଭୟେ ହୃଦୟରେ ଗ୍ରହଣ କରିଥିଲେ ।

ମୋର ପିତା ଦେଶବନ୍ଧୁଙ୍କଠାରୁ ୯ ବର୍ଷ ବଡ଼ ଥିଲେ, ମାତ୍ର ଶାରୀରିକ ଦୃଷ୍ଟିରୁ ଦୁହିଁଙ୍କ ଭିତରେ ସେ ବଳବାନ୍ ଓ ସ୍ୱାସ୍ଥ୍ୟସମ୍ପନ୍ନ ଥିଲେ । ଦୁହିଁଙ୍କର ଏକାପରି ଆଇନ ଶିକ୍ଷା ଏବଂ ଓକିଲାତିରେ ସୁନାମ ଥିଲେ ସୁଦ୍ଧା ଅନେକ ବିଷୟରେ ଦୁହିଁଙ୍କ ମଧ୍ୟରେ ପାର୍ଥକ୍ୟ ଥିଲା । ଦେଶବନ୍ଧୁ ଓକିଲ ଥିବା ସତ୍ତ୍ୱେ ଜଣେ କବି ଥିଲେ ଏବଂ ଜଣେ କବିର ଭାବପ୍ରବଣ ଦୃଷ୍ଟିକୋଣ ତାଙ୍କର ଥିଲା । ମୋର ବିଶ୍ୱାସ—ସେ ବଙ୍ଗଳାରେ ଅନେକ ସୁନ୍ଦର କବିତା ଲେଖିଛନ୍ତି । ସେ ଜଣେ ସୁବକ୍ତା ଏବଂ ଧର୍ମଭାବ ସମ୍ପନ୍ନ ଥିଲେ ମାତ୍ର ମୋର ପିତା ବାସ୍ତବବାଦୀ ଓ କବିତ୍ୱହୀନ ଲୋକ ଥିଲେ । ସେ ଜଣେ ବଡ଼ ସଙ୍ଗଠକ ଏବଂ ତାଙ୍କଠାରେ ଧର୍ମ ବୋଲି କିଛି ନଥିଲା ! ସେ ଜଣେ ଯୋଦ୍ଧା ଥିଲେ—କଠିନ ଆଘାତ କରିବା ପାଇଁ ଏବଂ ଗ୍ରହଣ କରିବା ପାଇଁ ସର୍ବଦା ପ୍ରସ୍ତୁତ ଥାଆନ୍ତି । ଯେଉଁମାନଙ୍କୁ ସେ ନିର୍ବୋଧ ବୋଲି ବିଚାରୁଥିଲେ, ସେମାନଙ୍କ ସହିତ କୌଣସି ସମ୍ପର୍କ ରଖୁ ନଥିଲେ ଏବଂ ବିରୋଧ ସେ ଆଦୌ ସହ୍ୟ କରି ପାରୁ ନଥିଲେ । କେହି ବିରୋଧ କଲେ ତାକୁ ପ୍ରହାରରେ ଦୂର କରିବା ଉଚିତ ବୋଲି ସେ ମନେ କରୁଥିଲେ । ମୋର ପିତା ଓ ଦେଶବନ୍ଧୁ ଅନେକ ବିଷୟରେ ପରସ୍ପରଠାରୁ ଅଲଗା ହୋଇଥିବାରୁ ଦୁହେଁ ମିଳିତ ହୋଇ ଏକ ଦଳର ନେତା ହେବାଲାଗି ଉପଯୁକ୍ତ ହୋଇଥିଲେ । ଏକର ଅଭାବ ଅନ୍ୟ ଜଣକ ପୂରଣ କରୁଥିଲା, ମାତ୍ର ଦୁହିଁଙ୍କ ଭିତରେ ପୂର୍ଣ୍ଣ ବିଶ୍ୱାସ ଥିଲା—ଏପରି କି ଜଣଙ୍କୁ ନ ପଚାରି ବା ପରାମର୍ଶ ନ କରି ତାଙ୍କ ଭିତରୁ ଯେ କେହି ଦୁହିଁଙ୍କ ନାମରେ କୌଣସି ଇସ୍ତାହାର ବା ଘୋଷଣା କରି ପାରୁଥିଲେ ।

ଏହି ବ୍ୟକ୍ତିଗତ ବା ବନ୍ଧୁତ୍ୱ ହେତୁ ସ୍ୱରାଜ୍ୟ ଦଳ ଦୃଢ଼ଭାବରେ ଗଢ଼ା ହୋଇପାରିଲା ଏବଂ ଦେଶରେ ଏହାର ସମ୍ମାନ ଓ ଶକ୍ତି ବୃଦ୍ଧି ପାଇଥିଲା । ଆରମ୍ଭବେଳୁ ଏଥିରେ ଭାଙ୍ଗିବାର ମନୋଭାବ ଦେଖାଯାଇଥିଲା, କାରଣ ଅନେକ ସୁବିଧାବାଦୀ ଓ ଭୋଗଲିପ୍ସୁ ଲୋକ କାଉନସିଲ ଜରିଆରେ ନିଜର ବ୍ୟକ୍ତିଗତ ଲାଭ କରିବାର ସମ୍ଭାବନା ଦେଖି ଏଥିରେ ପଶିଥିଲେ ।

ଅଭି ମଧ୍ୟ ଏହା ଭିତରେ ଥିବା କେତେକ ବିଷ୍ଟାପର ମଣ୍ଡଳୀରେ ସରକାରୀ ସହିତ ଅଧିକ ସହଯୋଗ କରିବା ନିମନ୍ତେ କହୁଥିଲେ । ନିର୍ବାଚନ ପରେ ପରେ ଏହି ସବୁ ମନୋଭାବ ଉପରେ ଦେଖା ଦେବା ମାତ୍ରେ ଦଳର ନେତୃମଣ୍ଡଳୀ ତାହା ଦମନ କଲେ । ଦଳରୁ 'ବୋଗା ଇଙ୍ଗିଙ୍କୁ' କାଟିପକାଇବାକୁ ଦ୍ୱିଧା ବୋଧ କରିବେ ନାହିଁ ବୋଲି ମୋ ପିତା ଘୋଷଣା କଲେ ଏବଂ ସେ ତାଙ୍କ ଘୋଷଣା ଅନୁସାରେ କାର୍ଯ୍ୟ କରିଥିଲେ ।

୧୯୨୩ ପରଠାରୁ ମୋର ପାରିବାରିକ ଜୀବନରେ ମୁଁ ଅଧିକ ସୁଖ ଓ ସ୍ୱାଚ୍ଛନ୍ଦ୍ୟ ଅନୁଭବ କଲି—ଅବଶ୍ୟ ଏଥିରେ ମୁଁ ବେଶି ସମୟ ଦେଇ ପାରି ନଥିଲି । ଏପରି ପରିବାର ପାଇ ମୁଁ ନିଜକୁ ଭାଗ୍ୟବାନ ଭାବୁଥିଲି । କାରଣ ମୋର ଦୁଃଖ ଓ କଷ୍ଟ ସମୟରେ ସେମାନେ ମୋତେ ସାନ୍ତ୍ୱନା ଦେଇଛନ୍ତି, ଆଶା ଦେଇଛନ୍ତି । ମୋର ସ୍ତ୍ରୀ ୧୯୨୦ ମସିହାଠାରୁ ମୋ ପ୍ରତି କିପରି ମଧୁର ବ୍ୟବହାର ଦେଖାଇଛି, ତାହା ବୁଝି ପାରି ମୁଁ ନିଜକୁ ଅତ୍ୟନ୍ତ ଅଯୋଗ୍ୟ ଭାବି ଲଜ୍ଜା ଅନୁଭବ କରିଥିଲି । ସେ ବଡ ଗର୍ବିତା ଓ ଭାବପ୍ରବଣା ଥିଲା ! ଏହା ସତ୍ତ୍ୱେ ମୋ ଖିଆଲବାଜୀ ସେ ସହ୍ୟ କରିଛି ଏବଂ ମୋ ଦରକାର ବେଳେ ମୋତେ ଶାନ୍ତି ଓ ଆରାମ ଦେଇଛି ।

୧୯୨୦ରୁ ଆମର ଚଳିବାର ଢଙ୍ଗରେ କେତେକ ପରିବର୍ତ୍ତନ ହୋଇଥିଲା । ଏହା ଖୁବ ସରଳ ହୋଇଗଲା ଏବଂ ଚାକରଙ୍କ ସଂଖ୍ୟା ବହୁତ କମାଇ ଦିଆଗଲା । ଏହା ସତ୍ତ୍ୱେ ପ୍ରୟୋଜନୀୟ ଆରାମ ପାଇବାର ଅଭାବ ନଥିଲା । ଅତି ଆଡମ୍ବର ଛାଡ଼ିବା ଲାଗି ଏବଂ ପ୍ରଚଳିତ ଖର୍ଚ୍ଚ ନିମନ୍ତେ ଟଙ୍କା ପାଇବା ଲାଗି ଆମର ଅନେକ ଜିନିଷ ଘୋଡ଼ା, ଘୋଡ଼ାଗାଡ଼ିସବୁ ଏବଂ ନୂଆ ଚଳିବା ସହିତ ଖାପ ଖାଉ ନଥିବା ଅନ୍ୟାନ୍ୟ ଜିନିଷ ସବୁ ବିକ୍ରୀ କରି ଦିଆଗଲା । ଆମର ଘର ସରଞ୍ଜାମରୁ କେତେକାଂଶ ପୁଲିସ ଜବତ କରି ନେଇ ବିକ୍ରୀ କରି ଦେଇଥିଲା ।

ଆସବାବ ପତ୍ର ଓ ମାଳି ଅଭାବରୁ ଆମ ଘର ଆଉ ସେପରି ସୁନ୍ଦର ଓ ପରିଷ୍କାର ରହି ପାରି ନ ଥିଲା । ବଗିଚା ଜଙ୍ଗଲ ହୋଇଗଲା । ପ୍ରାୟ ଚଉଦବର୍ଷ ପର୍ଯ୍ୟନ୍ତ ଘର ବଗିଚାର କୌଣସି ଯତ୍ନ ନିଆ ହୋଇ ନ ଥିଲା । ଆଗରୁ ବହୁତ ଖର୍ଚ୍ଚରେ ଅଭ୍ୟସ୍ତ ହୋଇଥିବାରୁ ବହୁତ ଖର୍ଚ୍ଚ କାଟ ପିତା ପସନ୍ଦ କରୁ ନଥିଲେ; ସୁତରାଂ ତାଙ୍କର ଅବସର ସମୟରେ ସେ 'ଚେମ୍ବର ପ୍ରାକ୍ଟିସ' କରି କିଛି ଅର୍ଥ ଉପାର୍ଜନ କରିବା ନିମନ୍ତେ ମସୁଧା କଲେ । ତାଙ୍କର ଅବସର ଖୁବ କମ ଥିଲା, ତଥାପି ସେ ଭଲ ରୋଜଗାର କରି ପାରୁଥିଲେ ।

ଅର୍ଥଲାଗି ପିତାଙ୍କ ଉପରେ ନିର୍ଭର କରିବାକୁ ପଡ଼ିବାରୁ ମୋତେ ସୁଖ ଲାଗିଲା ନାହିଁ । ମୁଁ ଆଇନ ବ୍ୟବସାୟ ଛାଡ଼ିଲା ଦିନୁଁ ମୋର ଆୟ ପାଉ୍ଥିଲି ଏ ଯୁଦ୍ଧା ନାହିଁ—କେବଳ କେତେକ ବ୍ୟବସାୟ ନ୍ୟସ୍ତ ଅଂଶରୁ ଯାହା ଲାଭ ପାଏଁ । ମୋର ସ୍ତ୍ରୀ ଓ ମୁଁ ବେଶି ଖରଚ କରୁନା । ବାସ୍ତବିକ ଆମେ କେତେ କମ ଖରଚ କରୁ ଜାଣି ମୁଁ ଆଶ୍ଚର୍ଯ୍ୟ ହୁଏ । ୧୯୨୧ରେ ମୁଁ ଏହା ପ୍ରଥମେ ଜାଣିପାରି ବଡ଼ ସନ୍ତୁଷ୍ଟ ହୋଇଥିଲି । ଖଦଡ଼ ପିନ୍ଧିଲେ ଓ ରେଲଗାଡ଼ିରେ ତୃତୀୟ ଶ୍ରେଣୀରେ ଯାତ୍ରା କରିବା ଦ୍ୱାରା କମ ପଇସା ଦରକାର ହୁଏ । ପିତା ପୂରିବା ସ୍ୱରୂପ ଥିବାରୁ ଆହୁରି ଅସଂଖ୍ୟ ପ୍ରକାର ଖରଚ ଯୋଗୁ ଯେ ଘର ଖରଚ ଯଥେଷ୍ଟ ବଢ଼ିଥାଏ, ଏହା ସେତେବେଳେ ମୁଁ ବୁଝି ପାରି ନଥିଲି । ଯାହାହେଉ ଅର୍ଥ ନ ଥିବାର ଆଶଙ୍କାରେ ମୁଁ କେବେ ବ୍ୟସ୍ତ ହୋଇ ନାହିଁ । ମୋର ବିଶ୍ୱାସ, ଆବଶ୍ୟକୀୟ ଅର୍ଥ ଉପାର୍ଜନ କରିବା କ୍ଷମତା ମୋର ଅଛି ଏବଂ ମୋ ନିଜ ଅଭ୍ୟାସରେ ଖୁବ କମ ଖର୍ଚ୍ଚରେ ମୁଁ ଚଳିପାରେ ।

ଆମେ କିଛି ପିତାଙ୍କ ଉପରେ ବୋଝ ସ୍ୱରୂପ ନଥିଲୁ—ଆମେ ତାଙ୍କ ଉପରେ ବୋଝ ପରି ଅଛୁ ବୋଲି ବୁଝୁଛୁ, ଏପରି ସୂଚନା ପାଇଲେ ସେ ଅତ୍ୟନ୍ତ ଦୁଃଖିତ ହୁଅନ୍ତେ । ତଥାପି ମୋତେ ଏହା ଭଲ ଲାଗିଲା

ନାହିଁ ଏବଂ ଆଗାମୀ ଚଉଦବର୍ଷ କାଳ ଏହି ସମସ୍ୟା ସମ୍ବନ୍ଧରେ ଚିନ୍ତା କରିବାକୁ ଲାଗିଲି, ଅଥଚ କିଛି ବାଟ ପାଇଲି ନାହିଁ । ବେତନ ନେଇ କାର୍ଯ୍ୟ ପାଇବା ମୋ ପକ୍ଷରେ କିଛି କଷ୍ଟକର ନ ଥିଲା; ମାତ୍ର ଏପରି କାର୍ଯ୍ୟ କରିବାକୁ ହେଲେ ମୁଁ ଯେଉଁ ସାଧାରଣ କାର୍ଯ୍ୟ କରୁଥିଲି, ତାହା ହୁଏତ ଛାଡ଼ି ଦେବାକୁ କିମ୍ବା ଅନ୍ତତଃ କମାଇ ଦେବାକୁ ପଡ଼ନ୍ତା । ଏପର୍ଯ୍ୟନ୍ତ ମୁଁ ମୋର ସମସ୍ତ ସମୟ କଂଗ୍ରେସ ଓ ମ୍ୟୁନିସିପାଲିଟି କାର୍ଯ୍ୟରେ ଦେଇଛି । କେବଳ ଟଙ୍କା ରୋଜଗାର ସକାଶେ ମୁଁ ତାହା ଛାଡ଼ିଦେବାକୁ ଚାହୁଁ ନଥିଲି । ବଡ଼ ବଡ଼ ଶିଳ୍ପ କାରଖାନାମାନଙ୍କରୁ ମୋତେ କେତେକ ଅନୁରୋଧ ଆସିଥିଲା—ଏହା ଗ୍ରହଣ କରିଥିଲେ ଆର୍ଥିକ ଭାବରେ ମୁଁ ଲାଭବାନ ହୋଇଥାନ୍ତି—ମାତ୍ର ଏହି କାରଣରୁ ମୁଁ ତାହା ଗ୍ରହଣ କଲି ନାହିଁ । ସମ୍ଭବତଃ ସେମାନେ ମୋତେ ବହୁତ ପରିମାଣରେ ଦେବା ନିମନ୍ତେ ପ୍ରସ୍ତୁତ ଥିଲେ—ମୋର ସାମର୍ଥ୍ୟ ହେତୁ ଯେ ସେମାନେ ଏପରି କରିବେ ବୋଲି କହୁଥିଲେ, ତାହା ନୁହେଁ, ମୋ ନାମ କିଣି ନେବାକୁ ଚାହୁଁଥିଲେ । ଏପରି ଭାବରେ ବଡ଼ ବଡ଼ ଶିଳ୍ପ କାରଖାନା ସହିତ ସଂଯୁକ୍ତ ହେବାକୁ ମୁଁ ଚାହୁଁ ନଥିଲି । ମୋ ପକ୍ଷରେ ଆଇନ ବ୍ୟବସାୟକୁ ପୁଣି ଫେରିଯିବା ଅସମ୍ଭବ ଥିଲା । ମୋର ଏଥିପ୍ରତି ଅଶ୍ରଦ୍ଧା ବଢ଼ିଥିଲା ଏବଂ କ୍ରମେ ତାହା ଅଧିକ ହେଲା ।

୧୯୨୪ ମସିହାରେ କଂଗ୍ରେସରେ ଏକ ପ୍ରସ୍ତାବ ଆସିଲା ଯେ, ସାଧାରଣ ସମ୍ପାଦକମାନଙ୍କୁ ବେତନ ଦିଆଯିବ । ମୁଁ ସେତେବେଳେ କଂଗ୍ରେସର ଜଣେକ ସମ୍ପାଦକ ଥିଲି ଏବଂ ଏହି ପ୍ରସ୍ତାବ ମୋର ପସନ୍ଦ ହେଲା । ଅନ୍ତତଃ ଚଳନୋପଯୋଗୀ ଖର୍ଚ୍ଚର ବ୍ୟବସ୍ଥା ନ କରି କାହାଠାରୁ ସମସ୍ତ ସମୟ ଲାଗି କାର୍ଯ୍ୟ ଆଶା କରିବା ଅନ୍ୟାୟ ପରି ମୋତେ ବୋଧହୁଏ । ନଚେତ୍ ପଇସାବାଲା ଲୋକ ବାଛି ବସାଇବାକୁ ହେବ ଏବଂ ଏପରି ଲୋକ ରାଜନୀତି କ୍ଷେତ୍ରରେ ସର୍ବଦା ବାଞ୍ଛନୀୟ ନୁହନ୍ତି କିମ୍ବା ସେମାନଙ୍କୁ ଦାୟିତ୍ୱ ଦିଆଯାଇ ନ ପାରେ । କଂଗ୍ରେସ କିଛି ବେଶୀ ବେତନ ଦେଇ ପାରି ନ ଥାନ୍ତା, ଆମର ବେତନ

ହାର ଖବ୍ କମ ଥିଲା । ସାଧାରଣ ଅର୍ଥରୁ ବେତନ ପାଇବା ଲାଗି ଭାରତରେ ଗୋଟାଏ ପ୍ରକାର ଅଦ୍ଭୁତ ଓ ଅସାଧାରଣ ପ୍ରକାର ଅପଥାର୍ଥ ଧାରଣା ଭିବ ରହିଛି (ଅବଶ୍ୟ ସରକାରୀମାନଙ୍କୁ ନେବାରେ ନାହିଁ) ଏବଂ ମୋର ପିତା ମୋ ବେତନ ନେବାର ବିରୁ ଦ୍ଧ ବିରୋଧ କରୁଥିଲେ । ମୋର ସହକର୍ମୀ ସମ୍ପାଦକଙ୍କର ଅର୍ଥର ବହୁତ ଆବଶ୍ୟକତା ଥିଲେ ସୁଦ୍ଧା ସେ ମଧ୍ୟ କଂଗ୍ରେସରୁ ଅର୍ଥ ଗ୍ରହଣ କରିବା ନିଜର ମର୍ଯ୍ୟାଦା ହାନିକର ବୋଲି ବୁଝୁଥିଲେ । ମୋ ପାଖରେ କୌଣସି ମର୍ଯ୍ୟାଦା ପ୍ରଶ୍ନ ନ ଥିଲେ ସୁଦ୍ଧା ଏବଂ ଦରମା ନେବା ନିମନ୍ତେ ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ ଥିବା ସତ୍ତ୍ୱେ ମୋତେ ନ ନେବାକୁହିଁ ପଡ଼ିଲା ।

ଥରେ ମାତ୍ର ମୋର ପିତାଙ୍କ ସହିତ ଏ ସମ୍ପର୍କରେ କଥାବାର୍ତ୍ତା ହୋଇଥିଲା ଏବଂ ଆର୍ଥିକ ଅବସ୍ଥା ଯୋଗୁଁ ତାଙ୍କ ଉପରେ ନିର୍ଭର କରିବାଟା ମୁଁ କପର୍ ନା ପସନ୍ଦ କରୁଛି, ତାଙ୍କୁ କହିଥିଲି । ତାଙ୍କୁ ଆଘାତ ନ କଲା ପରି ମୁଁ ଅତ୍ୟନ୍ତ ଧୀର ଓ ଅପ୍ରତ୍ୟକ୍ଷ ଭାବରେ କଥାଟା ଉଠାଇ ଥିଲି । ସାଧାରଣ କାର୍ଯ୍ୟ ଛାଡ଼ି ସାମାନ୍ୟ ଅର୍ଥ ରୋଜଗାରରେ ମୋର ସମୟ ନଷ୍ଟାଇବା ଏକ ନିର୍ବୋଧତା ବୋଲି ମୋତେ ସେ ବୁଝାଇଲେ । ମୋର ସ୍ତ୍ରୀ ଓ ମୋର ବର୍ଷକ ଖର୍ଚ୍ଚ ନିମନ୍ତେ ଆବଶ୍ୟକୀୟ ଖର୍ଚ୍ଚ କେତେ ଦିନ ଭିତରେ ରୋଜଗାର କରିବା ତାଙ୍କ ପକ୍ଷରେ ସମ୍ଭବ ଥିଲା । ଏହି ଯୁକ୍ତି ଅକ୍ଷଣ୍ଣୀୟ, ମାତ୍ର ଏଥିରେ ମୁଁ ସନ୍ତୁଷ୍ଟ ହେଲି ନାହିଁ । ଯାହା ହେଉ, ମୁଁ ଏହା ମାନି ଚଳିବାକୁ ଲାଗିଲି ।

ଏହି ପାରିବାରିକ ଓ ଆର୍ଥିକ ଜଞ୍ଜାଳ ୧୯୨୩ ଆରମ୍ଭରୁ ୧୯୨୫ ମସିହା ଶେଷ ପର୍ଯ୍ୟନ୍ତ ରହିଲା । ଏଥି ଭିତରେ ରାଜନୀତିକ ପରିସ୍ଥିତି ବଦଳି ଥିଲା ଏବଂ ମୋର ଅନିଚ୍ଛା ସତ୍ତ୍ୱେ ମୋତେ ଅନେକ ଅନୁଷ୍ଠାନରେ ରହିବାକୁ ପଡ଼ିଲା ଏବଂ ନିଖିଳ ଭାରତ କଂଗ୍ରେସର ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ଦିଆଗଲା । ୧୯୨୩ ର ଅବସ୍ଥା ଅଦ୍ଭୁତ ପ୍ରକାର ଥିଲା । ପୂର୍ବ ବର୍ଷର ଗୟା କଂଗ୍ରେସରେ ସି· ଆର· ଦାସ ସଭାପତି ହୋଇଥିଲେ । ସୁତରାଂ

୧୯୨୩ ରେ ସେ ନିଖିଳ ଭାରତ କଂଗ୍ରେସ କମିଟିର ଚେୟାରମ୍ୟାନ ହୋଇବାର କଥା; ମାତ୍ର ଏହି କମିଟିରେ ଅଧିକ ସଂଖ୍ୟକ ସଭ୍ୟ ତାଙ୍କର ଓ ସ୍ୱରାଜ୍ୟ ଦଳର ମତବିରୋଧୀ ଥିଲେ । ଯଦିଓ ସଂଖ୍ୟାଧିକ ଦଳ ଅନ୍ୟ ଦଳଠାରୁ ଅଳ୍ପ ବେଶୀ ଥିଲେ, କହିବାକୁ ଗଲେ ଦୁଇଦଳ ପ୍ରାୟ ସମାନ ସଂଖ୍ୟକ ଥିଲେ । ୧୯୨୩ ମସିହା ଗ୍ରୀଷ୍ମକାଳରେ ବମ୍ବେଠାରେ ଏକ ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ ଅବସ୍ଥା ଗୁରୁତର ହେଲା । ଦେଶବନ୍ଧୁ ଚେୟାରମ୍ୟାନ ପଦରୁ ଇସ୍ତଫା ଦେଲେ । ଏକ ଛୋଟ ମଧ୍ୟମ ଦଳ ବାହାରିଲ ଏବଂ ସେମାନଙ୍କୁ ନେଇ ନୂତନ କାର୍ଯ୍ୟକାରୀ ସମିତି ଗଠିତ ହେଲା । ମାତ୍ର ଏହି ମଧ୍ୟମ ଦଳଟି ନି: ଭା: କଂଗ୍ରେସ କମିଟିରେ ସେତେ ସମର୍ଥକ ନ ଥିଲେ । କେବଳ ଦୁଇ ଦଳଙ୍କ ଭିତରୁ କାହାରି ସହାୟତା ଉପରେ ସେମାନେ ନିର୍ଭର କରୁଥିଲେ । କୌଣସି ଗୋଟିଏ ଦଳ ସନ୍ତୁଷ୍ଟ ନହିଁ ଏମାନେ ଅନ୍ୟ ଦଳକୁ ପରାସ୍ତ କରି ପାରୁଥିଲେ । ଡାକ୍ତର ଆନ୍‌ସାରୀ ନୂତନ ସଭାପତି ହେଲେ ଏବଂ ମୁଁ ଜଣେ ସମ୍ପାଦକ ହେଲି ।

ଶୀଘ୍ର ଦୁଇ ଦଳ ପକ୍ଷରୁ ଆମେ ହଇରାଣ ହେଲୁ । ଗୁଜୁରାଟରେ ଅପରିବର୍ତ୍ତନବାଦୀମାନେ ପ୍ରବଳ ଥିଲେ—ସେମାନେ କେନ୍ଦ୍ର ଅଫିସର କେତେକ ନିର୍ଦ୍ଦେଶ ମାନିବାକୁ ଅସ୍ୱୀକାର କଲେ । ସେହି ବର୍ଷ ଗ୍ରୀଷ୍ମ-କାଳରେ ନାଗପୁରରେ ନିଖିଳ ଭାରତ କଂଗ୍ରେସ କମିଟିର ଏକ ବୈଠକ ହେଲା । ନାଗପୁରରେ ସେତେବେଳେ ଜାତୀୟ ପତାକା ସତ୍ୟାଗ୍ରହ ଚାଲିଥାଏ । ମନ୍ଦଭାଗ୍ୟ କେନ୍ଦ୍ର ଦଳ ପ୍ରତିନିଧି ରୂପେ ରହିଥିବା କାର୍ଯ୍ୟକାରୀ ସମିତିର କ୍ଷୁଦ୍ର ଓ ଖ୍ୟାତିହୀନ ଜୀବନର ଏହିଠାରେ ଅବସାନ ହେଲା । ଏହା ନିର୍ଦ୍ଦିଷ୍ଟ ଭାବରେ କାହାର ପ୍ରତିନିଧିତ୍ୱ କରୁ ନ ଥିବାରୁ ଏହାକୁ ଯିବାକୁ ପଡ଼ିଲା ଏବଂ କଂଗ୍ରେସ ଅନୁଷ୍ଠାନରେ ଯେଉଁମାନେ ଶକ୍ତିଶାଳୀ ଥିଲେ; ତାଙ୍କ ଉପରେ କର୍ତ୍ତୃତ୍ୱ କରିବାକୁ ଚେଷ୍ଟା କରୁଥିଲା । ଶୃଙ୍ଖଳାଭଙ୍ଗ କାର୍ଯ୍ୟ ବିରୁଦ୍ଧରେ କଷ୍ଟ କରିବା ନିମନ୍ତେ ଅସମର୍ଥ ହେବାରୁ ଏହି କମିଟି ଇସ୍ତଫା ଦେଲା । ମୋର ମନେ ଅଛି,

ମୁଁ ଇସ୍ତଫା ଦେଇ ବାହାରି ଯିବି ଓ ଅନ୍ତିମ ବୋଧ ହେଲା । ବାଲାବାଳ କୌଶଳରେ ଅନେକ ଅଭିଜ୍ଞତାର୍ଥୀ ମୋ ପକ୍ଷରେ ରହିଥିବା ଥିଲା ଏବଂ ନେତୃତ୍ୱ ପ୍ରସିଦ୍ଧ କଂଗ୍ରେସ ଲୋକେ ବାହାରି ବୃତନ୍ତ୍ର କରି ଗଲେ, ଦେଖି ମୁଁ ବ୍ୟଥିତ ହେଉଥିଲି ।

ଏହି ବୈଠକରେ ମୁଁ 'ଅସ୍ଥିର ରକ୍ତ' ବୋଲି ମୋତେ ସି. ଆର୍. ଦାସ ଆକ୍ଷେପ କରିଥିଲେ । ମୋତେ ମନେ ହୁଏ, ତାଙ୍କର କଥା ଠିକ୍: ଅବଶ୍ୟ ଏହା ଜାଣିବା ତୁଳନାର ମାପକାଠି ଉପରେ ନିର୍ଭର କରେ । ମୋର ଅନେକ ବନ୍ଧୁ ଓ ସହକର୍ମୀଙ୍କ ତୁଳନାରେ ମୁଁ ଟିକେ ଥଣ୍ଡା ରକ୍ତବାଲା । ତଥାପି ମୁଁ ଅଧିକ ଭାବପ୍ରବଣତା ଓ କ୍ରୋଧର ବଶବର୍ତ୍ତୀ ହୋଇ ଯିବାକୁ ଭୟ କରି ସତର୍କ ଥାଏ । ଅନେକ ବର୍ଷ ପର୍ଯ୍ୟନ୍ତ "ଥଣ୍ଡା ରକ୍ତ" ହେବା ନିମନ୍ତେ ମୁଁ ଚେଷ୍ଟା କରିଛି, ମୋର ଆଶଙ୍କା ଏଥିରେ ମୋର ସଫଳତା କେବଳ ବାହ୍ୟିକ ମାତ୍ର ।

---

## ନାଭାରେ କୌତୁକପୂର୍ଣ୍ଣ ଘଟଣା

ସ୍ୱରାଜ୍ୟ ଦଳ ଏବଂ ଅପରିବର୍ତ୍ତନବାଦୀମାନଙ୍କ ଭିତରେ ଟଣା ଓଟରା ଏହିପରି ଲାଗିରହିଲା; କ୍ରମେ ପ୍ରଥମ ଦଳଙ୍କ ଶକ୍ତି ବୃଦ୍ଧି ହେଲା । ୧୯୨୩ ଶରତ ଋତୁରେ ଦିଲ୍ଲୀରେ କଂଗ୍ରେସର ବିଶେଷ ଅଧିବେଶନରେ ସ୍ୱରାଜ୍ୟ ଦଳ ଆହୁରି ଆଗକୁ ଅଗ୍ରସର ହେଲେ । ଠିକ କଂଗ୍ରେସ ଅଧିବେଶନ ଘରେ ମୁଁ ଏକ ଅଦ୍ଭୁତ ଓ ଅପ୍ରତ୍ୟାଶିତ ଦୁଃସାହସ କାର୍ଯ୍ୟ କଲି ।

ଶିଖମାନେ ବିଶେଷତଃ ତାଙ୍କ ଭିତରୁ ଅକାଳୀମାନଙ୍କର ପ୍ରଭାବରେ ବାରମ୍ବାର ସରକାର ସହିତ ସଂଘର୍ଷ ଲାଗିଥିଲା ତାଙ୍କ ଭିତରେ ଏକ ଧର୍ମ ଆନ୍ଦୋଳନ ହୋଇ ନଷ୍ଟଚରିତ୍ର ମହନ୍ତମାନଙ୍କୁ ତଡ଼ି ଗୁରୁଦ୍ୱାରକୁ ରକ୍ଷା କରିବାକୁ ଏବଂ ପୂଜାସ୍ଥଳୀ ଓ ସେ ସମ୍ପତ୍ତି ସବୁ ଦଖଲ କରିବାକୁ ବୁଝି ଥିଲେ । ସରକାର ଏଥିରେ ହସ୍ତକ୍ଷେପ କଲା ଏବଂ ତା ଫଳରେ

ସଙ୍ଘର୍ଷ ହେଲା । ଅସହଯୋଗର ଜାଗରଣ ହେତୁ କେତେକାଂଶରେ ଗୁରୁଦ୍ୱାର ଆନ୍ଦୋଳନ ହେଲା ଏବଂ ଅହିଂସ ସତ୍ୟାଗ୍ରହ ଆଦର୍ଶରେ ଅକାଳୀମାନେ ସେମାନଙ୍କ ସତ୍ୟାଗ୍ରହର ପନ୍ଥା ସ୍ଥିର କରିଥିଲେ । ଅନେକଗୁଡ଼ିଏ ଘଟଣା ଘଟିଗଲା; ଏଥି ଭିତରେ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି "ଗୁରୁକାବାଗ ସଂଗ୍ରାମ" । ଏଠାରେ ଅନେକ ଶିଖ ଉଁଚୁଁ ନ କହି କିମ୍ବା ପଛଘୁଞ୍ଚା ନ ଦେଇ ପୁଲିସଠାରୁ ଅମାନୁଷିକ ଭାବରେ ପ୍ରହାର ଖାଇଥିଲେ । ଏମାନଙ୍କ ଭିତରେ ଅନେକ ଭୂତପୂର୍ବ ସୈନ୍ୟ ଥିଲେ । ଏହି ଅଦ୍ଭୁତ ଧୈର୍ଯ୍ୟ ଏବଂ ସାହସରେ ସାରା ଭାରତ ଚମତ୍କୃତ ହୋଇଗଲା । ସରକାର ଗୁରୁଦ୍ୱାର କମିଟିକୁ ବେଆଇନ ଘୋଷଣା କଲା । ଏହି ସଂଗ୍ରାମ କେତେକ ବର୍ଷ ପର୍ଯ୍ୟନ୍ତ ଚାଲିଲା — ଶେଷରେ ଶିଖମାନେ ଜୟୀ ହେଲେ । କଂଗ୍ରେସର ସହାନୁଭୂତି ଏଥିରେ ରହିବା ସ୍ୱାଭାବିକ ଏବଂ ଏହି ଅକାଳୀ ଆନ୍ଦୋଳନ ସହିତ ଘନିଷ୍ଠ ସମ୍ପର୍କ ରଖିବା ନିମନ୍ତେ କଂଗ୍ରେସ ଅମୃତ ସହରରେ ଜଣେ ଉପମନ୍ତ୍ରୀ ନିଯୁକ୍ତ କରିଥିଲା ।

ମୁଁ ଯେଉଁ ଘଟଣା ବିଷୟ ଏଠାରେ ଉଲ୍ଲେଖ କରିବି, ତାହା ସହିତ ସାଧାରଣ ଶିଖ ଆନ୍ଦୋଳନର କୌଣସି ସମ୍ପର୍କ ନାହିଁ; ମାତ୍ର ଶିଖଆନ୍ଦୋଳନ ଯୋଗୁଁ ଏହା ଯେ ହେଲା, ଏଥିରେ ସନ୍ଦେହ ନାହିଁ । ପଞ୍ଜାବର ବୃହତ୍ ଶିଖରାଜ୍ୟ ପାତିଆଲା ଓ ନାଭାର ଶାସକଙ୍କ ମଧ୍ୟରେ ଘୋର ବିରୋଧ ଥିଲା — ସେମିତିରେ ଭାରତ ସରକାର ନାଭାର ମହାରାଜଙ୍କୁ ସିଂହାସନ ତ୍ୟାଗ ଆଦେଶ ଦେଲେ । ନାଭା ଷ୍ଟେଟ୍ର ଶାସନକାର୍ଯ୍ୟ ଚଳାଇବା ନିମନ୍ତେ ଜଣେ ଇଂରେଜ କର୍ମଚାରୀ ନିଯୁକ୍ତ ହେଲେ । ଏହି ସିଂହାସନ ତ୍ୟାଗ ଆଦେଶରେ ଶିଖମାନେ ଅସନ୍ତୋଷ ପ୍ରକାଶ କଲେ ଏବଂ ସେମାନେ ନାଭା ଓ ବାହାରେ ଏଥିଲାଗି ଆନ୍ଦୋଳନ ଚଳାଇଲେ । ଏହି ଆନ୍ଦୋଳନ ଭିତରେ ନାଭା ଷ୍ଟେଟ୍ର ଜାଏତୋ ନାମକ ସ୍ଥାନରେ ଏକ ଧାର୍ମିକ ଉତ୍ସବ ଏହି ନୂତନ ଶାସକ ବନ୍ଦ କରି ଦେଇଥିଲେ । ଏହାର ପ୍ରତିବାଦ ସ୍ୱରୂପ ଏବଂ ବାଧା ଦିଆଯାଇଥିବା ଉତ୍ସବକୁ କରିବା ଲାଗି ଘୋଷଣା କରି ଜାଏତୋକୁ ଜଠାକୁ ଜଠା ଶିଖ ଗଲେ ।

ଏହି ଶିଖ ଜଥାଙ୍କୁ ବାଟରେ ଅଟକାଇ ଦେଉଥିଲେ। ପୁଲିସ ମାଡ଼ ଦେଲେ ଏବଂ ଗିରଫ କରୁଥିଲେ ଏବଂ ସାଧାରଣତଃ ଜଙ୍ଗଲର ଏକ ଅଣଆଡ଼ଆ ସ୍ଥାନକୁ ସେମାନଙ୍କୁ ନେଇଯାଇ ସେଠାରେ ଛାଡ଼ିଦେଇ ଆସୁଥିଲେ। ଏହି ମାଡ଼ର ବିବରଣୀ ମୁଁ ଦିନକୁ ଦିନ ପଢ଼ିବାକୁ ଲାଗିଲି। ଦିଲ୍ଲୀ କଂଗ୍ରେସର ବିଶେଷ ଅଧିବେଶନ ପରେ ଅନ୍ୟ ଏକ ଜଥା ଯାଉଥିବାର ମୁଁ ଶୁଣିଲି। ସେମାନେ ମୋତେ ସେ ଜଥା ଦେଖିବା ନିମନ୍ତେ ନିମନ୍ତ୍ରଣ କଲେ ଏବଂ ମୁଁ ଆନନ୍ଦର ସହିତ ସେମାନଙ୍କର ନିମନ୍ତ୍ରଣ ରକ୍ଷା କଲି। ଏଥିରେ ମୋତେ ଗୋଟିଏ ମାତ୍ର ଦିନ ଅପେକ୍ଷା କରିବାକୁ ପଡ଼ିଥାନ୍ତା, କାରଣ ଦିଲ୍ଲୀଠାରୁ ନାଭା ଏକ ଦିନର ରାସ୍ତା। ଏ. ଟି. ଗିଡ଼ୱାନୀ ଏବଂ ମାନ୍ଦ୍ରାଜର କେ. ସାନ୍ତନମ ନାମକ ମୋର ଦୁଇ ଜଣ କଂଗ୍ରେସ ସହକର୍ମୀ ମୋ ସହିତ ଗଲେ। ଜଥା ଅନେକ ଦୂର ଯାତ୍ରା କରି ଯାଉଥିଲା। ଆମେ ରେଲରେ ଦିଲ୍ଲୀଠାରୁ ଷ୍ଟେସନରେ ଓହ୍ଲାଇ ସେଠାରେ ଯାଇ ଜାଏତୋ ନିକଟରେ ଠିକ୍ ଜଥା ପହଞ୍ଚିବା ବେଳେ ନାଭା ସୀମାନ୍ତରେ ପହଞ୍ଚିବାର ବନ୍ଦୋବସ୍ତ ହେଲା। ଆମେ ଏକ ଦେଶୀ ଗାଡ଼ିରେ ଠିକ ସମୟରେ ପହଞ୍ଚିଲୁ ଏବଂ କିଛି ଦୂରରେ ରହି ଜଥା ଅଟକା ଯିବାର ଦେଖିଲୁ। ଜାଏତୋରେ ପହଞ୍ଚିଲାମାତ୍ରେ ପୁଲିସ ଆମକୁ ଅଟକାଇଲେ। ନାଭା ସୀମାରେ ପ୍ରବେଶ ନ କରିବାକୁ ଏବଂ ପ୍ରବେଶ କରିଥିଲେ ସଙ୍ଗେ ସଙ୍ଗେ ତାହା ଛାଡ଼ି ଚାଲିଯିବା ନିମନ୍ତେ ସେହି ଇଂରେଜ ଶାସକଙ୍କ ଦସ୍ତଖତରେ ମୋ ଉପରେ ଏକ ହୁକୁମ ଜାରି ହେଲା। ସେହିପରି ହୁକୁମ ଗିଡ଼ୱାନୀ ଏବଂ ସାନ୍ତନମ୍‌ଙ୍କ ଉପରେ ମଧ୍ୟ ଜାରି ହେଲା — ମାତ୍ର ନାଭା କର୍ତ୍ତୃପକ୍ଷଙ୍କୁ ସେମାନଙ୍କ ନାମ ଜଣା ନ ଥିବାରୁ ସେହି ନୋଟିସରେ ସେମାନଙ୍କର ନାମ ଉଲ୍ଲେଖ କରାଯାଇ ନ ଥିଲା। ଆମ ପାଖରେ ଥିବା ପୁଲିସ ଅଫିସରଙ୍କୁ ମୁଁ ଓ ମୋର ସହକର୍ମୀ ଦୁହେଁ ଜଣାଇ ଦେଲୁ ଯେ ଆମେ ଜଥା ସହିତ ଆସି ନାହୁଁ — ଆମେ କେବଳ ଦର୍ଶକ ଭାବରେ ଆସିଛୁ। ନାଭା ଷ୍ଟେଟରେ କୌଣସି ଆଇନ ଭଙ୍ଗ କରିବା ମଧ୍ୟ ଆମର ମତଲବ ନୁହେଁ। ଆମେ ନାଭା ଷ୍ଟେଟ୍ ଭିତରେ ପ୍ରବେଶ କରି ସାରିଲୁଣି; ସୁତରାଂ ପ୍ରବେଶ ନ କରିବା କଥା ଆଉ ଉଠୁ ନାହିଁ ଏବଂ

ଆମେ ହଠାତ୍ ବାହାର ଆସିବା ମଧ୍ୟ ସମ୍ଭବପର ନୁହେଁ । ଅନେକ ଘଣ୍ଟା ପରେ ପୁଣି ରେଲଗାଡ଼ି କାଏରୋକୁ ଆସିବାର କଥା । ତେଣୁ ଏହି କେତେକ ସମୟ ପର୍ଯ୍ୟନ୍ତ ଆମେ ସେଠାରେ ରହିବୁ ବୋଲି ତାଙ୍କୁ ଜଣାଇ ଦେଲୁ । ସଙ୍ଗେ ସଙ୍ଗେ ଆମକୁ ଗିରଫ କରାଯାଇ ହାଜତରେ ରଖାଗଲା । ଆମକୁ ଧରି ନେବା ପରେ ମାମୁଲି ଉପାୟରେ କଏଦୀମାନଙ୍କ ପ୍ରତି ବ୍ୟବହାର କରାଗଲା ।

ସାରା ଦିନଟି ଆମକୁ ହାଜତରେ ରଖାଗଲା ଏବଂ ସନ୍ଧ୍ୟାରେ ଆମକୁ ରେଲ୍ୱେ ଷ୍ଟେସନକୁ ନିଆଗଲା । ସନ୍ତାନମ୍ ଓ ମୋର ଏକାଠି ହାତ-କଡ଼ି ପଡ଼ିଲା—ତାଙ୍କ ଡାହାଣ ହାତ ସହିତ ମୋର ବାଆଁ ହାତ ବନ୍ଧା ହେଲା—ଏହି ହାତକଡ଼ିକୁ ଲାଗି ଜଞ୍ଜିର ବନ୍ଧା ହୋଇଥିଲା । ଆମକୁ ନେଇଥିବା ପୁଲିସମାନେ ସେ ଜଞ୍ଜିର ଧରିଥାନ୍ତି । ମିଶର୍ଡ୍ୟାଙ୍କୁ ମଧ୍ୟ ହାତକଡ଼ି ଦିଆ ହୋଇଥିଲା ଏବଂ ଜଞ୍ଜିରରେ ବନ୍ଧା ଯାଇଥିଲେ— ତାଙ୍କୁ ଆମ ପଛରେ ଆଣୁଥାନ୍ତି । କାଏରୋ ସହରରେ ଏପରି ଯାତ୍ରା କରୁଥିଲାବେଳେ କୁକୁରକୁ ଜଞ୍ଜିରରେ ବାନ୍ଧି ଜବରଦସ୍ତି ନେଲାପରି ମୋର ମନେ ହେଲା । ଆମେ ପ୍ରଥମେ ଟିକିଏ ଉତ୍ତେଜିତ ହୋଇଯାଇ ଥିଲୁ; ମାତ୍ର ପରେ ଏହି ପରିସ୍ଥିତିର ମଜାକୁ ଆମେ ବୁଝିପାରି ଅଭିଜ୍ଞତାକୁ ବେଶ ଉପଭୋଗ କଲୁ । ଏ ଦିନ ରାତିଟି ଆମେ ଉପଭୋଗ କରି ପାରିଲୁ ନାହିଁ । ରାତିର କେତେକ ଘଣ୍ଟା ଆମେ ଅଧିକ ଗତି କରୁଥିବା ରେଲଗାଡ଼ି ଥାର୍ଡ କ୍ଲାସ ଭିତରେ କଟାଇଲୁ -- ରାତି ଅଧରେ ପୁଣି ଗାଡ଼ି ବଦଳାଇବାକୁ ପଡ଼ିଲା—ଆଉ କେତେ ଘଣ୍ଟା ନାହିଁ ହାଜତରେ କଟାଇଲୁ । ତହିଁ ଆରଦିନ ପୂର୍ବାହ୍ନରେ ଆମକୁ ନାଗ ଜେଲରେ ଛାଡ଼ି ଦିଆଗଲା । ସେ ପର୍ଯ୍ୟନ୍ତ ହାତକଡ଼ି ଓ ଜଞ୍ଜିର ଆମଠାରେ ରହିଥିଲା । ଅନ୍ୟର ସାହାଯ୍ୟ ବ୍ୟତୀତ ଆମ ଭିତରୁ କେହି ଜଣେ ବୁଲିଚାଲି ହୋଇ ପାରୁ ନ ଥିଲୁ । ଆଉ ଜଣେ ଲୋକ ସହିତ ସମସ୍ତ ରାତି ଏବଂ ଦିନର କେତେକାଂଶ ହାତକଡ଼ି ପଡ଼ି ରହିବା ଅଭିଜ୍ଞତା ମୁଁ ପୁନର୍ବାର ଆକାଂକ୍ଷା କରିବାକୁ ଚାହେଁନା ।

ନାଭା ଜେଲରେ ଆମ ତିନିଜଣଙ୍କୁ ଏକ ଅପରିଷ୍କାର ଓ ଅପରି-ଚ୍ଛନ୍ନ କୋଠରୀରେ ରଖାଗଲା । ଏହା ଅତି ଛୋଟ ଏବଂ ଓଦା ହୋଇଥାଏ, ଛାତକୁ ଆମେ ପ୍ରାୟ ଛୁଇଁ ପାରୁଥାଉ । ରାତିରେ ଆମେ ତଳେ ଶୋଉଥିଲୁ ଏବଂ ମୋ ମୁହଁରେ ଗୋଟାଏ ମୂଷା ଚାଲିଗଲା ବୋଲି ମୁଁ ହଠାତ୍ ଚମକି ଉଠି ପଡ଼ିଲି ।

ଆମ ମକଦ୍ଦମା ବିଚାର ନିମନ୍ତେ ଆମକୁ ଦୁଇ ତିନିଦିନ ପରେ କଚେରୀକୁ ନିଆଗଲା । ସେଠାରେ 'ଅଦ୍ଭୁତ ଧରଣର ବିଚାର ହେଲା । ମାଜିଷ୍ଟ୍ରେଟ ବା ବିଚାରକ ସମ୍ପୂର୍ଣ୍ଣ ଅଶିକ୍ଷିତ ପରି ମନେ ହେଉଥିଲେ । ସେ ଅବଶ୍ୟ ଇଂରେଜୀ ଜାଣି ନ ଥିଲେ, ମାତ୍ର ସେ କଚେରୀ ଭାଷା ଉର୍ଦ୍ଦୁ ଲେଖି ଜାଣିଥିଲେ କି ନାହିଁ ମୋର ସନ୍ଦେହ । ପ୍ରାୟ ଏକ ସପ୍ତାହ ପର୍ଯ୍ୟନ୍ତ ମୁଁ ତାଙ୍କୁ ଲକ୍ଷ୍ୟ କଲି—କେବେ ସେ ଏକଧାଡ଼ି ଲେଖିବାର ମୋତେ ଜଣା ନାହିଁ । ଯେତେବେଳେ ଲେଖିବା ଦରକାର ପଡ଼େ, ସେତେ-ବେଳେ କଚେରୀରେ ଥିବା କିରାଣୀ ତାହା କରୁଥିଲେ । ଆମେ ଅନେକ ଟେଠ ଦରଖାସ୍ତ ଦେଲୁ, ଯେତେବେଳେ ସେ ସେଥିରେ କିଛି ଆଦେଶ ଦେଲେ ନାହିଁ । ସେ ସେଗୁଡ଼ିକ ରଖିଦେଲେ ଏବଂ ତା ପରେ ସେ ତାକୁ କଚେରୀକୁ ଆଣିଲେ—ଅନ୍ୟ ଜଣେ ସେଥିରେ ଆଦେଶ ଲେଖିଥାନ୍ତି । ଆମେ ବିଧିମୁତାବକ ମକଦ୍ଦମା ଲଢ଼ିଲୁ ନାହିଁ । ଅସହଯୋଗ ଆନ୍ଦୋଳନ ସମୟରେ କଚେରୀରେ ମକଦ୍ଦମା ନ ଲଢ଼ିବା ଗୋଟାଏ ଏପରି ଗର୍ବ ହୋଇ ଯାଇଥିଲା ଯେ, ତାହା ସମ୍ଭବ ହେଲେ ସମ୍ବନ୍ଧରେ ମଧ୍ୟ ଆମକୁ ବଡ଼ ଅସୁନ୍ଦର ମନେ ହେଉଥିଲା; ମାତ୍ର ସମସ୍ତ ଘଟଣା ନେଇ ଏବଂ ନାଭାର ଶାସନ ଓ ବିଶେଷତଃ ବ୍ରିଟିଶ ଶାସନ ଅଧୀନରେ ନାଭାର ଅବସ୍ଥା ଉପରେ ତାହା ଉଲ୍ଲେଖ କରି ଏକ ଦୀର୍ଘ ବିବୃତି ଦେଲି ।

ଆମ ମକଦ୍ଦମା ଅତି ସରଳ ଥିଲେ ସୁଦ୍ଧା ବିଚାର ଅନେକ ଦିନ ପର୍ଯ୍ୟନ୍ତ ଚାଲିଲା । ହଠାତ୍ ଏକ ପରିବର୍ତ୍ତନ ଘଟିଲା । ଦିନେ 'କଚେରୀ ଛୁଟି ହେଲା ପରେ ଆମକୁ ସେହି କୋଠରୀରେ ଅଟକାଇ ରଖାଗଲା;

ସନ୍ଧ୍ୟା ପରେ ଆମକୁ ଆଉ ଏକ ଘରକୁ ନିଆଗଲା । ସେଠାରେ ଜଣେ ଲୋକ ଗୋଟିଏ ଟେବୁଲ ପାଖରେ ବସିଥାଏ ଏବଂ ତାଙ୍କ ଚାରିକଡ଼ରେ କେତେକ ଲୋକ ଥାନ୍ତି । ଆମର ପୁରାତନ ବନ୍ଧୁ, ଆମକୁ କାଏଡୋରେ ଗିରଫ କରିଥିବା ପୁଲିସ କର୍ମଚାରୀ ସେଠି ଥାଆନ୍ତି । ସେ ହଠାତ୍ ଉଠି ଏକ ବକ୍ତୃତା ଦେଲେ । ଆମେ କେଉଁଠି ରହୁଛୁ ଏବଂ କଣ ହେଉଛି, ଏ ସମ୍ବନ୍ଧରେ ମୁଁ ଅନୁସନ୍ଧାନ କଲି । ମୋତେ କୁହାଗଲା ଏହା କଚେରୀ ଘର ଏବଂ ଏଇ ଷଡ଼ଯନ୍ତ୍ର ସକାଶେ ଆମର ବିଚାର ହେଉଛି । ଏ ପର୍ଯ୍ୟନ୍ତ ଆମର ଯାହା ବିଚାର ହେଉଥିଲା, ଏହା ତାହାଠାରୁ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ନାଭା ଷ୍ଟେଟ୍ ଭିତରେ ପ୍ରବେଶ ନ କରିବା ହୁକୁମ ଅମାନ୍ୟ କରିଥିବା ହେତୁ ସେ ମକଦ୍ଦମା ଚାଲିଥିଲା, ମାତ୍ର ପରେ ବୁଝିପାରିଲେ ଯେ, ଏଥିରେ ଖୁବ୍ ଅଧିକ ହେଲେ ଆମକୁ ୬ ମାସ ଜେଲ ହୋଇପାରିବ — ସେଥିପାଇଁ ଆହୁରି ଗୁରୁତର ଅପରାଧ ଖୋଜା ପଡ଼ିଲା । ବୋଧହୁଏ ଏକ ଷଡ଼ଯନ୍ତ୍ର ମକଦ୍ଦମା ପାଇଁ ତିନିଜଣ ଯଥେଷ୍ଟ ମନେ ହେଲା ନାହିଁ — ସେଥିପାଇଁ ଚତୁର୍ଥ ଲୋକ ଖୋଜା ପଡ଼ିଲା । ଆମ ସହିତ କୌଣସି ସମ୍ପର୍କ ନ ଥିବା ଆଉ ଜଣେ ଲୋକକୁ ଗିରଫ କରାଗଲା । ତାଙ୍କର ବିଚାର ଆମ ସାଙ୍ଗରେ ହେଲା । ଏହି ଶିଖ ବିଚରାକୁ ଆମେ ଚିହ୍ନି ନ ଥିଲୁ; ମାତ୍ର ଆମେ କାଏଡୋକୁ ଆସିବା ବାଟରେ ତାଙ୍କୁ ଦେଖିଥିଲୁ ।

ଯେଉଁପରି ଢଙ୍ଗରେ ଆମ ବିରୁଦ୍ଧରେ ଷଡ଼ଯନ୍ତ୍ର ମକଦ୍ଦମା ତିଆରି ହେଲା, ତାହା ଦେଖି ମୋ ଓକିଲ ମନ ଅବାକ୍ ହୋଇଗଲା । ମକଦ୍ଦମା ସମ୍ପୂର୍ଣ୍ଣମିଥ୍ୟା, ମାତ୍ର ଭଦ୍ରତା ରକ୍ଷା ପାଇଁ କେତେକ ଗତାନୁଗତିକ ପନ୍ଥା ରକ୍ଷା କରିବା ଦରକାର ପଡ଼ିଲା ! ମୁଁ ବିଚାରକଙ୍କୁ କହିଲି ଯେ, ମକଦ୍ଦମା ଲାଗି ଆମେ କିଛି ଆଗରୁ ନୋଟିସ ପାଇ ନ ଥିଲୁ ଏବଂ ଖବର ପାଇଥିଲେ ଆମେ ଆମ ମକଦ୍ଦମା ଲଢ଼ିବାର ବନ୍ଦୋବସ୍ତ କରିପାରି ଥାଆନ୍ତୁ । ଏଥିରେ ସେ ଆଦୌ ବିଚଳିତ ହେଲେ ନାହିଁ । ଏହା ହେଉଛି ନାଭାର ରୀତି । ଆମକୁ ଓକିଲ ଦେବାକୁ ହେଲେ ନାଭା ରାଜ୍ୟ ଭିତରୁ ଓକିଲ ଦେବାକୁ ହେବ ! ମୁଁ ବାହାରୁ ଓକିଲ ଆଣିବା କଥା ଉଠାଇବାରୁ ନାଭା ଷ୍ଟେଟ୍

ଜନ୍ମମାତ୍ରସାରେ ଅନୁମତ ମିଳି ପାରିବ ନାହିଁ ବୋଲି ବୁଝାଗଲା । ତାଙ୍କ ଜମିଦାରଙ୍କ ଆନ୍ତର ବିଶେଷତ୍ୱ ସବୁ ଆମେ ଜାଣି ପାରିନ୍ତୁ । ଆମେ ଠିକ୍ ଭାବରେ ହୋଇ ବଗିଚାପତିଙ୍କୁ କହିଲୁ ତାଙ୍କ ମନଇଚ୍ଛା ସେ ଯାହା କରି ପାରନ୍ତି, ମାତ୍ର ଆମେ ବଗିଚାରେ ଆଦୌ ଦ୍ରଗ ଦେବୁ ନାହିଁ । ଆମ ସମ୍ବନ୍ଧରେ ଏପରି ଅସମ୍ଭବ ମିଥ୍ୟା କଥା ଶୁଣି ରହିବ ରହିବା ଅସମ୍ଭବ । ତେଣୁ ସମୟ ସମୟରେ ଆମେ ସଂକ୍ଷେପରେ ସାକ୍ଷ୍ୟ ସମ୍ବନ୍ଧରେ ଆମର ମତ ଦେଉଥାଉଁ । ଏହିସବୁ ଘଟଣା ସମ୍ପର୍କରେ ଆମେ ଜେଲରେ ଏକ ଲିଖିତ ବିବୃତି ଦେଲୁ । ଆମର ଷଡ଼ଯନ୍ତ୍ର ମକଦ୍ଦମା ଚାଲିଥିବା ଏହି ଦ୍ୱିତୀୟ ବଗିଚାପତି ଠିକ୍ ଅଧିକ ଶିକ୍ଷିତ ଏବଂ ବୁଦ୍ଧିମାନ ଥିଲେ ।

ଦୁଇଟି ପାକ ମକଦ୍ଦମା ଚାଲିଲା । ଆମେ ପ୍ରତିଦିନ କଚେରୀକୁ ଯିବାଲାଗି ଚାହିଁ ରହୁଥାଉ, କାରଣ ଅନ୍ତତଃ କେତେ ଘଣ୍ଟା ଆମେ ସେହି ଦୁର୍ଗନ୍ଧ ଜେଲରୁ ଯିବାକୁ ଯିବୁ । ଏଥିଅନ୍ତରରେ ଶାସକଙ୍କ ତରଫରୁ ଜେଲ ସୁପରିଣ୍ଟେଣ୍ଡେଣ୍ଟ ଆସି ଆମକୁ ଦେଖା କରି କହିଲେ ଯେ, ଆମେ ଯଦି ଆମର କାର୍ଯ୍ୟ ସକାଶେ ଦୁଃଖ ପ୍ରକାଶ କରୁଁ ଏବଂ ନାହିଁରୁ ଚାଲିଯିବା ପାଇଁ ମୁଚୁଲିକା ଦେଇଦେବୁଁ ତାହାହେଲେ ଆମ ବିରୁଦ୍ଧରେ ମକଦ୍ଦମା ଚାଲିବ କରାଯିବ ନାହିଁ । ଆମେ କହିଲୁ ଆମେ ଦୁଃଖ ପ୍ରକାଶ କରିବାର କୌଣସି କାରଣ ଦେଖୁନାହୁଁ ବରଂ ଶାସକଙ୍କର ଆମଠାରେ କ୍ଷମା ମାଗିବାର କଥା । ଆମେ କୌଣସି ମୁଚୁଲିକା ଲେଖିଦେବା ନିମନ୍ତେ ମଧ୍ୟ ପ୍ରସ୍ତୁତ ନୋହୁଁ ।

ଆମ ଗିରଫର ପ୍ରାୟ ୧୫ ଦିନ ପରେ ଦୁଇଟି ମାମଲାର ଶେଷ ହେଲା । ଏତେଦିନ କେବଳ ମୁଦ୍ଦେଇଙ୍କ ତରଫରୁ ଚାଲିଥିଲା—କାରଣ ଆମେ ମକଦ୍ଦମା ଲଢ଼ୁ ନ ଥାଉ । ଖାଲି ଯଥାକାଳ ଅପେକ୍ଷା କରି ଅନେକ ଦିନ ନଷ୍ଟ କରାଗଲା । ଠିକ୍ ଏ କିଛି ଅସୁବିଧା ହେଲେ ମକଦ୍ଦମା ମୁଲତବୀ ରଖାଯାଇ ଉପରେ ଥିବା ଇଂରେଜ ଶାସକଙ୍କର ପରାମର୍ଶ କିମ୍ବା ଅନ୍ୟ ଉଚ୍ଚ ପଦସ୍ଥ କର୍ମଚାରୀଙ୍କ ପରାମର୍ଶ ଲୋଡ଼ା ହେଉଥିଲା । ଶେଷଦିନ

ମୁହେଇ ତରଫରୁ ଜାମାନବନ୍ଦୀ ଆଦି ଶେଷ ହେବାପରେ ଆମେ ଆମ ଲିଖିତ ବିବୃତ୍ତି ଦେଲୁ । ପ୍ରଥମ ମକଦ୍ଦମା ବିଗୃହ ହେଉଥିବା କଚେରୀ ଟେଲିତଖା ରହିଲୁ ଏବଂ ଅଳ୍ପ ସମୟପରେ ଉପରେ ଏକ ଲମ୍ବା ରାୟ ଧରି ସେ ଆସି ପୁଣି ପହଞ୍ଚିବା ଦେଖି ଆମେ ବିସ୍ମିତ ହେଲୁ । ଏହି କ୍ଷଣକ ସମୟ ଭିତରେ ଏପରି ପ୍ରକାଣ୍ଡ ରାୟ ଲେଖା ହେବା ସମ୍ଭବପର ନୁହେଁ । ଆମ ଉପରେ ଆସିବା ପୂର୍ବରୁ ଏହା ଲେଖା ହୋଇଥିଲା । ରାୟ ପଢ଼ାଇ ଶୁଣାଇ ଦିଆଗଲା ନାହିଁ, ଆମକୁ କହିଲେ ଯେ ନାଳ କ୍ଷେତ ଛାଡ଼ିବା ଲାଗି ଦିଆଯାଇଥିବା ହୁକୁମ ଅମାନ୍ୟ କରିଥିବା ହେତୁ ଆମକୁ ୬ମାସ ଲେଖାଏଁ ଜେଲଦଣ୍ଡ ଦିଆଗଲା ।

ସେହିଦିନ ଷଡ଼ଯନ୍ତ୍ର ମକଦ୍ଦମା ଯୋଗୁଁ ଆମକୁ ୧୮ମାସ ବା ଦେଢ଼ ବର୍ଷ ଜେଲଦଣ୍ଡ ହେଲା; କେତେ ହେଲା ମୋର ଠିକ୍ ମନେନାହିଁ । ଏହା ୬ମାସ ଜେଲଦଣ୍ଡଠାରୁ ଆଉ ଅଧିକା । ଏଣୁ ମୋଟରେ ଆମକୁ ଦୁଇବର୍ଷ ଲମ୍ବା ଅଢ଼େଇବର୍ଷ ଜେଲଦଣ୍ଡ ମିଳିଲା ।

ଆମ ବିଚାର ମଧ୍ୟରେ ଅନେକ ଉଲ୍ଲେଖଯୋଗ୍ୟ ଘଟଣା ଘଟିଗଲା । ସେଥିରେ ଭାରତୀୟ ଦେଶୀୟ ରାଜ୍ୟ, କିମ୍ବା ଦେଶୀୟ ରାଜ୍ୟରେ ଇଂରେଜ ଶାସନ ଜାଣିବା ଠିକ୍ ହେବ । ବାହ୍ୟଜଗତ ସମ୍ବନ୍ଧରେ କେତେକ ଖବର ଆମେ ପାଇଲୁ । ସମସ୍ତ ବିଚାର ପଦ୍ଧତି ଏକ ପ୍ରହସନ । ଏଥିଯୋଗୁଁ ମୋର ମନେ ହୁଏ କୌଣସି ବାହାର ଲୋକ ବା ଖବର କାଗଜବାଲାଙ୍କୁ କଚେରୀକୁ ଆସିବାକୁ ଦିଆଯାଏ ନାହିଁ । ମୁଁ ମନଇଚ୍ଛା କାର୍ଯ୍ୟ କରେ । ଭାରତର ବା ମାଜିଷ୍ଟ୍ରେଟଙ୍କ ମାନେ ନାହିଁ । ଅନେକ ସମୟରେ ତାଙ୍କ ଆଦେଶ ଅମାନ୍ୟ କରେ । ବଡ଼ ମାଜିଷ୍ଟ୍ରେଟ ଶାନ୍ତଭାବରେ ତାହା ସହ୍ୟ କରିଯାଏ; ମାତ୍ର ଆମେ ଯେ ତାଙ୍କର ସହ୍ୟ କରିବାର ପ୍ରକୃତ କାରଣ କିନ୍ତୁ ବୁଝି ପାରିଲୁ ନାହିଁ । ମୁଁ ଅନେକଥର ଦ୍ଵାରା ଲୋକ ପୁଲିସ ମାଜିଷ୍ଟ୍ରେଟଙ୍କ କଥାନୁସାରେ ବ୍ୟବହାର କରିବାକୁ ଲାଗି ଦେଲି । ଅନେକ ସମୟରେ ପୁଲିସ କାଗଜପତ୍ର ଠାଣି ନିଏ । ମାଜିଷ୍ଟ୍ରେଟ କୌଣସି ଶାନ୍ତି

ଦେବାକୁ ଅସମର୍ଥ ଥିବାରୁ କିମ୍ବା ତା ନିଜ ଦେଶୀୟଙ୍କୁ ଶୃଙ୍ଖଳାବଦ୍ଧ କରି ନ ପାରୁଥିବାରୁ ଆମକୁ ତାହା କରିବାକୁ ପଡ଼ୁଥିଲା । ଉଦ୍ଦାର ମାଜିଷ୍ଟ୍ରେଟ ବହୁ ଅସୁବିଧା ଅବସ୍ଥାରେ ଥାଏ । ତାର ଦୃଷ୍ଟିରେ ଦ୍ୱନ୍ଦ ଥାଏ ଏବଂ ଆମ ବିରୋଧ ଫଳରେ ଖବରକାଗଜରେ ଘୋର ଆନ୍ଦୋଳନ ବଢ଼ି ଯାଉଥିବାରୁ ସେଥିରେ ମଧ୍ୟ ସେ ଟିକିଏ ଡରୁଥାଏ । ଆମ ପରି ଅଧିକ ଜଣାଶୁଣା ରାଜନୈତିକ ଲୋକ ସଂପୃକ୍ତ ଥିବାବେଳେ ଯଦି ଅବସ୍ଥା ଏପରି ହୁଏ, ତେବେ ଅଳ୍ପ ଜଣାଶୁଣା ଲୋକଙ୍କ ଅବସ୍ଥା କଣ ହେଉଥିବ ଭାବିଲେ ମୁଁ ଆଶ୍ଚର୍ଯ୍ୟ ହୁଏ ।

ଦେଶୀୟ ରାଜ୍ୟର ଗୋଳମାଳ ସମ୍ବନ୍ଧରେ ମୋ ପିତାଙ୍କର କିଛି ମାନ୍ୟତା ଥିଲା । ତେଣୁ ମୋର ଅପ୍ରତ୍ୟାଶିତ ଗିରଫ କଥା ଶୁଣି ସେ ଖୁବ ଚିନ୍ତିତ ହୋଇଗଲେ । କେବଳ ଗିରଫ ସମ୍ବାଦ ଜଣାଥିଲା, ଆଉ କିଛି ସମ୍ବାଦ ପାଇବାକୁ ଯାଇ ପାରୁ ନ ଥାଏ । ସେ ଅତି ଦୁଃଖରେ ମୋ ସମ୍ବନ୍ଧରେ ଖବର ଜାଣିବା ନିମନ୍ତେ ବଡ଼ଲାଟଙ୍କ ନିକଟକୁ ତାର ପଠାଇ ଦେଲେ । ମୋ ସହିତ ନାଭାରେ ଆସି ସାକ୍ଷାତ କରିବାରେ ନାନା ଅସୁବିଧା ରହିଲା— ଶେଷରେ ଜେଲ ଭିତରେ ସେ ମୋତେ ସାକ୍ଷାତ କରିବା ନିମନ୍ତେ ଅନୁମତି ପାଇଲେ । ମୁଁ ମକଦମା ନ ଲଢୁଥିବା ହେତୁ ସେ ମୋର କିଛି ସାହାଯ୍ୟରେ ଆସି ପାରିଲେ ନାହିଁ । ମୋ ପାଇଁ ବ୍ୟସ୍ତ ନ ହୋଇ ଏଲାହାବାଦ ଫେରିଯିବା ନିମନ୍ତେ ମୁଁ ତାଙ୍କୁ ଅନୁରୋଧ କଲି । ସେ ଫେରି ଆସିଲେ; ମାତ୍ର ମକଦମା ଲଢ଼ିବାପାଇଁ ନାଭାରେ ଆମର ଜଣେ ଓକିଲ ସହକର୍ମୀ କପିଳଦେବ ମାଳବ୍ୟଙ୍କୁ ଛାଡ଼ି ଆସିଲେ । ନାଭା କଚେରୀରେ ଯେଉଁ ସଂକ୍ଷେପ ଅଭିଜ୍ଞତା ହେଲା, ସେଥିରେ ଆଇନ ଓ ବିଚାରପଦ୍ଧତି ସମ୍ବନ୍ଧରେ କପିଳଦେବଙ୍କ ଜ୍ଞାନ ନିଶ୍ଚୟ ବଢ଼ି ଯାଇଥିବ । ତାଙ୍କ ନିକଟରେ ଯାହା କାଗଜପତ୍ର ଥିଲା, ତାହା ପ୍ରକାଶ୍ୟ କଚେରୀରେ ଜବରଦସ୍ତି ଛଡ଼ାଇ ନେବା ନିମନ୍ତେ ପୁଲିସ ଚେଷ୍ଟା କରିଥିଲା ।

ଅଧିକାଂଶ ଭାରତୀୟ ଦେଶୀୟ ରାଜ୍ୟ ଅତ୍ୟନ୍ତ ଅନୁନ୍ନତ ଓ ମଧ୍ୟଯୁଗର ସାମନ୍ତୀୟ ଅବସ୍ଥାରେ ଅଛି । ଏଗୁଡ଼ିକରେ ବ୍ୟକ୍ତିବିଶେଷଙ୍କର ଏକଛତ୍ର

ଶାସନ ପ୍ରଚଳିତ—ସାମର୍ଥ୍ୟ ବା ଉପକାରର ପ୍ରଶ୍ନ ନାହିଁ । ସେଠାରେ ଅନେକ ଅଦ୍ଭୁତ ଘଟଣା ଘଟିଯାଏ, ମାତ୍ର ତାହା ପ୍ରକାଶିତ ହୋଇପାରେ ନା । କର୍ମକୁଶଳତାର ଅଭାବରୁ ଲୋକଙ୍କ ଉପରେ ଅତ୍ୟାଚାର କେତେକ ପରିମାଣରେ କମିଯାଏ ଏବଂ ଦୁଃଖୀ ଲୋକଙ୍କର ବୋଝ କମ ହୋଇଯାଏ । କୌଣସି ଶାସନକର୍ତ୍ତା ଦୁର୍ବଳ ଥିଲେ ଅତ୍ୟାଚାର ଓ ଅନ୍ୟାୟ ମଧ୍ୟ ଦୁର୍ବଳ ହୋଇଯାଏ । ଏତଦ୍ବ୍ୟତୀତ ଯେ ଅତ୍ୟାଚାର ଅଧିକ ସହନଶୀଳ ହୋଇଯାଏ, ତାହା ନୁହେଁ, ମାତ୍ର ଏଥିଯୋଗୁଁ ଅତ୍ୟାଚାର ଅଧିକ ବ୍ୟାପକ ହୋଇ ପାରେ ନା । ଏହି କ୍ଷେତ୍ରର ଶାସନ ଜଣେ ଇଂରେଜ ଶାସକଙ୍କ ହାତରେ ପଡ଼ିବାରୁ ଏଠାରେ ଏପରି ଅବସ୍ଥାର ପରିବର୍ତ୍ତନ ଘଟିଥିଲା । ସେହି ମଧ୍ୟ ଯୁଗର ସାମନ୍ତ ପ୍ରଥା ରହିଥାଏ, ଏକଛତ୍ର ଶାସନ ଥାଏ, ପୁରୁଣା ଆଇନ ଓ ପଦ୍ଧତି ସବୁ ମଧ୍ୟ ପ୍ରଚଳିତ ଥାଏ, ବ୍ୟକ୍ତିଗତ ସ୍ୱାଧୀନତା, ସଭାସମିତି ଏବଂ ମତପ୍ରକାଶ ଉପରେ (ଏହା ପ୍ରାୟ ସକଳ ପ୍ରକାରର) କଟକଣା ରହିଥାଏ । ମାତ୍ର ସମସ୍ତ ଜିନିଷର କେବଳ ଗୋଟିଏ ମାତ୍ର ପରିବର୍ତ୍ତନ ପରିଲକ୍ଷିତ ହେଉଥିଲା । ଶାସନକଳ ଅଧିକ ଶକ୍ତିଶାଳୀ ହୋଇ ପଡ଼ିଥିଲା ଏବଂ ସେମାନେ ଅଧିକ ସମର୍ଥ ହୋଇଥିଲେ । ଏହାର ଫଳରେ ସମସ୍ତ ସାମନ୍ତଶାହୀ ଓ ଏକଛତ୍ର ଶାସନର ବନ୍ଧନସବୁ ଦୃଢ଼ ହୋଇଗଲା । ଅବଶ୍ୟ କାଳକ୍ରମେ ଅତି ପୁରାତନ ପ୍ରଥା ଓ ରୀତି ସବୁ ଇଂରେଜ ଶାସନରେ ପରିବର୍ତ୍ତିତ ହୋଇଯିବ, କାରଣ କୌଣସି କୁଶଳ ଶାସନ ଓ ବ୍ୟବସାୟ ବାଣିଜ୍ୟର ଉନ୍ନତି ଘଟିଲେ ଏହା ସବୁ ହେବା ସ୍ୱାଭାବିକ । ମାତ୍ର ପ୍ରଥମେ ସେମାନେ ଲୋକଙ୍କ ଉପରେ ପ୍ରଭୁତ୍ୱ କରିବା ନିମନ୍ତେ ପ୍ରଚଳିତ ପ୍ରଥାର ସୁଯୋଗ ଉଠାଉଥିଲେ । ଲୋକଙ୍କୁ ବର୍ତ୍ତମାନ ସାମନ୍ତପ୍ରଥା ଓ ଏକଛତ୍ର ଶାସନର ବୋଝ ନୂଆ ଏକ ଶକ୍ତିଶାଳୀ ସରକାରର ହୁକୁମ ମାନିବାକୁ ପଡ଼ିଲା ।

ଏ ସବୁ ମୁଁ ନାଭାରେ ଦେଖି ପାରିଲି । ଜଣେ ଭାରତୀୟ ସିଭିଲ ସର୍ଭିସର ସଭ୍ୟ ଇଂରେଜଙ୍କ ଅଧୀନରେ ଏହା ଥିଲା—ଏକଛତ୍ର ଶାସକଙ୍କର ପୂରା କ୍ଷମତା ତାଙ୍କର ଥିଲା—କେବଳ ଭାରତ ସରକାର ନିକଟରେ

ସେ ଦାୟୀ ରହୁଥିଲେ । ଲୋକମାନଙ୍କୁ ଦେଶୀୟ ରାଜ୍ୟରେ ସାଧାରଣ ଅଧିକାର ସବୁ ଦିଆଯାଉ ନାହିଁ । ଅଭିଯୋଗକୁ ଅସ୍ୱୀକାର କରିବା ନିମନ୍ତେ ପ୍ରତ୍ୟେକ ବିଷୟରେ ନାନା କଥା ଉଲ୍ଲେଖ କରାଯାଏ । ଏଠାରେ ପୁରାତନ ସାମନ୍ତପ୍ରଥା ଓ ଆଧୁନିକ ଅମଲାତନ୍ତ୍ରର ମିଳିତ ଶାସନର ଆମେ ସମ୍ମୁଖୀନ ହେଲୁ—ଏଠି ଦୁଇଟିର ଅପକାରିତା ଥିଲା; ମାତ୍ର କେହି ଉପକାର କରୁ ନ ଥିଲେ ।

ଏହିରୂପେ ଆମର ବିଚାର ଶେଷ ହେଲା ଏବଂ ଆମକୁ ଶାସ୍ତି ଦିଆଗଲା । ରାୟରେ କଣ ଲେଖା ଥିଲା ଆମେ ଜାଣି ପାରିଲୁ ନାହିଁ; ମାତ୍ର ଏକ ଦୀର୍ଘ କାରାବାସ ଶାସ୍ତି ମନରେ ଗୋଟିଏ ଭାବ ଜଗାଇଲା । ଆମେ ରାୟ ନକଲ ପାଇଁ ଦାବୀ କଲୁ—ମାତ୍ର ଆଇନ ମୁତାବକ ସେଥିଲାଗି ଦରଖାସ୍ତ କରିବାକୁ ହେବ ବୋଲି ଆମକୁ କୁହାଗଲା ।

ସେ ଦିନ ସନ୍ଧ୍ୟାବେଳେ ଜେଲର ସୁପରିଣ୍ଟେଣ୍ଡେଣ୍ଟ ଆମକୁ ଡକାଇ ପଠାଇଲେ ଏବଂ କହିଲେ ଯେ ଶାସକ (ଇଂରେଜ) ଫୌଜଦାରୀ ଆଇନର ଦଫାନୁସାରେ ଆମ ଶାସ୍ତି ରଦ୍ଦ କରି ଦେଇଛନ୍ତି । ତା ପରେ ଆଉ ଏକ ନୋଟିସ ସେ ଆମ ଉପରେ ଜାରି କଲେ—ସେଥିରେ ନାଭା ଛାଡ଼ି ଚାଲିଯିବା ନିମନ୍ତେ ଏବଂ ବିଶେଷ ଅନୁମତି ନ ନେଇ ଆସିବା ନିମନ୍ତେ ଲେଖାଥିଲା । ମୁଁ ସେ ହୁକୁମର ଦୁଇଟି ନକଲ ମାଗିଲି, ମାତ୍ର ତାହା ଦିଆଗଲା ନାହିଁ । ତା ପରେ ଆମକୁ ରେଲ ଷ୍ଟେସନକୁ ନେଇ ସେଠାରେ ଛାଡ଼ି ଦିଆଗଲା । ଆମେ ନାଭାରେ ଜଣେ ହେଲେ କାହାରିକୁ ଚିହ୍ନୁ ନ ଥିଲୁ—ସେତେବେଳେ ପୁଣି ରାତିରେ ସବୁ ବନ୍ଦ ହୋଇଯାଇଥାଏ । ଆମେ ଏକ ରେଲଗାଡ଼ି ଅମ୍ବାଲା ଯାଉଥିବାର ଦେଖି ସେଥିରେ ଚଢ଼ିଲୁ । ଅମ୍ବାଲାରୁ ଦିଲ୍ଲୀ ସେଠାରୁ ମୁଁ ଏଲାହାବାଦ ଆସିଲି ।

ସେହି ଦୁଇଟି ହୁକୁମ ଓ ଦୁଇଟି ରାୟର ନକଲ ମୋ ନିକଟକୁ ପଠାଇବା ନିମନ୍ତେ ମୁଁ ଏଲାହାବାଦରୁ ଶାସକଙ୍କ ପାଖକୁ ଚିଠି ଲେଖିଲି । ତାହା ପାଇଲେ ବାସ୍ତବିକ ସେ ହୁକୁମ କଣ ତାହା ମୁଁ ଜାଣି ପାରନ୍ତି-

ସେ କୌଣସି ଗୋଟିଏର ନକଲ ଦେବାକୁ ଅସ୍ୱୀକାର କଲେ । ମୁଁ ଅପିଲ କରିପାରେ ବୋଲି ତାଙ୍କୁ ଲେଖିବା ସତ୍ତ୍ୱେ ମଧ୍ୟ ସେ ଦେବାକୁ ଅସ୍ୱୀକାର କଲେ । ସେହି ହୁକୁମ ସକାଶେ ମୁଁ ଓ ମୋର ଦୁଇଜଣ ସହକର୍ମୀ ଦୁଇ ବର୍ଷରୁ ଅଢ଼େଇ ବର୍ଷ ପର୍ଯ୍ୟନ୍ତ ସଜା ପାଇଥିଲୁ, ତାହା ପଢ଼ିବା କମରେ ମୁଁ ବାରମ୍ବାର ଉଦ୍ୟମ କରେ ସୁଦ୍ଧା ପାଇ ପାରିଲି ନାହିଁ । ଏହି ଶାସ୍ତି ହୁଏତ ମୋ ମୁଣ୍ଡରେ ଅଜଣା ସୁଦ୍ଧା ... ଲୁଚ—ନାଳର କଣ୍ଟ୍ରପଞ୍ଚ ଏବଂ ଲ ଟଶ ସରକାର ଯେତେବେଳେ ଇଚ୍ଛା ସେତେବେଳେ ଏହା ମୋ ଉପରେ ଚଳାଇ ପାରନ୍ତି ।

ଏହିପରି ଭାବରେ ଆମ ଶାସ୍ତି ରଦ ହୋଇଥିବାରୁ ଆମେ ତିନିଜଣ ଯାକ ଖଲାସ ହୋଇଗଲୁ; ମାତ୍ର ଦ୍ୱିତୀୟ ଷଡଯନ୍ତ୍ର ମକଦମା ବେଳେ ଯେଉଁ ଶିଖ ଜଣଙ୍କୁ ଆମ ସାଙ୍ଗରେ ଦୋଷୀ କରା ଯାଇଥିଲା, ତାଙ୍କ ଦଶା କଣ ହେଲା ମୁଁ ଜାଣି ପାରିଲି ନାହିଁ । ସମ୍ଭବତଃ ତାଙ୍କୁ ଖଲାସ କରାଯାଇ ନ ଥିଲା । ତାଙ୍କର ସେପରି କ୍ଷମତାଶାଳୀ ବନ୍ଧୁ ନ ଥିଲେ କିମ୍ବା ସାଧାରଣ ଜନମତ ତାଙ୍କ ପକ୍ଷରେ ଉତ୍ସାହ ଦେଉ ନ ଥିଲେ, ସେଥିପାଇଁ ସେହି ଜେଲର କାରା ଅନ୍ଧକାରରେ ଅନ୍ୟମାନଙ୍କ ପରି ସେ ମଧ୍ୟ ଲୁଚିଗଲେ । ମାତ୍ର ଆମେ ତାଙ୍କୁ ପାଶୋରି ପାରିଲୁ ନାହିଁ । ଆମର ସାମାନ୍ୟ ଶକ୍ତିରେ ତାହା ସମ୍ଭବ ଆମେ କରିଥିଲୁ, ମାତ୍ର ତାହା କିଛି ନୁହେଁ । ମୋର ବିଶ୍ୱାସ ଗୁରୁଦ୍ୱାର କମିଟି ତାଙ୍କ ମକଦମା ତଦାରଖ କରୁଥିଲା । ଆମେ ପରେ ବୁଝିଲୁ ସେ ପୁରୁଣା "କୋମଗାଟା ମାରୁ" ଦଳର ଜଣେ ଲୋକ ଏବଂ ଦୀର୍ଘକାଳ ପରେ ସେ ଜେଲରୁ ଖଲାସ ହୋଇଥାନ୍ତି । ଏପରି ଲୋକ ବାହାରେ ରହିଲେ ପୁଲିସ ବିଶ୍ୱାସ କରେନା—ସେଥିଲାଗି ଆମ ବିରୁଦ୍ଧରେ ଆଣିଥିବା ଅଭିଯୋଗରେ ତାଙ୍କୁ ବାନ୍ଧି ଦେଲେ ।

ଗିଡ଼ୱାନି, ସାନ୍ତନମ୍ ଓ ମୁଁ—ତିନିଜଣ ଯାକ ନାଭା ଜେଲରୁ ଜଣେ ଅସୁଖୀ ସାଥି ଆଣିଥିଲୁ, ତାହା ହେଉଛି 'ଟାଇଫସ୍' ଜ୍ୱାଳାଣ୍ଡ—ଆମେ ତିନିହେଁ ଯାକ ଟାଇଫଏଡ୍ ଜ୍ୱରାକ୍ରାନ୍ତ ହେଲୁ । ମୋତେ ଖୁବ୍

ଭୟାନକ ଭାବେ ଆକ୍ରାନ୍ତ ହୋଇଥିଲି ଏବଂ ଆଶଙ୍କାଜନକ ଅବସ୍ଥାରେ ପଡ଼ିଥିଲି — ମାତ୍ର ଏହା ଅନ୍ୟ ବନ୍ଦୀଙ୍କ ଅପେକ୍ଷା କମ ଥିଲା, କାରଣ ମୁଁ ତିନି ଚାରି ସପ୍ତାହ ପର୍ଯ୍ୟନ୍ତ ରୋଗଶଯ୍ୟାରେ ପଡ଼ିଥିଲି; ମାତ୍ର ସେମାନେ ବହୁକାଳ ପର୍ଯ୍ୟନ୍ତ ଗୁରୁତର ଭାବରେ ଅଶାନ୍ତ ହୋଇ ପଡ଼ିଥିଲେ ।

ଏହି ନାଭା କାହାଣୀର ଆଉ ଏକ ଅଂଶ ଅଛି, ପ୍ରାୟ ଛଅ ମାସ ପରେ ଶିଖ ଗୁରୁଦ୍ୱାର କମିଟି ସହିତ ସମ୍ପର୍କ ସ୍ଥାପନ କରିବା ନିମନ୍ତେ କଂଗ୍ରେସ ତରଫରୁ ପ୍ରତିନିଧି ହିସାବରେ ଗିଡ଼୍‌ୱାନୀ ଅମୃତସରରେ ଥାଆନ୍ତି । ସେ କମିଟି ପ୍ରାୟ ୪୮୦ ଲୋକଙ୍କର ଏକ 'ଜାଠ' ଜାଏତୋକୁ ପଠାଇଲେ—ଜଣେ ଦର୍ଶକ ହିସାବରେ ଏହା ସହିତ ନାଭା ସୀମାନ୍ତ ପର୍ଯ୍ୟନ୍ତ ଯିବା ନିମନ୍ତେ ଗିଡ଼୍‌ୱାନୀ ସ୍ଥିର କଲେ । ସୀମାନ୍ତ ନିକଟରେ ଜାଠା ଉପରେ ପୁଲିସ ଗୁଳି ଫାଏର କଲେ—ଅନେକ ଲୋକ ଆହତ ଓ ମୃତ ହେଲେ । ଗିଡ଼୍‌ୱାନୀ ଆହତ ଲୋକଙ୍କୁ ସାହାଯ୍ୟ କରିବାକୁ ଯାଉଥିବାବେଳେ ପୁଲିସ ତାଙ୍କୁ ଗିରଫ କରି ନେଇ ଚାଲିଗଲେ । କରେଷ୍ଟରେ ତାଙ୍କ ବିରୁଦ୍ଧରେ କୌଣସି ମକଦ୍ଦମା କରାଗଲା ନାହିଁ । ସେ ବର୍ଷ ଅନେକଦିନ ପର୍ଯ୍ୟନ୍ତ ତାଙ୍କୁ ଜେଲରେ ରଖାଗଲା—ତା ପରେ ସେ ଖଲାସ ହୋଇ ଆସିଲାବେଳକୁ ତାଙ୍କର ସ୍ୱାସ୍ଥ୍ୟ ଏକଦମ ଭାଙ୍ଗି ଯାଇଥିଲା ।

ଗିଡ଼୍‌ୱାନୀଙ୍କ ଗିରଫ ଓ ଅନ୍ତର୍ଦ୍ଧାନ ଖବର ଦ୍ୱାରା କିପରି ଅମଲାତନ୍ତ୍ର ନିଜ କ୍ଷମତାର ଅପବ୍ୟବହାର କରନ୍ତି ତାହା ଜଣାପଡ଼ିଲା । ସେତେବେଳକୁ ସେହି ଇଂରେଜ ଆଇ. ସି. ଏସ୍. ଥାଆନ୍ତି । କାହିଁକି ଗିଡ଼୍‌ୱାନୀଙ୍କ ପ୍ରତି ଏପରି ବ୍ୟବହାର କରାଗଲା ବୋଲି ମୁଁ ତାଙ୍କୁ ଲେଖି ପଚାରି ଦେଇଥିଲି । ସେ ଲେଖିଲେ ଯେ ନାଭା ସୀମାନ୍ତରେ ପ୍ରବେଶ ନ କରିବା ନିମନ୍ତେ ଯେଉଁ ନିଷେଧାଜ୍ଞା ଗିଡ଼୍‌ୱାନୀଙ୍କ ଉପରେ ଜାରି ହୋଇଥିଲା, ତାହା ଅମାନ୍ୟ କରିବାରୁ ଗିଡ଼୍‌ୱାନୀଙ୍କୁ ଦଣ୍ଡ ଦିଆଗଲା । ଏହା ଆଇନ ଅନୁମୋଦିତ ନୁହେଁ ବୋଲି ମୁଁ ତାଙ୍କୁ କହିଲି — ଆହତ ଲୋକଙ୍କ

ସାଧାରଣ ଦେବା ସମ୍ବନ୍ଧରେ ଏପରି ଜିନିଷ ଠିକ୍ ନୁହେଁ ବୋଲି କହିଲେ । ସେହି ସନ୍ଦେଶର ନକଲ ମୋ ନିକଟ ପଠାଇବାକୁ କିମ୍ବା ପ୍ରକାଶ କରି ଦେବା ନିମନ୍ତେ ତାଙ୍କୁ କହିଲି । ସେ କୌଣସିଟି କରିବାକୁ ଅସ୍ୱୀକାର କଲେ । ମୋର ନିଜେ ଜାକୁ ଯିବାକୁ ଇଚ୍ଛା ହେଲା ଏବଂ ଗିର୍ଜ୍ୟାଙ୍କ ପ୍ରତି ଯେପରି ବ୍ୟବହାର କରାଯାଇଛି, ଶାସକଙ୍କଠାରୁ ସେପରି ବ୍ୟବହାର ପାଇବା ଲାଗି ଇଚ୍ଛା କରୁଥିଲି । ସହକର୍ମୀ ପ୍ରତି ମମତା ହେତୁ ଏହା କରିବା ମୋ ପକ୍ଷରେ ଉଚିତ ଥିଲା; ମାତ୍ର ଅନେକ ବନ୍ଧୁ ଅନ୍ୟ ପ୍ରକାର ଭାବିଲେ ଏବଂ ମୋତେ ଏଥିରୁ ନିବୃତ୍ତାଇଲେ । ମୁଁ ମୋର ବନ୍ଧୁମାନଙ୍କ ପରାମର୍ଶ ଆଦୌ ପାଇ ନାହିଁ—ମୋର ଦୁର୍ବଳତାକୁ ଏପରି ଏକ ଛଳନାରେ ଘୋଡ଼ାଇ ପକାଇଲି, କାରଣ ଦାଣ୍ଡ ଜେଲକୁ ନ ଯିବା ନିମନ୍ତେ ମୋର ଅନିଚ୍ଛା ଓ ଦୁର୍ବଳତା ଯୋଗୁଁ ଏହା ସମ୍ଭବ ହୋଇଥିଲା । କାରଣ ସହକର୍ମୀଙ୍କୁ ଏପରି ଭାବରେ ଛାଡ଼ି ଦେବାକୁ ମୁଁ ଲଜ୍ଜିତ ହୋଇଛି । ଅନେ ସକ୍ରି ସାହସ ଅପେକ୍ଷା ବିବେଚନାର ଅଧିକ ପକ୍ଷପାତୀ ।



## କୋକନଡ଼ା ଓ ମୌଲାନା ମହମ୍ମଦ ଆଲି

ଦକ୍ଷିଣରେ କୋକନଡ଼ାଠାରେ ୧୯୨୩ ମସିହା ଡିସେମ୍ବର ମାସରେ କଂଗ୍ରେସର ବାର୍ଷିକ ଅଧିବେଶନ ହୋଇଥିଲା । ମୌଲାନା ମହମ୍ମଦ ଆଲି ସଭାପତି ହୋଇଥିଲେ ଏବଂ ସେ ଗୋଟିଏ ଦୀର୍ଘ ବକ୍ତୃତା ଦେଇଥିଲେ । ଏହା ତାଙ୍କର ପ୍ରକୃତି; ମାତ୍ର ଏହା ବେଶ୍ ହୋଇଥିଲା । ମୁସଲମାନଙ୍କ ଭିତରେ ରାଜନୀତିକ ଓ ସାମ୍ପ୍ରଦାୟିକତାର ବୃଦ୍ଧି କଥା ସେ ଆଲୋଚନା କରିଥିଲେ । ୧୯୦୬ ମସିହାରେ ଆଗାଖାଙ୍କ ନେତୃତ୍ୱରେ ଯେଉଁ ମୁସଲମାନ ଡେପୁଟେସନ ବଡ଼ଲାଟଙ୍କ ନିକଟକୁ ଯାଇଥିଲା, ତାହା ଫଳରେ ପ୍ରଥମେ ପୃଥକ ନିର୍ବାଚନକୁ ସମର୍ଥନ କରି ଏକ ସରକାରୀ ଘୋଷଣା ପ୍ରକାଶ ପାଇଥିଲା । ସେ ଦେଖାଇ ଦେଲେ ଯେ, ଏହା ଏକ ସାମ୍ପ୍ରଦାୟିକ କାର୍ଯ୍ୟ ଏବଂ ସରକାରଙ୍କ ଦ୍ୱାରା ସୃଷ୍ଟି କରାଯାଇଥିଲା ।

ମୋର ଅନିଚ୍ଛା ସତ୍ତ୍ୱେ ସେ ସଭାପତି ରହିଥିବା ବେଳେ ମୁଁ ନିଖିଳ ଭାରତ କଂଗ୍ରେସ କମିଟିର ସମ୍ପାଦକ ହେବା ପାଇଁ ସେ ମୋତେ ପ୍ରବର୍ତ୍ତାଇଲେ । ଏପରି କାର୍ଯ୍ୟରେ ଦାୟିତ୍ୱ ନେବାକୁ ମୋର ଇଚ୍ଛା ନ ଥିଲା; କାରଣ ଭବିଷ୍ୟତ ନୀତି ସମ୍ବନ୍ଧରେ ମୋର ମନ ପରିଷ୍କାର ନ ଥିଲା । ମାତ୍ର ମହମ୍ମଦ ଆଲିଙ୍କ କଥାରେ ମୁଁ ବାଧା ଦେଇ ପାରିଲି ନାହିଁ, କାରଣ ଆମେ ଦୁହେଁ ହିଁ ଅନୁଭବ କଲୁଁ ଯେ ମୋ ଛଡ଼ା ଅନ୍ୟ କୌଣସି ସମ୍ପାଦକ ଏପରି ମିଳିମିଶି ନୂଆ ସଭାପତିଙ୍କ ସହ କାର୍ଯ୍ୟ ଚଳାଇ ପାରିବ ନାହିଁ । ତାଙ୍କର ମଧ୍ୟ ଗଭୀର ଆଦର ଓ ଅନାଦର ଭାବ ଥିଲା ଏବଂ ଭାଗ୍ୟକ୍ରମେ ମୁଁ ତାଙ୍କର 'ଆଦର' ପାତ୍ରଙ୍କ ଭିତରୁ ଜଣେ ହୋଇଥିଲି । ପରସ୍ପର ସ୍ନେହ ଓ ଅନୁରାଗ ଆମ ଦୁହିଁଙ୍କୁ ବାନ୍ଧି ରଖିଥିଲା । ସେ ଗଭୀର ଏବଂ ତୀବ୍ର ଭାବରେ ଧର୍ମପ୍ରାଣ ଥିଲେ । ମାତ୍ର ମୋର ସେପରି ଭାବ କିଛି ନ ଥିଲା । କିନ୍ତୁ ତାଙ୍କର ନିଷ୍ଠା, ଅନୁପମ ଶକ୍ତି ଏବଂ ଖାଣ୍ଟି ସରଳତା ପ୍ରତି ମୁଁ ଆକୃଷ୍ଟ ହୋଇଥିଲି । ସେ ପରିହାସ ରସିକ ଥିଲେ, ମାତ୍ର ସମୟ ସମୟରେ ତାଙ୍କ ତୀବ୍ର ପରିହାସରେ ସେ ଅନ୍ୟମାନଙ୍କ ମନରେ କଷ୍ଟ ଦେଉଥିଲେ ଏବଂ ଏଥିଲାଗି ସେ ଅନେକ ବନ୍ଧୁ ହରାଇଛନ୍ତି । କାହା ବିଷୟରେ ତାଙ୍କ ମନରେ କୌଣସି କଥା ଜାଗ୍ରତ ହେଲେ ତାହା ଚତୁରତାର ସହିତ ନିଜ ଭିତରେ ଗୋପନ କରି ରଖିବା ତାଙ୍କ ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ ଥିଲା । ଫଳାଫଳ କିଛି ନ ବିଚାରି ସେ କହି ପକାଉଥିଲେ ।

ଅନେକ ଛୋଟ ଛୋଟ କଥାରେ ଆମର ମତଭେଦ ହେଉଥିଲେ ସୁଦ୍ଧା ସେ ବର୍ଷକ ଆମେ ବେଶ ମିଳିମିଶି ଚଳାଇ ନେଲୁ । କାହାର ନାମ ପଛରେ ବା ଆଗରେ କିଛି ମାତ୍ର ବା ଉପାଧି ଆଦି ନ ଲଗାଇ ଖାଲି ନାମଟି ନିଖିଲ ଭାରତ କଂଗ୍ରେସ ଅଫିସ କାଗଜପତ୍ରରେ କାହାରିକୁ ଲେଖିଲାବେଳେ ଲେଖିବା ନିମନ୍ତେ ମୁଁ କହିଲି । ଭାରତରେ ଏ ସବୁ ଖୁବ ବେଶି ପ୍ରଚଳନ ଅଛି । ଯଥା :—ମହାତ୍ମା; ମୌଲାନା, ପଣ୍ଡିତ, ଶେଖ, ସୟଦ, ମୁନ୍‌ସି, ମୌଲଭୀ । ପୁଣି ଥରେ ହେଲା ଶ୍ରୀଯୁକ୍ତ, ଶ୍ରୀ, ଏହା ଛଡ଼ା ମିଷ୍ଟର, ଏସ୍କୋୟାର ତ ଅଛି । ଏ ସବୁ ଅଦରକାରୀ ଭାବରେ ଏତେ

ବହୁଳ ପ୍ରଚାର ବନ୍ଦ କରି ଏକ ଆଦର୍ଶ ଗଢ଼ିବା ନିମନ୍ତେ ମୁଁ ଇଚ୍ଛା କରିଥିଲି । ମାତ୍ର ମୋ କଥା ରହିଲା ନାହିଁ । ମହମ୍ମଦ ଅଲ୍ଲୀ ମୋତେ ଏକ ତାର ପଠାଇ ସ୍ପଷ୍ଟ ଭାବରେ ହୁକୁମ ଦେଲେ । ଏଥିପୂର୍ବରୁ ଯେପରି ଭାବରେ ଲେଖା ଯାଉଥିଲା, ସେପରି ଲେଖାହେବ, ବିଶେଷତଃ ଗାନ୍ଧୀଜୀଙ୍କ ନାମ ପଛରେ ସର୍ବଦା ମହାତ୍ମା ଲାଗିବ ।

ଅନେକ ସମୟରେ ସଙ୍କେତମାନଙ୍କ ସମ୍ବନ୍ଧରେ ଆମ ଦୁହିଁଙ୍କ ଭିତରେ ଖୁବ୍ ଯୁକ୍ତିତର୍କ ଚାଲେ । ମହମ୍ମଦ ଅଲ୍ଲୀ ସବୁକଥାରେ ଭଗବାନଙ୍କ ନାମ ଆଣି ରଖୁଥିଲେ—ଏପରି କି କଂଗ୍ରେସ ପ୍ରସ୍ତାବମାନଙ୍କରେ କୃତଜ୍ଞତା ପ୍ରକାଶପାଇଁ ଲମ୍ବା ପ୍ରାର୍ଥନା କଲାଭଳି ସେ ଭଗବାନଙ୍କ ନାମ ଆଣି ପୂରାଉଥିଲେ । ମୁଁ ଏହାର ପ୍ରତିବାଦ କରେଁ; ଏଥିଲାଗି ମୁଁ ଧର୍ମବିରୋଧୀ ବୋଲି ସେ ମୋତେ ଗାଳି ଦିଅନ୍ତି । କିନ୍ତୁ ଅତି ଆଶ୍ଚର୍ଯ୍ୟ କଥା ଯେ, ସେ ମୋତେ ପରେ କହିଲେ ମୁଁ ଧର୍ମ ବିରୁଦ୍ଧରେ କହିଲେ ମଧ୍ୟ ଏବଂ ମୋର ବାହାର ଆଚରଣ ଧର୍ମର ସମ୍ପୂର୍ଣ୍ଣ ବିପରୀତ ହୋଇଥିବା ସତ୍ତ୍ୱେ ମୁଁ ଜଣେ ଧାର୍ମିକ ଲୋକ ବୋଲି ତାଙ୍କର ଧାରଣା ଥିଲା । ତାଙ୍କ କଥାରେ କେତେଦୂର ସତ୍ୟତା ଅଛି ମୁଁ ଜାଣେ ନା । ବୋଧହୁଏ ଧାର୍ମିକର ଅର୍ଥ ଉପରେ ଏହା ନିର୍ଭର କରେ ।

ମୁଁ ତାଙ୍କ ସହିତ ଧର୍ମ ସମ୍ବନ୍ଧରେ ଆଲୋଚନା ପ୍ରାୟ କରୁ ନଥିଲି; କାରଣ ମୁଁ ଜାଣିଥିଲି ଏତଦ୍ଦ୍ୱାରା ଆମେ ଦୁହେଁ ଖାଲି ବିରକ୍ତ ହେବୁ ଏବଂ ମୋ କଥାରେ ସେ ଆଘାତ ପାଇ ପାରନ୍ତି । ଯେଉଁମାନେ ଏକ ଧର୍ମ ସମ୍ବନ୍ଧରେ ପୂର୍ଣ୍ଣ ବିଶ୍ୱାସ କରି ସାରିଛନ୍ତି, ସେମାନଙ୍କ ସହିତ ଆଲୋଚନା କରିବା କଷ୍ଟକର । ସମ୍ଭବତଃ ଅଧିକାଂଶ ମୁସଲମାନଙ୍କ ସଙ୍ଗ ଓ ସମ୍ବନ୍ଧରେ ଆଲୋଚନା କରିବା ଅଧିକ କଷ୍ଟକର, କାରଣ ଏ ସମ୍ବନ୍ଧରେ ଚିନ୍ତା କରିବା ନିମନ୍ତେ ସେମାନଙ୍କର ସ୍ୱାଧୀନତା ନ ଥାଏ । ସେମାନଙ୍କ ମତବାଦ ସିଧା ଏବଂ ସୂକ୍ଷ୍ମ—ଏହି ଧର୍ମବିଶ୍ୱାସୀ ଡାହାଣ ବା ବାମଦିଗରୁ ବିଚଳିତ ହୋଇ ପାରିବ ନାହିଁ । ସର୍ବତ୍ର ନ ହେଲେ ବହୁ ହିନ୍ଦୁମାନେ

ଟିକିଏ ସ୍ୱତନ୍ତ୍ର । ବାରବାରରେ ସେମାନେ ଅତ୍ୟନ୍ତ ରକ୍ଷଣଶୀଳ, ସେମାନେ ଅନେକ ସମୟରେ ଅତି ପୁରୁଣା, ପ୍ରତିକ୍ରିୟାଶୀଳ; ଏପରିକ ଛଡ଼ାବାର ନୀତିସବୁ ପାଳନ କରନ୍ତି; ତଥାପି ଧର୍ମ ସମ୍ବନ୍ଧରେ ଅତି ଆଧୁନିକ ମତ ସମ୍ବନ୍ଧରେ ସେମାନେ ଆଲୋଚନା କରିବାକୁ ସାଧାରଣତଃ ପ୍ରସ୍ତୁତ ଥାଆନ୍ତି । ମୋର ଅନୁମାନ ଆଧୁନିକ ଆର୍ଯ୍ୟ ସମାଜବାଦୀଙ୍କର ଧର୍ମ ପ୍ରତି ଏପରି ମନୋଭାବ ନାହିଁ । ମୁସଲମାନମାନଙ୍କ ପରି ସେମାନେ ମଧ୍ୟ ସରଳ ଓ ସ୍ପଷ୍ଟ ପଥରେ ଯାଆନ୍ତି । ବର୍ତ୍ତମାନ ହିନ୍ଦୁଙ୍କ ଭିତରେ ଗୋଟାଏ ପ୍ରକାର ଦାର୍ଶନିକ ଭାବ ଥାଏ; ଏହା ଧର୍ମ ଆଚରଣକୁ ସ୍ପର୍ଶ ନ କରୁଥିଲେ ସୁଦ୍ଧା ଧାର୍ମିକ ସମସ୍ୟାର ଆଦର୍ଶ ଆଲୋଚନାରେ ସ୍ୱାତନ୍ତ୍ର୍ୟ ଦେଖାଯାଏ । ମୋର ମନେହୁଏ ହିନ୍ଦୁ ଧର୍ମ ଭିତରେ ଯେଉଁସବୁ ବିରୋଧୀ ମତ ଓ ନୀତି ସବୁ ପ୍ରବେଶ କରିଛି, କେତେକାଂଶରେ ସେଥିଯୋଗୁ ଏହା ସମ୍ଭବ ହୋଇଛି । ବାସ୍ତବିକ୍ ଅନେକ ସମୟରେ କୁହାଯାଏ ଧର୍ମ ଶବ୍ଦ ସାଧାରଣତଃ ଯେଉଁ ଅର୍ଥ ବୁଝାଏ ସେହି ଭାବରେ, ଦେଖିଲେ ହିନ୍ଦୁ ଧର୍ମକୁ ଧର୍ମ କୁହାଯିବ ନାହିଁ । ଏହାର ଅଦ୍ଭୁତ ଦୃଢ଼ତା ଓ ଜୀବନଶକ୍ତି ଜଣେ ନିଜକୁ ନିରୀଶ୍ୱରବାଦୀ ବୋଲି ଘୋଷଣା କରି ସୁଦ୍ଧା ହିନ୍ଦୁ ବୋଲି ପରିଚିତ ହୋଇ ପାରିବ । ପୁରାତନ ହିନ୍ଦୁ ଦାର୍ଶନିକ ଚାର୍ବାକ୍ ମଧ୍ୟ ନିରୀଶ୍ୱରବାଦୀ ଥିଲେ । ହିନ୍ଦୁର ସନ୍ତାନମାନେ ନିଜ ଇଚ୍ଛା ବିରୁଦ୍ଧରେ ମଧ୍ୟ ହିନ୍ଦୁ ବୋଲି ପରିଚିତ ହୁଅନ୍ତି । ମୁଁ ଏକ ବ୍ରାହ୍ମଣଘରେ ଜନ୍ମ ହୋଇଛି ଧର୍ମ ବା ସାମାଜିକ ନୀତି ସମ୍ବନ୍ଧରେ ମୁଁ ପଛକେ ଯାହା କହେ ବା କରେ ମୁଁ ବରାବର ବ୍ରାହ୍ମଣ ହୋଇ ରହିଥିବି । ମୋ ନା ପଛରେ ପଣ୍ଡିତ ବା ଅନ୍ୟ କୌଣସି ସମ୍ମାନଜନକ ଉପାଧି ରଖିବାର ମୁଁ ପକ୍ଷପାତୀ ନ ହୋଇଥିଲେ ସୁଦ୍ଧା ମୁଁ ଭାରତରେ ପଣ୍ଡିତ ବୋଲି ପରିଚିତ । ମୋର ମନେ ଅଛି ଥରେ ମୁଁ ଯୁକ୍ତରାଜ୍ୟରେ ଜଣେ ହୁରଷ୍ଟର ବିଦ୍ୱାନ ଲୋକଙ୍କ ସହିତ ସାକ୍ଷାତ କରିବାକୁ ଯାଇଥିଲି । ମୋର ସାକ୍ଷାତ ହେବା ପୂର୍ବରୁ ମୋର ପରିଚୟ ପାଇବା ପାଇଁ ତାଙ୍କ ନିକଟକୁ ଖଣ୍ଡିଏ ଚିଠି ଯାଇଥିଲା—ସେଥିରେ ମୁଁ "ପଣ୍ଡିତ ଜହରଲାଲ ନେହେରୁ" ବୋଲି ଲେଖା ଥିଲା । ସେ ମୋତେ ଦେଖି ଟିକିଏ ଆଶ୍ଚର୍ଯ୍ୟ ହେଲେ ଓ

ହୃତାଙ୍ଗି ହେଲେ ମଧ୍ୟ । କାରଣ ସେ ମୋତେ କହିଲେ ଯେ ମୋ ନାମ ପଛରେ 'ପଣ୍ଡିତ' ଲାଗିଥିବାରୁ ମୁଁ ଜଣେ ବୟସ୍କ, ଧାର୍ମିକ ଓ ବିଦ୍ୱାନ ଲୋକ ହୋଇଥିବି ବୋଲି ତାଙ୍କ ଧାରଣା ଥିଲା ।

ମୁଁ ଓ ମହମ୍ମଦ ଆଲି ଧର୍ମ ସମ୍ବନ୍ଧରେ ଆଲୋଚନା କରୁ ନ ଥିଲୁ । ମାତ୍ର ନୀରବ ରହିବା ଗୁଣ ତାଙ୍କଠାରେ ନ ଥିଲା । କେତେକ ବର୍ଷ ପରେ (ମୋର ମନେ ହୁଏ ୧୯୨୫ ରେ କିମ୍ବା ୧୯୨୬ ର ପ୍ରଥମ ଭାଗରେ) ସେ ସମ୍ବନ୍ଧରେ ନିଜକୁ ଚୁପ୍ କରି ରଖି ପାରିଲେ ନାହିଁ । ମୁଁ ଦିଲ୍ଲୀରେ ତାଙ୍କ ଘରକୁ ଥରେ ଯାଇଥିଲିବେଳେ ସେ ମୋ ସହିତ ଧର୍ମ ସମ୍ବନ୍ଧରେ ଆଲୋଚନା କରିବାକୁ ଜୋର ଦେଲେ । ମୁଁ ଏଥିରୁ ତାଙ୍କୁ ନିବର୍ତ୍ତାଇବାକୁ ଚେଷ୍ଟା କଲି; ମୁଁ କହିଲି ଯେ ଆମର ଦୃଷ୍ଟିକୋଣ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଏବଂ ପରସ୍ପର କେହି କାହାକୁ ବୁଝାଇ ପାରିବ ନାହିଁ । ସେ କହିଲେ, "ନା ଆମେ ଅବଶ୍ୟ ଆଲୋଚନା କରିବା । ତୁମେ ମୋତେ ଏକ ଧର୍ମାନ୍ଧ ବୋଲି ମନେ କର । ମୁଁ ତୁମ ଆଗରେ ଦେଖାଇ ଦେବାକୁ ଚାହେଁ ଯେ ମୁଁ ତାହା ନୁହେଁ ।" ସେ ମୋତେ କହିଲେ ଧର୍ମ ସମ୍ବନ୍ଧରେ ସେ ଗଭୀର ଓ ବ୍ୟାପକ ରୂପେ ଅଧ୍ୟୟନ କରିଛନ୍ତି ! ସେ ତାଙ୍କ ଆଲମାରିରୁ ଅନେକ ଧର୍ମ ପୁସ୍ତକ ମୋତେ ଦେଖାଇଲେ । ବିଶେଷତଃ ଇସଲାମ୍, ଖ୍ରୀଷ୍ଟଧର୍ମ ଏବଂ ଏଚ୍. ଜି, ୱେଲ୍‌ସଙ୍କର ପ୍ରଣୀତ ଗଡ୍ ଦି ଇନଭିଜିବ୍ଲ କିଙ୍ଗ୍ (God, The Invisible King) ଆଦି ଆଧୁନିକ ପୁସ୍ତକ ମୋତେ ଦେଖାଇଲେ । ଯୁଦ୍ଧ ସମୟରେ ସେ ଯେଉଁ ସାଢ଼େଚାରି ଅନ୍ତରୀଣ ବନ୍ଦୀରୂପେ ରହିଥିଲେ, ସେଥିରେ ସେ ବାରମ୍ବାର କୋରାନ୍ ପାଠ କରି ଏ ସମ୍ବନ୍ଧରେ ଯେତେ ବ୍ୟାଖ୍ୟା ପ୍ରକାଶ ପାଇଥିଲା, ତାହା ମଧ୍ୟ ଜାଣିଥିଲେ । ସେ ମୋତେ କହିଲେ ଯେ, ଏହି ଅଧ୍ୟୟନ ଫଳରେ ସେ ଦେଖି ପାରିଥିଲେ କୋରାନ୍‌ରେ ଯାହା ଲେଖାଅଛି, ତହିଁର ଶତକଡ଼ା ନବେ ହେଉଛି ଯୁକ୍ତିଯୁକ୍ତ ଏବଂ କୋରାନ୍ ଛଡ଼ା ମଧ୍ୟ ତାହାର ଯଥାର୍ଥତା ପ୍ରମାଣିତ ହୋଇପାରେ । ଅବଶିଷ୍ଟ ଦଶ ଅଂଶକୁ ମୂଳତଃ ସ୍ୱତନ୍ତ୍ରଭାବ ସମର୍ଥନ କରିହେବ ନାହିଁ । ସେ ଭାବୁଥିଲେ, ଯେଉଁ କୋରାନର

ଶତକଡ଼ା ଶତ ଭାଗରେ ଯଥାର୍ଥ, ତାହାର ଅବଶିଷ୍ଟ କେତେ ଅଂଶ ମଧ୍ୟ ନିଶ୍ଚୟ ଯଥାର୍ଥ ହେବାର ସମ୍ଭାବନା । ତାଙ୍କ କଥା ଭୁଲ ହୋଇ ଥାଇପାରେ । ସେଥିଲାଗି ସେ କୌଣସି ଠିକ୍ ବୋଲି ସିଦ୍ଧାନ୍ତରେ ପହଞ୍ଚିଲେ ଏବଂ ଏହା ସମ୍ପୂର୍ଣ୍ଣ ଠିକ୍ ବୋଲି ମାନିନେଲେ ।

ଏହି ମନ୍ତ୍ରର ଯଥାର୍ଥତା ମୋର ପସନ୍ଦ ହେଲା ନାହିଁ । ମାତ୍ର ମୁଁ ମୁହଁ ଖୋଲିବାକୁ ଚାହିଁଲି ନାହିଁ । ତା ପରେ ଯାହା ହେଲା ସେଥିରେ ବାସ୍ତବିକ ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ମହମ୍ମଦ ଆଲି କହିଲେ, ଏ ସମ୍ବନ୍ଧରେ ତାଙ୍କର ନିଷ୍ଠ ଧାରଣା ଯେ, ଯଦି କୌଣସି ଲୋକ ଖୋଲା ମନରେ କୋରାନ୍ ପାଠ କରେ, ସେ ଏହାର ସତ୍ୟତା ନିଶ୍ଚୟ ଉପଲବ୍ଧି କରିପାରିବ । ସେ କହିଲେ ଯେ, ବାପୁ (ଗାନ୍ଧିଜୀ) ଏହାକୁ ଯତ୍ନର ସହିତ ପଢ଼ିଛନ୍ତି ବୋଲି ସେ ଜାଣନ୍ତି ଏବଂ ସେ ମଧ୍ୟ ଇସ୍‌ଲାମର ସତ୍ୟତା ଉପଲବ୍ଧି କରିପାରିଥିବେ । ମାତ୍ର ଅହଙ୍କାର ଯୋଗୁଁ ସେ ପ୍ରକାଶ୍ୟରେ ଏହା ଘୋଷଣା କରୁ ନ ଥିଲେ ।

ସେ ସଙ୍କୁଚିତ ହୋଇଥିବା ବର୍ଷକ ପରେ ମହମ୍ମଦ ଆଲି ଜାତୀୟ କଂଗ୍ରେସକୁ ଛାଡ଼ିଲେ କିମ୍ବା ତାଙ୍କ କହିବାନୁସାରେ କଂଗ୍ରେସ ତାଙ୍କଠାରୁ ଦୂରକୁ ଚାଲିଗଲା । ମାତ୍ର ଏହା ଧୀରେ ଧୀରେ ହେଲା । ସେ କଂଗ୍ରେସ ଓ ନି· ଭା· କଂଗ୍ରେସ କମିଟିର ବୈଠକରେ ଯୋଗ ଦେଉଥାନ୍ତି ଓ କେତେକ ବର୍ଷ ପର୍ଯ୍ୟନ୍ତ ସେଥିରେ ଖୁବ୍ ଉତ୍ସାହର ସହିତ ଆଲୋଚନାରେ ଯୋଗ ଦେଉଥାନ୍ତି । ମାତ୍ର ପାର୍ଥକ୍ୟ ବଢ଼ିଲା ଏବଂ ମତଭେଦ ବେଶୀ ହେଲା । ସମ୍ଭବତଃ ଏଥିଯୋଗୁଁ କୌଣସି ବ୍ୟକ୍ତିବିଶେଷ ଦାୟୀ ନୁହନ୍ତି; ଦେଶର କେତେକ ଅବସ୍ଥାର ଏହା ଅବଶ୍ୟମ୍ଭାବୀ ଫଳ । ମାତ୍ର ଏହା ଏକ ଦୁର୍ଭାଗ୍ୟ କଥା ହେଲା—ଏଥିରେ ଆମ ଭିତରୁ ଅନେକ ଦୁଃଖିତ ହେଲୁ । ସାମ୍ପ୍ରଦାୟିକ ସମସ୍ୟାରେ ଯାହା ମତଭେଦ ଥାଉ ପଛକେ ରାଜନୀତିକ ସମସ୍ୟାରେ ଖୁବ୍ କମ ପାର୍ଥକ୍ୟ ଥିଲା । ସେ ସ୍ୱଦେଶର ସ୍ୱାଧୀନତା ଆଦର୍ଶକୁ ମାନୁଥିଲେ । ଏହି ସାଧାରଣ ରାଜନୀତିକ ଦୃଷ୍ଟି-କୋଣ ହେତୁ ସାମ୍ପ୍ରଦାୟିକ ସମସ୍ୟାରେ ତାଙ୍କ ସହିତ ଏକ ସନ୍ତୋଷ-

ଜନକ ଗଜନାମାରେ ପଢ଼ୁଥିବା ସମ୍ଭବ ହେଉଥିଲା । ଯେଉଁସବୁ ପ୍ରତିନିଧି ସ୍ୱା ଧନୀମାନେ ସାମ୍ପ୍ରଦାୟିକ ସ୍ୱାର୍ଥ ରକ୍ଷକ ଭାବରେ ଦେଖାଗ ହେଉଥିଲେ, ସେମାନଙ୍କ ସହିତ ତାଙ୍କର ନିଜନିଜର ଦୃଷ୍ଟିକୋଣ ଏକ ନ ଥିଲା ।

୧୯୨୮ ମସିହା ଗ୍ରୀଷ୍ମ ଋତୁରେ ହଠାତ ଛାଡ଼ି ତାଙ୍କର ଇଉରୋପ ଯାତ୍ରା ଭାରତ ପକ୍ଷରେ ଦୁର୍ଭାଗ୍ୟର କଥା । ସେତେବେଳେ ସାମ୍ପ୍ରଦାୟିକ ସମସ୍ୟାର ସମାଧାନ ନିମନ୍ତେ ପ୍ରବଳ ଉଦ୍ୟମ ହୋଇଥିଲା ଏବଂ ଅନେକ ପଥମାନେ ସଫଳ ବି ହେବାକୁ ବସିଥିଲା । ମହମ୍ମଦ ଅଲି ଏ ଦେଶରେ ଥିଲେ ଅନ୍ୟ ଭାବରେ ଏହି ପରିସ୍ଥିତି ଗଢ଼ି କରିଥାଆନ୍ତା । ମାତ୍ର ସେ ଫେରି ଆସିଲା ବେଳକୁ ଏ ସମ୍ବନ୍ଧରେ ମତଭେଦ ହୋଇ ସାରିଥିଲା ଏବଂ ସେ ବାଧ୍ୟ ହୋଇ ଅନ୍ୟ ପକ୍ଷରେ ଯୋଗ ଦେଲେ ।

ଦୁଇବର୍ଷ ପରେ ୧୯୩୦ ରେ ଅନେକ କଂଗ୍ରେସ ଲୋକ ଜେଲରେ ଥାଉଥିଲାବେଳେ ଏବଂ ଆଇନ ଅମାନ୍ୟ ଆନ୍ଦୋଳନ ଖୁବ୍ ଜୋରରେ ଚାଲୁଥିବା ଅବସ୍ଥାରେ ମହମ୍ମଦ ଅଲି କଂଗ୍ରେସର ସିଦ୍ଧାନ୍ତକୁ ଉପେକ୍ଷା କରି ଗୋଲ ଟେବୁଲ ସମ୍ମିଳନୀରେ ଯୋଗ ଦେଲେ । ତାଙ୍କର ଯିବାଦ୍ୱାରା ମୋ ମନରେ ଆଘାତ ହେଲା । ମୋର ବିଶ୍ୱାସ ସେ ନିଜେ ଯିବାଦ୍ୱାରା ବଡ଼ ଅସୁଖୀ ଥିଲେ ଏବଂ ଲଣ୍ଡନରେ ତାଙ୍କ କାର୍ଯ୍ୟ କଳାପ ଦେଖିଲେ ଏହାର ଯଥେଷ୍ଟ ପ୍ରମାଣ ମିଳେ । ସେ ଅନୁତାପ କଲେ ଯେ, ତାଙ୍କର ସ୍ଥାନ ଲଣ୍ଡନର ଏହି ନିରର୍ଥକ ସମ୍ମିଳନୀରେ ନୁହେଁ, ଭାରତର ସଂଗ୍ରାମ ତାଙ୍କର ଉପଯୁକ୍ତ କ୍ଷେତ୍ର । ମୋର ନିଶ୍ଚିତ ବିଶ୍ୱାସ, ସେ ଯଦି ଦେଶକୁ ସେତେବେଳେ ଫେରି ଆସି ପାରିଥାନ୍ତେ, ତେବେ ସଂଗ୍ରାମରେ ଯୋଗ ଦେଇଥାନ୍ତେ । ତାଙ୍କ ସ୍ୱାସ୍ଥ୍ୟ ବଡ଼ ଖରାପ ଥିଲା ଏବଂ ଅନେକ ଦିନ ପର୍ଯ୍ୟନ୍ତ ସେ ବଡ଼ ରୋଗାକ୍ରାନ୍ତ ହୋଇ ପଡ଼ିଥିଲେ । ତାଙ୍କର ବିଶ୍ରାମ ଓ ଚିକିତ୍ସା ଅତ୍ୟନ୍ତ ଆବଶ୍ୟକ ଥିବାବେଳେ ସେ କିଛି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିବା ନିମନ୍ତେ ଲଣ୍ଡନରେ ଅତିଶୟ ବ୍ୟଗ୍ରତାର ସହିତ କାର୍ଯ୍ୟ କଲେ । ତାହା ଫଳରେ ତାଙ୍କର ମୃତ୍ୟୁ ନିକଟବର୍ତ୍ତୀ ହୋଇଗଲା । ନୈନି ଜେଲ ଭିତରେ ଅଳ୍ପ ଦିନ ପରେ ତାଙ୍କର ମୃତ୍ୟୁ ସମ୍ବାଦ ମୋଠାରେ ଆସି ପହଞ୍ଚିଲା ।

୧୯୨୯ ମସିହା ଡିସେମ୍ବର ମାସ ଲାହୋର କଂଗ୍ରେସ ସମୟରେ ତାଙ୍କ ସହିତ ମୋର ଶେଷ ଦେଖା । ମୋର ସକ୍ରିୟ ଉଦ୍ଦେଶ୍ୟର କେତେକାଂଶ ତାଙ୍କ ମନକୁ ପାଉନ ନାହିଁ ଏବଂ ସେ ତାହାର କଠୋର ସମାଲୋଚନା କଲେ । ସେ ଦେଖିଲେ ଯେ କଂଗ୍ରେସ ଆଗକୁ ଗତି କରୁଛି ଏବଂ ରାଜନୀତିକ ଭାବରେ ଅଧିକ ଉଗ୍ର ହୋଇଯାଉଛି । ସେ ନିଜେ ଜଣେ ଆକ୍ରମଣକାରୀ ଥିଲେ—ତେଣୁ ଅନ୍ୟମାନେ ଆଗକୁ ପାଉଥିବାବେଳେ, ସେ ପଛରେ ପଡ଼ି ରହିବାଟା ପସନ୍ଦ କରୁ ନ ଥିଲେ । ସେ ମୋତେ ସତର୍କ ବାଣୀ ଶୁଣାଇଥିଲେ—ଜବାହର ! ମୁଁ ତମକୁ ସତର୍କ କରି ଦେଉଛି ଯେ, ତମର ବର୍ତ୍ତମାନ ସହକର୍ମୀମାନେ ତମକୁ ଛାଡ଼ିଦେବେ ଏବଂ ସଙ୍କଟ ସମୟରେ ତମକୁ ଏକାକୀ ସେମାନେ ଛାଡ଼ି ପଳାଇବେ । ତମର ନିଜ କଂଗ୍ରେସ ଲୋକେ ତମକୁ ଫାଶି କାଠରେ ଝୁଲାଇ ଦେବେ । କି ଶୋଚନୀୟ ଭବିଷ୍ୟତ ବାଣୀ ।

୧୯୨୩ ଡିସେମ୍ବରରେ ହୋଇଥିବା କୋକନଡ଼ା କଂଗ୍ରେସ ପ୍ରତି ମୋର ଗୋଟାଏ ବିଶେଷ ଆଗ୍ରହ ଥିଲା—କାରଣ ଏହିଠାରେ ନିଖିଳ-ଭାରତ ସ୍ୱେଚ୍ଛାସେବକ ସଂଗଠନ ହିନ୍ଦୁସ୍ତାନୀ ସେବାଦଳର ମୂଳଦୁଆ ସ୍ଥାପନ କରାଗଲା । ଅବଶ୍ୟ ଏଥିପୂର୍ବରୁ ସ୍ୱେଚ୍ଛାସେବକ ସଂଗଠନର କିଛି ଅଭାବ ନ ଥିଲା—ସଂଗଠନ କାର୍ଯ୍ୟରେ ଲାଗିଥିଲେ ଓ ଜେଲ ଅନେକ ଯାଇଥିଲେ । ମାତ୍ର ଏମାନଙ୍କ ଭିତରେ ଶୃଙ୍ଖଳା ନ ଥିଲା, ଏକତ୍ରିତ ବ ନ ଥିଲା । କଂଗ୍ରେସର ସାଧାରଣ ପରିଚାଳନାରେ ଏକ ସୁଶୃଙ୍ଖଳିତ ନିଖିଳ ଭାରତ ସ୍ୱେଚ୍ଛାସେବକ ବାହିନୀ ଗଢ଼ି ସେମାନଙ୍କୁ ଜାତୀୟ କାର୍ଯ୍ୟରେ ବ୍ୟସ୍ତ କରାଇବା ଧାରଣା ପ୍ରଥମେ ଡାକ୍ତର ଏନ୍. ଏସ୍. ହାର୍ଦ୍ଦିକରଙ୍କ ମନରେ ପ୍ରବେଶ କଲା । ଏଥିରେ ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ସେ ମୋତେ ଲୋଡ଼ିଲେ ଏବଂ ଆନନ୍ଦର ସହିତ ମୁଁ ଏହା କଲି । କାରଣ ଏହି ଧାରଣା ମୋ ମନକୁ ପାଇଲା । କୋକନଡ଼ାରେ ଏହାର ଶୁଭ ଉଦ୍ଘାଟନ ହେଲା । ଅନ୍ୟ କଂଗ୍ରେସ ଲୋକେ ପଛେ ଜୋରରେ ଏହାର ବିରୋଧ କଲେ ଦେଖି ଆମେ ଚକିତ ହେଲୁ । କେତେକ କହିଲେ କଂଗ୍ରେସର ଏକ ଅଦ୍ଭୁତ ପରିବର୍ତ୍ତନ ହେବ—କାରଣ ଏହାଦ୍ୱାରା ଏକ ସାମରିକ ଶକ୍ତି କଂଗ୍ରେସରେ

ବୃଦ୍ଧି ପାଇବ ଏବଂ ଏହା ଅନ୍ୟମାନଙ୍କ ଉପରେ ପ୍ରାଧାନ୍ୟ ଲଭିପାରିବ । କେତେକ କହୁଥିଲେ ଯେ, ଉପରୁ ଆଦେଶ ମାନିବାକୁ ସ୍ୱେଚ୍ଛାସେବକମାନଙ୍କର ଏକମାତ୍ର ଶୃଙ୍ଖଳା ହେବା ଉଚିତ । ଅବଶିଷ୍ଟ ଲୋକେ ଏପରି ଯୋଦ୍ଧା ମିଳାଇ ଗୃହବାହୀ ବାହିନୀ ବୋଲି ଭାବୁ ନ ଥିଲେ । ଅନେକଙ୍କ ମନ ପଛରେ ଏହି ଧାରଣା ଥିଲା ଯେ, କଂଗ୍ରେସର ଅହିଂସା ନୀତି ସହିତ ଶିକ୍ଷିତ ଏବଂ ଶୃଙ୍ଖଳିତ ସ୍ୱେଚ୍ଛାସେବକବାହିନୀ ଖାପ ଖାଉ ନାହିଁ । ଯାହାହେଉ ହାର୍ଦ୍ଦିକର ଏଥିରେ ଲାଗି ପଡ଼ିଥିଲେ ଏବଂ ଅନେକ ବର୍ଷ କଠିନ ପରିଶ୍ରମ ପରେ ଆମର ଶିକ୍ଷା ପାଇଥିବା ସ୍ୱେଚ୍ଛାସେବକମାନେ କପରି ସମର୍ଥ ଓ ଅହିଂସ ହୋଇ-ପାରନ୍ତି, ତାହା ସେ ଦେଖାଇ ଦେଇଥିଲେ ।

୧୯୨୪ ମସିହା ଜାନୁୟାରୀ ମାସରେ କୋକନଡ଼ାରୁ ଫେରିଲାପରେ ଏଲାହାବାଦରେ ମୋର ଏକ ନୂତନ ପ୍ରକାର ଅଭିଜ୍ଞତା ହେଲା । ମୁଁ ଏହା ମୋର ସ୍ମୃତିରୁ ଲେଖୁଛି—ତେଣୁ ତାରିଖ ଆଦି ଗୋଳମାଳ ହୋଇ-ପାରେ । ମୋର ମନେ ହେଉଛି, ଏହା ବୋଧହୁଏ କୁମ୍ଭ ବା ଅର୍ଦ୍ଧକୁମ୍ଭ ବର୍ଷ ଏବଂ ଏଲାହାବାଦରେ ଗଙ୍ଗାକୂଳରେ ଉତ୍କଟ ସ୍ନାନ ମେଳା ହୋଇଥିଲା । ବହୁସଂଖ୍ୟକ ଯାତ୍ରୀ ସାଧାରଣତଃ ଏଠାକୁ ଆସନ୍ତି — ଅଧିକାଂଶ ଲୋକେ ଗଙ୍ଗା ଯମୁନା ସଙ୍ଗମ ସ୍ଥଳରେ ସ୍ନାନ କରନ୍ତି — ଏହାକୁ ତ୍ରିବେଣୀ କହନ୍ତି ଏବଂ ପୁରାଣବର୍ଣ୍ଣିତ ସରସ୍ୱତୀ ନଦୀ ଏହି ଦୁହିଁଙ୍କ ସହିତ ମିଳନ୍ତି ବୋଲି କୁହାଯାଏ । ଗଙ୍ଗା ନଦୀ ପ୍ରାୟ ଏକ ମାଇଲ ଓସାର ମାତ୍ର । ଶୀତଋତୁରେ ନଦୀ ଶୁଖି ଯାଏ ଓ କେତେକ ବାଲୁକା ବାହାରି ପଡ଼େ । ସେଥିରେ ଯାତ୍ରୀମାନେ ଆଶ୍ରୟ ନିଅନ୍ତି । ଏଥିରେ ମଧ୍ୟ ଗଙ୍ଗା ପ୍ରାୟ ତାର ଧାରା ବଦଳାଏ । ୧୯୨୪ ରେ ଗଙ୍ଗାର ସ୍ରୋତ ଏତେ ପ୍ରଖର ହୋଇଥିଲା ଯେ, ତ୍ରିବେଣୀ ଏଠାରେ ସ୍ନାନ କରିବା ବିପଦଜନକ ହୋଇଥିଲା । ଖୁବ୍ ସତର୍କତା ଅବଲମ୍ବନ କରାଯିବାରୁ ଏବଂ ଏକ ସମୟରେ ସ୍ନାନ କରିବା ଲୋକଙ୍କ ସଂଖ୍ୟା ଆୟତ୍ତ କରାଯିବାରୁ ଏହି ଉପାୟରେ ଅନେକ ଜୀବନମାନଙ୍କରେ ରକ୍ଷା ମିଳିପାଇଥିଲା ।

ମୋର ଏଥିରେ ଆଦୌ ଆଗ୍ରହ ନ ଥିଲା, କାରଣ ଏହି ଶୁଭ ଦିନରେ ଗଙ୍ଗାରେ ସ୍ନାନ କରି ପୁଣ୍ୟ ଅର୍ଜ୍ଜନ କରିବା ଇଚ୍ଛା ମୋର ନ ଥିଲା; ମାତ୍ର ଏ ସମ୍ବନ୍ଧରେ ପଣ୍ଡିତ ମଦନମୋହନ ମାଳବ୍ୟ ଏବଂ ପ୍ରାଦେଶିକ ସରକାର ଭିତରେ ବିବାଦ ଲାଗିଥିବାର ସମ୍ବାଦପତ୍ରରେ ମୁଁ ଦେଖିଲି । ସ୍ଥାନୀୟ କର୍ତ୍ତୃପକ୍ଷମାନେ ଏକ ନୋଟିସ ଦେଇଥାନ୍ତି ଯେ, ନଦୀର ସଙ୍ଗମସ୍ଥଳମାନଙ୍କରେ କେହି ସ୍ନାନ କରିପାରିବେ ନାହିଁ । ମାଳବ୍ୟଜୀ ଏଥିରେ ଆପତ୍ତି କଲେ, କାରଣ ଧର୍ମ ଦୃଷ୍ଟିରୁ ସଙ୍ଗମସ୍ଥଳରେ ସ୍ନାନ କରିବା ଅତ୍ୟନ୍ତ ଆବଶ୍ୟକ ହେଉଥିଲା । କୌଣସି ଦୁର୍ଘଟଣା ଏବଂ ମୃତ୍ୟୁର ସମ୍ଭାବନାରୁ ରକ୍ଷା କରିବା ନିମନ୍ତେ ସରକାର ଏପରି ସତର୍କମୂଳକ ବ୍ୟବସ୍ଥା କରିବା ଯଥାର୍ଥ; ମାତ୍ର ସାଧାରଣତଃ ଯେପରି ହୋଇଥାଏ, ସରକାର ଏହା ଅତ୍ୟନ୍ତ ନିଷ୍ଠୁର ଓ ଔଦ୍ଧତ୍ୟ ଭାବରେ କଲେ ।

କୁମ୍ଭ ଦିବସରେ ମୁଁ ଖୁବ୍ ସକାଳୁ ମେଳା ଦେଖିବାକୁ ଗଲି— ଗାଧୋଇବା ଲାଗି ମୋର ଇଚ୍ଛା ନ ଥିଲା । ମୁଁ ନଦୀକୂଳରେ ପହଞ୍ଚି ଶୁଣିଲି ଯେ, ତ୍ରିବେଣୀରେ ଗାଧୋଇବା ନିମନ୍ତେ ଅନୁମତି ପାଇଁ ଏକପ୍ରକାର ଚରମପତ୍ର ମାଳବ୍ୟଜୀ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ନିକଟକୁ ପଠାଇଛନ୍ତି । ମାଳବ୍ୟଜୀ ବଡ଼ ଉତ୍ତେଜିତ ହୋଇଥାନ୍ତି ଏବଂ ବାୟୁମଣ୍ଡଳ ମଧ୍ୟ ସରଗରମ ଥାଏ । ମାଜିଷ୍ଟ୍ରେଟ ଅନୁମତି ଦେଲେ ନାହିଁ । ତା ପରେ ମାଳବ୍ୟଜୀ ସତ୍ୟାଗ୍ରହ କରିବା ସ୍ଥିର କଲେ ଏବଂ ପ୍ରାୟ ଦୁଇଶହ ଲୋକଙ୍କୁ ସାଙ୍ଗରେ ନେଇ ସ୍ନାନ କରିବା ନିମନ୍ତେ ସେ ନଦୀର ସଙ୍ଗମ ସ୍ଥଳକୁ ଯାତ୍ରା କଲେ । ମୁଁ ଏଥିରେ ଆଗ୍ରହ ନେଉଥିଲି ଏବଂ ସେହି ମୁହୂର୍ତ୍ତରେ ସେ ସତ୍ୟାଗ୍ରହ ଦଳରେ ଯୋଗ ଦେଲି । ଲୋକମାନେ ଯେପରି ସଙ୍ଗମସ୍ଥଳକୁ ଯାଇ ନ ପାରନ୍ତି, ସେଥିଲାଗି ଖୁବ୍ ବଡ଼ ବଡ଼ ଖୋଲା ସ୍ଥାନରେ ବାଡ଼ ଦିଆ ହୋଇଥିଲା । ଆମେ ଏଠାରେ ପହଞ୍ଚିବା ମାତ୍ରେ ପୁଲିସ ଆମକୁ ଅଟକାଇଲା ଏବଂ ଆମଠାରେ ଥିବା ସିଡ଼ିଟି ଛଡ଼ାଇ ନେଇଗଲା । ଅହିଂସ ସତ୍ୟାଗ୍ରହ ହୋଇଥିବାରୁ ଆମେ ଶାନ୍ତିପୂର୍ଣ୍ଣ ଭାବରେ ସେହି ବାଲିରେ ଉଚ୍ଚ ସ୍ଥାନରେ ବସି ରହିଲୁ । ସେଠାରେ ସମସ୍ତ ସକାଳ ଓ ଖରାବେଳ ଅନେକ ସମୟ ପର୍ଯ୍ୟନ୍ତ ବସି

ରହିଲୁ । ଘଣ୍ଟାକ ପରେ ଘଣ୍ଟା ବିତିଗଲା, ଖରା ପ୍ରଖର ହେଲା, ବାଲି ଗରମ ହୋଇଗଲା ଏବଂ ଆମେ ସମସ୍ତେ ବଡ଼ କ୍ଷୁଧାର୍ତ୍ତ ହେଲୁ, ଆମ ଚାରିଆଡ଼େ ଅଶସ୍ତ୍ର ଓ ସଶସ୍ତ୍ର ପୁଲିସ ଜଗି ବସିଥାଆନ୍ତି । ମୋର ମନେହୁଏ ଅଶ୍ୱାରୋହୀ ସୈନ୍ୟ ବି ସେଠି ଥାଆନ୍ତି । ଆମ ଭିତରୁ ଅଧିକାଂଶ ବଡ଼ ଅସ୍ଥିର ହୋଇଗଲେ ଏବଂ କିଛି କରିବା ଉଚିତ ବୋଲି କହିଲେ । ମୋର ବିଶ୍ୱାସ ଦକ୍ଷିଣପନ୍ଥୀମାନେ ମଧ୍ୟ ଅସ୍ଥିର ହୋଇ ପଡ଼ିଥିଲେ ଏବଂ ଆଗରୁହିଁ କିଛି କରିବାକୁ ସ୍ଥିର କରିଥିଲେ । ଯେଉଁ ଅଶ୍ୱାରୋହୀ ସୈନ୍ୟ ଘୋଡ଼ା ଉପରେ ଚଢ଼ି ବୁଲୁଥିଲେ, ତାଙ୍କୁ ଗୋଟାଏ କିଛି ହୁକୁମ ଦିଆଗଲା । ମୋତେ ହଠାତ୍ ଜଣାଗଲା (ମୁଁ ଜାଣେ ନା ଏହା ଠିକ୍ କି ନୁହେଁ) ଯେ, ସେମାନେ ଆମକୁ ତାଡ଼େଇ ବାଡ଼େଇ କିଛି ଦୂରକୁ ନେଇଯିବେ, ଅଶ୍ୱାରୋହୀମାନଙ୍କର ଶିକାର ହେବାଟା ମୋତେ ଭଲଲାଗିଲା ନାହିଁ ଏବଂ ସେଠାରେ ବସି ବସି ମୁଁ ମଧ୍ୟ ବିରକ୍ତ ହୋଇ ଯାଇଥିଲି; ତେଣୁ ମୋ ପାଖରେ ଯେଉଁମାନେ ବସିଥିଲେ, ମୁଁ ସେମାନଙ୍କୁ କହିଥିଲି ଯେ ଆମେ ବି ଏ ବାଡ଼ ଉପରେ ଚଢ଼ିଯିବା । ମୁଁ ସାଙ୍ଗେ ସାଙ୍ଗେ ତା ଉପରେ ଚଢ଼ିଗଲି । ସଙ୍ଗେ ସଙ୍ଗେ ଆହୁରି କେତେକ ଚଢ଼ିଗଲେ—ଆଉ କେତେକ କାଠ କାଢ଼ିଦେଇ ଗୋଟିଏ ଛୋଟ ଯିବା ବାଟ ମଧ୍ୟ କରିପକାଇଲେ । କେହି ଜଣେ ଗୋଟିଏ ଜାତୀୟ ପତାକା ବଢ଼ାଇ ଦେଲେ—ମୁଁ ସେହି ବାଡ଼ ଉପରେ ଚଢ଼ି ବସିଥାଏ—ସେଠାରେ ଏହା ଉଡ଼ାଇଦେଲି । ମୁଁ ବେଶ ଉତ୍ସାହିତ ହୋଇଥିଲି ଏବଂ ଅବସ୍ଥାଟିକୁ ଉପଭୋଗ କଲି । ଲୋକେ ଏଣେ ତେଣେ ଯାଉଥାନ୍ତି, ଆସୁଥାନ୍ତି ଏବଂ ଘୋଡ଼ସବାର ସେମାନଙ୍କୁ ଘଉଡ଼ାଉଥାନ୍ତି, ଏହା ମୁଁ ଲକ୍ଷ୍ୟ କରୁଥାଏ । ଅଶ୍ୱାରୋହୀମାନେ ନିରୀହଭାବରେ ସେମାନଙ୍କର କାର୍ଯ୍ୟ ଯେ କରୁଥିଲେ, ଏହା ଅବଶ୍ୟ ମୁଁ ସ୍ୱୀକାର କରେ । ସେମାନେ ଲାଠି ଠେଙ୍ଗାକୁ ଉଠାଇ ଲୋକଙ୍କୁ ପେଲି ନେଉଥାନ୍ତି, ମାତ୍ର କୌଣସି ଆଘାତ କରୁ ନ ଥାନ୍ତି । ସ୍ପେନୀ ବାଗକେଳ୍ତର କ୍ଷୀଣ ସ୍ମୃତି ମୋ ମନରେ ନାଚିଗଲା ।

ମୁଁ ଆରପାଖରେ ଓହ୍ଲାଇଲି । ଏତେ ସମୟ ବସିବା ପରେ କ୍ଳାନ୍ତ ହୋଇ ପଡ଼ିଥିବାରୁ ମୋତେ ଖୁବ୍ ଗରମ ଲାଗୁଥିଲା—ମୁଁ

ଗଳାରେ ହୁଡ଼ ପକାଇବାକୁ ସ୍ଥିର କଲି । ମୁଁ ଫେରିଆସି ମାଲବ୍ୟଜୀ ଓ ଅନ୍ୟମାନଙ୍କୁ ବାଡ଼ ସେପାଖରେ ପୂର୍ବପରି ବସିଥିବାର ଦେଖି ଆଶ୍ଚର୍ଯ୍ୟ ହେଲି । ମାତ୍ର ଅଶ୍ୱାରୋହୀ ଓ ପଦାତିକ ପୁଲିସ ସେହି ବାଡ଼ କଡ଼ରେ ସତ୍ୟାଗ୍ରହୀଙ୍କୁ ଘେରି ଥାଆନ୍ତି । ମୁଁ ମଧ୍ୟ ଗଲି (ଗୋଟାଏ ବୁଲି ବାଟରେ) ଏବଂ ମାଲବ୍ୟଜୀଙ୍କ ପାଖରେ ଯାଇ ବସିଲି । କେତେକ ସମୟ ପର୍ଯ୍ୟନ୍ତ ଆମେ ବସିଲୁ ଏବଂ ମାଲବ୍ୟଜୀ ବଡ଼ ଉତ୍ତେଜିତ ହେବାର ମୁଁ ଲକ୍ଷ୍ୟ କଲି । କେତେକ ପ୍ରବଳ ଭାବକୁ ସେ ଦମନ କରିବା ନିମନ୍ତେ ଚେଷ୍ଟା କରୁଥିବାର ଦେଖାଗଲା । ହଠାତ୍ କାହାରିକୁ କିଛି ସୂଚନା ନ ଦେଇ ସେ ପୁଲିସ ଓ ଘୋଡ଼ସବାରଙ୍କ ଭିତରେ ପଶିଲେ । ଅନ୍ୟ କାହାରି ପକ୍ଷରେ ଏହା ଏକ ଆଶ୍ଚର୍ଯ୍ୟ କଥା ହୋଇଥିବ; ମାତ୍ର ମାଲବ୍ୟଜୀଙ୍କ ପରି ଦୁର୍ବଳ ଓ ବୃଦ୍ଧ ଲୋକଙ୍କ ପକ୍ଷରେ ଏହା ଅତ୍ୟନ୍ତ ଅଦ୍ଭୁତ ମନେ ହେଲା । ଯାହାହେଉ, ଆମେ ସମସ୍ତେ ତାଙ୍କୁ ଅନୁସରଣ କଲୁ, ଆମେ ସମସ୍ତେ ସେଠିକି ବୁଲିଲୁ । ଆମକୁ ପଛକୁ ହଟାଇବାକୁ କିଛି ଚେଷ୍ଟା କରି ଶେଷରେ ପୁଲିସ ଆଉ ହସ୍ତକ୍ଷେପ କଲେ ନାହିଁ । କିଛି ସମୟ ପରେ ସେମାନଙ୍କୁ ଫେରାଇ ନିଆଗଲା ।

ଆମ ନାମରେ ସରକାର କିଛି ମକଦ୍ଦମା କରିବ ବୋଲି ଆମେ ଆଶା କରିଥିଲୁଁ, ମାତ୍ର ସେପରି କିଛି ଘଟିଲା ନାହିଁ । ସମ୍ଭବତଃ ମାଲବ୍ୟଜୀଙ୍କ ବିରୁଦ୍ଧରେ କୌଣସି ମକଦ୍ଦମା କରିବାକୁ ସରକାର ଚାହୁଁ ନ ଥିଲା । ଛୋଟ ଛୋଟ ଜୀବମାନଙ୍କୁ ମଧ୍ୟ ସେଥିଯୋଗୁଁ ଛାଡ଼ି ଦିଆଗଲା ।

## ମୋ ପିତା ଏବଂ ଗାନ୍ଧିଜୀ

୧୯୨୪ ମସିହାର ପ୍ରଥମ ଭାଗରେ ହଠାତ୍ ଖବର ଆସି ପହଞ୍ଚିଲା ଯେ, ଗାନ୍ଧିଜୀ ଜେଲରେ ଅତ୍ୟନ୍ତ ପୀଡ଼ିତ ହୋଇଛନ୍ତି । ତା ପରେ ପରେ ତାଙ୍କୁ ହାସପାତାଲକୁ ଅପରେସନ ପାଇଁ ନିଆଗଲା । ଭାରତବର୍ଷ ବ୍ୟଗ୍ରତାରେ ଅଧୀର ହୋଇ ଉଠିଲା, ଆମେ ଶ୍ୱାସରୁଦ୍ଧ ଅବସ୍ଥାରେ ଭୟମିଶ୍ରିତ ଭାବରେ ଅପେକ୍ଷା କରି ରହିଲୁ । ସଙ୍କଟ ସମୟ ଦୂରହୋଇଗଲା ଏବଂ ତାଙ୍କୁ ଦେଖିବା ନିମନ୍ତେ ଦେଶର ଚାରିଆଡ଼ୁ ଜନସ୍ରୋତ ପୁନଃ ଚାଲିଲେ । ସେ ହାସପାତାଲରେ ମଧ୍ୟ ବନ୍ଦୀ ହୋଇ ରହିଥାନ୍ତି ଓ ଜଗୁଆଳି ତାଙ୍କୁ ଜଗିଥାନ୍ତି । କେବଳ ନିର୍ଦ୍ଦିଷ୍ଟ ସଂଖ୍ୟକ ବନ୍ଧୁ ବାନ୍ଧବଙ୍କୁ ତାଙ୍କ ସହିତ ସାକ୍ଷାତ କରିବାକୁ ଦିଆଯାଉଥିଲା । ପିତା ଓ ମୁଁ ତାଙ୍କ ସହିତ ହାସପାତାଲରେ ସାକ୍ଷାତ କଲୁ ।

ହାସପାତାଲରୁ ଆଉ ତାଙ୍କୁ ଜେଲକୁ ନେଲେ ନାହିଁ । ତାଙ୍କର ଆରୋଗ୍ୟ ହେବା ଦରକାର ପଡ଼ିଥିବାରୁ ସରକାର ତାଙ୍କର ଅବଶିଷ୍ଟ ଶାସ୍ତି ମାଫ କରିଦେଇ ତାଙ୍କୁ ଖଲାସ କରିଦେଲେ । ସେତେବେଳକୁ ତାଙ୍କର ଛଅବର୍ଷ କାରାଦଣ୍ଡରୁ ସେ ଦୁଇବର୍ଷ ହୋଇଥାନ୍ତି । ଆରୋଗ୍ୟ ନିମନ୍ତେ ସେ ବମ୍ବେ ସମୁଦ୍ର ନିକଟରେ ଜୁହୁ ନାମକ ସ୍ଥାନରେ ଯାଇ ରହିଲେ ।

ଆମ ପରିବାର ବି ଜୁହୁ ଗଲେ ଏବଂ ସମୁଦ୍ର ନିକଟରେ ଗୋଟିଏ ଛୋଟ ଘରେ ଆମେ ରହିଲୁ । ସେଠାରେ କେତେକ ସପ୍ତାହ ଆମେ ରହିଲୁ — ଅନେକ ଦିନ ପରେ ମୋର ମନ ମାନିଲା ପରି ଗୋଟାଏ ଅବକାଶ ମିଳିଲା । କାରଣ ମୁଁ ସେଠାରେ ମନଇଚ୍ଛା ପହଁରିଲି, ଦୌଡ଼ିଲି ଏବଂ ସମୁଦ୍ର କୂଳରେ ଘୋଡ଼ାଚଢ଼ି ବୁଲିଲି । ସେଠାରେ ଅବକାଶ କଟାଇବା ଲାଗି ଯିବା ଆମର ଅସଲ ଉଦ୍ଦେଶ୍ୟ ନ ଥିଲା, ଗାନ୍ଧିଜୀଙ୍କ ସହ ଆଲୋଚନା କରିବାହିଁ ମୁଖ୍ୟ ଉଦ୍ଦେଶ୍ୟ ଥିଲା । ପିତା ତାଙ୍କୁ ସ୍ୱରାଜ୍ୟ



ପଣ୍ଡିତ ମୋତିଲାଲ ନେହରୁ

ଦଳର ଉଦ୍ଦେଶ୍ୟ ବୁଝାଇବାକୁ ଚାହୁଁଥିଲେ । ତାଙ୍କର ଇଚ୍ଛାଥିଲା ଗାନ୍ଧିଜୀ ପୂର୍ବପରି ସାହାଯ୍ୟ ନ କଲେ ଅନ୍ତତଃ ନିରପେକ୍ଷ ରହିବେ । ମୋ ମନରେ ଯେଉଁସବୁ ପ୍ରଶ୍ନ ଉଠୁଥିଲା, ସେ ସମ୍ବନ୍ଧରେ ତାଙ୍କ ସହିତ ଆଲୋଚନା କରି ପରିଷ୍କାର ହେବା ନିମନ୍ତେ ମଧ୍ୟ ମୁଁ ବ୍ୟଗ୍ର ଥିଲି । ତାଙ୍କର ଭବିଷ୍ୟତ କାର୍ଯ୍ୟପନ୍ଥା କଣ ହେବ, ତାହା ଜାଣିବାକୁ ମୁଁ ଚାହୁଁଥିଲି ।

କିନ୍ତୁ କଥାବାର୍ତ୍ତାରେ ସ୍ୱରାଜ୍ୟ ଦଳ ଲୋକେ ଗାନ୍ଧୀଜୀଙ୍କୁ ଟାଣି ଆଣିପାରିଲେ ନାହିଁ କିମ୍ବା କୌଣସି ପ୍ରକାରେ ତାଙ୍କ ଉପରେ ପ୍ରଭାବ ପକାଇ ପାରିଲେ ନାହିଁ । ସମ୍ପୂର୍ଣ୍ଣ ବନ୍ଧୁଭାବରେ କଥାବାର୍ତ୍ତା ଏବଂ ସୌଜନ୍ୟ ସତ୍ତ୍ୱେ ମିଳାମିଶା ଅସମ୍ଭବ ପରି ମନେ ହେଲା । ମତଭେଦ ହେବ ବୋଲି ସେମାନେ ସମ୍ମତ ହେଲେ ଏବଂ ଏହି ମର୍ମରେ ସମ୍ବାଦ-ପତ୍ରରେ ଘୋଷଣା ପ୍ରକାଶ ପାଇଲା ।

ମୁଁ ମଧ୍ୟ ଟିକିଏ ହତାଶ ହୋଇ ଫେରିଲି—କାରଣ ଗାନ୍ଧିଜୀଙ୍କ ସହ କଥାବାର୍ତ୍ତା ହୋଇ ମୋର ଗୋଟିଏ ହେଲେ ସନ୍ଦେହ ଦୂର ହୋଇ ପାରିଲା ନାହିଁ । ତାଙ୍କର ସ୍ୱଭାବ ଅନୁଯାୟୀ ସେ ଭବିଷ୍ୟତ ପ୍ରତି ଦୃଷ୍ଟି ପକେଇବା ଅସ୍ୱୀକାର କଲେ କିମ୍ବା ଦୀର୍ଘକାଳବ୍ୟାପୀ କୌଣସି କାର୍ଯ୍ୟପନ୍ଥା କରିବାକୁ ଚାହାନ୍ତି ନାହିଁ, ଆମକୁ ଧୈର୍ଯ୍ୟର ସହିତ ଲୋକଙ୍କର 'ସେବା' କରିବାକୁ ହେବ, କଂଗ୍ରେସର ସଂଗଠନ ଓ ସମାଜ ସଂସ୍କାର କାର୍ଯ୍ୟ କରିଯିବାକୁ ହେବ ଏବଂ ସଂଗ୍ରାମଶୀଳ କାର୍ଯ୍ୟ ନିମନ୍ତେ ଅପେକ୍ଷା କରିବାକୁ ପଡ଼ିବ । ଏଥିରେ ପୁଣି ପ୍ରକୃତ ଅସୁବିଧା କ ଥିଲା । ଧର ସେପରି ସଂଗ୍ରାମର ସମୟ ଆସିଲା—ପୁଣି ଯଦି ଚୌରି ଚୌରା ପରି ଗୋଟାଏ ଘଟଣା ଘଟିଯାଏ, ତେବେ ଆମର ସବୁ କଳ୍ପନା ଧୂଳିସାତ୍ ହୋଇଯିବ ନାହିଁ ତ ? ଏହାର ସେ କୌଣସି ଜବାବ ଦେଲେ ନାହିଁ । ଆମର ଲକ୍ଷ୍ୟ ସମ୍ବନ୍ଧରେ ମଧ୍ୟ ତାଙ୍କର ଧାରଣା କିଛି ନିର୍ଦ୍ଦିଷ୍ଟ ନ ଥିଲା । କଂଗ୍ରେସ ସେତେବେଳେ ଲକ୍ଷ୍ୟ ସମ୍ବନ୍ଧରେ ଘୋଷଣା କରିବା ଦରକାର ନ ଥିଲେ

ସୁଦ୍ଧା ଅମେ କ୍ରୁଆଡ଼କୁ ଗତି କରୁଥାଇଁ ସେ ବିଷୟରେ ଆମ ମନ ଭିତରେ ପରିଷ୍କାର ହୋଇପିବା ନିମନ୍ତେ ଆମ ଭିତରୁ କେତେକ ଗୃହୁଁ ଥିଲେ । ଆମେ ସ୍ୱାଧୀନତା ଏବଂ ଏକ ସାମାଜିକ ପରିବର୍ତ୍ତନ ଲାଗି ଯାଉଥାଇଁ, ନା ଅଳ୍ପ କଷ୍ଟରେ ଆମର ନେତାମାନେ ମେଳାମିଶା କରି ପାରିବେ ? କେତେକ ମାସ ପୂର୍ବରୁ ଯୁକ୍ତପ୍ରଦେଶ ପ୍ରାଦେଶିକ ରାଜନୈତିକ ସମ୍ମିଳନୀର ସଭାପତିତ୍ୱରେ ମୁଁ ସ୍ୱାଧୀନତା ଉପରେ ଜୋର ଦେଇ କହିଥିଲି । ମୁଁ ନାଭାରୁ ଫେରିବା ପରେ କେତେକ ଦିନପରେ ଏହି ସମ୍ମିଳନୀ ୧୯୨୩ ମସିହା ଶରତ ଋତୁରେ ହୋଇଥିଲା । ନାଭା ଜେଲରୁ ଯେଉଁ ବେମାର ଉପହାର ନେଇ ମୁଁ ଆସିଥିଲି, ସେଥିରୁ ମୁଁ ଆରୋଗ୍ୟ ଲାଭ କରୁଥାଏ — ସେଥିଲାଗି ମୁଁ ସମ୍ମିଳନୀରେ ଉପସ୍ଥିତ ହୋଇପାରିଲି ନାହିଁ । ମାତ୍ର ମୁଁ ଜ୍ୱର ଅବସ୍ଥାରେ ଥାଇ ଯେଉଁ ଭାଷଣ ଲେଖିଥିଲି, ତାହା ସେଠାରେ ପଢ଼ାଗଲା ।

ଆମ୍ଭେମାନେ ଏଣେ କଂଗ୍ରେସରେ ସ୍ୱାଧୀନତା ପ୍ରଶ୍ନ ପରିଷ୍କାର କରିବା ନିମନ୍ତେ ଚାହୁଁ ଥିଲୁ । ତେଣେ ଆମ ଲିବରାଲମାନେ ଆମଠୁ ବହୁତ ଦୂରକୁ ଖସି ଚାଲି ଯାଇଥିଲେ, ଅଥବା ଆମେ ତାଙ୍କୁ ଅତିକ୍ରମ କରି ଅଗ୍ରସର ହୋଇଥିଲୁ । ସେମାନେ ପ୍ରକାଶ୍ୟ ଭାବରେ ସାମ୍ରାଜ୍ୟର ଗୌରବ ଓ କୀର୍ତ୍ତି ଗାନ କରିବାକୁ ଲାଗିଲେ, ଅଥଚ ସାମ୍ରାଜ୍ୟ ଆମ ଦେଶବାସୀଙ୍କୁ ତାର ପଦଲେହନ କରିବା ଯୋଗ୍ୟ ପରି ବ୍ୟବହାର କରୁଥାଏ ଏବଂ ଉପନିବେଶମାନଙ୍କରେ ହିନ୍ଦୋସ୍ତାନୀମାନଙ୍କ ପ୍ରତି ଦୁଏ ତ ଦାସ ପରି ବ୍ୟବହାର କରାଯାଉଥିଲା କିମ୍ବା ପ୍ରବେଶ ଅଧିକାର ଦିଆଯାଉ ନ ଥିଲା । ଶାସ୍ତ୍ରୀ ସାମ୍ରାଜ୍ୟ-ପ୍ରଚାରକ ହୋଇଥାଆନ୍ତି ଏବଂ ୧୯୨୩ ରେ ଲଣ୍ଡନରେ ହୋଇଥିବା ସାମ୍ରାଜ୍ୟ ସମ୍ମିଳନୀରେ ସାର୍ ତେଜ ବାହାଦୂର ସାପ୍ରୁ ଗର୍ବ ସହକାରେ ଘୋଷଣା କଲେ ଯେ, ମୋ ଦେଶହିଁ ସାମ୍ରାଜ୍ୟକୁ ଯଶସ୍ୱୀ କରୁଛି ।

ଏହି ଲିବରାଲ ନେତାଙ୍କ ଭିତରେ ଆମର ସମ୍ପୂର୍ଣ୍ଣ ପରି ବ୍ୟବଧାନ ଉପୁଜିଲା ପରି ଜଣା ପଡ଼ିଲା । ଆମେ ଅଲଗା-ଦୁନିଆରେ-ରହୁଥିଲୁ, ସ୍ୱତଃ

ଭାଷାରେ କଥା କହୁଥିଲୁ ଏବଂ ଆମ୍ଭମାନଙ୍କର କଳ୍ପନାରେ (ସେମାନଙ୍କର କୌଣସି କଳ୍ପନା ଥିଲା କି ?) ମଧ୍ୟ ଆଦୌ ସାମଞ୍ଜସ୍ୟ ନ ଥିଲା । ଏପରି ଅବସ୍ଥାରେ ଆମର ଲକ୍ଷ୍ୟ ସମ୍ବନ୍ଧରେ ସ୍ପଷ୍ଟ ଓ ନିଶ୍ଚିତ ହେବା ଉଚିତ ନୁହେଁ କି ?

ମାତ୍ର ସେତେବେଳେ ଅଳ୍ପ କେତେକ ଲୋକଙ୍କ ମନରେ ଏପରି ଚିନ୍ତା ଆସୁଥିଲା । ଅନେକ ଲୋକ ନିର୍ଦ୍ଦିଷ୍ଟ ହେବାକୁ ଚାହୁଁ ନ ଥିଲେ—ବିଶେଷତଃ ଜାତୀୟ ଆନ୍ଦୋଳନରେ ଏପ୍ରକାର ବେଶୀ ଅଭାବ ଦେଖାଯାଉଥିଲା । ଏହି ଆନ୍ଦୋଳନ ଏକପ୍ରକାର ଅସ୍ପଷ୍ଟ ଓ ରହସ୍ୟପୂର୍ଣ୍ଣ । ୧୯୨୪ ମସିହା ପ୍ରଥମ ଭାଗରେ ଯେଉଁ ସ୍ୱରାଜ୍ୟ ଦଳ କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥା ସଭାମାନଙ୍କରେ ପ୍ରବେଶ କଲେ, ସେମାନଙ୍କ ଉପରେ ଦେଶର ଦୃଷ୍ଟି ପଡ଼ିଲା । "ଭିତରୁ ବିଦ୍ରୋହ ଏବଂ କାଉନ୍‌ସିଲ ଭାଙ୍ଗିଦେବା" ଆଦି ବଡ଼ ବଡ଼ କଥା କହି ଯେଉଁମାନେ ଯାଇଥିଲେ, ସେମାନେ କଣ କରିବେ ? ଏହା ଜାଣିବା ଲାଗି ବ୍ୟଗ୍ରତା ଥିଲା । କେତେକ ଶୁଭ ସୂଚନା ଦେଖାଗଲା । କେନ୍ଦ୍ର ବ୍ୟବସ୍ଥା ସଭାରେ ସେ ବର୍ଷ ଆଦୌ ବାର୍ଷିକ ଆୟ ବ୍ୟୟ ହିସାବକୁ ନାମଞ୍ଜୁର କରିଦେଲେ; ଭାରତ ସ୍ୱାଧୀନତାର ଭିତ୍ତି ସ୍ଥିର କରିବା ନିମନ୍ତେ ଏକ ଗୋଲ ଟେବୁଲ ସମ୍ମିଳନୀ ଦାବୀ କରି ପ୍ରସ୍ତାବ ପାଶ ହେଲା । ଦେଶବନ୍ଧୁଙ୍କ ବଳିଷ୍ଠ ନେତୃତ୍ୱରେ ବଙ୍ଗଳା ପ୍ରାଦେଶିକ ବ୍ୟବସ୍ଥା ସଭାରେ ସରକାରଙ୍କର ସମସ୍ତ ଦାବୀ ନାମଞ୍ଜୁର ହୋଇଗଲା । କେନ୍ଦ୍ର ବ୍ୟବସ୍ଥା ସଭା ଏବଂ ପ୍ରାଦେଶିକ ବ୍ୟବସ୍ଥା ସଭାମାନଙ୍କରେ ବଡ଼ଲାଟ ଓ ଛୋଟଲାଟ ନିଜର ବିଶେଷ କ୍ଷମତା ବଳରେ ବଜେଟ ମଞ୍ଜୁର କଲେ ଏବଂ ତାହା ପ୍ରଚଳିତ ହେଲା । ଖୁବ ବଡ଼ ବଡ଼ ଭାଷଣ ହେଲା, ବ୍ୟବସ୍ଥା ସଭାରେ ଗୋଟାଏ ଚହଳ ପଡ଼ିଗଲା, ସ୍ୱରାଜ୍ୟଦଳର ବିଜୟ ହେଲା ପରି ସେତେବେଳେ କ୍ଷଣିକ ଭାବ ଜାତ ହେଲା । ଖବରକାଗଜରେ ବଡ଼ ବଡ଼ ଶୀର୍ଷନାମାରେ ସମ୍ବାଦ ବାହାରିଲା—ଏହା ଛଡ଼ା ଆଉ କିଛି ହେଉ ନ ଥିଲା, ସେମାନେ ବା ଆଉ କଣ କରିପାରନ୍ତେ ? ସେମାନେ ବାରମ୍ବାର ସେହିପରି କଲେ, ମାତ୍ର ଏହାର

ଦେଶନେତୃ ଭୁଲିଗଲେ, ଉତ୍ସାହ ଭୁଲିଗଲା, ବଡ଼ଲାଟ ଓ ଛୋଟଲାଟ ବଜେଟ ଏବଂ ଆଇନ ମଞ୍ଜୁର କରିବା କଥାଟା ଲୋକଙ୍କ ଚକ୍ଷୁସହା ହୋଇଗଲା। ଅବଶ୍ୟ କାଉନସିଲ ଭିତରେ ତାର ପରବର୍ତ୍ତୀ ପଦକ୍ଷେପ କରିବା ନିମନ୍ତେ ସ୍ୱରାଜ୍ୟ ଦଳ ଭିତରେ ସାମର୍ଥ୍ୟ ନ ଥିଲା -- ଏହା କାଉନସିଲ ବାହାରେ ହେବାର କଥା।

ସେହି ବର୍ଷ ( ୧୯୨୪ ) ମଧ୍ୟଭାଗରୁ ଅହମଦାବାଦରେ ନିଖିଳ ଭାରତ କଂଗ୍ରେସ କମିଟିର ଏକ ବୈଠକ ହେଲା। ଏହି ସମୟରେ ଅପ୍ରତ୍ୟାଶିତ ଭାବରେ ଗାନ୍ଧିଜୀ ଓ ସ୍ୱରାଜ୍ୟ ଦଳଙ୍କ ଭିତରେ ମତଭେଦ ହେଲା ଏବଂ କେତେକ ନାଟକୀୟ ଘଟଣା ଘଟିଗଲା। ଗାନ୍ଧିଜୀଙ୍କ ପକ୍ଷରୁ ଏହା ଆରମ୍ଭ ହୋଇଥିଲା। ସେ କଂଗ୍ରେସ ନିୟମାବଳୀର ଗୋଟିଏ ମୌଳିକ ପରିବର୍ତ୍ତନ ପ୍ରସ୍ତାବ ଆଣିଥିଲେ; ସଭ୍ୟ ହେବାର ନିୟମ ଓ ଭୋଟାଧିକାରରେ ପରିବର୍ତ୍ତନ ଆଣିଲେ। ଏ ପର୍ଯ୍ୟନ୍ତ ଯେଉଁ ଲୋକ କଂଗ୍ରେସ ନିୟମାବଳୀର ପ୍ରଥମ ଦଫା ଅର୍ଥାତ ସ୍ୱରାଜ୍ୟ ଲକ୍ଷ୍ୟ ଓ ଶାନ୍ତିପୂର୍ଣ୍ଣ ଉପାୟକୁ ସ୍ୱୀକାର କରୁଥିଲା ଏବଂ ଯେ ସଭ୍ୟପଦ ପାଇଁ ଚାରିଅଣା ପଇସା ଦେଇପାରୁଥିଲା, ସେ ସଭ୍ୟ ହୋଇ ପାରୁଥିଲା। ସେ ଏବେ ସଭ୍ୟସଂଖ୍ୟା ନିର୍ଦ୍ଦିଷ୍ଟ କରିବାକୁ ଚାହିଁଲେ। ଯେଉଁମାନେ ଚାରିଅଣା ପରିବର୍ତ୍ତେ ନିଜ ହାତକଟା ସୂତା ନିର୍ଦ୍ଦିଷ୍ଟ ପରିମାଣରେ ଦେଇପାରିବେ, ସେମାନେ ସଭ୍ୟ ହୋଇ ପାରିବେ। ଭୋଟାଧିକାରରେ ଏହା ଏକ ଗୁରୁତର ପରିବର୍ତ୍ତନ ଏବଂ ଏହା ସ୍ଥିର କରିବା ନି. ଭା. କଂଗ୍ରେସ କମିଟିର କ୍ଷମତା ବହିର୍ଭୂତ। ମାତ୍ର କୌଣସି କାର୍ଯ୍ୟ କରିବାକୁ ହେଲେ ଗାନ୍ଧିଜୀ ନିୟମାବଳୀର ଆକ୍ଷରିକ ଅର୍ଥକୁ ଖାତିର କରନ୍ତି ନାହିଁ, ନିୟମାବଳୀ ଉପରେ ଏହି ଆଘାତ ହେବା ଦେଖି ମୁଁ ଦୁଃଖିତ ହୋଇ କାର୍ଯ୍ୟକାରୀ ସମିତିର ସମ୍ପାଦକ ପଦରୁ ଇସ୍ତଫା ଦାଖଲ କଲି। ମାତ୍ର ଏହା ପରେ କେତେକ ନୂତନ କଥା ଘଟିଲା ଏବଂ ମୁଁ ଏଥିରେ ଜୋର ଦେଲି ନାହିଁ। ମୋ ପିତା ଏବଂ ଦେଶବନ୍ଧୁ ଦାସ ନିଖିଳ ଭାରତ କଂଗ୍ରେସ କମିଟିରେ ଏହି ପ୍ରସ୍ତାବର ତୀବ୍ର ପ୍ରତିବାଦ କଲେ ଏବଂ ଶେଷରେ ଏଥିରେ ସେମାନଙ୍କର ଅସମ୍ମତି ଜ୍ଞାପନ 'କରିବା' ନିମନ୍ତେ

ଠିକ୍ ଭୋଟ ନେଆଯିବା ପୂର୍ବରୁ ଅନେକ ଲୋକଙ୍କ ସହିତ ସେମାନେ ସଭା ଘର ଛାଡ଼ି ଚାଲି ଆସିଲେ । ଆଉ କେତେକ ଲୋକ ଏହା ବିରୁଦ୍ଧରେ କହି ମଧ୍ୟ ସଭାରେ ବସିଥିଲେ । ପ୍ରସ୍ତାବଟି ଅଧିକ ସଂଖ୍ୟକ ଭୋଟରେ ଗୃହୀତ ହେଲା, ମାତ୍ର ଅବଶେଷରେ ଏହା ପ୍ରତ୍ୟାହାର କରାଗଲା । ସ୍ୱରାଜ୍ୟ ଦଳର ସଭା ତ୍ୟାଗ ଏବଂ ମୋର ପିତା ଓ ଦେଶବନ୍ଧୁଙ୍କର ଏ ସମ୍ବନ୍ଧରେ ଦୃଢ଼ ବିରୋଧ ଭାବ ଦେଖି ଗାନ୍ଧୀଜୀ ଖୁବ୍ ବିଚଳିତ ହୋଇଥିଲେ । ସେ ଟିକିଏ ଭାବପ୍ରବଣ ହୋଇ ଯାଇଥିଲେ—କୌଣସି ସଭ୍ୟର ମନ୍ତବ୍ୟରେ ସେ ବିବ୍ରତ ହୋଇ ଭାଙ୍ଗିପଡ଼ିଥିଲେ । ସେ ଅତ୍ୟନ୍ତ ମର୍ମାହତ ହୋଇଛନ୍ତି ବୋଲି ଜଣାପଡ଼ିଲା । ସେ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାଷାରେ ସଭାରେ ବକ୍ତୃତା କଲେ ଏବଂ କେତେକ ସଭ୍ୟ ସେଥିରେ କାନ୍ଦି ପକାଇଲେ । ଏହା ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ଅଭୂତପୂର୍ବ ଦୃଶ୍ୟ ହୋଇଥିଲା । *

କେବଳ ସୂତାକଟା ଦଫାରେ ଭୋଟାଧିକାର କରାଇବା ନିମନ୍ତେ ସେ ସେତେବେଳେ କାହିଁକି ଏପରି ଜିଦ୍ ଧରିଥିଲେ ମୁଁ ଆଦୌ ବୁଝିପାରି ନ ଥିଲି, କାରଣ ଏହାର ଘୋର ବିରୋଧ ହେବ ବୋଲି ତାଙ୍କୁ ଆଗରୁ ଜଣା ଥିଲା । ସମ୍ଭବତଃ ଯେଉଁମାନେ ତାଙ୍କର ଗଠନାତ୍ମକ କାର୍ଯ୍ୟ ପ୍ରଭୃତିରେ ବିରୋଧ କରନ୍ତି, ସେହିମାନଙ୍କୁ କେବଳ

* ଏହି ଘଟଣାଟି ମୁଁ ବହୁ ଦିନରୁ ଜେଲ ଭିତରେ ଲେଖା ହୋଇଥିଲା । ମାତ୍ର ସବୁ କଥା ଠିକ୍ ମନେ ନ ଥିଲା ବୋଲି ମୁଁ ପରେ ଦେଖିଲି, ନି· ଭା· କ· କମିଟି ଆଲୋଚନାର ଏକ ଗୁରୁତର ଅଂଶ ଉଲ୍ଲେଖ ନ କରି ମୁଁ ସେ ଘଟଣା ସମ୍ବନ୍ଧରେ ଗୋଟାଏ ଭୁଲ ଧାରଣା ଦେଇ ଦେଇଛି । ଜଣେ ଯୁବକ ବଙ୍ଗାଳୀ ଆତଙ୍କବାଦୀ (ଗୋପୀନାଥ ସାହା) ସମ୍ବନ୍ଧରେ ଆସିଥିବା ପ୍ରସ୍ତାବରେ ଗାନ୍ଧିଜୀ ବିଚଳିତ ହୋଇଥିଲେ । ସେ ପ୍ରସ୍ତାବ ପାସ ହୋଇ ପାରି ନ ଥିଲା । ମୋର ଯେତେଦୂର ମନେ ଅଛି, ସେ ପ୍ରସ୍ତାବରେ ଗୋପୀନାଥ ସାହାର କାର୍ଯ୍ୟକୁ ନିନ୍ଦା କରାଯାଇ ଥିଲା, ମାତ୍ର ତାଙ୍କର ଉଦ୍ଦେଶ୍ୟକୁ ପ୍ରଶଂସା କରାଯାଇଥିଲା । ପ୍ରସ୍ତାବଟି ଅପେକ୍ଷା

କଂଗ୍ରେସରେ ସେ ରଖିବାକୁ ଶ୍ରୁତ୍ର ଥିଲେ । ଅନ୍ୟମାନେ ତୁଏତ ଏହା ମାନି ଚଳିବେ ନାହିଁ ସେମାନଙ୍କୁ ବାହାର କରିଦେବା ନିମନ୍ତେ ସେ ପ୍ରସ୍ତୁତ ଥିଲେ । ତାଙ୍କ ସପକ୍ଷରେ ଅଧିକ ସଂଖ୍ୟକ ମତ ଥିଲେ ମଧ୍ୟ ସେ ନିଜର ମନକଥାକୁ ଶିଥିଳ କରି ପକାଇଲେ ଏବଂ ଅନ୍ୟମାନଙ୍କ ସହ ମିଳାମିଶା କରିବାକୁ ବାହାରିଲେ । ମୋତେ ବଡ଼ ତାଟକା ଲାଗିଲା ଯେ ୩।୪ ମାସ ଭିତରେ ସେ ଏହି ପ୍ରଶ୍ନ ସମ୍ବନ୍ଧରେ ଅନେକ ଥର ମତ ପରିବର୍ତ୍ତନ କଲେ । ମନେ ହେଲା ଯେପରି କି ସେ ଏକ ଅକୂଳ ସମୁଦ୍ରରେ ପଡ଼ି ଧାଣ୍ଡି ହୋଇ ଯାଉଛନ୍ତି । ଏହି ଧାରଣାରେ ମୁଁ ତାଙ୍କ ସହିତ ମିଶିପାରି ନ ଥିଲି—ତେଣୁ ମୁଁ ଅସ୍ଥିର ହେବାକୁ ଲାଗିଲି । ଏ ପ୍ରଶ୍ନ ମୋତେ ବଡ଼ ଜୀବନ୍ତ ବୋଧ ହେଲା ନାହିଁ, କେବଳ ଅଧିକାର ପାଇଁ ଭ୍ରମ କରିବା କଥାକୁ ବାଛିନାହିଁ, ମାତ୍ର ଏହାକୁ ଯେପରି ସଂକୁଚିତ ଭାବରେ ପ୍ରସ୍ତାବ କରାଗଲା, ସେଥିରେ ଏହାର କୌଣସି ଅର୍ଥ ରହିଲା ନାହିଁ ।

---

ସେ ସମ୍ବନ୍ଧରେ ଯେଉଁ ବକ୍ତୃତା ସବୁ ହେଲା ସେଥିରେ ଗାନ୍ଧୀଜୀ ବେଶୀ ଚଂଚଳ ହେଲେ ଏବଂ କଂଗ୍ରେସ ଭିତରେ ଅନେକ ଲୋକ ଏହାର ଅହିଂସା ନୀତି ପ୍ରତି ଗୁରୁତ୍ୱ ଦେଉ ନାହାନ୍ତି ଜାଣି ସେ ବଡ଼ଚଳିତ ହେଲେ । ଅଳ୍ପ କେତେଦିନ ଏ ସମ୍ବନ୍ଧରେ ତାଙ୍କ କାଗଜ ଇଅଙ୍ଗ ଇଣ୍ଡିଆ "Young India" ରେ ସେ ଲେଖିଥିଲେ "ଯେଉଁ ଗୃହୀତ ପ୍ରସ୍ତାବ ହେଲା, ସେଥିରେ ମୋ ପକ୍ଷରେ ଅଳ୍ପ ସଂଖ୍ୟକ ଭୋଟ ବେଶୀ ଥିଲା । ମାତ୍ର ଏହାକୁ ମୁଁ ସଂଖ୍ୟାଗରିଷ୍ଠ ବୋଲି ମନେ କରେନି । ଉଭୟ ଦଳ ସମାନ ସମାନ ଥିଲେ । ଗୋପୀନାଥ ସାହା ପ୍ରସ୍ତାବ ନେଇ ସମସ୍ୟାଟି ଗୁରୁତର ହେଲା । ସେ ବକ୍ତୃତା, ତାର ଫଳାଫଳ ଏବଂ ଦୃଶ୍ୟ ଦେଖି ମୋର ଆଖି ଖୋଲିଗଲା । ଗୋପୀନାଥ ସାହା ପ୍ରସ୍ତାବ ପରେ ସଭାର ମର୍ଯ୍ୟାଦା ଗଲା । ଏହି କମିଟି ଆଗରେ ମୋତେ ଖୁସି କେବେ ପ୍ରସ୍ତାବଟି ରଖିବାକୁ ହୋଇଥିଲା । ଯେପରି ଭାବରେ ଭାଗ୍ୟ ଖେଳିଲା, ସେଥିରେ ମୁଁ ଅଧିକ ଗମ୍ଭୀର ହୋଇଗଲି । ସେହି ଦୁଃଖଦାୟକ

ମୋ ମତରେ ଗାନ୍ଧୀଜୀ ସଂପୂର୍ଣ୍ଣ ଉଦାର ଧାର୍ମିକ ଅବସ୍ଥା ଭିତରେ ଗଢ଼ ହେଉଥିବାରୁ ଏପରି ଅଦ୍ଭୁତଧାରେ ଘଟୁଥିଲେ । ସେ ସତ୍ୟାଗ୍ରହ ପ୍ରତ୍ୟକ୍ଷ ସଂଗ୍ରାମରେ ଅଗ୍ରଣୀ ଥିଲେ ଏବଂ ସେଥିରେ ଠକ୍ ଧନ୍ଦେଇ ନିର୍ଭୀକ ଭାବରେ ଲଢ଼ିପାରୁଥିଲେ । ଜନସାଧାରଣଙ୍କ ଭିତରେ ସମାଜ ସଂସ୍କାର କାର୍ଯ୍ୟ ସେ ନିଜେ ଭଲ ଭାବରେ କରି ପାରୁଥିଲେ ଏବଂ ଅନ୍ୟମାନଙ୍କୁ ଲଗାଇ ପାରୁଥିଲେ । ସେ ବୃତ୍ତି ହିଁ ଏ ତ ସଂପୂର୍ଣ୍ଣ ଯୁଦ୍ଧ, ନଚେତ ପୂର୍ଣ୍ଣ ଶାନ୍ତି । ଏହାର ମଧ୍ୟବର୍ତ୍ତୀ କଥା ସେ ପସନ୍ଦ କରୁ ନ ଥିଲେ । କାଉନ୍ସିଲ ଭିତରେ ସଂଗ୍ରାମ ଓ ବିରୋଧ ସ୍ୱରାଜ୍ୟ ଦଳର ଏହି କାର୍ଯ୍ୟପନ୍ଥା ତାଙ୍କୁ ଭଲ ଲାଗୁ ନ ଥିଲା । କେହି ଯଦି କାଉନ୍ସିଲକୁ ଯିବାକୁ ଚାହେଁ, ସେ ଭଲ ଆଇନ କରିବା କିମ୍ବା ଶାସକଙ୍କ ସହିତ ସହଯୋଗ କରିବା ଲାଗି ଯାଉ, ବିରୋଧ କରିବା ପାଇଁ ନ ଯାଉ । ତା ନ ବୁଝି ଥିଲେ ସେ ବାହାରେ ରହୁ । ସ୍ୱରାଜ୍ୟ ଦଳ ଏହି ଦୁଇଟିରୁ

---

ଦୃଶ୍ୟରୁ ପଳାଇ ଆସିବା ଲାଗି ମୁଁ ବୋଧ କରୁଥିଲି । ମୋତେ ଏହି ପ୍ରସ୍ତାବ ପେଶ କରିବାକୁ ଦେବାରୁ ମୋର ମନରେ ଭୟ ଜାତ ହେଲା— କୌଣସି ବକ୍ତାର କଣ୍ଠ ଶୁଣିବା ଭଳି ନ ଥିଲା ବୋଲି ମୁଁ ସେଠାରେ ପରିଷ୍କାର ବୁଝିପାରୁଛି କି ନା ମୋତେ ଜଣା ନାହିଁ । କଂଗ୍ରେସର ନୀତି ଅଥବା ଅହିଂସା ନୀତି ପ୍ରତି ଅବଜ୍ଞା ଏବଂ ଦାୟିତ୍ୱହୀନତା ଦେଖି ମୋ ମନରେ ଅତିଶୟ କଷ୍ଟ ହେଲା । ଏହି ପ୍ରସ୍ତାବ ସପକ୍ଷରେ ୭୦ଜଣ ସଭ୍ୟ ଭୋଟ ଦେଲେ । ଏହା ଏକ ସଂଶୟଜନକ ଅଭିବ୍ୟକ୍ତି; ଏହି ଘଟଣାରେ ଗାନ୍ଧୀଜୀଙ୍କର ମନ୍ତବ୍ୟ ବଡ଼ ଅର୍ଥବ୍ୟଞ୍ଜକ । ଗାନ୍ଧିଜୀ ଅହିଂସାକୁ କିପରି ଗୁରୁତ୍ୱ ଦେଉଥିଲେ ଏଥିରୁ ତାହା ଦେଖା ପଡ଼ୁଛି ଏବଂ ଅଚେତନ ଅପ୍ରତ୍ୟକ୍ଷ ଭାବରେ ଅହିଂସା ବିରୁଦ୍ଧରେ ଯିବାର ଉଦ୍ୟମ ଦେଖିଲେ ତାଙ୍କ ମନରେ କିପରି ପ୍ରତିକ୍ରିୟା ହେଉଥିଲା ଜଣାପଡ଼ିଲା । ସେତେବେଳେ ସେ ସମ୍ଭବତଃ ଯାହା କହିଥିଲେ; ତାହା ଅନେକାଂଶରେ ଏହିପରି କେତେକ ମୌଳିକ ପ୍ରତିକ୍ରିୟା ଯୋଗୁଁ ହୋଇଛି । ତାହାଙ୍କ ସମସ୍ତ କାର୍ଯ୍ୟ ଏବଂ ଚିନ୍ତାର ମୂଳଭିତ୍ତି ହେଉଛି ଅହିଂସା ।

କୌଣସି ଗୋଷ୍ଠିକ ଗ୍ରହଣ କରୁ ନ ଥିଲେ—ସେଥିଲାଗି ସେମାନଙ୍କ ସହ କାର୍ଯ୍ୟ କରିବାରେ ସେ ଅସୁବିଧା ବୋଧ କରୁଥିଲେ ।

ଶେଷରେ ସେ ଏଥିରେ ନିଜକୁ ଚଳାଇନେଲେ । ସୁତାକଟା ନହେଲେ ମୁରୁଣା ମୂଲ୍ୟଅଣ: ପଇସା ଏହାପରେ ଭୋଟାଧିକାର ରହିଲି । ସ୍ୱରାଜ୍ୟଦଳର କାଉନ୍‌ସିଲ କାର୍ଯ୍ୟକୁ ସେ ପ୍ରାୟ ଆଶୀର୍ବାଦ କଲେ, ମାତ୍ର ନିଜେ ସେଥିରୁ ସମ୍ପୂର୍ଣ୍ଣ ଅଲଗା ରହିଲେ । ସେ ରାଜନୀତିରୁ ଅବସର ନେଇଛନ୍ତି ବୋଲି କୁହାଗଲା । ବ୍ରିଟିଶ ସରକାର ଏବଂ ତାଙ୍କ କର୍ମଚାରୀମାନେ ବିଶ୍ୱାସ କଲେ ଯେ ତାଙ୍କର ଲୋକପ୍ରିୟତା କମିଗଲାଣି ଏବଂ ତାଙ୍କ ଶକ୍ତି ହ୍ରାସ ହୋଇଛି । ଆହୁରି ମଧ୍ୟ କୁହା ହେଉଥିଲା ଯେ ଦାସ ଏବଂ ନେହେରୁ ଗାନ୍ଧୀଜୀଙ୍କୁ ପଛକୁ ଠେଲି ଦେଇ ରାଜନୀତି କ୍ଷେତ୍ରରେ ପ୍ରାଧାନ୍ୟ ଦେଖାଇଛନ୍ତି । ଗତ ୧୫ ବର୍ଷ ହେଲା ନାନା ପ୍ରକାର ଭାବରେ ଏହାପରି ମତ ପ୍ରକାଶ ହେବାର ଦେଖା ଦେଇଛି । ଭାରତୀୟ ଲୋକଙ୍କର ମନୋଭାବ ଜାଣି ପାରିବାରେ ଆମର ଶାସକମାନେ କପରି ଅନଭିଜ୍ଞ, ତାହା ଏଥିରୁ ପ୍ରମାଣିତ ହେଲା । ଗାନ୍ଧୀଜୀ ରାଜନୀତି କ୍ଷେତ୍ରରେ ପ୍ରବେଶ କଲାଦିନୁ ଭାରତୀୟ ଜନସାଧାରଣଙ୍କ ଉପରୁ ତାଙ୍କର ଲୋକପ୍ରିୟତା ଆଦୌ ଯାଇ ନାହିଁ । ଦିନକୁଦିନ ତାଙ୍କର ପ୍ରଭାବ ପ୍ରତିପତ୍ତି ବଢ଼ିଛି ଏବଂ କ୍ରମେ ତାହା ଅଧିକ ହେଉଛି । ଲୋକ ଚରିତ୍ର ସ୍ୱଭାବତଃ ଦୁର୍ବଳ—ସେଥିଲାଗି ସେମାନେ ହୁଏତ ତାଙ୍କ ଇଚ୍ଛା ମୁତାବକ କାର୍ଯ୍ୟ କରି ନ ପାରନ୍ତି, ମାତ୍ର ତାଙ୍କ ପ୍ରତି ଶୁଭେଚ୍ଛାରେ ସେମାନଙ୍କ ହୃଦୟ ପୂର୍ଣ୍ଣ ହୋଇ ରହିଛି । ସୁବିଧାଜନକ ପରିସ୍ଥିତି ଉପସ୍ଥିତ ହେଲେ ଖୁବ୍ ବଡ଼ ଗଣ ଆନ୍ଦୋଳନରେ ସେମାନେ ମାତନ୍ତି, ନଚେତ୍ ତଳେ ପଡ଼ିଥାନ୍ତି । ଗୋଟାଏ ଅଦ୍ଭୁତକର୍ମା ପରି କୌଣସି ନେତା ଶୂନ୍ୟରୁ ଗଣ ଆନ୍ଦୋଳନ ସୃଷ୍ଟି କରେ ନାହିଁ । ସେପରି ପରିସ୍ଥିତି ସୃଷ୍ଟି ହେଲେ ତାହାର ସୁବିଧା ସେ ଉଠାଏ; ସେ ସେମାନଙ୍କ ପାଇଁ ପ୍ରସ୍ତୁତ କରେ; ତାହା ସୃଷ୍ଟି କରେ ନାହିଁ ।

ମାତ୍ର ଏକଥା ସତ୍ୟ ଯେ, ବୁଦ୍ଧିଜୀବୀଙ୍କ ଉପରେ ଗାନ୍ଧିଜୀଙ୍କର ପ୍ରଭାବ କିଛିଏ କମି ଯାଇଥିଲା । ଅଗ୍ରଗାମୀ କାର୍ଯ୍ୟ ପଡ଼ିଲେ ଉତ୍ସାହରେ

ସେମାନେ ତାଙ୍କ ସାଥିରେ ଆସନ୍ତି; ମାତ୍ର ତା ପରେ ଯେଉଁ ଅପଣ୍ୟମ୍ବାଣ ପ୍ରତିକ୍ରିୟା ସବୁ ହୁଏ, ସେଥିରେ ସେମାନେ ସମାଲୋଚନା ଚାଳନ୍ତି । ଏହା ସତ୍ତ୍ୱେ ଅଧିକାଂଶ ଲୋକ ତାଙ୍କ ନିକଟରେ ମସ୍ତକ ଅବନତ କରନ୍ତି । ଅନ୍ୟ କୌଣସି ଫଳପ୍ରଦ କାର୍ଯ୍ୟସୂଚୀ ନ ଥିବାରୁ ଏହା କେତେକାଂଶରେ ସମ୍ଭବ ହୋଇଛି । ଲିବରାଲ ଓ ତାଙ୍କ ସଦୃଶ ଉଦ୍‌ଧିକ୍ଷିମାନଙ୍କ ସେମାନେ ଖାତିର କରୁ ନ ଥିଲେ; ଯେଉଁମାନେ କେବଳ କେମିତ ହିଂସା ଉପରେ ବିଶ୍ୱାସ କରନ୍ତି, ସେମାନେ ଆଧୁନିକ ଦୃଷ୍ଟିରେ ସମ୍ପୂର୍ଣ୍ଣ ନାଦାନ ହେଉଥିଲେ ଏବଂ ତାହା ଅତ୍ୟନ୍ତ ଅଜ୍ଞାନୀ ଓ ଅନାଲୋଚନୀୟ ହୋଇ ଯାଉଥିଲା । ସାମ୍ୟବାଦୀ କାର୍ଯ୍ୟସୂଚୀ ସେ ପର୍ଯ୍ୟନ୍ତ ଖୁବ୍ କମ୍ ଜଣା ଥିଲା ଏବଂ ଏହା ଶୁଣିଲେ କଂଗ୍ରେସରେ ଥିବା ଉଚ୍ଚ ଶ୍ରେଣୀର ସଭ୍ୟମାନେ ଭୟ କରୁଥିଲେ ।

୧୯୨୮ର ମଧ୍ୟଭାଗରେ ଅଳ୍ପ ସମୟ ପାଇଁ ଜବାହରଲାଲଙ୍କ ମତଭେଦ ଛଡ଼ା ପୁଣି ମୋର ପିତା ଓ ଗାନ୍ଧୀଜୀଙ୍କ ଭିତରେ ପୂର୍ବ ସମ୍ପର୍କ ସ୍ଥାପିତ ହୋଇଗଲା ଏବଂ ସେମାନଙ୍କ ସମ୍ବନ୍ଧ ଆହୁରି ସନ୍ତୋଷଜନକ ହେଲା । ପରସ୍ପର ମଧ୍ୟରେ ଯେତେ ପାର୍ଥକ୍ୟ ଥିଲେ ବି ପରସ୍ପର ପ୍ରତି ସେମାନଙ୍କର ଭକ୍ତି ଓ ଆଦର ଥିଲା । ସେମାନେ କାହିଁକି ଏତେ ସମ୍ମାନ ଦେଖାଉଥିଲେ ? ଚିନ୍ତା ସ୍ରୋତ (Thought Currents) ନାମକ ବହିରେ ପିତା ଏକ ମୁଖବନ୍ଧ ଲେଖିଥିଲେ । ସେ ବହିରେ ଗାନ୍ଧୀଜୀଙ୍କ ଲେଖା ସଂଗୃହୀତ ହୋଇଥିଲା । ସେଥିରେ ପିତା ତାଙ୍କ ମନର କେତେକ ସୂଚନା ଦେଇଛନ୍ତି ।

ସେ ଲେଖିଛନ୍ତି, "ମୁଁ ଋଷି ଓ ମହାପୁରୁଷ ମାନଙ୍କ ସମ୍ବନ୍ଧରେ ଶୁଣିଛି; ମାତ୍ର ସେମାନଙ୍କ ସହିତ ସାକ୍ଷାତ୍ କରିବାର ସୁଯୋଗ କେବେ ପାଇ ନ ଥିଲି—ପ୍ରକୃତ ସେପରି ଲୋକ ଅଛନ୍ତି କି ନାହିଁ ଏ ବିଷୟରେ ମୋର ସନ୍ଦେହ ଅଛି । ମୁଁ ମନୁଷ୍ୟ ଏବଂ ମାନବର କାର୍ଯ୍ୟରେ ବିଶ୍ୱାସ କରେ । ଏହି ବହିରେ ଯେଉଁ ସବୁ "ଚିନ୍ତାସ୍ରୋତ" ଛପାଯାଇଛି, ତାହା ଜଣେ

ମଣିଷଟାରୁ ବାହାରୁଥିବା ଏବଂ ମାନବକ କଥା ମଧ୍ୟ ; ମନୁଷ୍ୟ ଚରିତ୍ରର ଦୁଇଟି ମହତ୍ ଗୁଣ—ବିଶ୍ୱାସ ଏବଂ ଶକ୍ତିର ଦୃଷ୍ଟାନ୍ତ ।

ଯେଉଁ ଲୋକର ବିଶ୍ୱାସ କମ୍ବା ବଳ ନାହିଁ ସେ ପଚାରେ 'ଏହା କେଉଁଠିକି ଗତି କରୁଛି ?' "ଭବିଷ୍ୟ ବା ମୃତ୍ୟୁ" ଏହି ଜବାବ ତା ମନକୁ ପାଏ ନାହିଁ । ଏହିକବେଳେ ଜଣେ ନମ୍ର ଓ ଛୋଟ ମୂର୍ତ୍ତି ସିଧାହୋଇ ଠିଆ ହୋଇ ଅଟଳ ବିଶ୍ୱାସ ଏବଂ ଅଜେୟ ଶକ୍ତି ହୃଦୟରେ ବହି ନିଜର ମାତୃଭୂମି ପାଇଁ ତ୍ୟାଗ ଓ ଦୁଃଖ ବରଣ କରିବା ନିମନ୍ତେ ଦେଶବାସୀଙ୍କୁ ବାଣୀ ପ୍ରେରଣ କରେ । କୋଟି କୋଟି ଲୋକଙ୍କ ହୃଦୟରେ ସେହି ବାଣୀ ପ୍ରତିଧ୍ୱନିତ ହୁଏ ।"

ସ୍ମଟନ୍‌ବର୍ଣ୍ଣଙ୍କ କବିତାରୁ ଏହି ଦୁଇଧାଡ଼ି ଲେଖି ସେ ତାହା ଶେଷ କରିଛନ୍ତି "ଆମ ଭିତରେ ଜଣ ଏପରି ନରଶ୍ରେଷ୍ଠ ନାହାନ୍ତି, ଯେ ସମସ୍ତ ଉନ୍ନତିର ଚେତାଉଛନ୍ତି 'ଅଗ୍ରସର' ।

ସେ ଗାନ୍ଧୀଜୀଙ୍କୁ ଋଷି ବା ମହାତ୍ମା ପରି ନୁହେଁ ଜଣେ ମନୁଷ୍ୟ ହିସାବରେ ପ୍ରଶଂସା କରିବାକୁ ଚାହାନ୍ତି ବୋଲି ଏଥିରେ ଜୋର ଦେଇ କହିଛନ୍ତି । ସେ ନିଜେ ଶକ୍ତିଶାଳୀ ଏବଂ ଅଟଳ ହୋଇଥିବାରୁ ଅନ୍ୟର ଶକ୍ତି ଚିହ୍ନି ପାରନ୍ତି । କାରଣ ଏହା ପରିଷ୍କାର ଯେ ଏହି ଶୀର୍ଣ୍ଣ ଶରୀର ଲୋକଟିପାରେ କାଠ ଇସ୍ପାତ୍ ଓ ପାହାଡ଼ ପରି ଶକ୍ତ କିଛି ଅଛି—ଦୈହିକ ଶକ୍ତି ଯେତେ ବଡ଼ ହେଉନା କାହିଁକି ତାହା ଏହାକୁ ଦମନ କରି ପାରିବ ନାହିଁ । ତାଙ୍କ ଆକୃତି, ଛୋଟ ଲୁଗା ଓ ଖୋଲା ଦେହ ଦେଖି କେହି ଆକୃଷ୍ଟ ହେବ ନାହିଁ ସତ୍ୟ, ମାତ୍ର ଏହା ଭିତରେ ଏପରି ଗରିମା ଅଛି, ଯାହା ପାଖରେ ଲୋକ ବାଧ୍ୟ ହୋଇ ମସ୍ତକ ଅବନତ କରେ । ସଚେତନ ଭାବରେ ଜାଣିଶୁଣି ସେ ଶାନ୍ତ ଓ ନମ୍ର, ତଥାପି ଦୃଢ଼ ଓ କର୍ତ୍ତୃତ୍ୱଭାବ ତାଙ୍କଠାରେ ଯଥେଷ୍ଟ ଅଛି । ସେ ଏହା ଜାଣନ୍ତି— ସମସ୍ତ ସମୟରେ ସେ ସମ୍ରାଟ ପରି ଆଦେଶ ଦିଅନ୍ତି, ତାହା ଅବଶ୍ୟ ପାଳନ କରିବାକୁ ପଡ଼ିବ । ତାଙ୍କର ଶାନ୍ତ ଓ ଗଭୀର ଦୃଷ୍ଟି ଯାହା ଉପରେ

ପଡ଼ିବ, ତାହାର ଅଭ୍ୟନ୍ତରକୁ ପ୍ରବେଶ କରିପାରିବ; ତାଙ୍କର ସ୍ପଷ୍ଟ ଓ ଗମ୍ଭୀର କଣ୍ଠସ୍ୱର ହୃଦୟରେ ପ୍ରବେଶ କରି ଭାବାବେଶ ସୃଷ୍ଟି କରିବ । ଶ୍ରୋତା ଜଣେ ହେଉ ବା ହଜାର ହୁଅନ୍ତୁ, ତାଙ୍କର ଅପୂର୍ବ ପ୍ରଭାବରେ ସେ ମୁଗ୍ଧ ହୋଇ ବକ୍ତା ସହିତ ମିଳିତ ହେବାପରି ପ୍ରତ୍ୟକ୍ଷ ବୋଧ ଅନୁଭବ କରିବ । ଏଥି ଶ୍ରବଣରେ ମନ ସହିତ ବାହ୍ୟ ସମ୍ପର୍କ ନାହିଁ— ଅବଶ୍ୟ ମନସ୍ପର୍ଶ କରିବା କଥା ଏକାନ୍ତ ଫୋପାଡ଼ି ଦିଆଯାଇ ପାରେ ନା । ଚିନ୍ତା ଏବଂ ମୁକ୍ତ ଦୃଷ୍ଟିରୁ ସ୍ଥାନ ଅଧିକାର କରେ । ଖୁବ ଭଲ ବକ୍ତୃତା ବା ଶବ୍ଦମାଳା ମୋହରେ ପଡ଼ି ଲୋକ ଏପରି 'ମନ୍ତ୍ରମୁଗ୍ଧ'' ହୁଏ ନାହିଁ । ଭାଷା ଅତ୍ୟନ୍ତ ସରଳ ଏବଂ ସୁନିର୍ଦ୍ଦିଷ୍ଟ - ଅନାବଶ୍ୟକ ଲମ୍ବା କଥା ପ୍ରାୟ ବାହାରେ ନାହିଁ । ତାଙ୍କର ଗଭୀର ସଚ୍ଚୋଟ ପରିଶ୍ରମ ଏବଂ ବ୍ୟକ୍ତିତ୍ୱ ଲୋକଙ୍କୁ ଆକୃଷ୍ଟ କରେ, ତାଙ୍କର ଅନ୍ତରର ଅକୃତ୍ରିମ ଶକ୍ତିର ପରିଚୟ ବାହାର ଭଙ୍ଗିରୁ ଜଣାପଡ଼େ । ବୋଧହୁଏ ତାଙ୍କ ମାହାତ୍ମ୍ୟ ସମ୍ବନ୍ଧରେ ଏପରି ଗଳ୍ପ ସବୁ ଲୋକମୁଖରେ ପ୍ରଚଳିତ ହେଲାଣି, ଯାହା ହେତୁ ଗୋଟାଏ ଉପଯୋଗୀ ବାୟୁମଣ୍ଡଳ ଆପେ ଆପେ ସୃଷ୍ଟି ହୁଏ । ଏହି ପରି ସମ୍ବନ୍ଧରେ ଅଜ୍ଞ ଏବଂ ପାରିପାର୍ଶ୍ୱିକ ଅବସ୍ଥା ସହିତ ଖାପ ଖାଉ ନ ଥିବା କୌଣସି ଅପରିଚିତ ଲୋକକୁ ସମ୍ଭବତଃ ଏହା ସ୍ପର୍ଶ କରିବ ନାହିଁ ଏବଂ କଲେ ଏତେ ପରିମାଣରେ ସେ ମୁଗ୍ଧ ହୋଇ ନ ପାରେ । ତଥାପି ଗାନ୍ଧିଜୀଙ୍କର ଏକ ଉଲ୍ଲେଖଯୋଗ୍ୟ ଗୁଣ ଥିଲା — ଏହା ଏବେ ବି ଅଛି ଯେ ସେ ତାଙ୍କର ବିରୋଧୀଙ୍କୁ ଆପଣାର କରି ନିଅନ୍ତି, ନଚେତ୍ ଅନ୍ତତଃ ତାକୁ ନିରସ୍ତ୍ର କରିପକାନ୍ତି ।

ଗାନ୍ଧୀଜୀ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ପ୍ରଶଂସା କରୁଥିଲେ ମଧ୍ୟ ମନୁଷ୍ୟ ତିଆରି ପଦାର୍ଥମାନଙ୍କର ସୌନ୍ଦର୍ଯ୍ୟ ବା କଳା ପ୍ରତି ତାଙ୍କର ବିଶେଷ ଅନୁରାଗ ନାହିଁ । ତାଜମହଲ କୋଠି ବା ଜିନିଷକୁ ଅଧିକ ଅତ୍ୟାଗ୍ରହୀ କାର୍ଯ୍ୟର ସମଷ୍ଟି ବୋଲି ସେ କହନ୍ତି । ଆଘ୍ରାଣ ଶକ୍ତି ମଧ୍ୟ ତାଙ୍କର କ୍ଷୀଣ । ତଥାପି ସେ ନିଜ ଇଚ୍ଛାନୁସାରେ ଏକ ପ୍ରକାର ବଞ୍ଚିବାର ପ୍ରଣାଳୀ ବାହାର କରିଛନ୍ତି ଏବଂ ତାଙ୍କର ଜୀବନକୁ ସୁନ୍ଦର କରି ପାରିଛନ୍ତି । ତାଙ୍କର

ପ୍ରତ୍ୟେକ ଭଙ୍ଗୀରେ କମନୀୟତା ରହିଛି—ଛଳନା ଲେଶମାତ୍ର ନ ଥାଏ । ତାଙ୍କ କଣ୍ଠରେ କର୍କଶ ଭାବ ବା କ୍ରୋଧ ନାହିଁ । ଆମ ମଧ୍ୟବିତ୍ତ ଶ୍ରେଣୀ ଲୋକଙ୍କ ଭିତରେ ଯେଉଁ ଅଳୀକତା ଦେଖାଯାଏ ତାହାର ଚିହ୍ନ ସୁଦ୍ଧା ତାଙ୍କଠାରେ ଦେଖିବାକୁ ମିଳେ ନା । ସେ ନିଜ ଅନ୍ତରରେ ଶାନ୍ତି ଉପଲବ୍ଧି କରିଛନ୍ତି । ସେହି ଶାନ୍ତି ସେ ଅନ୍ୟମାନଙ୍କୁ ଦେଇ ପାରୁଛନ୍ତି ଏବଂ ଜୀବନର କ୍ଲେଶପୂର୍ଣ୍ଣ ପଥରେ ଦୃଢ଼ ଓ ଅଟଳ ପଦକ୍ଷେପରେ ଅଗ୍ରସର ହୋଇଛନ୍ତି ।

ମୋ ପିତା ଓ ତାଙ୍କ ଭିତରେ କି ପ୍ରଭେଦ ! ମାତ୍ର ତାଙ୍କଠାରେ ମଧ୍ୟ ବ୍ୟକ୍ତିତ୍ୱର ଶକ୍ତି ଏବଂ ଗୋଟାଏ ରାଜକୀୟ ମହିମା ବିଦ୍ୟମାନ; ସୁଇନବର୍ଣ୍ଣଙ୍କ କବିତାର ଯେଉଁ ପଦ ଧାଡ଼ି ସେ ଗାନ୍ଧୀଜୀଙ୍କୁ ଉଦ୍ଦେଶ୍ୟ କରି ଲେଖିଛନ୍ତି, ତାହା ତାଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ । ଯେ କୌଣସି ସଭା ସମିତିରେ ସେ ଉପସ୍ଥିତ ଥିଲେ, ପ୍ରଧାନ ବା ନେତା ହୋଇ ଉଠନ୍ତି । ଜଣେ ଇଂରେଜ ବିଚାରପତି ଥରେ କହିଥିଲେ, ସେ ଟେବୁଲର ଯେ କୌଣସି ସ୍ଥାନରେ ବସନ୍ତୁ ପଛକେ, ତାଙ୍କ ସ୍ଥାନ ପ୍ରତି ସମସ୍ତଙ୍କର ଦୃଷ୍ଟି ପଡ଼ିବ । ସେ ନମ୍ର ବା ଧୀର ନ ଥିଲେ ଏବଂ ଗାନ୍ଧୀଜୀଙ୍କଠାରୁ ଠିକ୍ ବିପରୀତ ଭାବରେ ତାଙ୍କଠାରୁ ମତଭେଦ ଘଟୁଥିବା ଲୋକଙ୍କୁ ସେ ସହଜରେ ଛାଡ଼ନ୍ତି ନାହିଁ । ସେ ପ୍ରଭୁତ୍ୱ ପ୍ରିୟ ପ୍ରକୃତିର ଲୋକ ଥିଲେ । ତାଙ୍କ ପ୍ରତି ଲୋକଙ୍କର ଯେପରି ଅନୁରକ୍ତି ଥିଲା, ସେପରି ବିରୋଧ ମଧ୍ୟ । ତାଙ୍କ ସମ୍ମୁଖରେ କୌଣସି ଲୋକ ପକ୍ଷରେ ନିରପେକ୍ଷ ରହିବା କଷ୍ଟକର । ସେ ହୁଏ ତ ତାଙ୍କୁ ଭଲ ପାଇବ ନଚେତ୍ ଘୃଣା କରିବ; ଏକ ପ୍ରଶସ୍ତ କପାଳ, ଶକ୍ତ ଓଠ ଏବଂ ସ୍ଥିର ଚିବୁକର ଇଟାଲି ଯାଦୁଘରେ ଥିବା ରୋମାନ ସମ୍ରାଟ-ମାନଙ୍କ ଚେହେରା ସହିତ ସାମଞ୍ଜସ୍ୟ ଥିବାର ଦେଖାଯାଏ । ଇଟାଲିରେ ଅନେକ ବନ୍ଧୁ ତାଙ୍କର ଛବି ଦେଖି ମତ ପ୍ରକାଶ କରିଛନ୍ତି । ବିଶେଷତଃ ଶେଷ କାଳକୁ ତାଙ୍କ ମସ୍ତକ ଶୁଭ୍ର କେଶ ଆବୃତ ହୋଇଥିଲା । ମୋ ପରି ତାଙ୍କ ମୁଣ୍ଡରୁ ବାଳ ଝଡ଼ି ଯାଇ ନ ଥାଏ । ସେଥିରେ ତାଙ୍କର ଗୋଟାଏ ଏପରି ମହତ୍ତ୍ୱ ଓ ବଡ଼ ପଣିଆ ଦେଖା ଦେଉଥିଲା, ଯାହା ଆଜିକାଲି

ଖୁବ୍ କମ୍ ଲୋକଙ୍କଠାରେ ଦେଖିବାକୁ ମିଳେ । ମୋର ମନେହୁଏ ତାଙ୍କ ପ୍ରତି ମୋର ହିଁଭଳ ପକ୍ଷପାତ ହୁଏ ଅଛି । ଆମ ସମ୍ଭାର ଅତି ଶ୍ରେଷ୍ଠ ଶ୍ରେଷ୍ଠ କଥା ଏବଂ ଦୁର୍ବଳତାରେ ଭରା । ମୁଁ ତାଙ୍କର ଉପସ୍ଥିତିର ଅଭାବ ସର୍ବଦା ଉପଲବ୍ଧି କରୁଛି । ମୁଁ ବୃଥାରେ ତାଙ୍କପରି ଅଦ୍ଭୁତ ଶକ୍ତି ପାଇବାଲାଗି ଆଶା କରେ ।

ମୋର ମନେ ଅଛି, ୧୯୨୪ ମସିହାରେ ଗାନ୍ଧିଜୀଙ୍କର ସ୍ୱରାଜ୍ୟ ଦଳ ସହିତ ମତଭେଦ ଲାଗିଥିବା ବେଳେ ମୁଁ ତାଙ୍କୁ ଥରେ ପିତାଙ୍କର ଗୋଟିଏ ଛବି ଦେଖାଇଥିଲି । ଏହି ଛବିରେ ପିତାଙ୍କର ଦାଢ଼ି ନ ଥାଏ । ସେତେବେଳେ ପର୍ଯ୍ୟନ୍ତ ଗାନ୍ଧିଜୀ ପିତାଙ୍କୁ ବରାବର ଦାଢ଼ି ଥିବାର ଦେଖିଥିଲେ । ସେ ଏହି ଛବି ଦେଖି ଚମକି ପଡ଼ିଲେ ଏବଂ ଅନେକ ସମୟ ପର୍ଯ୍ୟନ୍ତ ସେଥି-ପ୍ରତି ଦୃଷ୍ଟିପାତ କଲେ । କାରଣ ଦାଢ଼ି ନ ଥିବାରୁ ତାଙ୍କର ମୁଖ ଓ ଚିବୁକର କଠିନତା ପ୍ରକାଶ ପାଉଥିଲା । ତାହା ଦେଖି ହିଁକଏ ମୃଦୁହାସ୍ୟ କରି ଗାନ୍ଧିଜୀ କହିଲେ, କପରି ଲୋକ ସହିତ ମୋତେ ବିରୋଧ କରିବାକୁ ପଡ଼ୁଛି, ତାହା ମୁଁ ଏବେ ବୁଝିଲି । ଅବଶ୍ୟ ତାଙ୍କର ଚକ୍ଷୁ ଓ ହାସ୍ୟରେଖାରେ ମୁହଁଟି କୋମଳ ହୋଇ ଯାଉଥିଲା । ସମୟ ସମୟରେ ଚକ୍ଷୁ ଉଜ୍ଜ୍ୱଳ ଦେଖାଯାଏ ।

ପାଞ୍ଚହଂସ ପାଣିରେ ପଡ଼ିଥିଲାପରି ବାପା ଏସେମ୍ବ୍ଲି କାର୍ଯ୍ୟରେ ଲାଗି-ଥାଆନ୍ତି । ସେ ଆଇନ ଓ ଶାସନବିଧାନ ସମ୍ବନ୍ଧରେ ଯେଉଁ ଜ୍ଞାନ ଅର୍ଜିଥିଲେ ତାହା ଏଥିରେ କାମ ଦେଲା । ସତ୍ୟାଗ୍ରହ ଓ ତାର ଶାଖା ପ୍ରଶାଖା ସମ୍ବନ୍ଧରେ ତାଙ୍କୁ ସବୁ ଜଣା ନ ଥିଲା, ମାତ୍ର ଏହି ଖେଳଟା ସେ ବେଶ୍ ବୁଝିପାରୁଥିଲେ । ତାଙ୍କ ଦଳକୁ ସେ ଖୁବ୍ ଶୃଙ୍ଖଳିତ କରିଥିଲେ ଏବଂ ଅନ୍ୟ ଦଳ ଓ ବ୍ୟକ୍ତି ବିଶେଷ ଏହାକୁ ସମର୍ଥନ କରିବା ନିମନ୍ତେ ସେ ପ୍ରବର୍ତ୍ତାଇଲେ । ମାତ୍ର ଅଳ୍ପ ଦିନ ପରେ ତାଙ୍କ ନିଜ ଲୋକଙ୍କ ଭିତରୁ ଗୋଳମାଳ ଆରମ୍ଭ ହେଲା । ସ୍ୱରାଜ୍ୟ ଦଳର ପ୍ରଥମ ଅବସ୍ଥାରେ ଅପରିବର୍ତ୍ତିନବାଦୀଙ୍କ ସହ ଏମାନଙ୍କୁ ଲଢ଼ିବାକୁ ପଡ଼ୁଥିଲା, କଂଗ୍ରେସ ଭିତରେ ଶକ୍ତି ବୃଦ୍ଧି କରିବା ନିମନ୍ତେ ଅନେକ

ଟବାସ୍ଥିତ୍ୱ ଲୋକ ଏଥିରେ ସ୍ଥାନ ପାଇଲେ । ତା ପରେ ନିର୍ବାଚନ ପରିଲ—ଏଥିଲାଗି ଅର୍ଥ ଦରକାର ହେଲା—ଧନୀ ଲୋକଙ୍କଠାରୁହିଁ ଧନ ଆସିବ ! ସୁତରାଂ ଧନୀ ଲୋକଙ୍କୁ ନିଶ୍ଚୟ ସନ୍ତୁଷ୍ଟ କରିବାକୁ ହେବ । କେତେକ ଧନୀ ଲୋକଙ୍କୁ ସ୍ୱରାଜ୍ୟ ଦଳ ତରଫରୁ ପ୍ରାର୍ଥୀ ହେବା ନିମନ୍ତେ ମଧ୍ୟ କୁହାଗଲା । ଆମେରିକାର ଜଣେ ସାମ୍ୟବାଦୀ ଲେଖିଛନ୍ତି, (ମାର୍କ୍ସ ଫୋର୍ଡ କ୍ରିସ୍ ତାଙ୍କର ଏକ ପୁସ୍ତକରେ ତାହା ଉଦ୍ଧୃତ କରିଛନ୍ତି) "ଦରିଦ୍ର ଲୋକଙ୍କଠାରୁ ଭୋଟ ଆସିବ ଏବଂ ନିର୍ବାଚନ ଲାଗି ଧନୀ ଲୋକଙ୍କଠାରୁ ଅର୍ଥ ଆସିବ; ଅଥଚ ଏହି ଦୁହିଁଙ୍କୁ ପରସ୍ପରଠାରୁ ରକ୍ଷା କରିବା ନିମନ୍ତେ ପ୍ରତିଶ୍ରୁତି ଦେବ, ଏହା ରାଜନୀତିର ଅସଲ କଳା ।"

ଏହି ସବୁ ଲୋକ ପଶିବାଦ୍ୱାରା ମୂଳରୁ ଦଳ ଦୁର୍ବଳ ହେଲା । ଆସେମ୍ବ୍ଲି ଓ କାଉନ୍‌ସିଲ କାର୍ଯ୍ୟରେ ଅନ୍ୟ ଦଳ ଏବଂ ମଣ୍ଡଳୀମାନଙ୍କ ସହ ପ୍ରାୟ ପ୍ରତିଦିନ ଆପୋଷ ନିଷ୍ପତ୍ତି କରିବା ଦରକାର ପଡ଼ୁଥିଲା । ସବୁବେଳେ ଗୋଟାଏ ବିରୋଧାତ୍ମକ ମନୋଭାବ ବା ଜିଦ୍ ଧରି ବସିଲେ ଚଳିବ ନାହିଁ । କ୍ରମେ ଦଳର ଶୃଙ୍ଖଳା ଓ ପୂର୍ବ ମର୍ଯ୍ୟାଦାର ପତନ ହେଲା—ଦୁର୍ବଳ ଏବଂ ସୁବିଧାବାଦୀ ଲୋକେ ହଇରାଣ କରିବାକୁ ଲାଗିଲେ । "ଭିତରୁ ବିରୋଧ" କରିବେ ବୋଲି ଘୋଷଣା କରି ସ୍ୱରାଜ୍ୟ ଦଳ ବ୍ୟବସ୍ଥା ସଭାମାନଙ୍କରେ ପ୍ରବେଶ କରିଥିଲେ । କେବଳ ଦୁଇଟି ଦଳ ଭିତରେ ସିନା ଖେଳ ହୋଇ-ନଥିଲା । ସରକାର ଏହିଭଳି ସ୍ୱରାଜ୍ୟ ଦଳ ଭିତରେ ବିରୋଧ ଓ ବିଭେଦ ସୃଷ୍ଟି କରିବାରେ ଲାଗିଲେ । ଦୁର୍ବଳ ଲୋକମାନଙ୍କୁ ଉଚ୍ଚ ପଦବୀ ଏବଂ ନାନାପ୍ରକାର ଲୋଭ ଦିଆଗଲା । ସେମାନେ ତାହା ନେବା ପାଇଁ ବ୍ୟଗ୍ର ଥିଲେ । ସେମାନଙ୍କର ଦକ୍ଷତା, ରାଜନୀତି କୁଶଳତା ଏବଂ ମୁକ୍ତମୁକ୍ତତା ବିଷୟରେ ପ୍ରଶଂସା କରାଗଲା । ସେମାନଙ୍କର ବୃଦ୍ଧିପାଇଁ ସେ ଏକ ସୁଖକର ଏବଂ ମନ ମାନିଲାପରି ବାୟୁମଣ୍ଡଳ ସୃଷ୍ଟି କରାଗଲା—ବଜାର ଏବଂ ଗ୍ରାମ୍ୟର ହଟ୍ଟଗୋଳ ଏବଂ ଧୂଳିଠାରୁ ଏହା କେତେ ସ୍ୱତନ୍ତ୍ର ପରିସ୍ଥିତି ।

ସ୍ୱରାଜ୍ୟ ଦଳର ମତଗତ ନିଶ୍ଚୟ ତଳକୁ ଖସିଲା । କେଉଁଠି କେମିତି କେତେକ ଉଦ୍ଦେଶ୍ୟ ଅନ୍ୟ ପକ୍ଷକୁ ଖସିବାରେ ଲାଗିଲେ । ମୋ ପିତା କ୍ରୋଧାନ୍ୱିତ

ହୋଇ ଚିତ୍କାର କଲେ ଏବଂ ଶରୀରର "ରୋଗାକ୍ରାନ୍ତ ଅଙ୍ଗ"କୁ କାଟି ପକାଇବେ ବୋଲି ଭୟ ଦେଖାଇଲେ । ସେ ଅଙ୍ଗଟି ନିଜେ ଖସିଯିବା ନିମନ୍ତେ ପ୍ରସ୍ତୁତ ଥିବାବେଳେ ଏହି ଭୟ କିଛି କାମ ଦେଲା ନାହିଁ । ପରେ ସ୍ୱରାଜ୍ୟ ଦଳର କେତେକ ଲୋକ ମନ୍ତ୍ରୀ ହେଲେ ଏବଂ କେତେଜଣ ଏକଜିକ୍ୟୁଟିଭ କାଉନ୍ସିଲର ସଭ୍ୟ ହେଲେ । କେତେକ ଲୋକ ଗୋଟିଏ ଅଲଗା ଦଳ କରି ନିଜକୁ "ରେସ୍ପନ୍ସିଭିଷ୍ଟ" ବା "ରେସ୍ପନ୍ସିଭ କୋଅପରେଟର" ବୋଲି ଆଖ୍ୟା ଦେଲେ—ଲୋକମାନ୍ୟ ତିଳକ ଏକ ଅଲଗା ସମୟରେ ଏହି ନାମ ବ୍ୟବହାର କରିଥିଲେ । ଏହା ବର୍ତ୍ତମାନ ଯେପରି ଅବସ୍ଥାରେ ଅଛି, ତାହାର ଅର୍ଥ ହେଉଛି—"ସୁଯୋଗ ପାଇଲେ ଗ୍ରହଣ କର ଏବଂ ତାର ଉତ୍କୃଷ୍ଟ ବ୍ୟବହାର କର ।" ଏହିସବୁ ଦଳ ଖସିଗଲା ପରେ ଶୁଦ୍ଧା ସ୍ୱରାଜ୍ୟ ଦଳ ରହିଥିଲା—ମାତ୍ର ଏହି ଘଟଣାବଳୀରେ ମୋ ପିତା ଓ ଦେଶବନ୍ଧୁ ଦାସ ଟିକିଏ ବିରକ୍ତ ହୋଇଗଲେ—ବ୍ୟବସ୍ଥାପକ ସଭାର ନିରର୍ଥକ କାର୍ଯ୍ୟରେ ଟିକିଏ ବ୍ୟସ୍ତ ହୋଇ ପଡ଼ିଥିଲେ । ଏହା ଛଡ଼ା ମଧ୍ୟ ଉତ୍ତର ଭାରତରେ ସାମ୍ପ୍ରଦାୟିକ ବିବାଦ ବଢ଼ିଥିଲା—ସମୟ ସମୟରେ ଏହା ଦଙ୍ଗାରେ ପରିଣତ ହେଉଥିଲା ।

୧୯୨୧ ଓ ୨୨ ରେ ଆମ ସହିତ ଜେଲରେ ଥିବା କଂଗ୍ରେସ ଲୋକଙ୍କ ଭିତରୁ କେତେକ ଏବେ ମନ୍ତ୍ରୀ ହେଲେ । ବଡ଼ ବଡ଼ ଅଧିକାର କଲେ । ୧୯୨୧ରେ ଆମକୁ ବେଆଇନ ଘୋଷଣା କରିଥିବା ଓ ଜେଲ ଦେଇଥିବା ସରକାର ଭିତରେ କେତେକ ଲିବରାଲ (ପୁରୁଣା ଦଳିଆ କଂଗ୍ରେସ ଲୋକେ) ସଭ୍ୟ ଥିଲେ ବୋଲି ଆମେ ଦୁଃଖିତ ହୋଇଥିଲୁ । ଭବିଷ୍ୟତରେ ଆମେ କେତେକ ପ୍ରଦେଶରେ ନିଜର ସାଥୀମାନଙ୍କ ଦ୍ୱାରା ଶାସ୍ତି ପାଇବୁ । ଏହା ଗୋଟାଏ ଅଧିକା ସାନ୍ତ୍ୱନା ହେବ । ଏହି ନୂତନ ମନ୍ତ୍ରୀ ଓ ଏକଜିକ୍ୟୁଟିଭ କାଉନ୍ସିଲର ସଭ୍ୟମାନେ ଲିବରାଲମାନଙ୍କ ଅପେକ୍ଷା ଅଧିକ କର୍ମକୁଶଳ ଥିଲେ । ସେମାନେ ଆମକୁ ଜାଣିଥିଲେ—ଆମର ଦୁର୍ବଳତା ବି ଜାଣିଥିଲେ ଏବଂ ତାର କି ପ୍ରକାର ସୁଯୋଗ ଉଠାଇବାକୁ ହେବ । ତାହା ତାଙ୍କୁ ମାଲୁମ ଥିଲା । ଆମ ପନ୍ଥା ବି ତାଙ୍କୁ ଭଲରୂପେ ଜଣାଥିଲା,

ଜନସାଧାରଣଙ୍କ ଭାବ ଏବଂ ଜନତା ସମ୍ବନ୍ଧରେ କିଛି ଅଜ୍ଞତା ତାଙ୍କର ଥିଲା । ନାଗପୁରମାନଙ୍କ ପରି ସେମାନେ ପଟ ପରିବର୍ତ୍ତିନ କଲା ପୂର୍ବରୁ ବହୁବାର ପତ୍ନୀ ସହିତ ଖେଳ କରିଥିଲେ । ଅମଲାତନ୍ତ୍ର ଏବଂ ଲିବରାଲ ମନ୍ତ୍ରୀମାନେ ସେମାନଙ୍କର ଅଜ୍ଞତା ଯୋଗୁଁ କଂଗ୍ରେସକୁ ଦମନ କରିବା ନିମନ୍ତେ ଯାହା କରି ନ ପାରି ଥାନ୍ତେ, ଆଜି କଂଗ୍ରେସର ପୁରୁଣା ସହକର୍ମୀମାନେ ତାହା କରିବାରେ ସମର୍ଥ ହେଲେ ।

୧୯୨୪ ଡିସେମ୍ବରରେ ବେଲଗାଁଓରେ କଂଗ୍ରେସ ଅଧିବେଶନ ହେଲା ଏବଂ ଗାନ୍ଧିଜୀ ସଭାପତି ହେଲେ । ତାଙ୍କ ପକ୍ଷରେ ସଭାପତି ହେବାର ଅର୍ଥ କିଛି ନୁହେଁ -- କାରଣ ଅନେକ ବର୍ଷ ହେଲା ସେ କଂଗ୍ରେସର ମହାସଭାପତି ହୋଇଥିଲେ । ମୋତେ ତାଙ୍କର ସଭାପତି ଅଭିଭାଷଣ ଭଲ ଲାଗିଲା ନାହିଁ । ଏହା ଆଦୌ ପ୍ରେରଣାଦାୟକ ନୁହେଁ ବୋଲି ମୋତେ ବୋଧ ହେଲା । ଅଧିବେଶନ ଶେଷରେ ଗାନ୍ଧିଜୀଙ୍କର ଇଚ୍ଛାନୁସାରେ ମୁଁ ପୁଣି ଆଗାମୀ ବର୍ଷ ପାଇଁ ସମ୍ପାଦକ ହେଲି । ମୋର ଇଚ୍ଛା ନ ଥିବା ସତ୍ତ୍ୱେ ମୁଁ କଂଗ୍ରେସର ଏକପ୍ରକାର ସ୍ଥାୟୀ ସମ୍ପାଦକ ହୋଇ ଯାଉଥିଲି ।

୧୯୨୫ ମସିହା ଗ୍ରୀଷ୍ମ ଋତୁରେ ମୋ ପିତା ଅସୁସ୍ଥ ହେଲେ ଏବଂ ଶ୍ୱାସରୋଗ ବୃଦ୍ଧି ପାଇଁ ତାଙ୍କୁ ବଡ଼ କଷ୍ଟ ଦେଲା । ସେ ପରିବାର ସହ ହିମାଳୟର ଡାଲହାଉସିକୁ ଗଲେ ଏବଂ କେତେଦିନ ପରେ ମୁଁ ତାଙ୍କ ସହିତ ଯୋଗ ଦେଲି । ହିମାଳୟ ଭିତରେ ଡାଲହାଉସିଠାରୁ ଚମ୍ବା ପର୍ଯ୍ୟନ୍ତ ଆମେ ଯାତ୍ରା କରିଥିଲୁ । ମୁଁ ପହଞ୍ଚିଲି ଜୁନ ମାସରେ । ପାହାଡ଼ ଯାତ୍ରାରେ ଆମେ ଟିକିଏ କ୍ଲାନ୍ତ ହୋଇଗଲୁ । ଏକ ତାର ଆସି ପହଞ୍ଚିଲା—ଚିତ୍ତରଞ୍ଜନ ଦାସ ମରିଯାଇଛନ୍ତି । ପିତା ଶୋକରେ ମଉଳ ପଡ଼ି ନିର୍ବାକ ଓ ନିସ୍ତବ୍ଧ ଭାବରେ ବସିପଡ଼ିଲେ । ଏହା ତାଙ୍କ ପକ୍ଷରେ ଏକ ନିଷ୍ଠୁର ଆଘାତ—ସେ କେବେ ଏପରି ଶୋକାତୁର ହେବାର ମୁଁ ଦେଖିନାହିଁ । ଏକମାତ୍ର ଆପଣାର ଏବଂ ପ୍ରମୁଖ ସାଥି ତାଙ୍କୁ ଛାଡ଼ି ଚାଲିଗଲେ—ସମସ୍ତ ବୋଝ ତାଙ୍କ ଉପରେ ବର୍ତ୍ତିମାନ ପଡ଼ିଲା ।

ବେ'ଝୁଁ ତ କମେ ବଢୁଥିଲା । ସେ ଓ ଦେଶବନ୍ଧୁ ଉଭୟେ ଏଥିରେ ଓ ଜନ ଲୋକଙ୍କର ଦୁର୍ବଳତା ଦେଖି ଅଧୀର ହୋଇ ଯାଇଥିଲେ। ଦେଶବନ୍ଧୁ ଫରିଦପୁର ସମ୍ମିଳନୀରେ ଯେଉଁ ଭାଷଣ ଦେଇଥିଲେ ସେଥିରେ କ୍ଲାନ୍ତ ଲୋକର ମନୋଭାବର ସୂଚନା ଥିଲା ।

ଆମେ ତହିଁର ଦିନ ସକାଳେ ଚମ୍ପା ବୃକ୍ଷ ଭାଳହାଭସିକୁ ଫେରି ଆସିଲୁ—ସେଠି ମଟରରେ ରେଳଗାଡ଼ି ପାଖକୁ ଆସିଲୁ । ସେଠି ଏଲାହାବାଦ ଦେଇ କଲିକତା ଗଲୁ ।



## ଉଗ୍ର ସାଂପ୍ରଦାୟିକତା

ନାଭା ଜେଲରୁ ଖଲାସ ହୋଇ ଆସିଲା ପରେ ୧୯୨୩ ମସିହା ଶରତ ଋତୁରେ 'ଟାଇଫସ୍' ଜ୍ୱରାକ୍ରାନ୍ତ ହେବାରୁ ମୁଁ ଯେ ପୀଡ଼ିତ ହେଲି ଏହା ମୋ ପକ୍ଷରେ ସମ୍ପୂର୍ଣ୍ଣ ନୂତନ ଅଭିଜ୍ଞତା । ମୁଁ କେବେ ଶାରୀରିକ ଦୁର୍ବଳତା ବା ଜ୍ୱର ହେତୁ ପୀଡ଼ିତ ହୋଇ ନ ଥିଲି ବା ବିଛଣାରେ ପଡ଼ି ରହି ନ ଥିଲି । ମୋର ସ୍ୱାସ୍ଥ୍ୟ ସକାଶେ ମୁଁ ଗର୍ବ ଅନୁଭବ କରେ । ଆମ ଦେଶରେ ସାଧାରଣତଃ ମୋର ସ୍ୱାସ୍ଥ୍ୟ ଭଲ ନାହିଁ ଆଦି କହିବା ମନୋଭାବର ମୁଁ ପ୍ରତିବାଦ କରେ । ମୋର ଯୌବନ ଏବଂ ଭଲ ସ୍ୱାସ୍ଥ୍ୟ ଯୋଗୁଁ ମୁଁ ସେଥିରୁ ବର୍ତ୍ତି ଗଲି ମାତ୍ର ସଙ୍କଟ ପାର ହେବା ପରେ ଦୁର୍ବଳ ଅବସ୍ଥାରେ ଅନେକ ଦିନ ବିଛଣାରେ ପଡ଼ି ରହିଲି ଓ କମେ ପୂର୍ଣ୍ଣ ସ୍ୱାସ୍ଥ୍ୟ ଫେରି ପାଇଲି । ଏହି କେତେଦିନ ମୁଁ ମୋର ପୂର୍ବର ପାରିପାର୍ଶ୍ୱିକ ପରିସ୍ଥିତି ଓ ଦୈନନ୍ଦିନ କାର୍ଯ୍ୟରୁ ଅଲଗା ହୋଇ ରହିଥିଲି ଏବଂ ଦୂରରେ ରହି ଅବସ୍ଥା ଲକ୍ଷ୍ୟ କରୁଥିଲି । ମୋର ମନେହେଲା ସତେକି ମୁଁ ଅନ୍ଧାରର ଭିତରୁ ବାହାରି ଆସିଲିଣି – ବର୍ତ୍ତମାନ ସାରା ଜଙ୍ଗଲଟା ଦେଖି ପାରୁଛି । ପୂର୍ବାପେକ୍ଷା ମୋର ମନ ଅଧିକ ପରିଷ୍କାର ଓ ଶାନ୍ତିପ୍ରଦ ବୋଧ ହେଲା ।

ମୋର ମନେ ହୁଏ ଉଚିତ ରୋଗାକ୍ରାନ୍ତ ଅବସ୍ଥାରେ ପ୍ରତ୍ୟେକ ଲୋକର ଏହିପରି ଅନୁଭୂତି ହୋଇଥିବ । ଏହା ମୋତେ ଏକପ୍ରକାର ଆଧ୍ୟାତ୍ମିକ ଅନୁଭୂତି ପରି ମନେ ହେଲା । ମୁଁ ଏହି ଶବ୍ଦ ସଙ୍କୀର୍ଣ୍ଣ ଧର୍ମ ଅର୍ଥରେ ବ୍ୟବହାର କରୁନାହିଁ । ଏହା ମୋ ଉପରେ ଖୁବ୍ ପ୍ରଭାବ ପକାଇଲା । ଆମ ରାଜନୀତିର ଭାବପ୍ରବଣ ବାୟୁମଣ୍ଡଳରୁ ମୁଁ ଉପରକୁ ଉଠିଲି ଏବଂ ଯେଉଁ ଲକ୍ଷ୍ୟ କଥା ଭାବି ରାଜନୀତିରେ ମୁଁ ଅଗ୍ରସର ହେଉଥିଲି, ତାହା ଆହୁରି ପରିଷ୍କାର ରୂପେ ବୁଝି ପାରିଲି । ଏହା ପରୀକ୍ଷିତ ହେବା ସଙ୍ଗେ ସଙ୍ଗେ ମୋ ମନରେ ଆହୁରି କେତେକ ପ୍ରଶ୍ନ ଉଠିଲା — ମାତ୍ର ତା'ହାର ସନ୍ତୋଷଜନକ ଜବାବ ମୁଁ ପାଇଲି ନାହିଁ । ମୁଁ ଜୀବନ ଓ ରାଜନୀତିକୁ ଧାର୍ମିକ ଦୃଷ୍ଟିକୋଣରୁ ବେଶି ଦେଖି ପାରିଲି ନାହିଁ । ମୋର ଏହି ଅନୁଭୂତି ସମ୍ବନ୍ଧରେ ମୁଁ ବେଶି ଲେଖି ପାରିବି ନାହିଁ । ଏହି ଭାବ ମୁଁ ପ୍ରକାଶ କରି ପାରୁନାହିଁ । ଏହା ଏଗାର ବର୍ଷ ତଳର ଘଟଣା—କେବଳ ଗୋଟାଏ ସ୍ମୃତି ମାତ୍ର ମୋ ମନରେ ରହିଛି । ମାତ୍ର ମୋର ମନେ ଅଛି ଏହାର ଗୋଟାଏ ସ୍ଥାୟୀ ପ୍ରଭାବ ମୋ ଉପରେ ଓ ମୋ ଚିନ୍ତାଧାରାରେ ପଡ଼ିଛି ଏବଂ ଏହାପରେ ପ୍ରାୟ ଛ ବର୍ଷ ପର୍ଯ୍ୟନ୍ତ ଅଧିକ ଅନାସକ୍ତ ଭାବରେ ମୋର କାର୍ଯ୍ୟ କରିଥିଲି ।

ଏହି ସମୟରେ ଏପରି କେତେକ ଘଟଣା ଘଟିଥିଲା, ଯାହା ମୋ ଆୟତ୍ତର ବାହାରେ ଥିଲା । ମୁଁ ନିଜକୁ ସେଥିରେ ଖାପ ଖୁଆଇ ପାରିଲି ନାହିଁ—ଏହା ମଧ୍ୟ ମୋର ଅନାସକ୍ତ ଭାବ ହେବାପାଇଁ କେତେକାଂଶରେ ଦାୟୀ । ମୁଁ କେତେକ ରାଜନୀତିକ ପରିବର୍ତ୍ତନ କଥା ଆଗରୁ ଲେଖିଛି । ବିଶେଷତଃ ଉତ୍ତର ଭାରତରେ ହିନ୍ଦୁ ମୁସଲମାନ ବିବାଦ ଯେପରି ଅଧୋଗତି ଆଡ଼କୁ ଗତି କଲା ତାହା ଖୁବ୍ ଗୁରୁତର । ବଡ଼ ବଡ଼ ସହରମାନଙ୍କରେ ଦଙ୍ଗା ହେଲା—ପାଶବିକ ଏବଂ ନିର୍ମମ ରୂପ ଧାରଣ କଲା । ଏହି ଅବିଶ୍ୱାସ ଓ କ୍ରୋଧଜନିତ ବାୟୁମଣ୍ଡଳ ହେତୁ ଆମେ କଳ୍ପନା କରି ନ ଥିବା ନୂତନ କାରଣ ସବୁ ଜାତ ହୋଇ ବିବାଦ ବଢ଼ିଲା । ଆଗରୁ ଗୋରୁ ହାଲାଲ ବିଷୟ ନେଇ ବିଶେଷତଃ ବକ୍ରୀଦ ଦିବସରେ ଗୋଟାଏ

କାଳିଥର ସୃଷ୍ଟିଘାତ ହେଉଥିଲା । ହିନ୍ଦୁ ମୁସଲମାନ ଉତ୍ସବ ଏକାଠି ପଡ଼ିଲେ ଯଥା ରାମଲୀଲା ଓ ମହରମ୍ ଏକା ସମୟରେ ପଡ଼ୁଥିଲେ ଆଗରୁ ବିବାଦ ହେଉଥିଲା । ମହରମ୍ ଅତୀତର ବିଷାଦ କାହାଣୀର ସ୍ମୃତି—ଏଥିରେ ବିଷାଦ ଓ ଶୋକର ଆବେଶ । ମାତ୍ର ରାମଲୀଲା ଏକ ଆନନ୍ଦ ଉତ୍ସବ—ଅନ୍ୟାନ୍ୟ ଦୃଷ୍ଟିରେ ଧର୍ମର ବିଜୟ ଉତ୍ସବ—ଦୁହିଁଙ୍କ ଭିତରେ ସାମଞ୍ଜସ୍ୟ ନାହିଁ । ଭାଗ୍ୟର କଥା, ପ୍ରାୟ ୩୦ ବର୍ଷ ପରେ ଏହା ଥରେ ଏକ ସମୟରେ ପଡ଼ିଯାଏ । କାରଣ ରାମଲୀଲା ସୌର ମାସ ଅନୁସାରେ ଗଣାଯାଉଥିବାରୁ ଏହା ପ୍ରତିବର୍ଷ ଏକ ସମୟରେ ପଡ଼େ, ମାତ୍ର ମହରମ୍ ଚାନ୍ଦ୍ର ମାସରେ ଗଣା ହେଉଥିବାରୁ ପ୍ରତିବର୍ଷ ଅଲଗା ଅଲଗା ସମୟରେ ପଡ଼େ ।

ଏବେ ବିବାଦର ଆଉ ଏକ ନୂଆ କାରଣ ବାହାରିଲା—ଏହା ବରାବର ବହୁତ ଦିନରୁ ଚାଲି ଆସୁଥିଲା । ମାତ୍ର ଝଗଡ଼ା ହେଉ ନ ଥିଲା । ଏହା ହେଉଛି ମସଜିଦ୍ ଆଗରେ ସଙ୍ଗୀତ । ମସଜିଦ୍ ପାର୍ଥନାରେ ବାଧା ହେବ ବୋଲି ସଙ୍ଗୀତ ବା ଅନ୍ୟ କୌଣସି ଶବ୍ଦ ମସଜିଦ୍ ଆଗରେ କରାଯିବା ଦେବାରେ ମୁସଲମାନମାନେ ଆପତ୍ତି କଲେ । ପ୍ରତ୍ୟେକ ସହରରେ ଅନେକ ମସଜିଦ୍ ଅଛି ଏବଂ ପ୍ରତିଦିନ ପାଞ୍ଚଥର ସେମାନେ ପ୍ରାର୍ଥନା କରନ୍ତି—ବିବାହ ଓ ଶବ ଶୋଭାଯାତ୍ରା ଆଦି ପ୍ରାୟ ହୁଏ—ସେଥିରେ ଗୋଳମାଳ ନ ହୁଏ ଏପରି ନୁହେଁ । ତେଣୁ ବିବାଦ କରିବାର କାରଣ ତ ବରାବର ରହିଥିଲା । ବିଶେଷତଃ ମସଜିଦ୍‌ମାନଙ୍କରେ ସନ୍ଧ୍ୟାକାଳ ପ୍ରାର୍ଥନା ବେଳେ ଶୋଭାଯାତ୍ରା ବା ଅନ୍ୟ ଗୋଳମାଳ ପ୍ରତି ଆପତ୍ତି ହେଉଛି । ଏହି ସନ୍ଧ୍ୟା ସମୟରେ ପୁଣି ହିନ୍ଦୁ ମନ୍ଦିରମାନଙ୍କରେ ପୂଜା ହୁଏ—ଶଙ୍ଖଧ୍ୱନି ହୁଏ, ଘଣ୍ଟା ବାଜେ । ଏହାକୁ ଆରତି କହନ୍ତି । ଏହି ଆରତି-ନମାଜ ଝଗଡ଼ା ବହୁତ ଲାଗିଗଲା ।

ଯେଉଁ ପ୍ରବୃତ୍ତି ପରସ୍ପର ସନ୍ଦେହ ଆଲୋଚନା କରି ଏବଂ ତାଙ୍କର ଭାବ ଗତି ଲକ୍ଷ୍ୟ କରି ସେହି ଅନୁସାରେ ଚଳାଇନେଲେ ଲୁଟିଯାଇଥାନ୍ତା,

ତାହା ନେଇ ଏତେ କଳହ ଏବଂ ଦଙ୍ଗା ହେବା ଦେଖି ଆଶ୍ଚର୍ଯ୍ୟ ମନେ ହୋଇପାରେ । ମାତ୍ର ଧର୍ମିକ ଉନ୍ମାଦଭାବ କେବେହେଁ ଯୁକ୍ତି, ବିବେଚନା କିମ୍ବା ଚଳାଇନେବା ଇତ୍ୟାଦି ଭାବ ମାନେ ନାହିଁ । ତୃତୀୟ ଦଳ କ୍ଷମତାରେ ଥିଲାବେଳେ ଗୋଟିଏ ସମ୍ପ୍ରଦାୟକୁ ଅନ୍ୟ ସମ୍ପ୍ରଦାୟ ବିରୁଦ୍ଧରେ ମତାଇ ଏହା ଜଗାଇ ଦେବା ଆହୁରି ସହଜ ।

ଉତ୍ତର ଭାରତରେ କେତେକ ସହରରେ ହୋଇଥିବା ଏହିସବୁ ଦଙ୍ଗାକୁ ଅତି ବାହୁଲ୍ୟ କରି ବର୍ଣ୍ଣନା କରିବାର ସମ୍ଭାବନା ରହିଛି । ଅନେକ ସହର ଏବଂ ସମସ୍ତ ମଫସଲ ଅଞ୍ଚଳ ଶାନ୍ତିପୂର୍ଣ୍ଣ ଥିଲା, ସେଠାରେ ଏହା ଆଦୌ ସ୍ପର୍ଶ କରି ନ ଥିଲା; ମାତ୍ର ସମ୍ବାଦପତ୍ରମାନେ ସାଧାରଣତଃ ଅତି ଛୋଟ ସାମ୍ପ୍ରଦାୟିକ ବିବାଦକୁ ଖୁବ୍ ପ୍ରାଧାନ୍ୟ ଦେଇ ପ୍ରକାଶ କରନ୍ତି । ଏହା ସମ୍ପୂର୍ଣ୍ଣ ସତ୍ୟ ଯେ ସହରର ଜନସାଧାରଣଙ୍କ ଭିତରେ ସାମ୍ପ୍ରଦାୟିକ ଭାବ ଓ କଳହ ବଢ଼ିଥିଲା । ଉପରେ ଥିବା କେତେକ ସାମ୍ପ୍ରଦାୟିକ ନେତା ଏହାକୁ ଉସକାଉଥିଲେ ଏବଂ ସାମ୍ପ୍ରଦାୟିକ ଦାବୀ ସବୁ ରାଜନୀତି କ୍ଷେତ୍ରରେ କ୍ରମେ ପ୍ରବେଶ କଲା । ଏହି ସାମ୍ପ୍ରଦାୟିକ ବିବାଦ ହେତୁ ଯେଉଁ ସବୁ ପ୍ରତିକ୍ରିୟାପନ୍ଥୀ ମୁସଲମାନ ନେତାମାନେ ଅସହଯୋଗ ଆନ୍ଦୋଳନ ଦିନୁ ପଛରେ ପଡ଼ିଥିଲେ, ଏବେ ନେତା ହୋଇ ବାହାରି ପଡ଼ିଲେ ଏବଂ ବ୍ରିଟିଶ ସରକାର ଏହାଙ୍କୁ ସାହାଯ୍ୟ କଲା । ଦିନକୁ ଦିନ ଜାତୀୟ ଏକତା ଓ ଭାରତୀୟ ସ୍ୱାଧୀନତା ମୂଳରେ ଆଘାତ କରି ନୂତନ ଓ ଅଧିକତର ସାମ୍ପ୍ରଦାୟିକ ଦାବୀମାନ ହେଲା । ହିନ୍ଦୁମାନଙ୍କ ଭିତରେ ମଧ୍ୟ ପ୍ରତିକ୍ରିୟାଶୀଳ ରାଜନୀତିକ ନେତାମାନେ ମୁଖ୍ୟ ସାମ୍ପ୍ରଦାୟିକ ନେତା ହୋଇ ଉଠିଲେ ଏବଂ ହିନ୍ଦୁ ସ୍ୱାର୍ଥରକ୍ଷା ନାମରେ ସେମାନେ ଚୂଡ଼ାନ୍ତରୂପେ ସରକାର ହାତରେ କେଳନା ହୋଇଗଲେ । ସେମାନେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଯେତେ ଚେଷ୍ଟା କଲେ ସୁଦ୍ଧା ସେମାନେ ତାଙ୍କ ଉପାୟରେ ସଫଳ ହୋଇ ପାରନ୍ତେ ନାହିଁ, ମାତ୍ର ତାଙ୍କ କାର୍ଯ୍ୟଦ୍ୱାରା ଦେଶରେ ସାମ୍ପ୍ରଦାୟିକ ମନୋଭାବ ବୃଦ୍ଧି ହେଲା ।

କଂଗ୍ରେସକୁ ମଧ୍ୟ ଗ୍ରାସ କରିଥିଲା ! କଂଗ୍ରେସ ଜାତୀୟ ଜୀବନ ପ୍ରତିନିଧି, ଜାତୀୟ ଗର୍ବ ସମ୍ବନ୍ଧରେ ଏହା ସଚେତନ । ସୁତରାଂ ଏହି ସାଂପ୍ର- ଦାୟିକ ଭାବ ତାକୁ ସ୍ପର୍ଶ କରିବା ସ୍ୱାଭାବିକ । ଅନେକ କଂଗ୍ରେସ ଲୋକ ମଧ୍ୟ ଜାତୀୟତା ଆବରଣରେ ସାଂପ୍ରଦାୟିକ ଜୀବନ ଥିଲେ । ମାତ୍ର କଂଗ୍ରେସର ନେତୃମଣ୍ଡଳୀ ଖୁବ୍ ଦୃଢ଼ତା ଦେଖାଇଲ ଏବଂ ମୋଟା- ମୋଟି କୌଣସି ସାଂପ୍ରଦାୟିକ ଦଳ ସହିତ ସଂପୃକ୍ତ ହେଲ ନାହିଁ— କୌଣସି ସାଂପ୍ରଦାୟିକ କାରଣମାନଙ୍କ ସହିତ ମଧ୍ୟ ନୁହେଁ । ଶିଖ ଓ ଅନ୍ୟ ସଂଖ୍ୟାଲଘିଷ୍ଠ ଜାତିମାନେ ମଧ୍ୟ ଏଥି ଭିତରେ ନିଜର ଦାବୀସବୁ ପେଶ୍ କରିବାକୁ ଲାଗିଗଲେ । ସୁତରାଂ ଏହିଯୋଗୁଁ ଚରମବାଦୀ ସାଂପ୍ର- ଦାୟିକ ନେତାମାନଙ୍କ  କଂଗ୍ରେସ ଗାଳି ଶୁଣୁଥିଲ ।

ଅନେକ ବର୍ଷ ପୂର୍ବରୁ, ଅସହଯୋଗ ଆନ୍ଦୋଳନ ଆରମ୍ଭ ସମୟ ତାହା ଆଗରୁ, ସାଂପ୍ରଦାୟିକ ସମସ୍ୟା ସମାଧାନ କମନ୍ତେ ଗାନ୍ଧିଜୀ ତାଙ୍କର ମତ ପ୍ରକାଶ କରି ଦେଇଥିଲେ । ତାଙ୍କ ମତରେ ସଂଖ୍ୟାଗରିଷ୍ଠ ସମ୍ପ୍ରଦାୟର ଶୁଭ ଇଚ୍ଛା ଏବଂ ଉଦାରତା ଦ୍ୱାରା ଏହାର ସମାଧାନ ହୋଇ- ପାରିବ, ଏହି ହେତୁ ମୁସଲମାନମାନେ ଯାହା ଦାବୀ କରିବେ ସେଥିରେ ସମ୍ମତ ହେବାକୁ ସେ ପ୍ରସ୍ତୁତ ଥିଲେ । ସେ ସେମାନଙ୍କ ସହିତ ଦରଦାମ କରିବାକୁ ଇଚ୍ଛୁକ ନ ଥିଲେ—ଆପଣାର କରିବାକୁ ସେ ଇଚ୍ଛୁକ- ଥିଲେ । ପ୍ରକୃତ କଥା ବୁଝି ଦୂରଦୃଷ୍ଟି ଦ୍ୱାରା ସେ ବାସ୍ତବତା ଦେଖି ପାରିଥିଲେ; ମାତ୍ର ଅନ୍ୟମାନେ ବସ୍ତୁର ପ୍ରକୃତ ମୂଲ୍ୟ ନ ଜାଣି ବଜାର ଦର ଉପରେ ଜୋର ଦେଉଥିଲେ ଏବଂ ସେହି ଦର ପାଇବା ଲାଗି ଜିଦ ଧରୁଥିଲେ । ବଜାର ଦର ବେଶି ହୋଇ ପାଉଥିବାର ସେମାନେ ଦେଖିଲେ, ମାତ୍ର ଏପରି ବସ୍ତୁ କିଣିବାରେ ଯେ ଲାଭଟା ହେବ ସେଥିପ୍ରତି ଦୃଷ୍ଟି ଦେଲେ ନାହିଁ ।

ଅନ୍ୟମାନଙ୍କୁ ସମାଲୋଚନା କରିବା ଓ ଦୋଷ ଦେବା ଅତି ସହଜ । କାହାର ଉଦ୍ଦେଶ୍ୟ ବ୍ୟର୍ଥ ହୋଇ ଯାଇଥିଲେ ସେଥିଲାଗି ଗୋଟାଏ

ଯୋଜନା ବାହାର କରିବାର ଲୋଭ ସମ୍ବରଣ କରିବା ମଧ୍ୟ ସହଜ ନୁହେଁ । କେଉଁଥି ପାଇଁ ବ୍ୟର୍ଥ ହୋଇଛି ? ଜନତାର ଚିନ୍ତା ଓ କାର୍ଯ୍ୟ ପଦ୍ଧତିର ତ୍ରୁଟି ଯୋଗୁଁ ନା ଅନ୍ୟର ବାଧା ଯୋଗୁଁ ? ଆମେ ସରକାର ଓ ସାଂପ୍ରଦାୟିକ ନେତାଙ୍କ ଉପରେ ଦୋଷ ଦେଉ, ସେମାନେ କଂଗ୍ରେସକୁ ଦୋଷ ଦିଅନ୍ତି । ଅବଶ୍ୟ ଜାଣିଶୁଣି ବାରମ୍ବାର ସରକାର ଓ ତାଙ୍କ ମିତ୍ରମାନେ ଆମ କାର୍ଯ୍ୟରେ ବାଧା ଦେଇଛନ୍ତି । ଏ କଥା ସତ୍ୟ ଯେ ଅତୀତରେ ଏବଂ ବର୍ତ୍ତମାନ ମଧ୍ୟ ବ୍ରିଟିଶ ସରକାର ଆମ ଭିତରେ ପାର୍ଥକ୍ୟ ସୃଷ୍ଟି କରିବା ନୀତି ଧରିଛି । ଭେଦନୀତି ସାମ୍ରାଜ୍ୟ ଶାସନର ମୂଳନୀତି ଏବଂ ଏଥିରେ ସଫଳତା ଲାଭ କଲେ ଶାସିତମାନଙ୍କଠାରୁ ସେମାନେ କେତେ ଉନ୍ନତ ତାହା ପ୍ରମାଣ ହୁଏ । ଆମର ଏଥିପାଇଁ ଆପତ୍ତି ନ କରିବାର କଥା କିମ୍ବା ଅନ୍ତତଃ ଏଥିରେ ଆଶ୍ଚର୍ଯ୍ୟ ହେବାର କଥା ନାହିଁ । ଏହାକୁ ଅବହେଳା କରିବା ଏବଂ ଏହା ବିରୁଦ୍ଧରେ ପ୍ରତିକାର ବ୍ୟବସ୍ଥା ନ କରିବା ଅର୍ଥ ଆମ ନିଜ ଯୋଜନାରେ ଦୋଷ ଅଛି ବୋଲି ଧରାଯିବ ।

ମାତ୍ର ଏହା ବିରୁଦ୍ଧରେ ଆମେ କିପରି ବ୍ୟବସ୍ଥା କରିବା ? ଏ କଥା ନିଶ୍ଚିତ ଯେ, ବଜାର ସଉଦା ପରି ଦର କଷାକଷି କୌଶଳ ପ୍ରୟୋଗରେ ଏହା ସମ୍ଭବ ହେବ ନାହିଁ, କାରଣ ଆମେ ଯେତେ ଦେବାକୁ ପ୍ରସ୍ତୁତ ହେବୁ, ତୃତୀୟ ପକ୍ଷ ତାଠାରୁ ଅଧିକ ଦେବା ନିମନ୍ତେ ସର୍ବଦା ପ୍ରସ୍ତୁତ ହୋଇ ରହିଛି—ତାର ମଧ୍ୟ ସନ୍ତୁଷ୍ଟ କରିବାର ଶକ୍ତି ଅଛି । ସମାନ ଜାତୀୟ ଓ ସାମାଜିକ ଦୃଷ୍ଟିକୋଣ ନ ହେଲେ ସାଧାରଣ ଶତ୍ରୁ ବିରୋଧରେ ମିଳିମିଶି କାର୍ଯ୍ୟ ହୋଇପାରିବ ନାହିଁ । ଆମେ ଯଦି ପ୍ରଚଳିତ ରାଜନୈତିକ ଓ ଅର୍ଥନୈତିକ ସ୍ଥିତି ଦୃଷ୍ଟିରେ ଦେଖୁ ଏବଂ ଏଠି ସେଠି ଟିକିଏ ସମ୍ଭାର ଆଶା କରୁଁ, ଉଚ୍ଚ ଚାକିରିରେ ଭାରତୀୟଙ୍କୁ ଭର୍ତ୍ତି କରିବାକୁ ଚାହୁଁ, ତାହା ହେଲେ ଏକତାବଦ୍ଧ ଭାବରେ କାର୍ଯ୍ୟ କରିବା ପ୍ରେରଣାର ଅଭାବ ଘଟିବ । ଏଥିରେ ଯାହା ଭାଗ ମିଳିବ, ସେଥିରୁ କିଏ କେତେ ନେଇ ପାରିବ ଏହାହିଁ ମୁଖ୍ୟ କର୍ତ୍ତବ୍ୟ ହୋଇ ଉଠେ । କର୍ତ୍ତୃତ୍ୱ କରୁଥିବା ତୃତୀୟ ପକ୍ଷ ଏଥିରେ ପ୍ରାଧାନ୍ୟ କରେ ଏବଂ ତାର ମନୋନୀତ ଲୋକଙ୍କୁ

ପୁରସ୍କାର ଦେଇ ଉଠାଇ ଦିଏ । କେବଳ ସ୍ୱତନ୍ତ୍ର ରାଜନୀତିକ ବ୍ୟବସ୍ଥା, ଏପରି କି ସ୍ୱତନ୍ତ୍ର ସାମାଜିକ ବ୍ୟବସ୍ଥା ଦୃଷ୍ଟିରୁ ଚିନ୍ତା କରି ଦେଖିଲେ ଆମେ ଏକତାବଦ୍ଧ କାର୍ଯ୍ୟର ମୂଳଭିତ୍ତି ସ୍ଥାପନ କରିପାରିବା । ସ୍ୱାଧୀନତା ଦାବିର ମୂଳ ଉଦ୍ଦେଶ୍ୟ ହେଉଛି :—ଲୋକ ଯେପରି ବୁଝନ୍ତି, ଆମେ ଏକ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ରାଜନୀତିକ ବ୍ୟବସ୍ଥା ସକାଶେ ସଂଗ୍ରାମ କରୁଥାଉଁ—ବର୍ତ୍ତମାନ ବ୍ୟବସ୍ଥାର ସାମାନ୍ୟ ସଂସ୍କରଣ (ଯଥା ବ୍ରିଟିଶ କମିଟି) ଲାଗି ନୁହେଁ । —ଔପନିବେଶିକ ସ୍ୱାୟତ୍ତଶାସନ ବୋଇଲେ ଏହା ଅର୍ଥ ହୁଏ । ଅବଶ୍ୟ ରାଜନୀତିକ ସ୍ୱାଧୀନତାର ଅର୍ଥ କେବଳ ରାଜନୀତିକ ଅବସ୍ଥାରେ ସ୍ୱାଧୀନତା ପାଇବା—ଏଥିରେ ଜନସାଧାରଣଙ୍କ ଲାଗି କୌଣସି ସାମାଜିକ ପରିବର୍ତ୍ତନ ବା ଅର୍ଥନୈତିକ ସ୍ୱାଧୀନତା ଗଣ୍ୟ କରାଯାଏ ନାହିଁ । ମାତ୍ର ଏହାର ଅର୍ଥ ହେଉଛି, ଆମେ ଲଣ୍ଡନ ସହିତ ସମ୍ପୃକ୍ତ ଆର୍ଥିକ ଓ ଅର୍ଥନୈତିକ ବ୍ୟାପାରରେ ଯେପରି ବାଧା ହେଉଛି ତାହା ଛିନ୍ନ କରିବା । ଏହା ହେଲେ ଆମର ସାମାଜିକ ବ୍ୟବସ୍ଥା ପରିବର୍ତ୍ତନ ସହଜ ହେବ । ମୁଁ ସେତେବେଳେ ଏହିପରି ଭାବୁଥିଲି । ବର୍ତ୍ତମାନ ମୁଁ ସେଥିରେ ଯୋଗ କରିବି ଯେ ଏଥିରେ ଆମକୁ ପ୍ରକୃତ ରାଜନୀତିକ ସ୍ୱାଧୀନତା ମିଳିବ ନାହିଁ । ଏଥିରେ ସାମାଜିକ ସ୍ୱାଧୀନତା ଅବଶ୍ୟ ରହିବ ।

ମାତ୍ର ଆମର ପ୍ରାୟ ଅଧିକାଂଶ ନେତା ଏଯାଏ ପର୍ଯ୍ୟନ୍ତ କେବଳ ପ୍ରଚଳିତ ରାଜନୀତିକ ଓ ସାମାଜିକ ବ୍ୟବସ୍ଥା ଦୃଷ୍ଟିରୁ ବିଷୟଟି ଦେଖୁଥିଲେ । ଏହି ଦୃଷ୍ଟିରୁ ସେମାନେ ସାଂପ୍ରଦାୟିକ ଏବଂ ନିୟମତନ୍ତ୍ରଗତ ପ୍ରତ୍ୟେକ ସମସ୍ୟାର ଆଲୋଚନା କରୁଥିଲେ । କିନ୍ତୁ, ସରକାରହିଁ ଏହି ବ୍ୟବସ୍ଥାର ପୂର୍ଣ୍ଣ ଅଧିକାରୀ ଥିଲା—ସୁତରାଂ ତାହା ହାତରେ ଏମାନେ ଖେଳନା ହୋଇ ରହିବା ସ୍ୱାଭାବିକ । ଏହାଛଡ଼ା ସେମାନେ ଆଉ କିଛି କରି ପାରିଲେ ନାହିଁ—କାରଣ ସେମାନଙ୍କର ସଂସ୍କାରକ ଦୃଷ୍ଟିକୋଣ ଥିଲା । ବେଳେ ବେଳେ ପ୍ରତ୍ୟକ୍ଷ ସଂଗ୍ରାମର ଅନୁଭୂତି ଥିଲେ ସୁଦ୍ଧା ବିପ୍ଳବୀ ଦୃଷ୍ଟିକୋଣ ନ ଥିଲା । ସଂସ୍କାରମୂଳକ ଉପାୟରେ ଭାରତର କୌଣସି ରାଜନୀତିକ, ଅର୍ଥନୈତିକ ବା ସାମ୍ପ୍ରଦାୟିକ ସମସ୍ୟାର ସନ୍ତୋଷଜନକ

ସମାଧାନ ହେବାର ବେଳ ପାଇଛି । ବର୍ତ୍ତମାନ ପରିସ୍ଥିତିରେ ବୈପ୍ଳବିକ ଦୃଷ୍ଟିକୋଣରୁ ଆମୂଳ ପରିବର୍ତ୍ତନର କଳନା ନ ହେଲେ ସମାଧାନ ହୋଇ ପାରିବ ନାହିଁ । ମାତ୍ର ନେତାମାନଙ୍କ ଭିତରେ ଏପରି ଜହ୍ବା ଲୋକ କେହି ନାହିଁ ।

ଏକଥା ନିଃସନ୍ଦେହ ଯେ, ଆମ ସ୍ୱାଧୀନତା ସଂଗ୍ରାମର ଲକ୍ଷ୍ୟ ଓ ଆଦର୍ଶ ସ୍ପଷ୍ଟ ହୋଇ ନ ଥିବାରୁ ସାମ୍ପ୍ରଦାୟିକ ଭାବ ପ୍ରଚାରରେ ସୁବିଧା ହେଲା । ଜନସାଧାରଣ ସେମାନଙ୍କର ଦୈନନ୍ଦିନ ଦୁଃଖକ୍ଲେଶ ସହ ସ୍ୱରାଜ୍ୟ ସଂଗ୍ରାମର କି ସମ୍ବନ୍ଧ ତାହା ଜାଣି ପାରିଲେ ନାହିଁ । ସେମାନେ ଉତ୍ତେଜନା ବଳରେ ସମୟ ସମୟରେ ଯଥେଷ୍ଟ ଭାବରେ ଲଢ଼ାଇ କଲେ । ମାତ୍ର ଏହା ଏକ ଦୁର୍ବଳ ଅସ୍ତ୍ର; ଅନ୍ୟ ଉଦ୍ଦେଶ୍ୟ ନିମନ୍ତେ ଏହାକୁ ସହଜରେ ବଦଳାଇ ଦିଆଯାଇ ପାରେ । ଏହା ପଛରେ କୌଣସି ଯୁକ୍ତି ନ ଥିଲା ଏବଂ ପ୍ରତିକ୍ରିୟା ସମୟରେ ସାମ୍ପ୍ରଦାୟିକ ନେତାମାନେ ଏହି ଭାବର ସୁବିଧା ନେଇ ଧର୍ମନାମରେ ସୁବିଧା ଉଠାଇବା କିଛି କଷ୍ଟକର ନ ଥିଲା । ହିନ୍ଦୁ ଓ ମୁସଲମାନ ବୁର୍ଜୋୟା ଶ୍ରେଣୀଙ୍କର ସ୍ୱାର୍ଥ ସହିତ ଜନସାଧାରଣ ଏପରି କି ନିମ୍ନ ମଧ୍ୟବିତ୍ତ ଶ୍ରେଣୀଙ୍କର କିଛି ସମ୍ପର୍କ ନ ଥାଇ ସୁଦ୍ଧା ସେମାନେ ଧର୍ମର ପବିତ୍ର ନାମରେ କିପରି ଜନସାଧାରଣଙ୍କ ସମର୍ଥନ ପାଇ ପାରୁଛନ୍ତି, ଏହା ଅତ୍ୟନ୍ତ ଅଲୌକିକ କଥା । ଯେ କୌଣସି ସାମ୍ପ୍ରଦାୟିକ ଦଳର ଦାବୀ ମୂଳରେ କେବଳ ଚାକିରି କଥା ରହିଛି— ଏହା କେବଳ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ପାଇ ପାରନ୍ତି । ଅବଶ୍ୟ ରାଜନୈତିକ କ୍ଷମତା ପାଇବାକୁ ଚେଷ୍ଟା କରୁଛନ୍ତି ବୋଲି ଦେଖାଇବା ନିମନ୍ତେ ବ୍ୟବସ୍ଥା ସଭାମାନଙ୍କରେ ଅଧିକ ସ୍ଥାନ ଦାବୀ କରିବା କଥା ରହିଛି । ମାତ୍ର ଏହି ଦାବୀ ମୂଳରେ ରାଜନୈତିକ କ୍ଷମତା ଅପେକ୍ଷା ସାଂପ୍ରଦାୟିକ ଭାବରେ ଚାକିରି କରିବା ଇଚ୍ଛା ବେଶି ଥିଲା । ଏହିସବୁ ସଂକୀର୍ଣ୍ଣ ସାମ୍ପ୍ରଦାୟିକ ଦାବୀରେ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର କେତେକ ମୁଷ୍ଟିମେୟ ଲୋକ ଉପକୃତ ହେବେ ଏବଂ ଏହା ଜାତୀୟ ଏକତା ଓ ପ୍ରଗତିରେ ପ୍ରଧାନ ଅନ୍ତରାୟ ସୃଷ୍ଟି କରିବ; ତଥାପି ଏହା ବିଶିଷ୍ଟ ଧର୍ମ ସାମ୍ପ୍ରଦାୟିକ ଜନସାଧାରଣଙ୍କ ଦାବୀରୂପେ ଚତୁରତାର ସହିତ ଉପସ୍ଥାପିତ କରାଯାଉଥିଲା ।

ଏହାର ନଷ୍ଟଳତା ଘୋଡାଇବା ପାଇଁ ଧର୍ମ ଅନୁରାଗ ଆବରଣରେ ସ୍ଥାନ ପାଇଗଲା ।

ଏହିରୂପେ ପ୍ରତିକ୍ରିୟାଶୀଳ ରାଜନୈତିକମାନେ ସାଂପ୍ରଦାୟିକ ନେତା ଆବରଣରେ ରାଜନୈତିକ କ୍ଷେତ୍ରକୁ ଆସିଲେ ଏବଂ ସେମାନେ ଯେପରି କାର୍ଯ୍ୟ କରୁଥିଲେ, ସେଥିରେ ସାଂପ୍ରଦାୟିକ ଦାବୀ ଅଗ୍ରସର ନ ହୋଇ ବରଂ ରାଜନୈତିକ ପ୍ରଗତିରେ ବାଧା ପଡୁଥିଲା । ରାଜନୀତି କ୍ଷେତ୍ରରେ ସେମାନେ ବିରୋଧ କରିବେ ବୋଲି ଆମେ ଆଶା କରୁଥିଲୁ; ସେମାନେ ଏହି ବିରକ୍ତିକର ପରିସ୍ଥିତି ଭିତରେ କେତେଦୂର ଯେ ଯାଇପାରନ୍ତି ତାହା ଦେଖିଲେ ଦୁଃଖ ହୁଏ । ମୁସଲମାନ ସାମ୍ପ୍ରଦାୟିକ ନେତା ଅଣ୍ଡ ଅଣ୍ଡିର କଥା ସବୁ କହିବାକୁ ଲାଗିଲେ । ସେମାନେ ଜାତୀୟ ଜାତୀୟତା ବା ସ୍ୱାଧୀନତା ପ୍ରତି ଟିକିଏ ଆଗ୍ରହ ଜଳ ପରି ବୋଧ ହେଉ ନାହିଁ । ହିନ୍ଦୁ ସାଂପ୍ରଦାୟିକ ନେତା ସବୁଦା ଜାତୀୟତା ନାମରେ କହୁଥିଲେ ସୁଦ୍ଧା କାର୍ଯ୍ୟରେ ସେ ଉଦ୍ଦେଶ୍ୟରେ କିଛି କରି ନ ଥିଲେ—କୌଣସି ପ୍ରକୃତ କାର୍ଯ୍ୟ କରିବାକୁ ସେମାନେ ଅସମର୍ଥ ଥିଲେ । ସରକାର ଦୁଆରେ ଧାରଣା ଦେବାକୁ ଲାଗିଲେ । ସେଥିରେ ବି କିଛି ଫଳ ହେଉ ନାହିଁ । ଉଭୟେ ସାମ୍ୟବାଦୀ ବା ସୋସିଆଲିଷ୍ଟ "ଉଚ୍ଛେଦମୂଳକ" ଆନ୍ଦୋଳନର ନିନ୍ଦା କରିବାକୁ ଲାଗିଲେ । ନ୍ୟସ୍ତସ୍ୱାର୍ଥଙ୍କ ସମ୍ବନ୍ଧରେ କୌଣସି ପ୍ରସ୍ତାବ ଉତ୍ପନ୍ନରେ ଉଭୟେ ଏକମତ ହେଉଥିଲେ । ମୁସଲମାନ ସାଂପ୍ରଦାୟିକ ନେତାମାନେ ରାଜନୈତିକ ଓ ଅର୍ଥନୈତିକ ସ୍ୱାଧୀନତା ସହିତ ପଦାର୍ଥ ଭଲ ଅନେକ କଥା କହୁଥିଲେ ଓ କରୁଥିଲେ । ମାତ୍ର ଦଳ ହିସାବରେ ଏବଂ ବ୍ୟକ୍ତିଗତଭାବରେ ସରକାର ଓ ସାଧାରଣଙ୍କ ସନ୍ମୁଖରେ ମର୍ଯ୍ୟାଦାର ସହିତ ବ୍ୟବହାର କରୁଥିବେ । ହିନ୍ଦୁ ସାଂପ୍ରଦାୟିକ ନେତାଙ୍କ ସମ୍ବନ୍ଧରେ ତାହା କୁହାଯାଇ ପାରେ ନା ।

କଂଗ୍ରେସ ଭିତରେ ଅନେକ ମୁସଲମାନ ଅଛନ୍ତି । ସେମାନଙ୍କର ସଂଖ୍ୟା ମଧ୍ୟ ବେଶି; ଅନେକ ଯୋଗ୍ୟ ବ୍ୟକ୍ତି ଏବଂ ଭାରତର ଭଲରୂପେ

କଣାଗୁଣା ଓ ଲୋକପ୍ରିୟ ମୁସଲମାନ ନେତା ଏଥିରେ ଅଛନ୍ତି । କେତେକ କଂଗ୍ରେସ ମୁସଲମାନ "ଜାତୀୟତାବାଦୀ ମୁସଲମାନ ଦଳ" ନାମରେ ଏକ ଦଳ ଗଢ଼ିଲେ । ସେମାନେ ସାଂପ୍ରଦାୟିକ ମୁସଲମାନ ନେତାଙ୍କର ବିରୋଧ କଲେ । ପ୍ରଥମେ ସେମାନେ ଅଳ୍ପ ବହୁତ କୃତକାର୍ଯ୍ୟ ହୋଇଥିଲେ ଏବଂ ଶିକ୍ଷିତ ମୁସଲମାନମାନଙ୍କ ଭିତରୁ ଅଧିକାଂଶ ତାଙ୍କ ପକ୍ଷରେ ଥିଲେ ବୋଲି ମନେ ହେଉଥିଲା । ମାତ୍ର ଏମାନେ ସମସ୍ତେ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଲୋକ ଏବଂ ଏମାନଙ୍କ ଭିତରେ ସେପରି କାହାରି ଶକ୍ତିଶାଳୀ ବ୍ୟକ୍ତିତ୍ୱ ନଥିଲା । ସେମାନେ ନିଜ ନିଜ ବ୍ୟବସାୟରେ ଲାଗିଥିଲେ । ଜନସାଧାରଣଙ୍କ ସହିତ ସମ୍ପର୍କ ହରାଇଲେ । ବାସ୍ତବିକ ସେମାନେ ଆଦୌ ଜନସାଧାରଣଙ୍କ ନିକଟକୁ ଯାଇ ନାହାନ୍ତି । ସେମାନେ ଖାଲି ବୈଠକ ସଭାସମିତିରେ ଆଲୋଚନା ଚଳାଉଥାନ୍ତି । ମାତ୍ର ଏ ଖେଳରେ ତାଙ୍କ ବିରୋଧୀ ସାଂପ୍ରଦାୟିକ ନେତାମାନେ ଆହୁରି ନିପୁଣ ଥିଲେ । କ୍ରମେ ଗୋଟିଏ ଗୋଟିଏ ଦାବି ଉପସ୍ଥାପିତ କରି ସେମାନେ ଜାତୀୟତାବାଦୀ ମୁସଲମାନଙ୍କୁ ତଳକୁ ଖସାଇ ଶେଷରେ ସେମାନଙ୍କୁ ନିଜ ମତ ଛାଡ଼ିଦେବା ଭଳି ଅବସ୍ଥାକୁ ଘେନିଗଲେ । ଜାତୀୟତାବାଦୀ ମୁସଲମାନମାନେ ଆହୁରି ଅଧିକ ତଳକୁ ନ ଖସି "ଅଳ୍ପ ଅନିଷ୍ଟକର" ମତ ଧରି ଦୃଢ଼ ହେବାକୁ ଚେଷ୍ଟା କଲେ । ମାତ୍ର ପ୍ରତ୍ୟେକ ଥର ସେମାନେ ହଟିଯାଉଥାନ୍ତି ଓ ପୁଣି "ଅଳ୍ପ ଅନିଷ୍ଟକର" କାର୍ଯ୍ୟ ଗ୍ରହଣ କରିବାକୁ ପଡ଼ୁଥାଏ । କ୍ରମେ କ୍ରମେ ଏପରି ସମୟ ଆସି ପହଞ୍ଚିଲା ଯେ ତାଙ୍କର ନିଜର ହୋଇ ଆଉ କିଛି ରହିଲା ନାହିଁ । କେବଳ ଗୋଟାଏ ମୂଳମତ ଛଡ଼ା ଆଉ କିଛି ନଥିଲା— ଏହା ହେଉଛି ମିଳିତ ନିର୍ବାଚନ – ତାହାହିଁ ଏହି ଦଳର ପ୍ରଧାନ ଦାବୀ ହୋଇ ରହିଲା । ମାତ୍ର ପୁଣି ଥରେ "ଅଳ୍ପ ଅନିଷ୍ଟକର" ମତ ଧରିବାର ଦୁର୍ଭାଗ୍ୟ ଆସି ପହଞ୍ଚିଲା ଏବଂ ଏହି ଶେଷ ଆଶ୍ରୟ ଟିକକ ମଧ୍ୟ ସେମାନେ ଛାଡ଼ିଦେଲେ । ସୁତରାଂ ଆଜି ସେମାନେ ଏପରି ଏକ ଅବସ୍ଥାରେ ପହଞ୍ଚିଛନ୍ତି, ଯେଉଁଥିରେ ଯେଉଁ ମୂଳମତ ଧରି ସେମାନେ ଦଳ ଗଢ଼ିଥିଲେ ସେ ମତ ବା କାର୍ଯ୍ୟ ସବୁ ଯାଇଛି, କେବଳ ନାମକୁ ମାତ୍ର ବଞ୍ଚି ରହିଛନ୍ତି ।

ଏହିପରି ଭାବରେ ଦଳ ହିସାବରେ ଜାତୀୟତାବାଦୀ ମୁସଲମାନ-ମାନଙ୍କର ବିଲୋପ ଓ ପତନ ବଡ଼ ଦୁଃଖଜନକ ଘଟଣା—ଅବଶ୍ୟ ବ୍ୟକ୍ତିଗତ ଭାବରେ ସେମାନେ ବର୍ତ୍ତମାନ ବି କଂଗ୍ରେସର ମୁଖ୍ୟ ନେତା ରୂପେ ରହିଛନ୍ତି । ଅନେକ ବର୍ଷ ପରେ ଏହି ବର୍ଷ (୧୯୩୪) ଏହାର ଶେଷ ଅଧ୍ୟାୟ ଲେଖା ହେଲା । ୧୯୨୩ ଓ ତାର ପରବର୍ତ୍ତୀ ବର୍ଷ-ମାନଙ୍କରେ ସେମାନେ ଏକ ଶକ୍ତିଶାଳୀ ଦଳ ହୋଇ ଉଠିଥିଲେ ଏବଂ ସାମ୍ପ୍ରଦାୟିକ ମୁସଲମାନ ନେତାଙ୍କ ପ୍ରତି ସେମାନଙ୍କର ମନୋଭାବ ଆକ୍ରମଣମୂଳକ ଥିଲା । ପ୍ରକୃତରେ ଅନେକ ସମୟରେ ଗାନ୍ଧିଜୀ ସାମ୍ପ୍ରଦାୟିକ ନେତାମାନଙ୍କର କେତେକ ଦାବି ଗ୍ରହଣ କରିବାକୁ ସମ୍ମତ ଥିଲେ, ମାତ୍ର ତାଙ୍କର ନିଜ ସହକର୍ମୀ ଏହି ଜାତୀୟତାବାଦୀ ମୁସଲମାନ ନେତାମାନେ ସେଥିରେ ବାଧା ଦେଲେ ଏବଂ ତୀବ୍ର ବିରୋଧ କରିଥିଲେ ।

୧୯୨୦-୩୦ ମଧ୍ୟରେ ପରସ୍ପର କଥାବାର୍ତ୍ତା ଓ ଆଲୋଚନାରେ ସାମ୍ପ୍ରଦାୟିକ ସମସ୍ୟା ସମାଧାନ କରିବାର ଅନେକ ଚେଷ୍ଟା ହୋଇଥିଲା—ଏହାକୁ "ଏକତା ସମ୍ମିଳନୀ" କୁହାଯାଉଥିଲା । ୧୯୨୪ ମସିହାରେ ଗାନ୍ଧିଜୀ ୨୧ ଦିନ ଉପବାସ କରିଥିବା ମଧ୍ୟରେ ଦିଲ୍ଲୀଠାରେ ଯେଉଁ ସମ୍ମିଳନୀ ହୋଇଥିଲା, ତାହା ଉଲ୍ଲେଖଯୋଗ୍ୟ । ଏହାକୁ ସେ ବର୍ଷର କଂଗ୍ରେସ ସଭାପତି ମୌଲାନା ମହମ୍ମଦ ଅଲି ଡକାଇଥିଲେ । ଏହି ସମ୍ମିଳନୀରେ ଅନେକ ବିଶ୍ୱାସୀ ଓ ସଦିଚ୍ଛାସମ୍ପନ୍ନ ଲୋକ ଯୋଗ-ଦେଇଥିଲେ ଏବଂ ସେମାନେ ଗୋଟାଏ ରାଜିନାମା ନିମନ୍ତେ କଠିନ ଉଦ୍ୟମ କରିଥିଲେ । କେତେକ ସାଧୁ ଓ ଉତ୍ତମ ପ୍ରସ୍ତାବ ପାସ୍ ହେଲା । ମାତ୍ର ମୂଳ ସମସ୍ୟାକୁ ଏହା ସ୍ପର୍ଶ କରି ନ ଥିଲା । ଏପରି ସମ୍ମିଳନୀମାନଙ୍କରେ ଏହା ସମାଧାନ ହୋଇ ପାରେନା; କାରଣ ଅଧିକ ସଂଖ୍ୟକ ଭୋଟରେ କୌଣସି ସମାଧାନ ହୋଇ ପାରେନା; କେବଳ ଏକ ମତରେ ଏହା ସମ୍ଭବ । ମାତ୍ର ପ୍ରତ୍ୟେକ ସମ୍ମିଳନୀରେ ବିଭିନ୍ନ ଦଳର ଚରମପନ୍ଥୀ ଥିଲେ-ସେମାନେ ବୃଦ୍ଧ ଥିଲେ ଅନ୍ୟ ସମସ୍ତେ ତାଙ୍କ କଥା ପୂର୍ଣ୍ଣଭାବରେ

ଗ୍ରହଣ କରନ୍ତୁ । ପ୍ରକୃତରେ ସାଂପ୍ରଦାୟିକ ନେତାମାନେ ସମାଧାନ ଚାହାନ୍ତି ନାହିଁ ସେଥିରେ ସନ୍ଦେହ ନ ଥିଲା । ସେମାନଙ୍କ ଭିତରୁ ଅଧିକାଂଶ ପ୍ରତିକ୍ରିୟାଶୀଳ ରାଜନୈତିକ ଥିଲେ—ସେମାନଙ୍କ ଭିତରେ ଏବଂ ଅମୂଳ ରାଜନୈତିକ ଅର୍ଥନୈତିକ ଦାବି କରୁଥିବା ଲୋକଙ୍କ ମଧ୍ୟରେ ସାଧାରଣ ମିଳନ ନ ଥିଲା ।

କିନ୍ତୁ ଅସଲ ଅସୁବିଧା ଆହୁରି ଗଭୀରକୁ ଯାଇଥିଲା—ଯାହା ବ୍ୟକ୍ତିବିଶେଷ ପରିଚ୍ଛେଦ ପାଇବା ଫଳରେ ଦେଖାଦେଇ ନାହିଁ । ଶିଖମାନେ ତାଙ୍କ ସଂପ୍ରଦାୟ ପାଇଁ ସ୍ୱତନ୍ତ୍ର ଦାବୀ କରିବାକୁ ଲାଗିଥିଲେ ଏବଂ ପଞ୍ଜାବରେ ଏକ ଜଟିଳ ତ୍ରିଭୁଜ ସମସ୍ୟା ଉପସ୍ଥିତ ହେଲା । ପଞ୍ଜାବ ପ୍ରକୃତରେ ଏହି ବିଷୟରେ କେନ୍ଦ୍ର ହେଲା ଏବଂ ପ୍ରତ୍ୟେକ ଦଳ ଅନ୍ୟକୁ ଭୟ କରିବା ଦ୍ୱାରା ପରସ୍ପର ପ୍ରତି ଆକ୍ରୋଶ ଓ କ୍ରୋଧ ଭାବ ରହିଲା । କେତେକ ପ୍ରଦେଶରେ ଯଥା ବଙ୍ଗଳାରେ ହିନ୍ଦୁ ଜମିଦାରଙ୍କ ବିରୁଦ୍ଧରେ ମୁସଲମାନ ପ୍ରଜାଙ୍କ ବିଦ୍ରୋହକୁ ମଧ୍ୟ ସାମ୍ପ୍ରଦାୟିକ ରୂପ ଦିଆଗଲା । ପଞ୍ଜାବ ଏବଂ ସିନ୍ଧରେ ସାଧାରଣତଃ ହିନ୍ଦୁମାନେ ଧନୀ ଓ ବେପାରୀ—ଋଣୀ ହେଉଛନ୍ତି ମୁସଲମାନ କୃଷି । ଏଠାରେ ଖାତକମାନଙ୍କର ମହାଜନଙ୍କ ଠାରେ ଉପରେ ଅସନ୍ତୋଷ ଯେ ବିରୋଧ ଭାବ ଥିଲା, ସେଥିରେ ସାଂପ୍ରଦାୟିକ ଭାବ ବଢ଼ିବାକୁ ଲାଗିଲା । ସାଧାରଣତଃ ମୁସଲମାନମାନେ ଗରିବ—ସବୁବେଳେ ନ ଥିବା ଲୋକଙ୍କର ଧନବାନଙ୍କ ପ୍ରତି ଥିବା ବିରୋଧ ଭାବର ସୁବିଧା ଗ୍ରହଣ କରି ସାଂପ୍ରଦାୟିକ ନେତାମାନେ ସାଂପ୍ରଦାୟିକ ଉଦ୍ଦେଶ୍ୟରେ ଜାଳିଦେବାକୁ ଲାଗିଲେ—ଅଥଚ ଆଶ୍ଚର୍ଯ୍ୟ କଥା ଯେ, ଏଥିରେ ନ କୃଷି-ଜୀବୀଙ୍କ ମଙ୍ଗଳ ନିମନ୍ତେ କିଛି ଉଦ୍ୟମ ନ ହେଲା । ଏହି ହେତୁ ସାଂପ୍ରଦାୟିକ ମୁସଲମାନ ନେତାମାନେ ଜନସାଧାରଣଙ୍କ କିଛି ସମର୍ଥନ ପାଇଲେ ଏବଂ ଟିକିଏ ଶକ୍ତିଶାଳୀ ମଧ୍ୟ ହେଲେ । ଅର୍ଥନୈତିକ ଦୃଷ୍ଟିରେ ହିନ୍ଦୁ ସାଂପ୍ରଦାୟିକ ନେତାମାନେ ଧନୀ ଓ ବ୍ୟବସାୟୀ ଶ୍ରେଣୀର ପ୍ରତିନିଧି ଥିଲେ; ହିନ୍ଦୁ ଜନସାଧାରଣ ତାଙ୍କ ପଛରେ ନ ଥିଲେ; ଅବଶ୍ୟ କେତେବେଳେ ତାଙ୍କ ସହାନୁଭୂତି ସେମାନେ ପାଉଥିଲେ ।

ଏହି ସମସ୍ୟାଟି ସେହି ହେତୁରୁ ଅର୍ଥନୈତିକ ଧାରା ସହିତ ଚିରଦିନ ମିଶି ଯାଇଥିଲା; ମାତ୍ର ସ୍ୱୀକାର କରୁ କି ନ କରୁ, ଏହା କେହି ସ୍ୱୀକାର କରନ୍ତି ନାହିଁ । ଏହା କ୍ରମେ ଅର୍ଥନୈତିକ ସଂଘର୍ଷରେ ପରିଣତ ହୋଇପାରେ । ଏପରି ବେଳ ପହଂଚିଲେ ଆଜିକାଲି ସବୁ ସଂପ୍ରଦାୟର ଉଚ୍ଚ ଶ୍ରେଣୀର ସାଂପ୍ରଦାୟିକ ନେତାମାନେ ନିଜର ମତଭେଦ ଭୁଲିଯାଇ ତାଙ୍କର ସାଧାରଣ ଶତ୍ରୁ ସଂଗ୍ରାମ ହେବାକୁ ବାହାର ପଡ଼ିବେ । ବର୍ତ୍ତମାନ ପରିସ୍ଥିତିରେ ମଧ୍ୟ ଗୋଟାଏ ରାଜନୈତିକ ସମାଧାନ କରିନେଇ ହୁଅନ୍ତା ନାହିଁ; ମାତ୍ର ଏହା ପଛରେ "ପକ୍ଷ" ତୃତୀୟ ଦଳ ନ ଥାନ୍ତା । ଯଥାର୍ଥ ରହୁଛି— ଏହି "ପକ୍ଷ"ଟା ଏକ ମସ୍ତବଡ଼ "ପକ୍ଷ" ।

୧୯୨୪ ମସିହାରେ ଦିଲ୍ଲୀରେ ଏକତା ସମ୍ମିଳନୀ ସରିବା ପରେ ଏପରି ସମୟରେ ଏଲାହାବାଦରେ ଏକ ହିନ୍ଦୁ ମୁସଲମାନ ଦଙ୍ଗା ହୋଇଗଲା । ଦୃଷ୍ଟିରୁ ସାଧାରଣତଃ ଦଙ୍ଗାମାନଙ୍କରେ ଯେପରି ହୁଏ, ସେହି ତୁଳନାରେ ଏହା ବଡ଼ ନୁହେଁ; ମାତ୍ର ମୋର ନିଜ ସହରରେ ଏପରି ହେବା ଦେଖି ମୁଁ ଦୁଃଖିତ ହେଲି । ମୁଁ ଦିଲ୍ଲୀରୁ କେତେଜଣଙ୍କ ସହ ଦୌଡ଼ି ଆସି ପହଂଚିଲାବେଳକୁ ଦଙ୍ଗା ଶେଷ ହୋଇଥିଲା; ମାତ୍ର ପରେ ବିଦ୍ୱେଷ ଏବଂ ମକଦ୍ଦମା ଆକାରରେ ଏହା ଅନେକ ଦିନ ରହିଥିଲା । କାହିଁକି ଏ ଦଂଗା ହୋଇଥିଲା ମୁଁ ଭୁଲି ଯାଇଛି । ସେହି ବର୍ଷ କିମ୍ବା କିଛି ସମୟ ପରେ ଏଲାହାବାଦରେ ରାମଲୀଳା ଉତ୍ସବ ନେଇ ଗୋଟାଏ ଗଣ୍ଡଗୋଳ ହୋଇଥିଲା । ଏହି ଉତ୍ସବରେ ଖୁବ୍ ବଡ଼ ଜାକଜମକରେ ଶୋଭାଯାତ୍ରା ବାହାରେ । ମାତ୍ର ମସଜିଦ ନିକଟରେ ସଂଗୀତ ବାଦ୍ୟ ସମ୍ବନ୍ଧରେ କଟକଣା ହେବାରୁ ପ୍ରତିବାଦସ୍ୱରୂପ ଉତ୍ସବ ବନ୍ଦ କରି ଦିଆଗଲା । ପାଖାପାଖି ଆଠ ବର୍ଷ ହେଲା ଏଲାହାବାଦରେ ରାମଲୀଳା ହୋଇ ନାହିଁ ଏବଂ ଏଲାହାବାଦ ଜିଲ୍ଲାର ଲକ୍ଷ ଲକ୍ଷ ଲୋକଙ୍କର ପ୍ରଧାନ ପର୍ବ ଦିନ ଦୁଃଖଦାୟକ ସ୍ମୃତିରୂପେ କେବଳ ରହିଛି । ମୁଁ ଛୋଟ ପିଲାଟିଏ ହୋଇଥିଲା ବେଳେ କିପରି ଏହା ଦେଖିବାକୁ ଯାଉଥିଲି, ମୋର ମନେ ଅଛି । ମୁଁ କିପରି ଉତ୍ସାହିତ ହେଉଥିଲି, କେତେ ବିରାଟ ଜନତା କିଲାର ଗ୍ରାମାଞ୍ଚଳ ଏବଂ ଅନ୍ୟ ସହରମାନଙ୍କରୁ

ଏହା ଦେଖିବା ନିମନ୍ତେ ନ ଆସୁଥିଲେ ! ଏହା ଏକ ବଡ଼ ଉତ୍ସବ— ଏହା ପ୍ରକାଶ୍ୟରେ ହେଉଥିଲା—ଅନେକ ମୁସଲମାନ ଜନତା ଯୋଗ ଦେଉଥିଲେ ଏବଂ ସମସ୍ତଙ୍କ ଭିତରେ ଉଲ୍ଲାସ ଦେଖାଯାଉଥିଲା । ଏହି ସମୟରେ ବେପାର ବଣିଜ ବନ୍ଦ ରହୁଥିଲା । ଅନେକ ବର୍ଷ ପରେ ମୁଁ ଟିକିଏ ବଡ଼ ହେଲା ପରେ ଏହା ଦେଖି ସେପରି ଉତ୍ସାହିତ ହୋଇ ନ ଥିଲି । ଶୋଭାଯାତ୍ରା ଏବଂ ସମାରୋହ ଦେଖି ମୁଁ ବରଂ ଟିକିଏ କ୍ଳାନ୍ତ ଅନୁଭବ କଲି ! ମୋର ଖେଳ ଏବଂ ଆମୋଦ କରିବାର ରୁଚି ଅନେକ ଉପରକୁ ଉଠିଯାଇଛି; ତଥାପି ସାଧାରଣ ଜନତା କିପରି ଏହି ଦୃଶ୍ୟକୁ ଉପଭୋଗ କରନ୍ତି, ମୁଁ ଦେଖିଛି । ସେମାନଙ୍କ ପକ୍ଷରେ ଏହା ଏକ ଆନନ୍ଦର ଅବକାଶ । ଏବେ ପ୍ରାୟ ଆଠ ନଅବର୍ଷ ହେଲା ପିଲାଙ୍କ କଥା ଛାଡ଼ି, ବୟସ୍କ ଲୋକ ମଧ୍ୟ ଏହି ଦୃଶ୍ୟ ଦେଖି ପାରୁ ନାହାନ୍ତି—ସେମାନଙ୍କ ନୀରସ ଜୀବନରେ ଗୋଟିଏ ବଡ଼ ଆନନ୍ଦ ମହୋତ୍ସବ ମଧ୍ୟରୁ ବଞ୍ଚିତ ହୋଇଛନ୍ତି । ସାମ୍ପ୍ରଦାୟିକ ବିବାଦ ଓ ଝଗଡ଼ା ହେତୁ ଏହା ହୋଇଛି । ଧର୍ମ ଏବଂ ଧର୍ମଭାବକୁ ନିଶ୍ଚୟ ଏହାର ଜବାବ ଦେବାକୁ ପଡ଼ିବ । ଏହା ଆମୋଦକୁ କିପରି ନଷ୍ଟ କରିଛି ।

## ମ୍ୟୁନିସିପାଲିଟି କାର୍ଯ୍ୟ

ଦୁଇବର୍ଷ ପର୍ଯ୍ୟନ୍ତ ମୁଁ ଏଲାହାବାଦ ମ୍ୟୁନିସିପାଲିଟିର କାର୍ଯ୍ୟ ଚଳାଇଲି । ମାତ୍ର ଦିନକୁ ଦିନ ଏଥିପ୍ରତି ମୋର ଅନିଚ୍ଛା ବଢ଼ୁଥାଏ । ମୁଁ ତିନିବର୍ଷ ନିମନ୍ତେ ଚେୟାରମ୍ୟାନ ରୂପେ ନିର୍ବାଚିତ ହୋଇଥିଲି । ଦ୍ୱିତୀୟ ବର୍ଷ ଆରମ୍ଭ ପୂର୍ବରୁ ମୁଁ ଏହି ଦାୟିତ୍ୱରୁ ମୁକ୍ତି ପାଇବା ନିମନ୍ତେ ଚେଷ୍ଟା କରୁଥିଲି । ମୋତେ ଏ କାର୍ଯ୍ୟ ପସନ୍ଦ ହୋଇଥିଲା ଏବଂ ଏଥିଲାଗି ମୁଁ ଅନେକ ସମୟ ଓ ଚିନ୍ତା ମଧ୍ୟ ଦେଇଛି । ମୁଁ କେତେକ ପରିମାଣରେ ସଫଳ ହୋଇଥିଲି ଏବଂ ମୋର ସମସ୍ତ ବନ୍ଧୁଙ୍କ ସଦିଚ୍ଛା ଲାଭ କରିଥିଲି । ଏପରିକି ମୋର ମ୍ୟୁନିସିପାଲିଟି କାର୍ଯ୍ୟକୁ ପ୍ରାଦେଶିକ ସରକାର ମଧ୍ୟ ପ୍ରଶଂସା କରିଥିଲେ । ମୋ ପ୍ରତି ତାର ଯେଉଁ ରାଜନୀତିକ ଅବସ୍ଥା ଥିଲା

ତାହା ଏହି କାର୍ଯ୍ୟରେ ଟେସ୍ ବିଦ୍ୟୁତ୍ ପାଇଥିଲି । ତଥାପି ପ୍ରକୃତ ଉଲ୍ଲେଖ-ଯୋଗ୍ୟ କୌଣସି କାର୍ଯ୍ୟ କରିବାରେ ମୋର ହାତ ବନ୍ଧା ରହିଛି ଏବଂ ମୁଁ ବାଧାପାଉଛି ବୋଲି ଅନୁଭବ କଲି ।

କୌଣସି ଲୋକ ଜାଣିଶୁଣି ବାଧା ଦେଉ ନ ଥିଲେ; ବାସ୍ତବରେ ମୁଁ ଆନ୍ତରିକପ୍ରକାରେ ସମସ୍ତଙ୍କର ସହଯୋଗ ପାଉଥିଲି । ମାତ୍ର ଏକ ଦିଗରେ ସରକାରୀ ମନ୍ତ୍ର ଏବଂ ଅନ୍ୟ ପକ୍ଷରେ ମ୍ୟୁନିସିପାଲିଟିର ସଭ୍ୟ ଏବଂ ସାଧାରଣଙ୍କର ଉଦାସୀନତା ଥିଲା । ସରକାର ଯେପରିଭାବରେ ମ୍ୟୁନିସିପାଲିଟି ଶାସନ କରନ୍ତି; ସେଥିରେ କିଛି ନୂଆ କାମ କରିବା କିମ୍ବା କୌଣସିଠାରେ ଆମୂଳ ପରିବର୍ତ୍ତନ କରିବା ସମ୍ଭବ ହୁଏ । ଅର୍ଥନୈତିକ ଅବସ୍ଥା ଏପରି ଥିଲା ଯେ, ମ୍ୟୁନିସିପାଲିଟିକୁ ସର୍ବଦା ସରକାରଙ୍କ ଉପରେ ନିର୍ଭର କରିବାକୁ ପଡୁଥିଲା । ପ୍ରଚଳିତ ମ୍ୟୁନିସିପାଲିଟି ଆଇନ ଅନୁସାରେ ଠିକସେ ଧାର୍ଯ୍ୟ ପ୍ରଥାର ଆମୂଳ ପରିବର୍ତ୍ତନ କିମ୍ବା ସାମାଜିକ ଉନ୍ନତି ଲାଗି କାର୍ଯ୍ୟ କରି ହେବନାହିଁ । ଆଇନ ଅନୁସାରେ ଯେଉଁ ସବୁ ଯୋଜନା ସମ୍ଭବ, ତାହା ମଧ୍ୟ ସରକାରର ମଞ୍ଜୁରୀ ପାଇବା ଦରକାର । କେବଳ ଆଶାବାଦୀମାନେ ଯେଉଁମାନଙ୍କ ପାଖରେ ଅନେକ ବର୍ଷ ପର୍ଯ୍ୟନ୍ତ ସମୟ ଥିବ, ସେହିମାନେହିଁ ଆଶାର ସହିତ ଏହି ମଞ୍ଜୁରୀପାଇଁ ଅପେକ୍ଷା କରି-ପାରନ୍ତି । କୌଣସି ସାମାଜିକ ସଙ୍ଗଠନ ବା ଜନହିତକର କାର୍ଯ୍ୟ ସମ୍ମୁଖରେ ପଡ଼ିଲେ ସରକାରୀ କଳ କିପରି ଅତ୍ୟନ୍ତ ଅକର୍ମଣ୍ୟ ଭାବରେ ମନ୍ଥର ବେଗରେ ଗତି କରେ, ଏହା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । କୌଣସି ରାଜନୀତିକ ବିରୋଧକୁ ଆଘାତ ବା ଦମନ କରିବାକୁ ପଡ଼ୁଥିଲେ ବେଳେ କୌଣସି ମନ୍ଥରତା ବା ଅକ୍ଷମତା ଦେଖାଯାଏ ନାହିଁ । ଏହି ଅସାମଞ୍ଜସ୍ୟ ବେଶ୍ ଧରା ପଡ଼ି ଯାଇଥିଲା ।

ପ୍ରାଦେଶିକ ସରକାରର ସ୍ଥାନୀୟ ସ୍ୱାୟତ୍ତଶାସନ ବିଭାଗ ଉପରେ ଜଣେ ମନ୍ତ୍ରୀ ଥାଆନ୍ତି, ମାତ୍ର ସାଧାରଣତଃ ଏହି ମନ୍ତ୍ରୀ ମ୍ୟୁନିସିପାଲିଟି କାର୍ଯ୍ୟ କିମ୍ବା ଅନ୍ୟ ସାଧାରଣ କାର୍ଯ୍ୟ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ଥାଆନ୍ତି । ପ୍ରକୃତରେ

ତାଙ୍କର କିଛି ମୂଲ୍ୟ ନ ଥିଲା ଏବଂ ସେହି ଡିଷ୍ଟ୍ରିକ୍ଟର ଲୋକେ ବି ତାକୁ ଖାତିରରେ ପକାଉ ନ ଥିଲେ; ସ୍ଥାୟୀ ଆଇ. ସି. ଏସ୍ ମାନେ ସବୁ କାର୍ଯ୍ୟ ଚଳାଉଥିଲେ। ଭାରତରେ ଉକ୍ତ କର୍ମଚାରୀଙ୍କ ସରକାରୀ ବୋଲି ଧାରଣା ହେଉଛି ପ୍ରଧାନତଃ ପୁଲିସର କାର୍ଯ୍ୟ—ଏମାନେ ସେହି ଧାରଣାରେ ପ୍ରଭାବିତ ହୋଇଥିଲେ। ଏହି ଧାରଣା ସହିତ ପୁଣି ପ୍ରଭୁତ୍ୱ ଓ ଅନୁଗ୍ରହ ଦେବା ମନୋଭାବ ମିଶିଥିଲା। ମାତ୍ର ବେଶି ପରିମାଣରେ ଜନସେବାର ଆବଶ୍ୟକତା ଏମାନେ ପ୍ରାୟ ଅନୁଭବ କରୁ ନ ଥିଲେ।

ସରକାର ନିକଟରେ ମ୍ୟୁନିସିପାଲିଟିମାନେ ଦଣ୍ଡୀ। ପୁଲିସ ଏବଂ ମହାଜନ ଦୁଇ ଦୃଷ୍ଟିରେ ସରକାର ମ୍ୟୁନିସିପାଲିଟିକୁ ଦେଖେ। ଋଣ କିସ୍ତିଗୁଡ଼ିକ ଠିକମତ ଦିଆଯାଉଛି ତ? ମ୍ୟୁନିସିପାଲିଟିର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ, ହାତରେ ଯଥେଷ୍ଟ ନଗଦ ଧନ ଅଛି ତ? ଏହି ସମ୍ବନ୍ଧରେ ଅନେକ ଆବଶ୍ୟକୀୟ ପ୍ରଶ୍ନ ସରକାର ପଚାରେ; ମାତ୍ର ମ୍ୟୁନିସିପାଲିଟିର ଶିକ୍ଷା, ପରିଚ୍ଛନ୍ନତା ଆଦି ଦିଗରେ କେତେକ କର୍ତ୍ତବ୍ୟ କାର୍ଯ୍ୟ ରହିଛି ଏବଂ ଏହା ଋଣ ନେଇ ଠିକମତ କରିବେ ବୁଝିବା ଅନୁସନ୍ଧାନ ନହେଁ, ଏ କଥା ବରାବର ଭୁଲି ଯାଆନ୍ତି। ତେଣୁ ମ୍ୟୁନିସିପାଲିଟି-ମାନଙ୍କରେ ସମାଜସେବା କରିବାର ଖୁବ୍ କମ୍ ସୁବିଧା ଅଛି, ଏହା ମଧ୍ୟ ଅର୍ଥ ଅଭାବରୁ ଜମାଇ ଦେବାକୁ ପଡ଼େ। ପ୍ରଥମେ ଶିକ୍ଷାଠାରୁ କଟାଯାଏ। ଶାସକ-ଶ୍ରେଣୀଙ୍କର ବ୍ୟକ୍ତିଗତଭାବରେ ମ୍ୟୁନିସିପାଲିଟି ସ୍କୁଲରେ ଆଗ୍ରହ ନ ଥାଏ। ସେମାନଙ୍କ ପିଲା ଅତି ଆଧୁନିକ ଓ ବ୍ୟୟବହୁଳ ଘରୋଇ ସ୍କୁଲମାନଙ୍କୁ ପଢ଼ିବାକୁ ଯାଆନ୍ତି। ଏହା ପୁଣି ଅନେକ ସମୟରେ ସରକାରଙ୍କଠାରୁ ସାହାଯ୍ୟ ପାଏ।

ଭାରତର ଅଧିକାଂଶ ସହରକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ, ଗୋଟିଏ ଅଂଶ ହେଉଛି ଘନବସତିପୂର୍ଣ୍ଣ ଏବଂ ଅନ୍ୟ ଅଂଶଟି ବିସ୍ତୃତ ଅଞ୍ଚଳ। ଏଥିରେ ବଡ଼ ବଡ଼ ପାଚେରୀ ଓ ବଗିଚାରେ ଭରା ବଙ୍ଗଳା ଏବଂ ଘର ରହିଛି। ଇଂରେଜୀରେ ସାଧାରଣତଃ ଏହାକୁ "ସିଭିଲ

ଲାଇନ୍ସ" ବୋଲି କହନ୍ତି । ଏହି ସିଭିଲ ଲାଇନ୍ସରେ ଇଂରେଜ କର୍ମଚାରୀ, ବ୍ୟବସାୟୀ, ଅନେକ ଉଚ୍ଚଶ୍ରେଣୀ ଭାରତୀୟ, ଓକିଲ, ସରକାରୀ କର୍ମଚାରୀ ଆଦି ରହନ୍ତି । ସହରର ଲୋକସଂଖ୍ୟା ସିଭିଲ ଲାଇନ୍ସଠାରୁ ଅଧିକ; ମାତ୍ର ସହରର ଅପେକ୍ଷା ଏଠାରେ ଅଧିକ ଖରଚ ହୁଏ । କାରଣ ସିଭିଲ ଲାଇନ୍ ବିସ୍ତୃତ ହୋଇଥିବାରୁ ସେଠାରେ ବେଶୀ ରାସ୍ତା ଥାଏ, ତାହା ପାଣି ଦେଇ ସଫା କରିବାକୁ ପଡ଼େ, ଆଲୁଅ ଦେବାକୁ ହୁଏ । ନଳା, ପାଣିକଳ ଏବଂ ପରିଚ୍ଛନ୍ନତା ତ ପୂର୍ଣ୍ଣ ରହିଛି । ସହର ଅଂଶଟି ପ୍ରାୟ ଅବହେଳିତ ହୋଇଥାଏ, ଅଙ୍କ ବଜାର ଅଞ୍ଚଳ ତ ଏକଦମ୍ ଅନ୍ଧାରରେ ପଡ଼ିଥାଏ ; ଏଥିରେ ଭଲ ରାସ୍ତା କରାଯାଏ ନାହିଁ । ସଙ୍କୀର୍ଣ୍ଣ ଗଳି ଭିତରୁ ଅଧିକାଂଶ ସ୍ଥାନରେ ଭଲ ଆଲୁଅ ନ ଥାଏ, କୌଣସି ନଳା ବା ପରିଷ୍କାର ପରିଚ୍ଛନ୍ନତାର ବ୍ୟବସ୍ଥା ନ ଥାଏ । ମାତ୍ର ଏହି ଅସୁବିଧା ଏଠାରେ ଲୋକେ ଭୋଗ କରୁଥାନ୍ତି--ପ୍ରାୟ କେହି ଆପତ୍ତି କରେ ନାହିଁ । ଆପତ୍ତି କଲେ ବି କିଛି ଫଳ ହୁଏ ନାହିଁ । ସିଭିଲ ଲାଇନ୍‌ରେ କିଛିଏ ଅସୁବିଧା ହେଲେ ଭୟଙ୍କର ଚିତ୍କାର ଉଠେ ।

ଏହି ବୋଝ ସମାନ କରିଦେବା ନିମନ୍ତେ ଏବଂ ଉନ୍ନତି କରିବା ନିମନ୍ତେ ମୁଁ ଜମି ମୂଲ୍ୟ ଉପରେ ଏକ ନୂଆ ଟିକସ ବସାଇବାକୁ ଇଚ୍ଛା କରିଥିଲି । ମୁଁ ଏହି ପ୍ରସ୍ତାବ କରିଥିଲି କି ନାହିଁ, ଏକ ସରକାରୀ ଅଫିସର—ମୋର ମନେ ହୁଏ ଜିଲ୍ଲା ମାଜିଷ୍ଟ୍ରେଟ ପ୍ରତିବାଦ କରି ଲେଖି ପଠାଇଲେ ଯେ, ଏହାଦ୍ୱାରା ଜମି ସ୍ୱତ୍ୱ ଉପରେ ଥିବା ସର୍ତ୍ତ ବା ଅନ୍ୟ ଆଇନଚୁକ୍ତିରେ ବାଧା ପଡ଼ିବ । ଏହି ଟିକସ ଅଧିକ ଭାବରେ ସିଭିଲ ଲାଇନରେ ଥିବା ବଙ୍ଗଳା ଘରମାନଙ୍କ ଉପରେ ପଡ଼ିଥାନ୍ତା । କିନ୍ତୁ ଅନ୍ୟ ସହରକୁ ଆସୁଥିବା ଜିନିଷ ଉପରେ ଟିକସ ବସାଇବାକୁ ସରକାର ସାଙ୍ଗେ ସାଙ୍ଗେ ମଞ୍ଜୁର କରିଦିଏ । ଅଥଚ ଏଥିରେ ବେପାର କ୍ଷତି ହୁଏ; ଖାଦ୍ୟଦ୍ରବ୍ୟ ଇତ୍ୟାଦି ଜିନିଷ ସବୁର ଦାମ ବଢ଼ିଯାଏ ଏବଂ ଗରିବ-ମାନଙ୍କ ଉପରେ ବେଶୀ ବୋଝ ପଡ଼େ । ଏହି ଅସାମାଜିକ ଏବଂ ହାନିକାରକ ଟିକସ ଭାରତର ପ୍ରାୟ ସବୁ ମ୍ୟୁନିସିପାଲିଟିର ପ୍ରଧାନ

ଅଚ୍ଛ ମୋର ବିଶ୍ୱାସ, ବଡ଼ ବଡ଼ ସହରମାନଙ୍କରୁ ଆଜିକାଲି ଉଠି-ଗଲଣି ।

ସୁତରାଂ ରେସ୍ତୋରମ୍ୟାନ୍‌ରୂପେ ମୁଁ ଦୋଘାଇରେ ପଡ଼ିଥିଲି । ଏକ ଦିଗରେ ଅବ୍ୟକ୍ତିକ୍ତ ପ୍ରଭୁତ୍ୱଶାଳୀ ସରକାରୀ ଯନ୍ତ୍ର; ଗୋଟିଏଗାଡ଼ି ପେପର ପଡ଼ିଥିବା ଗୁଳାଦାଗ ବାହାରକୁ ଯାଏ ନାହିଁ, ଏହା ସେହିପରି ତାକୁ ଜାବୁଡ଼ି ଧରିଥାଏ—କିଛି ଅଧିକ ବେଗ କିମ୍ବା ଅନ୍ୟ ଦିଗରେ ଗତି କରିବାକୁ ଅସ୍ୱୀକାର କରେ । ଅନ୍ୟ ଦିଗରେ ମୋର ସହକର୍ମୀ ସଭ୍ୟ-ମାନେ—ସେମାନେ ମଧ୍ୟ ସମାନ ଭାବରେ ସେହି ଗାଡ଼ିରେ ପଡ଼ିଥାନ୍ତି । ତାଙ୍କ ଭିତରୁ କେତେକ ଆଦର୍ଶବାଦୀ ଥିଲେ—ଉତ୍ସାହର ସହିତ ସେ ତାଙ୍କ କାର୍ଯ୍ୟରେ ଲାଗିଥିଲେ, ମାତ୍ର ମୋଟାମୋଟି ସେମାନଙ୍କର କୌଣସି ଦୃଷ୍ଟି-କୋଣ ନଥିଲା, ପରିବର୍ତ୍ତନ ବା ଉନ୍ନତି ସମ୍ବନ୍ଧେ କୌଣସି ଧାରଣା ନ ଥିଲା । ପୁରାତନ ପ୍ରଥା ତ ଆମର ଯଥେଷ୍ଟ ଭଲ ଅଛି, ନୂଆ ପ୍ରୟୋଗ ହେବ କି ନାହିଁ, ଠିକ୍ ନାହିଁ, ତାକୁ ଚେଷ୍ଟା କରି ଲାଭ କଣ ? ଏପରି କି ଆଦର୍ଶବାଦୀ ଏବଂ ଉତ୍ସାହୀ ସଭ୍ୟମାନେ ମଧ୍ୟ କ୍ରମେ ଏହି ଦୈନନ୍ଦିନ ଧରାବନ୍ଧା କର୍ତ୍ତବ୍ୟ ଧାରାରେ ପଡ଼ିଯାଇ ଥଣ୍ଡା ହୋଇଗଲେ । ମାତ୍ର ଚାକିରୀ ଏବଂ କାହାରିକୁ ଅନୁଗ୍ରହ ଦେଖାଇ କିଛି କରିଦେବା ବିଷୟରେ ସଭ୍ୟମାନେ ଖୁବ ଶକ୍ତିର ପରିଚୟ ଦେଉଥିଲେ । ତାଙ୍କର ଏହି ଆଗ୍ରହରେ ଅଧିକ କୁଶଳତା ଯେ ବଢ଼େ ତାହା ନୁହେଁ ।

ବର୍ଷକୁ ବର୍ଷ ସରକାରୀ ପ୍ରସ୍ତାବମାନଙ୍କରେ ଏବଂ ସମ୍ବାଦପତ୍ରରେ ମ୍ୟୁନିସିପାଲିଟି ଓ ସ୍ୱାୟତ୍ତଶାସନମାନଙ୍କର କାର୍ଯ୍ୟ କଳାପର ସମାଲୋଚନା ପ୍ରକାଶ ପାଏ ଏବଂ ଏହାର ଦୋଷ ସେମାନେ ଦେଖାଇ ଦିଅନ୍ତି । ମାତ୍ର ଏସବୁ ଲେଖାର ସାରାଂଶ ହେଉଛି ଯେ, ଗଣତନ୍ତ୍ରମୂଳକ ଅନୁଷ୍ଠାନ ଭାରତରେ ଚଳନୀୟ ହୋଇପାରିବ ନାହିଁ । ସେମାନଙ୍କର ଯେ ଯଥେଷ୍ଟ ଦୋଷ ରହିଛି, ସନ୍ଦେହ ନାହିଁ; ମାତ୍ର ଏହା ସହିତ ଯେଉଁ ଶାସନଶୃଙ୍ଖଳ ଭିତରେ ସେଗୁଡ଼ିକୁ କାର୍ଯ୍ୟ କରିବାକୁ ପଡ଼େ, ତାହା କେହି

ସ୍ୱୀକାର କରନ୍ତି ନାହିଁ । ଏହା ଗଣତନ୍ତ୍ରମୂଳକ ବା ସ୍ୱେଚ୍ଛାଚାରୀ କିଛି ହେଉ, ଏହା ବୁଦ୍ଧିଙ୍କ ମତରେ ଖେଚଡ଼ ଏବଂ ଉପଦ୍ରବ ଅସୁବିଧା ଏଥିରେ ରହିଛି । ପରିଚାଳନା ଏବଂ ସ୍ୱାସ୍ଥ୍ୟ ସମ୍ବନ୍ଧରେ କେନ୍ଦ୍ର ସରକାରଙ୍କ ଯେ କିଛି କ୍ଷମତା ରହିବା ଉଚିତ ଏହା ସ୍ୱୀକାର କରାଯାଇ ପାରେ; ମାତ୍ର କେନ୍ଦ୍ର ସରକାର ଗଣତନ୍ତ୍ରମୂଳକ ଏବଂ ଲୋକଙ୍କର ଆବଶ୍ୟକତା ଅନୁସାରେ କାର୍ଯ୍ୟ କରୁଥିଲେ ସ୍ୱାୟତ୍ତଶାସନ ସହିତ ଖାପ ଖାଇବ । ଏପରି ନ ହୋଇଥିଲେ ହୁଏତ ବୁଦ୍ଧିଙ୍କ ମତରେ ଝଗଡ଼ା ଲାଗିବ, ନଚେତ୍ କେନ୍ଦ୍ର ସରକାରଙ୍କ ଠାରେ ନମ୍ର ଭାବରେ ବଶ୍ୟତା ସ୍ୱୀକାର କରିବାକୁ ପଡ଼ିବ—ଏହା ସୁଦ୍ଧା କିଛି ଦାୟିତ୍ୱ ନ ଥାଇ ଏପରି ସମସ୍ତ ପରିଚାଳନା କରେ । ଏହା ଅତ୍ୟନ୍ତ ଅସନ୍ତୋଷଜନକ ଏବଂ ଲୋକସାଧାରଣଙ୍କ ହାତରୁ ପ୍ରକୃତ ଅଧିକାର ଏହା ନେଇଯାଏ । ଏପରି କି ମ୍ୟୁନିସିପାଲ ବୋର୍ଡର ମେମ୍ବରମାନେ ମଧ୍ୟ, ତାଙ୍କର ନିର୍ବାଚନ ମଣ୍ଡଳୀ ଅପେକ୍ଷା କେନ୍ଦ୍ର ପ୍ରଭୁତ୍ୱ ପ୍ରତି ବେଶି ଦୃଷ୍ଟି ଦିଅନ୍ତି ଏବଂ ସାଧାରଣ ମଧ୍ୟ ବୋର୍ଡକୁ ଅବହେଳା କରନ୍ତି । ସମାଜର କୌଣସି ପ୍ରକୃତ ସମସ୍ୟା ବୋର୍ଡ ସମାଧାନ କରିବାକୁ ଚେଷ୍ଟା କରେନା, କାରଣ ଏହା ତା'ର କ୍ଷମତା ବହିର୍ଭୂତ । ସୁତରାଂ ଟିକସ ଆଦାୟ ଏହାର ଏକମାତ୍ର କାର୍ଯ୍ୟ ହୋଇ ପଡ଼େ—ଏଥିଲେ ଖୁବ ବେଶି ଲୋକପ୍ରିୟ ହୋଇ ପାରିବ ନାହିଁ ।

ସ୍ୱାୟତ୍ତଶାସନ ଗୁଡ଼ିକର ଭୋଟାଧିକାର ମଧ୍ୟ ସୀମାବଦ୍ଧ—ଏହା ବହୁତ ତଳକୁ ଖସି ଆସିବାର ବେଶି ଦେଖା ଯାଉନାହିଁ । ବମ୍ବେ ପରି ବଡ଼ ସହରର କର୍ପୋରେସନରେ ନିର୍ବାଚନ ଅଳ୍ପ ନିର୍ଦ୍ଦିଷ୍ଟ ସଂଖ୍ୟକ ଭୋଟରଙ୍କ ଦ୍ୱାରା ହୋଇଥିଲା । ଭୋଟାଧିକାର ଆହୁରି ବଢ଼ାଇବା ପାଇଁ ବମ୍ବେ କର୍ପୋରେସନରେ ଏକ ପ୍ରସ୍ତାବ ଥରେ ଆସିଥିଲା; ମାତ୍ର ତାହା କର୍ପୋରେସନ ବୈଠକରେ ପରାସ୍ତ ହୋଇଗଲା । ଏଥିରୁ ପ୍ରମାଣ ହେଉଛି, କର୍ପୋରେସନର ଅଧିକାଂଶ ସଭ୍ୟ ପ୍ରଚଳିତ ବ୍ୟବସ୍ଥାରେ ସନ୍ତୁଷ୍ଟ ଥିଲେ—ଏହାକୁ ପରିବର୍ତ୍ତନ କରି ନିଜକୁ ବିପଦସଙ୍କୁଳ କରିବାକୁ ଚାହୁଁ ନଥିଲେ ।

ସେ ଯାହା ହୋଇଥାଉ ପଛକେ, ଏକଥା ସତ୍ୟ ଯେ ଗୋଟାଏ ସଫଳତା ଓ ଦକ୍ଷତାର ଦୃଷ୍ଟାନ୍ତ ଦେଖାଇବାର ସ୍ଥଳ ଆମର ସ୍ୱାୟତ୍ତଶାସନ ଅନୁଷ୍ଠାନ ହେବେ; ଅବଶ୍ୟ ଆମର କେତେକ ମ୍ୟୁନିସିପାଲିଟି ଅନ୍ୟ ଗଣତନ୍ତ୍ର ଦେଶର ମ୍ୟୁନିସିପାଲିଟି ସହିତ ତୁଳନା କରିହୋଇ ପାରେ । ଏଗୁଡ଼ିକ ସାଧାରଣତଃ ଘୁସଖୋର ନୁହଁନ୍ତି, ମାତ୍ର ଅକ୍ଷମ, ଏଗୁଡ଼ିକର ପ୍ରଧାନ ଦୁର୍ବଳତା ହେଉଛି ଅନୁଗ୍ରହ ଦେଖାଇବା—ଏ ବିଷୟରେ ଯେତେ ଯାଞ୍ଚ କଲେ ତାହା ସବୁ ଅନ୍ୟାୟ । ଏପରି ହେବା ସ୍ୱାଭାବିକ । କାରଣ ଗଣତନ୍ତ୍ର ସଫଳତା ଲାଭ କରିବାକୁ ହେଲେ ତାହା ପଛରେ ସଂଗଠିତ ଜନମତ ଏବଂ ଦାୟିତ୍ୱବୋଧ ରହିଥିବା ଦରକାର । ଏହା ସମ୍ବନ୍ଧରେ ଆମର ଏଠି ଶାସ୍ତ୍ରୀୟ ଏକ ପ୍ରକୃତିର ବାୟୁମଣ୍ଡଳ ଏବଂ ଗଣତନ୍ତ୍ରର ସମସ୍ତ ଜିନିଷ ଏଠାରେ ଅଭାବ ରହିଛି । ଏ ଦେଶର ଜନସାଧାରଣଙ୍କୁ ଶିକ୍ଷା ଦେବାର କିଛି ବ୍ୟବସ୍ଥା ନାହିଁ ! ଏନକୁ ମୂଳଭିତ୍ତି କରି କୌଣସି ଜନମତ ଗଢ଼ିବାର ଉଦ୍ୟମ ନାହିଁ, ସୁତରାଂ ସାଧାରଣ ଦୃଷ୍ଟି ବ୍ୟକ୍ତିଗତ ସାମ୍ପ୍ରଦାୟିକ ବା ଅନ୍ୟ ଛୋଟ ସମସ୍ୟା ପ୍ରତି ଯାଏ ।

ମ୍ୟୁନିସିପାଲିଟି ଶାସନରେ ସରକାରର ପ୍ରଧାନ ଦେଖିବାର ବିଷୟ ହେଉଛି ଯେ, ଏଥିରୁ "ରାଜନୀତି" ଯେପରି ଅଲଗା ରହେ । କାରଣ ଆନ୍ଦୋଳନ ସହିତ କୌଣସି ସହାନୁଭୂତି ଦେଖାଇଲେ ସେଥିପ୍ରତି ତାଚ୍ଛଲ୍ୟ ଦେଖାଯାଏ; ଜାତୀୟତାର ଉଦ୍ଦୀପକ କୌଣସି ପାଠ୍ୟପୁସ୍ତକ ଏପରିକି ଜାତୀୟ ନେତାମାନଙ୍କ ଛବି ସୁଦ୍ଧା ସ୍କୁଲମାନଙ୍କରେ ଚଳିବାପାଇଁ ଅନୁମତି ପାଏ ନାହିଁ । ମ୍ୟୁନିସିପାଲିଟି ସରକାର ନିଜ ହାତକୁ ନେଇଯିବା ଉପରେ ଏକ ମ୍ୟୁନିସିପାଲିଟି ଉପରୁ ଜାତୀୟପତାକା ଉଠାଇ ଦିଆଯାଇଥିଲା । କେତେକ ହେଲେ ମ୍ୟୁନିସିପାଲ କର୍ପୋରେସନ ଏବଂ ବୋର୍ଡ଼ ମାନଙ୍କରୁ କଂଗ୍ରେସ ଲୋକଙ୍କୁ ବାହାର କରିଦେବା ନିମନ୍ତେ କେତେ ପ୍ରାଦେଶିକ ସରକାର ବହିବର ଉଦ୍ୟମ କରୁଛନ୍ତି । ଗୋଟାଏ ଗୃପ ଆଣି ଦେଲେ ଏହା ସମ୍ଭବ ହୋଇପାରୁଥିଲା, କାରଣ ମ୍ୟୁନିସିପାଲିଟିର ଶିକ୍ଷା ବା ଅନ୍ୟ କେତେକ ଗ୍ରାଣ୍ଟ ସରକାର ଦେବନାହିଁ ବୋଲି ଧମକ

ଦେଲେ ଯଥେଷ୍ଟ ହେଉଥିଲା । କେତେକ ବିଷୟରେ ବିଶେଷତଃ କଲିକତା କର୍ପୋରେସନରେ ଆଇନ ଅମାନ୍ୟ ବା ଅନ୍ୟ କୌଣସି ସରକାରୀ ବିରୁଦ୍ଧ କାର୍ଯ୍ୟରେ ଜେଲ ଯାଇଥିବା ଲୋକଙ୍କୁ ଗ୍ରହଣ ନ କରିବା ନିମନ୍ତେ ଆଇନ କରାଯାଇଛି । ଏହା କେବଳ ରାଜନୀତିକ ଉଦ୍ଦେଶ୍ୟରେ ହୋଇଛି । ଏଥିରେ ସେହି କାର୍ଯ୍ୟ ପାଇଁ ଅଯୋଗ୍ୟ ବା ଅକ୍ଷମତାର ପ୍ରଶ୍ନ ଉଠୁନାହିଁ ।

ଏହି କେତୋଟି ଉଦାହରଣରୁ ଆମ ମ୍ୟୁନିସିପାଲିଟି ଓ ଜିଲ୍ଲାବୋର୍ଡ-ମାନଙ୍କର କିପରି ସ୍ୱାଧୀନତା ଅଛି ଓ ଏହା କିପରି ଗଣତନ୍ତ୍ର ମୂଳକ; ତାହା ବୁଝା ପଡ଼ୁଛି । ରାଜନୈତିକ ବିରୋଧୀମାନଙ୍କୁ ସମସ୍ତ ମ୍ୟୁନିସିପାଲିଟି ଓ ସ୍ୱାୟତ୍ତଶାସନ ଅନୁଷ୍ଠାନ ଚାକିରୀରୁ ଅଲଗା ରଖିବାର ଚେଷ୍ଟା ପ୍ରତି ବିଚାର କରିବାର କଥା—ସେମାନେ କିଛି ପ୍ରତ୍ୟକ୍ଷଭାବରେ ସରକାରୀ ଚାକିରୀ ଚାହୁଁ ନ ଥିଲେ । ହିସାବରେ ଧରାଯାଏ ଯେ, ଗତ ୧୪ ବର୍ଷ ଭିତରେ ଆନ୍ଦୋଳନରେ ପ୍ରାୟ ୩୦୦,୦୦୦ ଲୋକ ଜେଲ ଯାଇଛନ୍ତି । ଏଥିରେ ସନ୍ଦେହ ନାହିଁ ଯେ, ରାଜନୈତିକ ଭାବଛଡ଼ା ଏମାନଙ୍କ ଭିତରେ ଖୁବ୍ କାର୍ଯ୍ୟକ୍ଷମ, ଆଦର୍ଶବାଦୀ, ସମାଜସେବାବ୍ରତୀ ଏବଂ ନିଃସ୍ୱାର୍ଥପର ଲୋକ ଥିଲେ । ସେମାନଙ୍କର ଆଗ୍ରହ ଶକ୍ତି ଅଛି ଏବଂ ଏକ ଉଦ୍ଦେଶ୍ୟ ଲାଗି ସେବାର ଆଦର୍ଶ ରହିଛି । ସୁତରାଂ କୌଣସି ସାଧାରଣ ଅନୁଷ୍ଠାନ ବା ଲୋକହିତକର କାର୍ଯ୍ୟ ଲାଗି ଏହି ଉତ୍କୃଷ୍ଟ ଧରଣର ଲୋକଙ୍କ ଭିତରୁ ଲୋକ ବାଛିବାର କଥା । ଅଥଚ ଏହି ଲୋକଙ୍କୁ ସୁଯୋଗ ନ ଦେବା ନିମନ୍ତେ ସରକାର ସବୁ ଉଦ୍ୟମ କରିଛି—ଏପରିକି ଆଇନମାନ ମଧ୍ୟ ପ୍ରଣୟନ କରିଛି । ଏପରି ଭାବରେ ସେମାନଙ୍କୁ ଏବଂ ସେମାନଙ୍କ ସହିତ ସହାନୁଭୂତି ସମ୍ପନ୍ନ ଲୋକଙ୍କୁ ଶାସ୍ତି ଦିଆହୋଇଛି । ସରକାର ପୋଷା-କୁକୁର ବଂଶ ପ୍ରତି ବେଶୀ ଅନୁରାଗ ଦେଖାଏ, ଅଥଚ ସ୍ୱାୟତ୍ତଶାସନର ଅକ୍ଷମତା ସମ୍ବନ୍ଧରେ ଏଣେ ଆପତ୍ତି ଉଠାଏ । ରାଜନୀତି ସ୍ୱାୟତ୍ତ ଶାସନର ବାହାର ବିଷୟ ବୋଲି କୁହାହେଉଛି । ଏଣେ ସରକାର ନିଜ କଥାର ସମର୍ଥନ ଲାଗି ମନଇଚ୍ଛା ରାଜନୀତି ଖେଳିବାରେ ଆପତ୍ତି ନାହିଁ । ସରକାର

ଡେରଫରୁ ଗ୍ରାମେ ଗ୍ରାମେ ବୁଲି ପ୍ରଚାର କରିବା ନିମନ୍ତେ ଲୋକାଲ ବୋର୍ଡ ସ୍କୁଲ ଶିକ୍ଷକମାନଙ୍କୁ ବାଧ୍ୟ କରାଯାଉଛି । ତାହା ନ କଲେ ସେମାନଙ୍କର ଚାକିରୀ ଯିବାର ଭୟ ପ୍ରଦର୍ଶନ କରାଯାଏ ।

ଗତ ୧୫ ବର୍ଷ ହେଲା କଂଗ୍ରେସ କର୍ମୀମାନଙ୍କୁ ଅନେକ ଅସୁବିଧା-ଜନକ ପରିସ୍ଥିତି ଭିତର ଦେଇ ଯିବାକୁ ପଡ଼ିଛି । ସେମାନେ ଗୁରୁ ଦାୟିତ୍ୱ ମୁଣ୍ଡାଇଛନ୍ତି, ସେମାନଙ୍କୁ ଏକ ଶକ୍ତିଶାଳୀ ଓ ଦୃଢ଼ ଭାବରେ ଚାଲୁଥିବା ସରକାରର ବିରୋଧ କରିବାକୁ ପଡ଼ିଛି । ଏଥିରେ ଯେ ସେମାନେ କୃତକାର୍ଯ୍ୟ ନ ହୋଇଛନ୍ତି; ଏପରି ନୁହେଁ । ଏହି କଠିନ ଶିକ୍ଷା ଭିତର ଦେଇ ଯିବା ହେତୁ ସେମାନଙ୍କ ଭିତରେ ଆତ୍ମବିଶ୍ୱାସ, କର୍ମକୁଶଳତା ଏବଂ ଅଧ୍ୟବସାୟ ଇତ୍ୟାଦିର ଶକ୍ତି ବଢିଛି, ଭାରତରେ ଏକ ଦୀର୍ଘକାଳ ସ୍ଥାୟୀ ବୈଦେଶିକ ଶାସନ ହେତୁ ଲୋକଙ୍କଠାରୁ ଯେଉଁ ସବୁ ଗୁଣ ଲୋପ ପାଇଛି, ସେହିସବୁ ଗୁଣ ଏମାନେ ଫେରି ପାଇଛନ୍ତି । ଅବଶ୍ୟ ଅନ୍ୟ ସମସ୍ତ ଗଣ ଆନ୍ଦୋଳନ ପରି କଂଗ୍ରେସ ଆନ୍ଦୋଳନ ଭିତରେ ମଧ୍ୟ ଅନେକ ଅବାଞ୍ଛନୀୟ ଲୋକ— ନିର୍ବୋଧ, ଅକର୍ମଣ୍ୟ ଏବଂ ଖରାପ ଲୋକ ରହିଛନ୍ତି । ମାତ୍ର ମୋର ଏଥିରେ ସନ୍ଦେହ ନାହିଁ, ସାଧାରଣ କଂଗ୍ରେସ କର୍ମୀ ସମଯୋଗ୍ୟତା ସମ୍ପନ୍ନ ଅନ୍ୟ ଯେ କୌଣସି ଲୋକଠାରୁ ଅଧିକ କୁଶଳ ଏବଂ କର୍ମଠ ।

ଏହାର ଗୋଟିଏ ଦିଗକୁ ହୁଏତ ସରକାର ଏବଂ ତାଙ୍କ ପରାମର୍ଶ-ଦାତାମାନେ ପସନ୍ଦ କରନ୍ତି ନାହିଁ । ସମସ୍ତ କାର୍ଯ୍ୟରୁ କଂଗ୍ରେସ କର୍ମୀ-ମାନଙ୍କୁ ବଞ୍ଚିତ କରିବାର ଯେ ଉଦ୍ୟମକୁ ପ୍ରକୃତ ବିପ୍ଳବୀ ଅନୁମୋଦନ କରିବ । ସାଧାରଣ କଂଗ୍ରେସ ଲୋକ ପ୍ରକୃତ ବିପ୍ଳବୀ ନୁହେଁ; ଏକ ଅଧା ବିପ୍ଳବ ସମୟ ପରେ ସେ ତାର ସାଧାରଣ ଜୀବନ ନିର୍ବାହରେ ଓ କାର୍ଯ୍ୟରେ ଲାଗିଯାଏ । ସେ ନିଜର ବ୍ୟବସାୟ, କାରବାର କିମ୍ବା ସ୍ଥାନୀୟ ରାଜନୀତି କାମରେ ଲାଗିଯାଏ । ବଡ଼ ବଡ଼ ସମସ୍ୟା ତା ମନରୁ ଭୁଲିଯିବା ପରି ମନେ ହୁଏ ଏବଂ ଯାହା କିଛି ବିପ୍ଳବାତ୍ମକ ଭାବ ଥାଏ, ତାହା ମଧ୍ୟ ଲୋପ ପାଏ । ମାଂସପେଶୀ ଶିଥିଳ ହୋଇଯାଏ ଏବଂ ଉଦ୍ୟମ ଭାବ

ପରିବର୍ତ୍ତେ ଗୋଟାଏ ସ୍ୱତନ୍ତ୍ର ଦଳ ଆସିଯାଏ । ସାଧାରଣ ମଧ୍ୟବର୍ତ୍ତୀ ଶ୍ରେଣୀର ଲୋକଙ୍କର ଏପରି ଦୁରବସ୍ଥା ଘଟିବା ଅବଶ୍ୟମ୍ଭାବୀ ହୋଇଥିବାରୁ ପ୍ରଗତିଶୀଳ ଏବଂ ଶୃଙ୍ଖଳମନୋଭାବାପନ୍ନ କଂଗ୍ରେସବାଲାମାନେ ସେମାନଙ୍କର ସହକର୍ମୀ-ମାନଙ୍କୁ ବ୍ୟବସ୍ଥା ସଭା ବା ସ୍ୱାୟତ୍ତଶାସନରେ ପଶିବାରେ ବାଧା ଦିଅନ୍ତି । ପୁଣି ସମସ୍ତ ଲାଗୁଥିବା କାର୍ଯ୍ୟ ନ କରିବାପାଇଁ ମଧ୍ୟ କହନ୍ତି । ବର୍ତ୍ତମାନ ସରକାର କଂଗ୍ରେସ କର୍ମୀ ପକ୍ଷରେ କୌଣସି କାର୍ଯ୍ୟ ପାଇବା କଠିନ କରି ଦେଇ ଏଥିରେ ଏବେ ସାହାଯ୍ୟ କରୁଛି ଏବଂ ଏତଦ୍ଦ୍ୱାରା ତାହାର ସେହି ତାଲ୍ଲୀ ଭଳି ଚେଷ୍ଟାରେ ଜମ୍ଭା ଅଧିକ ବଢ଼ିପାରେ ।

ବର୍ଷେ କିମ୍ବା ତହିଁରୁ ଅଧିକ ବେଳ ପର୍ଯ୍ୟନ୍ତ ମ୍ୟୁନିସିପାଲିଟି କାର୍ଯ୍ୟ କରି ମୋର ଶକ୍ତି ଭଲ ଢଙ୍ଗରେ ଖରଚ ହେଉ ନାହିଁ ବୋଲି ମୁଁ ଅନୁଭବ କଲି । ଖୁବ୍ ବେଶୀ ହେଲେ ମୁଁ ଏହାକୁ ଟିକିଏ କର୍ମତତ୍ପର ଏବଂ କର୍ମକୁଶଳ କରିପାରିଥିଲି; ମୁଁ ଯେଉଁ ପରିବର୍ତ୍ତନ ଆଶା କରିଥିଲି ତାହା କରିପାରିଲି ନାହିଁ । ମୁଁ ବୋର୍ଡର ଚେୟାରମ୍ୟାନ ପଦରୁ ଇସ୍ତଫା ଦେବାକୁ ଚାହୁଁଥିଲି । ମାତ୍ର ବୋର୍ଡର ସମସ୍ତ ସଭ୍ୟ ମୋତେ ରହିବା ଲାଗି ଜୋର କଲେ । ମୁଁ ସମସ୍ତଙ୍କଠାରୁ ସମାନଭାବରେ ପ୍ରେମ ଓ ଭଦ୍ରବ୍ୟବହାର ପାଇଥିଲି—ସେମାନଙ୍କ ଅନୁରୋଧ ଫୋପାଡ଼ି ଦେବା ମୋ ପକ୍ଷରେ କଠିନ ଥିଲା । ଯାହା ହେଉ, ଦୁଇବର୍ଷ ପୂରିଗଲା ପରେ ଇସ୍ତଫା ଦେଲି ।

ଏହା ୧୯୨୫ ମସିହାର କଥା । ଏହି ବର୍ଷ ଶରତ୍ ଋତୁରେ ମୋର ସ୍ତ୍ରୀ ଭୀଷଣ ବେମାର ପଡ଼ିଲା ଏବଂ ଅନେକ ମାସ ପର୍ଯ୍ୟନ୍ତ ସେ ଲକ୍ଷ୍ନୌ ହାସପାତାଳରେ ରହିଲା । ସେ ବର୍ଷ କଂଗ୍ରେସ ଅଧିବେଶନ କାନପୁରରେ ହୋଇଥିଲା । ଟିକିଏ ଅସ୍ଥିରଚିତ୍ତରେ ମୁଁ ଏଲାହାବାଦ, କାନପୁର ଓ ଲକ୍ଷ୍ନୌ ବାରମ୍ବାର ଯାଉଥାଏ, ଆସୁଥାଏ । [ସେତେବେଳେ ମୁଁ କଂଗ୍ରେସର ସାଧାରଣ ସମ୍ପାଦକ ହୋଇଥାଏ ।]

ସୁଇଜରଲାଣ୍ଡରେ ପୁଣି ମୋ ସ୍ତ୍ରୀକୁ ଚିକିତ୍ସିତ କରାଇବା ନିମନ୍ତେ ଡାକ୍ତରମାନେ ପରାମର୍ଶ ଦେଲେ । ମୋର ଏହା ପସନ୍ଦ ହେଲା—କାରଣ କୌଣସି ରକମ ଖରଚ୍ଚ ବାହାରକୁ ଯିବା ଲାଗି ମୋର ନିଜର ଇଚ୍ଛା ଥିଲା । ମୋର ମନ ଆଚ୍ଛନ୍ନ ହୋଇଥିଲା—କୌଣସି ପରିଷ୍କାର ପଥ ଦେଖାଯାଉ ନ ଥିଲା । ମୁଁ ଭାବିଲି, ହୁଏ ତ ଭାରତରୁ ଦୂରରେ ରହିଲେ ମୁଁ ଭଲ ଦୃଷ୍ଟିରେ ଭାରତର ଗତି ଲକ୍ଷ୍ୟ କରି ପାରିବି ଏବଂ ମୋର ମନରୁ ଅନ୍ଧକାର ଦୂର ହୋଇଯିବ ।

୧୯୨୬ ମସିହା ମାର୍ଚ୍ଚ ମାସ ଆରମ୍ଭରେ ମୁଁ ମୋର ସ୍ତ୍ରୀ ଓ ଝିଅ ସହିତ ବମ୍ବେରୁ ଭେନିସ ଯାତ୍ରା କଲି । ଆମ ସହିତ ସେ ଦିନ ମୋର ଭଉଣୀ ବିଜୟ ଲକ୍ଷ୍ମୀ ପଣ୍ଡିତ ଏବଂ ଭଣୋଇ ରଣଜିତ୍ ଏସ୍, ପଣ୍ଡିତ ମଧ୍ୟ ଜାହାଜରେ ଗଲେ । ଆମ ଯିବା କଥା ଉଠିବାର ବହୁ ଆଗରୁ ସେମାନେ ଇଉରୋପରେ ଭ୍ରମଣ କରିବା ନିମନ୍ତେ ସ୍ଥିର କରିଥିଲେ ।

———

## ଇଉରୋପରେ

ମୁଁ ୧୩ ବର୍ଷରୁ ଅଧିକ କାଳ ପରେ ଇଉରୋପକୁ ପୁଣି ଥରେ ଯାଉଥାଏ । ଏଥିଭିତରେ ମହା ବିପ୍ଳବ ଏବଂ ଅଦ୍ଭୁତ ପରିବର୍ତ୍ତନ ଘଟି ଯାଇଛି । ମୁଁ ଯେଉଁ ପୁରାତନ ଜଗତ୍ ଦେଖିଥିଲି, ତାହା ମହାଯୁଦ୍ଧର ହିଂସ୍ରତା ଓ ରକ୍ତରେ ଲୋପ ପାଇଛି—ମୁଁ ଏକ ନୂତନ ଜଗତରେ ପହଞ୍ଚିଲି । ମୁଁ ୬।୭ ମାସ ବା ସେ ବର୍ଷ ଶେଷ ପର୍ଯ୍ୟନ୍ତ ଇଉରୋପରେ ରହିବା ନିମନ୍ତେ ଆଶା କରିଥିଲି । ପ୍ରକୃତରେ ଆମେ ଏକ ବର୍ଷ ନଅ ମାସ ରହିଗଲୁ ।

ମୋର ଶରୀର ଓ ମନରେ ଏକ ଶାନ୍ତି ବିଶ୍ରାମ ଥିଲା । ଆମେ ସୁଇଜରଲାଣ୍ଡରେ, ଜେନେଭାରେ ଏବଂ ମଣ୍ଟାନା ନାମକ ପାହାଡ଼ର ସ୍ୱାସ୍ଥ୍ୟ ନିବାସରେ ଅଧିକାଂଶ କାଳ କଟାଇଲୁ । ମୋର ସାନ ଭଉଣୀ କୃଷ୍ଣା ୧୯୨୬ ମସିହା ଗ୍ରୀଷ୍ମ ଋତୁର ପ୍ରଥମ ଭାଗରେ ଭାରତରୁ ଆସି ଆମ ସହିତ

ଯୋଗ ଦେଲ ଏବଂ ଆମେ ଇଉରୋପରୁ ଫେରିବା ପର୍ଯ୍ୟନ୍ତ ଆମ ସହିତ ରହିଲ । ମୁଁ ମୋର ସ୍ତ୍ରୀ ନିକଟରୁ ଦୂରରେ ବେଶୀ ଦିନ ରହି ପାରୁ ନ ଥିଲି, ତେଣୁ ମୁଁ ଅଳ୍ପ ସମୟ ଲାଗି କୌଣସି କୌଣସି ସ୍ଥାନକୁ ଯାଉଥାଏ । ମୋ ସ୍ତ୍ରୀର ଦେହ ଟିକିଏ ଭଲ ହେବା ପରେ ଆମେ ଏକାଠି ଫ୍ରାନ୍ସ, ଇଂଲଣ୍ଡ ଓ ଜର୍ମାନୀରେ ଭ୍ରମଣ କଲୁ । ଶୀତକାଳର ତୁଷାର ଆବୃତ ପର୍ବତଶିଖରରେ ମୁଁ ଭାରତ ଓ ଇଉରୋପଠାରୁ ବହୁତ ଦୂରରେ ରହିଥିବାପରି ବୋଧ କଲି । ଭାରତ ଏବଂ ଭାରତୀୟ ଘଟଣା ସବୁ ବହୁ ଦୂରରେ ରହି ଥିବାପରି ବୋଧ ହେଲା । ମୁଁ ଏକ ସୁଦୂର ଦର୍ଶକ ଭାବରେ ଦେଖୁଥିଲି, ଘଟଣା ବଳୀ ଲକ୍ଷ୍ୟ କରୁଥାଏ; ନୂତନ ଇଉରୋପ, ତାର ରାଜନୀତି ଓ ଅର୍ଥନୀତି ଏବଂ ଅଧିକ ସ୍ୱାଧୀନତା ଲଭିଥିବା ମନୁଷ୍ୟ ସମ୍ବନ୍ଧରେ ଲକ୍ଷ୍ୟ କରୁଥାଏ ଏବଂ ତାହା ବୁଝିବା ନିମନ୍ତେ ଚେଷ୍ଟା କରୁଥାଏ । ଆମେ ଜେନେଭାରେ ଥିବାବେଳେ ମୁଁ ଜାତିସଂଘ (League of Nations) ଏବଂ ଆନ୍ତର୍ଜାତିକ ସଂଘର କାର୍ଯ୍ୟ ଆଗ୍ରହର ସହିତ ଦେଖୁଥିଲି ।

ଶୀତ ଋତୁ ଆସିବାରୁ ଶୀତକାଳୀନ ଖେଳ ପ୍ରତି ମୋର ଦୃଷ୍ଟି ପଡ଼ିଲା; କେତେକ ମାସ ଏହା ମୋର ପ୍ରଧାନ କାମ ହୋଇପଡ଼ିଲା । ମୁଁ ପୂର୍ବରୁ ବରଫରେ ଖେଳିଥିଲି; ମାତ୍ର "ସ୍କିଙ୍ଗ୍" ଏକ ନୂତନ ଅଭିଜ୍ଞତା । ମୁଁ ମୁଗ୍ଧ ହୋଇ ଏଥିରେ ଲାଗିଗଲି । ଅନେକ ଦିନ ପର୍ଯ୍ୟନ୍ତ ଏଥିରେ ମୁଁ ବହୁତ କଷ୍ଟ ପାଇଲି, ମାତ୍ର ସାହସର ସହିତ ଏଥିରେ ମୁଁ ଲାଗିଲି—ଅନେକ ଥର ପଡ଼ିଗଲେ ମଧ୍ୟ; ଶେଷରେ ମୁଁ ଏହାକୁ ଆୟତ୍ତ କରି ଉପଭୋଗ କରି ପାରିଥିଲି ।

ମୋଟାମୋଟି ଜୀବନରେ ସେପରି କିଛି ଘଟଣା ଘଟି ନ ଥିଲା । ଦିନ କଟିଗଲା ଏବଂ ମୋର ସ୍ତ୍ରୀ କ୍ରମେ ଟିକିଏ ବଳ ପାଇଲା । ଆମେ ଖୁବ୍ କମ ଭାରତୀୟଙ୍କୁ ଭେଟିଥିଲୁ । ପ୍ରକୃତରେ ପର୍ବତ ନିବାସରେ ଥିବା ଅଳ୍ପ କେତେକ ଲୋକଙ୍କ ଛଡ଼ା ଆମର ପ୍ରାୟ ଅନ୍ୟ କାହାରି ସହିତ ସାକ୍ଷାତ୍ ହୋଇ ନ ଥିଲା । ମାତ୍ର ଆମ ଇଉରୋପରେ ଏକ ବର୍ଷ ନଅମାସ

ଅବସ୍ଥାନ ସମୟରେ ଅନେକ ନିର୍ବାସିତ ଭାରତୀୟ ଓ ପୁରାତନ ବିପ୍ଳବୀମାନଙ୍କ ସହିତ ମୋର ସାକ୍ଷାତ୍ ହୋଇଥିଲା । ଯେମାନଙ୍କ ନାମ ଆଗରୁ ମୋତେ ଜଣା ଥିଲା ।

ଜେନେଭାରେ ଏକ ଘରେ ଉପର ମହଲାରେ ଶ୍ୟାମଜି କୃଷ୍ଣବର୍ମା ତାଙ୍କର ବୁଢ଼ୀ ସ୍ତ୍ରୀଙ୍କ ସହିତ ଥାଆନ୍ତି । ଏହି ବୃଦ୍ଧ ଦମ୍ପତିଙ୍କ କୌଣସି ଚାକର ନ ଥାନ୍ତି । ସେମାନେ ନିଜେ ସବୁ କାର୍ଯ୍ୟ କରୁଥିଲେ. ତାଙ୍କ ଘର ବଡ଼ ଆର୍ଦ୍ର ଏବଂ ଦୁର୍ଗନ୍ଧମୟ ହୋଇଥାଏ ଓ ଘରସାରା ଧୂଳି ଜମି ଯାଇଥାଏ । ଶ୍ୟାମଜିଙ୍କ ନିକଟରେ ପ୍ରଚୁର ଧନ ଥାଏ; ମାତ୍ର ସେ ତାହା ଖରଚ କରିବାକୁ ଚାହୁଁ ନ ଥିଲେ । ସେ ଟ୍ରାମରେ ନ ଚଢ଼ି ଚାଲି ଯାଇ ପଇସା ସଞ୍ଚୁଥିଲେ । ତାଙ୍କ ନିକଟକୁ ଆସୁଥିବା ଲୋକ ସମ୍ବନ୍ଧରେ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ସେ ସନ୍ଦେହ କରୁଥିଲେ—ହୁଏତ ବ୍ରିଟିଶ ଏଜେଣ୍ଟ କିମ୍ବା ତାଙ୍କଠାରୁ ଟଙ୍କା ନେଇଯିବା ନିମନ୍ତେ ଆସିଛି ବୋଲି ଚିନ୍ତୁଥିଲେ । ତାଙ୍କ ପକେଟରେ ଇଣ୍ଡିୟାନ୍ ସୋସିଓଲଜିଷ୍ଟ (Indian sociologist) କାଗଜର ପୁରୁଣା ସଂଖ୍ୟା ସବୁ ଥାଏ । ସେ ତାକୁ ବାହାର କରି ପ୍ରାୟ ବାର ବର୍ଷ ପୂର୍ବରୁ ସେ ଯାହା ଲେଖିଥିଲେ ତାହା ଆଗ୍ରହର ସହିତ ଦେଖାନ୍ତି । ସେ ପୁରୁଣା ଗପ କରିବାକୁ ଭଲ ପାଆନ୍ତି, ହାମ୍ପଷ୍ଟେଡ଼ର ଇଣ୍ଡିଆ ହାଉସ ଗପ, ବ୍ରିଟିଶ ସରକାର କିପରି ଅନେକ ଲୋକଙ୍କୁ ଗୁଇନ୍ଦା ଭାବରେ ତାଙ୍କ ନିକଟକୁ ପଠାଉଥିଲା—ସେ ସେମାନଙ୍କୁ ଚିହ୍ନି ପାରି ଠକ ଦେଇଛନ୍ତି ଇତ୍ୟାଦି ଗପ କରୁଥିଲେ । ତାଙ୍କର କାନ୍ଥ ଆଲମାରିରେ ଅନେକ ପୁସ୍ତକ ବହି ଭର୍ତ୍ତି ହୋଇଥାଏ, ସେଥିରେ ଧୂଳି ଜମି ଯାଇଥାଏ ଏବଂ ତାହା ଅବହେଳିତ ହୋଇ ପଡ଼ିଥାଏ—କେହି ଏ ପାଖ ସେ ପାଖ କଲେ ସେଗୁଡ଼ିକର ଭାଗ୍ୟ ଫେରେ । ବହି ଓ କାଗଜସବୁ ତଳେ ଅଳିଆ ହୋଇ ପଡ଼ିଥାଏ । ମାସ ମାସ ଧରି ସେଗୁଡ଼ିକ ଏପରି ପଡ଼ିଥିବାର ମନେ ହେଉଥିଲା । ସ୍ଥାନଟିରେ ଗୋଟିଏ ଅନ୍ଧକାର ଓ ପତନର ଛାୟା ଦେଖାଯାଉ ଥିଲା । ଜୀବନ ଯେପରି ଏଠାରେ ଏକ ଅବାଞ୍ଛନୀୟ ଅତିଥି; ଅନ୍ଧକାର ଓ ନିର୍ଜନ ବାରଣ୍ଡା

ଦେଇ ଅତିକମ ଲଣ୍ଡନରେ ପ୍ରତ୍ୟେକ କୋଣରେ ମୃତ୍ୟୁର ଛାୟା ଥିବାଭଳି ମନେ ହୁଏ । ସେଠୁଁ ଆସି ଆମେ ଟିକିଏ ଆରାମ ବୋଧ କଲୁଁ ଏବଂ ବାହାରେ ନିର୍ମଳ ବାୟୁରେ ନିଶ୍ୱାସ ମାରିଲୁ ।

ତାଙ୍କ ପାଖରେ ଥିବା ଅର୍ଥର ଗୋଟାଏ କିଛି ବ୍ୟବସ୍ଥା କରିବା ନିମନ୍ତେ ଶ୍ୟାମଜୀଙ୍କର ଇଚ୍ଛା ଥିଲା; କୌଣସି ଲୋକହିତକର କାର୍ଯ୍ୟ ବିଶେଷତଃ ବିଦେଶରେ ଭାରତୀୟମାନଙ୍କର ଶିକ୍ଷା ଉଦ୍ଦେଶ୍ୟରେ ସେ ଅର୍ଥ ଖରଚ କରାଇବା ନିମନ୍ତେ ଟ୍ରଷ୍ଟି ନିଯୁକ୍ତ କରିବା ତାଙ୍କର ଇଚ୍ଛା ଥିଲା । ମୋତେ ଏକ ଟ୍ରଷ୍ଟି କରିବା ନିମନ୍ତେ ତାଙ୍କର ମତ; ମାତ୍ର ମୁଁ ଏଥିରେ କିଛି ଆଗ୍ରହ ଦେଖାଇଲି ନାହିଁ । କୌଣସି ଟଙ୍କା ପଇସା ବ୍ୟାପାରରେ ଜଡ଼ିତ ହେବା ମୋର ଇଚ୍ଛା ନଥିଲା—ଏହାଛଡ଼ା ମୋର ମନେହେଲା ମୁଁ ଯଦି ଏଥିରେ କିଛି ଅଯଥା ଆଗ୍ରହ ଦେଖାଏ, ତେବେ ତାଙ୍କ ଟଙ୍କା ନେଇଯିବା ନିମନ୍ତେ ମୁଁ ଆସିଛି ବୋଲି ସେ ସନ୍ଦେହ କରି ପାରନ୍ତି । ତାଙ୍କ ପାଖରେ କେତେ ଟଙ୍କା ଥିଲା, ତାହା ଠିକ ଜଣାନାହିଁ । ଶୁଣାଯାଏ ଯେ, ଜର୍ମାନ ମୁଦ୍ରାର ଦର ବାଢ଼ିଯିବାରୁ ତାଙ୍କର କ୍ଷତି ହୋଇଥିଲା ।

ସମୟ ସମୟରେ ପ୍ରସିଦ୍ଧ ଭାରତୀୟମାନେ ଜେନେଭା ଯାଉଥିଲେ । ଜାତିସଂଘକୁ ଯେଉଁମାନେ ଆସନ୍ତି, ସେମାନେ ସରକାରୀ ଲୋକ । ଶ୍ୟାମଜୀ ସେମାନଙ୍କ ପାଖ ମାଡ଼ୁ ନଥିଲେ । ଶ୍ରମିକ ଅଫିସକୁ ସମୟ ସମୟରେ ବେ-ସରକାରୀ ଲୋକ ଏପରିକି ପ୍ରସିଦ୍ଧ କଂଗ୍ରେସ ଲୋକେ ବି ଆସୁଥିଲେ ଏବଂ ଶ୍ୟାମଜୀ ସେମାନଙ୍କୁ ଭେଟୁଥିଲେ । ସ୍ୱାଙ୍କ ଉଦ୍ଦେଶ୍ୟରେ ସେମାନଙ୍କର ମତ ଲକ୍ଷ୍ୟ କରିବାର କଥା । ସମସ୍ତେ ତାଙ୍କ ସାଙ୍ଗେ ଖୁସି ଭଲ ପାଉ ନଥିଲେ ଏବଂ ସାଧାରଣ କ୍ଷେତ୍ରରେ ତାଙ୍କଠାରୁ ଦୂରରେ ରହିବାକୁ ଚେଷ୍ଟା କରୁଥିଲେ । ଘଟଣାଇ ଭାବରେ ଯଦି କେବେ ଦେଖା ହେଉଥିଲା, ତେବେ ସେମାନେ ଏମାମାରି ନେଉଥିଲେ । ତାଙ୍କ ସହିତ ମିଳାମିଶା କରିବା ନିରାପଦ ନଥିଲା ।

ଏହିପରି ଭାବରେ ବନ୍ଧୁ, ସନ୍ତାନ ଏବଂ ମିତ୍ରହୀନ ଭାବରେ, ଏପରିକି ମନୁଷ୍ୟ ସମ୍ପର୍କହୀନ ରୂପେ ସେଠାରେ ଶ୍ୟାମଜୀ ଓ ତାଙ୍କ ସ୍ତ୍ରୀ ଏକ ନିଃସଙ୍ଗ ଜୀବନଯାପନ କରୁଥିଲେ । ସେ ଏକ ପୁରାତନର ସ୍ମୃତି ସ୍ୱରୂପ ଥିଲେ, ତାଙ୍କ ଦିନ ସରିଗଲା ପରେ ସୁଦ୍ଧା ବଞ୍ଚିଥିଲା ପରି ମନେ ହେଉଥିଲା । ବର୍ତ୍ତମାନ ସହିତ ତାଙ୍କର ସମ୍ପର୍କ ନଥିଲା ଏବଂ ତାଙ୍କୁ ବିସ୍ମୃତ ହୋଇ ସତେ କି ଦୁନିଆ ଗତି କରୁଛି । ବର୍ତ୍ତମାନ ସୁଦ୍ଧା ତାଙ୍କ ଚକ୍ଷୁରେ ସେ ପୂର୍ବ ତେଜ ଦେଖାଯାଉଥିଲା । ତାଙ୍କ ଓ ମୋ ଭିତରେ ଅନେକ ପାର୍ଥକ୍ୟ ଥିଲେ ସୁଦ୍ଧା ତାଙ୍କ ପ୍ରତି ଶ୍ରଦ୍ଧା ଓ ସହାନୁଭୂତି ନ ଦେଖାଇ ମୁଁ ରହିପାରିଲି ନାହିଁ ।

ଏବେ ତାଙ୍କର ମୃତ୍ୟୁ ସମ୍ବାଦ ଖବର କାଗଜରେ ପ୍ରକାଶ ପାଇଥିଲା । ତାର କିଛିଦିନ ପରେ ମଧ୍ୟ ବିଦେଶରେ ନିର୍ବାସନରେ ତାଙ୍କର ଏକମାତ୍ର ଗୁଜରାଠୀ ସ୍ତ୍ରୀ ମଧ୍ୟ ମରିଯାଇଛନ୍ତି । ବିଦେଶରେ ଭାରତୀୟ ନାରୀ-ଶିକ୍ଷା ନିମନ୍ତେ ଅନେକ ଅର୍ଥ ତାଙ୍କ ସ୍ତ୍ରୀ ଛାଡ଼ି ଯାଇଛନ୍ତି ବୋଲି ଶୁଣାଯାଏ ।

ରାଜା ମହେନ୍ଦ୍ର ପ୍ରତାପ ଜଣେ ଖୁବ ଜଣାଶୁଣା ଲୋକ । ତାଙ୍କ ନାମ ମୁଁ ଆଗରୁ ଶୁଣିଥିଲି; ମାତ୍ର ପ୍ରଥମେ ସୁଇଜରଲାଣ୍ଡରେ ତାଙ୍କ ସହିତ ସାକ୍ଷାତ୍ ହେଲା । ସେ ସେତେବେଳେ ଜଣେ ଆନନ୍ଦମୟ ଆଶାବାଦୀ ଥିଲେ । ( ମୋର ମନେହୁଏ ଏବେ ମଧ୍ୟ ସେହିପରି ଅଛନ୍ତି ) । ସେ ସ୍ୱପ୍ନରାଜ୍ୟରେ ବିଚରଣ କରନ୍ତି । ବସ୍ତୁବାଦ ସହ ତାଙ୍କର ସମ୍ପର୍କ ନଥାଏ । ମୁଁ ତାଙ୍କୁ ପ୍ରଥମେ ଦେଖି ଟିକିଏ ଅବାକ୍ ହୋଇ ଯାଇଥିଲି । ସେ ଏକ ଅଦ୍ଭୁତ ପୋଷାକ ପିନ୍ଧିଥିଲେ । ତିବ୍‌ବତ୍ କିମ୍ବା ସାଇବେରିଆ ପରି ପାହାଡ଼ିଆ ସ୍ଥାନରେ ସେପରି ପୋଷାକ ପିନ୍ଧାଯାଏ । ଗ୍ରୀଷ୍ମ ଋତୁରେ ମଣ୍ଟ୍ରେକ୍ସ ପରି ସ୍ଥାନରେ ଏହା ଆଦୌ ଉପଯୋଗୀ ନୁହେଁ । ଏହା ଏକ ପ୍ରକାର ଅଧା ସାମରିକ ପୋଷାକ—ଋଷିଆ ଲୋକଙ୍କ ପରି ବଡ଼ ଜୋତା ପିନ୍ଧିଥାନ୍ତି । ତାଙ୍କ ଜାମାରେ ବଡ଼ ପକେଟ ଥାଏ—ସବୁଥିରେ କାଗଜ ଫଟୋଗ୍ରାଫ ସବୁ ପଦାକୁ ବାହାରି ପଡୁଥାଏ । ତା ଭିତରେ ଜର୍ମାନ

ଗୁନ୍‌ସେଲର ବେଥମେନ୍ ହଲଡ଼ୋଆଙ୍କର ଚିଠି ଥାଏ । କାଇଜରଙ୍କ ନିଜ ଦସ୍ତଖତ ଥିବା ଚିତ୍ର ଥାଏ, ତିବ୍ବତରେ ଦଲାଇଲାମା ପାଖରୁ ପ୍ରାପ୍ତ ଖଣ୍ଡିଏ ସୁନ୍ଦର ରେଶମୀ ଲୁଗାରେ ଲେଖା ଚିଠି, ଅଧିକନ୍ତୁ ଅନେକ ଛବି ଓ କାଗଜପତ୍ର ଥାଏ । ଏ ପକେଟରେ ଏତେ ଜିନିଷ ରହୁଛି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ସେ ଆମକୁ କହିଲେ, ଥରେ ଚୀନର ଅନେକ ମୂଲ୍ୟବାନ୍ କାଗଜପତ୍ର ଥିବା ଗୋଟିଏ ବାକ୍ସ ତାଙ୍କର ହଜିଯାଇ ଥିଲା ଏବଂ ସେଥିପାଇଁ ସେ ପକେଟରେ କାଗଜପତ୍ର ନେବା ନିରାପଦ ମନେ କରନ୍ତି । ଏଥିପାଇଁ ଏତେ ଅସଂଖ୍ୟ ପକେଟ ସେ ତିଆରି କରିଛନ୍ତି ।

ମହେନ୍ଦ୍ର ପ୍ରତାପ ତାଙ୍କର ଭ୍ରମଣବୃତ୍ତାନ୍ତ—ଜାପାନ, ଚୀନ, ତିବ୍ବତ ଓ ଆଫଗାନିସ୍ଥାନରେ ତାଙ୍କର ଦୁଃସାହସିକ କାର୍ଯ୍ୟର ବର୍ଣ୍ଣନା କଲେ । ସେ ଉଦାର ଜୀବନ ଯାପନ କରୁଥିଲେ ଏବଂ ସେ ସବୁ କାହାଣୀ ବେଶ୍ ମନୋହର । ସେ ଏକ "ହାପିନେସ୍ ସୋସାଇଟି" ବା ସୁଖପ୍ରଦ ସମିତି ଗଢ଼ିଥିଲେ ଏବଂ ସେଥିରେ ଖୁବ୍ ମାତିଥିଲେ । ଏହାର ମୂଳମନ୍ତ୍ର ଥିଲା "ସୁଖୀ ହୁଅ ।" ସମ୍ଭବତଃ ଲାଟଭିଆ ( ଲିଥୁଏନିଆରେ ) ଏହି ସମାଜ ଖୁବ୍ ସଫଳ ହୋଇଥିଲା ।

ସେ ଏକ ଢଙ୍ଗରେ ପ୍ରଚାର କରୁଥିଲେ । ଜେନେଭାରେ ବା ଅନ୍ୟ ସ୍ଥାନରେ ଅନେକ ପ୍ରକାର ସମ୍ମିଳନୀ ହୁଏ—ସେହି ସମ୍ମିଳନୀମାନଙ୍କରେ ସଭ୍ୟମାନଙ୍କ ନିକଟକୁ ସେ ବହୁ ସଂଖ୍ୟାରେ ପୋଷ୍ଟକାର୍ଡ ଛପାଇ ପଠାନ୍ତି । ଏହି ସବୁ ବାର୍ତ୍ତାତଳେ ତାଙ୍କ ନାମ ଦସ୍ତଖତ ହେଲା—ମାତ୍ର ଏକ ଅଦ୍ଭୁତ ନାମ ଦିଆଯାଇଛି—ଏହା ଖୁବ୍ ଦୀର୍ଘ ଏବଂ ନାନାପ୍ରକାର ହୋଇଥିଲା । ଶ୍ରେଷ୍ଠ ଦସ୍ତଖତ ପାଇଁ "ମହେନ୍ଦ୍ର ପ୍ରତାପ" ନାମ ଥିଲା—ମାତ୍ର ଏହା ସହିତ ସେ ଆହୁରି ଅନେକ ନାମ ଯୋଗ କରି ଦେଇଥିଲେ—ସେ ଯେଉଁ ସବୁ ଦେଶକୁ ଯାଇଥିଲେ, ପ୍ରତ୍ୟେକ ଥର ସେହି ଦେଶର ନାମ ତାଙ୍କ ନାମ ସହିତ ଯୋଗକରି ଦେଉଥିଲେ । ଏହି ରୂପେ ସେ

ନିଜର ଅନ୍ତର୍ଜ୍ୟୋତିସ୍ୱ ଏବଂ ନାଗରିକ ଖବ ରଖିଥିଲେ ଏବଂ ଶେଷକୁ ତାଙ୍କ ନାମ ସହିତ "ମନୁଷ୍ୟଜାତିର ସେବକ" ବୋଲି ନାମ ରଖିଲେ । ମହେନ୍ଦ୍ର ପ୍ରତାପଙ୍କ କଥାରେ ଗୁରୁତ୍ୱ ଦେବା କଷ୍ଟକର । ସେ ପେମରିକ ମଧ୍ୟ ମୃଗୀୟ ନାଟକର ନାୟକ,ବିଂଶ ଶତାବ୍ଦୀରେ ଡନ କୁଇକସଟୋ ପରି ମନେହେଲେ । ସେ ଖୁବ୍ ସରଳ ଏବଂ ନିଷ୍ଠାପର ଲୋକ ଥିଲେ ।

ଅାବସରେ ବୃଦ୍ଧା ମାଆାମ କାମାଙ୍କ ସହିତ ଆମର ସାକ୍ଷାତ ହେଲା । ସେ ପାଖକୁ ଆସିଲେ ଗୋଟିଏ ଭାରତର ସଙ୍ଗୀର ହୁଏ ଏବଂ ସେ ନିରେଖି ତମ ମୁହଁ ଆଡ଼କୁ ଚାହାନ୍ତି ଏବଂ ଲକ୍ଷ୍ୟ କରି ତୁମେ କିଏ ବୋଲି ପଚାରନ୍ତି । ଥରେ ଜବାବ ଦେବାରେ କିଛି ପରିବର୍ତ୍ତିନ ହୁଏ ନା (ସମ୍ଭବତଃ ସେ ଅଧୀର ଯୋଗୁଁ କିଛି ଶୁଣିପାରନ୍ତି ନାହିଁ) । ଘଟଣା ପଛନ୍ତେ ଅନ୍ୟ-ପ୍ରକାର ହେଉଥାଉ, ସେ ତାଙ୍କର ନିଜର ଧାରଣା କରି ନେଉଥିଲେ ଏବଂ ସେଥିରେ ଦୃଢ଼ ରହୁଥିଲେ ।

ତା ପରେ ମୌଲବୀ ଓବେଦୁଲ୍ଲଙ୍କ ସହ ଅଳ୍ପ ସମୟ ପାଇଁ ମୋର ଇଟାଲିରେ ସାକ୍ଷାତ ହୋଇଥିଲା । ସେ ଖୁବ୍ ଚତୁର ପରି ମୋତେ ମନେ ହେଲା—ମାତ୍ର ପୁରୁଣା କାଳିଆ ରାଜନୀତିର କୂଟ କାର୍ଯ୍ୟ କରିବାରେ ସମର୍ଥ ଥିଲେ । ଆଧୁନିକ ଭାବଧାରା ସହିତ ତାଙ୍କର ସମ୍ପର୍କ ନ ଥିଲା । ସେ "ୟୁନାଇଟେଡ୍ ଷ୍ଟେଟସ" ବା "ୟୁନାଇଟେଡ୍ ରିପବ୍ଲିକ୍ସ ଅଫ ଇଣ୍ଡିଆ" (ଭାରତର ସମ୍ମିଳିତ ଲୋକତନ୍ତ୍ର) ଏକ ଯୋଜନା କରି ଥିଲେ । ଏଥିରେ ସାମ୍ପ୍ରଦାୟିକ ସମସ୍ୟା ସମାଧାନ ଲାଗି ବେଶି ଗୋଟାଏ ଭଲ ଉଦ୍ୟମ ହୋଇଥିଲା । ସେ ଇସ୍ତାନବୁଲରେ (ସେତେ-ବେଳେ ସୁଦ୍ଧା ତାକୁ କନଷ୍ଟାଣ୍ଟିନୋପଲ କୁହା ଯାଉଥିଲା) ଥିଲା ବେଳେ କିପରି କଣ କରୁଥିଲେ ତାହା ମୋତେ କହିଲେ । ସେ ସମ୍ବନ୍ଧରେ ମୁଁ ବେଶି ଗୁରୁତ୍ୱ ଦେଇ ନ ଥିବାରୁ ସେ କଥା ଭୁଲି ଯାଇଛି । କେତେକ ମାସ ପରେ ଲାଲା ଲଜପତ ରାୟଙ୍କ ସହିତ ତାଙ୍କର ଭେଟ ହୋଇଥିଲା ।

ଏବଂ ଲାଲାଜୀଙ୍କୁ ସମ୍ବନ୍ଧ ସେଇକଥା ସେ କହୁଥିଲେ । ଲାଲାଜୀ ତାଙ୍କ କଥାରେ ଖୁବ୍ ମୁଗ୍ଧ ହୋଇଗଲେ ଏବଂ ସେହି ବର୍ଷ ଭାରତୀୟ କାଉନ୍‌ସିଲ ନିର୍ବାଚନରେ ଏହି ସବୁ ଗପ ଅନୁସାରେ କେତେକ ପରିମାଣରେ ପରିବର୍ତ୍ତିତ ହୋଇ ବ୍ୟବହୃତ ହୋଇଥିଲା । ମୌଲବୀ ଓବେଦୁଲ୍ଲା ତାପରେ ଦେହୁପାକୁ ଗଲେ ଏବଂ ଅନେକବର୍ଷ ହେଲା ମୁଁ ତାଙ୍କର କୌଣସି ସମ୍ବାଦ ପାଇ ନାହିଁ ।

ବରକତୁଲ୍ଲାଙ୍କ ସହିତ ମୋର ବର୍ଲିନରେ ପ୍ରଥମ ଦେଖା ହେଲା । ସେ ଜଣେ ସମ୍ପୂର୍ଣ୍ଣ ଭିନ୍ନ ଧରଣର ମୌଲବୀ ଥିଲେ । ସେ ଜଣେ ଆନନ୍ଦପୂର୍ଣ୍ଣ ବୃଦ୍ଧ ଲୋକ, ଖୁବ୍ ଉତ୍ସାହୀ ଏବଂ ଅଦ୍ଭୁତ ଲୋକ । ସେ ଖୁବ୍ ସରଳ,ଅଥଚ ତେତେ ବଡ଼ଧୀର ନ ଥିଲେ, ତଥାପି ନୂତନ ଭାବ ଏବଂ ବର୍ତ୍ତମାନ ଦୁନିଆକୁ ବୁଝିବାକୁ ଚେଷ୍ଟା କରୁଥିଲେ । ଆମେ ସୁଇଜରଲାଣ୍ଡରେ ଥିଲାବେଳେ ୧୯୨୭ ରେ ସାନଫ୍ରାନ୍‌ସିସ୍କୋରେ ତାଙ୍କର ମୃତ୍ୟୁକଥା ଶୁଣିଲୁ । ତାଙ୍କର ମୃତ୍ୟୁଖବର ଶୁଣି ମୁଁ ଦୁଃଖିତ ହେଲି ।

ବର୍ଲିନରେ ଯୁଦ୍ଧ ସମୟରେ କେତେକ ଲୋକ ଏକ ଭାରତୀୟ ଦଳ ଗଢ଼ିଥିଲେ; ମାତ୍ର ସେ ଦଳ ଅନେକ ଦିନ ହେଲା ଭାଙ୍ଗିଗଲାଣି । ସେମାନେ ନିଜ ନିଜ ଭିତରେ କଜିଆ କରି ହଣି ପଡ଼ୁଛନ୍ତି— ପ୍ରତ୍ୟେକ ଅନ୍ୟକୁ ବିଶ୍ୱାସଘାତକତା କଲା ବୋଲି ଦୋଷ ଦିଅନ୍ତି । ନିର୍ବାସିତ ରାଜନୈତିକ-ମାନଙ୍କର ଦଶା ସବୁଠି ଏହିପରି । ବର୍ଲିନରେ ଥିବା ଭାରତୀୟଙ୍କ ଭିତରୁ ଅନେକ ମଧ୍ୟବିତ୍ତ ଶ୍ରେଣୀର ବ୍ୟବସାୟୀ ଧରି ବର୍ଲିନରେ ବସବାସ କରି-ଗଲେଣି । ଯୁଦ୍ଧ ପରେ ଜର୍ମାନୀରେ କେତେବେଳେ କାମ ଜୁଟୁଥିଲା, କେତେବେଳେ ଜୁଟୁ ନ ଥିଲା । ଯାହାହେଉ ସେମାନଙ୍କର ଆଉ କୌଣସି ପ୍ରକାର ବିପ୍ଳବ କାର୍ଯ୍ୟରେ ଆଗ୍ରହ ରହିଲା ନାହିଁ । ଏପରିକି ସେମାନେ ରାଜନୀତିରୁ ଅଲଗା ହେବାକୁ ଲାଗିଲେ ।

ଯୁଦ୍ଧ ସମୟରେ ଏହି ପୁରାତନ ଦଳର ଗଳ୍ପ ବେଶ୍ କୌତୂହଳ ପ୍ରଦ । ୧୯୧୪ ମସିହାରେ ସେହି ଉଲ୍ଲେଖଯୋଗ୍ୟ ଗ୍ରୀଷ୍ମଋତୁରେ ଏମାନଙ୍କ

ଭିତରୁ ଅଧିକାଂଶ ବର୍ଲିନ ବିଶ୍ୱବିଦ୍ୟାଳୟର ଛାତ୍ର ଥିଲେ । ସେମାନେ ଜର୍ମାନ ଛାତ୍ରମାନଙ୍କ ସଙ୍ଗେ ଏକାଠି ବାସ କଲେ, ସେମାନଙ୍କର ଗୀତ ଗାଇଲେ ଏବଂ ସେମାନଙ୍କ ଖେଳ ଶିଖିଲେ, ସେମାନଙ୍କ ସଙ୍ଗେ ମଦ ପିଇଲେ। ଏବଂ ସହାନୁଭୂତି ଓ ଆଗ୍ରହର ସହିତ ସେମାନଙ୍କ ସଂସ୍କୃତି ଶିକ୍ଷା କରିବାକୁ ଲାଗିଲେ । ଯୁଦ୍ଧ ଲାଗି ସେମାନେ ବ୍ୟଗ୍ର ହୋଇ ନ ଥିଲେ, ମାତ୍ର ଜର୍ମାନୀରେ ଯେଉଁ ଉଗ୍ର ଜାତୀୟତାର ତରଙ୍ଗ ବହିଗଲା, ତାହା ସଂସ୍ପର୍ଶରେ ନ ଆସି ସେମାନେ ରହି ପାରି ନ ଥିଲେ । ସେମାନଙ୍କର ବାସ୍ତବିକ ଇଂରେଜବିରୋଧୀ ଭାବ ଥିଲା, ଜର୍ମାନ ସପକ୍ଷ ଭାବ ନୁହେଁ । ଭାରତ ଜାତୀୟତାବାଦ ହେତୁ ବ୍ରିଟେନ ବିରୁଦ୍ଧ ଦଳସହିତ ସେମାନେ ଆଗ୍ରହ ଦେଖାଇ ଥିଲେ । ଯୁଦ୍ଧ ଆରମ୍ଭ ହେବାର ଅଳ୍ପଦିନ ପରେ ଆଉ କେତେକ ଅଧିକ ସଚେତନ ଭାରତୀୟ ବିପ୍ଳବୀ ସୁଇଜରଲାଣ୍ଡ ମଧ୍ୟ ଦେଇ ଜର୍ମାନୀକୁ ଗଲେ । ଏମାନେ ନିଜେ ଗୋଟିଏ କମିଟି ଗଢ଼ି ହରଦୟାଲଙ୍କୁ ଡକାଇ ପଠାଇଥିଲେ । ହରଦୟାଲ ସେତେବେଳେ ଆମେରିକାର ପଶ୍ଚିମ ଉପକୂଳରେ ଥାଆନ୍ତି । ହରଦୟାଲ କେତେକ ମାସ ପରେ ଆସି ପହଞ୍ଚିଲେ । ଏଥି ଭିତରେ କମିଟି ବେଶ୍ ପ୍ରାଧାନ୍ୟ ଲାଭ କରିଥାଏ । ଜର୍ମାନ ସରକାରଙ୍କ ଏହି ଗୁରୁତ୍ୱ ତାଙ୍କ ଉପରେ ଲଦି ଦେଇଥାଏ; କାରଣ ସେମାନେ ସ୍ୱଭାବତଃ ତାଙ୍କର ନିଜ ସୁବିଧା ସକାଶେ ସମସ୍ତ ଇଂରେଜ ବିରୋଧ ଭାବର ସୁବିଧା ଉଠାଇବାକୁ ଚାହୁଁଥିଲେ । ଭାରତୀୟମାନେ ନିଜର ଜାତୀୟ ଉଦ୍ଦେଶ୍ୟ ହାସଲ ପାଇଁ ଆନ୍ତର୍ଜାତିକ ପରିସ୍ଥିତିର ସୁବିଧା ଉଠାଇବାକୁ ଚାହୁଁଥିଲେ ଏବଂ କେବଳ ଜର୍ମାନୀର ସୁବିଧା ନିମନ୍ତେ ଉପଯୋଗୀ ହେବାକୁ ଚାହୁଁ ନ ଥିଲେ । ଏ ବିଷୟରେ ତାଙ୍କର ନିଜର ବିଗ୍ରହ କରିବାର କିଛି ନ ଥିଲା । ମାତ୍ର ଜର୍ମାନ କର୍ତ୍ତୃପକ୍ଷ ଯାହା ଚାହିଁବା ନିମନ୍ତେ ବ୍ୟଗ୍ର, ସେପରି କିଛି କରିବା ନିମନ୍ତେ ସେମାନେ ଇଚ୍ଛା କଲେ ଏବଂ ଏହି ହେତୁ ସେମାନଙ୍କୁ ଚୁକ୍ତି କରିବାକୁ ପଡ଼ିଲା । ସେମାନେ ଭାରତୀୟ ସ୍ୱାଧୀନତା ଲାଗି ଜବାବ ଚାହିଁବାରେ ବାଧ୍ୟ କଲେ । ଜର୍ମାନ ବୈଦେଶିକ ଅଫିସ ଏ ବିଷୟରେ ସେମାନଙ୍କ ସହିତ ଏକମତ ହୋଇ ଗୋଟିଏ ସନ୍ଧି କରିଥିଲା ପରି ମନେ ହୁଏ । ଏହି ସନ୍ଧିରେ କମ୍ ଲାଭ କଲେ ।

ସେମାନେ ଭାରତକୁ ସ୍ୱାଧୀନ କରିଦେବେ ବୋଲି ରାଜି ହେଲେ । ଏହି ସନ୍ଧି ଏବଂ ଶପଥ ଦେବା ହେତୁ ଭାରତୀୟମାନେ ଜର୍ମାନୀରେ ଯାତାୟାତ କରିବାକୁ ରାଜି ହୋଇଥିଲେ । ସରକାରୀ ଭାବରେ ଏହି କମିଟିକୁ ଯଥାର୍ଥ ମର୍ଯ୍ୟାଦା ଦିଆଯାଉଥିଲା ଏବଂ ବିଦେଶୀ ପ୍ରତିନିଧିଙ୍କ ପରି ସେମାନଙ୍କ ପ୍ରତି ବ୍ୟବହାର କରାଯାଉଥିଲା ।

ଅନଭିଜ୍ଞ ଯୁବକମାନଙ୍କ ଗଠିତ ଦଳ ଉପରେ କ୍ଷମତା ଏବଂ ସୁଖ ଆସି ପଡ଼ିବାରୁ ସେମାନଙ୍କର ମୁଣ୍ଡ ଗରମ ହୋଇଗଲା । ସେମାନେ ଏକ ଐତିହାସିକ କାର୍ଯ୍ୟ କରୁଛନ୍ତି ଏବଂ ଏକ ବୃହତ ଓ ମହାନ ପ୍ରତିଷ୍ଠାନ କାର୍ଯ୍ୟରେ ହାତ ଦେଇଛନ୍ତି ବୋଲି ମନେ କଲେ । ଏମାନଙ୍କ ଭିତରୁ ଅନେକ ଦୁଃସାହସିକ କାର୍ଯ୍ୟ କରିଛନ୍ତି, ଅଲଗା ପାଇଁ ମୃତ୍ୟୁମୁଖରୁ ରକ୍ଷା ପାଇଛନ୍ତି । ଯୁଦ୍ଧର ଶେଷ ସମୟ ବେଳକୁ ଏମାନଙ୍କର ଗୁରୁତ୍ୱ କମିଗଲା ଏବଂ ଏମାନଙ୍କୁ ଆଉ ସେପରି ଖାତିର କେହି ଦେଖାଇଲେ ନାହିଁ । ଆମେରିକାରୁ ଆସିଥିବା ହରଦୟାଲଙ୍କୁ ଅନେକ ଦିନ ପୂର୍ବରୁ ବାହାର କରି ଦିଆଯାଇଥିଲା । ତାଙ୍କ କମିଟି ସହିତ ଆଦୌ ମତ ମିଳିଲା ନାହିଁ । କମିଟି ଏବଂ ଜର୍ମାନ ଉଭୟେ ତାଙ୍କୁ ଅବିଶ୍ୱାସୀ ବୋଲି ବିଚାର କଲେ ଏବଂ ବାହାରକୁ ଠେଲିଦେଲେ । ୧୯୨୬ ଏବଂ ୨୭ ରେ ମୁଁ ଇଉରୋପରେ ଥିଲାବେଳେ ଅଧିକାଂଶ ଭାରତୀୟ ହରଦୟାଲଙ୍କ ନାମରେ ଭୀଷଣ ଘୃଣା ଓ ଅସନ୍ତୋଷ ପ୍ରକାଶ କରୁଥିଲେ, ତାହା ଦେଖି ମୁଁ ବିସ୍ମିତ ହେଲି । ସେତେବେଳେ ସେ ସୁଇଡେନରେ ଥିଲେ । ମୋର ତାଙ୍କ ସହିତ ଦେଖା ହୋଇ ନାହିଁ ।

ଯୁଦ୍ଧ ଶେଷ ହେଲା । ତାହା ସହିତ ବର୍ଲିନରେ ଥିବା ଭାରତୀୟ କମିଟି ଭାଙ୍ଗିଗଲା । ସେମାନଙ୍କର ସମସ୍ତ ଆଶା ବିଫଳ ହେବାରୁ ଜୀବନ ତାଙ୍କ ପକ୍ଷରେ ଦୁର୍ବହ ହୋଇ ପଡ଼ିଥିଲା । ସେମାନେ ଖୁବ୍ ବଡ଼ ବଡ଼ କଥା ଆଶା କରି ନିଷ୍ଫଳ ହେଲେ । ଯାହା ହେଉ, ଯୁଦ୍ଧ ସମୟରେ ଦୁଃସାହସ ଏବଂ ଯୁଦ୍ଧ ପରେ ଜୀବନ ଗୋଟାଏ ଧରାବନ୍ଧା ବ୍ୟାପାର ପରି ମନେ ହୋଇ ପାରେ । ଗୃହୀଲୋକ ମାନେ ଗୋଟାଏ ଧରାବନ୍ଧା ଜୀବନ

ହୋଇ ପାରିବ ନାହିଁ । ସେମାନେ ଭାରତକୁ ଫେରି ଆସି ପାରିଲେ ନାହିଁ ଏବଂ ଯୁଦ୍ଧ ପରେ ପରାଜିତ ଜର୍ମାନୀରେ ରହିବା ତାଙ୍କ ପକ୍ଷରେ ଭଲ ମନେ ହେଉ ନ ଥିଲା । କଠିନ ସଂଗ୍ରାମ ଭିତରେ ସେମାନେ ପଡ଼ିଥିଲେ । ପରେ ସେମାନଙ୍କ ଭିତରୁ କେତେକ ଭାରତକୁ ଫେରି ଆସିବା ନିମନ୍ତେ ଇଂରେଜ ସରକାର ଅନୁମତି ଦେଇଥିଲା, ମାତ୍ର ଅନେକଙ୍କୁ ଜର୍ମାନୀରେ ରହିବାକୁ ପଡ଼ିଥିଲା । ସେମାନଙ୍କର ଅବସ୍ଥା ଅତି ଶୋଚନୀୟ ହୋଇଥିଲା । ସେମାନେ କୌଣସି ଦେଶର ନାଗରିକ ହୋଇ ନ ଥିଲେ । ସେମାନଙ୍କର ଠିକ୍ ପାସପୋର୍ଟ ବା ଅନୁମତି ପତ୍ର ନ ଥିଲା । ଜର୍ମାନୀ ବାହାରେ ଭ୍ରମଣ କରିବା ପ୍ରାୟ ସମ୍ଭବ ହେଉ ନ ଥିଲା । ଜର୍ମାନୀବାସୀମାନଙ୍କୁ ମଧ୍ୟ ଅନେକ ଅସୁବିଧା ଭୋଗିବାକୁ ହେଉଥିଲା । ସ୍ଥାନୀୟ ପୁଲିସଙ୍କ ଅନୁଗ୍ରହ ଉପରେ ନିର୍ଭର କରିବାକୁ ପଡ଼ୁଥିଲା । କେବଳ ଜୀବନରେ ଦୁଃଖ କଷ୍ଟ, ଦୈନନ୍ଦିନ ଜଞ୍ଜାଳ ଏବଂ ଖାଇବା ଓ ରହିବା ଲାଗି ଦୁଶ୍ଚିନ୍ତା ହିଁ ତାଙ୍କର ଭାଗ୍ୟରେ ଘଟିଲା ।

୧୯୩୩ ଠାରୁ ନାଜୀ ରାଜତ୍ୱ ହେଲା ଦିନୁ ସେମାନଙ୍କ ଦୁର୍ଦ୍ଦଶା ବଢ଼ିଲା; ନାଜୀମାନଙ୍କୁ ସମ୍ପୂର୍ଣ୍ଣରୂପେ ନ ମାନିଲେ ବିଶେଷତଃ ଏସିଆର ଲୋକ ବିଦେଶୀମାନଙ୍କୁ ଜର୍ମାନୀରେ ଭର୍ତ୍ତି କରି ଦିଆଯାଉ ନ ଥିଲା । ଭଲ ଆଚରଣ କରିବା ନିମନ୍ତେ ସେମାନଙ୍କୁ ଦୁଃଖଭୋଗ କରିବାକୁ ପଡ଼ୁଥିଲା । ହିଟଲର ଭାରତରେ ବ୍ରିଟିଶ ସାମ୍ରାଜ୍ୟର ଶାସନ ସପକ୍ଷରେ ବାରମ୍ବାର ମତ ପ୍ରକାଶ କରିଛନ୍ତି, କାରଣ ସେ ବ୍ରିଟେନର ସଦିଚ୍ଛା ପାଇବାକୁ ଚାହେଁ । ବ୍ରିଟିଶ ସରକାରର ବିରୋଧ କରିଥିବା କୌଣସି ଭାରତୀୟଙ୍କୁ ସେ ଉତ୍ସାହିତ କରିବାକୁ ଚାହେଁନା ।

ଏହି ଯୁଦ୍ଧ ସମୟରେ ଗଠିତ ଦଳର ଏକ ଖ୍ୟାତନାମା ସଦସ୍ୟ ଚମ୍ପାକ୍ରମଣ ପିଲାଇଙ୍କ ସହ ଆମର ବର୍ଲିନରେ ଦେଖା ହେଲା । ସେ ଟିକିଏ ଆଡମ୍ବରପ୍ରିୟ ଥିଲେ ଏବଂ ଭାରତୀୟ ଛାତ୍ରମାନେ ତାଙ୍କୁ ଗୋଟାଏ ଅସମ୍ମାନଜନକ ଉପାଧି ଦେଇଥିଲେ । ସେ କୌଣସି ପ୍ରଶ୍ନ ସାମାଜିକ ବା ଅର୍ଥନୀତିକ ଦିଗରୁ ବିଚାର ନ କରି କେବଳ ଜାତୀୟତା

ଦୃଷ୍ଟିରୁ ଦେଖୁଥିଲେ । ଜର୍ମାନ ଜାତୀୟତାବାଦୀ ହିଟ୍‌ଲର ହେର୍‌ମନ୍‌ଙ୍କ ସହ ତାଙ୍କର ବେଶ୍ ଖାପ୍ ଖାଉଥିଲା । ନାଜୀମାନଙ୍କ ସହ ମତ ମିଳୁଥିବା ଅଳ୍ପ କେତେକ ଭାରତୀୟଙ୍କ ଭିତରୁ ସେ ଜଣେ । କେତେକ ମାସ ପରେ ମୁଁ ଜେଲରେ ଥିଲାବେଳେ ବର୍ଲିନରେ ତାଙ୍କର ମୃତ୍ୟୁସମ୍ବାଦ ପାଇଲି ।

ଭାରତର ଏକ ପ୍ରସିଦ୍ଧ ପରିବାରର ଲୋକ ବୀରେନ୍ଦ୍ରନାଥ ଚଟ୍ଟୋ-ପାଧ୍ୟାୟଙ୍କ ସହ ଦେଖା ହେଲା । ସେ ଗୋଟିଏ ସଂପୂର୍ଣ୍ଣ ଭିନ୍ନ ଧରଣର ଲୋକ । ତାଙ୍କୁ 'ଚଟ୍ଟୋ' ନାମରେ ଲୋକ ଜାଣିଥିଲେ ଏବଂ ସେ ଖୁବ୍ କାର୍ଯ୍ୟକ୍ଷମ ଏବଂ ଖୁସିବାସୀ ଲୋକ ଥିଲେ । ସେ ବଡ଼ କଷ୍ଟରେ ଥିଲେ, ତାଙ୍କର ପିନ୍ଧିବା ଲୁଗା ଚିରା କୋଡ଼ିଏ ହୋଇ ପିନ୍ଧିବାର ଅନୁପଯୋଗୀ ହୋଇଥିଲା ଏବଂ ଓଳିଏ ଖାଦ୍ୟ ପାଇବା ଲାଗି ତାଙ୍କ ପକ୍ଷରେ କଷ୍ଟକର ହେଉଥିଲା । ମାତ୍ର ସେ ଲଘୁ ମନୋଭାବସଂପନ୍ନ ଏବଂ ହାସ୍ୟରସିକ ଥିଲେ । ମୁଁ ଇଂଲଣ୍ଡରେ ପଢ଼ୁଥିବାବେଳେ ସେ ମୋଠାରୁ କେତେକ ଶ୍ରେଣୀ ଉପରେ ପଢ଼ୁଥିଲେ । ମୁଁ ହାରୋକୁ ଗଲାବେଳକୁ ସେ ଅକ୍ସଫୋର୍ଡରେ ଥିଲେ । ସେହିଦିନୁ ସେ ଭାରତକୁ ଫେରି ନାହାନ୍ତି । ଏକ ସମୟରେ ଘରକୁ ଫେରିବା ନିମନ୍ତେ ସେ ଅତ୍ୟନ୍ତ ବ୍ୟାକୁଳ ହୋଇ-ପଡ଼ିଥିଲେ । ଘର ସହିତ ତାଙ୍କର ସମସ୍ତ ସମ୍ପର୍କ ଅନେକ ଦିନୁ ତୁଟିଯାଇ-ଥିଲା ଏବଂ ସେ ଭାରତକୁ ଆସିଥିଲେ ମଧ୍ୟ ଅତ୍ୟନ୍ତ ଅସୁଖୀ ହୋଇଥାନ୍ତେ । ମାତ୍ର ଅନେକ ବର୍ଷ ଭ୍ରମଣରେ ଅତିବାହିତ କରିଥିଲେ ହେଁ ଘରର ଗୋଟାଏ ଆକର୍ଷଣ ରହିଥାଏ । କୌଣସି ନିର୍ବାସିତ ଲୋକ ତାର ନିଜ ଜାତିର ମୋହ ଛାଡ଼ି ପାରିବ ନାହିଁ, ଆମ୍ଭର ସମ୍ପର୍କ ବୋଲି ଏହାକୁ ମାଜିନି କହିଥିଲେ ।

ବିଦେଶରେ ମୋର ଯେଉଁ ସବୁ ନିର୍ବାସିତ ଭାରତୀୟମାନଙ୍କ ସହିତ ସାକ୍ଷାତ ହେଲା, ସେମାନଙ୍କ ସମ୍ବନ୍ଧରେ ମୋର ଭଲ ଧାରଣା ହେଲା ନାହିଁ । ଅବଶ୍ୟ ସେମାନଙ୍କର ତ୍ୟାଗ ଏବଂ ସେମାନଙ୍କର ବର୍ତ୍ତମାନ ଦୁଃଖ ଓ କଷ୍ଟ ସହିତ ମୋର ପୂର୍ଣ୍ଣ ସହାନୁଭୂତି ରହିଛି । ଅନେକଙ୍କ ସହିତ ମୋର ସାକ୍ଷାତ ହୋଇନାହିଁ; ପୃଥିବୀସାରା ଅନେକ ଲୋକ

ରହିଛନ୍ତି । କେତେକଙ୍କର ଖ୍ୟାତି ଥିବାରୁ ଆମେ ସେମାନଙ୍କୁ ଜାଣୁ ; ମାତ୍ର ଅନ୍ୟମାନେ ଭାରତ ଆଗରୁ ଲୁଚି ଯାଇଛନ୍ତି । ଯେଉଁ ଦେଶବାସୀଙ୍କ ସେବା କରିବାକୁ ଯାଇ ସେ ଏତେ କଷ୍ଟ ଭୋଗିଥିଲେ, ସେମାନେ ତାଙ୍କୁ ଭୁଲିଗଲେଣି । ଯେତେଜଣଙ୍କ ସହିତ ମୋର ଦେଖା ହୋଇଥିଲା, ସେମାନଙ୍କ ଭିତରୁ ବିଦ୍ୟାବୁଦ୍ଧିରେ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ ଏବଂ ଏମ. ଏନ୍. ରାୟଙ୍କ ପ୍ରତି ମୋର ଭଲ ଧାରଣା ହେଲା । ରାୟଙ୍କ ସହ ମସ୍କୋରେ ମୋର ଅଧଘଣ୍ଟା ପର୍ଯ୍ୟନ୍ତ ଦେଖା ହୋଇଥିଲା । ସେତେବେଳେ ସେ ଜଣେ ମୁଖ୍ୟ କମ୍ୟୁନିଷ୍ଟ ଥିଲେ, ଅବଶ୍ୟ ପରେ ରକ୍ଷଣଶୀଳ କମ୍ୟୁନିଷ୍ଟ ଶ୍ରେଣୀରୁ ସେ ଝଡ଼ିଗଲେ । ମୋର ବିଶ୍ୱାସ, ଗୃହ ବାଧ୍ୟମତ ଜଣେ କମ୍ୟୁନିଷ୍ଟ ନ ଥିଲେ ଏବଂ କମ୍ୟୁନିଷ୍ଟ ଭାବ ପ୍ରତି ତାଙ୍କର ଝୁଙ୍କି ଥିଲା । ରାୟ ଏବେ ଭାରତରେ ପ୍ରାୟ ଛଅ ବର୍ଷ ହେଲା ଜେଲରେ ଅଛନ୍ତି ।

ଇଉରୋପରେ ଆହୁରି ଅନେକ ଭାରତୀୟ ଏଣେ ତେଣେ ଘୂରି ବୁଲନ୍ତି । ବକ୍ତୃତା ଦିଅନ୍ତି, ସାମୟିକ ଓ ଅଦ୍ଭୁତ ମତ ଦିଅନ୍ତି ଏବଂ ଅଦ୍ଭୁତ ପ୍ରଶ୍ନ ସବୁ ପଚାରନ୍ତି । ତାଙ୍କ ପଛରେ ଇଂରେଜ ଗୁପ୍ତ ଚରମାନେ ଲାଗି ରହନ୍ତି ବୋଲି ସେମାନଙ୍କର ଧାରଣା ।

ଅବଶ୍ୟ ଆମର ଅନେକ ଇଉରୋପୀୟ ଓ ଆମେରିକାବାସୀଙ୍କ ସହ ସାକ୍ଷାତ ହୋଇଥିଲା । ଅନେକ ଥର ଆମେ ଜେନେଭାକୁ ଭ୍ରମଣ ଉଦ୍ଦେଶ୍ୟରେ ଯାଉଥିଲୁ । ପ୍ରଥମ ଥର ଗାନ୍ଧିଙ୍କ ଚିଠି ଏକ ପରିଚୟ ପତ୍ର ସଙ୍ଗରେ ନେଇ ମୁଁ ରୋମା ରୋଲାଁଙ୍କ ସହ ଦେଖା କରିବାକୁ ଭିଲେନ୍ୟୁଭେ ଯାଇଥିଲି । ଜର୍ମାନର ଯୁବକ କବି ଏବଂ ନାଟକ ଲେଖକ ଅର୍ଣ୍ଣେଷ୍ଟ ଟଲରଙ୍କ ସହ ଦେଖା ହୋଇଥିଲା ! ସେ ଏବେ ନାଜୀ ଶାସନ ଅଧୀନରେ ଅଛନ୍ତି ଓ ନାଗରିକ ଅଧିକାରରୁ ବଞ୍ଚିତ ହୋଇଛନ୍ତି । ନିଉୟର୍କର ନାଗରିକ ସ୍ୱାଧୀନତା ସଂଘର ସୋଜର ବଲ୍ଡ୍‌ଉଇନଙ୍କ ସହ ଦେଖା ହୋଇଥିଲା । ଲେଖକ ଧନଗୋପାଳ ମୁଖର୍ଜିଙ୍କ ସହ ଆମେ ବନ୍ଧୁତା କରିଥିଲୁ, ସେ ଆମେରିକାର ଅଧିବାସୀ ରୂପେ ରହିଛନ୍ତି ।

ମୁଁ ଇଉରୋପ ଯିବା ପୂର୍ବରୁ ଭାରତରେ ଅକ୍ସଫୋର୍ଡ ଦଳ ଆନ୍ଦୋଳନରେ ଫ୍ରାଙ୍କ ବୁଚମାନଙ୍କ ସହ ମୋର ଦେଖା ହୋଇଥିଲା । ସେ ତାଙ୍କର ଆନ୍ଦୋଳନ ସଂକ୍ରାନ୍ତ କେତେକ ଲେଖା ମୋତେ ଦେଇଥିଲେ ଏବଂ ତାହା ପଢ଼ି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ହଠାତ୍ ଦୀକ୍ଷା ଗ୍ରହଣ, ଭୁଲ କର୍ମର ସ୍ୱୀକାର ଏବଂ ଧର୍ମ ସମ୍ବନ୍ଧରେ ଏକ ସାଧାରଣ ବାୟୁମଣ୍ଡଳ ଆଧୁନିକ ବୁଦ୍ଧିବୃତ୍ତି ସମ୍ପନ୍ନ ଲୋକ ସହିତ କିପରି ଖାପ ଖାଏ ମୁଁ ବୁଝି ପାରିଲି ନାହିଁ । ବୁଦ୍ଧିବୃତ୍ତି-ସମ୍ପନ୍ନ ଲୋକେ କିପରି ଏହି ଅଦ୍ଭୁତ ଭାବନାରେ ଘୂରନ୍ତି ଏବଂ ସେଥିରେ ପୁଣି ଅନୁପ୍ରାଣିତ ହୁଅନ୍ତି ଏହା କୌଣସି ପ୍ରକାରେ ମୁଁ ସ୍ଥିର କରି ପାରିଲି ନାହିଁ । ମୋର ଉତ୍କଣ୍ଠା ଜାତ ହେଲା । ମୋର ଫ୍ରାଙ୍କ ବୁଚମାନଙ୍କ ସହ ତିନିବାର କେତେ ସ୍ଥଳରେ ଦେଖା ହୋଇଥିଲା । ସେ ମୋତେ ରୁମାନିଆରେ ଥିବା ତାଙ୍କର ଆନ୍ତର୍ଜାତୀୟ ଗୃହକୁ ନିମନ୍ତ୍ରଣ କରିଥିଲେ । ମୋର ମନେ ହୁଏ ସାରା ଦୁନିଆ ଭିତରେ ଏହି ଗୋଟିକ ହିଁ ଥିଲା । ଦୁଃଖର କଥା, ମୁଁ ସେଠିକି ଯାଇ ଏହି ନୂଆ ପ୍ରବଣତା ଭଲ ରୂପେ ଲକ୍ଷ୍ୟ କରି ପାରି ନ ଥିଲି । ମୋର ଉତ୍କଣ୍ଠା ସେଥିପାଇଁ ଅପୂର୍ଣ୍ଣ ରହିଛି । ଅକ୍ସଫୋର୍ଡ ଦଳ ଆନ୍ଦୋଳନ ବିଷୟ ମୁଁ ଯେତେ ଅଧିକ ପଢ଼ୁଛି ତେତେ ଆଶ୍ଚର୍ଯ୍ୟ ହେଉଛି ।

---

## ଭାରତରେ ରାଜନୈତିକ ବିବାଦ

ଆମେ ସ୍ୱିଜରଲାଣ୍ଡରେ ପହଞ୍ଚିବାର ଅଳ୍ପ ଦିନ ପରେ ଇଂଲଣ୍ଡରେ ଏକ ସାଧାରଣ ଧର୍ମଘଟ ହୋଇଥିଲା । ମୁଁ ଏଥିରେ ଖୁବ ଚଞ୍ଚଳ ହୋଇ ପଡ଼ିଥିଲି ଏବଂ ଧର୍ମଘଟକାରୀମାନଙ୍କ ପ୍ରତି ମୋର ସହାନୁଭୂତି ଥିଲା । କେତେ ଦିନ ପରେ ଧର୍ମଘଟର ପତନ ଖବର ମୋ ପାଖରେ ଏକ ବ୍ୟକ୍ତି-ଗତ ରୂପେ ଆଘାତ ସ୍ୱରୂପ ଆସି ପହଞ୍ଚିଲା । କେତେକ ମାସ ପରେ କେତେକ ଦିନ ସକାଶେ ମୁଁ ଇଂଲଣ୍ଡ ଯାଇଥିଲି । ଖଣି ଶ୍ରମିକମାନଙ୍କର ଧର୍ମଘଟ ଚାଲିଥାଏ ଏବଂ ରାତିରେ ଲଣ୍ଡନ ଅଧା ଅନ୍ଧାର ହୋଇ ରହୁଥିଲା ।

ଦେଖାଯାଏ । ବ୍ରିଟିଶ ଶିଳ୍ପ ଶ୍ରମିକମାନଙ୍କର ଏକ ଶକ୍ତିଶାଳୀ ସଂଗଠନ ଥିଲ, ଦେଶବ୍ୟାପୀ ସହାନୁଭୂତ ସେମାନେ ଚାହୁଁଥିଲେ । ବାସ୍ତବରେ ପୃଥିବୀ-ବ୍ୟାପୀ ଶ୍ରମିକସଙ୍ଘ ତାଙ୍କ ସପକ୍ଷରେ ଥିଲା । ତାଙ୍କ ସମ୍ବନ୍ଧରେ ବହୁତ ସମ୍ବାଦ ପ୍ରକାଶ ପାଉଥିଲା ଏବଂ ଆହୁରି ଅନେକ ପ୍ରକାର ସୂଚନା ଥିଲା । ଜର୍ମାନୀ ଶ୍ରମିକଙ୍କ ଭିତରେ ସେ ଅଭାବ ଦେଖାଯାଉଥିଲା । ତଥାପି ଭଲ ଦୃଷ୍ଟିରୁ ସେମାନଙ୍କଠାରେ ଏକ ଅପୂର୍ବ ସାମଞ୍ଜସ୍ୟ ଦେଖାଯାଉଥିଲା ।

ସେହିବର୍ଷ ଭାରତରେ କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥା ସଭାର ବାର୍ଷିକ ନିର୍ବାଚନ ହେଉଥିଲା । ଏଥିପ୍ରତି ମୋର ଆଗ୍ରହ ନ ଥିଲା । ମାତ୍ର ଏହି ପ୍ରସଙ୍ଗ ଉଦ୍ଧୃତର ପ୍ରତିଧ୍ୱନି ୟୁରୋପରେ ମୋ ପାଖରେ ପହଞ୍ଚି ଥିଲା । ମୁଁ ଶୁଣିଲି ଯେ, ବ୍ୟବସ୍ଥା ସଭାରେ ସ୍ୱରାଜ୍ୟ ଦଳ ବା କଂଗ୍ରେସ ଦଳର ବିରୋଧ କରିବା ନିମନ୍ତେ ପଣ୍ଡିତ ମଦନମୋହନ ମାଳବ୍ୟ ଏବଂ ଲାଲା ଲାଜପତ୍ ରାୟ୍ ଏକ ନୂଆ ଦଳ ଗଢ଼ିଥିଲେ । ଏହାକୁ ଜାତୀୟ ଦଳ କହୁଥିଲେ । ପୁରାତନ ଦଳଠାରୁ କେଉଁ ନୀତିଗତ ମତଭେଦ ହେବାରୁ ସେ ନୂତନ ଦଳ ଗଢ଼ାଯାଇଥିଲା, ତାହା ମୁଁ ଜାଣି ପାରିଲି ନାହିଁ । ଏବେ ସୁଦ୍ଧା ଜାଣି ନାହିଁ । ବାସ୍ତବିକ ଆଜିକାଲି ଭାରତୀୟ ବ୍ୟବସ୍ଥା ସଭାରେ ଥିବା ଦଳମାନଙ୍କରେ କୌଣସି ପ୍ରକୃତ ନୀତିଭେଦ ନାହିଁ । ପ୍ରଥମ ଥର ପାଇଁ ସ୍ୱରାଜଦଳ କାଉନସିଲ ଭିତରେ ଏକ କଡ଼ାବାଣୀ ରୂପେ ବାହାରିଲେ ଏବଂ ଅନ୍ୟମାନଙ୍କ ଅପେକ୍ଷା ଏହା ଉଗ୍ର ଜାତୀୟତାର ଉଦ୍ଦେଶ୍ୟ ଲାଗି ଲଢ଼ୁଥିଲା । କିନ୍ତୁ ଏହି ପାର୍ଥକ୍ୟ ନୀତିଗତ ନୁହେଁ, କିଏ ଟିକିଏ ବେଶି ଗରମ, କିଏ ତାହାଠୁ ଟିକିଏ କମ୍ ।

ନୂତନ ଜାତୀୟ ଦଳ ଟିକିଏ ନରମପନ୍ଥୀ ଏବଂ ସ୍ୱରାଜ୍ୟ ଦଳ ଅପେକ୍ଷା ଅଧିକ ଦକ୍ଷିଣପନ୍ଥୀ ଥିଲେ । ଏହା ମଧ୍ୟ ପ୍ରକାଶିତ ଏକ ହିନ୍ଦୁ ଦଳ ଥିଲା ଏବଂ ହିନ୍ଦୁ ମହାସଭା ସହିତ ସହଯୋଗ କରି କାର୍ଯ୍ୟ କରୁଥିଲା । ପଣ୍ଡିତ ମାଳବ୍ୟ ଏଥିର ନେତା ହେବା ଉପଯୁକ୍ତ; କାରଣ ସାଧାରଣ ସମସ୍ୟା ପ୍ରତି ତାଙ୍କର ଯେପରି ମନୋଭାବ, ତାହା ଏଥିରେ ପ୍ରକଟିତ ହେଉଥିଲା । ଅଧିକ ନରମ ହେଉ ସେ କଂଗ୍ରେସରେ

ରହୁଥିଲେ, ମାତ୍ର ତାଙ୍କର ମାନସିକ ଦୃଷ୍ଟିକୋଣ ଲିବରାଲ ବା ମଡ଼େରେଟ୍‌ଙ୍କଠାରୁ କିଛି ଅଲଗା ନ ଥିଲା । କଂଗ୍ରେସର ଅସହଯୋଗ ଏବଂ ନୂତନ ପ୍ରତ୍ୟକ୍ଷ ଆନ୍ଦୋଳନ କାର୍ଯ୍ୟପନ୍ଥା ସେ ଆଗ୍ରହର ସହିତ ଗ୍ରହଣ କରି ନ ଥିଲେ, ମାତ୍ର କଂଗ୍ରେସ ମତ ଗଢ଼ିବାରେ ତାଙ୍କର କିଛି ହାତ ନ ଥିଲା । କଂଗ୍ରେସରେ ସେ ସର୍ବଦା ସମ୍ମାନ ପାଉଥିଲେ ଏବଂ ଆଦୃତ ହେଉଥିଲେ; ମାତ୍ର ଏହା ସତ୍ତ୍ୱେ ନୂତନ କଂଗ୍ରେସ ସହିତ ସେ ଖାପ ଖାଉ ନ ଥିଲେ । କଂଗ୍ରେସର କାର୍ଯ୍ୟକାରୀ ସମିତି ପରି ଶ୍ରେଷ୍ଠ କମିଟିର ମଧ୍ୟ ସେ ସଭ୍ୟ ନଥିଲେ । ସେ କଂଗ୍ରେସ ନିର୍ଦ୍ଦେଶ, ବିଶେଷତଃ ବ୍ୟବସ୍ଥାସଭା ପ୍ରତି ଯାହା ଥିଲା, ତାହା ପାଳି ନ ଥିଲେ । ହିନ୍ଦୁ ମହାସଭାର ସର୍ବାପେକ୍ଷା ଶକ୍ତିଶାଳୀ ନେତା ଥିଲେ ଏବଂ ସାମ୍ପ୍ରଦାୟିକ ସମସ୍ୟାରେ କଂଗ୍ରେସ ସହିତ ତାଙ୍କର ମତ ପ୍ରଭେଦ ଘଟୁଥିଲା । କଂଗ୍ରେସ ସହିତ ତାଙ୍କର ଏକ କେବଳ ସାମଞ୍ଜସ୍ୟ ଥିଲା, କାରଣ ମୂଳରୁହିଁ ଏଥିସହିତ ସେ ସଂପୃକ୍ତ ଥିଲେ । ଏଥିରେ ରହିବାର ଆଉ ଏକ କାରଣ ହେଉଛି ସ୍ୱାଧୀନତା ସଂଗ୍ରାମ ନିମନ୍ତେ ତାଙ୍କର ଏକ ଆବେଗ ଥିଲା ଏବଂ କଂଗ୍ରେସ ଏକ ଅନୁଷ୍ଠାନ ଭାବରେ ପ୍ରକୃତ କାର୍ଯ୍ୟକ୍ଷେତ୍ରରେ କିଛି କରୁଛି ବୋଲି ସେ ବୁଝୁଥିଲେ । ସୁତରାଂ କଂଗ୍ରେସରେ ବିଶେଷତଃ ସଂଗ୍ରାମ ସମୟରେ ତାଙ୍କର ମନ ଥିଲା, ମାତ୍ର ମସ୍ତିଷ୍କ ଅନ୍ୟ ଦଳରେ ଥିଲା । ଏହି ହେତୁ ତାଙ୍କ ଭିତରେ ବାରମ୍ବାର ଗୋଟାଏ ଦ୍ୱନ୍ଦ୍ୱ ଚାଲିଥିଲା ଏବଂ ସମସ୍ତ ସମୟରେ ବହୁତ ଧାରରେ ଯିବାର ଉଦ୍ୟମ ବି ହୋଇ ଯାଉଥିଲା । ଏହି ଫଳରେ ସାଧାରଣ ବୁଦ୍ଧିଭେଦ ଜନ୍ମେ । ଜାତୀୟତା ଏକ ଗୋଳମାଳିଆ ଜିନିଷ; ମାଳବ୍ୟଜୀ ଏକ ନିର୍ମଳ ଜାତୀୟତାବାଦୀ । ସାମାଜିକ ବା ଆର୍ଥିକ ପରିବର୍ତ୍ତନ ସହିତ ତାଙ୍କର ସମ୍ପର୍କ ନାହିଁ । ଧାର୍ମିକ, ସାମାଜିକ ଏବଂ ଅର୍ଥନୈତିକ ଭାବରେ ସେ ପୁରାତନ ରକ୍ଷଣଶୀଳ ସମାଜର ସମର୍ଥକ ଥିଲେ ଏବଂ ଏବେ ବି ଅଛନ୍ତି । ଅନେକ ରାଜା, ତାଲୁକଦାର ଏବଂ ବଡ଼ ବଡ଼ ଜମିଦାରମାନେ ପ୍ରକୃତରେ ତାଙ୍କୁ ଏକ ଉପକାରୀ ବନ୍ଧୁ ଭାବରେ ବିଚାର କରନ୍ତି । ଭାରତରୁ ସମ୍ପୂର୍ଣ୍ଣରୂପେ ବିଦେଶୀ କର୍ତ୍ତୃତ୍ୱ ଲୋପ ସାଧନହିଁ ତାଙ୍କର ଜ୍ୱଳନ୍ତ ଆକାଂକ୍ଷା ଥିଲା ଏବଂ ସେହି ପରିବର୍ତ୍ତନ ସେ ଦାବୀ କରନ୍ତି,

ଥିଲେ । ମୁବକ ସମୟରେ ପାଇଥିବା ଗଜନୀତିକ ଶିକ୍ଷାହିଁ ତାଙ୍କ ମନରେ ବହୁ ପରିମାଣରେ ପ୍ରଭାବ ପକାଇଥିଲା । ଟି. ଏଚ. ଗ୍ରୀନ, ଜନ୍ ଷ୍ଟୁଅର୍ଟ ମିଲ୍, ଗ୍ଲାଡ୍‌ଷ୍ଟୋନ୍ ଏବଂ ମର୍ଲିଙ୍କ ଲେଖା ସେ ପଢ଼ିଥିଲେ । ସର୍ବୋପରି ଉନ୍ନବୀ ଏବଂ ମଧ୍ୟର ପରବର୍ତ୍ତୀ ବିଂଶ ଶତାବ୍ଦୀକୁ ସେ ଉନବିଂଶ ଶତାବ୍ଦୀର ଅପରିବର୍ତ୍ତନଶୀଳ ଚଷମାରେ ଦେଖୁଥିଲେ ଏବଂ ୩୧୪ ହଜାର ବର୍ଷ ତଳର ହିନ୍ଦୁ ସଂସ୍କୃତି ଓ ସମାଜ ଗଠନରେ ତାଙ୍କ ଦୃଷ୍ଟିକୋଣ ରହିଥିଲା । ଏହା ଏକ ଅଦ୍ଭୁତ ସମ୍ମିଶ୍ରଣ, ବିରୋଧୀ ବିବର୍ତ୍ତି ଥିଲା ଏବଂ ପରସ୍ପର ବିରୋଧ ଭାବକୁ ମିଳାଇବାର ଶକ୍ତି ତାଙ୍କ ନିକଟରେ ଅଛି ବୋଲି ଏକ ଅଦ୍ଭୁତ ବିଶ୍ୱାସ ତାଙ୍କ ମନରେ ଥିଲା । ତାଙ୍କର ଯୁବାବସ୍ଥାରୁ ନାନା କ୍ଷେତ୍ରରେ ସାଧାରଣ କାର୍ଯ୍ୟ, ବେନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ପରି ଏକ ମହତ୍ତ୍ୱ ଅନୁଷ୍ଠାନ ସ୍ଥାପନ କରିବାରେ ସଫଳତା, ତାଙ୍କର ସତ୍ୟନିଷ୍ଠା ଓ କଷ୍ଟସହିଷ୍ଣୁତା, ଅପୂର୍ବ ବାଗ୍ମିତା, ଶାନ୍ତପ୍ରକୃତି ଏବଂ ଶୃଙ୍ଖଳାବଦ୍ଧତା ବ୍ୟକ୍ତିତ୍ୱ ଫଳରେ ସେ ଭାରତର ଜନସାଧାରଣ କ୍ଷେତ୍ରରେ ବିଶେଷତଃ ହିନ୍ଦୁ ସାଧାରଣଙ୍କ ହୃଦୟରେ ଲୋକପ୍ରିୟ ହୋଇ ଅଛନ୍ତି । ଅନେକଙ୍କର ତାଙ୍କ ସହିତ ମତ ନ ମିଳୁଥିଲେ କିମ୍ବା ତାଙ୍କ ରାଜନୀତି ସେମାନେ ପସନ୍ଦ କରୁ ନ ଥିଲେ ସୁଦ୍ଧା ତାଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ଦେଖାଉଥିଲେ । ତାଙ୍କ ପ୍ରାପ୍ତବୟସ ଏବଂ ଦୀର୍ଘକାଳ ସାଧାରଣ କାର୍ଯ୍ୟ ଯୋଗୁଁ ସେ ଭାରତୀୟ ରାଜନୀତିରେ ସର୍ବାପେକ୍ଷା ଅଭିଜ୍ଞତମ ବ୍ୟକ୍ତି । ତଥାପି ମନେ ହୁଏ ସତେ କି ସେ ଆଜିକାଲିକା ଯୁଗର ଲୋକ ନୁହନ୍ତି । ବର୍ତ୍ତମାନ ଜଗତ ସହିତ ତାଙ୍କର କିଛି ସଂପର୍କ ନାହିଁ । ତାହାଙ୍କ ବାଣୀ ସମସ୍ତେ ଆଗ୍ରହର ସହିତ ଶୁଣନ୍ତି ଏବଂ ତାଙ୍କର ଭାଷା ଅନେକଙ୍କ ପକ୍ଷରେ ଦୁର୍ବୋଧ ।

ଏପରି ଅବସ୍ଥାରେ ସ୍ୱରାଜ୍ୟ ଦଳରେ ଯୋଗ ନ ଦେବା ମାଳବ୍ୟଙ୍କ ପକ୍ଷେ ସ୍ୱାଭାବିକ । ସ୍ୱରାଜ୍ୟଦଳ ରାଜନୀତିଦୃଷ୍ଟିରେ ବହୁତ ଉନ୍ନତ ଏବଂ ଏଥିରେ ରହିବା ଅର୍ଥ କଂଗ୍ରେସ ନୀତିକୁ ନିର୍ଦ୍ଦିଷ୍ଟ ଭାବରେ ମାନି ଚାଲିବା । ସେ ରାଜନୀତିକ ଓ ସାଂପ୍ରଦାୟିକ କାର୍ଯ୍ୟ ନିମନ୍ତେ ଅଧିକ ସ୍ୱାଧୀନତା ଚାହୁଁଥିଲେ ଏବଂ ସେ ନେସନାଲିଷ୍ଟ ଦଳ ସ୍ଥାପନ କରି ତାର ନେତୃତ୍ୱ ଗ୍ରହଣ କଲେ, ସେଥିରେ ସେ ସୁବିଧା ପାଇଲେ ।

ଲାଲା ଲଜପତ ରାୟ୍ଙ୍କ ଟିକିଏ ଦକ୍ଷିଣପନ୍ଥୀ ଏବଂ ସାମ୍ପ୍ରଦାୟିକ ମନୋଭାବ ତାଙ୍କର ଥିଲେ ସୁଦ୍ଧା ସେ କିପରି ଏହି ନୂତନ ଦଳରେ ଯୋଗ ଦେଲେ, ତାହା ବୁଝି ହୁଏ ନାହିଁ । ସେହି ବର୍ଷ ଗ୍ରୀଷ୍ମଋତୁରେ କେତେବେଳେ ମୋର ଲାଲାଜୀଙ୍କ ସହିତ ଦେଖା ହୋଇଥିଲା ଏବଂ ସେ କଂଗ୍ରେସ ଦଳ ବିରୁଦ୍ଧରେ ଏପରି ଏକ ଆକ୍ରମଣମୂଳକ ମନୋଭାବ ଗ୍ରହଣ କରିବେ ବୋଲି ମୁଁ ତାଙ୍କ ସହିତ କଥାବାର୍ତ୍ତାରେ କଳ୍ପନା କରି ନ ଥିଲି । ଏହା କିପରି ହେଲା ବର୍ତ୍ତମାନ ସୁଦ୍ଧା ମୋର ଧାରଣା ନାହିଁ । ସାଧାରଣ ନିର୍ବାଚନ ଆନ୍ଦୋଳନ ବେଳେ ସେ କେତେକ ବୃଥା ଅଭିଯୋଗ କରିଥିଲେ; ଯେଉଁଥିରୁ ତାଙ୍କ ମନ କେଉଁଆଡ଼କୁ ଯାଉଥିଲା ଜଣା-ପଡ଼ୁଥିଲା । କଂଗ୍ରେସ ନେତାମାନେ ଭାରତ ବାହାରେ ଲୋକଙ୍କ ସହିତ ମିଳି ଷଡ଼ଯନ୍ତ୍ର କରୁଛନ୍ତି ବୋଲି ସେ ଅଭିଯୋଗ କରିଥିଲେ । କାବୁଲରେ କଂଗ୍ରେସର ଏକ ଶାଖା ସ୍ଥାପନ କରିବା ନିମନ୍ତେ ଏହିପରି ଏକ ଷଡ଼ଯନ୍ତ୍ର ସେ କରିଥିବାର ଅଭିଯୋଗ ମଧ୍ୟ ହେଉଥିଲା । ମୋର ମନେହୁଏ, ବାରମ୍ବାର ଅନୁରୋଧ ସତ୍ତ୍ୱେ ତାଙ୍କର ଅଭିଯୋଗ ସେ ନିର୍ଦ୍ଦିଷ୍ଟ ବା ବିସ୍ତୃତ ଆକାରରେ କେବେ ପ୍ରକାଶ କରି ନ ଥିଲେ ।

ମୋର ମନେ ଅଛି, ମୁଁ ସୁଇଜରଲାଣ୍ଡରେ ଥିବାବେଳେ ଭାରତରୁ ମୋ ପାଖକୁ ଯାଉଥିବା ସମ୍ବାଦପତ୍ରରେ ଲାଲାଜୀଙ୍କ ଅଭିଯୋଗ ପଢ଼ି ଅବାକ୍ ହୋଇଯାଇଥିଲି । କଂଗ୍ରେସ କମିଟିରେ ସମ୍ପାଦକ ଭାବରେ ଆମ ଅନୁଷ୍ଠାନ ସମ୍ବନ୍ଧରେ ମୋତେ ସବୁ କଥା ଜଣା ଥିଲା । କାବୁଲ କମିଟିକୁ କଂଗ୍ରେସ ସହିତ ସମ୍ବନ୍ଧ କରାଇବାରେ ମୋର ହାତ ଥିଲା ( ଦେଶବନ୍ଧୁ ଦାସ ଏ ସମ୍ବନ୍ଧରେ ଅଗ୍ରଣୀ ଥିଲେ ) । ମୋତେ ତାଙ୍କ ଅଭିଯୋଗର ବିସ୍ତୃତ ବିବରଣୀ ସେତେବେଳେ ଜଣା ନ ଥିଲେ ସୁଦ୍ଧା ( ବର୍ତ୍ତମାନ ବି ମୁଁ ଜାଣେ ନା । ) ମୁଁ ତାକୁ ସାଧାରଣ ଭାବରେ ଦେଖି କହି ପାରେ ଯେ କଂଗ୍ରେସ ସମ୍ପର୍କରେ ଏକଥାର ଆଦୌ ମୂଳଭିତ୍ତି ନ ଥିଲା । ଲାଲାଜୀ ଏ ସମ୍ବନ୍ଧରେ କିପରି ଭୁଲବାଟରେ ଗଲେ ମୋତେ ଜଣା ନାହିଁ । ସେ ହୁଏତ ଅନେକ ଜନରବରେ ଭାସି ଯାଇ ପାରିଥାନ୍ତି ଏବଂ ମୋର

ମନେ ହୁଏ କଲେଜରେ ମୌଲବୀ ଓବେଦୁଲ୍ଲାଙ୍କ ସହିତ ତାଙ୍କର ହୋଇଥିବା କଥାବାର୍ତ୍ତାରେ ସେ ପ୍ରଭାବିତ ହୋଇ ଯାଇଥାନ୍ତି । ଅବଶ୍ୟ ସେଥିରେ ଏପରି କିଛି ନୂତନ କଥା ନ ଥିଲା, ଯାହା ତାଙ୍କୁ ଅସାଧାରଣ ପରି ମନେ ହୋଇଥିବ । ନିର୍ବାଚନବେଳେ ଏକ ଅଦ୍ଭୁତ ଦୃଶ୍ୟ । ଏଥିରେ ସାଧାରଣ ଭଦ୍ରତା ଲୋପ ପାଏ ଏବଂ ସାଧାରଣ ରୁଚି ନଷ୍ଟ ହୁଏ । ଏହା ଯେତେ ବେଶି ମୁଁ ଦେଖୁଛି ତେତେବେ ଆଶ୍ଚର୍ଯ୍ୟ ହୋଇଛି ଏବଂ ମୋ ମନରେ ସମ୍ପୂର୍ଣ୍ଣ ରୂପେ ଏକ ଗଣତନ୍ତ୍ର ବିରୋଧୀ ଅନାସ୍ଥା ଜାତ ହୋଇଛି ।

ବ୍ୟକ୍ତିବିଶେଷଙ୍କୁ ଛାଡ଼ିଦେଲେ ମଧ୍ୟ ଦେଶରେ ଯେପରି ସାମ୍ପ୍ରଦାୟିକ ମନୋଭାବ ବୃଦ୍ଧି ପାଉଥିଲା, ସେଥିରେ କଂଗ୍ରେସୀ ଦଳ ବା ସେହିପରି ଆଉ ଏକ ଦଳର ଆବିର୍ଭାବ ହେବା ସ୍ୱାଭାବିକ । ଏକ ପକ୍ଷରେ ହିନ୍ଦୁ ସଂଖ୍ୟାଧିକ ଭୟ ମୁସଲମାନମାନଙ୍କର ଥାଏ, ଅନ୍ୟ ପକ୍ଷରେ ମୁସଲମାନ-ମାନେ ଯେପରି ଭୟ ଦେଖାଉଛନ୍ତି ବୋଲି ହିନ୍ଦୁମାନେ ଭାବୁଥିଲେ ସେଥିରେ ହିନ୍ଦୁମାନେ ଅସନ୍ତୋଷ ପ୍ରକାଶ କରୁଥିଲେ । ଅନେକ ହିନ୍ଦୁ ମନେ କଲେ ଯେ, ମୁସଲମାନମାନେ ଜୋର କରି ଆଦାୟ କରିବାର ମନୋବୃତ୍ତି ଦେଖାଉଛନ୍ତି ଏବଂ ଅନ୍ୟ ପକ୍ଷକୁ ବ୍ଲାକମେଲିବାର ଡର ଦେଖାଇ ବିଶେଷ ସୁବିଧା ସବୁ ହାତେଇବାକୁ ଚାହାନ୍ତି । ହିନ୍ଦୁ ମହାସଭା ହିନ୍ଦୁ ଜାତୀୟତା ଏବଂ ମୁସଲମାନ ସାମ୍ପ୍ରଦାୟିକତା ବିରୁଦ୍ଧରେ ହିନ୍ଦୁ ସାମ୍ପ୍ରଦାୟିକତାର ପ୍ରତିନିଧିତ୍ୱ କରୁଥିଲା । ତେଣୁ ହିନ୍ଦୁ ମହାସଭା ଟିକିଏ ପ୍ରାଧାନ୍ୟ ଲାଭ କଲା । ହିନ୍ଦୁ ମହାସଭାର ଆକ୍ରମଣମୂଳକ କାର୍ଯ୍ୟପନ୍ଥା ଯୋଗୁଁ ମୁସଲମାନ ସାମ୍ପ୍ରଦାୟିକତା ଅଧିକ ବଢ଼ିଲା । ଏହି କାର୍ଯ୍ୟ ଓ ପ୍ରତିକ୍ରିୟା ଚାଲିଲା ଏବଂ ତା ଫଳରେ ଦେଶରେ ସାମ୍ପ୍ରଦାୟିକ ବାୟୁ-ମଣ୍ଡଳ ବୃଦ୍ଧି ପାଇବାରେ ଲାଗିଲା । ବାସ୍ତବିକ୍ ଦେଶର ବିରାଟ ସଂଖ୍ୟାଗରିଷ୍ଠ ଓ ସଂଖ୍ୟାଲଘୁ ଲୋକଙ୍କ ଭିତରେ ଏହି ବିବାଦ ଥିଲା; ମାତ୍ର ଅଦ୍ଭୁତ କଥା ଯେ ଦେଶରେ ଅନେକ ଅଂଶରେ ଅବସ୍ଥା ଠିକ୍ ବିପରୀତ ଥିଲା । ପଞ୍ଜାବ ଓ ସିନ୍ଧୁ ପ୍ରଦେଶରେ ହିନ୍ଦୁ ଓ ଶିଖମାନେ ସଂଖ୍ୟାଲଘିଷ୍ଠ ଥିଲେ ଏବଂ ମୁସଲମାନମାନେ ସଂଖ୍ୟା ଗରିଷ୍ଠ ଥିଲେ । ମୁସଲମାନମାନଙ୍କର ସମସ୍ତ

ଭାରତରେ ସଂଖ୍ୟାଗରିଷ୍ଠ ସମ୍ପ୍ରଦାୟ ପ୍ରତି ପୋଷଣ ଭାବ ଥିଲା, ଏକ ଉଦ୍ବେଗ ସଂଖ୍ୟାଗରିଷ୍ଠ ଲୋକଙ୍କ ଦ୍ୱାରା ଅତ୍ୟାଚାରିତ ହେବାର ଭୟ ଏହି ପ୍ରଦେଶ-ମାନଙ୍କରେ ଏମାନଙ୍କର ଥିଲା କିମ୍ବା ଠିକ୍ ରୂପେ କହିଲେ ପ୍ରତ୍ୟେକ ଦଳର ମଧ୍ୟବିତ୍ତ ଶ୍ରେଣୀର ଚାକିରି ପ୍ରାର୍ଥୀ ଲୋକମାନେ ଅନ୍ୟ ଦଳ ତାଙ୍କ ଗ୍ରାସ ଛଡ଼ାଇନେବେ ବୋଲି ଆଶଙ୍କା କରୁଥିଲେ ଏବଂ ନ୍ୟସ୍ତସ୍ୱାର୍ଥସମ୍ପନ୍ନ ଲୋକେ ତାଙ୍କ ସ୍ୱାର୍ଥରେ ବାଧା ପଡ଼ିବାଭଳି ପରିବର୍ତ୍ତନକୁ ଅନେକ ପରିମାଣରେ ଭୟ କରୁଥିଲେ ।

ସାମ୍ପ୍ରଦାୟିକତାର ଏହି ଭୟଙ୍କ ରୋଗରେ ସ୍ୱରାଜ୍ୟ ଦଳ କ୍ଷତଗ୍ରସ୍ତ ହେଲା । ଏହାର କେତେକ ମୁସଲମାନ ସଦସ୍ୟ ଖସି ଯାଇ ସାମ୍ପ୍ରଦାୟିକ ଅନୁଷ୍ଠାନରେ ଯୋଗ ଦେଲେ ଏବଂ କେତେକ ହିନ୍ଦୁ ସଭ୍ୟ ଜାତୀୟବାଦୀ ଦଳକୁ ଚାଲିଗଲେ । ମାଲବ୍ୟଜୀ ଏବଂ ଲାଲା ଲଜପତ୍ ରାୟଙ୍କ ମିଳିତ ଶକ୍ତି ହିନ୍ଦୁ ନିର୍ବାଚନମଣ୍ଡଳୀରେ ପ୍ରଭାବ ପକାଇଲା ଏବଂ ସାମ୍ପ୍ରଦାୟିକତାର ପ୍ରଧାନ କେନ୍ଦ୍ରସ୍ଥଳୀ ପଞ୍ଜାବରେ ଲାଲାଜୀଙ୍କର ବହୁତ ପ୍ରଭାବ ଥିଲା । ସ୍ୱରାଜ୍ୟ ଦଳ ବା କଂଗ୍ରେସ ତରଫରୁ ନିର୍ବାଚନ ଯୁଦ୍ଧର ସମସ୍ତ ଭାର ମୋ ପିତାଙ୍କ ଉପରେ ପଡ଼ିଥିଲା । ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ସି· ଆର· ଦାସ ନ ଥିଲେ । ସେ ସଂଗ୍ରାମରେ ଆନନ୍ଦ ଅନୁଭବ କଲେ କିମ୍ବା ଅନ୍ତତଃ ସେଥିରୁ ପଛାଇ ନ ଥିଲେ ଏବଂ ବିରୋଧ ବଢ଼ିବାରୁ ସେ ନିର୍ବାଚନ ସଂଗ୍ରାମରେ ତାଙ୍କର ସମସ୍ତ ଶକ୍ତି ଅର୍ପଣ କଲେ । ସେ ଅନ୍ୟକୁ ଖୁବ୍ ଆଘାତ କଲେ ଏବଂ ନିଜେ ମଧ୍ୟ ପାଇଲେ । କୌଣସି ଦଳ ପକ୍ଷରୁ ଦୟା ବା ଅନୁକମ୍ପା ନ ଥିଲା । ଏହି ନିର୍ବାଚନ ଏକ ତିକ୍ତ ସ୍ମୃତି ରଖିଯାଇଛି ।

ଜାତୀୟବାଦୀ ଦଳ ଅନେକ ସ୍ଥାନମାନଙ୍କରେ ସଫଳତା ଲାଭ କଲେ; ମାତ୍ର ବ୍ୟବସ୍ଥା ସଭାରେ ରାଜନୈତିକ ଭିନ୍ନ ମତ କମିଗଲା । ଦକ୍ଷିଣ ଆଡ଼କୁ ବେଶୀ ଗତି ହେଲା । ସ୍ୱରାଜ୍ୟ ଦଳ ଓ କଂଗ୍ରେସ ଭିତରେ ଦକ୍ଷିଣପନ୍ଥୀ । ସଂଖ୍ୟା ବୃଦ୍ଧି ସକାଶେ ଅନେକ ସନ୍ଦେହୀ ଲୋକଙ୍କୁ ଏହାର ଅନ୍ତର୍ଭୁକ୍ତ କରିଥିଲା ଏବଂ ସେହି ହେତୁ ଏହାର ଯୋଗ୍ୟତା କମି ଯାଇଥିଲା ।

ତାଙ୍କ ସ୍ୱରାଜ୍ୟ ଦଳ ଆଉ ଟିକିଏ ନମ୍ରସ୍ୱରରେ ସେହି ମୌଳିକ ପ୍ରସ୍ତାବ କଲେ ଏବଂ ସ୍ୱରାଜୀମାନଙ୍କ କିଛି ସମର୍ଥନ ନଥିବା ଗୁଡ଼ିଏ ଉପାଧ୍ୟାୟୀ, ବଡ଼ ବଡ଼ ଜମିଦାର, କାରଖାନା ମାଲିକ ଏବଂ ଅନ୍ୟମାନେ ଏଥିରେ ପ୍ରବେଶ କଲେ ।

୧୯୨୬ ମସିହା ଶେଷ ବେଳକୁ ଏକ ଶୋଚନୀୟ ଘଟଣା ଘଟିଲା— ତା ଫଳରେ ଭାରତରେ ଏକ ଆତଙ୍କ ସୃଷ୍ଟି ହୋଇଗଲା । ସାମ୍ପ୍ରଦାୟିକ ମନୋଭାବ ମଣିଷକୁ କେତେଦୂର ତଳକୁ ନେଇପାରେ, ଏଥିରୁ ଜଣାପଡ଼ିଲା । ସ୍ୱାମୀ ଶ୍ରଦ୍ଧାନନ୍ଦ ରୋଗଶଯ୍ୟାରେ ଶୋଇଥିଲେ ସେତେବେଳେ ଜଣେ ଧର୍ମାନ୍ଧ ଲୋକ ତାଙ୍କୁ ହତ୍ୟା କରିଥିଲା । ଯେଉଁ ଲୋକ ସ୍ୱାମୀଜୀଙ୍କ ସହିତ ଆଲୋଚନାର ଛଳ ଦେଖାଇ ନିଜେ ଭିତରକୁ ପ୍ରବେଶ କରିଥିଲା, ତାହା ନିକଟରେ ମନୁଷ୍ୟର ଜୀବନର କି ମୂଲ୍ୟ ! ଆଠବର୍ଷ ପୂର୍ବେ ଏହି ଆର୍ଯ୍ୟ ସମାଜ ନେତା ଦିଲ୍ଲୀରେ ଜୁମ୍ମା ମସଜିଦ୍‌ର ରଙ୍ଗମଞ୍ଚରେ ଠିଆ ହୋଇ ଏକ ବିରାଟ ହିନ୍ଦୁ ମୁସଲମାନ ଜନତାକୁ ଏକତା ଓ ସ୍ୱାଧୀନତାର ବାଣୀ ଶୁଣାଇଥିଲେ । ତାହା ଫଳରେ ଏହି ବିରାଟ ଜନତା ହିନ୍ଦୁ ମୁସଲମାନ ସମସ୍ତେ ନାଦରେ ତାଙ୍କୁ ଅଭ୍ୟର୍ଥନା କରିଥିଲେ ଏବଂ ଏହି ମିଳିତ ଧ୍ୱନି ସେମାନେ ସହରରେ ନିଜ ଦେହର ରକ୍ତ ଦେଇ ଲେଖି ନେଇଥିଲେ । ମାତ୍ର ଆଜି ଜଣେ ନିଜ ଦେଶବାସୀ ତାଙ୍କୁ ହତ୍ୟା କଲା—ସେ ଭାବିଲା, ସେ ଏକ ଧର୍ମାନୁମୋଦିତ କାର୍ଯ୍ୟ କରୁଛି ଏବଂ ଏଥିପାଇଁ ସେ ସ୍ୱର୍ଗ ଯାଇପାରିବ ।

ମୁଁ ଦୈହିକ ସାହସକୁ ପ୍ରଶଂସା କରେ— ଏକ ଭଲ ଉଦ୍ଦେଶ୍ୟରେ କଷ୍ଟ ସ୍ୱୀକାର କରିବା, ଏପରିକି ମୃତ୍ୟୁ ସମ୍ମୁଖୀନ ହେବା ଭଳି ସାହସକୁ ମୁଁ ପ୍ରଶଂସା କରେ । ମୋର ମନେହୁଏ, ଆମ ଭିତରୁ ଅଧିକାଂଶ ଲୋକ ଏହାକୁ ପ୍ରଶଂସା କରନ୍ତି । ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କର ଅପୂର୍ବ ପ୍ରକାର ନିର୍ଭୀକ ଭାବ ଥିଲା । ତାଙ୍କ ଆକୃତି ଦୀର୍ଘ ଓ ସିଧା, ଏବଂ ସନ୍ନ୍ୟାସୀ ପୋଷାକରେ ସେ ଅପୂର୍ବ ହୋଇଥାଆନ୍ତି । ସତ୍ତରୋଧିକ ହୋଇଥିଲେ ସୁଦ୍ଧା ଋଜୁ ଉନ୍ନତ ଥାଆନ୍ତି । ତାଙ୍କ ଚକ୍ଷୁରୁ ଦୀପ୍ତି ବାହାରୁଥାଏ ଏବଂ ଅନ୍ୟର

ଦୁର୍ବଳତା ଦେଖିଲେ ତାଙ୍କ ମନରେ ବିରକ୍ତି ଓ କ୍ରୋଧଭାବର ସୃଷ୍ଟି ହେଉଥିଲା । ଏହି ସମୁଜ୍ଜ୍ୱଳ ଛବି ମୋ ମନରେ ଚିରଦିନ ଅଙ୍କା ହୋଇ ରହିଛି ଏବଂ ଅନେକ ସମୟରେ ମୋର ଏହା ମନେ ପଡ଼େ ।

---

## ବ୍ରସେଲ୍‌ସରେ ଅତ୍ୟାଚାରିତଙ୍କ ସମ୍ମିଳନୀ

୧୯୨୬ ମସିହା ଶେଷଭାଗକୁ ମୁଁ ବର୍ଲିନରେ ଥିଲି । ମୁଁ ଶୁଣିଲି ଯେ, ବ୍ରସେଲ୍‌ସରେ ସମସ୍ତ ଅତ୍ୟାଚାରିତ ଦେଶମାନଙ୍କର ଏକ କଂଗ୍ରେସ ବା ସମ୍ମିଳନୀ ବସିବ । ଏ କଥାଟା ମୋର ପସନ୍ଦ ହେଲା ଏବଂ ଏହି ବ୍ରସେଲ୍‌ସ କଂଗ୍ରେସ ଭାରତ ଜାତୀୟ କଂଗ୍ରେସ ସରକାରୀ ଭାବରେ ଯୋଗ ଦେବା ଉଚିତ ବୋଲି ମତ ଦେଇ ଲେଖିଲି । ମୋର ମତ ଗୃହୀତ ହେଲା ଏବଂ ଏଥିରେ ଯୋଗ ଦେବା ନିମନ୍ତେ ଭାରତୀୟ କଂଗ୍ରେସର ପ୍ରତିନିଧିରୂପେ ମୋତେ ନିଯୁକ୍ତ କରାଗଲା ।

୧୯୨୭ ମସିହା ଫେବ୍ରୁୟାରୀ ପ୍ରଥମ ଭାଗରେ ବ୍ରସେଲସ କଂଗ୍ରେସ ବସିଲା । ଏହା ପ୍ରଥମେ କାହା ମୁଣ୍ଡରୁ ବାହାରିଥିଲା ମୁଁ ଜାଣେ ନା, ସେତେବେଳେ ଅନ୍ୟ ଦେଶମାନଙ୍କର ବିପ୍ଳବୀ ଓ ନିର୍ବାସିତ ରାଜନୀତିକ-ମାନଙ୍କର କେନ୍ଦ୍ର ଥିଲା ବର୍ଲିନ । ଏ ସମ୍ବନ୍ଧରେ ଏହା ପାରିସ ସହରର ପାଖାପାଖି ହୋଇଥିଲା । ସେଠାରେ କମ୍ୟୁନିଷ୍ଟମାନେ ମଧ୍ୟ ବଳଶାଳୀ ଥିଲେ । ଅତ୍ୟାଚାରିତ ଦେଶ ଓ ଶ୍ରମିକ ବାମପନ୍ଥୀଙ୍କ ମଧ୍ୟରେ ଏକ ମିଳିତ କାର୍ଯ୍ୟପନ୍ଥା କରିବାର କଥା ଆଲୋଚନା ହେଉଥାଏ । ଅନେକ ଅନୁଭବ କଲେ ଯେ, ସାମ୍ରାଜ୍ୟବାଦ ବିରୁଦ୍ଧରେ ସମସ୍ତ ପ୍ରକାର ସ୍ୱାଧୀନତା ସଂଗ୍ରାମ ହେବ, ସେଥିଲାଗି ମିଳିତ ବ୍ୟବସ୍ଥା ହେବ ଏବଂ ଯେଉଁଠାରେ ସମ୍ଭବ ମିଳିତ କାର୍ଯ୍ୟ ମଧ୍ୟ ବାଞ୍ଛନୀୟ । ଇଂଲଣ୍ଡ, ଫ୍ରାନସ ଓ ଇଟାଲି ପ୍ରଭୃତି ଉପନିବେଶ ସାମ୍ରାଜ୍ୟ ବିସ୍ତାର କରୁଥିବା ଦେଶମାନେ ଏପରି ଉଦ୍ୟମର ବିରୋଧରେ ଥିଲେ ମାତ୍ର ଯୁଦ୍ଧ ପରେ ଜର୍ମାନୀ ଆଜି ଉପନିବେଶ ଶକ୍ତି-

ହୋଇ ନ ଥିଲା ଏବଂ ଅନ୍ୟ ଦେଶ ଅଧୀନରେ ଥିବା ଦେଶ ଏବଂ ଉପନିବେଶମାନଙ୍କରେ ହୋଇଥିବା ଆନ୍ଦୋଳନ ପ୍ରତି ଜର୍ମାନ ସରକାର ନିରପେକ୍ଷତା ଦେଖାଉଥିଲା । ଏହି କାରଣରୁ ଅନ୍ୟ ଦେଶର ଅସନ୍ତୁଷ୍ଟ ଏବଂ ପ୍ରଗତିଶୀଳ ଲୋକଙ୍କର ବର୍ଲିନ କେନ୍ଦ୍ରସ୍ଥଳୀ ହେଲା । ଏମାନଙ୍କର ଭିତରେ ଚୀନର କୋମିଙ୍ଗ୍‌ଟାଙ୍ଗ୍ ଦଳର ବାମପନ୍ଥୀମାନେ ଖୁବ ଅଗ୍ରଣୀ କାର୍ଯ୍ୟକ୍ଷମ ଥିଲେ । ସେତେବେଳେ କୋମିଙ୍ଗ୍‌ଟାଙ୍ଗ୍ ଚୀନରେ ପ୍ରବଳ ପରାକ୍ରାନ୍ତ ହୋଇ ଉଠିଥାଏ ଏବଂ ଏହାର ଅଭିଯାନ ଫଳରେ ପୁରାତନ ସାମନ୍ତ ବ୍ୟବସ୍ଥା ଭାଙ୍ଗି ଯାଉଥାଏ । ଏପରି କି ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକ ମଧ୍ୟ ସେମାନଙ୍କର ଆକ୍ରମଣମୂଳକ ଅଭ୍ୟାସ ଓ ସ୍ପର୍ଦ୍ଧାବାକ୍ୟ ଛାଡ଼ି ଏହି ନୂତନ ପ୍ରଗତିକୁ ଲକ୍ଷ୍ୟ କରୁଥିଲେ । ମନେ ହେଉଥିଲା, ଚୀନରେ ଏକତା ଏବଂ ସ୍ୱାଧୀନତା ପାଇବା ଆଉ ଡେରି ନାହିଁ । କୋମିଙ୍ଗ୍‌ଟାଙ୍ଗ୍‌ର ସଫଳତା ମୁଣ୍ଡଅଡ଼େ ବ୍ୟାପିଗଲା । ସମ୍ମୁଖରେ ଯେଉଁ ବିପଦ ଅଛି, ତାହା ଏହି ଅନୁଷ୍ଠାନ ଜାଣିଥିଲା ଏବଂ ଆନ୍ତର୍ଜାତିକ ପ୍ରଚାର ଦ୍ୱାରା ନିଜକୁ ଦୃଢ଼ କରିବାକୁ ଚାହୁଁଥିଲା । ସମ୍ଭବତଃ ଏହି ଦଳର ବାମପନ୍ଥୀମାନେ ଅନ୍ୟ ଦେଶର କମ୍ୟୁନିଷ୍ଟ ବା ସେହିପରି ଲୋକଙ୍କ ସହଯୋଗରେ ଅନ୍ୟ ଦେଶମାନଙ୍କରେ ଚୀନର ଜାତୀୟ ମର୍ଯ୍ୟାଦା ବୃଦ୍ଧି ଏବଂ ଆନ୍ତର୍ଜାତୀୟ ପ୍ରଚାର ଦ୍ୱାରା ନିଜକୁ ଶକ୍ତିଶାଳୀ କରିବା ନିମନ୍ତେ ଚେଷ୍ଟା କରୁଥିଲେ । ସେତେବେଳକୁ ସେ ଦଳ ଭିତରେ ଏତେ ଛୋଟ ଛୋଟ ଓ ପରସ୍ପର ବିରୋଧୀ ଦଳ ନ ଥିଲା ଏବଂ ବାହାରକୁ ସାଧାରଣ ଶତ୍ରୁ ବିରୁଦ୍ଧରେ ଏକ ଥିବାର ଜଣା ପଡ଼ୁଥିଲା ।

ଏହି ହେତୁ କୋମିଙ୍ଗ୍‌ଟାଙ୍ଗ୍‌ର ଇଉରୋପୀୟ ପ୍ରତିନିଧିମାନେ ଅତ୍ୟାଚାରିତ ଦେଶମାନଙ୍କର କଂଗ୍ରେସ ମତାମତକୁ ପସନ୍ଦ କରିଥିଲେ; ସେମାନେ ବୋଧହୁଏ ଅନ୍ୟ କେତେକଙ୍କ ସହ ମିଶି ଏହାର ସୂତ୍ରପାତ କରିଥିଲେ । ମୂଳରୁ ବୋଧହୁଏ କେତେକ କମ୍ୟୁନିଷ୍ଟ ଓ କମ୍ୟୁନିଷ୍ଟ ଭାବାପନ୍ନ ଲୋକ ଏହାର ପଛରେ ଥିଲେ, ମାତ୍ର ମୋଟ ଉପରେ କମ୍ୟୁନିଷ୍ଟ-ମତ ଏହାର ପଛରେ ଥିଲା । ଲାଟିନ ଆମେରିକାରୁ ମଧ୍ୟ ଖୁବ ସମର୍ଥନ-

ଓ ସାହାଯ୍ୟ ପାଉଥିଲା । ଆମେରିକା ଯୁକ୍ତରାଷ୍ଟ୍ରର ଅର୍ଥନୈତିକ ସାମ୍ରାଜ୍ୟ-ବାଦ ଦ୍ୱାରା ସେମାନେ ବିରକ୍ତ ହୋଇଥିଲେ । ସେତେବେଳେ ମେକ୍ସିକୋର ସଭାପତି ଉଗ୍ରପନ୍ଥୀ ଥିଲେ । ସେ ମଧ୍ୟ ଆମେରିକା ଯୁକ୍ତରାଷ୍ଟ୍ର ବିରୁଦ୍ଧରେ ଲାଟିନ୍ ଆମେରିକା ସଙ୍ଗଠିତ ହେବାକୁ ଆଗ୍ରହୀ ଥିଲେ । ସେହି ହେତୁ ବ୍ରସେଲ୍ସ କଂଗ୍ରେସ କାର୍ଯ୍ୟ ପ୍ରତି ମେକ୍ସିକୋ ଖୁବ ଆଗ୍ରହ ଦେଖାଉଥିଲା । ସରକାରୀ ଭାବରେ ଏଥିରେ ସେମାନେ ଯୋଗ ଦେଇ ପାରି ନ ଥିଲେ, ମାତ୍ର ଏକ ଦର୍ଶକ ଭାବରେ ଉପସ୍ଥିତ ହେବା ନିମନ୍ତେ ଜଣେ କୂଟନୀତି ବିଶାରଦଙ୍କୁ ପଠାଇଥିଲେ ।

ଜାଭା, ଇଣ୍ଡୋଚାଇନା, ପାଲେଷ୍ଟାଇନ୍, ସିରିଆ, ଇଜିପ୍ଟ, ଦକ୍ଷିଣ ଆଫ୍ରିକାର ଆରବ ଏବଂ ଆଫ୍ରିକାର ନିଗ୍ରୋମାନଙ୍କ ଗଠିତ ଜାତୀୟ ଅନୁଷ୍ଠାନମାନଙ୍କରୁ ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ । ଅନେକ ବାମପନ୍ଥୀ ଶ୍ରମିକ ସଂଘର ପ୍ରତିନିଧି ମଧ୍ୟ ଯୋଗ ଦେଇଥିଲେ ଏବଂ ଇଉ-ରୋପରେ ଶ୍ରମିକ ମହଲରେ ମୁଖ୍ୟଭାବରେ କାର୍ଯ୍ୟ କରୁଥିବା କେତେକ ଜଣାଶୁଣା ଲୋକ ମଧ୍ୟ ଯୋଗ ଦେଇଥିଲେ । କମ୍ୟୁନିଷ୍ଟମାନେ ମଧ୍ୟ ସେଠାରେ ଥିଲେ ଏବଂ ଏଥିରେ ମୁଖ୍ୟଭାବରେ ଭାଗ ନେଇଥିଲେ । ସେମାନେ କମ୍ୟୁନିଷ୍ଟ ଭାବରେ ଆସି ନ ଥିଲେ, ମାତ୍ର ଶ୍ରମିକସଂଘ ବା ସେହିପରି ଅନୁଷ୍ଠାନମାନଙ୍କର ପ୍ରତିନିଧି ରୂପେ ଆସିଥିଲେ ।

ଜର୍ଜ ଲାନ୍ସବରୀ ସଭାପତି ହୋଇଥିଲେ ଏବଂ ସେ ଏକ ଓଜସ୍ୱିନୀ ଭାଷଣ ଦେଲେ । ଏହି କଂଗ୍ରେସ କୌଣସି ପ୍ରକାର ଉଗ୍ରପନ୍ଥୀ ନଥିଲା କିମ୍ବା କମ୍ୟୁନିଷ୍ଟ ଦଳ ପ୍ରଚାର ଉଦ୍ଦେଶ୍ୟରେ କରାଯାଇ ଥିଲା; ଏହାର ପ୍ରମାଣ ଏଥିରୁ ମିଳେ । ମାତ୍ର ଏଥିରେ ସନ୍ଦେହ ନାହିଁ ଯେ, ଏହି ସମ୍ମିଳନୀ କମ୍ୟୁନିଷ୍ଟମାନଙ୍କ ପ୍ରତି ସହାନୁଭୂତି ସମ୍ପନ୍ନ ଥିଲା ଏବଂ କେତେକ ବିଷୟରେ ଏକମତ ନ ହେଉଥିଲେ ସୁଦ୍ଧା ସମ୍ମିଳିତ ଭାବରେ କାର୍ଯ୍ୟ କରିବାର ଅଭାବ ଦେଖାଯାଉ ନଥିଲା ।

ସାମ୍ରାଜ୍ୟବାଦ ବିରୋଧୀ ସମିତି ବୋଲି ଏକ ସ୍ଥାୟୀ ସଂଗଠନ ଗଢ଼ା ହେଲା ଏବଂ ତାହାର ସଭାପତି ରହିବା ନିମନ୍ତେ ମଧ୍ୟ ଲାନ୍ସବେରୀ ସମ୍ମତ ହେଲେ, ମାତ୍ର ହଠାତ୍ ଏଥିରେ ସମ୍ମତ ହୋଇ ପଡ଼ିଥିବାରୁ ପରେ ଅନୁତାପ କଲେ । ସମ୍ଭବତଃ ବ୍ରିଟିଶ ଲେବର ପାର୍ଟିରେ ତାଙ୍କର ସହକର୍ମୀମାନେ ଏହା ପସନ୍ଦ କରି ନ ଥିଲେ । ସେତେବେଳେ ଲେବର "ହିଜ ମାଜେଷ୍ଟିଙ୍କର ଅପୋଜିସନ ବା ମହାମାନ୍ୟବର ସରକାର ବିରୋଧୀ" ଥିଲେ—ଅଳ୍ପ କେତେକ ଦିନରେ ସେମାନେ ପୁଣି "ହିଜ ମାଜେଷ୍ଟି ଗଭର୍ଣ୍ଣମେଣ୍ଟ" ହେଲେ ବା ସରକାର ଗଠନ କଲେ । ଭବିଷ୍ୟତରେ ମନ୍ତ୍ରୀ ହେବା ଲୋକ ବୈପ୍ଳବିକ ବା ବିପ୍ଳବାତ୍ମକ ରାଜନୀତିରେ ମୁଣ୍ଡ ପୂରାଇବାର ନୁହେଁ । ଲାନ୍ସବେରୀ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିବାରୁ ସଭାପତି ପଦରୁ ଇସ୍ତଫା ଦେଲେ । ସେ ସମିତିର ସଭ୍ୟପଦରୁ ମଧ୍ୟ ଇସ୍ତଫା ଦେଲେ । ଦୁଇ ତିନିମାସ ଆଗେ ଯାହାର ବକ୍ତୃତା ଶୁଣି ଏପରି ମୁଗ୍ଧ ହୋଇଥିଲି, ତାଙ୍କର ଏପରି ପରିବର୍ତ୍ତନ ଦେଖି ମୁଁ ଦୁଃଖିତ ହେଲି ।

ଯାହା ହେଉ, ସାମ୍ରାଜ୍ୟ ବିରୋଧୀ ସମିତିରେ ଅନେକ ଖ୍ୟାତନାମା ଲୋକ ସଭ୍ୟରୂପେ ରହିଥିଲେ । ଆଇନଷ୍ଟାଇନ, ମାଡ଼ାମ୍ ସନ୍ୟାତ୍ ସେନ୍ ଏବଂ ମୋର ମନେହୁଏ ରୋମା ରୋଲା ମଧ୍ୟ ସଭ୍ୟ ଥିଲେ । ପାଲେଷ୍ଟାଇନ୍‌ରେ ଆରବ ଇହୁଦୀ ସମସ୍ୟାରେ ସମିତି ଆରବମାନଙ୍କ ପକ୍ଷ ସମର୍ଥନ କରୁଥିବାରୁ ସେଥିରେ ଏକମତ ହୋଇ ନ ପାରି ଆଇନଷ୍ଟାଇନ୍ ଇସ୍ତଫା ଦେଲେ ।

ବ୍ରସେଲ୍‌ସ କଂଗ୍ରେସ ଏବଂ ତା ପରେ ସମିତିର ଯେଉଁ ସବୁ ବୈଠକ ହେଲା, ସେଥିରେ ଯୋଗ ଦେଇ ଉପନିବେଶ ଏବଂ ପରାଧୀନ ଦେଶମାନଙ୍କର ସମସ୍ୟା ମୁଁ କେତେକ ପରିମାଣରେ ବୁଝିପାରିଥିଲି । ପାଶ୍ଚାତ୍ୟ ଦେଶର ଶ୍ରମିକ ଆନ୍ଦୋଳନର ବିବାଦ ସମ୍ବନ୍ଧେ ମଧ୍ୟ କେତେକ କଥା ଜାଣିପାରିଥିଲି । ସେ ସମ୍ବନ୍ଧରେ ମୁଁ ଆଗରୁ କିଛି ଜାଣିଥିଲି, ହେଲେ

ସମ୍ବନ୍ଧରେ ମୁଁ ପଢ଼ାପଢ଼ି କରିଥିଲି । ମୋର କୌଣସି ବ୍ୟକ୍ତିଗତ ସମ୍ପର୍କ ନ-ଥିବାରୁ ବାସ୍ତବ ଅବସ୍ଥା ସମ୍ବନ୍ଧରେ ମୋର ଜ୍ଞାନ ନ ଥିଲା । ବର୍ତ୍ତମାନ ମୋର ସମ୍ବନ୍ଧ ସ୍ଥାପିତ ହେଲା ଏବଂ ଏହାର ଅଭ୍ୟନ୍ତରୀଣ ବିବାଦ ମୂଳକ ସମସ୍ୟା ଏବେ ଆମକୁ ବିଚାର କରିବାକୁ ପଡ଼ୁଥିଲା । ସେକେଣ୍ଡ ଇଣ୍ଟର ନେସନାଲ (୨ୟ ଆନ୍ତର୍ଜାତିକ) ଏବଂ ଥାର୍ଡ ଇଣ୍ଟର ନେସନାଲ (୩ୟ ଆନ୍ତର୍ଜାତିକ) ଶ୍ରମିକ ସଙ୍ଘ ଭିତରୁ ଦ୍ୱିତୀୟ ପ୍ରତି ମୋର ସହାନୁଭୂତି ଥିଲା । ଯୁଦ୍ଧ ପରେ ସେକେଣ୍ଡ ଇଣ୍ଟରନେସନାଲ କାର୍ଯ୍ୟକଳାପ ଦେଖି ମୋର ବିରକ୍ତ ଅଶ୍ରଦ୍ଧା ଜନ୍ମିଥିଲା । ଏହାର ଜଣେ ପ୍ରଧାନ ସମର୍ଥକ ବ୍ରିଟିଶ ଶ୍ରମିକ ସଙ୍ଘର କାର୍ଯ୍ୟ-କଳାପ ସମ୍ବନ୍ଧରେ ଭାରତରେ ଆମର ଖୁବ୍ ଅଶ୍ରଦ୍ଧା ଥିଲା । ତେଣୁ କମ୍ୟୁ-ନିଜିମ୍ ପ୍ରତି ମୋର ସହାନୁଭୂତି ଜନ୍ମିବା ସ୍ୱାଭାବିକ, କାରଣ ଏହାର ଅନ୍ୟ ଯାହା ଦୋଷ ଥାଉ ପଛକେ ଏହା ଠକାମି ବା ସାମ୍ରାଜ୍ୟବାଦୀ ନୁହେଁ । ଏହା ଗୋଟିଏ ବାନ୍ଧା ଗ୍ରହଣ କରି ମୋର ଏହି ଶ୍ରଦ୍ଧା ହୋଇ ନ ଥିଲା । କାରଣ ସେତେବେଳ ପର୍ଯ୍ୟନ୍ତ ମୁଁ କମ୍ୟୁନିଜିମ ସମ୍ବନ୍ଧରେ ବିଶେଷ କିଛି ଜାଣି ନ ଥିଲି । ଏହା ସମ୍ବନ୍ଧରେ ମୋର ମୋଟାମୋଟି ଧାରଣା ଥିଲା । ଏତଦ୍ବ୍ୟତୀତ ଏବଂ ରୁଷରେ ଯେଉଁ ବିରାଟ ପରିବର୍ତ୍ତନ ହେଉଥିଲା ସେଥିପ୍ରତି ମୁଁ ଆକୃଷ୍ଟ ହେଲି । ମାତ୍ର କମ୍ୟୁନିଷ୍ଟମାନଙ୍କର ସ୍ୱେଚ୍ଛାଚାରିତା, ଆକ୍ରମଣମୂଳକ ଏବଂ ଅଳୀକ ଇଚ୍ଛା ଓ ତାଙ୍କ ସହିତ ଏକମତ ହୋଇ ନ ଥିବା ପ୍ରତ୍ୟେକ ଲୋକକୁ ନିନ୍ଦା କରିବା ଅଭ୍ୟାସ ଦେଖି ମୁଁ ଅନେକ ସମୟରେ ବିରକ୍ତ ହୁଏ । ସେମାନଙ୍କ କଥାନୁସାରେ ମୁଁ ଯେପରି ବୁର୍ଜୋୟା ଶିକ୍ଷା ପାଇଛି ଏବଂ ସମାଜରେ ବଢ଼ିଛି, ସେଥିରେ ମୋ ମନରେ ଏପରି ପ୍ରତିକ୍ରିୟା ହେବା ସ୍ୱାଭାବିକ ।

ମୁଁ ସାଧାରଣତଃ କପର୍ ଛୋଟ ଛୋଟ ସମସ୍ୟାରେ କମିଟି ବୈଠକରେ ଇଂରେଜ ଓ ଆମେରିକା ସଭ୍ୟମାନଙ୍କ ସହିତ ଯୋଗ ଦେଉଥିଲି, ମୋତେ ଆଶ୍ଚର୍ଯ୍ୟ ଲାଗେ । ଏହା ସମ୍ବନ୍ଧରେ ଆମର ଦୃଷ୍ଟିକୋଣରେ କେତେକ ପରିମାଣରେ ସାମଞ୍ଜସ୍ୟ ଥିଲା । ଅବଶ୍ୟ ଉପନିବେଶ ଏବଂ ସ୍ୱାର୍ଥ ପ୍ରସ୍ତାବ ଗୁଡ଼ିକ ଯାହା ଘୋଷଣାପତ୍ର ପରି ମନେ ହୁଏ; ଆମେ ଜାଣିଥିଲୁ ତାର

ବିରୋଧ କରୁଥିଲୁ । ଆମେ ସରଳ ଏବଂ ସ୍ପଷ୍ଟ ସ୍ପଷ୍ଟ ପ୍ରସ୍ତାବ ଉପସ୍ଥାପନ କରୁଥିଲୁ, ମାତ୍ର ସେ ଦେଶର ଚଳନ ଅନ୍ୟପ୍ରକାର ଥିଲା । ଅନେକ ସମୟରେ କମ୍ୟୁନିଷ୍ଟ ଓ ଅକମ୍ୟୁନିଷ୍ଟଙ୍କ ଭିତରେ ମତଭେଦ ହେଉଥିଲା । ଆମେ ସାଧାରଣତଃ ମିଳାମିଶାରେ ରାଜି ହେଉଥିଲୁ । ପରେ ଆମ ଭିତରୁ କେତେକ ନିଜ ନିଜ ଦେଶକୁ ଫେରି ଆସିଲୁ ଏବଂ ଆଉ କମିଟି ବୈଠକରେ ଯୋଗ ଦେଇ ପାରିଲୁ ନାହିଁ ।

ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଗୁପ୍ତଚରବିଭାଗ ଓ ବୈଦେଶିକ ଅଫିସ-ମାନଙ୍କରେ ବ୍ରସେଲସ କଂଗ୍ରେସ ଯୋଗୁଁ ଗୋଟାଏ ଚହଳ ପଡ଼ିଯାଇଥିଲା । ବ୍ରିଟିଶ ବୈଦେଶିକ ଅଫିସର ଲେଖକ 'ଅଙ୍ଗୁର' ଏ ସମ୍ବନ୍ଧରେ ଏକ ପ୍ରକାର ଉତ୍ତେଜନାପୂର୍ଣ୍ଣ ଏବଂ ସମୟ ସମୟରେ ରହସ୍ୟମୟ ବିବରଣୀ ନିଜ ପୁସ୍ତକରେ ଲେଖିଛନ୍ତି । ସମ୍ଭବତଃ ଏହି ସମ୍ମିଳନୀରେ ଅନେକ ଆନ୍ତର୍ଜାତିକ ଗୁପ୍ତଚର ଥିଲେ । ଅନେକ ପ୍ରତିନିଧି ହୁଏତ ଗୁପ୍ତଚର ବିଭାଗର ଲୋକ ଥିଲେ । ଏ ବିଷୟରେ ଆମର ଏକ କୌତୁକପୂର୍ଣ୍ଣ ଅଭିଜ୍ଞତା ହୋଇଥିଲା । ମୋର ଜଣେ ଆମେରିକାନ ବନ୍ଧୁ ପାରିସରେ ଅଛନ୍ତି । ଗୁପ୍ତଚର ବିଭାଗର ଜଣେ ଫରାସୀ ଲୋକ ତାଙ୍କ ସହିତ ଦେଖାକଲେ । ସେ ବନ୍ଧୁଙ୍କଠାରୁ କେତେକ ବିଷୟ ଜାଣିବା ଲାଗି ସାକ୍ଷାତ କରିଥିଲେ । ସେ ସବୁ କଥା ପଚାରି ସାରିବା ପରେ ତାଙ୍କୁ ଆମେରିକାନ ବନ୍ଧୁ ଚିହ୍ନିପାରିଛନ୍ତି କି ନାହିଁ ପଚାରିଲେ, କାରଣ ସେମାନଙ୍କର ପୂର୍ବରୁ ଦେଖା ହୋଇଥିଲା । ଏଥିରେ ଆମେରିକାନ ଟିକିଏ ବିରକ୍ତ ହେଲେ ଏବଂ ସ୍ୱୀକାର କଲେ ଯେ ସେ ତାଙ୍କୁ ଆଦୌ ଚିହ୍ନି ପାରି ନ ଥିଲେ । ଗୁପ୍ତଚର ଏଜେଣ୍ଟ ତାଙ୍କୁ କହିଲେ ଯେ, ତାଙ୍କ ହାତ ମୁହଁ କଳା ରଙ୍ଗ କରି ଜଣେ ନିଗ୍ରୋ ପ୍ରତିନିଧି ଭାବରେ ସେ ବ୍ରସେଲ୍ସ କଂଗ୍ରେସରେ ଯୋଗ ଦେଇଥିଲେ ଏବଂ ସେଠାରେ ତାଙ୍କୁ ଦେଖିଥିଲେ ।

ସାମ୍ରାଜ୍ୟବାଦ ବିରୋଧ ସମିତିର ଗୋଟିଏ ବୈଠକ କଲୋନରେ ହୋଇଥିଲା ଏବଂ ସେଥିରେ ଯୋଗ ଦେଇଥିଲି । ବୈଠକ ଶେଷ

ହେବା ପରେ ନିକଟରେ ଡୁସେଲଡର୍ଫଠାରେ ଏକ ସାଙ୍କୋ-ଗ୍ରଣ୍ଟେ ସଙ୍ଗରେ ଯୋଗଦେବା ନିମନ୍ତେ ଆମେ ଗଲୁ । ଆମେ ସୀମାରୁ ଫେରନ୍ତି ବେଳକୁ ପୁଲିସ ଆମମାନଙ୍କୁ ଅନୁମତିପତ୍ର ବା ପାସପୋର୍ଟ ଦେଖିବାକୁ ଚାହିଁଲେ । ଅଧିକାଂଶଙ୍କର ପାସପୋର୍ଟ ସେମାନଙ୍କ ପାଖରେ ଥିଲା । ମାତ୍ର କେତେକ ଘଣ୍ଟା ପାଇଁ ଆମେ ଡୁସେଲଡର୍ଫ ଆସିଥିବାରୁ ମୁଁ କଲୋନ ହୋଟେଲରେ ପାସପୋର୍ଟ ଛାଡି ଆସିଥିଲି; ତେଣୁ ମୋତେ ଥାନାକୁ ନେଇଗଲେ । ମୋର ସୌଭାଗ୍ୟକ୍ରମେ ମୋ ପରି ଜଣେ ଇଂରେଜ ଏବଂ ତାଙ୍କର ସ୍ତ୍ରୀ କଲୋନରେ ପାସପୋର୍ଟ ରଖି ଆସିଥିବାରୁ ସେମାନେ ବିପଦରେ ପଡ଼ିଥିଲେ । ପ୍ରାୟ ଏକ ଘଣ୍ଟା ଅପେକ୍ଷା କଲା ପରେ ପୁଲିସ ଅନୁଗ୍ରହ କରି ଆମକୁ ଯିବାକୁ ଅନୁମତି ଦେଲେ । ଏଥି ମଧ୍ୟରେ ଆମ ସମ୍ବନ୍ଧରେ ଟେଲିଫୋନ ଯୋଗେ ଅନୁସନ୍ଧାନ ହୋଇଥିଲା ।

ପରବର୍ତ୍ତୀ କାଳରେ ସାମ୍ରାଜ୍ୟ ବିରୋଧୀ ସମିତି କମ୍ୟୁନିଜମ ଆଡ଼କୁ ଅଧିକ ଆକୃଷ୍ଟ ହୋଇଥିଲେ ଅବଶ୍ୟ ମୋତେ ଯେତେଦୂର ଜଣାଅଛି, ଏହା ତାହାର କାର୍ଯ୍ୟକ୍ରମ ବଦଳାଇ ନ ଥିଲା । ମୁଁ କେବଳ ଦୂରରୁ ଚିଠି-ପତ୍ରରେ ଏହା ସହିତ ସମ୍ପର୍କ ରଖିଥିଲି । ୧୯୩୧ ରେ ଭାରତ ସରକାର ଓ କଂଗ୍ରେସ ସହିତ ହୋଇଥିବା ଦିଲ୍ଲୀ ସନ୍ଧିପତ୍ରରେ ମୁଁ ସମ୍ମତ ହୋଇଥିବାରୁ ଏହି ସମିତି ମୋ ଉପରେ ଭୀଷଣ କ୍ରୋଧ କରି ଏକ ପ୍ରସ୍ତାବ କରି ମୋତେ ବହିଷ୍କାର କରି ଦେଇଥିଲେ । ମୁଁ ସ୍ୱୀକାର କରୁଛି ଯେ, ନିଜପକ୍ଷ ହେଲେଭଲ ଯଥେଷ୍ଟ ସାମଗ୍ରୀ ମୁଁ ଯୋଗାଇ ଥିଲି; ମାତ୍ର ମୋ କୈଫିୟତ ଦେବାପାଇଁ ମୋତେ ସୁବିଧା ଦେବା ଉଚିତ ଥିଲା ।

୧୯୨୭ ମସିହା ଗ୍ରୀଷ୍ମକାଳରେ ମୋର ପିତା ଇଉରୋପ ଗଲେ । ମୋତେ ଭେନିସ୍‌ରେ ତାଙ୍କ ସହିତ ସାକ୍ଷାତ ହେଲା ଏବଂ ସେହି ଦିନରୁ ଆଗାମୀ କେତେ ମାସ ଆମେ ପ୍ରାୟ ଏକ ସଙ୍ଗରେ ରହିଥିଲୁ । ମୋ ପିତା, ମୋ ସ୍ତ୍ରୀ, ଆମ ଭଉଣୀ ଏବଂ ମୁଁ ଏକ ସଙ୍ଗରେ ସୋଭିଏଟର ଦଶମ ବାର୍ଷିକ ଉତ୍ସବ ଦେଖିବାକୁ ନଭେମ୍ବର ମାସରେ ମସ୍କୋ ଯାଇଥିଲୁ ।

ଆମେ ଅତି ଅଳ୍ପ ସମୟ ସକାଶେ ପ୍ରାୟ ୩।୪ ଦିନ ଲାଗି ମସ୍କୋରେ ଥିଲୁ ଶେଷ ମୂହୂର୍ତ୍ତରେ ମସ୍କୋ ଯିବା ଲାଗି ଆମେ ସ୍ଥିର କରିଥିଲୁ । ତଥାପି ଆମେ ଯାଇଥିବା ହେତୁ ଆନନ୍ଦିତ ହୋଇଥିଲୁ—କାରଣ ଏହି ଦେଖା ଟିକିଏରେ ମଧ୍ୟ ମୂଲ୍ୟ ଅଛି । ନୂତନ ରୁଷ ସମ୍ବନ୍ଧରେ ଆମେ ବିଶେଷ କିଛି ଜାଣି ନ ଥିଲୁ ବା ଜାଣିପାରି ନ ଥିଲୁ; ମାତ୍ର ଏ ସମ୍ବନ୍ଧରେ ପଢ଼ାପଢ଼ି କରିବା ନିମନ୍ତେ ଗୋଟାଏ ଇଚ୍ଛା ଆମ ମନରେ ପଡ଼ିଗଲା । ଭାରତକୁ ଫେରି ଆସିଥାନ୍ତୁ, ମାତ୍ର ପିତା ଇଉରୋପରେ ବୁଲିବା ସକାଶେ ପହଞ୍ଚିବାରୁ ପୁଣି ରହିଗଲୁ । ଫେରିବାବେଳେ ଦକ୍ଷିଣ ପୂର୍ବ ଇଉରୋପ, ତୁର୍କୀ ଏବଂ ଇଜିପ୍ଟ ବୁଲି ଦେଖି କିଛି ସମୟ କଟାଇବାକୁ ଆମର ଇଚ୍ଛା ଥିଲା । ମାତ୍ର ସେତେବେଳେ ଆଉ ସମୟ ନ ଥିଲା ଏବଂ ବଡ଼ ଦିନ ଛୁଟିରେ ମାନ୍ଦ୍ରାଜରେ କଂଗ୍ରେସର ଯେଉଁ ଆଗାମୀ ଅଧିବେଶନ ହେବ, ସେଥିରେ ଯୋଗ ଦେବା ନିମନ୍ତେ ମୁଁ ବ୍ୟସ୍ତ ଥିଲି । ମୋର ସ୍ତ୍ରୀ, ଭଉଣୀ ଓ ଝିଅଙ୍କ ସହିତ ମୁଁ ଡ଼ିସେମ୍ବର ମାସ ପ୍ରଥମ ଦିଗରେ ମର୍ସେଲିଠାରୁ କଲମ୍ବୋ ଯାତ୍ରା କଲି । ମୋ ପିତା ଆଉ ତିନି ମାସ ସକାଶେ ଇଉରୋପରେ ରହିଲେ ।

———

## ଭାରତ ପ୍ରତ୍ୟାଗମନ ଏବଂ ରାଜନୀତିରେ ମଗ୍ନ

ମୁଁ ମାନସିକ ଦେହିକ ଉଭୟ ଦିଗରେ ପୂର୍ଣ୍ଣ ସ୍ୱାସ୍ଥ୍ୟ ଘେନି ଇଉରୋପରୁ ଆସିଲି । ମୋର ସ୍ତ୍ରୀ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇ ନ ଥାଏ, ତଥାପି ସେ ଖୁବ ଭଲ ଥିଲା ଏବଂ ମୋର ବ୍ୟଗ୍ରତା କମି ଯାଇଥିଲା । ମୁଁ ନିଜକୁ ଖୁବ ଶକ୍ତିଶାଳୀ ଏବଂ ଜୀବନ୍ତ ମନେ କଲି ଏବଂ ପୂର୍ବରୁ ଯେଉଁ ଆଭ୍ୟନ୍ତରୀଣ ଦ୍ୱନ୍ଦ ଏବଂ ହତାଶ ଭାବ ମୋ ମନକୁ ଉଚାଟିତ କରୁଥିଲା, ତାହା ଅନ୍ତତଃ ସେତେବେଳେ ନ ଥିଲା । ମୋର ଦୃଷ୍ଟି କୋଣ ପ୍ରସାରିତ ହୋଇଥିଲା ଏବଂ ଜାତୀୟତା ମୋତେ ଏକ ସଂକୀର୍ଣ୍ଣ ଏବଂ ଅସମ୍ପୂର୍ଣ୍ଣ ଜିନିଷ ପରି ମନେ ହେଲା । ରାଜନୈତିକ ସ୍ୱାଧୀନତା ଦରକାର ଏଥିରେ ସନ୍ଦେହ

ନାହିଁ ; ଆଜି ଭଳି ଜଗତରେ ଶାନ୍ତି ଲାଭ କରିବା ନିମନ୍ତେ ଏହା ଏକ ଗାହାଡ଼; ମାତ୍ର ସାମାଜିକ ସ୍ୱାଧୀନତା ଏବଂ ସମାଜ ଓ ସରକାର ସାମ୍ୟବାଦୀ ଗଢ଼ରେ ଗଠିତ ନ ହେବା ପର୍ଯ୍ୟନ୍ତ କୌଣସି ଦେଶ ବା ବ୍ୟକ୍ତିବିଶେଷ ଅଗ୍ରସର ହୋଇ ପାରିବ ନାହିଁ ଏହା ମୋର ମତ । ଘଟୁଥିବା ସମସ୍ୟା ସମ୍ବନ୍ଧରେ ମୋର ପରିଷ୍କାର ଧାରଣା ଥିଲା ବୋଲି ମୁଁ ଅନୁଭବ କରୁଥିଲି, ବିଶେଷତଃ ବହୁକାଳ ପରିବର୍ତ୍ତିତ ହେଉଥିବା ବର୍ତ୍ତମାନ ଇଉରୋପ ବିଷୟରେ ମୋର ସ୍ପଷ୍ଟ ଧାରଣା ଥିଲା । ମୁଁ ଆଧୁନିକ ଇତିହାସ ଏବଂ ରାଜନୀତି ସମ୍ବନ୍ଧରେ ଅନେକ ବହି ପଢ଼ିଥିଲି । ମୋର ଆଗ୍ରହ ଥିବା ଅନ୍ୟ ବସ୍ତୁ ଉମ୍ନେଦ ଓ ବୈଜ୍ଞାନିକ ବହି ମଧ୍ୟ ପଢ଼ିଥିଲି । ଇଉରୋପ ଓ ଆମେରିକାରେ ଯେଉଁ ବିରାଟ ରାଜନୀତିକ, ଅର୍ଥନୈତିକ ଏବଂ ସଂସ୍କୃତିଗତ ପରିବର୍ତ୍ତନ ହେଉଥିଲା, ତାହା ପ୍ରତି ମୁଁ ମୁଗ୍ଧ ହୋଇଥିଲି । ସୋଭିଏଟ ଋଷର ଅନେକ ଅବାଞ୍ଛନୀୟ କଥା ଥିଲେ ହେଁ ମୁଁ ସେଥିପ୍ରତି ଆକୃଷ୍ଟ ହୋଇଥିଲି ଏବଂ ସୋଭିଏଟ ଦୁନିଆକୁ ଏକ ଆଶାର ବାଣୀ ଶୁଣାଇ ଦେବ ବୋଲି ମୋର ମନେ ହେଉଥିଲା । ୧୯୨୦-୨୦ ମଧ୍ୟ ଯୁଗରେ ଇଉରୋପ ଶାନ୍ତ ହେବାର ଚେଷ୍ଟା କରୁଥିଲା ; ସେତେବେଳକୁ ବିରାଟ ଅର୍ଥସଙ୍କଟ ହୋଇ ନ ଥିଲା । ମୋର ଧାରଣା ହେଲା, ଏହା ଶାନ୍ତ ହେବାର ଚେଷ୍ଟା କେବଳ ବାହାରେ ମାତ୍ର, ଭିତରେ ଭିତରେ ଇଉରୋପ ସମଗ୍ର ଜଗତରେ ନିକଟ ଭବିଷ୍ୟତରେ ଭୟାନକ ଭୂମିକମ୍ପ ଓ ବିରାଟ ପରିବର୍ତ୍ତନ ହେବାର ସମ୍ଭାବନା ରହିଛି ।

ଏହି ଘଟୁଥିବା ଘଟଣା ଲାଗି ନିଜ ଦେଶକୁ ଶିକ୍ଷା କରିବା ଏବଂ ପ୍ରସ୍ତୁତ କରିବା—ଯେତେ ଦୂର ସମ୍ଭବ ସେଥିଲାଗି ପ୍ରସ୍ତୁତ ହୋଇ ରହିବା—ଏହାହିଁ ଆମ୍ଭ କର୍ତ୍ତବ୍ୟ ବୋଲି ମନେ ହେଲା । ଏହି ପ୍ରସ୍ତୁତ କରିବା ଅନେକାଂଶରେ ମତବାଦ ଉପରେ ନିର୍ଭର କରେ । ପ୍ରଥମେ ରାଜନୀତିକ ସ୍ୱାଧୀନତାର ଲକ୍ଷ୍ୟ ସମ୍ବନ୍ଧରେ କୌଣସି ସନ୍ଦେହ ରହିବା ଉଚିତ ନୁହେଁ । ଏହିମତ ଏହି ଏକମାତ୍ର ସମ୍ଭବ ରାଜନୀତିକ ଲକ୍ଷ୍ୟ ଯେପରି ଲୋକେ ପରିଷ୍କାର ବୁଝିପାରନ୍ତି । ଅସ୍ପଷ୍ଟ ଓ ଜଟିଳ ଔପନିବେଶିକ ସ୍ୱାୟତ୍ତ

ମାନଙ୍କ ଅପେକ୍ଷା ଆମର ଲକ୍ଷ୍ୟ ସମ୍ପୂର୍ଣ୍ଣ ଅଲଗା ବୋଲି ପ୍ରକାଶ୍ୟ ରୂପେ ଘୋଷଣା କରିବା ଉଚିତ । ଏହାହିଁ ତା ସାମାଜିକ ଲକ୍ଷ୍ୟ ବ ରହିଛି । ମୋର ମନେ ହେଲା, ସଙ୍ଗେ ସଙ୍ଗେ ଏ ସମ୍ବନ୍ଧରେ କଂଗ୍ରେସ କିଛି କରିବାକୁ ଆଶା କରିବା ଅତ୍ୟଧିକ । କଂଗ୍ରେସ ଗୋଟିଏ ବାହାର ଜାତୀୟ ଅନୁଷ୍ଠାନ—ଅନ୍ୟ ଦିଗରେ ଏହା କେବେ ଚିନ୍ତା କରି ନାହିଁ । କଂଗ୍ରେସ କେବଳ ଶ୍ରମିକ ଓ ଯୁବକମାନଙ୍କ ମଧ୍ୟରେ ଏହି ଭାବ ଅଧିକ ପ୍ରଚାର ହୋଇପାରେ । ଏହି ହେତୁ ମୁଁ କଂଗ୍ରେସର କୌଣସି ପଦବୀ ଗ୍ରହଣ ନ କରି ଅଲଗା ରହିବା ନିମନ୍ତେ ଇଚ୍ଛା କରୁଥିଲି ଏବଂ ସେମାନଙ୍କର ଅବସ୍ଥା ଜାଣିବା ନିମନ୍ତେ ସୁଦୂର ମଫସଲରେ କେତେକ ମାସ କଟାଇବାର ଏକ ଅସ୍ପଷ୍ଟ ଧାରଣା ମୋର ଥିଲା; ମାତ୍ର ଏହା ହୋଇ ପାରିଲା ନାହିଁ ଏବଂ ଘଟଣାଚକ୍ର ମୋତେ କଂଗ୍ରେସ ରାଜନୀତି ଭିତରେ ନେଇ ଚାଲିଲା ।

ମୁଁ ମାନ୍ଦ୍ରାଜରେ ପହଞ୍ଚିବା ସଙ୍ଗେ ସଙ୍ଗେ ସେ ଆବର୍ତ୍ତରେ ପଡ଼ିଗଲି । ମୁଁ କାର୍ଯ୍ୟକାରୀ ସମିତି ଆଗରେ ସ୍ୱାଧୀନତା, ଯୁଦ୍ଧ ସଙ୍କଟ, ସାମ୍ରାଜ୍ୟ ବିରୋଧୀ ସଂଘ ସହିତ ସମ୍ବନ୍ଧ ପ୍ରଭୃତି କେତେଗୁଡ଼ିଏ ପ୍ରସ୍ତାବ ଉପସ୍ଥାପିତ କରିଥିଲି । ସେଗୁଡ଼ିକ ସବୁ ପ୍ରାୟ ଗୃହୀତ ହୋଇ କାର୍ଯ୍ୟକାରୀ କମିଟିର ପ୍ରସ୍ତାବ ହୋଇଗଲା । ସାଧାରଣ ଅଧିବେଶନରେ ମୋତେହିଁ ସେଗୁଡ଼ିକ ଉପସ୍ଥାପିତ କରିବାକୁ ପଡ଼ିଲା ଏବଂ ଆଶ୍ଚର୍ଯ୍ୟ କଥା ଯେ, ଏକମତରେ ତାହା ସବୁ ଗୃହୀତ ହୋଇଗଲା । ଶ୍ରୀମତୀ ଆନି ବେଶାନ୍ତ ମଧ୍ୟ ସ୍ୱାଧୀନତା ପ୍ରସ୍ତାବକୁ ସମର୍ଥନ କରିଥିଲେ । ସମସ୍ତଙ୍କର ସମର୍ଥନ ବେଶ୍ ଆଶାପ୍ରଦ । ମାତ୍ର ମୋ ଭିତରେ ଗୋଟାଏ ଖଟକ ଭାବ ହେଲା ଯେ, ହୁଏତ ଏହି ପ୍ରସ୍ତାବକୁ ଅନେକେ ବୁଝିନାହାନ୍ତି କିମ୍ବା ଏହାର ଅନ୍ୟ କୌଣସି କଦର୍ଥ ବୁଝୁଛନ୍ତି । କଂଗ୍ରେସ ହେବାର ଅଳ୍ପଦିନ ପରେ ସ୍ୱାଧୀନତା ପ୍ରସ୍ତାବର ଅର୍ଥ ନେଇ ବିବାଦ ଲାଗିଲା ବେଳେ ଏହା ଜଣା ପଡ଼ିଗଲା ।

କଂଗ୍ରେସର ମାମୁଲି ପ୍ରସ୍ତାବମାନଙ୍କଠାରୁ ମୋର ପ୍ରସ୍ତାବଗୁଡ଼ିକ ଏକପ୍ରକାର ସ୍ୱତନ୍ତ୍ର ଥିଲା; ଏଥିରେ ଏକ ନୂଆ ଦୃଷ୍ଟିକୋଣ ଥିଲା । ଏଥିରେ ସନ୍ଦେହ ନାହିଁ ଯେ, ଅନେକ ଲୋକ ଏହାକୁ ପସନ୍ଦ କରୁ ନ ଥିଲେ; କେତେକଙ୍କର ଏଥିପ୍ରତି ଅସ୍ପଷ୍ଟଭାବରେ ଅଶ୍ରଦ୍ଧା ଥିଲା, ମାତ୍ର ଏହାକୁ ବିରୋଧ କରିବାର କିଛି ନ ଥିଲା । ସମ୍ଭବତଃ ସେମାନେ ଭାବୁଥିଲେ ଯେ, ଏଗୁଡ଼ିକ ପାଣ୍ଡିତ୍ୟପୂର୍ଣ୍ଣ ପ୍ରସ୍ତାବ; ମାତ୍ର ଏଥିରେ କ୍ଷତି ଲାଭ କିଛି ନାହିଁ । ଏଥିରୁ ରକ୍ଷା ପାଇବାର ଉତ୍କୃଷ୍ଟ ଉପାୟ ହେଉଛି, ଶୀଘ୍ର ଏହାକୁ ଗ୍ରହଣ କରି ଅନ୍ୟ ଗୁରୁତର ପ୍ରସ୍ତାବର ଆଲୋଚନା କରିବା । ବର୍ଷେ ଦୁଇବର୍ଷ ପରେ ସ୍ୱାଧୀନତା ପ୍ରସ୍ତାବ, କଂଗ୍ରେସ ଯେପରି ମୁଖ୍ୟ ଏବଂ ଅପରିହାର୍ଯ୍ୟ ଦାବୀ ହେଲା ସେତେବେଳେ ଏହା ସେପରି ନ ଥିଲା; ଏହା ଏକ ବ୍ୟାପକ ଓ ଅନିର୍ଦ୍ଦିଷ୍ଟ ଭାବର ଅଭିବ୍ୟକ୍ତି ମାତ୍ର ।

ଗାନ୍ଧିଜୀ ମାନ୍ଦ୍ରାଜରେ ଥିଲେ ଏବଂ ସେ କଂଗ୍ରେସର ସାଧାରଣ ଅଧିବେଶନରେ ଯୋଗ ଦେଇଥିଲେ; କିନ୍ତୁ ଏହାର ନୀତି ଗଢ଼ିବାରେ ସେ କୌଣସି ଭାଗ ନେଇ ନ ଥିଲେ । କାର୍ଯ୍ୟକାରୀ ସମିତିର ସେ ସଭ୍ୟ ଥିଲେ ସୁଦ୍ଧା ତାହାର ବୈଠକରେ ସେ ଯୋଗ ଦେଇ ନ ଥିଲେ । ସ୍ୱରାଜ୍ୟ ଦଳ କଂଗ୍ରେସରେ ପ୍ରାଧାନ୍ୟ ପାଇଲା ଦିନୁ ସେ କଂଗ୍ରେସ ପ୍ରତି ଏପରି ମନୋଭାବ ନେଇଛନ୍ତି । ମାତ୍ର ବରାବର ତାଙ୍କର ପରାମର୍ଶ ଗ୍ରହଣ କରାଯାଉଥିଲା ଏବଂ ତାଙ୍କର ଅଗୋଚରରେ କୌଣସି ଗୁରୁ ସିଦ୍ଧାନ୍ତ ହେଉ ନ ଥିଲା । ମୁଁ କଂଗ୍ରେସ ସମ୍ମୁଖରେ ଯେଉଁ ପ୍ରସ୍ତାବ ଆଣିଥିଲି, ତାହା କେତେଦୂର ତାଙ୍କର ସମର୍ଥନ ପାଇଥିଲା, ମୋତେ ଜଣା ନାହିଁ । ମୋର ମନେ ହେଉଛି, ସେ ଏହାକୁ ପସନ୍ଦ କରୁ ନ ଥିଲେ । ଏଥିରେ ଯାହା ଲେଖାଥିଲା ସେଥିଯୋଗୁଁ ନୁହେଁ, ମାତ୍ର ଏହାର ସାଧାରଣ ଗତି ଓ ଦୃଷ୍ଟିକୋଣ ପ୍ରତି ତାଙ୍କର ପସନ୍ଦ ନ ଥିଲା । ଯାହାହେଉ, ସେ କେତେବେଳେ ହେଲେ ଏହାର ସମାଲୋଚନା କରି ନ ଥିଲେ । ସେତେବେଳେ ଅବଶ୍ୟ ମୋର ପିତା ଇଉରୋପରେ ଥିଲେ ।

କଂଗ୍ରେସର ସେହି ଅଧିବେଶନରେ ପୁଣି ଏକ ପ୍ରସ୍ତାବରେ ଯେତେବେଳେ ସାଇମନ କମିଶନକୁ ନିନ୍ଦା କରି ଏବଂ ତାହାକୁ ବର୍ଜନ କରିବା ଉପାୟ ଆଲୋଚନା ହେଲା, ସେତେବେଳେ ସ୍ୱାଧୀନତା ପ୍ରସ୍ତାବର ଅବାସ୍ତବତା ଜଣାପଡ଼ିଗଲା । ବର୍ଜନ ସଙ୍ଗେ ସଙ୍ଗେ ଏକ ସର୍ବଦଳ ସମ୍ମିଳନୀ ଡାକି ଭାରତଲାଗି ଏକ ଶାସନବିଧାନ ଗଢ଼ିବାର ପ୍ରସ୍ତାବ ହେଲା । ଏ କଥା ପରିଷ୍କାର ରୂପେ ଜଣାଥିଲା ଯେ, ଯେଉଁ ମଡ଼ରେଟମାନଙ୍କ ସହ ଏଥିରେ ସହଯୋଗ କରିବାର କଥା ହେଲା, ସେମାନେ କେବେ ସ୍ୱାଧୀନତା ସପକ୍ଷରେ ହୋଇ ପାରନ୍ତି ନାହିଁ । ଅତି ଜୋରରେ ସେମାନେ ଏକପ୍ରକାର ଔପନିବେଶିକ ସ୍ୱାୟତ୍ତଶାସନ ପର୍ଯ୍ୟନ୍ତ ଯାଇପାରନ୍ତି ।

ମୁଁ ପୁଣି କଂଗ୍ରେସ ସମ୍ପାଦକ ହେଲି । କେତେକ ବ୍ୟକ୍ତିଗତ କାରଣରୁ ଏହା ହେଲା । ପ୍ରଥମ କଥା, ସେ ବର୍ଷର ସଭାପତି ଏମ୍. ଏ. ଆନସାରୀ ମୋର ଅତି ପ୍ରିୟ ଓ ପୁରାତନ ବନ୍ଧୁ—ତାଙ୍କର ଇଚ୍ଛା ଯେ ମୁଁ ସମ୍ପାଦକ ହୁଏ—ତାହାଛଡ଼ା ମୋର ଏତେଗୁଡ଼ିଏ ପ୍ରସ୍ତାବ ଗୃହୀତ ହୋଇଥିବାବେଳେ ସେଗୁଡ଼ିକ କିପରି କାର୍ଯ୍ୟକାରୀ ହେବ, ତାହା ମୋର ଦେଖିବାର କଥା । ଏ କଥା ସତ୍ୟ ଯେ, ନିଖିଳ ଭାରତ ସର୍ବଦଳ ସମ୍ମିଳନୀ ପ୍ରସ୍ତାବ ହେବା ପରେ ସ୍ୱାଧୀନତା ପ୍ରସ୍ତାବ ଏକପ୍ରକାର ଅକାମୀ ହୋଇଗଲା । ତଥାପି ଆଉ କେତେକ କାରଣ ଥିଲା । ମୋର ପଦବୀ ଗ୍ରହଣ କରିବାର ପ୍ରକୃତ କାରଣ ହେଉଛି ମୋର ଆଶଙ୍କା ଯେ, ସର୍ବଦଳ ସମ୍ମିଳନୀ କିମ୍ବା ଅନ୍ୟ କୌଣସି କାରଣରୁ କଂଗ୍ରେସ ଆହୁରି ମାନ୍ଦା ଏବଂ ମିଳାମିଶା ଆଡ଼କୁ ଗତି କରିବ । ଏକ ଦିଗରେ ଚରମ ରାଜନୀତି ଅନ୍ୟ ଦିଗରେ ତାର ବିପରୀତ—ଏହି ଦୋ ଫାଙ୍କରେ କଂଗ୍ରେସ ପଡ଼ିଥିଲା । କଂଗ୍ରେସ ଯେପରି ମଡ଼ରେଟ ପନ୍ଥା ଆଡ଼କୁ ଫେରି ନ ଯାଉ ଏବଂ ସ୍ୱାଧୀନତା ଲକ୍ଷ୍ୟ ରଖିଥାଉ, ଏହି ଉଦ୍ୟମ ମୁଁ ଯଥାସମ୍ଭବ କରିବାରେ ଲାଗିଲି ।

ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ସମୟରେ ସାଧାରଣତଃ ଆହୁରି କେତେକ ଅନୁଷ୍ଠାନ ହୁଏ । ଏହି ମାନ୍ଦ୍ରାଜ ଅଧିବେଶନ ସମୟରେ

ଗୋଟିଏ ଖିଲାଫତ୍ କନ୍‌ଫରେନ୍ସ (ଖେଲାଫତ ସମ୍ମିଳନୀ) ହୋଇଥିଲା । ଏହା ଏକାନ୍ତ ଗୁପ୍ତ ଓ ଗୋପନ ଅଧିବେଶନ । ମୋତେ ସେଥିରେ ଉପସ୍ଥିତ କରିବା ନିମନ୍ତେ ଡକା ହେଲା । ମୁଁ କିନ୍ତୁ ଜଣେ ଖିଲାଫତ୍‌ବାଦୀ ନ ଥିବାରୁ ଏହି ପ୍ରସ୍ତାବଟା ମୋର ପସନ୍ଦ ହେଲା । ମାତ୍ର ମୁଁ କିଛିଏ ଇତସ୍ତତଃ ହେଲି । କାରଣ ସେଠାରେ ନୂତନ କାର୍ଯ୍ୟ ମୂଳରେ କିଏ ଥିଲା ଏବଂ ହଠାତ୍ ଗଢ଼ି ଉଠୁଥିବା ଅନୁଷ୍ଠାନମାନଙ୍କ ସହିତ ସଂଯୁକ୍ତ ହେବାକୁ ମୁଁ ଚାହୁଁ ନ ଥିଲି । ଶେଷରେ ମୁଁ ଉପସ୍ଥିତ ହେବାକୁ ରାଜି ହେଲି । ପରେ ସେଥିଲାଗି ମୁଁ ଅନୁତାପ କଲି । କାରଣ ଅନ୍ୟ ଅନେକ ଅନୁଷ୍ଠାନପରି ଏହାର ସ୍ୱେଚ୍ଛାଚାରରେ ମୃତ୍ୟୁ ଘଟିଥିଲା । ଅନେକ ମାସ ପର୍ଯ୍ୟନ୍ତ ଏଥିରେ ଗୃହୀତ ହୋଇଥିବା ପ୍ରସ୍ତାବମାନଙ୍କୁ କାର୍ଯ୍ୟକାରୀ କରାଇବା ନିମନ୍ତେ ମୁଁ ଚେଷ୍ଟା କରିଥିଲି; ମାତ୍ର ମୋର ଚେଷ୍ଟା ବ୍ୟର୍ଥ ହେଲା । ଆଶ୍ଚର୍ଯ୍ୟ କଥା ଆମ ଲୋକେ ନୂଆ ନୂଆ କଥା ଆରମ୍ଭ କରିଦିଅନ୍ତି, ଅଥଚ ତାକୁ ଅବହେଳା କରି ପୁଣି ନିଜେ ବି ଭୁଲି ଯାଆନ୍ତି । ଆମ୍ଭେମାନେ ଧୈର୍ଯ୍ୟର ସହିତ କୌଣସି କାର୍ଯ୍ୟରେ ଲାଗିନା ବୋଲି ଯେଉଁ ସମାଲୋଚନା ହୁଏ, ସେଥିରେ ଅନେକ ସତ୍ୟତା ରହିଛି ।

ଆମେ ମାନ୍ଦ୍ରାଜରେ କଂଗ୍ରେସ କାର୍ଯ୍ୟ ଶେଷ କରି ଫେରିବା ପୂର୍ବରୁ ହକିମ ଅଜମଲ ଖାଁଙ୍କର ଦିଲ୍ଲୀରେ ମୃତ୍ୟୁ ଖବର ପାଇଲୁଁ । କଂଗ୍ରେସର ଭୂତପୂର୍ବ ସଭାପତି ରୂପେ ସେ ଜଣେ ବିଜ୍ଞ ରାଜନୀତିବିଶାରଦ ଥିଲେ, ମାତ୍ର ଏହାଛଡ଼ା ସେ ଆହୁରି ଅଧିକ ଥିଲେ । କଂଗ୍ରେସ ନେତୃମଣ୍ଡଳୀ ଭିତରେ ସେ ଏକ ପ୍ରଧାନ ସ୍ଥାନ ଗ୍ରହଣ କରିଥିଲେ । ସେ ପୁରାତନ ରକ୍ଷଣଶୀଳ ଉପାୟରେ ଲାଳିତପାଳିତ ହୋଇଥିଲେ—ଆଧୁନିକତା ତାଙ୍କୁ ସ୍ପର୍ଶ କରି ନ ଥିଲା । ଦିଲ୍ଲୀ ମୋଗଲ ସାମ୍ରାଜ୍ୟର ସଂସ୍କୃତି ତାଙ୍କଠାରେ ପୂରି ରହି ଥିଲା । ତାଙ୍କର ଚମତ୍କାର ଶିଷ୍ଟାଚାର, ଧୀର କଥା କହିବାର ଭଙ୍ଗୀ ଏବଂ ସୂକ୍ଷ୍ମ ରହସ୍ୟଜନକ କଥା ଶୁଣିଲେ ମନ ଆନନ୍ଦିତ ହୋଇଯାଏ । ତାଙ୍କର ବ୍ୟବହାରରେ ପ୍ରାଚୀନ କାଳର ଆଭିଜାତ୍ୟ ଭାବ ସ୍ପର୍ଶ କରୁଥିଲା । ତାଙ୍କ ଦୃଷ୍ଟି ଏବଂ ପରିଚ୍ଛଦରେ ମଧ୍ୟ ମୋଗଲ ସମ୍ରାଟର ଗୋଟିଏ ଛାପ ଥିଲା ।

ଏପରିକି ଲୋକେ ସାଧାରଣତଃ ସ୍ୱରାଜ୍ୟର 'ଗୋଳମାଳିଆ' ଅର୍ଥକୁ ଧାରଣା ନାହିଁ । ନୂତନ ଆନ୍ଦୋଳନକାରୀମାନେ ବଳ ଗ୍ରହଣ କରୁଥିବାରୁ ଏହି ପୁରୁଣାକାଳର ଲୋକମାନେ ଭାରତରେ ସ୍ୱରାଜ୍ୟ କରିବା ନିମନ୍ତେ ଇଂରେଜମାନେ ରହିଥିଲେ । ହକିମ ସାହେବ ବାଲ୍ୟକାଳରେ ରାଜନୀତିର ପାଖମାଡ଼ୁ ନ ଥିଲେ । ଏକ ବିଖ୍ୟାତ ଚିକିତ୍ସକ ପରିବାରରେ ଜନ୍ମ ହୋଇ ସେ ତାଙ୍କର ବିପୁଳ ବ୍ୟବସାୟରେ ବ୍ୟସ୍ତ ଥାଆନ୍ତି । ମୃତ ହେବାର ଶେଷ ସମୟ ବେଳକୁ ଘଟିଥିବା ଘଟଣା ଏବଂ ତାଙ୍କର ପୁରାତନ ବନ୍ଧୁ ଓ ସହକର୍ମୀ ଡାକ୍ତର ଏମ୍. ଏ. ଆନସାରୀଙ୍କ ପ୍ରଭାବରେ ତାଙ୍କୁ କଂଗ୍ରେସ ଭିତରକୁ ଟାଣି ଆଣିଥିଲା । ତା ପରେ ପଞ୍ଜାବରେ ହୋଇଥିବା ସାମରିକ ଆଇନ ଏବଂ ଖିଲାଫତ ସମସ୍ୟାରେ ସେ ବହୁ ବିଚଳିତ ହୋଇ ଯାଇଥିଲେ ଏବଂ ଗାନ୍ଧିଜୀଙ୍କ ନୂତନ ଅସହଯୋଗ କୌଶଳ ସେ ସମର୍ଥନ କଲେ । ତାଙ୍କ ଆଗମନରେ କଂଗ୍ରେସ ଆହୁରି ମୂଲ୍ୟବାନ ହେଲା । ନୂତନ ଓ ପୁରାତନ ମଧ୍ୟରେ ସେ ଯୋଗସୂତ୍ର ରୂପେ ହେଲେ । ତାଙ୍କ ଯୋଗୁଁ ପୁରାତନପନ୍ଥୀମାନେ କଂଗ୍ରେସକୁ ସମର୍ଥନ କଲେ । ଏହିରୂପେ ସେ ଦୁହିଁଙ୍କ ଭିତରେ ଏକ ସାମଞ୍ଜସ୍ୟ ସ୍ଥାପନ କଲେ ଏବଂ ଆନ୍ଦୋଳନର ଅଗ୍ରଗତିକୁ ଶକ୍ତି ଓ ଦୃଢ଼ତା ଦେଲେ । ସେ ହିନ୍ଦୁ ମୁସଲମାନ ସମ୍ପର୍କ ଅନେକ ପରିମାଣରେ ଘନିଷ୍ଠ କରି ପାରିଥିଲେ—ଉଭୟେହିଁ ତାଙ୍କୁ ସମ୍ମାନ କରୁଥିଲେ ଏବଂ ତାଙ୍କ ଦୃଷ୍ଟାନ୍ତରେ ସେମାନେ ପ୍ରଭାବିତ ହେଲେ । ଗାନ୍ଧିଜୀଙ୍କର ସେ ବିଶ୍ୱସ୍ତ ବନ୍ଧୁ—ହିନ୍ଦୁ ମୁସଲମାନ ସମସ୍ୟାରେ ତାଙ୍କର କଥାହିଁ ଶେଷ ସିଦ୍ଧାନ୍ତ ରୂପେ ଗାନ୍ଧିଜୀ ଗ୍ରହଣ କରୁଥିଲେ । ମୋ ପିତା ଓ ହକିମଜୀଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ହେବା ସ୍ୱାଭାବିକ ।

ମୋର ଶିକ୍ଷା ଦୋଷ ହେତୁ ଏବଂ "ପାର୍ସିଆନ" ସଂସ୍କୃତିର ଦୃଷ୍ଟି ମୋ ଉପରେ ପଡ଼ୁଥିବାରୁ ହିନ୍ଦୁମାନଙ୍କର ଭାବ ସମ୍ବନ୍ଧରେ ମୁଁ ଅଜ୍ଞ ଥିଲି ବୋଲି ଗତବର୍ଷ ମୋତେ ହିନ୍ଦୁମହାସଭାର କେତେକ ନେତା ଆକ୍ରମଣ କରିଲେ । ମୋର କିଛି 'ସଂସ୍କୃତି' ଅଛି 'କି ନା' କେଜାଣି —ଥିଲେ ବି ଯାହା ଅଛି, ତାହା ଉପରେ 'ମୋ' ପକ୍ଷରେ କହିବା କଷ୍ଟକର । ଦୁର୍ଭାଗ୍ୟ

କଥା ପାର୍ସି ଭାଷା ମୋତେ ଜଣା ନାହିଁ । ମାତ୍ର ଏ କଥା ସତ୍ୟ ଯେ ମୋର ପିତା ଭାରତୀୟ ଓ ପାରସ୍ୟ ସଂସ୍କୃତିର ବାୟୁମଣ୍ଡଳରେ ବଢ଼ିଥିଲେ । ସେତେବେଳେ ଉତ୍ତର ଭାରତର ପୁରୁଣା ଦିଲ୍ଲୀ କଚେରୀମାନଙ୍କରେ ଏହାର ପ୍ରଚଳନ ଥିଲା । ଆଜିକାଲି ପତନ ସମୟରେ ମଧ୍ୟ ଦିଲ୍ଲୀ ଓ ଲକ୍ଷ୍ନୌ ଏହାର ଦୁଇଟି ପ୍ରଧାନ କେନ୍ଦ୍ର ହୋଇ ରହିଛି । ପାରିପାର୍ଶ୍ୱିକ ଅବସ୍ଥା ସହିତ ନିଜକୁ ଚଳାଇ ନେବାର ଏକ ଅପୂର୍ବ କ୍ଷମତା କାଶ୍ମୀର ବ୍ରାହ୍ମଣମାନଙ୍କର ଥିଲା । ସେମାନେ ଭାରତରେ ସମତଳ ଭୂମିକୁ ଆସି ଭାରତୀୟ ଓ ପାରସ୍ୟ ସଂସ୍କୃତିର ପ୍ରାଧାନ୍ୟ ଲାଭ କରୁଛି ଦେଖି ଏହା ଗ୍ରହଣ କରିଥିଲେ ଏବଂ ତାଙ୍କ ଭିତରୁ ଅନେକ ଉର୍ଦ୍ଦୁ ଓ ପାର୍ସି ପଣ୍ଡିତ ବି ହୋଇଥିଲେ । ପରେ ଯେତେବେଳେ ପ୍ରଚଳିତ ପ୍ରଥାର ପରିବର୍ତ୍ତନ ହୋଇ ଇଂରେଜ ଓ ଇଉରୋପୀୟ ସଂସ୍କୃତି ଶିକ୍ଷା କରିବା ଦରକାର ପଡ଼ିଲା, ସେତେବେଳେ ମଧ୍ୟ ସେହିପରି ଦ୍ରୁତ ବେଗରେ ତାହା ଗ୍ରହଣ କରିନେଲେ । ଆଜି ମଧ୍ୟ କାଶ୍ମୀରୀ ବ୍ରାହ୍ମଣଙ୍କ ଭିତରେ ପାର୍ସି ଭାଷାରେ ଅନେକ ସୁପଣ୍ଡିତ ଅଛନ୍ତି । ସେମାନଙ୍କ ଭିତରୁ ସାର୍ ତେଜ ବାହାଦୁର ସାପ୍ରୁ ଓ ରାଜା ନରେନ୍ଦ୍ରନାଥଙ୍କ ନାମ ଉଲ୍ଲେଖଯୋଗ୍ୟ ।

ମୋ ପିତା ଓ ହକିମ ସାହେବଙ୍କ ଭିତରେ ଅନେକ ସାମଞ୍ଜସ୍ୟ ଥିଲା—ଏପରି ପୁରାତନ ପରିବାର ସମ୍ପର୍କ ବି ସେମାନେ ବାହାର କଲେ । ସେମାନେ ଖୁବ୍ ଅନ୍ତରଙ୍ଗ ବନ୍ଧୁ ହୋଇ ଉଠିଲେ—ପରସ୍ପରକୁ 'ଭାଇ-ସାହେବ' ବୋଲି ସମ୍ବୋଧନ କରୁଥିଲେ । ତାଙ୍କ ବନ୍ଧନରେ ରାଜନୈତିକ ବିଶେଷ କାର୍ଯ୍ୟ କରି ନ ଥିଲା । ଘରୋଇ ବ୍ୟବହାରରେ ହକିମଜୀ ବଡ଼ ରକ୍ଷଣଶୀଳ ଥିଲେ; ସେ କମ୍ପା ପରିବାର ପୁରାତନ ଅଭ୍ୟାସ ଛାଡ଼ିପାରି ନ ଥିଲେ । ତାଙ୍କ ପରିବାରରେ ଯେପରି କଠୋର ପର୍ଦ୍ଦା ପ୍ରଥା ପ୍ରଚଳିତ ଥିଲା, ତାହା ମୁଁ ଆଉ କେଉଁଠି ଦେଖିନାହିଁ । ଅଥଚ ହାକିମଜୀଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, ନାରୀଜାତି ସ୍ୱାଧୀନ ନ ହେଲେ କୌଣସି ଦେଶ ଉନ୍ନତି କରିପାରିବ ନାହିଁ । ସେ ମୋତେ ଏ କଥା କହି ତୁର୍କୀର

ସ୍ତ୍ରୀଲୋକମାନେ ସ୍ୱାଧୀନତା ସଂଗ୍ରାମରେ କପରି ଭାଗ ନେଉଥିଲେ, ତାହାର ପ୍ରଶଂସା କରୁଥିଲେ । ସେ କହୁଥିଲେ, କେବଳ ତୁର୍କୀର ନାରୀଜାତିଙ୍କ ସକାଶେ କେମାଲ୍‌ପାଶା କୃତଜ୍ଞଲାଭ ହେଲେ ।

ହକିମ ଅଜିମଲ୍ ଖାଁଙ୍କ ମୃତ୍ୟୁ କଂଗ୍ରେସ ଉପରେ ଏକ ଗୁରୁତର ଆଘାତ ସ୍ୱରୂପ ହେଲା । କଂଗ୍ରେସର ଜଣେ ଦୃଢ଼ ସମର୍ଥକ ଅନ୍ତର୍ହିତ ହୋଇଗଲେ । ଆମେ ଦିଲ୍ଲୀକୁ ଗଲାବେଳେ ସର୍ବଦା ଏକ ଅଭାବ ଅନୁଭବ କରୁ । ହକିମଜୀଙ୍କ ଯୋଗୁଁ ଓ ବଲ୍‌ମାରଣରେ ତାଙ୍କ ଘର ଯୋଗୁଁ ଦିଲ୍ଲୀ ସହର ସହିତ ଘନିଷ୍ଠ ସମ୍ପର୍କ ଥିଲା ।

ରାଜନୀତି ହିସାବରେ ୧୯୨୮ ରେ ଦେଶସାରା କାର୍ଯ୍ୟ ପୂର୍ଣ୍ଣ ହୋଇଥିଲା । ଏକ ନୂଆ ପ୍ରେରଣା ଲୋକମାନଙ୍କୁ ଅଗ୍ରସର କରାଇଲା ଏବଂ ବିଭିନ୍ନ ଦଳ ମଧ୍ୟରେ ସମାନ ପରିମାଣରେ ଏକ ଚାଞ୍ଚଲ୍ୟ ଦୃଷ୍ଟିଗୋଚର ହେଲା । ସମ୍ଭବତଃ ମୋର ଏ ଦେଶରୁ ଦୀର୍ଘ ଅନୁପସ୍ଥିତି ସମୟରେ ଏହି ପରିବର୍ତ୍ତନ ଆରମ୍ଭ ହୋଇଥିଲା—ଫେରିଆସି ମୋତେ ଏହା ପ୍ରଚୁର ପରିବର୍ତ୍ତନ ପରି ମନେ ହେଲା । ୧୯୨୬ ମସିହାରେ ଭାରତ ନୀରବ ଓ ନିସ୍ପନ୍ଦ ଥିଲା; ବୋଧହୁଏ ୧୯୧୯-୧୯୨୨ ଅବସାଦରୁ ସମ୍ପୂର୍ଣ୍ଣରୂପେ ମୁକ୍ତି ପାଇ ନ ଥାଏ; ୧୯୨୮ ମସିହାରେ ଭାରତ ନୂତନ ସକ୍ରିୟ ହୋଇ ଅବରୁଦ୍ଧ ଶକ୍ତିରୁ ଜାଗ୍ରତ ହେଲା । ପ୍ରତ୍ୟେକ ସ୍ଥାନରେ ଏହାର ପ୍ରମାଣ ମିଳିଲା; କାରଖାନା ଶ୍ରମିକ, କୃଷକ, ମଧ୍ୟବିତ୍ତ ଶ୍ରେଣୀର ଯୁବକ ଏବଂ ଶିକ୍ଷିତ ଲୋକମାନଙ୍କ ମଧ୍ୟରେ ଏହା ଦେଖାଗଲା ।

ଶ୍ରମିକ ଆନ୍ଦୋଳନ ଖୁବ୍ ବୃଦ୍ଧି ପାଇଥିଲା ଏବଂ ୭।୮ ବର୍ଷ ପୂର୍ବେ ଗଢ଼ା ହୋଇଥିବା ନିଖିଳଭାରତ ଟ୍ରେଡ଼ ୟୁନିୟନ କଂଗ୍ରେସ ଖୁବ୍ ଏକ ଦୃଢ଼ ଓ ପ୍ରତିନିଧିମୂଳକ ଅନୁଷ୍ଠାନ ହୋଇ ଉଠିଥିଲା । ଖାଲି ଯେତେ ଯାହାର ସଂଖ୍ୟା ଏବଂ ସଂଗଠନ ବୃଦ୍ଧି ପାଉଥିଲା, ତାହା ନୁହେଁ, ମତବାଦରେ ମଧ୍ୟ ଏହା ଅଧିକ ଉଗ୍ର ଓ ଚରମପନ୍ଥୀ ହେଉଥିଲା ।

ଘନ ଘନ ଧର୍ମଘଟ ହେଉଥିଲା ଏବଂ ଶ୍ରେଣୀଚୈତନ୍ୟ ଜାଗ୍ରତ ହେବାକୁ ଲାଗିଲା ଏବଂ ରେଳୱାଇ ଶ୍ରମିକମାନେ ଭଲରୂପେ ସଙ୍ଗଠିତ ହୋଇଥିଲେ ଏବଂ ଏମାନଙ୍କ ଭିତରେ ବମ୍ବେର ଗିର୍ଣ୍ଣି କାମଗାର ଇଉନିୟନ ଏବଂ ଜି. ଆଇ. ପି. ରେଳୱାଇ ଇଉନିୟନ ଅତ୍ୟନ୍ତ ଦୃଢ଼ ଓ ଉନ୍ନତ ସଙ୍ଘ ଥିଲା। ଶ୍ରମିକ ସଙ୍ଗଠନ ବଢ଼ିବା ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ଦେଶର ଆଭ୍ୟନ୍ତରୀଣ କଳହ ଓ ବିବାଦର ଧାରା ବି ତାହା ସହିତ ଆସିଥିଲା ଏବଂ ଶ୍ରମିକ ଆନ୍ଦୋଳନ ସ୍ଥାପିତ ହୋଇଛି କି ନାହିଁ ଏପରି ଅବସ୍ଥାରେ ମତଭେଦ ହୋଇ ବିରୋଧୀ ଦଳସବୁ ସୃଷ୍ଟି ହୋଇଥିଲା। କେତେକ ଦ୍ୱିତୀୟ ଇଣ୍ଟରନେସନାଲ ଏବଂ କେତେକ ତୃତୀୟ ଇଣ୍ଟରନେସନାଲକୁ ମାନିଲେ। କେତେକଙ୍କ ଦୃଷ୍ଟିକୋଣ ସଂସ୍କାରମୂଳକ ଏବଂ କେତେକ ବିପ୍ଳବୀ ଥିଲେ ଏବଂ ଆମୂଳ ପରିବର୍ତ୍ତନ ଚାହୁଁଥିଲେ। ଏମାନଙ୍କ ମଝିରେ ମଧ୍ୟ ଅନେକ ମତ ଓ ପ୍ରକାରର ଲୋକ ଥିଲେ ଏବଂ ସମସ୍ତ ଗଣ ଅନୁଷ୍ଠାନରେ ଯେଉଁ ଦୁର୍ଭାଗ୍ୟ ଘଟେ, ଏଥିରେ ବି ସୁବିଧାବାଦ ପଶିଥିଲା।

କୃଷକମାନଙ୍କ ଭିତରେ ମଧ୍ୟ ଚୈତନ୍ୟ ଜାତ ହେଲା। ଯୁକ୍ତପ୍ରଦେଶ ବିଶେଷତଃ ଅଯୋଧ୍ୟାରେ ଏହା ଅଧିକ ଦୃଷ୍ଟିଗୋଚର ହେଲା—ଏଠାରେ କୃଷକମାନେ ବଡ଼ ବଡ଼ ମିଛିଲ କରି ଅନ୍ୟାୟର ପ୍ରତିବାଦ କଲେ। ଦେଖାଗଲା ଯେ, ନୂତନ ଅଯୋଧ୍ୟା ପ୍ରଜାସ୍ୱତ୍ୱ ଆଇନରେ ପ୍ରଜାଙ୍କୁ ଜୀବନବ୍ୟାପୀ ଜମିରେ ମାଲିକାନା ସ୍ୱତ୍ୱ ଦିଆଯାଇ ଥିଲେ ସୁଦ୍ଧା ତାଙ୍କ ଅବସ୍ଥାରେ କୌଣସି ପରିବର୍ତ୍ତନ ହେଲା ନାହିଁ। ସରକାର ଗୁଜରାଟରେ ରାଜସ୍ୱ ବଢ଼ାଇବାକୁ ଚେଷ୍ଟା କରିବାରୁ ସେଠାର ସରକାର ଓ କୃଷକଙ୍କ ମଧ୍ୟରେ ବଡ଼ ଆକାରରେ ଏକ ବିବାଦ ଜାତ ହୋଇଥିଲା। ଗୁଜରାଟ ହେଉଛି ରୈୟତୱାରୀ ଅଞ୍ଚଳ; ଅର୍ଥାତ୍ କୃଷୀ ଏଠାରେ ଜମିର ମାଲିକ ଏବଂ ସରକାର ପ୍ରତ୍ୟକ୍ଷ ଭାବରେ ସେମାନଙ୍କଠାରୁ ରାଜସ୍ୱ ଅସୁଲ କରେ। ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ନେତୃତ୍ୱରେ ବର୍ଦ୍ଦୋଲିରୁ ସତ୍ୟାଗ୍ରହ ସଂଗ୍ରାମ ଆରମ୍ଭ ହେଲା। ଏହା ଖୁବ୍ ସଫଳ ହେଲା ଏବଂ ସାରା ଭାରତରେ ଏହାର

ପ୍ରଶଂସା ଶୁଣାଗଲା । ଏହା ସମଗ୍ର ଭାରତର କୃଷକମାନଙ୍କ ଉପରେ ଯେପରି ପ୍ରଭାବ ପକାଇଲା, ସେଇଥିପାଇଁ ଏହାର ପ୍ରକୃତ ସଫଳତା ଜନ୍ମିବାକୁ ହେବ । ବର୍ଦ୍ଧୋଲୀ ଭାରତୀୟ କୃଷକର ଆଶା, ବଳ ଓ ଭରସାର ପ୍ରତୀକ ଓ ଚିହ୍ନ ହେଲା ।

୧୯୨୮ ମସିହାରେ ଭାରତରେ ଆଉ ଏକ ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିଲା — ଯୁବକ ଆନ୍ଦୋଳନ । ସବୁଠାରେ ଯୁବକ ସମିତି ଗଠିତ ହେଲା, ଯୁବକ ସମ୍ମିଳନୀମାନ ହେଲା । ଏହା ନାନା ଗୋଷ୍ଠୀର ସମଷ୍ଟି ହୋଇଥିଲା । ଅର୍ଦ୍ଧ-ଧାର୍ମିକ ଦଳଠାରୁ ଆରମ୍ଭ କରି ଚରମ ମତବାଦ ଓ କୌଶଳ-ମଧ୍ୟ ଆଲୋଚନା ହେଉଥିଲା । ମାତ୍ର ଯେଉଁ ଗୁରୁତ୍ୱ ଆନ୍ଦୋଳନ ଯେପରି ଏବଂ ଯାହା ଆନ୍ତର୍ଜାତିକରେ ହେଉଥାଉ ପଛକେ ସାଧାରଣତଃ ଏହି ଯୁବକ ସମିତିମାନଙ୍କରେ ତତ୍କାଳୀନ ଜୀବନ୍ତ ସାମାଜିକ ଓ ଅର୍ଥନୈତିକ ସମସ୍ୟାର ଆଲୋଚନା ହେଉଥିଲା ଏବଂ ଆମୂଳଚୂଳ ପରିବର୍ତ୍ତନ ସେମାନେ ଦାବି କରୁଥିଲେ ।

କେବଳ ରାଜନୀତି ଦୃଷ୍ଟିରୁ ଦେଖିଲେ ସାଇମନ କମିଶନ ବର୍ଜନ ଏବଂ (ବର୍ଜନର ରଚନାତ୍ମକ ଅଂଶ ସର୍ବଦଳ ସମ୍ମିଳନୀ ଚେଷ୍ଟାର) ଉଲ୍ଲେଖଯୋଗ୍ୟ ଘଟଣା । ଏହି ବର୍ଜନରେ ଲିବରାଲ ଦଳ କଂଗ୍ରେସ ସହିତ ସହଯୋଗ କଲେ ଏବଂ ତାହା ଅତ୍ୟନ୍ତ ସଫଳ ହୋଇଥିଲା । କମିଶନ ଯେଉଁଠାକୁ ଗଲା, ସେଠାରେ ତାର ବିରୋଧୀ ଜନତା ପ୍ରବଳ "ସାଇମନ୍ ଫେରିଯାଅ" ବୋଲି ଚିତ୍କାର କରିଥିଲେ । ଏହିରୂପେ ଭାରତର ଜନସାଧାରଣଙ୍କ ଭିତରୁ ଅଧିକାଂଶ ଖାଲି ଯେ ସାର୍ ଜନ ସାଇମନଙ୍କ ନାମ ସହିତ ପରିଚିତ ହୋଇଥିଲେ; ତାହା ନୁହେଁ, ଇଂରେଜୀ ଭାଷାର ଦୁଇଟି ଶବ୍ଦ—ଯେଉଁକଟି ତାଙ୍କୁ ଜଣାଥିଲା, ସାଇମନ୍ କମିସନର ସଭ୍ୟମାନେ ଏହି ଶବ୍ଦ ଶୁଣି ନିଶ୍ଚୟ ବିରକ୍ତ ହୋଇଥିବେ । ଗୋଟିଏ ଗଳ୍ପ ପ୍ରଚଳିତ ଅଛି ଯେ, ସେମାନେ ଦିଲ୍ଲୀରେ ୱେଷ୍ଟର୍ନ ହୋଟେଲରେ ଥିଲା ବେଳେ ଅନ୍ଧକାରରୁ ଏପରି ଧ୍ୱନି ଆସୁଥିବାର ଶୁଣିପାରୁ ଥିଲେ । ସମସ୍ତ

ନାଗାରେ, ଏପରିକି ଭାରତରେ ତାଙ୍କ ପନ୍ଥାରେ ଏପରି ଲାଗିଥିବାରୁ ସେମାନେ ଲକ୍ଷଣ ଭାବରେ ଉତ୍ତେଜିତ ହୋଇଯାଇଥିଲେ । ପ୍ରକୃତରେ କହିବାକୁ ଗଲେ ଭାରତରେ ସାମ୍ରାଜ୍ୟର ରାଜଧାନୀ ଦିଲ୍ଲୀ ସହରର ପଶ୍ଚିମ ଅଞ୍ଚଳରେ ଥିବା ବଲ୍ଲଭମାନଙ୍କର ଚଢ଼ାଇହିଁ ଗଣ୍ଡଗୋଳ କରୁଥିଲା ।

ଶାସନତନ୍ତ୍ରର ପ୍ରଧାନ ନୀତି ସ୍ଥିର କରିବାରେ ସର୍ବଦଳ ସମ୍ମିଳନୀର କୌଣସି ଅସୁବିଧା ହେଉନାହିଁ । ଏହା ଗଣତନ୍ତ୍ରମୂଳକ ପାର୍ଲିମେଣ୍ଟାରୀ ପଦ୍ଧତି ଅନୁସାରେ ହେବ ଏବଂ ଯେ କୌଣସି ଲୋକ ତାହା କରିପାରେ । ପ୍ରକୃତ ଅସୁବିଧା ଏବଂ ଏକମାତ୍ର ଅସୁବିଧା ସାମ୍ପ୍ରଦାୟିକତା ବା ସଂଖ୍ୟା-ଲଘିଷ୍ଠ ସମସ୍ୟାକୁ ଉଠୁଥିଲା । ସମ୍ମିଳନୀରେ ସମସ୍ତ ଚରମ ସାମ୍ପ୍ରଦାୟିକ ଅନୁଷ୍ଠାନର ପ୍ରତିନିଧିଥିବାରୁ ଗୋଟାଏ ଚୂକ୍ତିନାମାରେ ପହଞ୍ଚିବା ଅତ୍ୟନ୍ତ କଷ୍ଟକର ହୋଇ ପଡ଼ିଲା । ଏହା ଯେପରି ସେହି ପୁରାତନ ଓ କ୍ଷୁଦ୍ର ଏକତା ସମ୍ମିଳନୀର ପୁନରଭିନୟ ମାତ୍ର । ମୋ ପିତା ବସନ୍ତ କାଳରେ ୟୁରୋପରୁ ଫେରି ଏହି ସମ୍ମିଳନୀ କାର୍ଯ୍ୟରେ ଆଗ୍ରହୀ ହେଲେ । ଶେଷକୁ ବହୁତ ଚେଷ୍ଟାରେ ଗୋଟିଏ ଶାସନବିଧାନର ଚିଠା କରିବା ଏବଂ ସାଂପ୍ରଦାୟିକ ସମସ୍ୟା ସମ୍ବନ୍ଧରେ ସମ୍ପୂର୍ଣ୍ଣ ରିପୋର୍ଟ କରିବା ନିମନ୍ତେ ମୋର ପିତାଙ୍କୁ ଚେୟାରମ୍ୟାନ କରି ଗୋଟିଏ ଛୋଟ କମିଟି ନିଯୁକ୍ତ ହେଲା । ଏହି କମିଟିକୁ ନେହରୁ କମିଟି କୁହାଯାଇଥିଲା ଏବଂ ରିପୋର୍ଟ ନାମ ବି ନେହରୁ ରିପୋର୍ଟ ହେଲା । ସାର୍ ତେଜବାହାଦୁର ସାପ୍ରୁ ଏହି କମିଟିର ଜଣେ ସଭ୍ୟ ଥିଲେ ଏବଂ ରିପୋର୍ଟରେ ତାଙ୍କର ବି ଦାୟିତ୍ୱ ଥିଲା ।

ମୁଁ ଏ କମିଟିର ସଭ୍ୟ ନ ଥିଲି; ମାତ୍ର କଂଗ୍ରେସ ସମ୍ପାଦକ ରୂପେ ମୋର ଅନେକ କାର୍ଯ୍ୟ କରିବାର ଥିଲା । ମୁଁ ଏକ ଅଦ୍ଭୁତ ଅବସ୍ଥାରେ ପଡ଼ିଥିଲି । କାରଣ କ୍ଷମତାପ୍ରାପ୍ତି ଅସଲ ପ୍ରଶ୍ନ ହୋଇ ରହିଗଲା ବେଳେ ଏପରି କାଗଜ କଲମରେ ଶାସନ ବିଧାନ ଗଢ଼ିବା ସମ୍ପୂର୍ଣ୍ଣ ନିଷ୍ଫଳ କାର୍ଯ୍ୟ-ବୋଲି ମୁଁ ବୋଧ କଲି । ଆଉ ଏକ ଅସୁବିଧା ହେଉଛି—ଏହି ମିଶ୍ରିତ କମିଟିର ଲକ୍ଷ୍ୟ ବି ସୀମାବଦ୍ଧ ଥିଲା—ଔପନିବେଶିକ ସ୍ୱାଧୀନତା

ଶାସନ କମ୍ପା ତାହାଠାରୁ କମ ପାଇବା ତାହାର ଲକ୍ଷ୍ୟ ଥିଲା । ସାମ୍ପ୍ରଦାୟିକ ସମସ୍ୟାର ଏକ ସମାଧାନ ଯଦିବା ଏଥିରେ ସମ୍ଭବ ହୋଇପାରେ, ଏଥକ ଯୋଗୁଁ ମୁଁ ଏହାକୁ ପ୍ରକୃତରେ ଗୁରୁତ୍ୱ ଦେଉଥିଲି । କୌଣସି ଚୁକ୍ତି ବା ଘୋଷଣାନାମରେ ଏହି ସମସ୍ୟାର ସ୍ଥାୟୀ ସମାଧାନରେ ମୋର ବିଶ୍ୱାସ ନ ଥିଲା—କେବଳ ସାମାଜିକ ଓ ଅର୍ଥନୀତିକ ସମସ୍ୟା ଆଡ଼କୁ ଗତି କଲେ ଏହାର ସମାଧାନ ସମ୍ଭବ । ମାତ୍ର ପ୍ରଚୁର ପରିମାଣରେ ଲୋକ ଗ୍ରହଣ କରିଥିଲେ, ଗୋଟାଏ ଅସ୍ଥାୟୀ ଚୁକ୍ତିର ସମ୍ଭାବନା ଥିଲା । ତାହା ଫଳରେ ପରିସ୍ଥିତି ବଦଳିଯିବ ଏବଂ ପରେ ସମସ୍ୟାକୁ ଅନ୍ୟ ଦିଗକୁ ନେଇ ଯାଇ ହେବ । ଏହି ହେତୁ ମୁଁ କମିଟିରେ କାର୍ଯ୍ୟରେ ବାଧା ଦେବାକୁ ଚାହିଁ ନଥିଲି ଏବଂ ମୋ ପକ୍ଷରେ ଯାହା ସମ୍ଭବ, କମିଟିକୁ ସାହାଯ୍ୟ ଦେଇଥିଲି ।

ସଫଳତା ପ୍ରାୟ ମିଳିଯିବା ପରି ହୋଇଥିଲା । କେବଳ ଦୁଇ ତିନୋଟି ପ୍ରଶ୍ନ ସମାଧାନ ହେବାର ଥିଲା ଏବଂ ଏମାନଙ୍କ ଭିତରେ ପଞ୍ଜାବ ସମସ୍ୟାହିଁ ପ୍ରକୃତରେ ଗୁରୁତର ଥିଲା । ଏଠାରେ ହିନ୍ଦୁ, ମୁସଲମାନ ଶିଖ, ଏହି ତିନି ସମ୍ପ୍ରଦାୟର ସ୍ୱାର୍ଥ ସଶ୍ଳିଷ୍ଟ ଥିଲା । କମିଟି ପଞ୍ଜାବ ସମସ୍ୟା ଏକ ନୂତନ ଦୃଷ୍ଟି କୋଣରୁ ବିଚାର କଲେ ଏବଂ ଲୋକସଂଖ୍ୟା ଅନୁସାରେ ହିନ୍ଦୁ ପ୍ରାଧାନ୍ୟ, ମୁସଲମାନ ପ୍ରାଧାନ୍ୟ ଓ ଶିଖ ପ୍ରାଧାନ୍ୟ ଥିବା ଅଞ୍ଚଳକୁ ବିଭାଗ କଲେ । ମାତ୍ର ଏସବୁ ବୃଥା ହେଲା । ଉଭୟ ପକ୍ଷରେ ଭୟ ଓ ଅବିଶ୍ୱାସ ରହିଲା ଏବଂ ଆଉ ଯେତିକି ଆଗକୁ ଯାଇଥିଲେ ସମସ୍ୟାର ସମାଧାନ ହୋଇ ପାରିଥାନ୍ତା, କେହି ସେ ପର୍ଯ୍ୟନ୍ତ ଗଲେ ନାହିଁ ।

କମିଟିର ରିପୋର୍ଟ ବିଚାର କରିବା ନିମନ୍ତେ ଲକ୍ଷ୍ନୌରେ ସର୍ବଦଳ ସମ୍ମିଳନୀ ବସିଲା । ଆମ ଭିତରୁ କେତେକ ପୁଣି ଗୋଲକଧନ୍ଦାରେ ପଡ଼ିଲୁ । ଯଦି କୌଣସି ପ୍ରକାର ସାମ୍ପ୍ରଦାୟିକ ସମସ୍ୟାର ଗୋଟାଏ ସମାଧାନ ହୋଇପାରି ପାରେ, ସେଥିରେ ଆମର ପ୍ରତିବନ୍ଧକ ହେବା ଉଚିତ

ଥିଲେ । ତଥାପି ସ୍ୱାଧୀନତା ପ୍ରଶ୍ନରେ କମିଟି ସମ୍ପୂର୍ଣ୍ଣ ଏକମତ ହେବାକୁ ଆମେ ପ୍ରସ୍ତୁତ ନଥିଲୁ । ଆମେ କହିଲୁ ଏ ସମସ୍ୟା ସମ୍ବନ୍ଧରେ ପ୍ରତ୍ୟେକ ଅନୁଷ୍ଠାନକୁ ତାର ସ୍ୱେଚ୍ଛାନୁସାରେ କାର୍ଯ୍ୟ କରିବାର ସ୍ୱାଧୀନତା ରହିଥାଉ । କଂଗ୍ରେସ ସ୍ୱାଧୀନତା ଦାବି କରୁ ଏବଂ ମଡ଼ରେଟ ଦଳ ଔପନିବେଶିକ ସାମ୍ରାଜ୍ୟ ଶାସନ ପାଇଁ ଆନ୍ଦୋଳନ କରନ୍ତୁ । ମାତ୍ର ମୋର ପିତା ରିପୋର୍ଟରେ ମତ ଦେଇଥିଲେ । ସେ ଏଥିରେ ରାଜି ହେଲେ ନାହିଁ !, ସେ କୌଣସି ଅବସ୍ଥାରେ ଏଥିରେ ସହମତ ହୋଇ ନ ଥାନ୍ତେ । ସେହି ସମ୍ମିଳନୀରେ ସ୍ୱାଧୀନତାବାଦୀଙ୍କ ଦଳ ବି ଥିଲା । ସେଠି ସମ୍ମିଳନୀରେ ସ୍ୱାଧୀନତା ଲକ୍ଷ୍ୟକୁ କମାଇ ଦେବ ତାହା ସହିତ ଆମେ ସମ୍ପର୍କ ରଖିପାରିବୁ ନାହିଁ ବୋଲି ଜଣାଇ ଦେଇ ସ୍ୱାଧୀନତା ବାଦୀମାନଙ୍କ ତରଫରୁ ସମ୍ମିଳନୀରେ ଏକ ବକ୍ତୃତା ଦେବା ନିମନ୍ତେ ମୋତେ କୁହାଗଲା । ଆମେ ପରିଷ୍କାର ଭାବେ ଜଣାଇ ଦେଲୁ ଯେ, ଏହା ସତ୍ତ୍ୱେ ଆମେ କମିଟି କାର୍ଯ୍ୟରେ ଆଦୌ ପ୍ରତିବନ୍ଧକ ହେବୁ ନାହିଁ, କାରଣ ଆମେ ସାମ୍ପ୍ରଦାୟିକ ସମସ୍ୟା ସମାଧାନରେ ବାଧା ଦେବାକୁ ଚାହୁଁ ନା ।

ଏପରି ଏକ ପ୍ରଧାନ ସମସ୍ୟାରେ ଆମର ପନ୍ଥା ଖୁବ କାର୍ଯ୍ୟପ୍ରଦ ନ ଥିଲା—ଏହା ଏକ ନାସ୍ତିସୂଚକ ଲକ୍ଷଣ । ସେହିଦିନ "ଇଣ୍ଡିପେଣ୍ଡେନ୍ସ ଫର ଇଣ୍ଡିଆ ଲିଗ୍" ବା ସ୍ୱାଧୀନତା ଲାଗି ଭାରତୀୟ ସଂଘ ସ୍ଥାପନ କରି ଆମେ ଏହାର ନିର୍ଦ୍ଦିଷ୍ଟ ରୂପ ଦେଲୁ ।

ସର୍ବଦଳ ସମ୍ମିଳନୀ ଅଯୋଧ୍ୟାର ତାଲୁକଦାରଙ୍କ ଅନୁରୋଧ କ୍ରମେ ପ୍ରସ୍ତାବିତ ମୌଳିକ ଦାବୀମାନଙ୍କରେ ତାଲୁକମାନଙ୍କରେ ତାଲୁକଦାରଙ୍କ ନ୍ୟସ୍ତସ୍ୱାର୍ଥ ସ୍ୱୀକାର କରି ଏକ ନୂତନ ଦଫା ସଂଯୋଗ କରିଦେଲେ । ଏଥିରେ ମୁଁ ବଡ଼ ମର୍ମାହତ ହେଲି । ଅବଶ୍ୟ ସେହି ଶାସନ ବିଧାନଟି ବ୍ୟକ୍ତିଗତ ସମ୍ପତ୍ତିକୁ ମୂଳଭିତ୍ତି କରି ଗଢ଼ା ହୋଇଥିଲା; ମାତ୍ର ଶାସନବିଧାନରେ ଅଧାସାମନ୍ତ ଜମିଦାରମାନଙ୍କରେ ସମ୍ପତ୍ତି ଉପରେ ବ୍ୟକ୍ତିଗତ ଅଧିକାର ସ୍ୱୀକାର କରିଦେବା ଏକ ଅତ୍ୟାଚାର ପରି ମୋର

ମନେହେଲା । ଏଥିରୁ ପରିଷ୍କାର ଜଣାପଡ଼ିଲା ଯେ, କଂଗ୍ରେସ ନେତୃମଣ୍ଡଳୀ ଏବଂ ଅଧିକାଂଶ ଯେ କଂଗ୍ରେସୀ ଲୋକେ ନିଜ ଶ୍ରେଣୀଗତ ସାମାଜିକ ଭିତ୍ତିରେ ପ୍ରଗତିପନ୍ଥୀଦଳଙ୍କ ଅପେକ୍ଷା ଜମିଦାରମାନଙ୍କ ସ୍ୱାର୍ଥପ୍ରତି ବେଶି ଦୃଷ୍ଟି ଦେଉଛନ୍ତି । ଆମର ନେତାଙ୍କଠାରୁ ମୋର ଦୃଷ୍ଟିକୋଣ ଭିତରେ ଏକ ବିରାଟ ପାର୍ଥକ୍ୟ ମୁଁ ଦେଖିପାରିଲି ଏବଂ ଏପରି ଅବସ୍ଥାରେ କଂଗ୍ରେସର ସାଧାରଣ ସମ୍ପାଦକ ଭାବରେ ରହିବା ନିରର୍ଥକ ବୋଧ ହେଲା । ଭାରତ ସ୍ୱାଧୀନତା ସଙ୍ଘର ଜଣେ ସ୍ଥାପୟିତା ବୋଲି କାରଣ ଦର୍ଶାଇ ମୁଁ ସମ୍ପାଦକ ପଦରୁ ଇସ୍ତଫା ଦେଲି । ମାତ୍ର କାର୍ଯ୍ୟକାରୀ ସମିତି ଏଥିରେ ରାଜି ହେଲେ ନାହିଁ (ସୁଭାଷ ବୋଷ ମଧ୍ୟ ସେହି କାରଣରୁ ଇସ୍ତଫା ଦେଇଥିଲେ, ତାହା ବି ଗୃହୀତ ହେଲା ନାହିଁ) ଏବଂ ଆମେ ସେ ସଙ୍ଘ ଗଢ଼ିଲେ କଂଗ୍ରେସ ମଧ୍ୟରେ କୌଣସି ବିରୋଧ ହେବ ନାହିଁ ବୋଲି କୁହାଗଲା । ବାସ୍ତବିକ୍ କଂଗ୍ରେସ ଆଗରୁ ସ୍ୱାଧୀନତା ସମ୍ବନ୍ଧରେ ଘୋଷଣା କରି ସାରିଥାଏ । ଏଥିରେ ପୁଣି ମୁଁ ସମ୍ମତ ହେଲି । ମୋର ଇସ୍ତଫା ସମ୍ବନ୍ଧରେ ମୋତେ ସେଥିରୁ ନିବର୍ତ୍ତାଇବା ଦେଖି ସହଜ ଭେଗ ମୁଁ ଅବାକ୍ ହେଲି । ଅନେକ ସମୟରେ ଏପରି ହୋଇଥିଲା ଏବଂ କୌଣସି ପନ୍ଥା ଠିକ୍ ନ ହେବାଠାରୁ ପସନ୍ଦ କରୁ ନ ଥିବାରୁ ଗୋଟାଏ କଣ୍ଟି ଜଳନା କରି ଆମେ ପଡ଼ି ରହିଥିଲୁ ।

ଗାନ୍ଧିଜୀ ଏହି ସର୍ବଦଳ ସମ୍ମିଳନୀ ବା ତା'ର କମିଟି ବୈଠକରେ କୌଣସି ଅଂଶ ଗ୍ରହଣ କରି ନ ଥିଲେ । ଏପରିକି ସେ ଲକ୍ଷ୍ନୌ ସମ୍ମିଳନୀରେ ଉପସ୍ଥିତ ସୁଦ୍ଧା ହୋଇ ନ ଥିଲେ ।

ଏହିଭିତରେ ସାଇମନ କମିସନ ଭାରତ ଭ୍ରମଣରେ ବୁଲୁଥାଏ । ସବୁଠାରେ ଲୋକେ କଳାପତାକା ଦେଖାଇ "ଫେରିଯାଅ" "ଫେରିଯାଅ" କହୁଥାନ୍ତି । ସମୟ ସମୟରେ ପୁଲିସ ଓ ଜନତା ଭିତରେ ମଧ୍ୟ ସଂଘର୍ଷ ହେଉଥାଏ । ଲାହୋରରେ ଅବସ୍ଥା ଗୁରୁତର ହେଲା ଏବଂ ସମଗ୍ର ଦେଶରେ ଏକ କ୍ରୋଧର ଶିଖା ଜଳି ଉଠିଲା । ସେଠାରେ ଲାଲା

ଲାଜ୍‌ପତ ରାୟଙ୍କ ନେତୃତ୍ୱରେ ସାଇମନ କମିସନ ବିରୋଧୀ ଶୋଭାଯାତ୍ରା ହୋଇଥିଲା । ସେ ସହସ୍ର ସହସ୍ର ଜନତାର ନେତାରୂପେ ରାସ୍ତାକଡ଼ରେ ଠିଆ ହୋଇଥିବାବେଳେ ଜଣେ ଯୁବକ ଇଂରେଜ—ପୋଲିସ କର୍ମଚାରୀ ତାଙ୍କୁ ଆକ୍ରମଣ କଲେ ଏବଂ "ବେଟନ"ରେ ପ୍ରହାର କଲେ । ଜନତା କିମ୍ବା ଲାଲାଜୀ କେହି କୌଣସି ପ୍ରକାର ହିଂସା କରି ନ ଥାନ୍ତି । ଏହା ସତ୍ତ୍ୱେ ସେମାନେ ଶାନ୍ତ ଶିଷ୍ଟ ଭାବରେ ଛିଡ଼ା ହୋଇଥିଲେ ସୁଦ୍ଧା ତାଙ୍କୁ ଓ ତାଙ୍କର ଅନେକ ସାଥୀଙ୍କୁ ପୁଲିସ ନିର୍ମମଭାବରେ ପ୍ରହାର କଲା । ସହରରେ ଯେ କେହି ଶୋଭାଯାତ୍ରାରେ ଯୋଗ ଦେଲେ, ପୁଲିସ ସହିତ ସଂଘର୍ଷ ହେବାର ଆଶଙ୍କା ବରାବର ରହୁଥାଏ । ଆମର ଶୋଭାଯାତ୍ରା ସମ୍ପୂର୍ଣ୍ଣରୂପେ ଶାନ୍ତିପୂର୍ଣ୍ଣ ହୋଇଥିଲେ ସୁଦ୍ଧା ଲାଲାଜୀ ଏପରି ବିପଦ ଘଟିବ ବୋଲି ଜାଣି ସେଠାକୁ ଯାଇଥିବେ ନିଶ୍ଚୟ । ତଥାପି ଯେପରି ପାଶବିକ-ରୂପେ ପ୍ରହାର କରାଗଲା; ସେଥିରେ ଭାରତର ଅସଂଖ୍ୟ ନରନାରୀ ମର୍ମାହତ ହେଲେ । ସେ ସମୟରେ ଲାଠିମାଡ଼ର ବେଶୀ ଅଭିଜ୍ଞତା ଆମର ହୋଇ ନ ଥାଏ ଏବଂ ବାରମ୍ବାର ପାଶବିକ ବ୍ୟବହାର ପାଇ ଆମର ଆତ୍ମାଭିମାନ ଜଡ଼ ହୋଇଯାଇ ନ ଥାଏ । ଆମର ଏକ ପ୍ରଧାନ ନେତା ଏବଂ ପଞ୍ଜାବର ସର୍ବାପେକ୍ଷା ଜନପ୍ରିୟ ନେତାଙ୍କ ପ୍ରତି ଏପରି ନିର୍ମମ ବ୍ୟବହାର ଦେଖି ସମଗ୍ର ଦେଶ ବିଶେଷତଃ ଉତ୍ତର ଭାରତରେ ଏକ କ୍ରୋଧ ଜାତ ହେଲା । ଆମେ ଏପରି ନିଃସହାୟ ଓ ଘୃଣ୍ୟ ଯେ, ଆମର ଜନପ୍ରିୟ ନେତାଙ୍କୁ ସୁଦ୍ଧା ରକ୍ଷା କରିପାରିଲୁ ନାହିଁ ।

ଲାଲାଜୀ ଅନେକ ଦିନରୁ ହୃଦରୋଗ ଭୋଗୁଥିଲେ । ଏ ମାଡ଼ ତାଙ୍କ ଛାତି ଉପରେ ପଡ଼ିବାରୁ ଏହି ଆଘାତ ତାଙ୍କ ପକ୍ଷରେ ଗୁରୁତର ହୋଇ ଉଠିଲା । ସମ୍ଭବତଃ ଏକ ସବଳ ସୁସ୍ଥ ଯୁବକ ପକ୍ଷରେ ଏହି ମାଡ଼ରେ କିଛି ହୋଇ ନ ଥାନ୍ତା; ମାତ୍ର ଲାଲାଜୀ ଯୁବକ ନ ଥିଲେ କିମ୍ବା ସୁସ୍ଥ ବି ନ ଥିଲେ । କେତେକ ସପ୍ତାହ ପରେ ତାଙ୍କର ଯେ ମୃତ୍ୟୁ ଘଟିଲା, ତାହା ଏହି ଦୈହିକ ଆଘାତ ଯୋଗୁଁ କି ଅନ୍ୟ କାରଣରୁ ହେଲା, ନିର୍ଦ୍ଦିଷ୍ଟରୂପେ କୁହାଯାଇ ପାରିବ ନାହିଁ । ତେବେ ତାଙ୍କ ଡାକ୍ତରମାନେ ମତ ଦେଲେ

ଯେ, ଏଥିପାଇଁ ତାଙ୍କର ମୃତ୍ୟୁ ଶୀଘ୍ର ହେଲା । ମାତ୍ର ମୋର ମନେହୁଏ, ଏହି ଶାରୀରିକ ଆଘାତ ସଙ୍ଗେ ସଙ୍ଗେ ଯେଉଁ ମାନସିକ ଆଘାତ ହୋଇଥିବ, ତାହା ଲାଲାଜୀଙ୍କ ମନରେ ଗଭୀର ବେଦନା ଜାତ କରିଥିବ । ସେ ଅତ୍ୟନ୍ତ କ୍ରୁଦ୍ଧ ଓ ବ୍ୟସ୍ତ ହୋଇଥିଲେ—ନିଜର ବ୍ୟକ୍ତିଗତ ଅପମାନ ପାଇଁ ନୁହେଁ—ଏହି ମାତ୍ର ଦ୍ୱାରା ସାରା ଦେଶପ୍ରତି ଯେପରି ଅପମାନ ଦିଆଗଲା, ସେ କଥା ଭାବି ।

ଭାରତର ଲୋକଙ୍କୁ ମଧ୍ୟ ଏହି ଜାତୀୟ ଅପମାନ କଥା ସ୍ପର୍ଶ କଲା । ଲାଲାଜୀଙ୍କର ମୃତ୍ୟୁ ସହିତ ଏହି ମାଡ଼ର ସମ୍ବନ୍ଧ ଥିବା ଅବଶ୍ୟମ୍ଭାବୀ । ଲାଲାଜୀଙ୍କର ମୃତ୍ୟୁ ସମ୍ବାଦ ପାଇବାମାତ୍ରେ ଦୁଃଖ ସଙ୍ଗେ ସଙ୍ଗେ କ୍ରୋଧ ଓ ଘୃଣା ଭାବ ମଧ୍ୟ ଜାଗ୍ରତ ହେଲା । ଏହି ଘଟଣାକୁ ମନେ ରଖିଲେ ଆମେମାନେ ପରବର୍ତ୍ତୀ ଘଟଣାମାନ ଏବଂ ଭଗତ୍ ସିଂହଙ୍କ କାର୍ଯ୍ୟ ଓ ସେ ଉତ୍ତର ଭାରତରେ ହଠାତ୍ କାହିଁକି ଏପରି ଲୋକପ୍ରିୟ ହୋଇ ଉଠିଥିଲେ, ତାହା ଭଲରୂପେ ବୁଝି ପାରିବା । କୌଣସି କାର୍ଯ୍ୟ କାହିଁକି ହୋଇଛି ଏବଂ ଏହା କିପରି ହେଲା, ସେଥିପ୍ରତି ଦୃଷ୍ଟି ନ ଦେଇ କୌଣସି ଲୋକ ବା ତାହାର କାର୍ଯ୍ୟକୁ ନିନ୍ଦା କରିଦେବା ଅତ୍ୟନ୍ତ ସହଜ । ଭଗତ୍ ସିଂ ପୂର୍ବରୁ ଭଲରୂପେ ଜଣା ନ ଥିଲେ, ସେ ଏକ ହିଂସା, ଆତଙ୍କପ୍ରଦ କାର୍ଯ୍ୟପାଇଁ ଲୋକପ୍ରିୟ ହୋଇ ନ ଥିଲେ । ପ୍ରାୟ ୩୦ ବର୍ଷ ହେଲା ଭାରତରେ ଆତଙ୍କବାଦୀମାନେ ଦେଖା ଦେଇଛନ୍ତି । ଭଗତ୍ ସିଂ ଯେପରି ଲୋକପ୍ରିୟ ହୋଇଥିଲେ, ତାହାର ଶତାଂଶ ବି କୌଣସି ଆତଙ୍କବାଦୀ ପାଇପାରି ନ ଥିଲେ—ଅବଶ୍ୟ ପ୍ରଥମାବସ୍ଥାରେ ବଙ୍ଗଳାରେ ଏହା ଟିକିଏ ଲୋକପ୍ରିୟ ହୋଇଥିଲା । ଏହା ଏକ କଠୋର ସତ୍ୟ, ଅସ୍ୱୀକାର କରିପାରି ପାରେନା । ଏହାକୁ ସ୍ୱୀକାର କରିବାକୁ ହେବ । ଆଉ ଏକ ଘଟଣା ସେହିପରି ସତ୍ୟ ହେଉଛି, ସମୟ ସମୟରେ ଆତଙ୍କବାଦ ଭାରତରେ ମୁଣ୍ଡ ଟେକିଥିଲେ ସୁଦ୍ଧା ଭାରତର ଯୁବକମାନଙ୍କୁ ଏହା ଦୀର୍ଘକାଳ ପାଇଁ ବାସ୍ତବରେ ଆକର୍ଷଣ କରି ନ ଥିଲା । ୧୫ ବର୍ଷ ଧରି ଅହିଂସା ଉପରେ ଜୋର ଦେବା ଫଳରେ ଭାରତର ଅବସ୍ଥାର ଅନେକ ପରିବର୍ତ୍ତନ ହୋଇଯାଇଛି ଏବଂ ରାଜନୀତିକ କାର୍ଯ୍ୟ ହିସାବରେ ଆତଙ୍କବାଦ ପ୍ରତି

ଜନସାଧାରଣ ଅଧିକତର ଉଦାସୀନ ଏପରିକି ବିରୋଧ ଭାବାପନ୍ନ ମଧ୍ୟ ହୋଇଛନ୍ତି । ସାଧାରଣତଃ ମଧ୍ୟବିତ୍ତ ଶ୍ରେଣୀ ଓ ଶିକ୍ଷିତ ଲୋକଙ୍କ ଭିତରୁ ଆତଙ୍କବାଦୀ ବାହାରନ୍ତି । ସେମାନେ ମଧ୍ୟ ହିଂସା ବିରୁଦ୍ଧରେ କଂଗ୍ରେସର ପ୍ରଚାର ଫଳରେ ବହୁ ପରିମାଣରେ ବଦଳି ଯାଇଥିଲେ । ସେମାନଙ୍କ ଭିତରେ ସକ୍ରିୟ ଏବଂ ଧୈର୍ଯ୍ୟହୀନ ଲୋକେ ଯେଉଁମାନେ ବିପ୍ଳବୀ କାର୍ଯ୍ୟର ଚିନ୍ତା କରନ୍ତି, ସେମାନେ ମଧ୍ୟ ଏବେ ଭଲଭାବେ ବୁଝିଲେଣି ଯେ ବିପ୍ଳବ ଆତଙ୍କବାଦ ଦ୍ୱାରା ହେବ ନାହିଁ । ଏହା ଏକ ଜରାଜୀର୍ଣ୍ଣ ଏବଂ ନିଷ୍ଫଳ ଉପାୟ ମାତ୍ର—ବରଂ ପ୍ରକୃତ ବୈପ୍ଳବିକ କାର୍ଯ୍ୟରେ ଏହା ଅନ୍ତରାୟ । ଆତଙ୍କବାଦ ଭାରତ ଏବଂ ଅନ୍ୟ ଦେଶମାନଙ୍କରେ ଲୋପ ପାଇବା ଅବସ୍ଥାରେ ଅଛି—ସରକାରୀ ଦମନ ଯୋଗୁଁ ନୁହେଁ, କାରଣ ଏଥିରେ ଏହା ଦବିଯାଇ କିଛିକ୍ଷଣ ବନ୍ଦ ହୋଇଯାଇପାରେ; ମାତ୍ର ଲୋପ ହୋଇ ପାରେ ନା – ମାତ୍ର ପୃଥିବୀବ୍ୟାପୀ ଘଟଣାବଳୀ ଏବଂ ମୌଳିକ କାରଣ ହେତୁ ଏପରି ହୋଇଛି । ଆତଙ୍କବାଦ ସାଧାରଣତଃ କୌଣସି ଦେଶର ବିପ୍ଳବ ମନୋଭାବର ଶୈଶବ ଅବସ୍ଥାରେ ସୂଚନା ଦିଏ । ସେହି ଅବସ୍ଥା ପାର ହୋଇଗଲେ ପ୍ରଥମ ଲକ୍ଷଣ ହିସାବରେ ଆତଙ୍କବାଦ ବି ଚାଲିଯାଏ । ସ୍ଥାନୀୟ କାରଣ ବା ବ୍ୟକ୍ତିଗତ ଦମନ ଯୋଗୁଁ କେତେବେଳେ କେବଳ ଏହାର ଉଦ୍‌ଗୀରଣ ହୋଇଥାଏ । ଭାରତ ସେ ଅବସ୍ଥା ଅତିକ୍ରମ କରିଛି ସନ୍ଦେହ ନାହିଁ ଏବଂ ସମୟ ସମୟରେ ହେଉଥିବା ଉଦ୍‌ଗୀରଣ ମଧ୍ୟ ବନ୍ଦ ହୋଇଯିବ । ଏହାର ଅର୍ଥ ଏହା ନୁହେଁ ଯେ ଭାରତର ସମସ୍ତ ଲୋକ ହିଂସା ଉପରୁ ବିଶ୍ୱାସ ହରାଇଛନ୍ତି । ଲୋକେ ଅନେକ ପରିମାଣରେ ବ୍ୟକ୍ତିଗତ ହିଂସା ଓ ଆତଙ୍କବାଦର ବିଶ୍ୱାସ ହରାଇଛନ୍ତି; ମାତ୍ର ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ ଭାବନ୍ତି ଯେ, ଅନ୍ୟ ଦେଶ ପରି ଆମ ଦେଶରେ ମଧ୍ୟ ଏପରି ଏକ ସମୟ ପହଞ୍ଚିବ, ଯେତେବେଳେ ସ୍ୱାଧୀନତା ପାଇବା ନିମନ୍ତେ ସଙ୍ଗଠିତ ହିଂସା ପନ୍ଥାର ଆବଶ୍ୟକତା ପଡ଼ିବ । ଏହା ବର୍ତ୍ତମାନ ସୁଦ୍ଧା ପୋଥିଗତ ହୋଇ ରହିଛି—ସମୟ ପଡ଼ିଲେ ଏହାର ପରୀକ୍ଷା ହେବ । ଏହାର ଆତଙ୍କବାଦୀ ଚିନ୍ତା ସହିତ କୌଣସି ସମ୍ପର୍କ ନାହିଁ ।

ଭଗତ୍ ସିଂ ଏକ ଆତଙ୍କବାଦୀ କାର୍ଯ୍ୟ କରିଥିବାରୁ ଲୋକପ୍ରିୟ ହୋଇ ନ ଥିଲେ, ମାତ୍ର ସେ ସେତେବେଳେ ଲାଲା ଲଜପତ୍ ରାୟଙ୍କ ସମ୍ମାନ ରକ୍ଷା କରିଥିବାରୁ ଏବଂ ସେହି ଜରିଆରେ ଏହି ଦେଶର ମର୍ଯ୍ୟାଦା ରକ୍ଷା କରିଥିବା ହେତୁ ଲୋକପ୍ରିୟ ହୋଇ ଉଠିଥିଲେ । ସେ ଏକ ପ୍ରତୀକ ହୋଇ ଉଠିଲେ । ତାଙ୍କର କାର୍ଯ୍ୟ ଲୋକେ ଭୁଲିଗଲେ; ପ୍ରତୀକଟି ମନେ ରହିଲା ଏବଂ କେତେକ ମାସ ପରେ ପଞ୍ଜାବର ପ୍ରତ୍ୟେକ ସହର ଓ ଗ୍ରାମରେ ଏବଂ କେତେକ ପରିମାଣରେ ସମଗ୍ର ଭାରତରେ ତାଙ୍କର ନାମ ପ୍ରତିଧ୍ୱନିତ ହେଲା । ତାଙ୍କ ସମ୍ବନ୍ଧରେ ଅସଂଖ୍ୟ ଗୀତ ବନ୍ଧା ହେଲା — ସେ ଯେପରି ଲୋକପ୍ରିୟ ହୋଇ ଉଠିଲେ, ତାହା ବାସ୍ତବିକ ଆଶ୍ଚର୍ଯ୍ୟଜନକ ।

ସାଇମନ କମିସନ ମାଡ଼ର କିଛି କାଳ ପରେ ଲାଲା ଲଜପତ୍ ରାୟ ଦିଲ୍ଲୀରେ ନିଖିଳ ଭାରତ କଂଗ୍ରେସ କମିଟିର ଏକ ବୈଠକରେ ଯୋଗ ଦେଇଥିଲେ । ତାଙ୍କ ଦେହରେ ଆଘାତ ଚିହ୍ନ ଥାଏ ଏବଂ ତାର କଷ୍ଟ ସେ ଭୋଗୁଥାଆନ୍ତି । ଲକ୍ଷ୍ନୌ ସର୍ବଦଳ ସମ୍ମିଳନୀ ପରେ ସେ ବୈଠକ ହୋଇଥିଲା ଏବଂ କୌଣସି ପ୍ରକାରରେ ସ୍ୱାଧୀନତା ସମସ୍ୟାର ଆଲୋଚନା ହେଉଥିଲା । କେଉଁ ନିର୍ଦ୍ଦିଷ୍ଟ କାରଣରୁ ଏହି ସମସ୍ୟା ଉଠିଲା, ମୋର ମନେ ନାହିଁ, ମାତ୍ର ମୋର ମନେ ଅଛି ମୁଁ ଏକ ଦୀର୍ଘ ବକ୍ତୃତା ଦେଇ କହିଥିଲି ଯେ, ବର୍ତ୍ତମାନ ବେଳ ଆସି ପହଞ୍ଚିଛି, କଂଗ୍ରେସ ହୁଏତ ଆମୂଳ ସାମାଜିକ ଓ ରାଜନୀତିକ ପରିବର୍ତ୍ତନ ଚାହୁଁଥିବା ବିପ୍ଳବାତ୍ମକ ଦୃଷ୍ଟିକୋଣ ଗ୍ରହଣ କରିବ, ନଚେତ୍ ସଂସ୍କାରମୂଳକ ଲକ୍ଷ୍ୟ ଓ ପନ୍ଥା ଗ୍ରହଣ କରିବ । ଏହି ବକ୍ତୃତା ସେପରି ଗୁରୁତ୍ୱପୂର୍ଣ୍ଣ ନ ଥିଲା, ମୁଁ ଏହାକୁ ଭୁଲି ଯାଇଥାନ୍ତି — ମାତ୍ର ଲାଲାଜୀ କଂଗ୍ରେସରେ ଏହାର ଉତ୍ତର ଦେବାକୁ ଯାଇ ଏହାର କେତେକାଂଶର ବିରୋଧ କରିଥିବାରୁ ମୋର ଏହା ମନେ ଅଛି । ବ୍ରିଟିଶ 'ଲେବର ପାର୍ଟି' କୁ ଆମର କିଛି ଆଶା କରିବା ଠିକ୍ ନୁହେଁ ବୋଲି ସେ ସତର୍କବାଣୀ ଶୁଣାଇଥିଲେ । ସେ ସତର୍କବାଣୀ ମୋର ଦରକାର ନ ଥିଲା । କାରଣ ମୁଁ ବ୍ରିଟିଶ ଶ୍ରମିକ ଦଳର ନେତୃତ୍ୱର ସମର୍ଥକ ନ ଥିଲି । ଆମେ ଯଦି ଭାରତର ସ୍ୱାଧୀନତା ସଂଗ୍ରାମ ସମର୍ଥ ହୋଇଥାଆନ୍ତେ,

ସାମ୍ରାଜ୍ୟ ବିରୋଧୀ କାର୍ଯ୍ୟ ବା ସାମ୍ୟବାଦ ପ୍ରତିଷ୍ଠା ଦିଗରେ କିଛି କରିଥାନ୍ତେ ତେବେ ମୁଁ ଆଶ୍ଚର୍ଯ୍ୟ ହୋଇଥାଆନ୍ତି ।

ଲାହୋର ଫେରି ଆସି ଲାଲାଜୀ ନିଖିଳ ଭାରତ କଂଗ୍ରେସ କମିଟିରେ ମୋର ବକ୍ତୃତା ବିଷୟ ଶୁଣି ଆଲୋଚନା କଲେ ଏବଂ ତାଙ୍କର ସାପ୍ତାହିକ କାଗଜ "ଦି ପିପୁଲ"ରେ ସେଥି ସଂକ୍ରାନ୍ତ ଅନେକ ସମସ୍ୟା ଆଲୋଚନା କରି ଅନେକଗୁଡ଼ିଏ ଲେଖା ଲେଖିଥିଲେ । ପ୍ରଥମ ଲେଖାଟି ମୁଁ ପ୍ରକାଶ ପାଇଥିଲା । ଦ୍ୱିତୀୟ ଲେଖାଟି ଅନ୍ୟ ସାପ୍ତାହିକ ସଂଖ୍ୟାରେ ପ୍ରକାଶିତ ହେବା ପୂର୍ବରୁ ସେ ମରିଗଲେ । ଏହା ବୋଧହୁଏ ତାଙ୍କର ଶେଷ ଅସମାପ୍ତ ପ୍ରବନ୍ଧ ଏବଂ ଏହା ଦୁଃଖମିଶା ଆଗ୍ରହରେ ମୁଁ ପଢ଼ିଥିଲି ।



## ଲାଠି ମାଡ଼ର ଅଭିଜ୍ଞତା

ଲାଲା ଲଜପତ ରାୟଙ୍କ ଉପରେ ମାଡ଼ ଏବଂ ତାପରେ ତାଙ୍କର ମୃତ୍ୟୁ ହେତୁ ସାଇମନ କମିସନ ଯେଉଁସବୁ ସ୍ଥାନକୁ ଗଲା, ସେଠାରେ ତାଙ୍କ ପ୍ରତି ବିରୋଧ ଭାବର ସମୂହ ପ୍ରଦର୍ଶନ ଅଧିକ ପ୍ରବଳ ହେଲା । ସାଇମନ କମିସନ ଲକ୍ଷ୍ନୌ ଯିବାର କଥା ଥାଏ ଏବଂ ସ୍ଥାନୀୟ କଂଗ୍ରେସ କମିଟି "ଅଭ୍ୟର୍ଥନା" ସକାଶେ ବ୍ୟାପକ ଆୟୋଜନ କରିଥାଆନ୍ତି । ପ୍ରଚୁର ଏବଂ ଯାହା କରିବାକୁ ହେବ, ତାହାର ଅବୃତ୍ତି କରିବା ନିମନ୍ତେ କମିସନ ଆସିବାର ଅନେକ ଦିନ ଆଗରୁ ପ୍ରକାଣ୍ଡ ଶୋଭାଯାତ୍ରା, ସଭା ଚାଲିଲା । ମୁଁ ଲକ୍ଷ୍ନୌ ଯାଇଥିଲି ଏବଂ କେତେକ ସଭା ସମିତିରେ ଉପସ୍ଥିତ ଥିଲି । ଆଗରୁ ଯେଉଁସବୁ ଆୟୋଜନ ହେଲା, ତାହା ସମ୍ପୂର୍ଣ୍ଣ ଶୃଙ୍ଖଳିତ ଓ ଶାନ୍ତିପୂର୍ଣ୍ଣ ଥିଲେ ସୁଦ୍ଧା ତାହାର ସଫଳତା ଦେଖି କର୍ତ୍ତୃପକ୍ଷମାନେ ଉତ୍ତେଜିତ ହୋଇଗଲେ । ଏମାନେ ଏଥିରେ ବାଧା ଦେବାକୁ ଲାଗିଲେ ଏବଂ କେତେକ ଅଞ୍ଚଳରେ ଶୋଭାଯାତ୍ରା ନ କରିବାକୁ ନିଷେଧାଜ୍ଞା ଜାରି

ହୋଇଗଲି । ଏହି ମଧ୍ୟାନ୍ତରେ ମୋର ନୂଆ ଅଭିଜ୍ଞତା ହେଲା । ମୋର ଶରୀରରେ 'ବେଟନ' ମାଡ଼ ଓ ପୁଲିସର ଲାଠିମାଡ଼ ବାଜିଲା ।

ଶୋଭାଯାତ୍ରା ସବୁ ମନା କରି ଦିଆଗଲା; କାରଣ ରାସ୍ତାରେ ବାଧା ପଡ଼ିବ ନାହିଁ ବୋଲି ଏପରି କରାଯାଇଛି ବୋଲି କୁହାହେଲା । ଏ ସମ୍ବନ୍ଧରେ ଆମେ ଆପତ୍ତି କରିଲୁ ଭଳି କିଛି ରହିବାକୁ ଚାହୁଁ ନ ଥିଲୁ । ସେଥିଲାଗି ଆମେ ୧୬ ଜଣ ଲେଖାଁ ଗୋଟିଏ ଗୋଟିଏ ଛୋଟ ଦଳ କରି ଅଲଗା ଅଲଗା ଭାବରେ ସଭା ସ୍ଥଳକୁ ଗଲୁ । ଠିକ୍ ମୁତାବକ ଦେଖିଲେ ଏଥିରେ ଆଦେଶ ଅମାନ୍ୟ କରା ଯାଇଥିଲା । କାରଣ ୧୬ଜଣ ପତାକା ନେଇ ଯିବା ଅର୍ଥ ଏକ ଶୋଭା-ଯାତ୍ରା । ମୁଁ ଏହିପରି ୧୬ଜଣିଆ ଲୋକଙ୍କର ନେତୃତ୍ୱ ନେଇ ଯାଇଥିଲି । କିଛି କ୍ଷଣ ପରେ ମୋର ସହକର୍ମୀ ଗୋବିନ୍ଦ ବଲ୍ଲଭ ପନ୍ତଙ୍କ ନେତୃତ୍ୱରେ ଆଉ ଗୋଟିଏ ଦଳ ଆସିଲା । ରାସ୍ତାଟି ନିର୍ଜନ ହୋଇଥାଏ—ଆମ ଦଳ ପ୍ରାୟ ୨୦୦ଗଜ ଆଗକୁ ଯାଇଛନ୍ତି, ଆମ ପଛରେ ଘୋଡ଼ାଙ୍କ ଖୁରା ଶବ୍ଦ ଶୁଣିପାରିଲୁ ଆମେ ପଛକୁ ଚାହିଁ ଦେଖିଲୁ ଘୋଡ଼ସବାର ପୁଲିସ ଦଳେ ସମ୍ଭବତଃ ୨।୩ ଡଜନ ହେବ, ଦ୍ରୁତଗତିରେ ଆମ ଆଡ଼କୁ ଧାଇଁ ଛନ୍ତି । ଘୋଡ଼ସବାର ପୁଲିସ ଆମ ଉପରେ ଆସି ପଡ଼ିବାରୁ ଆମର ୧୬ ଜଣିଆ ଶୋଭାଯାତ୍ରାଟି ଛତ୍ରଭଙ୍ଗ ହୋଇଗଲା । ତାପରେ ଘୋଡ଼ସବାର ପୁଲିସମାନେ ପ୍ରକାଣ୍ଡ 'ବେଟନ ଦ୍ୱାରା ଆମ ସ୍ୱେଚ୍ଛାସେବକମାନଙ୍କୁ ମାରିବାକୁ ଆରମ୍ଭ କଲେ -- ସ୍ୱେଚ୍ଛାସେବକମାନେ ରାସ୍ତା କଡ଼ରେ ଆଶ୍ରୟ ନେବାକୁ ଚେଷ୍ଟା କଲେ – କେତେକ ଛୋଟ ଛୋଟ ଦୋକାନରେ ପଶିଗଲେ । ସେମାନଙ୍କୁ ମଧ୍ୟ ଗୋଡ଼ାଇ ମାରିଲେ । ଘୋଡ଼ା ଆମ ଆଡ଼କୁ ଆସିବାର ଦେଖି ଗୋଟାଏ ନିରାପଦ ସ୍ଥାନକୁ ଯିବାଲାଗି ମୋର ବିବେକ ମୋତେ କହୁଥିଲା—ଏହି ଦୃଶ୍ୟ ବଡ଼ ନିରାଶାଜନକ; ମାତ୍ର ମୋର ମନେହୁଏ ଆଉ ଏକ ପ୍ରବୃତ୍ତି ମୋତେ ସେଠି ରହିବାକୁ କହିଲା ଏବଂ ମୁଁ ପ୍ରଥମ ଆଘାତରେ ବଞ୍ଚିଗଲି । କାରଣ ମୋ ପଛରେ ଥିବା ସ୍ୱେଚ୍ଛାସେବକମାନେ ଅଟକାଇ ଦେଇଥିଲେ । ହଠାତ୍ ରାସ୍ତା ମଝିରେ ମୁଁ ଏକୁଟିଆ ପଡ଼ିଗଲି । ମୋଠାରୁ କେତେକ

ଦୂରରେ ପୁଲିସ ଲୋକେ ଆମ ସ୍ୱେଚ୍ଛାସେବକମାନଙ୍କୁ ପ୍ରହାର କରୁଥିବାର ଦେଖିଲି । ମୁଁ ନିଜେ ଗୋଟିଏ ପ୍ରଧାନ ସ୍ଥାନରେ ନ ରହିବା ନିମନ୍ତେ ଆପେ ଆପେ ଆସ୍ତେ ଆସ୍ତେ ରାସ୍ତାକଡ଼କୁ ଚାଲିଗଲି । ମୋ ପକ୍ଷରେ ଏପରି ଯିବା ଅସୁନ୍ଦର ବୋଲି ମୁଁ ମନେ କଲି । ଏହା କେତେକ ସେକେଣ୍ଡର କଥା—ମାତ୍ର ଏହି ମୁହୂର୍ତ୍ତରେ ମୋ ଭିତରେ ଯେଉଁ ଦ୍ୱନ୍ଦ୍ୱ ଚାଲିଥିଲା, ତାହାର ପରିଷ୍କାର ସ୍ମୃତି ମୋ ମନରେ ଅଛି—ମୋର ମନେ ଅଛି, ମୋ ଭିତରେ ଥିବା ଆତ୍ମାଭିମାନ ଭାବ, ମୁଁ ଭୀରୁ ବୋଲି ପରିଚିତ ହେବା କଥା ସହ୍ୟ କରିପାରିଲି ନାହିଁ । ତଥାପି ଭୀରୁତା ଓ ସାହସ ମଧ୍ୟରେ ବ୍ୟବଧାନ କମ ଥିଲା ଏବଂ ମୁଁ ଅନ୍ୟ ପକ୍ଷରେ ଯାଇଁ ପଡ଼ୁଥାନ୍ତି । ମୁଁ ଏପରି କିଛି ନିଷ୍ପତ୍ତି କରିଛି କି ନାହିଁ, ଏହି ସମୟରେ ଚାରିଆଡ଼କୁ ଚାହିଁ ଦେଖିଲି ଯେ ଏକ ଘୋଡ଼ସବାର ପୁଲିସ ତାର ଲମ୍ବା ନୂଆ ବେଟନ ହଲାଇ ହଲାଇ ମୋ ପାଖକୁ ଆସୁଛି । ମୁଁ ତାକୁ ଆଗକୁ ଯିବାକୁ କହିଲି ଏବଂ ମୋର ମୁଣ୍ଡ ଘୁରାଇ ଦେଲି—ମୋର ସ୍କନ୍ଧ ଓ ମୁହଁ ରକ୍ଷା କରିବାର ଗୋଟାଏ ପ୍ରବୃତ୍ତିରେ ଏହା ହୋଇଗଲା । ସେ ମୋ ପିଠିରେ ଭୀଷଣ ଭାବରେ ଦୁଇଥର ପ୍ରହାର ଦେଲା । ମୁଁ ତାଟକା ହୋଇଗଲି ଏବଂ ମୋର ସାରା ଶରୀର ଥରି ଉଠିଲା—ମାତ୍ର ଆଶ୍ଚର୍ଯ୍ୟ ଓ ସନ୍ତୋଷର କଥା ଯେ, ମୁଁ ସେହିପରି ସେଠାରେ ଛିଡ଼ା ହୋଇ ରହିଥାଏ । ଅଳ୍ପକ୍ଷଣ ପରେ ପୁଲିସ ସେଠୁ ଚାଲିଗଲେ ଏବଂ ଆମ ଆଗରେ ରହି ପୁଲିସ ରାସ୍ତା ଅଗୁଆଳି କଲେ । ଆମର ସ୍ୱେଚ୍ଛାସେବକମାନେ ପୁଣି ଏକଜୁଟ ହେଲେ । ଅନେକଙ୍କ ଦେହରୁ ରକ୍ତ ବୋହୁଥାଏ, ମୁଣ୍ଡ ଫାଟିଥାଏ । ପନ୍ତ ଏବଂ ତାଙ୍କ ଦଳ ଆସି ଆମ ସହିତ ଯୋଗ ଦେଲେ—ସେମାନେ ମଧ୍ୟ ସେହିପରି ପ୍ରହାର ଖାଇଥିଲେ । ଆମେ ସମସ୍ତେ ପୁଲିସର ସମ୍ମୁଖୀନ ହୋଇ ବସି ରହିଲୁ । ଏହିପରି ଆମେ ପ୍ରାୟ ଘଣ୍ଟାଏ ବା ତହିଁରୁ ଅଧିକ ବେଳ ପର୍ଯ୍ୟନ୍ତ ବସିଲୁ, ଅନ୍ଧାର ହୋଇଗଲା । ଏକପକ୍ଷରେ ଅନେକ ବଡ଼ ବଡ଼ କର୍ମଚାରୀ ଆସି ପହଞ୍ଚିଲେ ଏବଂ ଖବର ଚାରିଆଡ଼େ ବ୍ୟାପିଯିବାରୁ ଅନେକ ଲୋକ ଆସି ରୁଣ୍ଡ ହୋଇ ଯାଇଥିଲେ । ଶେଷରେ ଆମର ଗନ୍ତବ୍ୟ ରାସ୍ତାରେ ଯିବା ନିମନ୍ତେ ପୁଲିସ ଅନୁମତି ଦେଲେ । ଆମେ ସେହି ରାସ୍ତାରେ ଚାଲିଲୁ ।

ଯେଉଁ ଘୋଡ଼ସବାର ପୁଲିସମାନେ ଆମକୁ ପ୍ରହାର କରୁଥିଲେ, ସେମାନେ ଆଗ ଆଗେ ଆରଗ କଗୁଅଲୀପର ଗୃଲଥାନ୍ତି ।

ମୋ ଉପରେ ହୋ ଏଜ ଦୁଇଥର ପକାଇଥିବାରୁ ମୁଁ ଏହ ସ୍ପେଟ ଘଟଣାଟି ଏତେ ବିସ୍ତୃତ ଭବରେ ଲେଖିଲି । ଲାଠି ମାଡ଼ ସହ୍ୟ କରିବା ଭଳି ଶକ୍ତି ମୋର ଅଛି ବୋଲି ଯେଉଁ ବିଶ୍ୱାସ ମନ ମଧ୍ୟରେ ଥିଲା; ସେଥିରେ ମୋ ଦେହ ଯନ୍ତ୍ରଣା ମୁଁ ସମ୍ପୂର୍ଣ୍ଣରୂପେ ଭୁଲିଗଲି । ଆହୁରି ଏକ ଆଶ୍ଚର୍ଯ୍ୟ କଥା ଯେ, ସେହ ଘଟଣା ମଧ୍ୟରେ ମୁଁ ମାଡ଼ ଖାଉଥିବା ବେଳେ ମୋର ମନ ବଡ଼ ପରିଷ୍କାର ଥିଲା ଏବଂ ମୁଁ ସଚେତନଭବରେ ସବୁକଥା ବିଶ୍ଳେଷଣ କରୁଥିଲି । ଏହ ଭବ ତତ୍ପରଦିନ ସକାଳ ପର୍ଯ୍ୟନ୍ତ ମୋ ମନରେ ରହିଲା । ସେଦିନ ଆହୁରି କଠୋର ପରୀକ୍ଷା ଦେବାର କଥା । କାରଣ ତତ୍ପରଦିନ ସାଇମନ କମିସନ ପହଞ୍ଚିବାର କଥା ଏବଂ ଆମର ବିରାଟ ଶୋଭାଯାତ୍ରା ହେବାର କଥା ।

ମୋର ପିତା ଏଲ୍ଲାବାଦରେ ଥିଲେ । ମୋର ଆଶଙ୍କା ହେଲା ଯେ, ତତ୍ପରଦିନ ସକାଳ ସମ୍ବାଦପତ୍ରରେ ମୋର ମାଡ଼ ଖବର ଶୁଣି ସେ ଓ ପରିବାରର ଅନ୍ୟ ସମସ୍ତେ ଶଙ୍କିତ ହୋଇପିବେ । ତେଣୁ ମୁଁ ଠିକ୍ ଏ ଡେରିରେ ସେଦିନ ସନ୍ଧ୍ୟାବେଳେ ତାଙ୍କ ପାଖକୁ ଟେଲିଫୋନ କରି ତାଙ୍କୁ ଖବର ଜବାବ ଦେଲି, ମୋର ଦେହ ଭଲ ଅଛି – ତାଙ୍କର ବ୍ୟସ୍ତ ହେବାର କିଛି କାରଣ ନାହିଁ । ମାତ୍ର ସେ ଅତ୍ୟନ୍ତ ବ୍ୟସ୍ତ ହେଲେ ଏବଂ ଘଟଣାକୁ ଭୁଲି ପାରିବା କଷ୍ଟକର ଦେଖି ସେ ପ୍ରାୟ ଅଧରାତିରେ ଲକ୍ଷ୍ନୌ ଆସିବା ନିମନ୍ତେ ହଠାତ ସ୍ଥିର କଲେ । ସେତେବେଳକୁ ଶେଷଗାଡ଼ିଟି ମଧ୍ୟ ଗୃଲି ଯାଇଥାଏ । ତେଣୁ ସେ ମଟରଗାଡ଼ିରେ ଆସିଲେ । ବାଟରେ ଏକ ଦୁର୍ଭାଗ୍ୟ ଘଟିଲା ଏବଂ ଅତ୍ୟନ୍ତ କ୍ଳାନ୍ତ ହୋଇ ୧୪୬ ମାଇଲ ବାଟ ମଟରରେ ଆସି ସେ ସକାଳ ୫ଟା ବେଳେ ଲକ୍ଷ୍ନୌରେ ପହଞ୍ଚିଲେ ।

ସେତେବେଳକୁ ଆମେ ଷ୍ଟେସନକୁ ଯିବା ନିମନ୍ତେ ପ୍ରସ୍ତୁତ ହେଉଥାଉ । ତତ୍‌ପୂର୍ବଦିନ ଘଟଣାରେ ଲକ୍ଷ୍ନୌରେ ଏକ ଉତ୍ତେଜନା ଖେଳି ଯାଇଥାଏ । ଅନ୍ୟ କୌଣସି କଥାରେ ଏପରି ହୋଇ ନ ଥାନ୍ତା । ସୂର୍ଯ୍ୟ ଉଦୟ ନ ହେବା ପୂର୍ବରୁ ଅସଂଖ୍ୟ ସଂଖ୍ୟାରେ ଲୋକ ଆସି ଷ୍ଟେସନରେ ପହଞ୍ଚି ଯାଇଥିଲେ । ସହରର ଅନ୍ୟାନ୍ୟ ଅଞ୍ଚଳରୁ ଅସଂଖ୍ୟ ଛୋଟ ଛୋଟ ଶୋଭାଯାତ୍ରା ଆସିଲା ଏବଂ କଂଗ୍ରେସ ଅଫିସରୁ କେତେ ସହସ୍ର ଲୋକଙ୍କର ଶୋଭାଯାତ୍ରା ପୂର୍ବ ପୂର୍ବଦିନ ଭଳି ପ୍ରଧାନ ଶୋଭାଯାତ୍ରା ବାହାରିଲା । ଆମେ ଏହି ପ୍ରଧାନ ଶୋଭାଯାତ୍ରାରେ ଥିଲୁ । ଆମେ ଷ୍ଟେସନ ନିକଟରେ ପହଞ୍ଚିଲା ବେଳକୁ ପୁଲିସ ଆମକୁ ଅଟକାଇଲା । ଷ୍ଟେସନ ସମ୍ମୁଖରେ ପ୍ରାୟ ଅଧମାଇଲ ପର୍ଯ୍ୟନ୍ତ ଏକ ପ୍ରକାଣ୍ଡ ଖୋଲା ସ୍ଥାନ ଥିଲା (ତା' ଉପରେ ନୂଆ ଷ୍ଟେସନ ତିଆରି ହୋଇଗଲାଣି) । ଆମେ ସଡ଼କର ଏକ ପାଖରେ ଧାଡ଼ିକରି ରହିଲୁ ଏବଂ ଆମେ ଆଗକୁ ଯିବା ନିମନ୍ତେ ଆଉ ଚେଷ୍ଟା କଲୁ ନାହିଁ—ଆମ ଶୋଭାଯାତ୍ରା ସେଠାରେ ରହିଲା । ସେ ସ୍ଥାନରେ ପଦାତିକ, ଅଶ୍ୱାରୋହୀ ଏବଂ ଫୌଜ ଭର୍ତ୍ତି ହୋଇଥିଲା । ସହାନୁଭୂତି ସମ୍ପନ୍ନ ଦର୍ଶକଙ୍କ ଜନତା ବଢ଼ି ଯାଉଥିଲା ଏବଂ ଏ ଲୋକଙ୍କ ଭିତରୁ ଅନେକେ ଖୋଲା ସ୍ଥାନରେ ଦୁଇ ତିନି ଜଣ ଲେଖାଏ ଧାଡ଼ି ହୋଇ ରହିଲେ । ହଠାତ୍ ଅନେକ ଦୂରରେ ଏକ ଜନତା ଆସୁଥିବାର ଦେଖିଲୁ । ସମସ୍ତ ସ୍ଥାନରେ ଦୁଇ ତିନି ଧାଡ଼ି ପଦାତିକ ଓ ଅଶ୍ୱାରୋହୀ ପୁଲିସ ଥାଆନ୍ତି । ସେମାନେ ଆମ ଆଡ଼କୁ ମାଡ଼ି ଆସୁଥାନ୍ତି ଏବଂ ମୈଦାନର ଚାରିଆଡ଼େ ଥିବା ଲୋକଙ୍କୁ ମାଡ଼ ତ ଦେଉଥାନ୍ତି । ଘୋଡ଼ାରେ ଚଢ଼ି ଅଶ୍ୱାରୋହୀଙ୍କ ପ୍ରହାର ଗୋଟାଏ ଦେଖିବାର ଦୃଶ୍ୟ । ଅତି ନିର୍ବାହ ଏବଂ ବିସ୍ମିତ ଜନତାକୁ ଘୋଡ଼ା ପାଦତଳେ ଦଳି ଦିଆଯାଉଥିଲା । ଏହିଠାରେ ତଳେ ଲୋକ ପଡ଼ିଥାନ୍ତି, କେତେକ ଯିବାକୁ ଅସମର୍ଥ ହୋଇଥାନ୍ତି । ଅନ୍ୟମାନେ ଯନ୍ତ୍ରଣାରେ ସଢ଼ୁଥାନ୍ତି ଏବଂ ସେ ମଇଦାନଟା ଗୋଟାଏ ରଣକ୍ଷେତ୍ରପରି ମନେ ହେଉଥାଏ । ମାତ୍ର ସେହି ଦୃଶ୍ୟ ଦେଖି ଲକ୍ଷ୍ୟ କରିବା ନିମନ୍ତେ ଆମର ସମୟ ନ ଥିଲା; ଘୋଡ଼ସବାର ଆସି ଆମ ଉପରେ ପଡ଼ିଲେ ଏବଂ ଆମ ଶୋଭାଯାତ୍ରା ସହିତ ଘୋଡ଼ସବାରର

ସନ୍ତୋଷ ହେଲ । ଆମେ ଦୃଢ଼ ହୋଇ ରହିଲୁ । ଆମେ ମଧ୍ୟ ନୁଆଁଇ ନ ଥିବାରୁ ଶେଷକୁ ଘୋଡ଼ାକୁ ଆଣି ଠେକ ସେମାନଙ୍କ ଦୁଇ ଗୋଡ଼ ଆମ ମୁଣ୍ଡ ଉପରେ ଝୁଲାଇ ଦିଆଗଲା । ତାପରେ ଆମ ଉପରେ ପ୍ରହାର ହେଲା ଏବଂ ଘୋଡ଼ସବାର ଓ ପଦାତିକ ପୁଲିସମାନେ ଲାଠି ଓ ଲମ୍ବା ଲମ୍ବା ବେତନରେ ପ୍ରହାର କରୁଥାଆନ୍ତି । ଖୁବ୍ ଦୃଢ଼ଣ ପ୍ରହାର ହେଲା ଏବଂ ଉତ୍ତପ୍ତଵାତାବରଣ ଅବସ୍ଥାରେ ମୋ ମନ ଯେପରି ଉତ୍ତେଜିତ ଥିଲା, ଏବେ ସେପରି ନ ଥିଲା । ମୋତେ କେବଳ ଗୋଟିଏ କଥା ଜଣାଗଲା—ମୁଁ ଯେଉଁଠି ଅଛି ସେଠି ରହିବ । ମୁଣ୍ଡ ନୁଆଁଇବ ନାହିଁ କି ପଛକୁ ହଟିବ ନାହିଁ । ପ୍ରହାରରେ ମୁଁ ମଧ୍ୟ ଅନ୍ଧ ହୋଇଗଲି ଏବଂ ଥରେ ଥରେ ମୋ ଭିତରେ ଏକ କ୍ରୋଧ ଜାତ ହେଉଥିଲା ଏବଂ ପ୍ରତିପ୍ରହାର ଦେବାର ଇଚ୍ଛା ଜାଗ୍ରତ ହେଉଥିଲା । ମୁଁ ଦେଖିଲି ମୋ ସାମନାରେ ଥିବା ପୁଲିସ କର୍ମଚାରୀକୁ ଘୋଡ଼ାରୁ ତଳକୁ ଓଟାରି ଆଣି ନିଜେ ଘୋଡ଼ାରେ ଚଢ଼ିବା ଅତି ସହଜ ହେଲା, ମାତ୍ର ଦୀର୍ଘକାଳ ଶିକ୍ଷା ଓ ଶୃଙ୍ଖଳା ମୋତେ ଧରି ରଖିଲା—ମୁଁ ମୋର ହାତ ଉଠାଇଲି ନାହିଁ—କେବଳ ମୋ ମୁହଁକୁ ମାଡ଼ରୁ ରକ୍ଷା କରୁଥିଲି । ଏହାଛଡ଼ା ମୁଁ ଜାଣିଥିଲି ଯେ ଆମ ପଛରୁ କିଛି ଆକ୍ରମଣ ହେଲମାତ୍ରେ ଅନେକ ଶୋଚନୀୟ କାଣ୍ଡ ଘଟିବ, ଗୁଳି ହେବ ଏବଂ ଆମ ଲୋକଙ୍କ ଭିତରୁ ଅନେକେ ମରିଯିବେ ।

ଅଳ୍ପ କେତେକ ମିନଟ୍ ଆମେ ଏପରି ଥିଲେ ଧ୍ୱା ମୋତେ ଏହା ଦୀର୍ଘକାଳ ପରି ମନେହେଲା—ଆମ ଦଳ କ୍ରମେ ମୁଣ୍ଡ ନୁଆଁଇବାକୁ ଲାଗିଲେ ଏବଂ ମୁଁ ଏକୁଟିଆ ହୋଇଗଲି ମୁଁ ଏବଂ ଏକପାଖିଆ ହେଲା । ଆହୁରି ମାଡ଼ ବସିଲା ଏବଂ ତାପରେ ହଠାତ୍ ପଛରୁ ମୋତେ ଠେକ ଉଠାଇ ନିଆଗଲା—ମୁଁ ଅତ୍ୟନ୍ତ ବିରକ୍ତ ହେଲି । ମୋର କେତେକ ଯୁବକ ସହକର୍ମୀ ମୋ ଉପରେ ମରଣାତ୍ମକ ପ୍ରହାର ହେଉଛି ଜାଣି ମୋତେ ରକ୍ଷା କରିବାକୁ ଚାହିଁଲେ ।

ଆମେ ପ୍ରଥମେ ଯେଉଁ ଧାଡ଼ି କରିଥିଲୁ, ତା ପଛରେ ଆମ ଶୋଭାଯାତ୍ରା ଶହେ ଫୁଟ ଦୂରରେ ଧାଡ଼ି ହୋଇ ରହିଲା । ପୁଲିସ ସ

ଗୁଳିଚଳେଇ ଏବଂ ଆମଠାରୁ ୫୦ ଫୁଟ ଦୂରରେ ଧାଡ଼ି ହୋଇ ଠିଆ ହେଲେ । ଆମେ ଏହିପରି ଥାଉ—ଏହି ଭିତରେ ସବୁ ଗୋଳମାଳ ଯାହାପାଇଁ, ସେ ସାଇମନ କମିଶନ ଅଧିନାୟକ ଦୂରରେ ଗୁପ୍ତଭାବରେ ଚାଲିଗଲେ । ଏହା ସତ୍ତ୍ୱେ କଳାପତାକାରୁ ସେମାନେ ରକ୍ଷା ପାଇଲେ ନାହିଁ । ଅଳ୍ପକ୍ଷଣ ପରେ ଆମେ ଶୋଭାଯାତ୍ରା କରି କଂଗ୍ରେସ ଅଫିସକୁ ଫେରି ଆସିଲୁ ଏବଂ ସେଠାରେ ଶୋଭାଯାତ୍ରା ଭାଙ୍ଗିଲୁ । ମୁଁ ପିତାଙ୍କ ନିକଟକୁ ଗଲି—ସେ ଆନନ୍ଦଭବନ ସହିତ ମୋତେ ଅପେକ୍ଷା କରିଥାଆନ୍ତି ।

ଉତ୍ତେଜନାବେଳ ଚାଲିଯିବା ପରେ ମୋର ସମସ୍ତ ଶରୀରରେ ଯନ୍ତ୍ରଣା ଅନୁଭବ କଲି ଏବଂ ବଡ଼ କ୍ଲାନ୍ତ ହୋଇ ପଡ଼ିଲି । ମୋର ପ୍ରତ୍ୟେକ ଅଙ୍ଗରେ ଯନ୍ତ୍ରଣା ହେବାକୁ ଲାଗିଲା ଏବଂ ମୋ ଦେହରେ ଏଣେତେଣେ ଚାକି ଥାଏ—ଫୁଲିଯାଇ ଲାଲ ହୋଇ ଯାଇଥାଏ । ଭାଗ୍ୟର କଥା କୌଣସି ପ୍ରଧାନ ସ୍ଥାନରେ ଆଘାତ ହୋଇ ନଥିଲା । ଆମର ଅନେକ ସାଥି ବିଶେଷ କରି କେତେକ ପିଲା ଥିଲେ ଏବଂ ବଡ଼ ଖରାପ ଭାବରେ ଆଘାତ ପାଇଥିଲେ । ଗୋବିନ୍ଦବଲ୍ଲଭ ପନ୍ଥ ମୋ ନିକଟରେ ଛିଡ଼ା ହୋଇଥାନ୍ତି—ସେ ପ୍ରାୟ ୬ ଫୁଟ ଉଚ୍ଚ ହେବେ । ସେ ଗୁରୁତର ଭାବରେ ପ୍ରହାର ଖାଇଲେ । ଏହି ମାଡ଼ ଫଳରେ ତାଙ୍କର ଯନ୍ତ୍ରଣା ବଢ଼ିଲା ଏବଂ ସେହି ଜନ୍ୟ ସେ ତାଙ୍କ ମେରୁଦଣ୍ଡ ସିଧା କରିପାରନ୍ତି ନାହିଁ କିମ୍ବା କଷ୍ଟସ୍ୱୀକାର କରି କାର୍ଯ୍ୟ କରି ପାରନ୍ତି ନାହିଁ । ମୋର ଶାରୀରିକ ଅବସ୍ଥା ଏବଂ ସହ୍ୟ କରିବାର ଶକ୍ତି ଦେଖି ମୁଁ ନିଜେ ଗର୍ବ ଅନୁଭବ କଲି । ମାଡ଼ ପ୍ରହାର ଅପେକ୍ଷା ଯେଉଁ ପୁଲିସ ନେକ ବିଶେଷତଃ କର୍ମଚାରୀମାନେ ଆମକୁ ମାଡ଼ ଦେଇଥିଲେ, ସେମାନଙ୍କ ମୁହଁ ଏବେ ବି ମୋ ଆଖି ଆଗରେ ନାଚି ଯାଉଛି । ଇଉରୋପୀୟ ସର୍ଜେଣ୍ଟମାନେ ଅଧିକ ପ୍ରହାର କରିଥିଲେ—ଭାରତୀୟ ପୁଲିସ ଟିକିଏ ଧୀରେ ମାଡ଼ ଦେଉଥିଲେ । ମାତ୍ର ସେମାନଙ୍କ ମୁହଁରେ ଘୋଷାଏ ଘୃଣା ଏବଂ ରକ୍ତପିପାସୁ ଭାବ ଦେଖା ଯାଉଥାଏ—ପାଗଳପରି ହୋଇଥାଆନ୍ତି—ଟିକିଏ ସହାନୁଭୂତି କି ମାନବିକତା ତାଙ୍କଠାରେ ସ୍ପର୍ଶ କରି ନ ଥାଏ । ସମ୍ଭବତଃ ଆମେମାନେ ସେହିପରି ଘୃଣାବ୍ୟଞ୍ଜକ ମୁଖରେ

ସେମାନଙ୍କ ପ୍ରତି ଦୃଷ୍ଟିପାତ କରୁଥିଲୁ । ଆମେ ନିରୁପଦ୍ରବ ଥିଲୁ ବୋଲି ସେ ଆମ ବିରୋଧୀଙ୍କ ପ୍ରତି ଆମର ମନ ଓ ହୃଦୟରେ ପ୍ରେମ ଭାବ ପୂରି ରହିଥିଲା ତା ଅଗରୁ ଖୁବ୍ ସ୍ପଷ୍ଟ ଦେଖା ଯାଉଥିଲା; ତାହା ନୁହେଁ । ତଥାପି ସେମାନଙ୍କ ପ୍ରତି ଆମର କୌଣସି ଅଭିଯୋଗ ନ ଥିଲା, ବ୍ୟକ୍ତିଗତ କଳହ ବା ବିଦ୍ୱେଷ ନ ଥିଲା । ସେଥିସକେ ଲାଗି ଆମେ ଏକ ଅପୂର୍ବ ଓ କ୍ଷମତା-ଶାଳୀ ଶକ୍ତି ଅନୁଭବ କରୁଥିଲୁ ଏବଂ ତାହାର ଦାସ ହୋଇ ଆମେ ବଳିଷ୍ଠ ହୋଇ ଯାଉଥିଲୁ—ଏହା ଆମର ମନ ଓ ହୃଦୟକୁ ବାନ୍ଧି ରଖିଥିଲା—ଆମ ଭିତରେ ପ୍ରେରଣା ଓ ଆକାଂକ୍ଷା ଜାଗ୍ରତ କରି ଆମକୁ ଯେପରି ତାହା ହାତବାରିସି କରି ରଖିଥିଲା । ଆମେ କି ସଂଗ୍ରାମ କରୁଛୁ···ଏବଂ କୁଆଡ଼କୁ ଚାଲିଛୁ, ତାହା ନ ଜାଣି ଅଭିଭବରେ ସଂଗ୍ରାମ କରୁଥିଲୁ । କାର୍ଯ୍ୟର ଉତ୍ତେଜନାହିଁ ଆମକୁ ଧରି ରଖିଥିଲା; ମାତ୍ର ଏହା ଦୂର ହୋଇଗଲା ପରେ ସଙ୍ଗେ ସଙ୍ଗେ ଆମ ଭିତରେ ପ୍ରଶ୍ନ ଉଠିଲା—କାହିଁକି ଏ ସବୁ କରୁଥିଲୁ ? କି ଉଦ୍ଦେଶ୍ୟରେ ?

———

## ଟ୍ରେଡ୍ ୟୁନିୟନ କଂଗ୍ରେସ

ସେହିବର୍ଷ ସାଇମନ କମିଶନ ବର୍ଜନ ଏବଂ ସର୍ବଦଳ ସମ୍ମିଳନୀ ପ୍ରଧାନ ରାଜନୈତିକ କାର୍ଯ୍ୟ ଭାବରେ ଦେଶର ଦୃଷ୍ଟି ଆକର୍ଷଣ କରିଥିଲା । ମାତ୍ର ମୋର କାର୍ଯ୍ୟର ଗତି ଓ ମନ ଅନ୍ୟ ଦିଗରେ ଥିଲା । କଂଗ୍ରେସର କାର୍ଯ୍ୟକାରୀ ସାଧାରଣ ସମ୍ପାଦକ ଭାବରେ ଅନୁଷ୍ଠାନକୁ ଦୃଢ଼ କରିବାପାଇଁ ମୁଁ ପ୍ରଯତ୍ନ କରୁଥିଲି ଏବଂ ଦେଶର ସାମାଜିକ ଓ ଅର୍ଥନୈତିକ ସମସ୍ୟା ପ୍ରତି ଲୋକଙ୍କର ଯେପରି ଦୃଷ୍ଟି ପଡ଼ିବ, ସେ ଦିଗରେ ମୁଁ ବିଶେଷରୂପେ ମନ ଦେଲି । ମାନ୍ଦ୍ରାଜରେ ସ୍ୱାଧୀନତା ସମ୍ପର୍କରେ ଯେଉଁ ପ୍ରସ୍ତାବ ହୋଇଥିଲା ତାକୁ କାର୍ଯ୍ୟରେ ଲଗାଇ ଦୃଢ଼ କରିବାର କଥା—କାରଣ ସର୍ବଦଳ ସମ୍ମିଳନୀରେ କିଛିଏ ପଛକୁ ଟାଣି ହୋଇଯିବା ପ୍ରବୃତ୍ତି ଦେଖା ଯାଉଥିଲା । ଏହି ଉଦ୍ଦେଶ୍ୟରେ ମୁଁ ଦେଶର ଅନେକ ସ୍ଥାନରେ ଭ୍ରମଣ କରି ଅନେକ ବଡ଼ ବଡ଼ ସଭାରେ ବକ୍ତୃତା କରିଥିଲି । ମୋର ମନେ ହୁଏ, ୧୯୨୮ରେ

ମୁଁ ପଞ୍ଜାବ, ଦକ୍ଷିଣରେ ମାଲବାର, ଦିଲ୍ଲୀ ଏବଂ ଯୁକ୍ତପ୍ରଦେଶ ଏହି ଚାରୋଟି ପ୍ରାଦେଶିକ ରାଜନୈତିକ ସମ୍ମିଳନୀରେ ସଭାପତି ହୋଇଥିଲି—ଏହାଛଡ଼ା ବମ୍ବେ ଓ ବଙ୍ଗଳାର ଯୁବକ ସମ୍ମିଳନୀରେ ମଧ୍ୟ ସଭାପତି ହୋଇଥିଲି । ଯୁକ୍ତପ୍ରଦେଶର ମଫସଲ ଅଞ୍ଚଳକୁ ମୁଁ ଯାଉଥାଏ ଏବଂ କାରଖାନାମାନଙ୍କ ସଭାରେ ସମୟେ ସମୟେ ବକ୍ତୃତା କରୁଥାଏ । ମୋର ବକ୍ତୃତା ପ୍ରାୟ ଏକ ବିଷୟରେ ହେଉଥିଲା—କେବଳ ସ୍ଥାନୀୟ ଅବସ୍ଥା ଦେଖି ପରିବର୍ତ୍ତନ ହେଉଥିଲା ଏବଂ ଶ୍ରୋତା ଅନୁସାରେ ବିଷୟରେ ଜୋର ଦିଆ ଯାଉଥାଏ । ପ୍ରତ୍ୟେକ ସ୍ଥଳରେ ମୁଁ ରାଜନୈତିକ ଓ ସାମାଜିକ ସ୍ୱାଧୀନତା ପାଇବା ବିଷୟରେ କହୁଥିଲି ଏବଂ ସାମାଜିକ ସ୍ୱାଧୀନତା ନିମନ୍ତେ ରାଜନୈତିକ ସ୍ୱାଧୀନତା ଲୋଡ଼ା ବୋଲି କହୁଥିଲି । ମୁଁ ବିଶେଷ ଭାବରେ କଂଗ୍ରେସ କର୍ମୀ ଓ ଶିକ୍ଷିତ ଲୋକଙ୍କ ଭିତରେ ସାମ୍ୟବାଦ ମତ ପ୍ରଚାର ଲାଗି ଚାହୁଁଥିଲି; କାରଣ ଏମାନେହିଁ ଆମ ଜାତୀୟ ଆନ୍ଦୋଳନର ମେରୁଦଣ୍ଡ । ସେମାନେ ଅତି ସଙ୍କୀର୍ଣ୍ଣ ଜାତୀୟତା ଭାବରେ ଚିନ୍ତା କରୁଥିଲେ । ସେମାନେ ବକ୍ତୃତାରେ ଆମର ଭବିଷ୍ୟତ ଗୌରବ; ବିଦେଶୀ ଶାସନ ଫଳରେ ଆମର ବୈଷୟିକ ଓ ନୈତିକ ହ୍ରାସ, ଆମ ଲୋକଙ୍କ ଦୁଃଖ, ଆମ ଉପରେ ବିଦେଶୀ କର୍ତ୍ତୃତ୍ୱମୂଳକ ଅପମାନ ଏବଂ ଜାତୀୟ ମର୍ଯ୍ୟାଦା ରକ୍ଷା ଲାଗି ଆମର ଯେ ତ୍ୟାଗର ଆବଶ୍ୟକତା ଅଛି, ଏହିସବୁ କଥା କହୁଥିଲେ । ପ୍ରତ୍ୟେକ ଭାରତୀୟ ହୃଦୟରେ ଏହି ଭାବର ପ୍ରତିଧ୍ୱନି ହେଉଥିଲା । ମୋ ଭିତରେ ଥିବା ଜାତୀୟତା ଭାବ ଏହାକୁ ଗ୍ରହଣ କଲା ଏବଂ ଏଥିରେ ମୁଁ ଅଭିଭୂତ ହୋଇଗଲି । (ଅବଶ୍ୟ ଭାରତର ବା ଅନ୍ୟ କାହାର ଅତୀତ ଗୌରବରେ ମୁଁ ଅନ୍ଧସ୍ତାବକ ନ ଥିଲି) । ଏ କଥାର ସତ୍ୟତା ରହିଥିଲେ ସୁଦ୍ଧା ବାରମ୍ବାର ଏ କଥା ପ୍ରଚାରଦ୍ୱାରା ଏଗୁଡ଼ିକ ଟିକିଏ ଶିଥିଳ ହୋଇ ଆସିଲା । ଅବିଶ୍ରାନ୍ତ ପୁନରୁକ୍ତି ହେତୁ ଆମ ସଂଗ୍ରାମର ଅନ୍ୟ ଜୀବନ୍ତ ଦିଗ ଏବଂ ସମସ୍ୟା ଆଲୋଚିତ ହୋଇପାରୁ ନଥିଲା । ଏଥିରେ କେବଳ ଭାବପ୍ରବଣତା ଜାଗ୍ରତ ହେଉଥିଲା—ମାତ୍ର ଚିନ୍ତା ବୃଦ୍ଧି ପାଉ ନ ଥିଲା ।

ଭାରତରେ ସାମ୍ୟବାଦ ମୁଁ ପ୍ରଥମ କରି ପ୍ରଚାର କରିନାହିଁ । ପ୍ରକୃତରେ ମୁଁ ପଛରେ ଏହା ଆରମ୍ଭ କଲି ଏବଂ ଅନେକେ ଜ୍ୱଳନ୍ତ ଉଲ୍‌କାପରି ଏଥିରେ ଗତି କରିଥିବା ବେଳେ ମୁଁ ଧୀରେ ଧୀରେ ପଦକ୍ଷେପ କରି ସେଥିରେ ଗତିକଲି । କାରଖାନା ଶ୍ରମିକମାନଙ୍କର ଆନ୍ଦୋଳନ, ମତବାଦ ହିସାବରେ ନିର୍ଦ୍ଦିଷ୍ଟରୂପେ ସାମ୍ୟବାଦ ମୂଳକ ଥିଲା ଏବଂ ଅଧିକାଂଶ ଶ୍ରମିକସଂଘ ମଧ୍ୟ ସେହିପରି ଥିଲା । ମୁଁ ୧୯୨୭ ମସିହା ଡିସେମ୍ବର ମାସରେ ଭାରତକୁ ଫେରି ଦେଖିଲି ଚାରିଆଡ଼େ ଗୋଟାଏ ଅସ୍ପଷ୍ଟ ଏବଂ ମିଶ୍ରିତ ସାମ୍ୟବାଦର ବାୟୁମଣ୍ଡଳ ଦେଖାଯାଉଛି । ଏହା ପୂର୍ବରୁ ବ୍ୟକ୍ତିଗତ ଭାବରେ ଅନେକେ ସାମ୍ୟବାଦୀ ଥିଲେ । ସେମାନଙ୍କ ଭିତରୁ ଅଧିକାଂଶ କେବଳ କଳ୍ପନା ରାଜ୍ୟରେ ବୁଲୁଥିଲେ, ମାତ୍ର ମାର୍କସଙ୍କ ମତଦ୍ୱାରା ସେମାନେ ଅନେକ ପରିମାଣରେ ପ୍ରଭାବିତ ହେଉଥିଲେ । ଅତି ଅଳ୍ପ ସଂଖ୍ୟକ ଲୋକ ନିଜକୁ ପୁରାପୁରି ମାର୍କସବାଦୀ ବୋଲି କହୁଥିଲେ ସୋଭିଏଟ ରୁଷର ପ୍ରଗତି ବିଶେଷତଃ ପାଞ୍ଚବର୍ଷିଆ ଯୋଜନା ହେବା ଫଳରେ ଏହି ପ୍ରବୃତ୍ତି ୟୁରୋପ ଓ ଆମେରିକା ପରି ଭାରତରେ ମଧ୍ୟ ବୃଦ୍ଧି ପାଇଲା ।

ମୁଁ ଜଣେ ଖ୍ୟାତନାମା କଂଗ୍ରେସ ଲୋକ ହୋଇ ଏବଂ କଂଗ୍ରେସ ପଦବୀ ଗ୍ରହଣ କରି ସୁଦ୍ଧା ସାମ୍ୟବାଦ ପ୍ରଚାର କରୁଥିବାରୁ ତାହାର ଗୁରୁତ୍ୱ ବଢ଼ିଲା । ଆହୁରି ଅନେକ କଂଗ୍ରେସ ଲୋକମଧ୍ୟ ସେହିପରି ଚିନ୍ତା କରିବାକୁ ଆରମ୍ଭ କରିଥିଲେ । ଯୁକ୍ତପ୍ରଦେଶ ପ୍ରାଦେଶିକ କଂଗ୍ରେସ କମିଟିରେ ଏହା ଅଧିକ ଭାବରେ ଦେଖାଗଲା ଏବଂ ଏପରିକି ୧୯୨୯ ମସିହାରେ ଏହି କମିଟିରେ ଏକ ଛୋଟ ସାମ୍ୟବାଦ ମୂଳକ କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ଆମେ ଚେଷ୍ଟା କରିଥିଲୁ । ଆମ ପ୍ରଦେଶରେ ଜମିଦାରୀ ଓ ତାଲୁକଦାରୀ ପ୍ରଥା ପ୍ରଚଳିତ ଅଛି । ଏବଂ ଆମେ ପ୍ରଥମେ ଜମି ସମସ୍ୟାକୁ ଧରିଲୁ । ଆମେ ଦାବୀ କଲୁ ଯେ, ପ୍ରଚଳିତ ଭୂମିସ୍ୱତ୍ୱକୁ ଲୋପ କରିବାକୁ ହେବ ଏବଂ ସରକାର ଓ କୃଷୀ ଭିତରେ କୌଣସି ମଧ୍ୟବର୍ତ୍ତୀ ସମ୍ପ୍ରଦାୟ ରହିବେ ନାହିଁ । ଆମକୁ ଖୁବ ସତର୍କତାର ସହିତ ଗତି କରିବାକୁ ହେଲା କାରଣ

ସେତେବେଳେ ଆମେ ଯେଉଁ ବାୟୁ ମଣ୍ଡଳରେ ଗତି କରୁଥିଲୁ, ସେଥିରେ ଏ ସ୍ୱାଗତ ନୂଆ ଥିଲା ।

ତତ୍ପୂର୍ବବର୍ଷ ୧୯୨୯ ମସିହାରେ ଯୁକ୍ତପ୍ରଦେଶ ପ୍ରାଦେଶିକ କଂଗ୍ରେସ କମିଟି ଆଉ ଟିକିଏ ଆଗକୁ ଯାଇ ସାମ୍ୟବାଦ ମୂଳକ ଏକ କାର୍ଯ୍ୟପନ୍ଥା ଗ୍ରହଣ କରିବା ନିମନ୍ତେ ନିଖିଳ ଭାରତ କଂଗ୍ରେସ କମିଟି ନିକଟକୁ ଏକ ପ୍ରସ୍ତାବ ପଠାଇଲା । ଏହି କମିଟିର ବୈଠକ ବମ୍ବେଠାରେ ହୋଇଥିଲା— ଏଥିରେ ଯୁକ୍ତ ପ୍ରଦେଶ ପ୍ରସ୍ତାବର ଭୂମିକା ସ୍ୱୀକୃତ ହେବାଦ୍ୱାରା ସମଗ୍ର ପ୍ରସ୍ତାବର ମୂଳରେ ଥିବା ସାମ୍ୟବାଦ ନୀତିକୁ ମଧ୍ୟ ଗ୍ରହଣ କରାଗଲା । ଯୁକ୍ତପ୍ରଦେଶ ପ୍ରସ୍ତାବରେ ଯେଉଁ ବିସ୍ତୃତ କାର୍ଯ୍ୟକ୍ରମ ଦିଆଯାଇଥିଲା, ତାହା ଆଉ କେତେ ଦିନ ପରେ ଆଲୋଚନା କରିବା ନିମନ୍ତେ ସ୍ଥିର ହେଲା । ଅନେକ ଲୋକ ନି. ଭା. କଂଗ୍ରେସ କମିଟି ଏବଂ ଯୁକ୍ତପ୍ରଦେଶ ପ୍ରାଦେଶିକ କଂଗ୍ରେସ କମିଟିର ଏହି ପ୍ରସ୍ତାବକୁ ଭୁଲି ଯାଇଛନ୍ତି ଏବଂ ଗତ ବର୍ଷେ ହେଲା କଂଗ୍ରେସରେ ସାମ୍ୟବାଦ କଥାଟା ହଠାତ୍ ଉଠୁଛି ବୋଲି ଅନୁମାନ କରନ୍ତି । ଏ କଥା ଅବଶ୍ୟ ସତ୍ୟ ଯେ; ଏହି ପ୍ରସ୍ତାବ ସମ୍ବନ୍ଧରେ ବିଶେଷ ଚିନ୍ତା ନକରି ନି. ଭା. କଂ. କମିଟି ତାହା ଗ୍ରହଣ କରିଥିଲା ଏବଂ ସମ୍ଭବତଃ ଅନେକ ସଭ୍ୟ ଭଲ କରିବାକୁ ଯାଉଛନ୍ତି ତାହା ବୁଝିପାରି ନ ଥିଲେ ।

ଭାରତ ସ୍ୱାଧୀନତା ସଂଘର ଯୁକ୍ତପ୍ରଦେଶ ଶାଖା (ପ୍ରଦେଶର ପ୍ରାୟ ସମସ୍ତ ପ୍ରଧାନ କଂଗ୍ରେସକର୍ମୀଙ୍କୁ ନେଇ ଏହା ଗଢ଼ା ହୋଇଥିଲା) ସମ୍ପୂର୍ଣ୍ଣରୂପେ ସାମ୍ୟବାଦମୂଳକ ଥିଲା—କଂଗ୍ରେସ କମିଟି ପରି ଏକ ମିଶ୍ରିତ ଅନୁଷ୍ଠାନ ଅପେକ୍ଷା ଏହା ଆହୁରି ଆଗକୁ ଯାଇ ପାରିଥିଲା । ପ୍ରକୃତରେ ସାମାଜିକ ସ୍ୱାଧୀନତା ଇଣ୍ଡିପେଣ୍ଡେନ୍ସ ଲିଗର ଏକ ଉଦ୍ଦେଶ୍ୟ ଥିଲା । ଆମେ ଭାବୁଥିଲୁ, ଭାରତ ସାରା ଲିଗ ଅନୁଷ୍ଠାନ କରି ସ୍ୱାଧୀନତା ଓ ସାମ୍ୟବାଦ ସପକ୍ଷରେ ପ୍ରଚାର ଚଳାଇବାକୁ । ଦୁଃଖ ଓ ବିସ୍ମୟର ବିଷୟ ଯେ କୌଣସି ସ୍ଥାନରେ ଲିଗ କାର୍ଯ୍ୟକାରୀ ହେଲନାହିଁ—କେବଳ ଯୁକ୍ତପ୍ରଦେଶରେ ଏହା କେତେକ ପରିମାଣରେ କାର୍ଯ୍ୟ କରିଥିଲା । ଦେଶରେ ସମର୍ଥନ ଅଭାବରୁ

ଏପରି ଯେ ହେଲା, ତାହାମାନଙ୍କ କରୁ ଅନେକ ଅଧିକାଂଶ କର୍ମୀ କଂଗ୍ରେସର ମୁଖ୍ୟ କର୍ମୀ ଥିଲେ ଏବଂ ଅନ୍ତତଃ ଆଦର୍ଶରେ କଂଗ୍ରେସ ସ୍ୱାଧୀନତା ଗ୍ରହଣ କରିଥିବାରୁ ସେମାନେ କଂଗ୍ରେସ ଅନୁଷ୍ଠାନ ଭିତରେ ଏହା କରି ପାରୁଥିଲେ । ଆଉରି ଏକ କାରଣ ହେଉଛି ଯେ; ପ୍ରଥମେ ଯେଉଁମାନେ ଏହା ଆରମ୍ଭ କରିଥିଲେ, ସେମାନଙ୍କ ଭିତରୁ ଅଧିକାଂଶ ଏକ ଅନୁଷ୍ଠାନ ରୂପେ ଗଢ଼ିବା ଦିଗରେ ସେପରି ମନୋଯୋଗ ଦେଇ ନ ଥିଲେ । ସେମାନେ ମନେ କଲେ ଯେ, କଂଗ୍ରେସ କାର୍ଯ୍ୟକାରୀ ସମିତି ଉପରେ ଗୋଟାଏ ଗ୍ରୁପ ଚଳାଇବା ନିମନ୍ତେ କମ୍ବା କଂଗ୍ରେସ କାର୍ଯ୍ୟକାରୀ ସମିତିର ନିର୍ବାଚନରେ ପ୍ରଭାବ ପକାଇବା ନିମନ୍ତେ ଏହା କରିବା ଦରକାର ବୋଲି ମନେ କରୁଥିଲେ । ଏହିରୂପେ ଇଣ୍ଡିପେଣ୍ଡେନ୍ସ ଲିଗ ଶିଥିଳ ହୋଇଗଲା ଏବଂ କଂଗ୍ରେସ ଅଧିକ ପ୍ରବଳ ହୋଇଯିବାରୁ ସମସ୍ତ ଲୋକେ ସବୁ କଂଗ୍ରେସରେ ପ୍ରବେଶ କଲେ ଏବଂ ଲିଗ ଆହୁରି ଦୁର୍ବଳ ହୋଇଗଲା । ୧୯୩୦ରେ ଆଇନ ଅମାନ୍ୟ ଆନ୍ଦୋଳନ ଆଗମନ ପରେ ଲିଗ କଂଗ୍ରେସରେ ମିଶିଗଲା ଓ ଲୋପ ପାଇଗଲା ।

୧୯୨୮ ର ଶେଷାର୍ଦ୍ଧ ଏବଂ ୧୯୨୯ ମସିହାରେ ମୋର ଗିରଫ ହେବା କଥା ବାରମ୍ବାର ଶୁଣାଗଲା । ସମ୍ବାଦପତ୍ରରେ ବାରମ୍ବାର ଏ ସମ୍ବନ୍ଧରେ ଲେଖା ଏବଂ ଜାଣିଥିବା ବନ୍ଧୁମାନଙ୍କଠାରୁ ମୁଁ ଯେଉଁ ଅସଂଖ୍ୟ ସତର୍କବାଣୀ ଘରୋଇ ଭାବରେ ଶୁଣିଥିଲି, ସେଥିରେ ବାସ୍ତବତା କେତେ ଥିଲା, ମୋତେ ଜଣା ନାହିଁ; ମାତ୍ର ଏହି ସତର୍କବାଣୀ ଯୋଗୁଁ ମୋ ଭିତରେ ଏକ ଅନିଶ୍ଚିତତା ଭାବ ହେଲା ଏବଂ ମୁଁ ସର୍ବଦା ଗିରଫ ହୋଇଯିବି ବୋଲି ଅନୁଭବ କରୁଥିଲି । ଏଥିଲାଗି ମୁଁ ବିଶେଷ ଭାବରେ ଚିନ୍ତା କରୁ ନ ଥିଲି କାରଣ ଭବିଷ୍ୟତରେ ଯାହା ହେଉ ପଛକେ, ଏହା ଜୀବନର ଏକ ସ୍ଥାୟୀ ବିଷୟ ହୋଇ ରହିପାରେ ନା ବୋଲି ମୁଁ ଜାଣିଥିଲି । ଏହି ଅନିଶ୍ଚିତତା ଭିତରେ ଆକସ୍ମିକ ପରିବର୍ତ୍ତନ ହେବା ଏବଂ ଜେଲ୍ ଯିବା ଭଲ । ମୋର ମନେହୁଏ, ମୋଟାମୋଟି ନିଜକୁ ମୁଁ ପ୍ରସ୍ତୁତ କରି ରଖିବା ନିମନ୍ତେ ଯଥେଷ୍ଟ ସମୟ ପାଇଥିଲି (ମୋ ପରିବାର

ଲୋକେ ମଧ୍ୟ ଅନେକ ପରିମାଣରେ ସେଥିପାଇଁ ପ୍ରସ୍ତୁତ ହୋଇଥିଲେ) ଏବଂ ଗିରଫ ଆସିଲେ ତାହା ମୁଁ ସହଜରେ ଗ୍ରହଣ କରିପାରିବ । ଏହି ଗୁଜବ ଫଳରେ ଆମର କାମ ବନ୍ଦ ହେଲା ନାହିଁ—ଏଥିରେ ଗୋଟାଏ ଉତ୍ତେଜନାରେ ଦିନ କଟିଲା । ଗୋଟିଏ ଦିନର ସ୍ୱାଧୀନତା କେତେ ମୂଲ୍ୟବାନ । ପ୍ରକୃତରେ ୧୯୨୮ ଓ ୧୯୨୯ କଟିଗଲା ଏବଂ ଅନେକ ଦିନ ପରେ ୧୯୩୦ ମସିହା ଏପ୍ରିଲ ମାସରେ ମୁଁ ଗିରଫ ହେଲି । ସେ ପର୍ଯ୍ୟନ୍ତ ମୋର ବାହାରେ ଅବସ୍ଥାନ-ବେଳେ ଏକପ୍ରକାର ଅବାସ୍ତବତା ଥିଲା । ପ୍ରତ୍ୟେକ ଅଳ୍ପ ଦିନ ଲାଗି ମିଳିଥିବା ଅପରିଚିତ ଲୋକପରି ମୁଁ ଆମ ଘରେ ଥାଏ, ଅନିଶ୍ଚିତଭାବରେ ଗତି କରୁଥାଏ—କାଲି ସକାଳୁ କ'ଣ ଘଟିବ, ମୋତେ ଜଣା ନ ଥାଏ ଏବଂ ମୋତେ ଜେଲ ଡାକରା ଆସିବ ବୋଲି ମୁଁ ବାରମ୍ବାର ଆଶା କରୁଥାଏ ।

୧୯୨୮ ଶେଷବେଳକୁ କଲିକତା କଂଗ୍ରେସ ନିକଟବର୍ତ୍ତୀ ହୋଇଗଲା । ମୋ ବାପା ଏଥିରେ ସଭାପତି ହେବାର ଥାଏ ; ସେ ସର୍ବଦଳ ସମ୍ମିଳନୀ ଏବଂ ତା ରିପୋର୍ଟରେ ମଗ୍ନ ଥାଆନ୍ତି ଏବଂ କଂଗ୍ରେସ ଯେପରି ତାହା ଗ୍ରହଣ କରୁ, ତାହାର ଚେଷ୍ଟା କରୁଥାନ୍ତି । ସେ ଜାଣିଥିଲେ ଯେ, ମୁଁ ଏଥିରେ ଏକମତ ନ ଥିଲି । ମୁଁ ସ୍ୱାଧୀନତା ସମସ୍ୟା ଉପରେ କୌଣସି ଗଣ୍ଡିକାମାନରେ ପଡ଼ିବାକୁ ପ୍ରସ୍ତୁତ ନୁହେଁ ଜାଣି ସେ ବିରକ୍ତ ହୋଇଥିଲେ । ଏ ବିଷୟରେ ଆମେ ଅଧିକ ଯୁକ୍ତି କଲୁ ନାହିଁ ; ମାତ୍ର ଆମ ଭିତରେ ନିଶ୍ଚିତ ରୂପେ ଗୋଟିଏ ମାନସିକ ଦ୍ୱନ୍ଦ୍ୱ ଚାଲିଥିଲା ଏବଂ ଭିନ୍ନ ପଥରେ ଗତି କରିବାର ଉଦ୍ୟମ ଥିଲା । ଏଥିପୂର୍ବରୁ ଆମର ମତଭେଦ ଯୋଗୁଁ ଆମେ ଅଲଗା ଅଲଗା ରାଜନୈତିକ ଦଳରେ ଯୋଗ ଦେଇଛୁ । ମାତ୍ର ଏତେବେଳେ ଯେପରି ମନ କଷା ହୋଇଥିଲା, ତାହା ଏଥିପୂର୍ବରୁ ବା ପରେ କେବେ ହୋଇ ନ ଥିଲା । ଏଥିରେ ଆମେ ଉଭୟେ ବରଂ ଅସୁଖୀ ଥିଲୁ । କଲିକତାରେ ଏହିକି ହେଲା ଯେ ମୋ ପିତା ଘୋଷଣା କଲେ ଯେ, କଂଗ୍ରେସ ଯଦି ତାଙ୍କ ମତ ଗ୍ରହଣ ନ କରେ ଅର୍ଥାତ୍ ସର୍ବଦଳ ସମ୍ମିଳନୀର ରିପୋର୍ଟ ଉପରେ ଯଦି ଅଧିକ ସଂଖ୍ୟକ

ମତି ନ ହୁଏ, ତେବେ ସେ ଜନପ୍ରିୟ କଂଗ୍ରେସ ଅଧିବେଶନରେ ସଭାପତି ହେବେ ନାହିଁ । ଏହା ଠିକ ନୀତିଗତ ଏବଂ ଗଣତନ୍ତ୍ର ଭାବରେ ଯଥାର୍ଥ । ତାଙ୍କ ମତ ବିରୋଧୀମାନେ ଏ ସମସ୍ୟାଟି ଏତେ ଦୂର ନେବାକୁ ପ୍ରସ୍ତୁତ ନ ଥିବାରୁ ହତବୁଦ୍ଧି ହୋଇଗଲେ । ମୋର ମନେହୁଏ କଂଗ୍ରେସ ଏବଂ ଅନ୍ୟ ଅନୁଷ୍ଠାନମାନଙ୍କରେ ସମାଲୋଚନା ଏବଂ ନିନ୍ଦା କରିବା; ଅଥଚ ଦାୟିତ୍ୱ ଗ୍ରହଣ କରିବାକୁ ପଶ୍ଚାତ୍‌ପଦ ହେବାର ଗୋଟାଏ ପ୍ରବୃତ୍ତି ରହିଛି । ଆମ ଉପରେ ଦାୟିତ୍ୱ ନ ପଡ଼ାଇ ସମାଲୋଚନା ଫଳରେ ଅନ୍ୟ ଦଳ ଆମ ସୁବିଧାନୁସାରେ ପରିବର୍ତ୍ତିତ ହୋଇପିବାର ଗୋଟାଏ ଆଶା ଆମ ମନରେ ଥାଏ । ପ୍ରଚଳିତ ଭାରତ ସରକାର ପରି ଯେଉଁଠାରେ ଆମଠାରେ ଦାୟିତ୍ୱ ନାହିଁ, ଶାସନ ପରିଷଦ ଅତ୍ୟନ୍ତ ଦାୟିତ୍ୱହୀନ ଏବଂ ଅନପସରଣୀୟ ହୋଇଛି, ସେଠାରେ ସମାଲୋଚନା ହେବା ଉଚିତ (ଅବଶ୍ୟ କାର୍ଯ୍ୟ କଥା ଅଲଗା) ଏବଂ ଏ ସମାଲୋଚନା ନାସ୍ତିସୂଚକ ହେବାକୁ ବାଧ୍ୟ । ଏହା ସତ୍ତ୍ୱେ ଏହି ନାସ୍ତିସୂଚକ ସମାଲୋଚନାକୁ କାର୍ଯ୍ୟପ୍ରଦ କରିବାକୁ ହେଲେ ଏହା ପଛରେ ସୁବିଧା ମିଳିଲେ ମାତ୍ରେ ସମସ୍ତ ଦାୟିତ୍ୱ—ସରକାରୀ ପ୍ରତ୍ୟେକ ବିଭାଗର ଦାୟିତ୍ୱ, ଶାସନ ଓ ସାମରିକ, ଆଭ୍ୟନ୍ତରୀଣ ଓ ବୈଦେଶିକ ଦାୟିତ୍ୱ—ମୁଣ୍ଡାଇବାକୁ ମାନସିକ ଭାବରେ ଏବଂ ସର୍ବତୋଭାବେ ପ୍ରସ୍ତୁତ ହୋଇଥିବା ଦରକାର । ଲିବରାଲମାନେ ସୈନ୍ୟ ବାହିନୀରେ ଯେପରି ଅଳ୍ପ କେତେକ ଭାଗ ଆମ ନିଜ ଦାୟିତ୍ୱକୁ ଆଣିବା ନିମନ୍ତେ ଦାବି କରନ୍ତି, ସେହିପରି ଏକ ଆଂଶିକ ଦାବି କରିବା ଅର୍ଥ ହେଉଛି, ଆମେ ସମସ୍ତ ଜିନିଷଟିକୁ ଚଳାଇ ପାରିବାରେ ଅସମର୍ଥ ଏବଂ ସମାଲୋଚନାର କୌଣସି ମୂଲ୍ୟ ନ ଥାଏ ।

ଏହି ସମାଲୋଚନା ଓ ନିନ୍ଦା ଏବଂ ତାହା ସଙ୍ଗେ ସଙ୍ଗେ ତାର ସ୍ୱାଭାବିକ ଫଳାଫଳରୁ ପଶ୍ଚାତ୍‌ପଦ ହେବା ମନୋବୃତ୍ତି ଗାନ୍ଧୀଜୀଙ୍କର ସମାଲୋଚକମାନଙ୍କ ଭିତରେ ପ୍ରାୟ ଦେଖାଯାଉଛି । କଂଗ୍ରେସରେ ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ ତାଙ୍କ କାର୍ଯ୍ୟକଳାପ ପସନ୍ଦ କରନ୍ତି ନାହିଁ ଏବଂ କଠୋର ସମାଲୋଚନା କରନ୍ତି; ମାତ୍ର ସେମାନେ ତାଙ୍କୁ

କଂଗ୍ରେସରୁ ଓହରିଦେବା ନିମନ୍ତେ ପ୍ରସ୍ତୁତ ନୁହନ୍ତି । ଏପରି ମନୋଭାବ ସହଜରେ ବୁଝିହେଉଛି; ମାତ୍ର ଏହା କୌଣସି ଦଳ ପକ୍ଷରେ ଭଲ ନୁହେଁ ।

କଲିକତା କଂଗ୍ରେସରେ ସେହିପରି କିଛି ଅସୁବିଧା ଘଟିଲା । ଦୁଇଦଳଙ୍କ ଭିତରେ ଆପୋଷ ମିଳାମିଶା ହୋଇଗଲା ଏବଂ ଗୋଟାଏ ମିଳିନାମା ଘୋଷଣା ହେଲା ଏବଂ ପରେ ପୁଣି ତାହା ଭାଙ୍ଗିଗଲା । ସମସ୍ତ ବ୍ୟାପାରଟା ଗୋଳମାଳିଆ ହୋଇଗଲା—କିଛି ବୁଝିହେଲା ନାହିଁ । କଂଗ୍ରେସରେ ଯେଉଁ ମୁଖ୍ୟ ପ୍ରସ୍ତାବ ଗୃହୀତ ହେଲା, ସେଥିରେ ସର୍ବଦଳ ସମ୍ମିଳନୀ ରିପୋର୍ଟକୁ ଗ୍ରହଣ କରାଗଲା ଏବଂ ବ୍ରିଟିଶ ସରକାରଙ୍କୁ ଜଣାଇ ଦିଆଗଲା ଯେ, ଯଦି ଏକବର୍ଷ ଭିତରେ ସରକାର ଏହି ଶାସନ ବିଧାନ ଗ୍ରହଣ ନ କରେ, ତେବେ କଂଗ୍ରେସ ସ୍ୱାଧୀନତା ପଥ ଗ୍ରହଣ କରିବ । ଏହା ଏକ ବର୍ଷ ଲାଗି ଗୋଟାଏ ଅନୁଗ୍ରହ ଏବଂ ଭଦ୍ର ଚେଷ୍ଟାପତ୍ର । ଏହି ପ୍ରସ୍ତାବ ଦ୍ୱାରା ସ୍ୱାଧୀନତା ଲକ୍ଷ୍ୟରୁ ଟିକିଏ ଯେ ତଳକୁ କଂଗ୍ରେସ ଖସିଲା ଏଥିରେ ସନ୍ଦେହ ନାହିଁ; କାରଣ ସର୍ବଦଳ ସମ୍ମିଳନୀ ରିପୋର୍ଟରେ ପୂର୍ଣ୍ଣ ଔପନିବେଶିକ ସ୍ୱାୟତ୍ତ ଶାସନ ଲାଗି ସୁଦ୍ଧା ଦାବି କରାଯାଇ ନ ଥିଲା । ତଥାପି ଏହା ଏକ ଭଲ ପ୍ରସ୍ତାବ ବୋଲି କୁହାଯାଇପାରେ—କାରଣ ଗୋଟାଏ ଭେଦ ଜନ୍ମିବାକୁ କାହାରି ଇଚ୍ଛା ନ ଥିଲା, ତାହା ବନ୍ଦ ହେଲା ଏବଂ ୧୯୩୦ ମସିହାର ସଂଗ୍ରାମ ନିମନ୍ତେ କଂଗ୍ରେସକୁ ଏକଜୁଟ କରି ରଖିଲା । ବ୍ରିଟିଶ ସରକାର ଯେ ଏକ ବର୍ଷ ଭିତରେ ସର୍ବଦଳ ସମ୍ମିଳନୀ ପ୍ରସ୍ତାବ ଗ୍ରହଣ କରିବ ନାହିଁ, ଏହା ପରିଷ୍କାର ଜଣାପଡୁଥିଲା । ସଂଗ୍ରାମ ହେବା ଅବଶ୍ୟମ୍ଭାବୀ ଏବଂ ଦେଶର ପରିସ୍ଥିତି ଯେପରି ଥିଲା, ସେଥିରେ ଗାନ୍ଧୀଜୀଙ୍କ ନେତୃତ୍ୱ ବିନା କୌଣସି ସଂଗ୍ରାମ କୃତକାର୍ଯ୍ୟ ହେବ ନାହିଁ ।

ଅଧ୍ୟାପନ୍ତାରିଆ ଭିତରେ ହେଉ ପଛକେ ମୁଁ ସାଧାରଣ ଅଧିବେଶନରେ ଏହି ପ୍ରସ୍ତାବର ବିରୋଧ କରିଥିଲି । ତଥାପି ମୋତେ ପୁଣି ସାଧାରଣ ସମ୍ପାଦକ ରୂପେ ନିର୍ବାଚିତ କରାଗଲା । ଯାହାହେଉଥାଉ ପଛକେ ମୁଁ ହେନେତେନେ କାର୍ଯ୍ୟରେ ରହୁଥିଲି ଏବଂ କଂଗ୍ରେସ ମଣ୍ଡଳୀରେ

ମୁଁ ଯେପରି ବିଖ୍ୟାତ "ଡାକାର ଅଫ ଦ୍ରେ" ଭୂମିକାରେ ଅଛି । ସନ୍ତୋଷଚନ୍ଦ୍ର ଗାନ୍ଧିଙ୍କର ଯେ କେହି ଲୋକ ବନ୍ଧୁ ଥିଲେ, ଅନୁଷ୍ଠାନର ସମ୍ପାଦକ ହୋଇଥିଲି ମୁଁ ।

କୋଇଲାଖଣି ଅଞ୍ଚଳର କେନ୍ଦ୍ର ଝରିଆଠାରେ କଲିକତା କଂଗ୍ରେସ ଅଧିବେଶନର କେତେକ ଦିନ ପୂର୍ବରୁ ନିଖିଳ ଭାରତ ଟ୍ରେଡ଼-ଇଉନିୟନ କଂଗ୍ରେସ ଅଧିବେଶନ ହୋଇଥିଲା । ମୁଁ ପ୍ରଥମ ଦୁଇ ଦିନ ସେଠାରେ ଯୋଗ ଦେଇ ତା ପରେ କଲିକତା ଯାଇଥିଲି । ଟ୍ରେଡ଼-ଇଉନିୟନ କଂଗ୍ରେସରେ ମୋର ଉପସ୍ଥିତି ଏହି ପ୍ରଥମ ଏବଂ ମୁଁ ଏକ-ପ୍ରକାର ବାହାର ଲୋକ ହିସାବରେ ଯାଇଥାଏ । ଅବଶ୍ୟ କୃଷକଙ୍କ ଭିତରେ ଏବଂ ପରେ ଶ୍ରମିକଙ୍କ ଭିତରେ ମୁଁ କାର୍ଯ୍ୟ କରିଥିବାରୁ ଜନସାଧାରଣଙ୍କ ଉପରେ ମୋର ଗୋଟାଏ ପ୍ରଭାବ ହୋଇଥାଏ । ସେଠି ମଧ୍ୟ ଦେଖିଲି, ସଂସ୍କାରଦଳ ଏବଂ ପ୍ରଗତିଶୀଳ ଓ ବିପ୍ଳବୀ ଦଳ ଏହିପରି ଖୁବ୍ ଝଗଡ଼ା ଲାଗିଛି । କେଉଁ ଆନ୍ତର୍ଜାତିକ ଅନୁଷ୍ଠାନ ସହିତ ସଂଯୁକ୍ତ ହେବ ଏବଂ ସାମ୍ରାଜ୍ୟବାଦ ବିରୋଧୀ ଲୀଗ ଓ ପାନ୍‌ପାସିଫିକ ଇଉନିୟନ ପ୍ରତି କପରି ମନୋଭାବ ହେବ ଏବଂ ଜେନେଭାଠାରେ ହେଉଥିବା ଆନ୍ତର୍ଜାତିକ ଶ୍ରମିକ ସମ୍ମିଳନୀକୁ ପ୍ରତିନିଧି ପଠାଇବା ବାଞ୍ଛନୀୟ କି ନା, ଏହି ସମ୍ବନ୍ଧରେ ମତଭେଦ ଥାଏ । ଏହି ମତ ଭେଦ ଛଡ଼ା ଦୁଇ ଦଳର ଦୃଷ୍ଟି କୋଣରେ ଆହୁରି ଅଗାଧ ପ୍ରଭେଦ ଦେଖା ଯାଉଥିଲା । ଟ୍ରେଡ଼ଇଉନିୟନ ଦଳଙ୍କ ରାଜନୀତି ମଡ଼ରେଟ୍ ଧରଣର ଏବଂ ସେମାନେ ଶ୍ରମିକ ସମସ୍ୟା ଭିତରେ ରାଜନୀତି ପ୍ରବେଶ ପସନ୍ଦ କରୁ ନ ଥିଲେ । ସେମାନେ କେବଳ ଶ୍ରମିକ କାର୍ଯ୍ୟରେ ବିଶ୍ୱାସ କରୁଥିଲେ, ତାହା ମଧ୍ୟ ଟିକିଏ ସତର୍କତାର ସହିତ କରିବା ସପକ୍ଷରେ ଥିଲେ ଏବଂ କ୍ରମେ କ୍ରମେ ଶ୍ରମିକମାନଙ୍କ ଅବସ୍ଥା ଭଲ କରିବା ଉଦ୍ଦେଶ୍ୟ ତାଙ୍କର ଥିଲା । ଏହି ଦଳର ନେତା ଥିଲେ ଏନ୍, ଏମ୍, ଯୋଶୀ—ସେ ଅନେକ ଥର ଜେନେଭାକୁ ଭାରତୀୟ ଶ୍ରମିକଙ୍କ ପ୍ରତିନିଧି ରୂପେ ଯାଇଛନ୍ତି । ଅନ୍ୟଦଳ ଆଉ ଟିକିଏ ସଂଗ୍ରାମଶୀଳ ଥିଲେ —ରାଜନୀତିକ କାର୍ଯ୍ୟରେ ସେମାନଙ୍କର ବିଶ୍ୱାସ ଥିଲା ଏବଂ ନିଜର

ବୈପ୍ଳବିକ ଦୃଷ୍ଟି କୋଣ ସେମାନେ ପ୍ରକାଶ୍ୟ ରୂପେ ଘୋଷଣା କରୁଥିଲେ । ଏମାନଙ୍କ ଉପରେ କମ୍ୟୁନିଷ୍ଟ ବା କମ୍ୟୁନିଷ୍ଟ ପ୍ରଭାବିତ ଲୋକଙ୍କର କର୍ତ୍ତୃତ୍ୱ ନ ଥିଲେ ସୁଦ୍ଧା ଅନେକ ପନ୍ଥାରେ ସେମାନଙ୍କ ଦ୍ୱାରା ପ୍ରଭାବିତ ହେଉଥିଲେ । ବମ୍ବେ ଲୁଗାକଳ ଶ୍ରମିକ ଅନୁଷ୍ଠାନକୁ ଏମାନେ ଅଧିକାର କରିଥିଲେ ଏବଂ ଏମାନଙ୍କ ନେତୃତ୍ୱରେ ବମ୍ବେର ଏକ ପ୍ରସିଦ୍ଧ ଲୁଗାକଳରେ ଶ୍ରମିକ ଧର୍ମଘଟ ହୋଇଥିଲା । ଏହା ଏକାଂଶରେ ସଫଳ ହୋଇଥିଲା । ବମ୍ବେରେ ଗିର୍ଣ୍ଣି କାମଗାର ଇଉନିୟନ ଏକ ଶକ୍ତିଶାଳୀ ଶ୍ରମିକ ସଂଗଠନ ରୂପେ ସମଗ୍ର ଶ୍ରମିକ ଆନ୍ଦୋଳନ ଭିତରେ ପ୍ରାଧାନ୍ୟ ଲାଭ କରିଥିଲା । ଏହି ପ୍ରଗତିଶୀଳ ଦଳ ଆୟତ୍ତରେ ଥିବା ଜି. ଆଇ. ପି. ରେଲବାଇ ଇଉନିୟନ ମଧ୍ୟ ଖୁବ ଶକ୍ତିଶାଳୀ ଥିଲା ।

ଟ୍ରେଡ଼ଇଉନିୟନ କଂଗ୍ରେସ ଆରମ୍ଭ ଦିନୁଁ ଏନ. ଏମ. ଯୋଶୀ ଏବଂ ତାଙ୍କର ସହକର୍ମୀମାନେ ଏହାର କର୍ମକର୍ତ୍ତା ହୋଇଛନ୍ତି ଏବଂ ଅଫିସ ତାଙ୍କ ହାତରେ ଅଛି ଏବଂ ଏହି ଆନ୍ଦୋଳନକୁ ଗଢ଼ିବାରେ ଯୋଶୀଙ୍କର ହାତ ଅଛି । ଅଗ୍ରଗାମୀ ଦଳ ଶ୍ରମିକଙ୍କ ଭିତରେ ଅଧିକ ଶକ୍ତିଶାଳୀ ହୋଇଥିଲେ ସୁଦ୍ଧା ଉପରେ ମତ ସ୍ଥିର କରିବାର ସୁବିଧା ପାଉ ନଥିଲେ । ଏହା ଏକ ଅସନ୍ତୋଷଜନକ ଅବସ୍ଥା—ପ୍ରକୃତ ଅବସ୍ଥା ଏଥିରେ ଜଣାପଡୁ ନଥିଲା । ଏଥିପାଇଁ ଅସନ୍ତୋଷ ଜନ୍ମୁଥିଲା ଏବଂ ବିବାଦ ଲାଗୁଥିଲା ଏବଂ ଅଗ୍ରଗାମୀଦଳ ଟ୍ରେଡ଼ଇଉନିୟନ କଂଗ୍ରେସରେ କ୍ଷମତା ହାସଲ କରିବା ନିମନ୍ତେ ଚେଷ୍ଟା କରୁଥିଲେ । ଏହା ସଙ୍ଗେ ସଙ୍ଗେ ମଧ୍ୟ ଗୋଟାଏ ଭେଦ ଜନ୍ମିବ ବୋଲି ଏହାକୁ ବେଶୀଦୂର ନେବାକୁ ସମସ୍ତେ ଅନିଚ୍ଛୁକ ଥିଲେ । ଭାରତୀୟ ଟ୍ରେଡ଼ଇଉନିୟନ ଆନ୍ଦୋଳନ ଏବେ ସୁଦ୍ଧା ଶୈଶବାବସ୍ଥାରେ ଥିଲା । ଏହା ଅତ୍ୟନ୍ତ ଦୁର୍ବଳ ଥିଲା ଏବଂ ଅଶ୍ରମିକ ନେତାମାନେ ଏହାକୁ ଚଳାଉଥିଲେ । ଏପରି ଅବସ୍ଥାରେ ଶ୍ରମିକ ଆନ୍ଦୋଳନରୁ ସାଧାରଣତଃ ବାହାର ଲୋକେ ନିଜ ସ୍ୱାର୍ଥ ସିଦ୍ଧିର ସୁବିଧା ଉଠାଇବାକୁ ଚାହାନ୍ତି ଏବଂ ଭାରତୀୟ ଟ୍ରେଡ଼ ଇଉନିୟନ ଏବଂ ଶ୍ରମିକ ୟୁନିୟନମାନଙ୍କର ଏହା ଯଥେଷ୍ଟ ପରିମାଣରେ ଥିଲା । ସାହା-

ହେଉ, ଅନେକ ବର୍ଷ ଧରି କାର୍ଯ୍ୟ କରିଥିବା ଫଳରେ ଏନ. ଏମ. ଯୋଶୀ ଜଣେ ନିଷ୍ଠାପର ଶ୍ରମିକ ନେତାରୂପେ ପରିଚିତ ହୋଇଥିଲେ । ଏପରିକି ଯେଉଁମାନେ ରାଜନୀତି କ୍ଷେତ୍ରରେ ତାଙ୍କୁ ପଛୁଆ ଓ ମଡ଼େରେଟ୍ ବୋଲି କହନ୍ତି ସେମାନେ ମଧ୍ୟ ଭାରତୀୟ ଶ୍ରମିକ ଆନ୍ଦୋଳନରେ ତାଙ୍କର ସେବାର ମୂଲ୍ୟ ସ୍ୱୀକାର କରନ୍ତି । ଅନ୍ୟାନ୍ୟ କେତେକ ମଡ଼େରେଟ୍ ଓ ଅଗ୍ରଗାମୀ ଦଳ ସମ୍ବନ୍ଧରେ ମଧ୍ୟ ଏହି କଥା କୁହାଯାଇ ପାରେ ।

ଝରିଆରେ ଏହି ଅଗ୍ରଗାମୀ ଦଳ ସହିତ ମୋର ସହାନୁଭୂତି ଥିଲା— ମାତ୍ର ମୁଁ ନୂଆ ଯାଇଥିବାରୁ ଟ୍ରେଡ୍ ୟୁନିୟନ କଂଗ୍ରେସର ଏହି ଘରୋଇ ବିବାଦରେ ପଶିବାକୁ ଇଚ୍ଛା ନ ଥିଲା—ତେଣୁ ସେଥିରୁ ମୁଁ ଅଲଗା ରହିଲି । ମୁଁ ଝରିଆରୁ ଆସିବାପରେ ଟ୍ରେଡ ୟୁନିୟନ କଂଗ୍ରେସର ବାର୍ଷିକ ନିର୍ବାଚନ ହେଲା ଏବଂ ମୁଁ କଲିକତାରେ ଖବର ପାଇଲି ଯେ, ଆଗାମୀ ବର୍ଷ ନିମନ୍ତେ ମୋତେ ସଭାପତି ରୂପେ ନିର୍ବାଚନ କରାଯାଇଛି । ମଡ଼େରେଟ୍ ଦଳ ତରଫରୁ ମୋ ନାମ ପ୍ରସ୍ତାବିତ ହୋଇଥିଲା—କାରଣ ସେମାନେ ଦେଖିଲେ ଯେ, ଅଗ୍ରଗାମୀ ଦଳ ପକ୍ଷରୁ ଯେଉଁ ପ୍ରକୃତ ଶ୍ରମିକ (ରେଲବାଇ)ଙ୍କୁ ପ୍ରାର୍ଥୀରୂପେ ଠିଆ କରାଯାଇଛି, ମୋ ନାମ ପ୍ରସ୍ତାବ ହେଲେ ସେ ପରାସ୍ତ ହୋଇଯିବେ । ମୁଁ ଯଦି ନିର୍ବାଚନ ଦିନ ଝରିଆରେ ଉପସ୍ଥିତ ଥାଆନ୍ତି, ତେବେ ମୁଁ ନିଶ୍ଚୟ ସେହି ଶ୍ରମିକ ସପକ୍ଷରେ ମୋର ନାମ ପ୍ରତ୍ୟାହାର କରିଦେଇ ଥାଆନ୍ତି । ଜଣେ ଅଶ୍ରମିକ ଏବଂ ନୂତନ ଲୋକ ଉପରେ ହଠାତ୍ ସଂପଦ ବୋଝ ଲଦିଦେବାଟା ମୋତେ ବଡ଼ ଅସୁନ୍ଦର ମନେହେଲା । ଏଥିରୁ ଭାରତରେ ଟ୍ରେଡ଼ ଇଉନିୟନ ଆନ୍ଦୋଳନର ଦୁର୍ବଳତା ଓ ଶୈଶବତ୍ୱ ଦେଖାଗଲା ।

୧୯୨୮ ମସିହାରେ ଅନେକ ଶ୍ରମିକ ବିବାଦ ଓ ଧର୍ମଘଟ ହୋଇଥିଲା । ୧୯୨୯ ମସିହାରେ ମଧ୍ୟ ସେହିପରି ହେଲା । ବମ୍ବେ ଶ୍ରମିକଙ୍କ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଥିଲା—ସେମାନେ ଅଧିକ ସଂଗ୍ରାମଶୀଳ ଓ ଏଥିରେ ନେତୃତ୍ୱ ଦେଲେ । ବଙ୍ଗଳା ଝୋଟ କଳମାନଙ୍କରେ ମଧ୍ୟ ଗୋଟାଏ ବଡ଼

ସାଧାରଣ ଧର୍ମଘଟ ହେଲା । ଜାମସେଦପୁର ଲୁହା କାରଖାନା ଏବଂ ମୋର 'ମନେହୁଏ ରେଲବାଲେ ଧର୍ମଘଟ ମଧ୍ୟ ହେଲା । ଜାମସେଦପୁରର ଟିନ୍‌ପ୍ଲେଟ ଓ୍ୟାର୍କସ୍‌ପରେ ଅନେକ ମାସ ପର୍ଯ୍ୟନ୍ତ ଏକ ଦୀର୍ଘ ଧର୍ମଘଟ ସାହସର ସହିତ ଚାଲିଲା । ସାଧାରଣ ସହାନୁଭୂତ ପାଇବା ସତ୍ତ୍ୱେ ଶକ୍ତିଶାଳୀ ମାଲିକ କୋମ୍ପାନୀ (ବର୍ମା ଅଏଲ କମ୍ପାନୀ ସହିତ ସମ୍ପୃକ୍ତ) ଶ୍ରମିକମାନଙ୍କୁ ଦମନ କରିଦେଲ ।



## ଟ୍ରେଡ୍‌ ୟୁନିୟନ କଂଗ୍ରେସ

ଯୁଦ୍ଧପରେ ଦୁଇବର୍ଷ ପର୍ଯ୍ୟନ୍ତ ଶ୍ରମିକମାନଙ୍କର ଅଶାନ୍ତ ଦେଶରେ ଲାଗି ରହିଲା ଏବଂ ଶ୍ରମିକଙ୍କ ଅବସ୍ଥା ଖରାପ ଅଡ଼କୁ ଯାଉଥିଲା । ମହାଯୁଦ୍ଧ ପରେ ଭାରତରେ ଶିଳ୍ପ ବ୍ୟବସାୟର ଉନ୍ନତି ହୋଇଥିଲା ଏବଂ ଅଧିକ ଲାଭ ହୋଇଥିଲା । ୫୦ ବର୍ଷ ପର୍ଯ୍ୟନ୍ତ ଝୋଟ ଓ ତୂଳା କଲରେ ବାର୍ଷିକ ଶହେ ଟଙ୍କାରେ ଶହେ ଟଙ୍କା ଏବଂ କେବେ କେବେ ୧୫୦ ଟଙ୍କା ପର୍ଯ୍ୟନ୍ତ ଲାଭ ହେଲା । ଏହି ସବୁ ପ୍ରଚୁର ଲାଭ ମାଲିକ ଓ ଅଂଶୀଦାରମାନଙ୍କ ହାତରେ ପଡ଼ିଥିଲା ! ମାତ୍ର ଶ୍ରମିକମାନଙ୍କ ଅବସ୍ଥାର କିଛି ପରିବର୍ତ୍ତନ କରାଗଲା ନାହିଁ । ମଜୁରିରେ ଯାହା କିଛି ସାମାନ୍ୟ ବୃଦ୍ଧି ହେଉଥିଲା, ତାହା ଜିନିଷ ଦରଦାମ ଅଧିକ ହେବାରୁ ସେହି ହିସାବରେ ପୂରଣ ହୋଇଯାଉଥିଲା । ଏହି ସମୟରେ କୋଟି କୋଟି ଟଙ୍କା ରୋଜଗାର ହେଉଥିବାବେଳେ ଅଧିକାଂଶ ଶ୍ରମିକ ଅତି ଦୁଃଖଜନକ କୁଟୀରରେ ପଡ଼ି ରହୁଥିଲେ; ଏପରିକି ସ୍ତ୍ରୀ ଲୋକମାନେ ଲୁଗା ସୁଦ୍ଧା ପିନ୍ଧିବାକୁ ପାଉ ନଥିଲେ । ବମ୍ବେରେ ଶ୍ରମିକଙ୍କ ଅବସ୍ଥା ଅତି ଖରାପ ଥିଲା ଏବଂ କଲିକତାର ବଡ଼ ପ୍ରାସାଦମାନଙ୍କଠାରୁ ପ୍ରାୟ ଏକ ଘଣ୍ଟା ସମୟର ଦୂର ସ୍ଥାନରେ ଥିବା ଝୋଟକଲ ଶ୍ରମିକଙ୍କ ଅବସ୍ଥା ବୋଧ ହୁଏ ଅତି ଖରାପ ଥିଲା । ଅର୍ଦ୍ଧନଗ୍ନ ସ୍ତ୍ରୀ ଲୋକମାନେ କଳଙ୍କିତ ପେଟ କୌଣସି ପ୍ରକାରେ ପୋଷିବା ନିମନ୍ତେ ଖଟୁଥିଲେ; ମାତ୍ର ତାଙ୍କ ଚାରିଆଡ଼େ ଧନ-ସ୍ରୋତ ଅବଶ୍ୟାନୁଭବରେ

ଗ୍ଲାସ୍‌ଗୋ ଏବଂ ଡଣ୍ଡିକୁ ବୁହା ହେଉଥାଏ—ଏଗୁଡ଼ିକରେ ଅଳ୍ପ କେତେକ ଲୋକଙ୍କ ପକେଟରେ କବ୍ଜା ରହେ ।

ଏହି ବର୍ଷମାନଙ୍କରେ ଶିଳ୍ପରେ ସମସ୍ତେ ଲାଭବାନ୍ ହେଲେ; ମାତ୍ର ଶ୍ରମିକମାନଙ୍କ ଅବସ୍ଥା ପୂର୍ବପରି ରହିଲା, ସେମାନେ କିଛି ଫାଇଦା ଉଠାଇ ପାରିଲେ ନାହିଁ । ପୁଣି ଏ ସମସ୍ତ ଅନ୍ତ ହେଲା ପରେ ଯେତେବେଳେ ବହୁତ ଲାଭ କରିବା ଆଉ ସମ୍ଭବ ନ ଥିଲା, ସେତେବେଳେ ମଧ୍ୟ ଶ୍ରମିକମାନଙ୍କ ଉପରେ ବୋଝ ପଡ଼ିଲା । ଆଗେ ଯେଉଁ ଲାଭ ହୋଇଥିଲା, ସେକଥା ଭୁଲିଗଲେ—ସେ ସବୁ ଖରଚ ହୋଇ ଯାଇଥିଲା । ବର୍ତ୍ତମାନ ଯଥେଷ୍ଟ ଲାଭ ନ ହେଲେ କାରଖାନା ଚାଲିବ କେମିତି ? ସେହି ହେତୁ ଶ୍ରମିକ ଅଶାନ୍ତ ହେଲେ—ବମ୍ବେରେ ବଡ଼ ଧର୍ମଘଟ ଫଳରେ ସମସ୍ତେ ତାଟକା ହୋଇଥିଲେ—ମାଲିକ ଓ ସରକାର ଉଭୟେ ଉଦ୍‌ବେଗ ହୋଇଗଲେ । ଆଦର୍ଶ ଓ ସଙ୍ଗଠନ ଉଭୟ ଦିଗରେ ଶ୍ରମିକ ଆନ୍ଦୋଳନ ନିଜ ଶ୍ରେଣୀସ୍ୱାର୍ଥ ସମ୍ବନ୍ଧରେ ସଚେତନ ଏବଂ ସଂଗ୍ରାମଶୀଳ ଓ ଚେତନଶୀଳ ହୋଇ ଉଠିଥିଲା । ରାଜନୀତିକ ପରିସ୍ଥିତି ମଧ୍ୟ ଦ୍ରୁତଗତିରେ ପରିବର୍ତ୍ତିତ ହେଉଥାଏ । ଏହି ଦୁଇଟି ଅଲଗା ଆନ୍ଦୋଳନ—ପରସ୍ପର ସହିତ କିଛି ସମ୍ପର୍କ ନ ଥିଲେ ସୁଦ୍ଧା ସେଗୁଡ଼ିକ ଏକପ୍ରକାର ଏକ ଢଙ୍ଗର ଥିଲା ଏବଂ ସେମାନଙ୍କ ଉପସ୍ଥିତି ସରକାରଙ୍କୁ ସନ୍ତୋଷଜନକ ମନେ ହେଉ ନ ଥିଲା ।

୧୯୨୯ ମସିହା ମାର୍ଚ୍ଚ ମାସରେ ସରକାର ହଠାତ୍ ଶ୍ରମିକ ଆନ୍ଦୋଳନର ଅଗ୍ରଗାମୀ ଦଳର କେତେକ ମୁଖ୍ୟ କର୍ମୀଙ୍କୁ ଗିରଫ କରି ସଙ୍ଗଠିତ ଶ୍ରମିକ ଆନ୍ଦୋଳନ ଉପରେ ଏକ ଆଘାତ କଲେ । ବମ୍ବେ ଗିର୍ଣ୍ଣି କାମଗାର ୟୁନିୟନର ନେତାମାନେ ଏବଂ ବଙ୍ଗଳା, ଯୁକ୍ତପ୍ରଦେଶ ଏବଂ ପଞ୍ଜାବର ଶ୍ରମିକନେତାମାନେ ଗିରଫ ହେଲେ । ଏମାନଙ୍କ ଭିତରୁ କେତେକ କମ୍ୟୁନିଷ୍ଟ, କେତେକ କମ୍ୟୁନିଷ୍ଟ ଭାବାପନ୍ନ ଏବଂ ଆଉ କେତେକ କେବଳ ଟ୍ରେଡ଼ ୟୁନିଅନ୍ କର୍ମୀ ଥିଲେ । ଯେଉଁ ବଡ଼ ମିରଟ ବିଚାର ପ୍ରାୟ ୪ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା, ଏହା ତାହାର ଆରମ୍ଭ ମାତ୍ର ।

ମିରଟ ମକଦ୍ଦମା ଲଢ଼ିବା ପାଇଁ ଗୋଟିଏ କମିଟି ଗଢ଼ା ହେଲା—ସେଥିରେ ମୋ ପିତା ଚେୟାରମ୍ୟାନ ହେଲେ—ମୁଁ, ଡାକ୍ତର ଅନ୍‌ସାରୀ ଏବଂ ଆଉ କେତେକ ଏଥିରେ ସଭ୍ୟ ଥିଲୁଁ । ଏହା ଆମ ପକ୍ଷରେ ବଡ଼ କଷ୍ଟକର କାର୍ଯ୍ୟ ହୋଇଥିଲା । ଟଙ୍କା ସଂଗ୍ରହ କରିବା ସହଜ ନ ଥିଲା, ଦେଶର ପଇସାବାଲା ଲୋକଙ୍କର କମ୍ୟୁନିଷ୍ଟ, ସୋସିଆଲିଷ୍ଟ ଓ ଅନ୍ୟ ଶ୍ରମିକ ଆନ୍ଦୋଳନକାରୀମାନଙ୍କ ପ୍ରତି ଆଦୌ ସହାନୁଭୂତି ନ ଥାଏ । ଟଙ୍କା ପାଇଲେ ଓକିଲ କାମ କରିବାକୁ ପ୍ରସ୍ତୁତ ଥିଲେ—ଆମ କମିଟିରେ ମୋ ପିତା ଏବଂ ଆଉ କେତେକ ଖ୍ୟାତନାମା ଓକିଲ ଥିଲେ ଏବଂ ମକଦ୍ଦମା ଚଳାଇବା ସମ୍ବନ୍ଧରେ ସେମାନଙ୍କଠାରୁ ପରାମର୍ଶ ସର୍ବଦା ମିଳୁଥିଲା । ଏଥିପାଇଁ ଆମକୁ ପଇସା ପଡ଼ୁ ନ ଥିଲା । ମାତ୍ର ମିରଟରେ ଏକାବେଳକେ ମାସ ମାସ ଧରି ବସିବା ତାଙ୍କ ପକ୍ଷେ ସମ୍ଭବ ନ ଥିଲା । ଆଉ ଯେଉଁ ଓକିଲଙ୍କ ପାଖକୁ ଆମେ ଗଲୁ, ସେମାନେ ଯେପରି ବେଶୀ ପଇସା ପାଇବାର ଏହି ମକଦ୍ଦମା ଏକ ସୁବିଧା ବୋଲି ଭାବିଲେ ।

ମିରଟ ମକଦ୍ଦମା ଛଡ଼ା ମୁଁ ଏମ୍. ଏନ୍. ରାୟଙ୍କ ମକଦ୍ଦମା ଏବଂ ଆଉ କେତେକ ମକଦ୍ଦମା ସହିତ ସମ୍ପୃକ୍ତ ଥିଲି । ପ୍ରତ୍ୟେକ ସମୟରେ ମୋର ଓକିଲ ଭାଇମାନଙ୍କର ଅର୍ଥ ଉପାର୍ଜନର ଲୋଭ ଦେଖି ମୁଁ ଆଚମ୍ବିତ ହୋଇଛି । ୧୯୧୯ରେ ପଞ୍ଜାବରେ ସାମରିକ ଆଇନ ସମୟରେ ଏକ ଘଟଣା ଦେଖି ମୁଁ ବଡ଼ ମର୍ମାହତ ହୋଇଥିଲି—ସାମରିକ ଆଇନ ମକଦ୍ଦମାରେ କେତେକ ଲୋକ ପଡ଼ିଥାଆନ୍ତି ଏବଂ ଜଣେ ଓକିଲ ବି ଥାଆନ୍ତି; ଅଥଚ ଜଣେ ପ୍ରସିଦ୍ଧ ଓକିଲ ସେମାନଙ୍କ ମକଦ୍ଦମା ଲଢ଼ିବା ନିମନ୍ତେ ପ୍ରଚୁର ଅର୍ଥ ଦାବୀ କଲେ—ଏପରି କି ଗରିବ ଲୋକ ବାହାରୁ ଟଙ୍କା ଋଣ କରି ଜମି ସମ୍ପତ୍ତି ବିକି କରି ତାଙ୍କୁ ଦେଲେ । ଏହାପରେ ଘଟିଥିବା ଅଭିଜ୍ଞତା ଅତ୍ୟନ୍ତ ଦୁଃଖଦାୟକ ହୋଇଥିଲା । ଆମେ ପଇସା ପଇସା କରି ଗରିବ ଶ୍ରମିକଙ୍କଠାରୁ ଅର୍ଥ ସଂଗ୍ରହ କରୁଥାଉ ଏବଂ ଓକିଲମାନଙ୍କ ପାଇଁ ବଡ଼ ବଡ଼ ଚେକ୍ କାଟିବାକୁ ପଡ଼ୁଥାଏ । ଆମର ଫାଇଦା ଅପେକ୍ଷା ଦେଲୁ ବେଶୀ! ଏହା ଏକ

ବୃଥା ଉଦ୍ୟମ ପରି ମନେ ହେଲା—କାରଣ ରାଜନୀତି, ଶ୍ରମିକ ମକଦ୍ଦମା ଆମେ ଲଢ଼ୁ ବା ନ ଲଢ଼ୁ ଏହାର ଫଳ ତ ସମାନ ହେବାର ସମ୍ଭାବନା । ମିରଟ ମକଦ୍ଦମା ପରି ମକଦ୍ଦମାରେ ଅବଶ୍ୟ ଅନେକ ଦୃଷ୍ଟିରୁ ଲଢ଼ିବା ଦରକାର ଥିଲା ।

ଯେଉଁମାନେ ଅଭିଯୁକ୍ତ ହୋଇଥିଲେ, ସେମାନଙ୍କୁ ଚଳାଇବା ମଧ୍ୟ ମିରଟ କମିଟି ପକ୍ଷରେ ସହଜ ନ ଥିଲା । ଏଥିରେ ବିଭିନ୍ନ ପ୍ରକାର ଲୋକ ଥିଲେ, ସେମାନଙ୍କର ମତ ବ ପୃଥକ୍ ଥିଲା ଏବଂ ଅନେକଙ୍କର ଅନେକଙ୍କ ସହିତ ସାମଞ୍ଜସ୍ୟ ନ ଥିଲା । କେତେ ମାସ ପରେ ଆମେ କମିଟି ଭାଙ୍ଗି ଦେଲୁ । ମାତ୍ର ବ୍ୟକ୍ତିଗତ ଭାବରେ ଆମେ କେତେକ ସାହାଯ୍ୟ କଲୁ । ରାଜନୀତିକ ପରିସ୍ଥିତିର ପରିବର୍ତ୍ତନ ଆମର ଅଧିକ ସମୟ ନେଇ ଯାଉଥାଏ ଏବଂ ୧୯୩୦ରେ ଆମେ ସମସ୍ତେ ଜେଲ ଚାଲିଗଲୁ ।

---

( ୨୭ )

## ଦେଶରେ ଝଡ଼ର ସୂଚନା

୧୯୨୯ ମସିହାରେ ଲାହୋରଠାରେ କଂଗ୍ରେସ ଅଧିବେଶନ ହେବାର ଥାଏ । ଦଶବର୍ଷ ପରେ କଂଗ୍ରେସ ପୁଣି ପଞ୍ଜାବରେ ହେଉଥିଲା—ଦଶବର୍ଷ ତଳର କଥା ଲୋକଙ୍କର ମନରେ ଜାଗିଉଠି ଉଦ୍‌ବେଗ ସୃଷ୍ଟି କଲା । ୧୯୧୯ର ଘଟଣା, ଜାଲିଆନାୱାଲାବାଗ, ସାମରିକ ଆଇନ ଓ ଅତ୍ୟାଚାର; ଅମୃତସହରରେ କଂଗ୍ରେସ ଅଧିବେଶନ ଏବଂ ତାପରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଏହି ସମୟ ଭିତରେ ଅନେକ କିଛି ଘଟଣା ଘଟି ଯାଇଛି ଏବଂ ଭାରତର ବହୁ ପରିବର୍ତ୍ତନ ହୋଇ ଯାଇଛି; ତଥାପି ସୌସାଦୃଶ୍ୟର ଅଭାବ ନ ଥିଲା ରାଜନୀତିକ ଅସନ୍ତୋଷ ବଢ଼ି ଥିଲା; ସଂଗ୍ରାମ ମନୋଭାବ ଅତିଶୀଘ୍ର ବୃଦ୍ଧି ପାଉଥିଲା । ସମସ୍ତ ଦେଶ ଉପରେ ସଂଘର୍ଷର ଦୀର୍ଘ ଛାୟା ଘୋଡ଼ାଇ ହୋଇ ପଡ଼ି ଥିଲା ।

କେବଳ କେତେକ ମୁଷ୍ଟିମେୟ ଲୋକଙ୍କ ଛଡ଼ା କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥା ସଭା କାର୍ଯ୍ୟପ୍ରତି ଅନେକ ଚିନ୍ତାଶୀଳ ଲୋକଙ୍କର ଆଗ୍ରହ କମି ଯାଇଥିଲା । ସେଗୁଡ଼ିକ ସେପରି ଧନ୍ଦାବନ୍ଧା ଧରଣରେ ଚାଲୁଥାଏ । ଏହା ପ୍ରଭୁତ୍ୱକାମୀ ଓ ସ୍ୱେଚ୍ଛାଚାରୀ ସରକାରର ଏକ ଜରାଜୀର୍ଣ୍ଣ ଆବରଣ ପରି ରହିଥାଏ—କେତେକ ଲୋକ ଏହାକୁ ଭାରତର ପାର୍ଲିଆମେଣ୍ଟ ବୋଲି କହି ସୁଖ ଅନୁଭବ କରନ୍ତି ଏବଂ ସଭ୍ୟରୂପେ ଭତ୍ତା ପାଆନ୍ତି । ୧୯୨୮ ମସିହାରେ ସାଇମନ କମିସନ ସହିତ ସହଯୋଗ ନ କରିବା ନିମନ୍ତେ କେନ୍ଦ୍ର ଆସେମ୍ବ୍ଲିରେ ଯେଉଁ ପ୍ରସ୍ତାବ ପାସ ହୋଇଥିଲା, ତାହାପରେ ସେପରି ଉଲ୍ଲେଖଯୋଗ୍ୟ ଘଟଣା କିଛି ନ ଥିଲା ।

ଏହାପରେ ସରକାର ଓ ସଭାପତିଙ୍କ ଭିତରେ ଟିକିଏ ଠେଲା ଓ ଠେଙ୍ଗା ଲାଗିଛି । ସ୍ୱରାଜ୍ୟ ଦଳର ସଭ୍ୟ ବିଠଲଭାଇ ପଟେଲ ସଭାପତି ଥାଆନ୍ତି—ସେ ସ୍ୱାଧୀନ ମନୋଭାବାପନ୍ନ ଲୋକ ଥିବାରୁ ସରକାର ପକ୍ଷରେ ଏକ କଣ୍ଟା ସ୍ୱରୂପ ହେଲେ ଏବଂ ତାଙ୍କର ପଦଚ୍ଛେଦ କରିବା ନିମନ୍ତେ ନାନା ଉଦ୍ୟମ ହେଲା । ଏହିସବୁ ଘଟଣା ପ୍ରତି ଲୋକଙ୍କର ଦୃଷ୍ଟି ଆକୃଷ୍ଟ ହେଉଥାଏ । ମାତ୍ର ମୋଟାମୋଟି ବାହାରର ଘଟଣା ଉପରେ ସାଧାରଣଙ୍କ ଦୃଷ୍ଟି ବେଶି ରହିଥିଲା । ମୋ ପିତାଙ୍କର କାଉନ୍ସିଲ ମୋହ ସମ୍ପୂର୍ଣ୍ଣରୂପେ ଭାଙ୍ଗି ଯାଇଥିଲା ଏବଂ ଏପରି ଅବସ୍ଥାରେ କାଉନ୍ସିଲରେ ଆଉ କିଛି ଅଧିକା କାମ ହେବନାହିଁ ବୋଲି ସେ ମତ ବ୍ୟକ୍ତ କରୁଥିଲେ । ସୁବିଧା ପାଇବା ମାତ୍ରକେ ସେଥିରୁ ବାହାରି ଆସିବାକୁ ସେ ଇଚ୍ଛା କରୁଥିଲେ । ନିୟମତାନ୍ତ୍ରିକ ମନୋଭାବ ତାଙ୍କର ଥିବାରୁ ଏବଂ ଆଇନ ପଦ୍ଧତି ଓ ସେହି ସଂକ୍ରାନ୍ତ କାର୍ଯ୍ୟ ପ୍ରତି ତାଙ୍କର ଆଗ୍ରହ ଥିବା ସତ୍ତ୍ୱେ ଭାରତରେ ତଥାକଥିତ ନିୟମତାନ୍ତ୍ରିକ ପଥ ଅକାର୍ଯ୍ୟକାରୀ ଓ ବୃଥା ବୋଲି ସେ ଦୁଃଖର ସହିତ ସିଦ୍ଧାନ୍ତରେ ପହଞ୍ଚିଲେ । ଭାରତରେ କିଛି ଶାସନବିଧାନ ନାହିଁ—ପ୍ରକୃତ ଆଇନ ଶାସନ କିଛି ନାହିଁ—ଏଠାରେ ଯାଦୁକରର ଟୋପିରୁ ଠେକୁଆ ବାହାରିଲାପରି ଜଣେ ବ୍ୟକ୍ତିବିଶେଷ କିମ୍ବା ଏକଛତ୍ର ଶାସନ ସମ୍ପ୍ରଦାୟଙ୍କ ଇଚ୍ଛାକ୍ରମେ ଅର୍ଡିନାନ୍ସ ଏବଂ ସେହିପରି ଆଇନସବୁ

ହଠାତ୍ ଜାତ ହୋଇଯାଉଛି—ଏହିପରି ଭାବରେ କଥା କହି ସେ ନିଜର ନିୟମତାନ୍ତ୍ରିକ ମନକୁ ସାନ୍ତ୍ୱନା ଦେଉଥିଲେ । ତାଙ୍କର ମନୋବୃତ୍ତି ଓ ଅଭ୍ୟାସ ବୈପ୍ଳବିକ ନ ଥିଲା । ବୁର୍ଜୋୟା ଗଣତନ୍ତ୍ର ପରି କିଛି ଶାସନବିଧାନ ଯଦି ଭାରତରେ ଥାଆନ୍ତା, ତେବେ ସେଥିରେ ଜଣେ ପ୍ରଧାନ ସମର୍ଥକରୂପେ ସେ ରହିଥାଆନ୍ତେ । ମାତ୍ର ଭାରତର ଅବସ୍ଥା ଯାହା, ସେଥିରେ ଏକ ନକଲି ପାର୍ଲିଆମେଣ୍ଟର ଅଭିନୟ ପାଇଁ ଏଠାରେ ନିୟମତାନ୍ତ୍ରିକ ଆନ୍ଦୋଳନ ପ୍ରତି ତାଙ୍କର ବିରକ୍ତି ଆସିଗଲା ।

କଲିକତା କଂଗ୍ରେସଠାରୁ ଗାନ୍ଧିଜୀ ଆଉ ସୁଦ୍ଧା ରାଜନୀତିରୁ ଅଲଗା ରହୁଥିଲେ । ମାତ୍ର ସେ ସମସ୍ତ ଘଟଣା ସହିତ ପୂର୍ଣ୍ଣ ସମ୍ପର୍କ ରଖିଥିଲେ ଏବଂ କଂଗ୍ରେସ ନେତାମାନେ ତାଙ୍କ ପରାମର୍ଶ ପ୍ରାୟ ନେଉଥିଲେ । କେତେକ ବର୍ଷ ନିମନ୍ତେ ସେ ମୁଖ୍ୟଭାବରେ ଖଦୀ ପ୍ରଚାର କଲେ ଏବଂ ଏହି ଉଦ୍ଦେଶ୍ୟରେ ସେ ଭାରତର ଚାରିଆଡ଼େ ଭ୍ରମଣ କରିଥିଲେ । ସେ ପାଳି କରି ପ୍ରତ୍ୟେକ ପ୍ରଦେଶକୁ ଗଲେ — ପ୍ରତ୍ୟେକ ଜିଲା ଏବଂ ତହିଁରେ ପ୍ରତ୍ୟେକ ସହର ଏବଂ ସହର ମଫସଲ ଅଞ୍ଚଳକୁ ମଧ୍ୟ ଯାଇଥିଲେ । ପ୍ରତ୍ୟେକ ସ୍ଥାନରେ ବହୁଳ ଜନତା ଆସି ରୁଣ୍ଡ ହେଉଥିଲେ ଏବଂ ତାଙ୍କର କାର୍ଯ୍ୟପନ୍ଥା ସୁରୁଖୁରୁରେ ଚଳାଇ ନେବା ନିମନ୍ତେ ଆଗରୁ ବ୍ୟବସ୍ଥା କରାଇବାକୁ ପଡ଼ୁଥିଲା । ଏହିପରି ସେ ବାରମ୍ବାର ଭାରତରେ ଭ୍ରମଣ କରି ଉତ୍ତରଠାରୁ ସୁଦୂର ଦକ୍ଷିଣ ଏବଂ ପୂର୍ବରେ ପର୍ବତମାଳାଠାରୁ ପଶ୍ଚିମରେ ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ ଏହି ବିଶାଳ ଦେଶ ସମ୍ବନ୍ଧରେ ସୂକ୍ଷ୍ମାନୁପୁଙ୍ଖ ଜ୍ଞାନ ଅର୍ଜନ କରିଥିଲେ । ମୋର ମନେହୁଏ, ତାଙ୍କ ପରି କୌଣସି ଲୋକ ଭାରତରେ ଏପରି ଭ୍ରମଣ କରିନାହିଁ ।

ଅତୀତରେ ଅନେକ ପ୍ରସିଦ୍ଧ ଭ୍ରମଣକାରୀ ପ୍ରାୟ ବୁଲୁଥିଲେ— ସେମାନେ ଏକପ୍ରକାର ଯାବୀ ଜୀବନ ଯାପନ କରୁଥିଲେ । ସେ ସମୟରେ ଯାନବାହାନ ବଡ଼ ମନ୍ଥର ଥିଲା ଏବଂ ଆଜି ରେଲଗାଡ଼ି ଓ ମଟରଗାଡ଼ି ସାହାଯ୍ୟରେ ଜଣେ ବର୍ଷକ ଭିତରେ ଯାହା ଦେଖିପାରିବ, ସାରା ଜୀବନ

ପର୍ଯ୍ୟଟନ କରି ସୁଦ୍ଧା ଲୋକ ସେତକ ଦେଖିବାକୁ ସମର୍ଥ ହୋଇପାରୁ ନ ଥିଲୁ । ଗାନ୍ଧିଜୀ ରେଳ ଓ ମଟରରେ ଗଲେ । କେବଳ ଏଥିରେ ନ ଯାଇ ସେ ପଦବ୍ରଜରେ ମଧ୍ୟ ଯାଉଥିଲେ । ଏହି ଭାବରେ ଭାରତବର୍ଷ ଓ ଏ ଦେଶର ଲୋକଙ୍କ ସମ୍ବନ୍ଧରେ ସେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କଲେ । କୋଟି କୋଟି ନରନାରୀ ତାଙ୍କ ଦର୍ଶନ ପାଇଲେ ଏବଂ ତାଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କରେ ଆସିଥିଲେ ।

ସେ ଖଦୀ ପାଇଁ ପର୍ଯ୍ୟଟନ ଲାଗି ଯୁକ୍ତପ୍ରଦେଶ ଆସିଥିଲେ ଏବଂ ଗ୍ରୀଷ୍ମକାଳରେ ଏହି ପ୍ରଦେଶରେ ଅନେକ ସପ୍ତାହ ରହିଲେ । ମୁଁ ଥରେ ଥରେ ତାଙ୍କ ସହିତ କେତେଦିନ ପାଇଁ ଯାଇଥିଲି ଏବଂ ବଡ଼ ଜନତା ମୁଁ ପୂର୍ବରୁ ଦେଖିଥିଲେ ସୁଦ୍ଧା ଏବେ ଗାନ୍ଧିଜୀଙ୍କ ଲାଗି ଯେପରି ଜନତା ଭିଡ଼ ହୁଏ, ଦେଖି ଅବାକ୍ ନ ହୋଇ ରହିପାରିଲି ନାହିଁ । ବିଶେଷତଃ ଗୋରଖପୁର ପରି ପୂର୍ବାଞ୍ଚଳ ଜିଲ୍ଲାମାନଙ୍କରେ ବେଶି ଭିଡ଼ ହେଉଥିଲା ଏବଂ ପଙ୍ଗପାଳ ସ୍ରୋତ ପରି ଲୋକ ମାଡ଼ି ଆସୁଥିଲେ । ଆମେ ମଫସଲ ଅଞ୍ଚଳରେ ଗଲାବେଳେ କେତେକ ମାଇଲ ଅନ୍ତରରେ ପ୍ରତ୍ୟେକ ସ୍ଥାନରେ ୧୦ ଠାରୁ ୨୫ ହଜାର ପର୍ଯ୍ୟନ୍ତ ଲୋକ ହୁଅନ୍ତି । ସେଦିନରେ ପ୍ରଧାନ ସଭାରେ ପ୍ରାୟ ଲକ୍ଷେରୁ ଅଧିକ ଲୋକ ହୁଅନ୍ତି । କେତେକ ବଡ଼ ବଡ଼ ସହର ଛଡ଼ା ଅନ୍ୟ କେଉଁଠାରେ ଡାକବାକ ଯନ୍ତ୍ର ( ଲାଉଡ୍‌ସ୍ପିକର୍ )ନ ଥିଲା ଏବଂ ଏତେ ବଡ଼ ଜନତା ଭିତରେ ସମସ୍ତେ ଶୁଣିବା ଅସମ୍ଭବ ଥିଲା ; ସେମାନେ ସମ୍ଭବତଃ କିଛି ଶୁଣିବାକୁ ଆଶା କରୁ ନ ଥିଲେ; ମହାତ୍ମାଙ୍କୁ ଦେଖିପାରିଲେ ସନ୍ତୁଷ୍ଟ ହେଉଥିଲେ । ଗାନ୍ଧିଜୀ ଅଯଥା ଜୋର ନ ଦେଇ ସଂକ୍ଷେପରେ ଭାଷଣ ଦେଉଥିଲେ—ତାହା ନ ହୋଇଥିଲେ ଘଣ୍ଟା ପରେ ଘଣ୍ଟା ଦିନ ପରେ ଦିନ ଏପରି ସଭାସମିତି କରିବା ସମ୍ପୂର୍ଣ୍ଣରୂପେ ଅସମ୍ଭବ ହୋଇ ପଡ଼ନ୍ତା ।

ମୁଁ ତାଙ୍କ ଯୁକ୍ତପ୍ରଦେଶ ଭ୍ରମଣରେ ବରାବର ତାଙ୍କ ସହିତ ଯାଇ ନଥିଲି—କାରଣ ମୋର ସିବା ସେପରି କିଛି ଦରକାର ନ ଥିଲା ଏବଂ

ତାଙ୍କ ସହିତ ଥିବା ପର୍ଯ୍ୟଟକ ଦଳଙ୍କ ସଂଖ୍ୟା ମୁଁ ଆଉ ବଢ଼ାଇବାକୁ ଚାହୁଁ ନ ଥିଲି । ମୁଁ ଭିଡ଼ ପାଇଁ ଆପତ୍ତି କରୁ ନ ଥିଲି—ମାତ୍ର ଠେଲାଠେଲି, ଜଣଙ୍କ ଉପରେ ଜଣଙ୍କ ଗୋଡ଼ ପଡ଼ ଦଳି ହୋଇଯିବା —ଏସବୁ ଗାନ୍ଧିଜୀଙ୍କ ସହିତ ଯେଉଁମାନେ ବୁଲନ୍ତି, ତାଙ୍କୁ ପ୍ରାୟ ଭୋଗ କରିବାକୁ ପଡ଼େ— ଏହା ମନ୍ଦବାକୁ ସେପରି କିଛି ସେହି ଯାତ୍ରାରେ ଉତ୍ସାହ ଥିଲା ପରି ମୁଁ ମନେ କଲି ନାହିଁ । ମୋର ଅନେକ ଅନ୍ୟ କାମ କରିବାର ଥାଏ ଏବଂ କେବଳ ଖଦୀ ପ୍ରଚାରରେ ଲାଗି ରହିବାକୁ ମୋର ଇଚ୍ଛା ନ ଥିଲା— ରାଜନୀତିକ ପରିସ୍ଥିତିର ଅନ୍ତର୍ଗତ ଦୃଷ୍ଟିରେ ମୋତେ, ଏହା ଅତ୍ୟନ୍ତ ଗୌଣ କାମ ପରି ମନେ ହେଉଥିଲା । ଗାନ୍ଧିଜୀ ଏପରି ଅରାଜନୀତିକ ସମସ୍ୟା-ମାନଙ୍କରେ ବ୍ୟସ୍ତ ରହିବାଟା ମୁଁ କେତେକ ପରିମାଣରେ ଭଲ ପାଉ ନ ଥିଲି ଏବଂ ତାଙ୍କ ଚନ୍ଦାଧାରା ପଛରେ କଣ ଥିଲା, ତାହା ଆଦୌ ବୁଝି ପାରିଲି ନାହିଁ । ସେ ସମସ୍ତରେ ସେ ଖଦୀ କାମ ପାଇଁ ଅର୍ଥ ସଂଗ୍ରହ କରୁଥାନ୍ତି ଏବଂ ସେ ବାରବାର କହୁଥିଲେ ଯେ ଦରିଦ୍ରନାରାୟଣ ଲାଗି ସେ ଟଙ୍କା ଚାହୁଁଥାନ୍ତି; ଅର୍ଥାତ ଦରିଦ୍ର ଲୋକଙ୍କୁ ଗ୍ରାମଶିଳ୍ପରେ ନିଯୁକ୍ତ କରି ସାହାଯ୍ୟ ଦେବାକୁ ଚାହୁଁଥାନ୍ତି । ମାତ୍ର ଏହା ପଛରେ ଦରିଦ୍ରତାକୁ ଖବ୍ ଗୌରବାନ୍ୱିତ କରିବାର ଗୋଟାଏ ଭାବ ଥାଏ । ଭଗବାନଙ୍କ ପ୍ରକୃତ ଦରିଦ୍ରର ପ୍ରଭୁ, ଦରିଦ୍ର ଲୋକହିଁ ତାଙ୍କର ବେଶି ପ୍ରିୟ—ଏହିସବୁ କଥା କହୁଥିଲେ । ମୋର ମନେହୁଏ, ପ୍ରତ୍ୟେକ ସ୍ଥାନରେ ଧାର୍ମିକ ମନୋବୃତ୍ତି ଏହିପରି । ମୋତେ ଏକଥା ପସନ୍ଦ ହେଲା ନାହିଁ; କାରଣ ଦରିଦ୍ରତାକୁ ଏକ ଘୃଣ୍ୟ ଜିନିଷ ପରି ମୁଁ ମନେ କରୁଥିଲି । ଏହା ସହିତ ସଂଗ୍ରାମ କରି ଏହାକୁ ମୂଳପୋଛ କରିଦେବାକୁ ହେବ—ଦରିଦ୍ରତାକୁ କୌଣସି ପ୍ରକାରେ ଉତ୍ସାହିତ କରିବା ଉଚିତ ନୁହେଁ । ଏହାର ଅର୍ଥ ଯେଉଁ ପ୍ରଥା ବା 'ସମାଜ' ଦରିଦ୍ରତା ସୃଷ୍ଟି କରୁଛି ଏବଂ ତାହା ସହ୍ୟ କରୁଛି, ତାକୁ ଆକ୍ରମଣ କରିବାକୁ ହେବ ଏବଂ ଯେଉଁମାନେ ତାହା କରିବା ନିମନ୍ତେ ପ୍ରସ୍ତୁତ ନ ଥିଲେ, ସେମାନେ କୌଣସି ପ୍ରକାରେ ଦରିଦ୍ରତାକୁ ସମର୍ଥନ କରନ୍ତି, ସେମାନେ କେବଳ ଅଭାବପରିପୂର୍ଣ୍ଣ ଜଗତର କଳ୍ପନା କରି ପାରନ୍ତି— ଜୀବନର ସମସ୍ତ ଆବଶ୍ୟକୀୟ ଜିନିଷ ଯୋଗାଇ ପାରୁଥିବା ଜଗତର ନ

ଅନୁମାନ କରି ପାରନ୍ତି ନାହିଁ । ତାଙ୍କ ମତରେ ବୋଧହୁଏ ଦୁନିଆରେ ସବୁ ଦିନେ ଧନୀ ଓ ଦରିଦ୍ର ରହୁଥିବେ ।

ଏ ସମ୍ବନ୍ଧରେ ମୁଁ ଯେତେବେଳେ ଗାନ୍ଧିଜୀଙ୍କ ସହ ଆଲୋଚନା କରିଛି, ସେତେବେଳେ ଧନୀ ଲୋକମାନେ ତାଙ୍କ ଧନକୁ ଲୋକଙ୍କର ଏକ ମାଲିକତତ୍‌ଦାର୍ ରୂପେ ବ୍ୟବହାର କରିବା ସମ୍ବନ୍ଧରେ ସେ ଜୋର ଦେଇଛନ୍ତି; ଏହା ଅତି ପୁରୁଣା ଯୁଗର ମନୋଭାବ ଏବଂ ମଧ୍ୟଯୁଗ ଇଉରୋପ ଓ ଭାରତରେ ଏପରି ମତ ପ୍ରାୟ ପ୍ରକାଶିତ ହେବାର ଦେଖାଯାଏ । କିପରି ଭାବରେ ଏହା ଘଟିବ କିମ୍ବା ଏଥିରେ ସାମାଜିକ ସମସ୍ୟାର ସମାଧାନ ହୋଇପାରିବ ବୋଲି କିପରି କେହି ବିଶ୍ୱାସ କରେ, ବାସ୍ତବିକ ଏହା ମୁଁ ଯେ ଆଦୌ ବୁଝିପାରେ ନା, ଏହା ମୁଁ ନିଶ୍ଚୟ ସ୍ୱୀକାର କରୁଛି ।

ମୁଁ ଆଗରୁ କହିଛି ବ୍ୟବସ୍ଥାସଭା କାର୍ଯ୍ୟ ସୁପ୍ତପ୍ରାୟ ହୋଇଥିଲା ଏବଂ ଏହି ଜାତୀୟ କାର୍ଯ୍ୟରେ ଖୁବ୍ କମ୍ ଲୋକେ ଆଗ୍ରହ ଦେଖାଉ ଥିଲେ । ଭଗତ୍‌ସିଂ ଏବଂ ବଟୁକେଶ୍ୱର ଦତ୍ତ ଦର୍ଶକ ମଞ୍ଚରୁ ବ୍ୟବସ୍ଥାସଭା ଚଟାଣ ଉପରେ ବୋମା ପକାଇଲା ପରେ କଠିନ ଜାଗରଣ ଆସିଲା । ସେଥିରେ କେହି ସେପରି ଗୁରୁତର ଆଘାତ ପାଇ ନ ଥିଲେ ଏବଂ ସମ୍ଭବତଃ ସେମାନେ ପରେ ଯାହା କହିଲେ, ତାହା ସତ୍ୟ ଯେ, କାହାରିକୁ ଆଘାତ କରିବା ନିମନ୍ତେ ଏହି ବୋମା ନିକ୍ଷେପ କରାଯାଇ ନ ଥିଲା—କେବଳ ଗୋଟାଏ ଗଣ୍ଡଗୋଳ କରିବା ନିମନ୍ତେ ଏବଂ ଦୃଷ୍ଟି ଆକୃଷ୍ଟ କରିବା ନିମନ୍ତେ ପଡ଼ିଥିଲା ।

ସେମାନେ ବାସ୍ତବିକ ଆସେମ୍ବ୍ଲି ଓ ବାହାରେ ଗୋଟାଏ ଦୃଷ୍ଟି ଜାତ କରାଇଲେ । ଲାଲା ଲଜପତ୍ ରାୟଙ୍କୁ ପ୍ରହାର କରିଥିବା ଅଭିଯୋଗ କରାଯାଉଥିବା ଯୁବକ ଇଂରେଜ ପୁଲିସ କର୍ମଚାରୀଙ୍କୁ ଗୁଳି କରି ଲାହୋରରେ ହତ୍ୟା କରାଗଲା । ବଙ୍ଗଳା ଏବଂ ଅନ୍ୟ କେତେକ ସ୍ଥାନରେ

ଆତଙ୍କବାଦୀ କାର୍ଯ୍ୟ ପୁଣି ଦେଖାଦେଲା । କେତେକ ଷଡ଼ଯନ୍ତ୍ର ମକଦ୍ଦମା ପୁଣି ଚାଲିଲା ଏବଂ ବିନା ବିଚାର ବା ଶାସ୍ତିରେ କାରାଗାରରେ ବା ଅନ୍ୟ ପ୍ରକାରରେ ଆବଦ୍ଧ ହୋଇ ରହିବା ଲୋକଙ୍କ ସଂଖ୍ୟା ଦ୍ରୁତବେଗରେ ବୃଦ୍ଧି ପାଇଲା ।

ଲାହୋର ଷଡ଼ଯନ୍ତ୍ର ମକଦ୍ଦମାରେ କଚେରୀରେ ପୁଲିସ କେତେକ ଅସାଧାରଣ କାଣ୍ଡ କଲା ଏବଂ ସେଥିଯୋଗୁଁ ଏହି ମକଦ୍ଦମା ପ୍ରତି ଲୋକଙ୍କର ଦୃଷ୍ଟି ବହୁ ପରିମାଣରେ ଆକୃଷ୍ଟ ହୋଇଥିଲା । କଚେରୀ ଓ ଜେଲଖାନାରେ ସେମାନଙ୍କ ପ୍ରତି ହେଉଥିବା ବ୍ୟବହାରର ପ୍ରତିବାଦ କରି ଅଧିକାଂଶ ବନ୍ଦୀ ଅନଶନ ଆରମ୍ଭ କଲେ । ଏହା ଆରମ୍ଭର ପ୍ରକୃତ କାରଣ ମୁଁ ଭୁଲିପାଇଛି, ମାତ୍ର ଶେଷରେ ଏହା ବନ୍ଦୀମାନଙ୍କ ପ୍ରତି ବ୍ୟବହାର, ବିଶେଷତଃ ରାଜନୈତିକ ବନ୍ଦୀଙ୍କ ପ୍ରତି ବ୍ୟବହାର ସମସ୍ୟାରେ ପରିଣତ ହେଲା । ସପ୍ତାହ ସପ୍ତାହ ଧରି ଏହି ଅନଶନ ଚାଲିଲା ଏବଂ ଦେଶରେ ଏକ ଚାଞ୍ଚଲ୍ୟ ସୃଷ୍ଟି କଲା । ଅଭିଯୁକ୍ତ ଲୋକମାନଙ୍କର ଶାରୀରିକ ଦୁର୍ବଳତା ଯୋଗୁଁ ସେମାନଙ୍କୁ କଚେରୀକୁ ନିଆଯାଇ ପାରିଲା ନାହିଁ ଏବଂ ବାରମ୍ବାର ମକଦ୍ଦମା ବିଚାର ମୁଲତବୀ ରହୁଥିଲା । ସେଥିଲାଗି ଭାରତ ସରକାର ଏକ ଆଇନ କଲେ ଯେ, ଅଭିଯୁକ୍ତ ବ୍ୟକ୍ତି ବା ତାଙ୍କ ଓକିଲଙ୍କ ଅନୁପସ୍ଥିତିରେ ମଧ୍ୟ ବିଚାର ହୋଇପାରେ । ଜେଲଖାନାରେ କଏଦୀମାନଙ୍କ ପ୍ରତି ବ୍ୟବହାର ପ୍ରଶ୍ନ ମଧ୍ୟ ସେମାନେ ବିଚାର କରିବାକୁ ଲାଗିଲେ ।

ଅନଶନ ପ୍ରାୟ ଏକମାସ ଗତ ହୋଇଗଲା ପରେ ମୁଁ ଲାହୋରରେ ଥିଲି । ଜେଲଖାନାରେ କେତେକ ବନ୍ଦୀଙ୍କ ସହିତ ସାକ୍ଷାତ କରିବା ନିମନ୍ତେ ମୋତେ ଅନୁମତି ମିଳିଲା ଏବଂ ମୁଁ ସେମାନଙ୍କ ସହ ସାକ୍ଷାତ କଲି । ପ୍ରଥମଥର ପାଇଁ ମୋର ଭଗତ ସିଂ, ଯତୀନ୍ ଦାସ ଓ ଅନ୍ୟମାନଙ୍କ ସହିତ ସାକ୍ଷାତ ହେଲା । ସେମାନେ ବଡ଼ ଦୁର୍ବଳ ହୋଇ ଶଯ୍ୟାଗତ ଥିଲେ ଏବଂ ସେମାନଙ୍କ ସହିତ ଅଧିକ ସମୟ ପର୍ଯ୍ୟନ୍ତ କଥାବାର୍ତ୍ତା କରିବା ପ୍ରାୟ ସମ୍ଭବ ନ ଥିଲା । ଭଗତସିଂଙ୍କର ମୁଖ ଆକର୍ଷଣୀୟ ଓ ତହିଁରେ ଏକ

ଆକର୍ଷଣଶକ୍ତି ଥିଲା—ସେ ଖୁବ୍ ଶାନ୍ତ ଓ ସ୍ଥିରଚିତ୍ତ ମନେ ହେଉଥିଲେ । ତାଙ୍କଠାରେ କ୍ରୋଧର ଲେଶମାତ୍ର ଥିଲାପରି ମନେହେଲା ନାହିଁ । ସେ ଅତ୍ୟନ୍ତ ଭଦ୍ରଭାବରେ ମୋତେ ଦେଖିଲେ ଓ କଥାବାର୍ତ୍ତା କଲେ । ଅବଶ୍ୟ ମୋର ମନେ ହେଉଛି, ଏକମାସ ଅନଶନ କଲେ ସମସ୍ତେ ସେହିପରି ଶାନ୍ତ ଓ ଧୀର ଦେଖାଯିବେ । ଯତୀନ୍ ଦାସ ଜଣେ ଶ୍ରେଷ୍ଠ ବାଳକ ପରି ସୁନ୍ଦର ନରମ ଓ ଶାନ୍ତ ଦେଖାଯାଉଥିଲେ । ମୁଁ ତାଙ୍କୁ ସାକ୍ଷାତ କଲାବେଳେ ସେ ବଡ଼ ଯନ୍ତ୍ରଣା ଭୋଗୁଥାନ୍ତି । ସେ ଉପବାସ ଫଳରେ ଅନଶନର ୬୧ ଦିନରେ ମରି ଯାଇଥିଲେ ।

ଭଗତ୍ ସିଂଙ୍କ ସହିତ କଥାବାର୍ତ୍ତା କରି ଦେଖିଲି ୧୯୦୭ ରେ ଲାଲ୍ ଲଜପତ୍ ରାୟଙ୍କ ସହ ନିର୍ବାସିତ ହୋଇଥିବା ତାଙ୍କର ଖୁଡ଼ୁତା ସର୍ଦ୍ଦାର ଅଜିତ୍ ସିଂଙ୍କୁ ଦେଖିବା ପାଇଁ କିମ୍ବା ଅନ୍ତତଃ ତାଙ୍କ ଖବର ପାଇଁ ସେ ବଡ଼ ଉତ୍କଣ୍ଠା ପ୍ରକାଶ କରିଥିଲେ । ଅନେକ ବର୍ଷ ହେଲା ନିର୍ବାସିତ ହୋଇ ସେ ବିଦେଶରେ ରହିଛନ୍ତି ! ଅନେକ ଉଡ଼ା ଖବର ଆସି ପହଞ୍ଚିଲା ଯେ, ସେ ଦକ୍ଷିଣ ଆମେରିକାରେ ବସବାସ କରି ରହିଯାଇଛନ୍ତି, ମାତ୍ର ମୋର ମନେହୁଏ ତାଙ୍କ ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ଖବର ଆସିନାହିଁ ; ସେ ମୃତ କି ଜୀବିତ ମଧ୍ୟ ମୋତେ ଜଣାନାହିଁ ।

ଯତୀନ୍ ଦାସଙ୍କ ମୃତ୍ୟୁରେ ସମଗ୍ର ଦେଶରେ ଏକ ଚାଞ୍ଚଲ୍ୟ ଜାତ ହୋଇଗଲା । ରାଜନୀତିକ ବନ୍ଦୀଙ୍କ ପ୍ରତି ବ୍ୟବହାର ପ୍ରଶ୍ନ ମୁଖ୍ୟ ହୋଇ ପଡ଼ିଲା ଏବଂ ସେ ସମ୍ବନ୍ଧରେ ବିଚାର ଲାଗି ସରକାର ଏକ କମିଟି ନିଯୁକ୍ତ କଲେ । ଏହି କମିଟି ରିପୋର୍ଟ ଅନୁସାରେ ବନ୍ଦୀଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରିବା ନିମନ୍ତେ ନିୟମାବଳୀ କରାଗଲା । ରାଜନୀତିକ ବନ୍ଦୀଙ୍କ ସକାଶେ କୌଣସି ବିଶେଷ ଶ୍ରେଣୀର ସୃଷ୍ଟି କରାଗଲା ନାହିଁ । ଅବସ୍ଥା ଭଲ କରିବା ମତଲବରେ ଏହି ନିୟମ ହୋଇଥିଲା—ମାତ୍ର ପ୍ରକୃତରେ ଅବସ୍ଥାର କୌଣସି ପରିବର୍ତ୍ତନ ହେଲା ନାହିଁ ଏବଂ ଅବସ୍ଥା ଆଜିସୁଦ୍ଧା ବଡ଼ ଅସନ୍ତୋଷଜନକ ହୋଇ ରହିଛି ।

ଗ୍ରୀଷ୍ମ ଓ ବର୍ଷାଋତୁ ସାରା ଶରତ୍‌ଋତୁ ଆରମ୍ଭପରେ ଲାହୋର କଂଗ୍ରେସ ପାଇଁ ସଭାପତି ନିର୍ବାଚନରେ ପ୍ରାଦେଶିକ କଂଗ୍ରେସ କମିଟିଗୁଡ଼ିକ ବ୍ୟସ୍ତ ହୋଇ ପଡ଼ିଲେ । ଏକ ଦୀର୍ଘ ପ୍ରଣାଳୀରେ ନିର୍ବାଚନ ହେଉଥିଲା ଏବଂ ଅଗଷ୍ଟଠାରୁ ଅକ୍ଟୋବର ପର୍ଯ୍ୟନ୍ତ ସମୟ ଲାଗିଯାଉଥିଲା । ୧୯୨୯ ରେ ଗାନ୍ଧିଜୀଙ୍କୁ ସଭାପତି କରିବା ନିମନ୍ତେ ପ୍ରାୟ ଜନମତ ଥିଲା । ଦ୍ୱିତୀୟ ଥର ପାଇଁ ତାଙ୍କୁ ସଭାପତି କରିବା ଦ୍ୱାରା ସେ କଂଗ୍ରେସରେ ତାଙ୍କୁ ଅଧିକ ସମ୍ମାନଜନକ ସ୍ଥାନ ଦିଆଯିବା ମନ୍ତବ୍ୟ ଥିଲା, ତାହା ନୁହେଁ, କାରଣ କେତେକ ବର୍ଷ ହେଲା ସେ କଂଗ୍ରେସର ମହା ସଭାପତି ଥିଲେ । ଯାହା ହେଉ ସମସ୍ତେ ଉପଲବ୍ଧି କଲେ ଯେ, ଆସନ୍ନ ସଂଗ୍ରାମରେ ସେ ନେତୃତ୍ୱ ନେବା ଅବଶ୍ୟମ୍ଭାବୀ—ତେଣୁ କଂଗ୍ରେସ ଅନୁଷ୍ଠାନରେ ମଧ୍ୟ ସର୍ବଶ୍ରେଷ୍ଠ ସ୍ଥାନ ସେ ଅଧିକାର କରି ରହିଲେ ଭଲ । ଏହା ଛଡ଼ା ମଧ୍ୟ ସଭାପତି ହେବା ନିମନ୍ତେ ସେପରି କେହି ଯୋଗ୍ୟ ଲୋକ ନ ଥିଲେ ।

ପ୍ରାଦେଶିକ କଂଗ୍ରେସ କମିଟିଗୁଡ଼ିକ ସଭାପତି ପଦ ଲାଗି ଗାନ୍ଧିଜୀଙ୍କ ନାମ ସୁପାରିଶ କଲେ । ମାତ୍ର ସେ ଏଥିରେ ସମ୍ମତ ହେଲେ ନାହିଁ । ସେ ଖୁବ୍ କୃତଜ୍ଞତାର ସହିତ ଅସ୍ୱୀକାର କରିଥିଲେ ପୁଣି ମନ୍ତ୍ର କଲେ ଗ୍ରହଣ କରିପାରନ୍ତି ବୋଲି ଆଶା ହେଉଥିଲା । ଏ ବିଷୟରେ ଶେଷ ନିଷ୍ପତ୍ତି କରିବା ନିମନ୍ତେ ଲକ୍ଷ୍ନୌଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ଡକା ହେଲା ଏବଂ ପ୍ରାୟ ଶେଷ ପର୍ଯ୍ୟନ୍ତ ଆମେ ସବୁ ଆଶା କରୁଥିଲୁ ଯେ, ସେ ସମ୍ମତ ହେବେ । ମାତ୍ର ସେ ରାଜି ହେଲେନାହିଁ ଏବଂ ଶେଷ ମୁହୂର୍ତ୍ତରେ ମୋ ନାମ ପ୍ରସ୍ତାବ କଲେ । ତାଙ୍କର ନିର୍ଦ୍ଦିଷ୍ଟ ଅସ୍ୱୀକୃତରେ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟମାନେ ଅବାକ୍ ହୋଇଗଲେ ଏବଂ ଏପରି ଏକ ଅଡୁଆ ଅବସ୍ଥାରେ ପଡ଼ି ଅନେକ ବିରକ୍ତ ହେଲେ, ମଧ୍ୟ ଶେଷରେ ଅନ୍ୟ ଲୋକଙ୍କ ଅଭାବରୁ ଏକ ପ୍ରସ୍ତାବ ଭାବି ହୋଇ ସେମାନେ ମୋତେ ନିର୍ବାଚନ କଲେ ।

”

ଏହି ନିର୍ବାଚନରେ ମୁଁ ଯେପରି ଅପମାନ ଓ ବିରକ୍ତି ବୋଧ କଲି ତାହା ଆଉ କେବେ [illegible] ନ ଥିଲି । ଏହାଦ୍ୱାରା ଯେଉଁ ବଡ଼ ସମ୍ମାନ ମିଳିଲା, ସେଥିପ୍ରତି ଯେ ମୁଁ ସଚେତନ ନ ଥିଲି ଏପରି ନୁହେଁ ଏବଂ ମୁଁ ଯଦି ସାଧାରଣ ଭାବରେ ନିର୍ବାଚିତ ହୋଇ ଥାଆନ୍ତି ତେବେ ବଡ଼ ଖୁସି ହୋଇଥାଆନ୍ତି । ମାତ୍ର ମୁଁ ସମ୍ମୁଖ ଦୁଆର ବା ପାର୍ଶ୍ୱ ଦ୍ୱାରରେ ଆସି ନ ଥିଲି ଏବଂ ଦର୍ଶକମାନଙ୍କ ସମକ୍ଷରେ ଅପ୍ରତ୍ୟାଶିତ ଭାବରେ ଆସି ମୁଁ ଉପସ୍ଥିତ ହେଲି । ଏହାକୁ ସେମାନେ ଏକ ଆବଶ୍ୟକୀୟ ବଟିକାରୂପେ ସେବନ କଲେ । ମୋର ଆତ୍ମସମ୍ମାନରେ ଆଘାତ ହେଲା ଏବଂ ଏହି ସମ୍ମାନ ଛାଡ଼ିଦେବା ନିମନ୍ତେ ମୁଁ ଚାହୁଁଥିଲି । ସୌଭାଗ୍ୟର କଥା ଯେ, ମୁଁ କୌଣସି ପ୍ରକାରେ ନିଜକୁ ସଂଯତ କରି ନେଲି ଏବଂ ଏକ ଭାରାକ୍ରାନ୍ତ ହୃଦୟ ନେଇ ରହିଲି ।

ସମ୍ଭବତଃ ଏଥିରେ ମୋର ପିତାହିଁ ସର୍ବାପେକ୍ଷା ଖୁସୀ ହୋଇଥିଲେ । ସେ ମୋର ରାଜନୀତିକୁ ପୂର୍ଣ୍ଣରୂପେ ପସନ୍ଦ କରୁ ନ ଥିଲେ; ମାତ୍ର ସେ ମୋତେ ଅତ୍ୟନ୍ତ ଭଲ ପାଉଥିଲେ ଏବଂ ମୋର କିଛି ଭଲକଥା ଦେଖିଲେ ସେ ଖୁସି ହେଉଥିଲେ । ଅନେକ ସମୟରେ ସେ ମୋତେ ସମାଲୋଚନା କରି ଟିକିଏ ତୀବ୍ରଭାବରେ କହନ୍ତି; ମାତ୍ର ତାଙ୍କ ସାମନାରେ ମୋତେ ନିନ୍ଦା କଲେ ସେହି ଲୋକ ପାର ପାଉ ନ ଥିଲା ।

ବାସ୍ତବିକ ଏ ନିର୍ବାଚନ ମୋ ପକ୍ଷରେ ଏକ ବଡ଼ ସମ୍ମାନ ଓ ଦାୟିତ୍ୱ । ପିତାଙ୍କ ପରେ ପୁତ୍ର ସଭାପତି ପଦ ପାଇବା ମଧ୍ୟ ଠିକ୍ ଅଭିନବ ଘଟଣା । ଅନେକେ କହନ୍ତି ମୁଁ କଂଗ୍ରେସର ସର୍ବକନିଷ୍ଠ ସଭାପତି—ମୋର ୪୦ ବର୍ଷ ବୟସରେ ମୁଁ ସଭାପତି ହୋଇଥିଲି; ମାତ୍ର ଏହା ସତ୍ୟ ନୁହେଁ । ମୋର ମନେହୁଏ, ଗୋଖଲେଙ୍କର ବୟସ ପ୍ରାୟ ଏତିକି ଥିଲା ଏବଂ ମୌଲାନା ଅବୁଲ କାଲାମ ଆଜାଦ (ସେ ବୟସରେ ମୋଠାରୁ ସାମାନ୍ୟ ବଡ଼ ହୋଇଥିଲେ ସୁଦ୍ଧା) ସଭାପତି ହେଲାବେଳେ ୪୦ ବର୍ଷଠାରୁ ଟିକିଏ ବେଶି ହୋଇଥିଲା । ଗୋଖଲେ ୩୯ ବର୍ଷ ବୟସବେଳେ ଭାରତର ଜଣେ ବୟସ୍କ

ରାଜନୀତିଜ୍ଞ ରୂପରେ ଗଣ୍ୟ ହେଉଥିଲେ ଏବଂ ଅବୁଲ କାଲାମ ଆଜାଦ ନିଜର ବିଜ୍ଞତା ଅନୁରୂପ ବୟସ ଦେଖାଇଲେ ଭଳି ରେକର୍ଡ କରି ପାରିଛନ୍ତି । ଖୁବ ରାଜନୀତିଜ୍ଞ ଭାବରେ ମୋର ଖ୍ୟାତି ନ ଥିଲା କିମ୍ବା ପଣ୍ଡିତ ବୋଲି ମୋତେ କେହି ଗଣ୍ୟ କରୁ ନ ଥିଲେ—ମୋର ମୁଣ୍ଡବାଳ ଧଳା ହୋଇଥିଲେ ମୁଦ୍ଧା ଏବଂ ଶରୀରର ପରିବର୍ତ୍ତନ ହୋଇଥିଲେ ମୁଦ୍ଧା ମୁଁ ବୟସ ଅଧିକ ଅନୁବାଦରୁ ଏ ପର୍ଯ୍ୟନ୍ତ ନିଷ୍କୃତି ପାଇ ଆସିଛି ।

ଲାହୋର କଂଗ୍ରେସ ନିକଟବର୍ତ୍ତୀ ହୋଇ ଆସିଲା । ଏଥି ଭିତରେ ଘଟଣା କ୍ରମ ଅଗ୍ରସର ହେବାକୁ ଲାଗିଲା—ଯେପରି କୌଣସି ଏକ ଶକ୍ତି ତାହା ଆଗକୁ ଠେଲି ନେଉଥିଲା । ବ୍ୟକ୍ତିବିଶେଷ ଯେତେ ସାହସୀ ହୋଇ-ଥାଆନ୍ତୁ ପଛକେ, ସେମାନଙ୍କର ଏଥିରେ କିଛି ହାତ ନ ଥିଲା । ମନେହୁଏ ଯେପରି ଏକ ବଡ଼ ନାଟକ ଦ୍ରୁତବେଗରେ ଗଡ଼ିଯାଉଛି ଏବଂ ଆମେ ତାହାର ଚରିତ୍ରରୂପେ ରହିଛୁଁ ।

ଭାଗ୍ୟର ଏହି ଅଗ୍ରଗତି ରୋଧ କରିବା ନିମନ୍ତେ ସମ୍ଭବତଃ ବ୍ରିଟିଶ ସରକାର ଟିକିଏ ଅଗ୍ରସର ହେଲେ ଏବଂ ଠିକ୍ ଗୋଲଟେବୁଲ ସମ୍ମିଳନୀ ହେବ ବୋଲି ବଡ଼ଲାଟ ଲର୍ଡ ଇର୍ୱିନ୍ ଏକ ଘୋଷଣା କଲେ । ଏହି ଘୋଷଣା ଅତି କୌଶଳପୂର୍ଣ୍ଣ ଭାଷାରେ ଲେଖା ହୋଇଥିଲା—ଏହାର ଅର୍ଥ ଅନେକ କିଛି ହୋଇପାରେ କିମ୍ବା 'କିଛି ନୁହେଁ' । ଆମ ଭିତରୁ ଅନେକେ ଏଥିରେ କିଛି ନ ହେବାର ସମ୍ଭାବନା ବେଶି ବୋଲି ମନେ କରୁଥିଲେ ଯାହା ହେଉ ଘୋଷଣାରେ କିଛି ଥିଲେ ମୁଦ୍ଧା ଆମେ ଯାହା ଚାହୁଁଥିଲୁ ଏହା ତାର ଖାଖ ମାତ୍ର ନ ଥିଲା । ବଡ଼ଲାଟଙ୍କ ଘୋଷଣା ପ୍ରକାଶ ପାଇବାର ଅଳ୍ପଦିନ ପରେ ଅଧୀର ବ୍ୟଗ୍ରତାର ସହିତ ଦିଲ୍ଲୀରେ ଏକ "ନେତୃ ସମ୍ମିଳନୀ" ଡକା ହେଲା ଏବଂ ବିଭିନ୍ନ ଦଳର ଲୋକଙ୍କୁ ସେଥିକି ନିମନ୍ତ୍ରଣ କରାଗଲା । ଗାନ୍ଧିଜୀ ଏବଂ ମୋର ପିତା ଯାଇଥିଲେ; ବିଠଲ ଭାଇ ପଟେଲ (ସେ ପର୍ଯ୍ୟନ୍ତ ଆସେମ୍ବ୍ଲିର ସଭାପତି ଥାଆନ୍ତି) ଏବଂ ସାର ତେଜବାହାଦୁର ସାପ୍ରୁ ଓ ଅନ୍ୟ ମାନ୍ୟନେତା ବି ଥାଆନ୍ତି । ଏ

ମିଳିତ ପ୍ରସ୍ତାବ ବା ଘୋଷଣା ଲେଖାହେଲା । କେତେକ ସର୍ତ୍ତସବୁ ଗଢ଼ାଗଲା । ଲର୍ଡଙ୍କ ଘୋଷଣା ଗ୍ରହଣ କରାଗଲା । କୁହାଗଲା ଯେ, ଏହା ଜାରନ୍ତ ଏବଂ ଏହାକୁ ପୁଷ୍ଟି କରିବାକୁ ହେବ । ସରକାର ଏହି ସର୍ତ୍ତ ଗ୍ରହଣ କଲେ ସହଯୋଗ କରାଯିବ । ଏହି ସର୍ତ୍ତଗୁଡ଼କ * ଅତି ବାସ୍ତବ ଏବଂ କୃତ୍ରି ଥିଲା ଓ ତାହା ାଳରେ ବର୍ତ୍ତମାନ ଅବସ୍ଥାର ପରିବର୍ତ୍ତନ ହୋଇଯାଇ ଥାନ୍ତା ।

ମଡ଼େରେଟ ଏବଂ ଅଗ୍ରଗାମୀ ସବୁଦଳର ପ୍ରତିନିଧିମାନେ ଏକ ପ୍ରସ୍ତାବରେ ସମ୍ମତ ହେବା ଏକ ସଫଳତା । କଂଗ୍ରେସ ଏଥିରେ ଟିକିଏ ତଳକୁ ଖସିଥିଲା, ମାତ୍ର ସମ୍ମିଳିତ ରାଜିନାମା ହିସାବରେ ଏହା ଖୁବ୍ ଉଚିତରେ ଥିଲା । ମାତ୍ର ଏଥିରେ ଏକ ଦୁର୍ଭାଗ୍ୟଲକ୍ଷଣ କଥା ଥିଲା । ସର୍ତ୍ତଗୁଡ଼ିକୁ ଦୁଇଟି ଭିନ୍ନ ଦୃଷ୍ଟି କୋଣରୁ ଦେଖୁଥିଲେ । କଂଗ୍ରେସ ଲୋକେ ଏହାକୁ ଜୋର କରି ଧରିଥିଲେ, ଅର୍ଥାତ୍ ଏହି ସର୍ତ୍ତ ପୂରଣ ନ ହେଲେ ସହଯୋଗ ସମ୍ଭବ ହୋଇପାରେନା । ସେମାନେ ଅତି କମରେ ଏହି ପର୍ଯ୍ୟନ୍ତ ଯାଇ ପାରନ୍ତି । ଏହାପରେ ହୋଇଥିବା କଂଗ୍ରେସ କାର୍ଯ୍ୟକାରୀ ସମିତି ବୈଠକରେ ଏ କଥା ଆହୁରି ପରିଷ୍କାର କରି ଦିଆଗଲା - ସମିତି ପ୍ରସ୍ତାବ କଲା ଯେ, ଆଗାମୀ କଂଗ୍ରେସ ତାରିଖ ପର୍ଯ୍ୟନ୍ତ କଂଗ୍ରେସ ଅପେକ୍ଷା କରିବ । ମଡ଼େରେଟଙ୍କ ପକ୍ଷରେ ଏହା ସର୍ବାଧିକ ଦାବି ହୋଇଥିଲା; ମାତ୍ର ଏହା ନ ହେଲେ ସହଯୋଗ କରିବେ ନାହିଁ, ଏପରି କଥା ସେମାନେ

---

*ସର୍ତ୍ତ ହେଉଛି – (୧) ପ୍ରସ୍ତାବିତ ସମ୍ମିଳନୀରେ ଭାରତକୁ ପୂର୍ଣ୍ଣ ଔପନିବେଶିକ ସ୍ୱାୟତ୍ତ ଶାସନ ଦେବାକୁ ମୂଳଭିତ୍ତି କରି ଆଲୋଚନା ହେବ ।

(୨) ସମ୍ମିଳନୀରେ କଂଗ୍ରେସ ପ୍ରତିନିଧିଙ୍କ ସଂଖ୍ୟା ଅଧିକ ହେବ ।

(୩) ସମସ୍ତ ରାଜବନ୍ଦୀ ଖଲାସ ହେବେ ।

(୪) ସେହିଦିନଠାରୁ ଭାରତରେ ଯଥାସମ୍ଭବ ପ୍ରଚଳିତ ଅବସ୍ଥା ସହିତ ଯଥାସମ୍ଭବ ସଙ୍ଗତ ରଖି ବ୍ରିଟିଶ ସରକାର ଔପନିବେଶିକ ସରକାର ପରି କାର୍ଯ୍ୟପ୍ରଣାଳୀ ପରିଚାଳନା କରିବ ।

କରିବାକୁ ରାଜି ନ ଥିଲେ । ଏହି ସର୍ତ୍ତଗୁଡ଼ିକ ନୀତିସଙ୍ଗତ ନ ହେଉଥିଲେ ସୁଦ୍ଧା ପ୍ରକୃତରେ ସର୍ତ୍ତରୂପେ ସେମାନେ ଗଣ୍ୟ କରୁ ନ ଥିଲେ ।

ପରେ ଦେଖାଗଲା, ଏହି ସର୍ତ୍ତଗୁଡ଼ିକ ପୂରଣ ହେଲା ନାହିଁ—ଆମ ଭିତରୁ ଅଧିକାଂଶ ଜେଲରେ ଆବଦ୍ଧ ହେଲୁ । ଆମ ସଙ୍ଗରେ ହଜାର ହଜାର ଲୋକ ଜେଲ ବରଣ କଲେ । ଅଥଚ ଆମର ମଡ଼ରେଟ ଓ ରେସ୍‌ପନ୍‌ସିଭିଷ୍ଟ ବନ୍ଧୁ, ଯେଉଁମାନେ ଆମ ସହିତ ଘୋଷଣା ପତ୍ରରେ ସ୍ୱାକ୍ଷର କରିଥିଲେ, ସେମାନେ ଆମର କାର୍ଯ୍ୟାଧ୍ୟକ୍ଷମାନଙ୍କ ସହ ପୂର୍ଣ୍ଣ ସହଯୋଗ କଲେ ।

ଏପରି ଘଟିବ ବୋଲି ଆମ ଭିତରୁ କେତେକ ସନ୍ଦେହ କରୁଥିଲେ । ଏହି ମିଳିତ କାର୍ଯ୍ୟର ପ୍ରସ୍ତାବରେ କଂଗ୍ରେସ ନିଜେ କେତେକ ପରିମାଣରେ ତଳକୁ ଖସିଥିଲା ସୁତରାଂ ଆଶା କରାଯାଉଥିଲା, ଏହା ଫଳରେ ଲିବରାଲ ଓ ଅନ୍ୟମାନଙ୍କର ଗୁଣ ନିଶ୍ଚୟ ବଢ଼ିବ ଏବଂ ସେମାନେ ଜଣା ପଡ଼ିବେ ଯେ ବ୍ରିଟିଶ ସରକାର ସହିତ ସହଯୋଗ କରୁଥିଲେ, ତାହା ହୁଏତ କମ ହେବ । ଆମେ କେତେ ଜଣ ଏହି ମିଳାମିଶା ପ୍ରସ୍ତାବକୁ ହୃଦୟର ସହିତ ନାପସନ୍ଦ କରୁଥିଲୁ—ଆମେ ଆମର ନିଜ କଂଗ୍ରେସ ଅନୁଷ୍ଠାନକୁ ସଜାଡ଼ି ରଖିବା ନିମନ୍ତେ ଲାଗିଥିଲୁ । ଏକ ବୃହତ୍ ସଂଗ୍ରାମ ପୂର୍ବରୁ ଆମେ କଂଗ୍ରେସରେ ବିବାଦ ସୃଷ୍ଟି କରିବାକୁ ଚାହୁଁ ନା । ଆମ ସର୍ତ୍ତ ସରକାର ଗ୍ରହଣ କରିବାର ସମ୍ଭାବନା ନାହିଁ ବୋଲି ପରିଷ୍କାର ରୂପେ ଜଣାପଡ଼ୁଥିଲା —ଏଥିରେ ଆମେଇ ବଳବାନ୍ ହେବୁ ଏବଂ ଦକ୍ଷିଣପନ୍ଥୀମାନେ ଆମ ସହିତ ଯୋଗ ଦେବେ । ଏଥିଲାଗି କେତେକ ସପ୍ତାହ ମାତ୍ର ବାକି ଥିଲା —ଡିସେମ୍ବର ମାସ ଏବଂ ଲାହୋର କଂଗ୍ରେସ ଅତି ନିକଟ ହୋଇ ଆସିଥିଲା ।

ତଥାପି ସେହି ମିଳିତ ଇସ୍ତାହାର ଆମ ପକ୍ଷରେ ଏକ ତିକ୍ତ ବଟିକା ଥିଲା । ମତବାଦ ହିସାବରେ କେତେକ କ୍ଷଣଲାଗି ମଧ୍ୟ ସ୍ୱାଧୀନତା ଦାବୀ ଛାଡ଼ିଦେବା ଅନ୍ୟାୟ ଏବଂ ବିପଜ୍ଜନକ । ଏହାର ଅର୍ଥ, ଆମେ ଏହାକୁ

ଏକ କୌଶଳ ଭାବରେ ଧରିନ୍ତି—ଏକ ପ୍ରକାର ସନ୍ଧି ଜିନିଷ ଉପ୍ର ଚଳିଛି । ଏହା ଯେ କହୁଛି ଦରକାର ଓ ଏହା ନ ହେଲେ ଆମେ ସନ୍ତୁଷ୍ଟ ହେବୁ ନାହିଁ, ଏ ଭାବ ଆମର ରହୁନାହିଁ । ତେଣୁ ମୁଁ ଇତସ୍ତତଃ କଲି ଏବଂ ଘୋଷଣା ପତ୍ରରେ ସ୍ୱାକ୍ଷର କରିବାକୁ ଅସ୍ୱୀକାର କଲି । (ସୁଭାଷ ବୋଷ ନିର୍ଦ୍ଦିଷ୍ଟ ଭାବରେ ଏହା ଦସ୍ତଖତ୍ କରିବାକୁ ଅସ୍ୱୀକାର କରିଥିଲେ ।) ମାତ୍ର କଥାବାର୍ତ୍ତା କରି ମୋଠାରୁ କାର୍ଯ୍ୟ କରାଇ ନେବା ଅସାଧାରଣ ନ ଥିଲା ଏବଂ କଥାବାର୍ତ୍ତା କଲା ପରେ ମୋଠାରୁ ଦସ୍ତଖତ୍ କରାଇ ନିଆଗଲା । ଏହା ହେଲେ ସୁଦ୍ଧା ମୁଁ ବଡ଼ ଅଶାନ୍ତିରେ ଫେରିଲି । କଂଗ୍ରେସ ସମ୍ପାଦକ ପଦରୁ ଇସ୍ତଫା ଦେବି ବୋଲି ସ୍ଥିର କରି ଗାନ୍ଧିଜୀଙ୍କୁ ଚିଠି ଲେଖିଲି । ମୁଁ ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ ମଧ୍ୟ ଏହାକୁ ଯେ ଖୁବ ଗୁରୁତ୍ୱ ଦେଉଥିଲି ତାହା ନୁହେଁ । ଗାନ୍ଧିଜୀଙ୍କଠାରୁ ଏକ ସାନ୍ତ୍ୱନାଦାୟକ ଚିଠି ଏବଂ ତିନି ଦିନ ଚିନ୍ତାପରେ ମୁଁ ଶାନ୍ତ ହେଲି ।

ଠିକ ଲାହୋର କଂଗ୍ରେସ ପୂର୍ବରୁ କଂଗ୍ରେସ ଓ ସରକାର ମଧ୍ୟରେ ଗୋଟିଏ ରାଜିନାମା କରାଇବା ନିମନ୍ତେ ଶେଷ ଉଦ୍ୟମ ହେଲା । ବଡ଼ଲାଟ ଲର୍ଡ଼ ଇରୱିନଙ୍କ ସହିତ ସାକ୍ଷାତ କରାଇବାର ବ୍ୟବସ୍ଥା ହେଲା । କିଏ ଏହି ସାକ୍ଷାତ ବ୍ୟବସ୍ଥା କରାଇଥିଲେ ମୋତେ ଜଣାନାହିଁ; ମାତ୍ର ମୋର ମନେହୁଏ ଭିଠଲଭାଇ ପଟେଲ ଏଥିରେ ପ୍ରଧାନ ଉଦ୍ୟୋକ୍ତା ଥିଲେ । କଂଗ୍ରେସ ତରଫରୁ ଗାନ୍ଧିଜୀ ଓ ମୋର ପିତା ଗଲେ ଏବଂ ମୋର ମନେହୁଏ ମିଃ ଜିନ୍ନା ଓ ସାର ତେଜବାହାଦୂର ସାପ୍ରୁ ଏବଂ ପ୍ରେସିଡ଼େଣ୍ଟ ପଟେଲ ମଧ୍ୟ ଉପସ୍ଥିତ ଥିଲେ । ସାକ୍ଷାତରେ କିଛି ଫଳ ହେଲାନାହିଁ । ରାଜିନାମାର କୌଣସି ଚିହ୍ନ ଦେଖାଗଲା ନାହିଁ—ଦୁଇ ପ୍ରଧାନ ଦଳ—ସରକାର ଓ କଂଗ୍ରେସ ଉଭୟେ ପରସ୍ପରଠାରୁ ବହୁତ ଦୂରରେ ଥିଲେ । ଏପରି ଅବସ୍ଥାରେ ଆଗକୁ ଯିବାଛଡ଼ା କଂଗ୍ରେସର ଆଉ କିଛି ନ ଥିଲା । ଯେଉଁ ବର୍ଷକ ସମୟ କଲିକତାରେ ଦିଆ ହୋଇଥିଲା, ତାହା ଶେଷ ହେଲା; ସବୁ ଦିନ ସକାଶେ କଂଗ୍ରେସର ଲକ୍ଷ ସ୍ୱାଧୀନତା ବୋଲି

ଘୋଷଣା କରିବାକୁ ହେବ ଏବଂ ତାହା ଲାଭ କରିବା ଉଦ୍ଦେଶ୍ୟରେ ସଂଗ୍ରାମ ନିମନ୍ତେ ଆବଶ୍ୟକୀୟ କାର୍ଯ୍ୟ କରିବାକୁ ପଡ଼ିବ ।

ଲାହୋର କଂଗ୍ରେସ କେତେକ ସପ୍ତାହ ପୂର୍ବରୁ ଅନ୍ୟ କ୍ଷେତ୍ରରେ ଏକ ଗୁରୁତର କାର୍ଯ୍ୟରେ ମୋର ଉପସ୍ଥିତି ଦରକାର ଥିଲା । ନିଖିଳ ଭାରତ ଟ୍ରେଡ଼ ୟୁନିୟନ କଂଗ୍ରେସ ନାଗପୁରରେ ହେଉଥାଏ ଏବଂ ସେ ବର୍ଷର ସଭାପତି ରୂପେ ମୁଁ ସେଥିରେ ସଭାପତିତ୍ୱ କରିବାର କଥା । କେତେକ ସପ୍ତାହ ଅନ୍ତରେ ଗୋଟିଏ ଲୋକ ଜାତୀୟ କଂଗ୍ରେସ ଏବଂ ଟ୍ରେଡ଼ ୟୁନିୟନର ସଭାପତି ହେବା ଏକ ଅସାଧାରଣ କଥା । ମୋର ଆଶା ଥିଲା, ମୁଁ ହେବି ଉଭୟଙ୍କ ଭିତରେ ଏକ ବନ୍ଧନ ସଦୃଶ ଏବଂ ପରସ୍ପରର ସମ୍ବନ୍ଧ ଘନିଷ୍ଠ କରିପାରିବି—ଜାତୀୟ କଂଗ୍ରେସ ସାମ୍ୟବାଦୀ କାର୍ଯ୍ୟପନ୍ଥା ଗ୍ରହଣ କରିବ—ସର୍ବହରାଙ୍କ ଅବସ୍ଥା ପ୍ରତି ବେଶୀ ଦୃଷ୍ଟି ଦେବ ଏବଂ ସଂଗଠିତ ଶ୍ରମିକ ଜାତୀୟ ସଂଗ୍ରାମରେ ଯୋଗ ଦେବେ ।

ମାତ୍ର ଏହା ମୋର ବୃଥା ଆଶା—କାରଣ ଜାତୀୟତା ଜାତୀୟଭାବ ଛାଡ଼ିଲେହିଁ ଯାଇ ସାମ୍ୟବାଦୀ ବା ସର୍ବହରା ଶ୍ରେଣୀର କର୍ମପନ୍ଥା ଗ୍ରହଣ କରିପାରିବ । ତଥାପି ମୁଁ ଅନୁଭବ କଲି ଯେ ଜାତୀୟ କଂଗ୍ରେସର ଦୃଷ୍ଟିକୋଣ ବୁର୍ଜୋୟା ହୋଇଥିଲେ ମଧ୍ୟ ଦେଶରେ ତାହାହିଁ ଏକମାତ୍ର କାର୍ଯ୍ୟକାରୀ ବୈପ୍ଳବୀ ଶକ୍ତି । ନିଜର ବ୍ୟକ୍ତିତ୍ୱ ଓ ଆଦର୍ଶ ଅକ୍ଷୁଣ୍ଣ ଏବଂ ପୃଥକ ରଖି ଶ୍ରମିକମାନେ ଏହାକୁ ସାହାଯ୍ୟ ଓ ସହଯୋଗ କରି ଏଥିରେ ପ୍ରଭାବ ପକାଇବା ଉଚିତ । ମୋର ଆଶା ଥିଲା ଯେ, ଘଟଣାକ୍ରମେ ଏବଂ ପ୍ରତ୍ୟକ୍ଷ ସଂଗ୍ରାମରେ ଯୋଗଦେଲେ କଂଗେସ ଆହୁରି ଅଗ୍ରଗାମୀ ମତବାଦ ଏବଂ ସାମାଜିକ ଓ ଅର୍ଥନୈତିକ ସମସ୍ୟାର ସମ୍ମୁଖୀନ ହେବା ଅବଶ୍ୟମ୍ଭାବୀ । ଏବେ କେତେ ବର୍ଷ ହେଲା କୃଷକ ଏବଂ ଗ୍ରାମ ଆଡ଼କୁ କଂଗ୍ରେସର ବେଶୀ ଦୃଷ୍ଟି ପଡ଼ୁଛି । ଏହିପରି ଗତି କଲେ ସମ୍ଭବତଃ ଏହା ଏକ ବିରାଟ କୃଷକ ସଙ୍ଗଠନରେ ପରିଣତ ହୋଇ ଯିବ, ଅନ୍ତତଃ ଏହି ଅନୁଷ୍ଠାନରେ କୃଷକମାନେ ପ୍ରାଧାନ୍ୟ କରିବେ । ଯୁକ୍ତ ପ୍ରଦେଶର ଅନେକ ଜିଲା କଂଗ୍ରେ

କମିଟିରେ କୃଷକମାନଙ୍କର ପ୍ରତିନିଧି ଅନେକ ଥିଲେ । ଅବଶ୍ୟ, ମଧ୍ୟବିତ୍ତ ଶ୍ରେଣୀର ଶିକ୍ଷିତ ଲୋକମାନଙ୍କ ହାତରେ ନେତୃତ୍ୱ ରହୁଥିଲା ।

ସହର ଓ ଗ୍ରାମ ଭିତରେ ଯେଉଁ ଚଳନ୍ତନ ସଂଗ୍ରାମ ରହୁଛି, ତାହା ଜାତୀୟ କଂଗ୍ରେସ ଏବଂ ଟ୍ରେଡ଼ ୟୁନିୟନ କଂଗ୍ରେସ ସମ୍ବନ୍ଧରେ ପ୍ରକାଶ ପାଇବାର ସମ୍ଭାବନା ଥିଲା । ମାତ୍ର ଏହି ସମ୍ଭାବନା ବହୁତ ଦୂରରେ ଥିଲା, କାରଣ ବର୍ତ୍ତମାନ ଜାତୀୟ କଂଗ୍ରେସ ମଧ୍ୟବିତ୍ତ ଶ୍ରେଣୀ ଚଳାଉଛନ୍ତି ଏବଂ ସହରହିଁ ଏହାକୁ ଆଶ୍ରୟ କରିଛି ଏବଂ ଜାତୀୟ ସ୍ୱାଧୀନତାର ପ୍ରଶ୍ନ ସମାଧାନ ନ ହେବା ପର୍ଯ୍ୟନ୍ତ ଜାତୀୟତାହିଁ ପ୍ରାଧାନ୍ୟ ଲଭିବ ଏବଂ ଦେଶର ସର୍ବଶ୍ରେଷ୍ଠ ଲୋକପ୍ରିୟ ଦଳ ହୋଇ ରହିବ । କଂଗ୍ରେସ ଏବଂ ସଙ୍ଗଠିତ ଶ୍ରମିକ ଅନୁଷ୍ଠାନର ସମ୍ପର୍କ ଘନିଷ୍ଠ କରିବା ବାଞ୍ଛନୀୟ ବୋଲି ମୁଁ ବୋଧକଲି ଏବଂ ଯୁକ୍ତ ପ୍ରଦେଶରେ ଆମେ ଟ୍ରେଡ଼ ୟୁନିୟନ କଂଗ୍ରେସର ପ୍ରାଦେଶିକ ଶାଖାରୁ ପ୍ରତିନିଧି ଆମ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟରୂପେ ଗ୍ରହଣ କଲୁ । ଅନେକ କଂଗ୍ରେସ ଲୋକ ଶ୍ରମିକ କାର୍ଯ୍ୟରେ ପ୍ରଧାନ ଭାଗ ନେଲେ ।

ଶ୍ରମିକ ଅନୁଷ୍ଠାନର ଅଗ୍ରଗାମୀ ଦଳ କଂଗ୍ରେସ ସହିତ ମିଶିବା ପକ୍ଷରେ ନ ଥିଲେ । ସେମାନେ ଏହାର ନେତାମାନଙ୍କୁ ଅବିଶ୍ୱାସ କରୁଥିଲେ ଏବଂ ଏହାର ଆଦର୍ଶ ବୁର୍ଜୋୟା ଓ ପ୍ରତିକ୍ରିୟାପନ୍ଥୀ ମନେ କରୁଥିଲେ । ଶ୍ରମିକ ଦୃଷ୍ଟିକୋଣରୁ ବାସ୍ତବିକ ଏହା ତାହା ଥିଲା । କଂଗ୍ରେସର ନାମରୁ ତ ପରିଷ୍କାର ଯେ, ଏହା ଏକ ଜାତୀୟ ଅନୁଷ୍ଠାନ ।

ଭାରତର ଶ୍ରମିକ ସମସ୍ୟା ବିଚାର ପାଇଁ ଏକ ରଏଲ କମିଶନ ନିଯୁକ୍ତ ହୋଇଗଲା । ଏହାକୁ ହୁଇଟଲେ କମିଶନ କହୁଥିଲେ । ୧୯୨୯ ମସିହା ସାରା ଶ୍ରମିକ ସଙ୍ଘ ଏହି ନୂତନ ସମସ୍ୟାରେ ବ୍ୟସ୍ତ ହେଲେ । ବାମପନ୍ଥୀ-ମାନେ ଏହା ବର୍ଜନ କରିବାର ପକ୍ଷପାତୀ ଥିଲେ ଏବଂ ଦକ୍ଷିଣପନ୍ଥୀମାନେ ଏହା ସହିତ ସହଯୋଗର ପକ୍ଷପାତୀ ଥିଲେ । ତାହା ଛଡ଼ା ଦକ୍ଷିଣ ପନ୍ଥୀ

କେତେକଙ୍କୁ କମିଶନର ସଭ୍ୟପଦ ଦିଆଯିବାରୁ ବ୍ୟକ୍ତିଗତ କଥା ଓ ଆସି ପଡ଼ିଥିଲା । ଅନ୍ୟ କେତେକ ଘଟଣା ପରି ଏହିକ୍ଷେତ୍ରରେ ମଧ୍ୟ ବାମପନ୍ଥୀଙ୍କ ସହିତ ମୋର ମତ ଥିଲା । ବିଶେଷତଃ ଜାତୀୟ କଂଗ୍ରେସରେ ମଧ୍ୟ ଏହି ମତ ଥିଲା । ଆମେ ଏକ ପ୍ରତ୍ୟକ୍ଷ ସଂଗ୍ରାମ ଚଳାଉଥିଲବେଳେ ବା ଚଳାଇବାକୁ ଯାଉଥିଲବେଳେ ଏକ ସରକାରୀ କମିସନ ସହିତ ସହ-ଯୋଗ କରିବା ଅଯୌକ୍ତିକ ପରି ମନେ ହେଉଥିଲା ।

ଟ୍ରେଡ୍ ୟୁନିଅନ କଂଗ୍ରେସର ନାଗପୁର ଅଧିବେଶନରେ ଏହି ହ୍ୱିଟ୍‌ଲି କମିଶନ ବର୍ଜନ ସମସ୍ୟା ପ୍ରଧାନ ହୋଇ ଉଠିଲା ଏବଂ ବିବାଦ ହେଉଥିବା ଅନ୍ୟ କେତେକ ଘଟଣା ପରି ଏଥିରେ ମଧ୍ୟ ବାମପନ୍ଥୀଙ୍କର ଜୟ ହେଲା । ଏହି କଂଗ୍ରେସରେ ମୁଁ ଉଲ୍ଲେଖଯୋଗ୍ୟ କାମ କିଛି କରିନାହିଁ । ଶ୍ରମିକ କ୍ଷେତ୍ରରେ ସମ୍ପୂର୍ଣ୍ଣ ନୂତନ ହୋଇଥିବାରୁ ମୁଁ ଟିକିଏ ଇତସ୍ତତଃ କରୁଥିଲି । ସାଧାରଣତଃ ଅଧିକ ଅଗ୍ରଗାମୀ ଦଳ ସପକ୍ଷରେ ମୁଁ ମୋର ମତ ପ୍ରକାଶ କରୁଥିଲି; ମାତ୍ର କୌଣସି ଦଳ ସହିତ ମୁଁ ସଂଯୁକ୍ତ ହେଲି ନାହିଁ ଏବଂ ଏକ ନିର୍ଦ୍ଦେଶକ ସମ୍ପର୍କ ଅପେକ୍ଷା ନିରପେକ୍ଷ ବନ୍ଧୁ-ରୂପେ କାର୍ଯ୍ୟ କଲି । ଏହିରୂପେ ଟ୍ରେଡ୍‌ଇଉନିଅନ କଂଗ୍ରେସ ଭାଙ୍ଗି ଯାଇ ଏକ ନୂଆ ମଡ଼େରେଟ ଅନୁଷ୍ଠାନ ଗଢ଼ା ହେଲା । ସେଥିରେ ମୁଁ ଜଣେ ଦୁଃଖ-ଦର୍ଶକ ରୂପେ ରହିଥିଲି । ବ୍ୟକ୍ତିଗତ ଭାବରେ ମୁଁ ଅନୁଭବ କଲି ଯେ, ଦକ୍ଷିଣପନ୍ଥୀମାନେ ଅଲଗା ହେବା ଯୁକ୍ତିଯୁକ୍ତ ନୁହେଁ । ତଥାପି କେତେକ ବାମପନ୍ଥୀ ନେତା ଅବସ୍ଥା ଗୁରୁତର କରି ପକାଇଲେ ଏବଂ ଆମକୁ ଅଲଗା ହେବାର ସୁବିଧା ଦେଲେ । ଦକ୍ଷିଣ ଓ ବାମପନ୍ଥୀଙ୍କ ଝଗଡ଼ା ଭିତରେ କେନ୍ଦ୍ରଦଳ ଅସହାୟ ହୋଇ ପଡ଼ିଲେ । ସମ୍ଭବତଃ ଠିକ ନେତୃତ୍ୱ ପାଇଥିଲେ ଏହା ଦୁହିଁଙ୍କୁ ଭିଡ଼ି ଦେଇଥାଆନ୍ତା ଏବଂ ଟ୍ରେଡ୍ ୟୁନିୟନକୁ ଭାଙ୍ଗି ଯିବାରୁ ରକ୍ଷା କରିଥାଆନ୍ତା । ଭାଙ୍ଗି ଯାଇଥିଲେ ସୁଦ୍ଧା ଏହାର ଯେପରି ଦୁର୍ଭାଗ୍ୟ ପରିଣତି ହେଲା, ଅନ୍ତତଃ ତାହା ହୋଇ ନ ଥାଆନ୍ତା ।

ଏହି ଘଟଣା ଫଳରେ ଭାରତରେ ଶ୍ରମିକ ଆନ୍ଦୋଳନ ଏକ ଶକ୍ତ ଧକ୍କା ପାଇଲା, ଏଥିରୁ ଏହା ଆଜିଯାଏ ମୁକ୍ତି ପାଇନାହିଁ । ସତ୍ ୮ ।୭

ଶ୍ରମିକ ଆନ୍ଦୋଳନର ଅଗ୍ରଗାମୀ ଶାଖା ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଦେଇ ସାରିଥିଲେ ଏବଂ ତାର ପ୍ରଥମ ଫଳ ସ୍ୱରୂପ ମିରଟ ମକଦ୍ଦମା ଆରମ୍ଭ ହେଲା । ଏହି ସ୍ତମ୍ଭର ଗୃହୀତ, ମାଲିକମାନେ ତାଙ୍କର ସୁବିଧାଲାଗି ଏହାକୁ ଉପଯୁକ୍ତ ସମୟ ମନେ କଲେ । ୧୯୨୯-୩୦ର ଶୀତ ଋତୁରେ ପୃଥିବୀର ଅର୍ଥନୈତିକ ସଙ୍କଟ ଆରମ୍ଭ ହୋଇଗଲା, ଏଥିରେ ଶ୍ରମିକମାନେ କଷ୍ଟ ଭୋଗିଲେ । ଅନ୍ୟ ଦିଗରୁ ଅଶାନ୍ତ ହୋଇ ଏବଂ ନିଜର ଶ୍ରମିକ ଅନୁଷ୍ଠାନ ନୀଚ ସ୍ତରରେ ଥିବାରୁ ଭାରତର ଶ୍ରମିକମାନଙ୍କର ଏକ କଠିନ ମୁହୂର୍ତ୍ତ ପହଞ୍ଚିଲା ଏବଂ ସେମାନଙ୍କ ଅବସ୍ଥା ଯେ କ୍ରମେ ଅଧୋଗତି ଆଡ଼କୁ ଗଲା, ତାହା ସେମାନେ ଅସହାୟ ଦର୍ଶକ ଭାବରେ କେବଳ ଦେଖିଲେ । ତଥିରେ ବର୍ଷେ ଦୁଇବର୍ଷ ପରେ କମ୍ୟୁନିଷ୍ଟ ଦଳ ଏଥିରୁ ଅଲଗା ହୋଇ-ଯିବାରୁ ଟ୍ରେଡ଼ ୟୁନିଅନ କଂଗ୍ରେସରେ ପୁଣି ବିବାଦ ହେଲା । ଏହିରୂପେ ମତବାଦ ହିସାବରେ ଭାରତରେ ତିନୋଟି ଟ୍ରେଡ୍ ଇଉନିଅନ ଅନୁଷ୍ଠାନ ଥିଲା । ମଡ଼ରେଟ ଦଳ, ପ୍ରଧାନ ଟ୍ରେଡ଼ ଇଉନିଅନ କଂଗ୍ରେସ ଏବଂ କମ୍ୟୁନିଷ୍ଟ ଦଳ । କାର୍ଯ୍ୟରେ ଏଗୁଡ଼ିକ ସବୁ ଦୁର୍ବଳ ଏବଂ ଫଳପ୍ରଦ ନଥିଲେ ଏବଂ ସେମାନଙ୍କର ପରସ୍ପର ବିବାଦ ହେତୁ ଶ୍ରମିକମାନେ ବିରକ୍ତ ହୋଇଥିଲେ । ୧୯୩୦ ମସିହା ପରଠାରୁ ମୁଁ ଅଧିକ ସମୟ ଜେଲ ଭିତରେ ରହିବାରୁ ଏଥିର ବାହାରେ ଥିଲି । ମୁଁ ବାହାରେ ଯେଉଁ ଅଳ୍ପ ସମୟ ରହିଥିଲି, ସେଥିରେ ଟ୍ରେଡ଼ ଇଉନିଅନ ଅନୁଷ୍ଠାନରେ ଏକତା ଆଣିବାର ଚେଷ୍ଟା ହେଉଛି ବୋଲି ଶୁଣିଥିଲି । ମାତ୍ର ତାହା ସଫଳକାମ ହେଲ ନାହିଁ । ରେଲଓଏ୍ୱ ଶ୍ରମିକମାନେ ମଡ଼ରେଟ୍ ଦଳ ସହିତ ଥିବାରୁ ସେମାନେ ଶକ୍ତିଶାଳୀ ହୋଇଥିଲେ । ସରକାର ସେମାନଙ୍କୁ ସ୍ୱୀକାର କରୁଥିବାରୁ ଅନ୍ୟ ଦଳଙ୍କ ଅପେକ୍ଷା ସେମାନଙ୍କର ସୁବିଧା ଥିଲା ଏବଂ ଜେନେଭା ଶ୍ରମିକ ସମ୍ମିଳନୀମାନଙ୍କରେ ସରକାର ସେମାନଙ୍କୁ ସୁପାରିଶ ନିର୍ବାଚନ କରିଥିଲା । ଜେନେଭା ଯିବାର ଲୋଭ କେତେକ ଶ୍ରମିକ ନେତାଙ୍କୁ ସେମାନଙ୍କ ଆଡ଼କୁ ଟାଣି ନେଇଥିଲା ଏବଂ ତାଙ୍କ ସହିତ ତାଙ୍କ ଦଳ ବି ମଡ଼ରେଟ୍ ଦଳରେ ଯୋଗ ଦେଲେ ।

———

# ସ୍ୱାଧୀନତା ଏବଂ ତା' ପରେ

ଲାହୋର କଂଗ୍ରେସର ସ୍ମୃତି ମୋ ମନରେ ଏକ ଉଜ୍ଜ୍ୱଳ ଚିତ୍ରରୂପେ ଆଜିସୁଦ୍ଧା ରହିଛି । ଏହା ହେବା ସ୍ୱାଭାବିକ, କାରଣ ମୁଁ ଏଠାରେ ମୁଖ୍ୟ ଭାବରେ କାର୍ଯ୍ୟ କରୁଥିଲି ଏବଂ କ୍ଷଣକାଳ ପାଇଁ ସେହି ଭୂମିକାରେ କେନ୍ଦ୍ରସ୍ଥଳ ହୋଇଥିଲି । ଏହି କର୍ମବ୍ୟସ୍ତ ଦିନଗୁଡ଼ିକରେ ମୋ ହୃଦୟ କିପରି ଭାବାବେଶରେ ପୂର୍ଣ୍ଣ ହୋଇଥିଲା, ତାହା ମୁଁ ବେଳେ ବେଳେ ଭାବେ । ଲାହୋର ଲୋକେ ମୋତେ ଯେଉଁ ବିରାଟ ଅଭିବାଦନ କରିଥିଲେ, ତାହା ମୁଁ କଦାପି ଭୁଲି ପାରିବି ନାହିଁ । ମୁଁ ଜାଣେ ଏହା କିଛି ମୋର ବ୍ୟକ୍ତିତ୍ୱ ପାଇଁ ନୁହେଁ, ମାତ୍ର ଏହି ଅପୂର୍ବ ଉତ୍ସାହ ଏବଂ ଆଦର୍ଶର ପ୍ରତୀକ ଉଦ୍ଦେଶ୍ୟରେ ହୋଇଥିଲା; କ୍ଷଣ କାଳ ପାଇଁ ହେଲେ ସୁଦ୍ଧା ଅନେକ ସହସ୍ର ଲୋକଙ୍କ ହୃଦୟରେ ଓ ସମ୍ମୁଖରେ ଜଣେ ବ୍ୟକ୍ତି ଏହି ପ୍ରତୀକ ହେବା କିଛି କମ୍ କଥା ନୁହେଁ—ମୁଁ ଆନନ୍ଦରେ ଆତ୍ମହରା ହୋଇଗଲି, ମାତ୍ର ମୋର ବ୍ୟକ୍ତିଗତ ପ୍ରତିକ୍ରିୟା ବିଚାର କରିବାର ନୁହେଁ; ଦେଶ ସମ୍ମୁଖରେ ବହୁତ ବଡ଼ ବଡ଼ ସମସ୍ୟା ଥିଲା । ସମଗ୍ର ବାୟୁମଣ୍ଡଳ ଏକ ବିଦ୍ୟୁତ୍ ପ୍ରବାହ ପରି ହୋଇଥିଲା ଏବଂ ସେ ମୁହୂର୍ତ୍ତର ଗମ୍ଭୀରତାରେ ଆଚ୍ଛାଦିତ ହୋଇଥିଲା । ଆମର ସିଦ୍ଧାନ୍ତ ଯେ ଖାଲି ସମାଲୋଚନା, ପ୍ରତିବାଦ ବା ମତ ପ୍ରକାଶ ପାଇଁ ହେବ, ତାହା ନୁହେଁ, ମାତ୍ର ଦେଶକୁ ଏକ ଆହ୍ୱାନ ହେବ ଏବଂ ତା ଫଳରେ ସାରା ଦେଶ ଆଲୋଡ଼ିତ ହେବ ଏବଂ କୋଟି କୋଟି ଜନତାଙ୍କ ଜୀବନ ସ୍ପର୍ଶ କରିବ ।

ଆମର ଓ ଆମ ଦେଶର ସୁଦୂର ଭବିଷ୍ୟତ କଅଣ ହେବ, ତାହା କେହି ଆଗରୁ କହିପାରିବ ନାହିଁ, ନିକଟ ଭବିଷ୍ୟତ ପରିଷ୍କାର ଜଣାପଡ଼ୁଥିଲା ଏବଂ ଆମ ପକ୍ଷରେ ଏବଂ ଆମର ପ୍ରିୟଜନଙ୍କ ପାଇଁ ଏହି ସମୟରେ କଷ୍ଟ ଓ ଦୁଃଖ ଥିଲା । ଏହି ଚିନ୍ତା ଆମର ଉତ୍ସାହକୁ ବଶୀଭୂତ କରୁଥିଲା ଏବଂ ଆମ ଦାୟିତ୍ୱ ବିଷୟରେ ଆମେ ସଚେତନ ହେଉଥିଲୁ । ଆମର ପ୍ରତ୍ୟେକ ଭୋଟର ଅର୍ଥ ହେଉଛି ସହଜ ଓ ସ୍ୱାଚ୍ଛନ୍ଦ୍ୟ ଜୀବନ, ଘର ଓ

ବନ୍ଧୁ ସୁଖରୁ ବିଦାୟ ଦେବା ଏବଂ ତା ବଦଳରେ ଜେଲସଙ୍ଗ ଦିନ, ଲାଠି ଏବଂ ଶାରୀରିକ ଓ ମାନସିକ ଦୁଃଖକୁ ନିମନ୍ତ୍ରଣ କରିବା ।

ସ୍ୱାଧୀନତା ପ୍ରସ୍ତାବ ଏବଂ ସ୍ୱାଧୀନତା ସଂଗ୍ରାମ ଲାଗି କାର୍ଯ୍ୟପନ୍ଥା ପ୍ରାୟ ଏକମତରେ ଗୃହୀତ ହେଲା — ସହସ୍ର ସହସ୍ର ଲୋକଙ୍କ ଭିତରୁ ପ୍ରାୟ ୨୦।୨୫ ଜଣ ଲୋକ ଏହା ବିରୁଦ୍ଧରେ ଭୋଟ ଦେଇଥିଲେ । ଏକ ସଂଶୋଧନ ପ୍ରସ୍ତାବ ଉପରେ ପ୍ରକୃତ ଭୋଟ ନିଆ ହୋଇଥିଲା । ଏହି ସଂଶୋଧନ ପ୍ରସ୍ତାବ ପରାସ୍ତ ହୋଇଗଲା; ଭୋଟ ସଂଖ୍ୟା ଘୋଷଣା କରାଗଲା ଏବଂ ମୂଳ ପ୍ରସ୍ତାବ ଧାର୍ଯ୍ୟ ହେଲା—ଡିସେମ୍ବର ମାସ ତା ୩୧ ରାତ୍ରି ଅର୍ଦ୍ଧ-ରାତ୍ରରେ ଠିକ୍ ପୁରୁଣା ବର୍ଷ ଯାଇଁ ନୂତନ ବର୍ଷ ଆରମ୍ଭ ସମୟରେ ଏ ପ୍ରସ୍ତାବ ପାସ୍ ହେବା ଏକ ଅଦ୍ଭୁତ ଯୋଗ ହେଲା । କଲିକତା କଂଗ୍ରେସରେ ଯେଉଁ ବର୍ଷକ ସମୟ ନିର୍ଦ୍ଦିଷ୍ଟ ହୋଇଥିଲା, ତାହା ଶେଷ ହେଲା ଏବଂ ନୂତନ ସିଦ୍ଧାନ୍ତ ନିଆଗଲା ଓ ସଂଗ୍ରାମ ଲାଗି ପ୍ରସ୍ତୁତ କରିବା ଆରମ୍ଭ ହେଲା । ଚକ୍ର ଘୂରିବା ଆରମ୍ଭ ହୋଇଥାଏ, ମାତ୍ର କିପରି ଏବଂ କେତେବେଳେ ଆମକୁ ଆରମ୍ଭ କରିବାକୁ ହେବ, ସେ ସମ୍ବନ୍ଧରେ ଆମେ ଅନ୍ଧକାରରେ ଥିଲୁ । ଆନ୍ଦୋଳନ ଲାଗି ଯୋଜନା କରି ତାହା ଚଳାଇବା ଲାଗି ନିଖିଳ ଭାରତ କଂଗ୍ରେସ କମିଟି ଉପରେ ଭାର ଦିଆଗଲା, ମାତ୍ର ଏକଥା ସମସ୍ତଙ୍କୁ ଜଣା ଥିଲା ଗାନ୍ଧିଜୀଙ୍କଠାରେ ଅସଲ ନିଷ୍ପତ୍ତି ନିର୍ଭର କରେ ।

ନିକଟସ୍ଥ ସୀମାନ୍ତ ପ୍ରଦେଶରୁ ଅନେକ ସଂଖ୍ୟକ ଲୋକ ଲାହୋର କଂଗ୍ରେସରେ ଯୋଗ ଦେଇଥିଲେ । ଏହି ପ୍ରଦେଶରୁ ବ୍ୟକ୍ତିଗତ ଭାବେ ପ୍ରତିନିଧିମାନେ ବରାବର କଂଗ୍ରେସ ଅଧିବେଶନକୁ ଆସୁଥିଲେ ଏବଂ କେତେବର୍ଷ ହେଲା ଖାଁ ଅବ୍ଦୁଲ ଗଫର ଖାଁ ବରାବର ଆସି ଆଲୋଚନାରେ ଯୋଗ ଦେଉଥିଲେ । ପ୍ରଥମ ଥର ପାଇଁ ଲାହୋରରେ ସୀମାନ୍ତର କେତେକ ନିଷ୍ଠାପର ଯୁବକ ନିଖିଳ ଭାରତ ରାଜନୀତିର ସଂସ୍ପର୍ଶରେ ଆସିଲେ । ସେମାନଙ୍କର ଚିତ୍ତ ମୁଗ୍ଧ ହେଲା ଏବଂ ସ୍ୱାଧୀନତା ସଂଗ୍ରାମରେ

ଭାରତର ଅବଶିଷ୍ଟ ଅଞ୍ଚଳ ସହିତ ଏକତାବଦ୍ଧ ହେବାର ଭାବ ଏବଂ ଏଥିଲାଗି ଦୃଢ଼ ଆଗ୍ରହ ନେଇ ସେମାନେ ଫେରିଗଲେ । ସେମାନେ ସବଳ ଏବଂ କାର୍ଯ୍ୟକୁଶଳ; ଭାରତର ଅନ୍ୟ ପ୍ରଦେଶର ଲୋକଙ୍କ ପରି ସେମାନେ ବାକ୍‌ବିତଣ୍ଡା ବେଶି କରନ୍ତି ନାହିଁ, ସେମାନେ ତାଙ୍କ ପ୍ରଦେଶର ଲୋକଙ୍କୁ ସଂଗଠିତ କରି ନୂତନ ଭାବ ପ୍ରଚାରରେ ଲାଗିଗଲେ । ସେମାନେ ସଫଳତା ଲାଭ କଲେ । ସୀମାନ୍ତର ନରନାରୀ ସ୍ୱାଧୀନ ସଂଗ୍ରାମର ଶେଷରେ ଯୋଗ ଦେଇ ସୁଦ୍ଧା ୧୯୩୦ ମସିହାରୁ ଅସାଧାରଣ ଓ ଉଲ୍ଲେଖଯୋଗ୍ୟ ନିପୁଣତା ଦେଖାଇଲେ ।

ଲାହୋର କଂଗ୍ରେସ ପରେ ପରେ କଂଗ୍ରେସ ନିର୍ଦ୍ଦେଶ ଅନୁସାରେ କେନ୍ଦ୍ର ଆସେମ୍ବ୍ଲି ଓ ପ୍ରାଦେଶିକ କାଉନ୍‌ସିଲର କଂଗ୍ରେସ ସଭ୍ୟମାନଙ୍କୁ ଇସ୍ତଫା ଦେବା ନିମନ୍ତେ ମୋ ପିତା ଆହ୍ୱାନ କଲେ । ପ୍ରାୟ ସମସ୍ତେ ଏକ ସାଙ୍ଗରେ ଏହା କରିଥିଲେ—ଅତି ଅଳ୍ପ ସରକାରଙ୍କ ଲୋକ ସେମାନଙ୍କର ନିର୍ବାଚନ ପ୍ରତିଶ୍ରୁତି ଭାଙ୍ଗି ଇସ୍ତଫା ଦେବାକୁ ଅସ୍ୱୀକାର କରିଥିଲେ ।

ତଥାପି ଭବିଷ୍ୟତ ସମ୍ବନ୍ଧରେ ସବୁ ଅସ୍ପଷ୍ଟ ଥିଲା । କଂଗ୍ରେସ ଅଧିବେଶନରେ ବହୁଳ ଉତ୍ସାହ ସତ୍ତ୍ୱେ ଦେଶରେ କାର୍ଯ୍ୟକ୍ରମ ଲୋକେ କିପରି ଗ୍ରହଣ କରିବେ, ଜଣା ନ ଥିଲା । ଆମେ ଆମ ନୌକା ବୁଡ଼ାଇ ଦେଇ ଥିଲୁ, ଆଉ ଫେରିବା ବିଷୟର କଥା ନାହିଁ, ମାତ୍ର ଆମ ଆଗରେ ସେ କିପରି ଅପରିଚିତ ଓ ଅଗମ୍ୟ ପଥ ପଡ଼ିଛି କିଏ ଜାଣେ । ଆମ ଆନ୍ଦୋଳନକୁ ଶୁଭ ଦେବା ପାଇଁ ଏବଂ ଦେଶର ମନୋଭାବ ଜାଣିବା ନିମନ୍ତେ ଜାନୁଆରୀ ତା ୨୬ ରିଖରେ ସ୍ୱାଧୀନତା ଦିବସ ପାଳନ କରାଯିବା ସ୍ଥିର ହେଲା—ସେ ଦିନ ସମଗ୍ର ଦେଶରେ ସ୍ୱାଧୀନତା ଶପଥ ଗ୍ରହଣ କରିବାର କଥା ।

ସୁତରାଂ ଆମର କାର୍ଯ୍ୟପନ୍ଥାରେ ପୂର୍ଣ୍ଣ ସନ୍ଦେହ ସତ୍ତ୍ୱେ ଆମେ ଉତ୍ସାହର ସହିତ ଅଗ୍ରସର ହେଲୁ ଏବଂ ଫଳପ୍ରଦ କିଛି କରିବା ନିମନ୍ତେ ଆମେ ଘଟଣାକୁ ଚିତ ଲକ୍ଷ୍ୟ କଲୁ । ମୁଁ ଜାନୁୟାରୀ ମାସ ପ୍ରଥମ ଭାଗରେ ଏଲ୍ଲାହାବାଦରେ ଥିଲି—ମୋ ପିତା ଅଧିକାଂଶ ସମୟ ବାହାରେ ଥାଆନ୍ତି । ଏହା ମାଘ ମେଳା ସମୟ, ସମ୍ଭବତଃ ସେ ବର୍ଷ କୁମ୍ଭ ବର୍ଷ ଏବଂ ହଜାର ହଜାର ନରନାରୀ ଏଲ୍ଲାହାବାଦ ବା ପବିତ୍ର ପ୍ରୟାଗ ତୀର୍ଥକୁ ସୋତ ପରି ଆସୁଥାଆନ୍ତି । ସବୁପ୍ରକାର ଲୋକ ବିଶେଷତଃ କୃଷକ ଏବଂ ଶ୍ରମିକ, ଦୋକାନୀ, କାରିଗର, ବଣିକ, ବ୍ୟବସାୟୀ ଓ ଅନ୍ୟ ବୃତ୍ତିଜୀବୀ ସମସ୍ତେ ଆସିବାକୁ ଲାଗିଲେ ; ହିନ୍ଦୁ ଭାରତର ଏହା ଅପୂର୍ବ ସମାବେଶ । ଏହି ଯେଉଁ ବିରାଟ ଜନତା ଅସରନ୍ତି ସ୍ରୋତ ପରି ନଦୀକୁ ଯାଉଥାନ୍ତି ଏବଂ ସେଥିରୁ ଫେରୁ ଥାଆନ୍ତି, ସେମାନେ କିପରି ଆଇନ ଅମାନ୍ୟ ଏବଂ ଶାନ୍ତିପୂର୍ଣ୍ଣ ପ୍ରତ୍ୟକ୍ଷ ସଂଗ୍ରାମର ଆହ୍ୱାନ ଶୁଣିବେ, ଏହି ଚିନ୍ତା କରି ମୁଁ ଆଶ୍ଚର୍ଯ୍ୟ ହେଉଥିଲି । ସେମାନଙ୍କ ଭିତରୁ କେତେ ଜଣ ଲାହୋର ନିଷ୍ପତ୍ତି ଜାଣିଥିଲେ ବା ସେଥିପ୍ରତି ଖାତିର କରୁଛନ୍ତି ? ଯେଉଁ ବିଶ୍ୱାସ ହଜାର ହଜାର ବର୍ଷ ହେଲା ଭାରତର ପ୍ରତ୍ୟେକ କୋଣରୁ ଅସଂଖ୍ୟ ନର ନାରୀ ଏବଂ ତାଙ୍କର ସନ୍ତାନ ସନ୍ତତିମାନଙ୍କୁ ପବିତ୍ର ଗଙ୍ଗାରେ ସ୍ନାନ କରିବା ନିମନ୍ତେ ଟାଣି ଆଣୁଛି, ତାହା କିପରି ଅଦ୍ଭୁତ ଶକ୍ତିଶାଳୀ । ସେମାନେ ତାଙ୍କର ଅବସ୍ଥାର ଉନ୍ନତି ସକାଶେ ରାଜନୈତିକ ଓ ଅର୍ଥନୈତିକ ସମସ୍ୟା ପ୍ରତି ଏ ଶକ୍ତି ଉପଯୋଗ କରିବେ ନାହିଁକି ? ନା ସେମାନଙ୍କ ମନ ଧର୍ମର କୁସଂସ୍କାର ଓ ରୀତିରେ ଏପରି ପୂର୍ଣ୍ଣ ହୋଇଛି ଯେ, ସେମାନେ ଅନ୍ୟ ଚିନ୍ତା କରି ପାରୁ ନାହାନ୍ତି କି ? ଅବଶ୍ୟ ମୁଁ ଜାଣେ, ସେ ଚିନ୍ତା ତାଙ୍କଠାରେ ଅଛି—ଯୁଗ ଯୁଗର ସ୍ଥିର ନିସ୍ତବ୍ଧତାକୁ ଚହଲାଇ ଦେଇଛି । ଜନ ସାଧାରଣଙ୍କ ଭିତରେ ଏହି ଅସ୍ପଷ୍ଟ ଧାରଣା ଏବଂ ଆକାଂକ୍ଷା ଯୋଗୁଁ ଗତ ୧୦।୧୨ ବର୍ଷ ହେଲା ବିଦ୍ରୋହ ସବୁ ହୋଇଛି ଏବଂ ଭାରତର ମୁଖ ପରିବର୍ତ୍ତିତ ହୋଇଛି । ଏହି ଭାବ ଯେ ବଢ଼ୁଛି ଏବଂ ଏହା ଭିତରେ ପରିବର୍ତ୍ତନ ସକ୍ରିୟ ଶକ୍ତି ଯେ ରହିଛି, ଏଥିରେ କିଛି ସନ୍ଦେହ ନାହିଁ । ତଥାପି ସନ୍ଦେହ ଜାତ ହେଲା ଏବଂ ମନ ଭିତରେ ପ୍ରଶ୍ନ ସବୁ ଉଠିଲା—ତାହାର

ଓ କୌଣସି ଆଉ ଜବାବ ପାଇପାରୁ ନ ଥିଲି । ଏହି ଧାରଣା ସବୁ କେତେଦୂର ଯଥାର୍ଥ ହେଉଛି ? ଏହା ପଛରେ କି ଶକ୍ତି ଅଛି ? ସଙ୍ଗଠିତ କାର୍ଯ୍ୟପାଇଁ ସେମାନେ ସମର୍ଥିତ ? ଦୀର୍ଘକାଳ ସହ୍ୟ କରି ପାରିବେ ତ ?

ଆମ ଘର ଦେଖିବା ନିମନ୍ତେ ଯାତ୍ରୀ ଦଳକୁ ଦଳ ଚାଲିଲେ । ଏକ ଯାତ୍ରାସ୍ଥାନ ଭରଦ୍ୱାଜରେ ଆମ ଘର ଥିଲା—ଅତୀତ କାଳରେ ସେଠାରେ ଆଶ୍ରମ ବିଶ୍ୱବିଦ୍ୟାଳୟ ଥିଲା ଏବଂ ମେଳା ଆରମ୍ଭ ଦିନଠାରୁ ଦର୍ଶକ ସ୍ରୋତ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଆମ ଘର ଦେଖିବାକୁ ଚାଲି ଆସନ୍ତି । ମୋର ମନେ ହୁଏ କେତେକ ଜଣାଶୁଣା ଲୋକ ବିଶେଷତଃ ମୋର ପିତାଙ୍କୁ ଦେଖିବା ନିମନ୍ତେ ଗୋଟାଏ ଆଗ୍ରହ ତାଙ୍କୁ ସେଠାକୁ ଟାଣି ଆଣିଥିଲା । ଆସୁଥିବା ଲୋକଙ୍କ ଭିତରୁ ଅଧିକାଂଶଙ୍କର ରାଜନୀତିକ ମନୋଭାବ ଥିଲା ଏବଂ କଂଗ୍ରେସ ବିଷୟରେ, କଂଗ୍ରେସ କ'ଣ ନିଷ୍ପତ୍ତି କରୁଛି, କଣ ଘଟିବ ଏହି ସମ୍ବନ୍ଧରେ ପ୍ରଶ୍ନ ପଚାରୁଥିଲେ; ସେମାନେ ନିଜର ଅର୍ଥନୀତିକ ଦୁଃଖ ବର୍ଣ୍ଣନା କରୁଥିଲେ ଏବଂ ସେ ସମ୍ବନ୍ଧରେ ସେମାନଙ୍କୁ କଣ କରିବାକୁ ସେକଥା ପଚାରୁଥିଲେ । ଆମର ରାଜନୀତିକ ଧ୍ୱନି ତାଙ୍କୁ ଭଲରୂପେ ଜଣା ଥିଲା ଏବଂ ସାଧାରଣ ସେଥିରେ ଆମ ଗୃହ ପ୍ରତିଧ୍ୱନିତ ହେଉଥିଲା । ୨୦।୪୦ ବା ୧୦୦ ଜଣ ମିଶି ଆସୁଥିବା ପ୍ରତ୍ୟେକ ଦଳକୁ ମୁଁ କିଛିକିଛି କହିବାକୁ ଆରମ୍ଭ କଲି । ସେମାନେ ଦଳ ଦଳ ହୋଇ ଆସୁଥାନ୍ତି—ମୁଁ ପ୍ରତ୍ୟେକ ଦଳକୁ କହୁଥାଏ—କ୍ରମେ ଏହା ଏକ ଅସମ୍ଭବ କାର୍ଯ୍ୟ ହୋଇ ଉଠିଲା ଏବଂ ସେମାନେ ଆସିଲାବେଳେ ମୁଁ ନୀରବରେ ଏକ ନମସ୍କାର ପକାଇ ବିଦାୟ ନେଲି । ଏହାର ମଧ୍ୟ ଗୋଟାଏ ସୀମା ଅଛି—ମୁଁ ଆଉ ନ ପାରି ଲୁଚିବାକୁ ଚେଷ୍ଟା କଲି । ମାତ୍ର ଏହା ବୃଥା ହେଲା । ଧ୍ୱନି ଅଧିକ ଜୋରରେ ହେଲା; ଘରର ବାରଣ୍ଡାମାନଙ୍କରେ ଲୋକ ପୂର୍ଣ୍ଣ ହୋଇଗଲେ—ପ୍ରତ୍ୟେକ ଦୁଆରମୁହଁ ଓ ଝରକାରେ ଲୋକ ସମଷ୍ଟି ଆଗ୍ରହ ନେତ୍ରରେ ଅନାଇ ରହିଥାନ୍ତି । କାମ କରିବା, କଥାବାର୍ତ୍ତା କରିବା, ଖାଇବା ଏବଂ ଏପରି କି କିଛି ଭାବିବା ଅସମ୍ଭବ ଥିଲା । ଏହା ଯେ ଖାଲି ଅସ୍ୱସ୍ତି ଲାଗୁଥିଲା ତାହା ନୁହେଁ, ବିରକ୍ତ

ଲାଗିଲା ମଧ୍ୟ । ତଥାପି ବର୍ଷ ବର୍ଷ ଧରି ଦାରିଦ୍ର୍ୟ ଓ ଲାଞ୍ଛନା ଭୋଗିଥିବା ଏହି ଲୋକେ ଶ୍ରଦ୍ଧାପୂର୍ଣ୍ଣ ନେତ୍ରରେ ଅନାଇ ରହିଥାନ୍ତି ଏବଂ ଆମକୁ ସେମାନଙ୍କର କୃତଜ୍ଞତା ଓ ଶ୍ରଦ୍ଧା ଅର୍ପଣ କରୁଥାନ୍ତି—ତା ପ୍ରତିବଦଳରେ ସେମାନେ ବନ୍ଧୁଭାବ ଓ ସହାନୁଭୂତି ଆଶା କରୁଥାନ୍ତି – ଆଉ କିଛି ନୁହେଁ । ଏହି ସ୍ନେହ ଓ ଆଦରର ପ୍ରାଚୁର୍ଯ୍ୟରେ ଜଣେ ଅଭିଭୂତ ନ ହେବା ଅସମ୍ଭବ ।

ସେତେବେଳେ ଆମର ଏକ ପ୍ରିୟ ସାଥୀ ଆମ ସହିତ ଥିଲେ । ତାଙ୍କ ସହିତ କୌଣସି କଥାବାର୍ତ୍ତା କରିବା ଅସମ୍ଭବ ହେଲା—କାରଣ ପ୍ରତ୍ୟେକ ୫ ମିନିଟ ବା ତହିଁରୁ କମ୍ ସମୟ ପରେ ସେଠାରେ ଜମା ହୋଇଥିବା ଜନତାକୁ ପଦେ ଦି'ପଦ କହିବା ଲାଗି ମୁଁ ଯାଉଥିଲି ଏବଂ ଯାତ୍ରା ବା ସମସ୍ତ ରହିଥିଲି, ତାହା ଜୟନାଦରେ ଭରି ହୋଇଥିଲା । ସେ (ସ୍ତ୍ରୀଲୋକ) ମୋର ଅବସ୍ଥା ଦେଖି ଟିକିଏ ଆନନ୍ଦ ଅନୁଭବ କଲେ ଏବଂ ମୋର ମନେହୁଏ ଜନସାଧାରଣଙ୍କ ଭିତରେ ମୋର ଲୋକପ୍ରିୟତା ଦେଖି ସେ ଟିକିଏ ମୁଗ୍ଧ ହୋଇଥିଲେ । ( ପ୍ରକୃତରେ ମୋର ପିତାଙ୍କୁ ଦେଖିବା ନିମନ୍ତେ ଲୋକେ ଆସୁଥିଲେ । ସେ ଅନୁପସ୍ଥିତ ଥିବାରୁ ମୋତେ ଯିବାକୁ ହେଉଥିଲା ।) ମୁଁ ଏହି ବୀରପୂଜାକୁ କିପରି ପସନ୍ଦ କରୁଛି, ସେ ମୋତେ ହଠାତ୍ ପଚାରିଲେ । ମୁଁ ଏଥିଲାଗି ଗର୍ବ ଅନୁଭବ କରୁ ନାହିଁ କି ? ମୁଁ ହଠାତ୍ ଉତ୍ତର ଦେବାରେ ଇତସ୍ତତଃ କଲି । ଏଥିଯୋଗୁଁ ସେ ଭାବିଲେ ଯେ, ଗୋଟିଏ ବ୍ୟକ୍ତିଗତ ପ୍ରଶ୍ନ ପଚାରି ଦେଇ ସେ ବୋଧହୁଏ ମୋତେ ଅସୁବିଧାରେ ପକାଇଲେ । ସେ ମୋତେ କ୍ଷମା ମାଗିଲେ । ମାତ୍ର ମୁଁ ତାଙ୍କ କଥାରେ କିଛି ଅସୁବିଧାରେ ପଡ଼ି ନ ଥିଲି । ସେ ପ୍ରଶ୍ନର ଉତ୍ତର ଦେବା କଷ୍ଟକର ମନେ କଲି । ମୋର ମନ ଉଡ଼ିଲା ଏବଂ ମୁଁ ନିଜର ଭାବ ଓ ପ୍ରତିକ୍ରିୟା ସମ୍ବନ୍ଧରେ ଚିନ୍ତା କରିବାକୁ ଲାଗିଲି । ଏକ ମିଶ୍ରିତ ଭାବ ଥିଲା ।

ଏହା ସତ୍ୟ ଯେ ହଠାତ୍ ଘଟଣାକ୍ରମେ ଜନସାଧାରଣଙ୍କ ଭିତରେ ମୁଁ ଏକ ଅସାଧାରଣ ଲୋକପ୍ରିୟତା ଅର୍ଜନ କରିଛି; ଶିକ୍ଷିତ ଲୋକେ

ମୋର ଅନୁରାଗୀ ଥିଲେ, ଯୁବକ ଯୁବତୀମାନଙ୍କ ପକ୍ଷରେ ମୁଁ ଏକ ବୀରପରି ମନେ ହେଉଥିଲି ଏବଂ ତାଙ୍କ ଦୃଷ୍ଟିରେ ମୋର ଚତୁର୍ଦ୍ଦିଗରେ ଗୋଟାଏ ଆକର୍ଷଣ କ୍ଷେତ୍ର ଥିଲା । ମୋ ବିଷୟରେ ଗୀତ ସବୁ ଲେଖା ହେଲା ଏବଂ ଅତି ଅସମ୍ଭବ ଏବଂ ରହସ୍ୟଜନକ ଗପ ସବୁ ମୋ ସମ୍ବନ୍ଧରେ ପ୍ରଚାର ହେଲା । ଏପରି କି ମୋର ବିରୋଧୀ ମଧ୍ୟ ଅନେକ ସମୟରେ ମୋର ପ୍ରଶଂସା କରନ୍ତି ଏବଂ ମୁଖ୍ୟ ଥର ମୋଠାରେ କର୍ମାନୁଶୀଳତା ଓ ବିଶ୍ୱାସର ଅଭାବ ନାହିଁ ବୋଲି ସ୍ୱୀକାର କରୁଥିଲେ ।

ସମ୍ଭବତଃ ଜଣେ ଋଷି ବା ଜଣେ ଅମାନୁଷିକ ଶ୍ୱାପଦ ହିଁ ଏଥିରେ ବିଚଳିତ ନ ହୋଇ ରହିବ—ମାତ୍ର ମୁଁ ଏହି ଦୁଇଟି ମଧ୍ୟରୁ କୌଣସିଟି ନୁହେଁ । ମୋର ମସ୍ତିଷ୍କରେ ଉନ୍ମାଦନା ସଞ୍ଚାରିତ ହେଉଥିଲା ଏବଂ ଶକ୍ତି ଓ ଆତ୍ମବିଶ୍ୱାସ ଜନ୍ମୁଥିଲା । ମୁଁ ମୋର କାର୍ଯ୍ୟରେ (ନିଜ ପ୍ରତି ବାହାବାକୁ ଲକ୍ଷ୍ୟ କରି ଦେଖିବା ବ୍ୟତୀତ) "ଡିକ୍ଟେଟର" ମାନଙ୍କ ପରି ପ୍ରଭୁତ୍ୱ ପ୍ରୟାସୀ ହୋଇ ପଡ଼ୁଛି ବୋଲି ମୋର ଅନୁମାନ । ତଥାପି ମୋର ଅହଙ୍କାର ବେଶି ବଢ଼ିଥିଲା ବୋଲି ମୋର ମନେ ହୁଏ ନା । ମୋର ମନେ ହୁଏ, ମୋର ଶକ୍ତି ସାମର୍ଥ୍ୟ ସମ୍ବନ୍ଧରେ ମୋର ପରିଷ୍କାର ଧାରଣା ରହିଛି—ସେଥିଲାଗି ମୁଁ ବିନୟ ପ୍ରକାଶ କରେନା—ଏକଥା ମଧ୍ୟ ମୁଁ ଭଲରୂପେ ଜାଣେ । ଏହା କିଛି ସେପରି ଅସାଧାରଣ ନୁହେଁ—ମୋର ଦୁର୍ବଳତା ସମ୍ବନ୍ଧରେ ମଧ୍ୟ ମୁଁ ସଚେତନ ରହିଛି । ଅନ୍ତର୍ଦୃଷ୍ଟି ମୋତେ ଠିକ୍ ରଖି ପାରୁଥିଲା ଏବଂ ମୋର ସମ୍ପର୍କୀୟ ଅନେକ ଘଟଣାକୁ ମୁଁ ଅନାସକ୍ତ ଭାବରେ ଲକ୍ଷ୍ୟ କରୁଥିଲି । ସାଧାରଣ ଜୀବନର ଅଭିଜ୍ଞତାରୁ ଦେଖାଗଲା ଯେ, ଲୋକପ୍ରିୟତା [illegible] ଲୋକଙ୍କର ହାତସୁହୁଲୀ ମାତ୍ର; ଏହା କୌଣସି ଗୁଣ ବା ବୁଦ୍ଧିର ଚିହ୍ନ ନୁହେଁ । କେଉଁଥିପାଇଁ ଜନପ୍ରିୟ ମୁଁ ହୋଇଥିଲି ମୋର ଦୁର୍ବଳତା ପାଇଁ ନା ଗୁଣ ଲାଗି ? ବାସ୍ତବିକ କେଉଁଥିପାଇଁ ମୁଁ ଏପରି ଲୋକପ୍ରିୟ ?

ମୋର ବୁଦ୍ଧି ବାନ୍ଧଣିଆ ନିମନ୍ତେ ନୁହେଁ; କାରଣ ଏହାର କିଛି ବିଶେଷତ୍ୱ ନାହିଁ—ବୁଦ୍ଧି ଯୋଗୁଁ କେହି କେବେହେଁ ଜନପ୍ରିୟ ହୋଇପାରେ

ନା । ତଥାକଥିତ ତ୍ୟାଗ ପୋଷ୍ଟ ନୁହେଁ, କାରଣ ଆମ ସମ୍ବନ୍ଧରେ ଭାରତର ସହସ୍ର ସହସ୍ର ଲୋକ ଆହୁରି ଅଧିକ କଷ୍ଟ ସହିଛନ୍ତି ଏବଂ ଚରମତ୍ୟାଗ କରିଛନ୍ତି । ଏକ ବୀର ଭାବରେ ମୋର ଯେ ଖ୍ୟାତି ଏହା ମଧ୍ୟ ଅଳୀକ କାରଣ ମୁଁ କେବେହେଁ ନିଜକୁ ବୀର ବୋଲି ମନେ କରେ ନା – ଜୀବନରେ ବୀରତ୍ୱ ଓ ନାଟକୀୟ ଭାବ ମୋତେ ନିର୍ବୋଧତା ବୋଲି ମନେହୁଏ । ରୋମାନ୍ସ ବା ପ୍ରେମ ବିଷୟ ଦେଖିଲେ ମୁଁ ସବୁଠାରୁ କମ ପ୍ରେମିକ ବା ରସିକ ଲୋକ । ଏ କଥା ସତ୍ୟ ଯେ, ମୋର କିଛି ଶାରୀରିକ ଓ ମାନସିକ ସାହସ ଅଛି ଏବଂ ତା ପଛରେ ବ୍ୟକ୍ତିଗତ, ଦଳଗତ ଏବଂ ଜାତୀୟତାର ଗର୍ବ ଓ କୌଣସି ଜୋର କରି ବା ବାଧ କରାଇ କୌଣସି କାର୍ଯ୍ୟ ମୋଠାରୁ କରାଇ ନେବାର ଅନିଚ୍ଛା ଭାବ ରହିଛି ।

ମୋ ପ୍ରଶ୍ନର ସନ୍ତୋଷଜନକ ଜବାବ ମୁଁ ପାଇଲି ନାହିଁ । ତେଣୁ ମୁଁ ଅଲଗା ଢଙ୍ଗରେ ଅନୁସନ୍ଧାନ କରିବାକୁ ଲାଗିଲି । ମୁଁ ଦେଖିଲି ଯେ ମୁଁ ଓ ମୋ ପିତା ପ୍ରତ୍ୟେକ ସପ୍ତାହରେ ଆମର ପୋଷାକ ସଫା କରାଇବା ନିମନ୍ତେ ଭାରତରୁ ପ୍ୟାରିସକୁ ପଠାଉଥିଲୁ ବୋଲି ଗପ ଉଠିଛି । ଆମେ ବାରମ୍ବାର ଏହାର ପ୍ରତିବାଦ କରିଛୁ, ତଥାପି ଏ ଗପ ରହିଛି । ଏହା ଅପେକ୍ଷା ଅଧିକ ଅସମ୍ଭବ ଓ ଅଦ୍ଭୁତ କଥା ଆଉ କିଛି ହୋଇ ପାରେନା — ତେବେ କେହି ମୂର୍ଖଲୋକ ଯଦି ଏପରି ବୃଥା ଗାଳ୍ପ କଥାରେ ମାତନ୍ତି, ତେବେ ତାହାକୁ ଶ୍ରେଷ୍ଠ ମୂର୍ଖ ବୋଲି ବିଶେଷ ପୁରସ୍କାର ଦେବା ଉଚିତ ।

ସେହିପରି ଆଉ ଏକ କଥା ଆମେ ବାରମ୍ବାର ପ୍ରତିବାଦ କରିବା ସତ୍ତ୍ୱେ ଶୁଣାଯାଏ । ମୁଁ ପ୍ରିନ୍ସଅଫ୍‌ୱେଲ୍‌ସ ବା ଇଂଲଣ୍ଡର ଯୁବରାଜଙ୍କ ସହ ଏକାଠି ପଢ଼ୁଥିଲି, ଆହୁରି ଗପ ଉଠେ ଯେ ଯୁବରାଜ ୧୯୨୧ ରେ ଭାରତକୁ ଆସିଥିବା ବେଳେ ମୋତେ ଡକାଇ ପଠାଇଥିଲେ – ମୁଁ ସେତେବେଳେ ଜେଲରେ ଥିଲି । ପ୍ରକୃତରେ କହିବାକୁ ଗଲେ ମୁଁ ତ ତାଙ୍କ ସହିତ କେବେ ସ୍କୁଲରେ ପଢ଼ିନାହିଁ – ଏହାଛଡ଼ା ତାଙ୍କ ସହିତ ମୋର

କେବେ ସାକ୍ଷାତ୍ ହୋଇ ନାହିଁ କି କଥା ବାର୍ତ୍ତା କରିବାର ସୁବିଧା ହୋଇ ନାହିଁ ।

ଏହାର ଅର୍ଥ ମୁଁ କହୁନାହିଁ ଯେ, ଏହିପରି ସବୁ ଗପ ଉପରେ ମୋର ଖ୍ୟାତି ବା ଲୋକପ୍ରିୟତା ହୋଇଥିଲା । ଏହାର ଭିତ୍ତି ଦୃଢ଼ ହୋଇ ଥାଇପାରେ; ମାତ୍ର ଏଥିରେ ସନ୍ଦେହ ନାହିଁ ଯେ ଉପରେ ଏହି ସବୁ ବାଜେ କଥାର ଆବରଣ ଅଛି—ନଚେତ୍ ଏପରି ଗପ ଉଠନ୍ତା ନାହିଁ । ଯାହା ହେଉନା ମୁଁ ଏକ ଉଚ୍ଚ ସମାଜରେ ମିଶୁଥିଲି, ବିଳାସପୂର୍ଣ୍ଣ ଜୀବନ ଯାପନ କରୁଥିଲି ଏବଂ ସେ ସବୁ ତ୍ୟାଗ କରିଛି । ଏହା ଲୋକେ ବୁଝୁଥିଲେ — ତ୍ୟାଗ ଭାବ ଭାରତୀୟ ମନକୁ ସର୍ବଦା ଆକୃଷ୍ଟ କରେ । ମାତ୍ର ଖ୍ୟାତିର ଏପରି ଭିତ୍ତିକୁ ମୁଁ ଠିକ ମନେ କରେ ନାହିଁ । ଅହିଂସ୍ର ଗୁଣ ଅପେକ୍ଷା କର୍ମ ପ୍ରେରଣା ଜାତ କରାଇବା ଗୁଣର ମୁଁ ଅଧିକ ଅନୁରାଗୀ ଏବଂ ସେଥିଲାଗି ତ୍ୟାଗ ବା ଆତ୍ମୋତ୍ସର୍ଗ ଆଦି କଥା ମୋତେ ପସନ୍ଦ ହୁଏ ନାହିଁ । ଏକ ସୁସ୍ଥ ଶରୀର ରକ୍ଷା ନିମନ୍ତେ ଯେପରି ସରଳ ଓ ନିୟମିତ ଜୀବନ ଯାପନର ଆବଶ୍ୟକତା ରହିଛି, ସେହିପରି ମାନସିକ ଓ ନୈତିକ ଶିକ୍ଷା ନିମନ୍ତେ ଏହି ଗୁଣ ସବୁ ଦରକାର ବୋଲି ମୁଁ ମନେକରେ । ଯେଉଁମାନେ ବଡ଼ ବଡ଼ କାର୍ଯ୍ୟ କରିବାକୁ ଚାହାନ୍ତି, ସେମାନେ କଠିନ ଧକ୍କା ପାଇବା ସତ୍ତ୍ୱେ ସେମାନଙ୍କର ଧୈର୍ଯ୍ୟ ଓ ସହ୍ୟ କରିବାର ଶକ୍ତି ରହିବାର କଥା । ମାତ୍ର ସନ୍ନ୍ୟାସୀ ପରି ଜୀବନଯାପନ କରିବା, ଜୀବନକୁ ଅସ୍ୱୀକାର କରିବା, ଆନନ୍ଦ ଓ ଋପତ୍ୱାନୁଭୂତିକୁ ଖ୍ପଣ ଭାବରେ ବଞ୍ଚିତ ହେବା ପ୍ରତି ମୋର ଆକର୍ଷଣ ବା ଆଗ୍ରହ ନ ଥିଲା । ମୁଁ ଯାହା ଦରକାର ବୋଲି ମନେ କରୁଥିଲି, ତାହା ଜାଣି ଶୁଣି କେବେ ଉତ୍ସର୍ଗ କରିନାହିଁ — ଦରକାର ହେଲେ ମଧ୍ୟ ଲୋକର ପରିବର୍ତ୍ତନ ହୋଇଯାଏ ।

ମୋର ବନ୍ଧୁ ମୋତେ ଯେଉଁ ପ୍ରଶ୍ନ ପଚାରିଥିଲେ, ତାହାର ଉତ୍ତର ଏବେ ସୁଦ୍ଧା ଦେଇପାରି ନାହିଁ । ଜନତାର ଏହି ବୀର ପୂଜାରେ କଣ ମୁଁ

ଗର୍ବ ଅନୁଭବ କରୁ ନ ଥିଲି ? ମୁଁ ଏହାକୁ ଭଲ ପାଉ ନ ଥିଲି ଏବଂ ଏଥିରୁ ଦୂରକୁ ପଳାଇ ଯିବାକୁ ଚାହୁଁଥିଲି—ତଥାପି ଏଥିରେ ନିଜକୁ ଚଳାଇ ନେଲି ଏବଂ ଏହା ସଂପୂର୍ଣ୍ଣ ଦୂର ହୋଇଗଲା ପରେ ମୁଁ ଏହାର ଅଭାବ ଅନୁଭବ କଲି । କୌଣସି ଉପାୟରେ ମୁଁ ସନ୍ତୁଷ୍ଟ ହେଲି ନାହିଁ । ମାତ୍ର ମୋଟାମୋଟି ଜନତା ମୋ ଅନ୍ତରର ଶୂନ୍ୟତା ପୂରଣ କରିଛି । ମୁଁ ଯେ ସେମାନଙ୍କ ଉପରେ ପ୍ରଭାବ ପକାଇ ପାରୁଛି ଏବଂ ସେମାନଙ୍କୁ ଚଳାଇ ପାରିବି, ଏହି ଭାବ ଯୋଗୁଁ ସେମାନଙ୍କ ମନ ଓ ହୃଦୟ ଉପରେ ମୋର କିଛି କର୍ତ୍ତୃତ୍ୱ ଥିଲା ପରି ଧାରଣା ଜାତ କଲା । ସେମାନେ ମଧ୍ୟ ମୋ ଉପରେ ଏକ ସୂକ୍ଷ୍ମ ଅତ୍ୟାଚାର କରନ୍ତି । କାରଣ ତାଙ୍କର ବିଶ୍ୱାସ ଓ ଶ୍ରଦ୍ଧା ମୋ ଅଭ୍ୟନ୍ତର ସ୍ପର୍ଶ କରେ ଏବଂ ମୋ ଭିତରେ ଭାବପ୍ରବଣତା ଜାଗ୍ରତ କରାଏ । ମୁଁ ବ୍ୟକ୍ତିସ୍ୱାତନ୍ତ୍ର୍ୟବାଦୀ—ବେଳେ ବେଳେ ଏହି ଭାବ ମଧ୍ୟ ତରଳି ଯାଏ ଏବଂ ମୁଁ ଅନୁଭବ କଲି ଏକାକୀ ରକ୍ଷା ପାଇବା ଅପେକ୍ଷା ଦୁଃଖୀ ଲୋକଙ୍କ ସହିତ ଅଭିଶପ୍ତ ଭାବରେ ରହିବା ବରଂ ଭଲ । ମାତ୍ର ଆମ ଭିତରେ ଥିବା ବ୍ୟବଧାନ ଏତେ ଦୃଢ଼ ଯେ, ତାହା ଅନ୍ତର ହେବା କଷ୍ଟକର—ମୁଁ ଏହି ପରିବର୍ତ୍ତନକୁ ମୋର ଚକ୍ଷୁ ସାମନାରେ ଦେଖି ପାରିଲି, ମାତ୍ର ତାହା ଉପଲବ୍ଧି କରିପାରିଲି ନାହିଁ ।

ମନୁଷ୍ୟ ଶରୀରରେ ଚର୍ବି ରୋଗପରି ହେଉଛି ଅହଙ୍କାର । ଏହା ଅଜ୍ଞାତସାରରେ ଧୀରେ ଧୀରେ ଜମି ବୃଦ୍ଧି ପାଏ ଏବଂ ଯାହାଠାରେ ଏହା ପ୍ରତିଦିନ ବୃଦ୍ଧି ପାଏ, ସେ ତାହା ଜାଣି ପାରେନା । ସୌଭାଗ୍ୟର କଥା ଯେ, ଏହି ପାଗଳା ଦୁନିଆର କଠିନ ଆଘାତ ବେଳେ ବେଳେ ଏହାକୁ କମ କରିଦିଏ କିମ୍ବା ସମ୍ପୂର୍ଣ୍ଣ ରୂପେ ଲୋପ କରିଦିଏ । ଭାରତରେ ଆଜିକାଲି ଏପରି କଠିନ ଆଘାତ ପାଇବାର କିଛି ଅଭାବ ନାହିଁ । ଆମ ପକ୍ଷରେ ଜୀବନ ଏକ କଷ୍ଟକର ବିଦ୍ୟାଳୟ ଏବଂ କଷ୍ଟ ସ୍ୱୀକାର ଏକ କଠିନ ଶିକ୍ଷକ ।

ଆଉ ଏକ ଦୃଷ୍ଟିରୁ ମୁଁ ଅତ୍ୟନ୍ତ ଭାଗ୍ୟବାନ ଥିଲି । ମୋର ପରିବାରର ଲୋକେ, ବନ୍ଧୁବାନ୍ଧବ ଏବଂ ସାଥିମାନେ ମୋତେ ଯଥା ସ୍ଥାନରେ ରଖିବାରେ ସାହାଯ୍ୟ କରୁଥିଲେ ଏବଂ ମୋର ମାନସିକ ଅବସ୍ଥା କିଛି ଉଦ୍ବେଗଜନକ ହୋଇ ନ ଥିଲା । ସାଧାରଣ ସଭାସମିତି, ମ୍ୟୁନିସିପାଲିଟି ସ୍ୱାୟତ୍ତ-ଶାସନ ଓ ଅନ୍ୟ ସାଧାରଣ ଅନୁଷ୍ଠାନମାନଙ୍କରୁ ଅଭିନନ୍ଦନ ପତ୍ର, ଶୋଭାଯାତ୍ରା ଇତ୍ୟାଦିରେ ମୁଁ ବ୍ୟସ୍ତ ହୋଇ ପଡ଼ିଲି ଏବଂ ମୋତେ ଏହା କ୍ରମେ ବିରକ୍ତ ଓ ଅବାସ୍ତବ ବୋଧ ହେବାକୁ ଲାଗିଲା । ଏପରି ଜାକଜମକ ଓ ଅତିରଞ୍ଜିତ ଭାଷଣରେ ଅଭିନନ୍ଦନ ପତ୍ର ଲେଖାଯାଏ ଏବଂ ପ୍ରତ୍ୟେକ ଲୋକ ଏପରି ଚରିତ ଦେଖାଯାଆନ୍ତି, ମୋର ହସ ଅତି କଷ୍ଟରେ ସହିତ ଚୁପି ରହେ— ମୋର ଜିଭ ବାହାର କରି ଧଳାଇଲେ କିମ୍ବା ମୁଣ୍ଡରେ ଠିଆହେଲେ ସେହି ସଭାର ଲୋକଙ୍କ ଭିତରେ କପରି ପ୍ରତିକ୍ରିୟା ହୁଅନ୍ତା, ଦେଖିବାକୁ ଇଚ୍ଛା ହୁଏ ; ସୌଭାଗ୍ୟର କଥା ଯେ, ମୋର ଖ୍ୟାତି ଏବଂ ଭାରତରେ ସାଧାରଣ ଜୀବନରେ ମୋର ମର୍ଯ୍ୟାଦା ରକ୍ଷା ହେତୁ ମୁଁ ମୋର ଏହି ପାଗଳା ପ୍ରକୃତିକୁ ଅନେକ ସମୟରେ ଦବାଇ ରଖିଛି ଏବଂ ସାଧାରଣ ଭଦ୍ରତା ରକ୍ଷା କରି ବ୍ୟବହାର କରିଛି; ମାତ୍ର ସବୁବେଳେ ସମ୍ଭବ ହୋଇ ନାହିଁ । ଯେଉଁସବୁ ସଭା ବା ଶୋଭାଯାତ୍ରା ଅତ୍ୟନ୍ତ ଦୀର୍ଘ ହୋଇପଡ଼େ ସେଠାରେ ବେଳେ ବେଳେ ମୁଁ ଶୋଷାଏ ପ୍ରଦର୍ଶନ କରିଛି—ଆମକୁ ସମ୍ମାନ ଦେଖାଇବାକୁ ହୋଇଥିବା ଶୋଭାଯାତ୍ରା ମୁଁ ହଠାତ୍ ଛାଡ଼ି ଚାଲିଯାଇଛି ଏବଂ ଜନତା ଭିତରୁ ପଳାଇ ଯାଇଛି—ମୋର ସ୍ତ୍ରୀ ବା ଅନ୍ୟ କେହି ଶୋଭାଯାତ୍ରାରେ ଯାଆନ୍ତି—ମୁଁ ସେହି ଶୋଭାଯାତ୍ରାରେ ଏକ ମଟରଗାଡ଼ି ବା ଘୋଡ଼ାଗାଡ଼ିରେ ଲୁଚି ଯାଉଥାଏ ।

ଏପରି ବାରମ୍ବାର ନିଜର ଭାବ ଦମନ କରି ସାଧାରଣରେ ବାହାରିବା ହାବ ଭାବ ଅଳ୍ପ ଅଳ୍ପ ଲାଗେ । ଏହା ଫଳରେ ସାଧାରଣ କାର୍ଯ୍ୟରେ ବଡ଼ ଅସନ୍ତୋଷ ଦେଖାଯାଏ, ଏଥିଯୋଗୁଁ ବୋଧହୁଏ ମୁଁ ହିନ୍ଦୁ ବିଧବା ପରି ଦେଖା ଯାଉଛି ବୋଲି ଥରେ ଏକ ହିନ୍ଦୀ ପତ୍ରିକାରେ ଏକ ପ୍ରବନ୍ଧରେ ଲେଖା ହୋଇଥିଲା । ପୁରୁଣା କାଳର ହିନ୍ଦୁ ବିଧବାଙ୍କ

ମୁଁ ଖୁବ୍ ପ୍ରଶଂସା କରୁଥିଲେ ସୁଦ୍ଧା ମୋ ପ୍ରତି ଏ ମନ୍ତବ୍ୟରେ ମୁଁ ଆଘାତ ପାଇଥିଲି । ଲେଖକ ମୋର ଏକେତେକ ଗୁଣ, ଏବଂ ଭଦ୍ରତା, ମୋର ସ୍ୱଭାବ ଏବଂ ନିରାନନ୍ଦ ଭାବରେ କାର୍ଯ୍ୟରେ ନମ୍ରତାକୁ ପ୍ରଶଂସା କରିବାଲାଗି ଲେଖି-ଥିଲେ । ମୁଁ ଆଶା କରିଥିଲି ମୋର ଅଧିକ କର୍ମଠ, ପରିଶ୍ରମଶୀଳ ଗୁଣ ଏବଂ ରହସ୍ୟ ଓ ଆନନ୍ଦ କରିବାର ଶକ୍ତି ଅଛି- ବାସ୍ତବିକ ହୃଦ୍ ଉଧବାମାନଙ୍କର ଏହି ସବୁ ରହୁ ବୋଲି ମୋର ଇଚ୍ଛା । ଗାନ୍ଧିଜୀ ଥରେ ତାଙ୍କ ସହିତ ସାକ୍ଷାତ କରିଥିବା ଜଣେ ଲୋକଙ୍କୁ କହିଥିଲେ ଯେ, ତାଙ୍କର ଯଦି ରହସ୍ୟ ବୋଧ ନ ଥାନ୍ତା ତେବେ ସେ ହୁଏତ ଆତ୍ମହତ୍ୟା କରିଥାନ୍ତେ ବା ସେହିପରି କିଛି କାଣ୍ଡ ଘଟି ଥାଆନ୍ତା । ମୁଁ ଏତେଦୂର ଯିବି ବୋଲି କହିପାରିବି ନାହିଁ, ମାତ୍ର ରହସ୍ୟ ଓ ହାଲୁକା ଭାବ ନ ଥିଲେ ଜୀବନ ନିଶ୍ଚୟ ଅସହ୍ୟ ହୋଇ ପଡ଼ିଥାଆନ୍ତା ।

ମୋର ଅତ୍ୟନ୍ତ ଲୋକପ୍ରିୟତା ଏବଂ ଯେଉଁସବୁ ଅଭିନନ୍ଦନ ପତ୍ର ମୋତେ ଦିଆଯାଉଥିଲା ସେଥିରେ ବାଛି ବାଛି ଭଲ ଭାଷା ଏବଂ ଅତି ଆଡ଼ମ୍ବରମାନ ପ୍ରଶଂସା କରାଯାଇଥାଏ ( ପ୍ରକୃତରେ ଭାରତରେ ସବୁ ଅଭିନନ୍ଦନରେ ଏପରି କରାଯାଏ । ) ଏ ସବୁ କଥା ମୋର ପରିବାର ଏବଂ ଘନିଷ୍ଠ ବନ୍ଧୁମାନଙ୍କ ଭିତରେ ଏକ ରହସ୍ୟ ଜିନିଷ ହୋଇ ପଡ଼ିଲା । ଆମ ଜାତୀୟ ଆନ୍ଦୋଳନର ମୁଖିଆ ଲୋକମାନଙ୍କ ପ୍ରତି ସାଧାରଣ ବ୍ୟବହାର ହେଉଥିବା ବଡ଼ ବଡ଼ ଓ ଜାକଜମକ ଶବ୍ଦ ଓ ଉପାଧିସବୁ ମୋର ସ୍ତ୍ରୀ, ଭଉଣୀ ଏବଂ ଅନ୍ୟମାନେ ଅଭିନନ୍ଦନ ପତ୍ରରୁ ସଂଗ୍ରହକରି ମୋତେ ବ୍ୟଙ୍ଗ କରନ୍ତି । ମୋତେ "ଭାରତ ଭୂଷଣ", "ତ୍ୟାଗମୂର୍ତ୍ତି", ଏହିସବୁ ଉପାଧି ଦିଆ ଯାଉଥିଲା- ଏହି ସବୁ ହାଲୁକା ବ୍ୟବହାରରେ ମୁଁ ଟିକିଏ ଶାନ୍ତି ଅନୁଭବ କରେ-ସେହିସବୁ ସଭାସମିତିରେ ମୋତେ ଭଲ ମଣିଷଭାବରେ ରହିବାକୁ ପଡ଼େ, ତା ପରେ ମୁଁ ଟିକିଏ ଆନନ୍ଦ ଅନୁଭବ କରେ । ଏପରିକି ମୋର ଶ୍ରେଷ୍ଠ ଝିଅ ମଧ୍ୟ ଏଥିରେ ଯୋଗଦିଏ । କେବଳ ମୋର ମାଆ ଏ ସବୁ କଥାରେ ବିଶ୍ୱାସ କରେ ଏବଂ ତା ପୁଅକୁ ଦେଖାଇ କୌଣସି ଅଛି ଆପଣା ସେ ଆଦୌ ଭଲ ପାଏ ନାହିଁ । ବାସ୍ତବିକ ଆନନ୍ଦିତ ହେଉ-

ଥିଲେ, ତାଙ୍କର ସହାନୁଭୂତି ଓ ମନୋଭାବ ସେ ଏକ ଗୌରବ ଉପାୟରେ ପ୍ରକାଶ କରୁଥିଲେ ।

ମାତ୍ର ଏ ସବୁ ଜନତାର ଚିତ୍କାର କଷ୍ଟଦାୟକ ଏବଂ କ୍ଳାନ୍ତିଦାୟକ । ସାଧାରଣ ସଭାସମିତି, ଅସରନ୍ତି ପ୍ରଶ୍ନ, ରାଜନୀତିର ଘନଘଟା କେବଳ ମୋର ଉପର ସ୍ପର୍ଶ କରେ— ଅବଶ୍ୟ ସମୟେ ସମୟେ ଏହା ଗମ୍ଭୀର ଓ ତୀକ୍ଷ୍ଣ ଭାବରେ ମୋ ମନରେ ପ୍ରବେଶ କରେ । ପ୍ରକୃତ ଦ୍ୱନ୍ଦ୍ୱ ମୋ ଭିତରେ ହେଉଥାଏ; ଭାବ, ଆକାଂକ୍ଷା ଏବଂ ଅନୁରାଗର ଦ୍ୱନ୍ଦ୍ୱ ଲାଗେ । ଏକ ଅର୍ଦ୍ଧଚେତନ ଗମ୍ଭୀରତା ବାହାର ପରିସ୍ଥିତି ସହିତ ସଂଗ୍ରାମ କରେ ଏବଂ ମୋର ଆଭ୍ୟନ୍ତରୀଣ କ୍ଷୁଧା ସନ୍ତୁଷ୍ଟ ହୁଏ ନାହିଁ । ମୁଁ ସତେକି ଏକ ଯୁଦ୍ଧକ୍ଷେତ୍ର ହେଲି ଏବଂ କେତେକ ଶକ୍ତି ମୋ ଉପରେ ଭୁକ୍ତୁକି କରିବା ନିମନ୍ତେ ଲଢ଼ୁଥିଲେ । ଏଥିରୁ ମୁକ୍ତି ପାଇବା ଲାଗି ମୁଁ ବ୍ୟଗ୍ର ଥିଲି; ମୁଁ ଗୋଟାଏ ସାମଞ୍ଜସ୍ୟ ଓ ସାମ୍ୟଭାବ ପାଇବାକୁ ଇଚ୍ଛା କରୁଥିଲି । ଏହି ଉଦ୍ଦେଶ୍ୟରେ ମୁଁ କାର୍ଯ୍ୟରେ ମାତିଲି । ଏଥିରେ ମୁଁ କେତେକ ପରିମାଣରେ ଶାନ୍ତି ଲାଭ କଲି, ବାହାର ସଂଗ୍ରାମ ମୋର ଅନ୍ତରର ଦ୍ୱନ୍ଦ୍ୱ ଅନେକ ପରିମାଣରେ କମାଇ ଦେଲା ।

ମୁଁ ଜେଲରେ ବସି ଏ ସବୁ କାହିଁକି ଲେଖୁଛି ? ଜେଲରେ ବା ବାହାରେ ମୁଁ ଏକ ଜିନିଷର ଅନୁସନ୍ଧାନ କରୁଛି । ମୋର ଆଶା ଯେ ଅତୀତର ଭାବ ବା ଅଭିଜ୍ଞତା ସମ୍ବନ୍ଧରେ ଲେଖିଲେ ହୁଏତ ମୁଁ କିଛି ଶାନ୍ତି ପାଇବି ଏବଂ ସୁଖ ଅନୁଭବ କରିବି ।



## ଆଇନ ଅମାନ୍ୟ ଆରମ୍ଭ

୧୯୩୦ ଜାନୁଆରୀ ୨୬ ତାରିଖରେ ସ୍ୱାଧୀନତା ଦିବସ ହେଲା ଏବଂ ହଠାତ୍ ଦେଶରେ ଉତ୍ସାହ ଭାବ ପ୍ରକାଶ ପାଇଲା । ପ୍ରତ୍ୟେକ ସ୍ଥାନରେ ବଡ଼ ବଡ଼ ସଭାସମିତିରେ ଶାନ୍ତିପୂର୍ଣ୍ଣ ଓ ଗମ୍ଭୀର ଭାବରେ ସ୍ୱାଧୀନତା

ଶପଥ* ଗ୍ରହଣ ଦେଖି ମନୋମୁଗ୍ଧକର ହୋଇଥିଲା । ଏଠାରେ କୌଣସି ବକ୍ତୃତା ଦିଆଯାଇ ନ ଥିଲା । ଏହି ଉତ୍ସବରେ ଗାନ୍ଧିଜୀ ମଧ୍ୟ ପ୍ରେରଣା ଲାଭ କଲେ ଏବଂ ସେ ଲୋକଙ୍କର ନାଡ଼ି ଟିପି ଅନୁଭବ କଲେ ଯେ, କାର୍ଯ୍ୟ ନିମନ୍ତେ ଏହା ହେଉଛି ଶୁଭ ମୁହୂର୍ତ୍ତ । ଏକ ନାଟକ ଶେଷ ହୋଇଗଲା ପରି ଘଟଣା ସବୁ ଦ୍ରୁତ ବେଗରେ ଗତି କଲା ।

ଆଇନ ଅମାନ୍ୟ ଆରମ୍ଭରେ ବାୟୁମଣ୍ଡଳ ବିଦ୍ୟୁତ୍ ବେଗରେ ପରିବର୍ତ୍ତିତ ହୋଇଗଲା । ଏହା ସଙ୍ଗେ ସଙ୍ଗେ ୧୯୨୦-୨୧ ମସିହା ଆନ୍ଦୋଳନ ଓ ଚୌରିଚୌରା ପରେ ହଠାତ୍ କିପରି ଏହା ସ୍ଥଗିତ ରଖାଗଲା, ଏ ସବୁ କଥା ମୋର ମନେ ପଡ଼ିଲା । ଦେଶ ଏବେ ଅଧିକ ଶୃଙ୍ଖଳିତ ହୋଇଥିଲା ଏବଂ ସଂଗ୍ରାମର ପ୍ରକୃତି ପରିଷ୍କାର ଜଣା ପଡ଼ୁଥିଲା । ଏହି କୌଶଳ କେତେକ ପରିମାଣରେ ବୁଝାଯାଉଥିଲା; ମାତ୍ର ଗାନ୍ଧିଜୀଙ୍କ ଦୃଷ୍ଟିକୋଣ ଉପରେ ସବୁ ନିର୍ଭର କରୁଥିଲା । ପ୍ରତ୍ୟେକେ ବୁଝି ପାରୁଥିଲେ ଯେ, ଅହିଂସା ବିଷୟରେ ସେ ଅଧିକ ଜୋର ଦେଉଛନ୍ତି । ଏ ସମ୍ବନ୍ଧରେ ଦଶବର୍ଷ ପୂର୍ବେ ଲୋକଙ୍କ ମନରେ ଯେ ସନ୍ଦେହ ଥିଲା, ତାହା ସମ୍ଭବତଃ ଆଜି ନାହିଁ । ଏ ସବୁ ସତ୍ତ୍ୱେ ଆପଣା ଛାଏଁ କୌଣସି ଜାଗାରେ ଯେ ହିଂସା ହେବ ନାହିଁ କିମ୍ବା ଏକ ଷଡ଼ଯନ୍ତ୍ର ଫଳରେ ହିଂସାର ସମ୍ଭାବନା ନାହିଁ, ଏହା ନିଶ୍ଚିତ ଭାବରେ କିଏ କହିବ ? ଏପରି ଏକ ଘଟଣା ଘଟିଲେ ଆମର ଆଇନ ଅମାନ୍ୟ ଆନ୍ଦୋଳନରେ ତାର ଫଳ କଣ ହେବ ? ଏହା କଣ ପୂର୍ବପରି ହଠାତ୍ ବନ୍ଦ କରି ଦିଆଯିବ ? ଏହି କଥା ଭାବିଲେ ବଡ଼ ଅସନ୍ତୋଷ ଲାଗେ ।

ଗାନ୍ଧିଜୀ ତାଙ୍କ ନିଜ ବାଟରେ ଏହି ସମସ୍ୟା ସମ୍ବନ୍ଧରେ ଚିନ୍ତା କରିଥିଲେ-- ଅବଶ୍ୟ ମୁଁ ତାଙ୍କ ସହିତ କଥାବାର୍ତ୍ତା କରି ଯାହା ଦେଖିଛି, ତାଙ୍କ ମନକୁ ଆଉ ଏକ ସମସ୍ୟା ବ୍ୟସ୍ତ କରୁଥିଲା ଏବଂ ସେ ଏହା ଭିନ୍ନ ଭାବରେ କହୁଥିଲେ ।

* ସ୍ୱାଧୀନତା ଶପଥ ପତ୍ର ପରିଶିଷ୍ଟରେ ଦିଆଯାଇଛି ।

ମଙ୍ଗଳ ନିମନ୍ତେ ଏକ ପରିବର୍ତ୍ତନ ପାଇଁ ଅହିଂସା ପନ୍ଥା ଏକମାତ୍ର ଠିକ୍ ଉପାୟ ବୋଲି ସେ କହନ୍ତି ଏବଂ ଏହାକୁ ଠିକ ଭାବରେ ଅନୁସରଣ କଲେ । ଏହି ପନ୍ଥା ନିର୍ଦ୍ଦୋଷ ପନ୍ଥା, ଏହି ପନ୍ଥାକୁ, କାର୍ଯ୍ୟକାରୀ ଏବଂ ସଫଳ କରିବା ନିମନ୍ତେ ଏକ ବିଶେଷ ଅନୁକୂଳ ବାୟୁମଣ୍ଡଳର ଆବଶ୍ୟକତା ଅଛି ଏବଂ ବାହାରର ଅବସ୍ଥା ଏହାର ଉପଯୋଗୀ ନ ହୋଇଥିଲେ କଣ ତାହା କରିବାକୁ ଚେଷ୍ଟା କରାଯିବ ନାହିଁ ? ଏଥିରୁ ପ୍ରମାଣ ମିଳୁଛି ଯେ, ଅହିଂସା ପନ୍ଥା ସବୁ ଅବସ୍ଥା ପାଇଁ ଉଦ୍ଦିଷ୍ଟ ନୁହେଁ ଏବଂ ଏହା ବିଶ୍ୱବ୍ୟାପୀ ବା ପୂର୍ଣ୍ଣତାପ୍ରାପ୍ତ ପନ୍ଥା ନୁହେଁ । ଗାନ୍ଧିଜୀ ଏହି ସିଦ୍ଧାନ୍ତ ସହ୍ୟ କରି ପାରିବେ ନାହିଁ । କାରଣ ତାଙ୍କ ମତରେ ଏହା ସବୁଠାରେ ପ୍ରଯୁଜ୍ୟ ଏବଂ ପୂର୍ଣ୍ଣତା ପ୍ରାପ୍ତ ପନ୍ଥା । ତେଣୁ ବାହ୍ୟିକ ଅବସ୍ଥା ପ୍ରତିକୂଳ ହୋଇଥିଲେ ସୁଦ୍ଧା ଏହାକୁ ଚଲାଇବାକୁ ହେବ— ଏପରିକି ସଂଘର୍ଷ ଏବଂ ହିଂସା ମଧ୍ୟରେ ବି ଗତି କରିବାକୁ ହେବ । ବିଭିନ୍ନ ପରିସ୍ଥିତିର ଉପଯୋଗୀ ଏହାର ବ୍ୟବହାର ଭିନ୍ନ ହୋଇପାରେ । ମାତ୍ର ଏହା ବନ୍ଦ କରିବା ଅର୍ଥ ଏହି ପନ୍ଥାର ନିସ୍ଫଳତା ସ୍ୱୀକାର କରିବା ।

ସମ୍ଭବତଃ ତାଙ୍କ ମନ ଏହିପରି ଏକ ଭାବରେ କାର୍ଯ୍ୟ କରୁଥିଲା; ତାଙ୍କ ଚିନ୍ତାଧାରା ମୁଁ ନିଶ୍ଚୟ କରି କହିପାରିବି ନାହିଁ । ତାଙ୍କ ଚିନ୍ତାଧାରାରେ ସାମାନ୍ୟ ପରିବର୍ତ୍ତନ ହୋଇଛି ବୋଲି ସେ ଆମକୁ ଏକ ଧାରଣା ଦେଇଥିଲେ ଏବଂ ଆଇନ ଅମାନ୍ୟ ଥରେ ଆରମ୍ଭ ହେଲେ ଏହା କଦାପି ହିଂସା କାର୍ଯ୍ୟ ଯୋଗୁଁ ବନ୍ଦ ହେବ ନାହିଁ । ଯଦି ହିଂସା ଏହି ଆନ୍ଦୋଳନର ଅଙ୍ଗ ହୁଏ, ତେବେ ଏହାକୁ ଶାନ୍ତିପୂର୍ଣ୍ଣ ଆଇନ ଅମାନ୍ୟ ଆନ୍ଦୋଳନ କୁହାଯାଇ ପାରିବ ନାହିଁ ଏବଂ ଏହାର କାର୍ଯ୍ୟର ପରିସର କମାଇ ଦେବାକୁ ହେବ ବା ପରିବର୍ତ୍ତନ କରିବାକୁ ହେବ । ଏହି ଜବାବରେ ଆମ ଭିତରୁ ଅନେକ କେତେକ ପରିମାଣରେ ସନ୍ତୁଷ୍ଟ ହେଲୁ; ମାତ୍ର ଅସଲ ପ୍ରଶ୍ନ ହେଲା—ଏହା ହେବ କିପରି ? ଆରମ୍ଭ ହେବ କିପରି ? ଆମେ କି ପ୍ରକାର ଆଇନ ଅମାନ୍ୟ କଲେ ତାହା

ଫଳପ୍ରଦ ହେବ, ଅବସ୍ଥା ସହିତ ଖାପ ଖାଇବ ଏବଂ ଜନସାଧାରଣଙ୍କ ଭିତରେ ଲୋକପ୍ରିୟ ହେବ ? ତାପରେ ମାହାତ୍ମା ତାଙ୍କର ସୂଚନା ଦେଲେ ।

ହଠାତ୍ ଲବଣ ଏକ ରହସ୍ୟଜନକ ଶବ୍ଦ ହୋଇଉଠିଲା—ଏକ ଚମତ୍କାର ଶବ୍ଦ ହେଲା । ଲୁଣ ଟିକସକୁ ଆକ୍ରମଣ କରିବାକୁ ହେବ, ଲବଣ ଆଇନ ଭାଙ୍ଗିବାକୁ ପଡ଼ିବ । ଆମେ ସବୁ ସ୍ତବ୍ଧ ହୋଇଗଲୁ ଏବଂ ଲୁଣ ଜରିଆରେ କପରି ଏକ ଜାତିର ସଂଗ୍ରାମ ଚାଲିବ, ବୁଝିପାରୁ ନ ଥିଲୁ । ଆଉ ଏକ ଅଦ୍ଭୁତ କଥା ହେଉଛି – ଗାନ୍ଧିଜୀ " ୧୧ ଟି ଦାବି" ବୃତ୍ତାନ୍ତ ବୋଲି ଘୋଷଣା କଲେ । ଆମେ ସ୍ୱାଧୀନତା କଥା କହୁଥିଲା-ବେଳେ ଭଲ ହୋଇଥିଲେ ସୁଦ୍ଧା କେତେକ ରାଜନୈତିକ ଓ ସମାଜ ସଂସ୍କାର ବିଷୟ ଉଲ୍ଲେଖ କରିବାର ମତଲବ କଅଣ ? ଆମ ପରି ଗାନ୍ଧି ଏହି ଶବ୍ଦ ଯେତେବେଳେ ବ୍ୟବହାର କରନ୍ତି, ସେ ସେହି ଅର୍ଥ ବୁଝନ୍ତି ନା ଆମେ ଅଲଗା ଭାଷାରେ କହୁ ? ଘଟଣା ଯେପରି ଗତି କରୁଥିଲା, ସେଥିରେ ତର୍କ କରିବାର ସମୟ ନ ଥିଲା । ଭାରତରେ ଦିନକୁ ଦିନ ଆମ ସାମନାରେ ରାଜନୈତିକ ଭାବରେ ଘଟଣା ଗତି କରୁଥିଲା ଏବଂ ଏହା ଜଗତରେ ଅତି ଦ୍ରୁତବେଗରେ ଗତିକରି ଏକ ଭୀଷଣ ସଙ୍କଟରେ ଯେ ଅଭିମୁଖୀ ହେଉଥିଲା, ଏହା ଆମେ ସେତେବେଳେ ବୁଝିପାରି ନ ଥିଲୁ । ଜିନିଷର ଦରଦାମ କମିଲା ଏବଂ ସହରବାସୀ ଏଥିରେ ପ୍ରଚୁର ଲାଭ ପାଇବେ ବୋଲି ଆନନ୍ଦ ଅନୁଭବ କଲେ; ମାତ୍ର କୃଷକ ଓ ପ୍ରଜା-ମାନଙ୍କ ମନରେ ଏହା ଦେଖି ଆଶଙ୍କା ଜାତ ହେଲା ।

ତାପରେ ବଡ଼ଲାଟଙ୍କ ସହିତ ଗାନ୍ଧିଜୀଙ୍କ ଚିଠିପତ୍ର ଏବଂ ସାବର-ମତୀ ଆଶ୍ରମରୁ ଦାଣ୍ଡି ଲବଣ ଯାତ୍ରା ଅଭିଯାନର ଆରମ୍ଭ । ଦିନକୁ ଦିନ ଏହି ତୀର୍ଥଯାତ୍ରୀଙ୍କର ଅଗ୍ରସର, ଲୋକେ ଆଗ୍ରହ ନେତ୍ରରେ ଦେଖିବାକୁ ଲାଗିଲେ ଏବଂ ଦେଶର ଉତ୍ସାହ ବୃଦ୍ଧି ପାଇଲା । ସଂଗ୍ରାମ ଆସନ୍ନ ପ୍ରାୟ ହୋଇଥିଲା—ଏ ସମ୍ବନ୍ଧରେ ଶେଷ ନିଷ୍ପତ୍ତି କରିବା ନିମନ୍ତେ ନିଖିଳଭାରତ

କଂଗ୍ରେସ କମିଟିର ଏକ ବୈଠକ ଅହମେଦାବାଦଠାରେ ହେଲା । ସଂଗ୍ରାମର ନେତା ସେ ବୈଠକରେ ଉପସ୍ଥିତ ନ ଥିଲେ; କାରଣ ସେ ତାଙ୍କର ଦଳ ଯେକ ସମୁଦ୍ର ଯାତ୍ରା କରୁଥିଲେ ଏବଂ ଫେରିବାକୁ ମନା କଲେ । ଗିରଫଦାର ହେଲେ କଣ କରାଯିବ, ସେ ସମ୍ବନ୍ଧରେ ନିଖିଳ ଭାରତ କଂଗ୍ରେସ କମିଟି ଯୋଜନା କଲା । କମିଟି ତରଫରୁ ସଭାପତିଙ୍କୁ ଅଖଣ୍ଡ କ୍ଷମତା ଦିଆଗଲା—କମିଟି ବସିବାର ସମ୍ଭାବନା ନ ଥିଲେ ଗିରଫ ହୋଇଥିବା ଲୋକଙ୍କ ସ୍ଥାନରେ ଅନ୍ୟଲୋକ କାର୍ଯ୍ୟକାରୀ ସମିତି ମନୋନୀତ କରିପାରିବ ଏବଂ ନିଜେ ଗିରଫ ହେଲେ ସଭାପତି ବି ମନୋନୀତ କରିବେ—ତାଙ୍କର ସେହିପରି କ୍ଷମତା ରହିବ । ପ୍ରାଦେଶିକ ଓ ଅନ୍ୟ ସ୍ଥାନୀୟ କମିଟିଗୁଡ଼ିକ ମଧ୍ୟ ତାହାର ସଭାପତିମାନଙ୍କୁ ସେହିପରି କ୍ଷମତା ଦେଲେ ।

ଏହିରୂପେ ତଥାକଥିତ "ଡିକ୍ଟେଟର"ଙ୍କ ସୃଷ୍ଟି ଆରମ୍ଭ ହେଲା—କଂଗ୍ରେସ ତରଫରୁ ସେମାନେ ସଂଗ୍ରାମ ପରିଚାଳନା କରୁଥିଲେ । ଭାରତ ସଚିବ, ବଡ଼ଲାଟ ଓ ଗଭର୍ଣ୍ଣରମାନେ ଆତଙ୍କିତ ହେଲେ—କଂଗ୍ରେସର ଅଧଃପତନ ହେଲାଣି ବୋଲି ସେମାନେ ଘୋଷଣା କଲେ—ଏହା ଏକଛତ୍ର ଶାସନରେ ବିଶ୍ୱାସ କଲାଣି । ସମୟ ସମୟରେ ଭାରତର ମଡ଼ରେଟ ଖବରକାଗଜମାନେ ମଧ୍ୟ ଗଣତନ୍ତ୍ର ଆମେ ମାନିବା ଉଚିତ ବୋଲି କହୁଥିଲେ । ଆମେ ଏ ସବୁ ଅବାକ୍ ହୋଇ ନୀରବରେ ଶୁଣୁଥିଲୁ (କାରଣ ଆମେ ଜେଲରେ ଥିଲୁ) । କଳଙ୍କ ଶଠତା ଆଉ କେତେଦୂର ଯାଇପାରେ । ସମସ୍ତ ପ୍ରକାର ବ୍ୟକ୍ତି ସ୍ୱାଧୀନତା ଦମନ କରି ଅର୍ଡ଼ିନାନ୍‌ସ ଆଇନ ଜାରି କରି ଭାରତକୁ ଜବରଦସ୍ତି ଏକ ଡିକ୍ଟେଟରୀ ଢଙ୍ଗରେ ଶାସନ କରାଯାଉଥିଲା; ଅଥଚ ଆମ ଶାସକମାନେ ଏଣେ ବଡ଼ପାଟି ମୁହଁରେ ଗଣତନ୍ତ୍ରର ଦୁହାଇ ଦେଉଥାନ୍ତି । ସାଧାରଣ ଅବସ୍ଥା ଦେଖିଲେ ବେଳେ ବେଳେ ଭାରତରେ ଗଣତନ୍ତ୍ରର ଛାୟା ସୁଦ୍ଧା ନଥାଏ । ବ୍ରିଟିଶ ସରକାର ମଝିରେ ନିଜର କ୍ଷମତା ଏବଂ ଭାରତର ନ୍ୟସ୍ତସ୍ୱାର୍ଥକୁ ରକ୍ଷା କରିବା ଏବଂ ଯେଉଁମାନେ ତାର ପ୍ରଭୁତ୍ୱ ଲୋପ କରିବାକୁ

ଚାହୁଁଛନ୍ତି, ସେମାନଙ୍କୁ ଦମନ କରିବାର ଚେଷ୍ଟା ହେବା ସ୍ୱାଭାବିକ, ସନ୍ଦେହ ନାହିଁ । ମାତ୍ର ଏ ସବୁ ଗଣତନ୍ତ୍ରମୂଳକ ବୋଲି ଯେ ଦାବୀ କରାଯାଉଛି; ଏହା ଭବିଷ୍ୟତ ବଂଶଧରମାନଙ୍କର ପ୍ରଶଂସା ଓ ଚିନ୍ତା ସକାଶେ ଲେଖିରଖିବା ଯୋଗ୍ୟ ।

ଯେବେ କଂଗ୍ରେସକୁ ଏପରି ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିଲା ଯେ, ତାହା ସାଧାରଣ ଭାବରେ କାର୍ଯ୍ୟ କରିପାରିଲା ନାହିଁ; ଏହାକୁ ବେଆଇନ ଅନୁଷ୍ଠାନରୂପେ ଘୋଷଣା କରାଗଲା—ଗୋପନରେ ବୈଠକ ନ ହେଲେ କୌଣସି ପରାମର୍ଶ ବା କାର୍ଯ୍ୟ ପାଇଁ ଏହାର କମିଟି ଗୁଡ଼ିକର ବୈଠକ ହୋଇପାରୁ ନ ଥିଲା । ଆମେ ଆମର ସଂଗ୍ରାମକୁ ସମ୍ପୂର୍ଣ୍ଣ ପ୍ରକାଶ୍ୟ ରଖିବାକୁ ଚାହୁଁଥିଲୁ—ସେଥିଲାଗି ଆମେ ଗୋପନୀୟତାକୁ ପ୍ରଶ୍ରୟ ଦେଉ ନ ଥିଲୁ—ଏହିପରି ଭାବରେ ଆମେ ଜନସାଧାରଣଙ୍କ ଉପରେ ପ୍ରଭାବ ବିସ୍ତାର କରିବାକୁ ଚାହୁଁଥିଲୁ । ଗୁପ୍ତଭାବରେ ଆମେ ବେଶିଦିନ କାର୍ଯ୍ୟ କରି ପାରିଲୁ ନାହିଁ । ଆମର କେନ୍ଦ୍ର ଅଫିସ, ପ୍ରଦେଶ ଏବଂ ସ୍ଥାନୀୟ ଅଞ୍ଚଳରେ ସମସ୍ତ ମୁଖିଆ ଲୋକେ ଗିରଫ ହୋଇଗଲେ । ଏହାପରେ କିଏ ଆନ୍ଦୋଳନ ଚଳାଇବ ? ସେଥିପାଇଁ ଆମ ପକ୍ଷରେ ଏକମାତ୍ର ଉପାୟ ଥିଲା—ଯୁଦ୍ଧରେ ସେନାପତି ଅସମର୍ଥ ହୋଇଗଲେ ତାଙ୍କ ସ୍ଥାନରେ ନୂତନ ସେନାପତି ନିଯୁକ୍ତ କରିବା ଭଳି ବ୍ୟବସ୍ଥା ଆମକୁ କରିବାକୁ ହେଲା । ଆମେ ଯୁଦ୍ଧକ୍ଷେତ୍ରରେ ବସି ଆଉ କମିଟି ବୈଠକ କରି ପାରିଲୁ ନାହିଁ । ବାସ୍ତବିକ ଆମେ କେତେକ ସମୟ ପର୍ଯ୍ୟନ୍ତ ସେପରି କରିଥିଲୁ; ମାତ୍ର ଏହାର ଉଦ୍ଦେଶ୍ୟ ଥିଲା ସମସ୍ତ କମିଟିକୁ ଗିରଫ କରାଇ ଦେବା—ବାସ୍ତବିକ ଏହା ଘଟିଥିଲା ମଧ୍ୟ । ଯୁଦ୍ଧକ୍ଷେତ୍ର ପଛରେ ସାଧାରଣ କର୍ମଚାରୀ କିମ୍ବା ଶାସନ ବିଭାଗର ମନ୍ତ୍ରୀମଣ୍ଡଳ ଅନ୍ୟ ସ୍ଥଳରେ ନିରାପଦ ରହିବା ଭଳି ସୁବିଧା ମଧ୍ୟ ଆମର ନ ଥିଲା । ଆମ ସଂଗ୍ରାମର ନୀତି ଅନୁସାରେ ସେନାପତି ଓ ସଚିବମଣ୍ଡଳୀ ପୁରୋଭାଗରେ ରହୁଥିଲେ ଏବଂ ସେମାନେ ଆଗ ଗିରଫ ହୋଇଗଲେ । ଆମ 'ଡିକ୍ଟେଟର'ମାନଙ୍କ ହାତରେ କି କ୍ଷମତା ଥିଲା ? ସଂଗ୍ରାମ ଚଳାଇବା ନିମନ୍ତେ ଜାତୀୟ ଅଭିବ୍ୟକ୍ତିର ପ୍ରତୀକରୂପେ

ରହିବା ସେମାନଙ୍କ ପକ୍ଷରେ ଏକ ସମ୍ମାନ ଥିଲା; ମାତ୍ର ତାଙ୍କର ପ୍ରକୃତ କ୍ଷମତା ଜେଲ ଯିବାରେହିଁ ପର୍ଯ୍ୟବସିତ ହେଉଥିଲା । ଯେଉଁଠି ଜୋର୍ ଜବରଦସ୍ତି ଯୋଗୁଁ କମିଟିଗୁଡ଼ିକ କାର୍ଯ୍ୟକାରୀ ହୋଇପାରେ ନା, ସେଠାରେ ହିଁ ଡ଼ିକ୍ଟେଟରମାନେ କାର୍ଯ୍ୟ ଚଳାଉଥିଲେ । କମିଟି ବୈଠକ ହେବାର ଯେଉଁଠାରେ ତା ଯେତେବେଳେ ସମ୍ଭବ ହେଉଥିଲା, ସେତେ-ବେଳେ ଡ଼ିକ୍ଟେଟରଙ୍କ ଯାହା ବା କ୍ଷମତା, ତାହା ସେ ହରାଉଥିଲେ । ସେ କୌଣସି ମୂଳସମସ୍ୟା ବା ନୀତିରେ ପରିବର୍ତ୍ତନ କରିପାରିବେ ନାହିଁ, କେବଳ ଆନ୍ଦୋଳନର ଛୋଟ ବିଷୟ ଗୁଡ଼ିକ ଡ଼ିକ୍ଟେଟରମାନେ ପରିଚାଳନା କରନ୍ତି । ପ୍ରକୃତ କଂଗ୍ରେସ "ଡ଼ିକ୍ଟେଟର" ହେବା ହେଉଛି ଜେଲ ଯିବାର ସୋପାନ ମାତ୍ର; ଏହିରୂପେ ଦିନକୁ ଦିନ ଚାଲିଲା ଏବଂ ଯେଉଁମାନେ ଅସମର୍ଥ ହୋଇଗଲେ, ତାଙ୍କ ସ୍ଥାନରେ ନୂତନ ଲୋକ ନିଯୁକ୍ତ ହେଉ ଥାଆନ୍ତି ।

ଏହାପରେ ଆମର ସମସ୍ତ ଯୋଜନା କରିସାରି ଅହମେଦାବାଦରେ ଆମେ ନିଖିଳ ଭାରତ କଂଗ୍ରେସ କମିଟିର ସାଥିମାନଙ୍କଠାରୁ ବିଦାୟ ନେଲୁ— କାରଣ କେବେ ଓ କିପରି ଆମେ ପୁଣି ଭେଟ ହୋଇ ପାରିବୁ ତା ଠିକ୍ ନାହିଁ । ବୈଠକ କରିବାର ହୁଏ ତ ଆଦୌ ସମ୍ଭବ ହୋଇ ନ ପାରେ । ନିଖିଳ ଭାରତ କଂଗ୍ରେସ କମିଟିର ନୂତନ ନିର୍ଦ୍ଦେଶ ଅନୁସାରେ ଆମେ ନିଜ ନିଜର ସ୍ଥାନୀୟ ବ୍ୟବସ୍ଥା କରିଦେବା ନିମନ୍ତେ ଚାଲି ଆସିଲୁ । ସରୋଜିନୀ ନାଇଡୁଙ୍କ ଅନୁଗ୍ରହରେ ଦେଶଯାତ୍ରା ଲାଗି ଦାନ୍ତିକାଠି ଦାନ୍ଧ ବସି ରହିଲୁ ।

ଫେରି ଆସିଲାବେଳେ ବାପା ଓ ମୁଁ ଗାନ୍ଧିଜୀଙ୍କ ସହିତ ସାକ୍ଷାତ୍ କରିବାକୁ ଗଲୁ । ସେ ତାଙ୍କ ଯାତ୍ରୀ ଅନୁଚରମାନଙ୍କୁ ନେଇ ଜମ୍ବୁସରରେ ପହଞ୍ଚିଲେ ଏବଂ ସେଠାରେ ତାଙ୍କ ସହିତ ଆମେ କେତେକ ଘଣ୍ଟା କଟାଇଲୁ ଏବଂ ତାପରେ ତାଙ୍କ ଦଳ ଯେଉଁ ସମୁଦ୍ର ଆଡ଼କୁ ଅଗ୍ରସର ହେବାର ଦେଖିଲୁ । ଏପରି ଭାବରେ ତାଙ୍କ ସହିତ ମୋର ଏହି ଶେଷ ଦେଖା

ହାତରେ ବାଡ଼ି ଧରି ଦୃଢ଼ ପଦକ୍ଷେପରେ ସେ ତାଙ୍କ ଅନୁଚରମାନଙ୍କ ଆଗରେ ଚାଲିଥାନ୍ତି । ତାଙ୍କର ଦୃଷ୍ଟି ଥ ପ୍ରଶାନ୍ତ ଓ ସ୍ଥିର—ଏହା ଏକ ହୃଦୟ ବିଗଳିତ ଦୃଶ୍ୟ ହୋଇଥାଏ ।

ଗାନ୍ଧିଜୀଙ୍କ ସହିତ ପରାମର୍ଶ କରି ମୋର ପିତା ଆମର ପୁରୁଣା ଏଲାହାବାଦ ଘରକୁ ଦେଶକୁ ଦାନ କରିବା ନିମନ୍ତେ ଜମ୍ବୁସରରେ ସ୍ଥିର କଲେ ଏବ ଏହାର ନାମ ସ୍ୱରାଜ୍ୟ ଭବନ ଦେବେ । ସେ ଏଲାହାବାଦ ଫେରି ଆସି ସେହି ଘୋଷଣା କରିଦେଲେ ଏବଂ କଂଗ୍ରେସ ଲୋକଙ୍କୁ ସେ ଘର ଦେଇ ଦେଲେ—ସେହି ବିରାଟ ଘରର ଏକ ଅଂଶରେ ହାସପାତାଳ ହୋଇଛି । ସେତେବେଳେ ଏ ସମ୍ବନ୍ଧରେ ଆଇନତଃ ସମସ୍ତ କାଗଜପତ୍ର ସେ କରିପାରି ନ ଥିଲେ ଏବଂ ଦେଢ଼ବର୍ଷ ପରେ ତାଙ୍କର ଇଚ୍ଛାନୁସାରେ ମୁଁ ସେହି ସମ୍ପତ୍ତି ଲାଗି ଏକ ଦଲିଲ କରି ମାରଫତ୍‌ଦାରଙ୍କ ହାତରେ ଅର୍ପଣ କରି ଦେଇଛି ।

ଏପ୍ରିଲ ମାସ ଆସିଲା—ଗାନ୍ଧିଜୀ ସମୁଦ୍ର ନିକଟବର୍ତ୍ତୀ ହେଲେ—ଲବଣ ଆଇନରେ ଆକ୍ରମଣ ହେବାର ଖବର ପାଇଲେ ଆମେ ଆଇନ ଅମାନ୍ୟ ଆରମ୍ଭ ହେଲା ବୋଲି ଜାଣିବାଲାଗି ଅପେକ୍ଷା କରିଥାଉଁ । ଗତ କେତେମାସ ହେଲା ଆମେ ଆମର ସ୍ୱେଚ୍ଛାସେବକମାନଙ୍କୁ ଡ୍ରିଲ ଶିକ୍ଷା ଦେଉଥାଉ ଏବଂ ଏଥିଲାଗି କମଲା ଓ କୃଷ୍ଣା (ମୋର ସ୍ତ୍ରୀ ଓ ଭଉଣୀ) ପୁରୁଷ ପୋଷାକ ପିନ୍ଧି ଏଥିରେ ଯୋଗ ଦେଇଥିଲେ । ଅବଶ୍ୟ ସ୍ୱେଚ୍ଛାସେବକଙ୍କ ହାତରେ ଲାଠି ବା ଅସ୍ତ୍ରଶସ୍ତ୍ର ନ ଥିଲା । ଶିକ୍ଷା ଦେବାର ଉଦ୍ଦେଶ୍ୟ ହେଉଛି, ସେମାନଙ୍କୁ ଅଧିକ କର୍ମକୁଶଳ କରାଇବା ଏବଂ ବିରାଟ ଜନତାକୁ ଯେପରି ସମ୍ଭାଳିପାରିବେ, ସେ ଶିକ୍ଷା ପାଇବା । ତା୬ରିଖ ଏପ୍ରିଲ ହେଉଛି ଜାତୀୟ ସପ୍ତାହର ଆରମ୍ଭ ଦିନ—ସତ୍ୟାଗ୍ରହ ଦିବସରୁ ଜାଲିଆନାବାଲାବାଗ—୧୯୧୯ର ଘଟଣାବଳୀର ସ୍ମୃତିସ୍ୱରୂପ ଏହା ପ୍ରତିବର୍ଷ ପାଳନ କରାଯାଏ । ସେହି ଦିବସ ଦାଣ୍ଡି ସମୁଦ୍ର କୂଳରେ ଗାନ୍ଧିଜୀ ଲବଣ ଆଇନ ଅମାନ୍ୟ କଲେ ଏବଂ ତିନି ଚାରିଦିନ ପରେ ସେହିପରି ଲୁଣ ଆଇନ ଭଙ୍ଗି

ନିଜ ନିଜ ଅଞ୍ଚଳରେ ଆଇନ ଅମାନ୍ୟ ଆରମ୍ଭ କରିବା ନିମନ୍ତେ ସବୁ କଂଗ୍ରେସ ଅନୁଷ୍ଠାନଗୁଡ଼ିକୁ ଅନୁମତି ଦିଆଗଲା ।

ମନେ ହେଲା ସତେ କି ହଠାତ୍ ଏକ ନଦୀ ବନ୍ଧ ଆସୁଛି—ସମସ୍ତ ଦେଶରେ କି ଗ୍ରାମ କି ସହରରେ ଲୁଣ ତିଆରି ଗତି ଆନ୍ଦୋଳନ ହେଲା । ଏବଂ ଲୁଣ ତିଆରିର ଅଦ୍ଭୁତ ଉପାୟ ସବୁ ବି ବାହାରିଲା । ଆମେ ଏ ସମ୍ବନ୍ଧରେ କିଛି ଜାଣି ନ ଥିଲୁ; ଆମେ ଯାହା କିଛି ପାଇଲୁ ଏ ସମ୍ବନ୍ଧରେ ପଢ଼ିବାକୁ ଲାଗିଲୁ; ନିର୍ଦ୍ଦେଶ ଦେଇ ପ୍ରଚୁରପତ୍ର ପଠାଇଲୁ । ଆମେ ହୁଣ୍ଡି କରେଇ ପରୀକ୍ଷା କରି ଶେଷରେ ଲୁଣ ପରି ଏକ ପଦାର୍ଥ ବାହାର କଲୁ—ଏଥିରେ ଆମର ଆନନ୍ଦର ସୀମା ରହିଲା ନାହିଁ । ଏ ସବୁ ଆମେ ଅନେକ ସମୟରେ ନିଲାମ କରି ଭଲ ଦାମ ଉଠାଉଥିଲୁ । ପ୍ରକୃତରେ ଲୁଣ ଭଲ ହେଉଥିଲା କି ଖରାପ ହେଉଥିଲା, ସେଥିରେ କିଛି ଯାଏ ଆସେ ନା; କିନ୍ତୁ ଲବଣ ଆଇନ ଅମାନ୍ୟହିଁ ପ୍ରଧାନ କଥା ଥିଲା । ଆମ ତିଆରି ଲୁଣର ଗୁଣ ଭଲ ନ ହୋଇ ଥିଲେ ଏଥିରେ ଆମେ ସଫଳକାମ ହେଲୁ । ଲୋକଙ୍କର ଅପୂର୍ବ ଉତ୍ସାହ ଦେଖି ଏବଂ ଦାବାନଳ ପରି ଲବଣ ତିଆରି ଲୋକଙ୍କ ଭିତରେ ପ୍ରଚୁର ହେବାର ଦେଖି, ଆମେ ପ୍ରଥମେ ଗାନ୍ଧିଜୀଙ୍କର ଲବଣ ପ୍ରସ୍ତାବର ସଫଳତା ବିଷୟରେ ଯେ ପ୍ରଶ୍ନ କରିଥିଲୁ, ସେଥିଲାଗି ଲଜ୍ଜା ଓ କୁଣ୍ଠାବୋଧ କଲୁ ! ଗାନ୍ଧିଜୀଙ୍କର କୋଟି କୋଟି ଲୋକଙ୍କୁ ମୁଗ୍ଧ କରିବାର ଏବଂ ସଙ୍ଗଠିତ ଭାବରେ ସେମାନଙ୍କୁ କାର୍ଯ୍ୟରେ ଲଗାଇ ପାରିବାର ଆଶ୍ଚର୍ଯ୍ୟ ଶକ୍ତି ଦେଖି ଆମେ ଚକିତ ହୋଇଗଲୁ ।

ଏପ୍ରିଲ ୧୪ ତାରିଖରେ ଏକ ସମ୍ମିଳନୀରେ ଯୋଗ ଦେବା ନିମନ୍ତେ ମଧ୍ୟ-ପ୍ରଦେଶର ରାୟପୁର ଷ୍ଟେସନରେ ମୁଁ ଓହ୍ଲାଇଲା ବେଳେ ଗିରଫ ହେଲି । ସେହି ଦିନ ଜେଲଖାନାରେ ମୋର ବିଚାର ହୋଇ ମୋତେ ଲବଣ ଆଇନ ଅନୁସାରେ ୬ ମାସ ଜେଲ ଦିଆଗଲା । ମୁଁ ଗିରଫ ହେବି ବୋଲି ଆଗରୁ ଅନୁମାନ କରି ମୋର ଅନୁପସ୍ଥିତିରେ

(ନିଖିଳ ଭାରତ କଂଗ୍ରେସ କମିଟି ମୋତେ ଦେଇଥିବା ନୂତନ କ୍ଷମତା ଅନୁସାରେ) ମୁଁ ଗାନ୍ଧିଜୀଙ୍କୁ ସଭାପତି ହେବାଲାଗି ମନୋନୀତ କରିଥିଲି— ସେ ଅସ୍ୱୀକାର କରିବେ ବୋଲି ମୋର ଡର ଥିବାରୁ ମୁଁ ସେ ନ ହେଲେ ପିତାଙ୍କ ନାମ ମନୋନୟନ କରିଥିଲି। ମୁଁ ଯାହା ଭାବିଥିଲି ତାହାହିଁ ହେଲା—ଗାନ୍ଧିଜୀ ସମ୍ମତ ହେଲେ ନାହିଁ ଏବଂ ମୋର ପିତା ଅସ୍ଥାୟୀ ସଭାପତି ହେଲେ। ତାଙ୍କର ଶରୀର ସୁସ୍ଥ ନ ଥିଲା—ଯାହାହେଉ ସେ ଅଧିକ ଶକ୍ତିର ସହିତ ଆନ୍ଦୋଳନରେ ଝାସ ଦେଲେ ଏବଂ ଆନ୍ଦୋଳନର ଏହି ଆରମ୍ଭ ଅବସ୍ଥାରେ ତାଙ୍କର ଦୃଢ଼ ପରିଚାଳନା ଏବଂ ଶୃଙ୍ଖଳା ଜାରି ଆନ୍ଦୋଳନକୁ ଖୁବ୍ ସାହାଯ୍ୟ କରିଥିଲା। ଆନ୍ଦୋଳନ ବହୁ ପରିମାଣରେ ଉପକୃତ ହେଲା। ମାତ୍ର ତାଙ୍କର ସ୍ୱାସ୍ଥ୍ୟ ଏବଂ ଶାରୀରିକ ଯୋଗ୍ୟତା ଯାହା ବା ଥିଲା, ତାହା ଏଥିରେ ଶେଷ ହୋଇଗଲା।

ଏତେବେଳେ ହେମାଷ୍ଟିଙ୍କର ସମ୍ବାଦ ସବୁ ମିଳୁଥିଲା—ଲାଠିମାଡ଼, ଗୁଳି, ମୁଖ୍ୟ ଲୋକଙ୍କ ଗିରଫରେ ବାରମ୍ବାର ହରତାଳ, ପେଶାବାର ଏବଂ ଗଡ଼ୱାଲି ଦିବସ ଆଦି ବିଶେଷ ଉତ୍ସବ ପାଳିତ ହେଉଥିଲା। ସେ ସମୟରେ ବିଦେଶୀ ଲୁଗା ଓ ବିଲାତି ଦ୍ରବ୍ୟର ସମ୍ପୂର୍ଣ୍ଣରୂପେ ବର୍ଜନ ହୋଇ ପାରିଥିଲା। ମୋର ବୁଢ଼ୀ ମାଆ ଏବଂ ଭଉଣୀମାନେ ବିଦେଶୀ ଲୁଗା ଦୋକାନ ସାମନାରେ ପ୍ରଚଣ୍ଡ ଖରାରେ ଛିଡ଼ା ହୋଇ ପିକେଟିଂ କରିବା ସମ୍ବାଦ ଶୁଣି ମୁଁ ଅତ୍ୟନ୍ତ ବିଚଳିତ ହେଲି। କମଳା ବି ସେହିପରି କରୁଥିଲା—ସେ ସେଥିରୁ ଆହୁରି କିଛି ଅଧିକା କରୁଥିଲା। ସେ ଏଲାହାବାଦ ସହର ଓ ଜିଲା ଆନ୍ଦୋଳନ ଏପରି ଶକ୍ତି ଓ ଦକ୍ଷତାର ସହିତ ଚଳାଇଲା, ସେଥିରେ ମୁଁ ବିସ୍ମିତ ହୋଇଗଲି। ତାହା ସହିତ ଅନେକ ବର୍ଷ ରହି ସୁଦ୍ଧା ମୁଁ ତାକୁ ବୁଝିପାରି ନ ଥିଲି। ସେ ତାର ଅସୁସ୍ଥ ଶରୀର କଥା ଭୁଲିଗଲା ଏବଂ ସାରାଦିନ ଖରାରେ ବୁଲି ସଙ୍ଗଠନର ଅଦ୍ଭୁତ କ୍ଷମତା ଦେଖାଇଲା। ମୁଁ ଜେଲ ଭିତରେ ଏ ଖବର ଟିକିଏ ଟିକିଏ ପାଇଥିଲି। ପରେ ବାପା ଆମ ସାଙ୍ଗରୁ ଗଲେ—ତାଙ୍କଠାରୁ ଶୁଣିଲି ଯେ, କମଳାର କାର୍ଯ୍ୟ ଏବଂ ବିଶେଷତଃ ତାର ସଙ୍ଗଠନ ଶକ୍ତି ଦେଖି ସେ ମୁଗ୍ଧ ହୋଇ

ଯାଉଛନ୍ତି । ମୋର ମା ଏବଂ ପରିବାରର ଅନ୍ୟ ଝିଅମାନେ ଏପରି ଉଗ୍ର ଖବରେ କୁଳବାଳା ଯେ ଆଦୌ ଭଲ ପାଉ ନ ଥିଲେ, ମାତ୍ର କେବଳ କେତେବେଳେ କମିଛ ଗାଳି ଦେବା ଛଡ଼ା ସେ ଏଥିରେ ବାଧା ଦେଇ ନ ଥିଲେ ।

ଆନ୍ଦୋଳନର ପ୍ରଥମ ଅବସ୍ଥାରେ ଏପ୍ରିଲ ତା ୨୩ ଶଖରେ ପେଶା- ବାରରେ ଘଟିଥିବା ଘଟଣା ଏବଂ ତା ପରେ ସୀମାନ୍ତ ପ୍ରଦେଶ ସାରା ହୋଇଥିବା ଘଟଣା ହିଁ ସବୁଠାରୁ ବଡ଼ ସମ୍ବାଦ । ଭାରତର କୌଣସି ସ୍ଥାନରେ ମେସିନଗନ୍ ଗୁଳି ସାମନାରେ ଏପରି ଶୃଙ୍ଖଳିତ ଓ ଶାନ୍ତିପୂର୍ଣ୍ଣ ଭାବରେ ସାହସ ଦେଖାଇବା କାର୍ଯ୍ୟ ହୋଇଥିଲେ, ସାରା ଦେଶରେ ଚାଞ୍ଚଲ୍ୟ ସୃଷ୍ଟି ହୋଇ ଆସନ୍ତା । ସୀମାନ୍ତ ପ୍ରଦେଶରେ ଏହାର ଗୁରୁ ଏକ ଅଧିକ ମହତ୍ତ୍ୱ ଥିଲା—କାରଣ ପଠାଣମାନେ ସାହସୀ ବୋଲି ଖ୍ୟାତ ଥିଲା, ମାତ୍ର ଶାନ୍ତିପୂର୍ଣ୍ଣ ପ୍ରକୃତିର ବୋଲି ଜଣା ନ ଥିଲା, ପଠାଣମାନଙ୍କର ଏହି ଅଦ୍ଭୁତ ଦୃଷ୍ଟାନ୍ତ ଭାରତରେ ବଦଳ । ଗଡ଼ୱାଲି ସୈନ୍ୟମାନେ ଏକ ନିରସ୍ତ୍ର ଜନତା ଉପରେ ଗୁଳି କରିବାକୁ ଏହି ସୀମାନ୍ତ ପ୍ରଦେଶରେ ଅସ୍ୱୀକାର କରିଥିଲେ—ଏହା ଏକ ସ୍ମରଣୀୟ ଘଟଣା । ସୈନ୍ୟମାନେ ସାଧାରଣତଃ ନିରସ୍ତ୍ର ଜନତା ଉପରେ ଗୁଳି କରିବାକୁ ଚାହାନ୍ତି ନାହିଁ— ସେଥିଯୋଗୁଁ ଏବଂ ଜନତା ପ୍ରତି ସେମାନଙ୍କର ସହାନୁଭୂତି ଯୋଗୁଁ ସେମାନେ ଗୁଳି କରିବାକୁ ଅସ୍ୱୀକାର କଲେ । ଜଣେ ସୈନ୍ୟ ନିଜର ଉପରିସ୍ଥ କର୍ମଚାରୀ ଆଦେଶକୁ ଅମାନ୍ୟ କରିବା ଭଳି ସାହାସିକ କାର୍ଯ୍ୟ କରିବା ନିମନ୍ତେ ତାଙ୍କ ସହାନୁଭୂତି ଯଥେଷ୍ଟ ନୁହେଁ, ସେ ତାର ଫଳା- ଫଳ ମଧ୍ୟ କଣ ହେବ ଜାଣିଥିଲେ । ବ୍ରିଟିଶ ଶକ୍ତି ସମ୍ଭବତଃ ଲୋପ ପାଇ ଯାଉଛି ବୋଲି ଏକ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଗଡ଼ୱାଲି ସୈନ୍ୟମାନେ ଏପରି କରିଥିଲେ ( ଆଉ କେତେକ ସୈନ୍ୟ ସେପରି କରିଥିଲେ—ମାତ୍ର ସେମାନଙ୍କର ଅମାନ୍ୟ କରିବା ଆଦୌ ପ୍ରକାଶ କରା- ଯାଇ ନ ଥିଲା ।) କେବଳ ଏହିପରି ଏକ ଧାରଣା ସୈନ୍ୟ ମନରେ ହେବା ମାତ୍ରକେ ସେ ନିଜର ସହାନୁଭୂତି ଓ ଇଚ୍ଛା ଅନୁସାରେ

କାର୍ଯ୍ୟ କରିବାକୁ ସାହସ କଲେ ! ସମ୍ଭବତଃ କେତେକ ଦିନ ଓ ସପ୍ତାହର ସାଧାରଣ ଜାଗରଣ ଏବଂ ଆଇନ ଅମାନ୍ୟ ହେତୁ କେତେକ ଲୋକଙ୍କର ଏପରି ଧାରଣା ଜନ୍ମିଲା ଯେ, ବ୍ରିଟିଶ ଶାସନର ଶେଷ ସମୟ ଆସି ପହଞ୍ଚିଲାଣି—ଏହା ଭାରତୀୟ ସୈନ୍ୟମାନଙ୍କ ଉପରେ ପ୍ରଭାବ ପକାଇ ଥିଲା । ଅଳ୍ପଦିନ ପରେ ନିକଟ ଭବିଷ୍ୟତରେ ଏପରି ହେଉନାହିଁ ବୋଲି ଜଣା ପଡ଼ିଗଲା—ତା ପରେ ସୈନ୍ୟମାନେ ଆଉ ଅମାନ୍ୟ କରିବା ଶୁଣାଗଲା ନାହିଁ । ସୈନ୍ୟମାନେ ସେପରି ଅବସ୍ଥାରେ ଯେପରି ନ ପଡ଼ନ୍ତି, ସେଥିଲାଗି ସାବଧାନତା ଅବଲମ୍ବନ କରାଗଲା ।

ଏହି ସମୟରେ ଆହୁରି ଅନେକ ଆଶ୍ଚର୍ଯ୍ୟକଥା ଘଟିଥିଲା—ମାତ୍ର ଏଥିରେ ସନ୍ଦେହ ନାହିଁ ଯେ, ଜାତୀୟ ସଂଗ୍ରାମରେ ନାରୀମାନଙ୍କର ଭାଗ ନେବାହିଁ ଏଥିମଧ୍ୟରେ ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ । ସେମାନେ ତାଙ୍କ ଘର ଆଡ଼ୁଆଳରୁ ଅନେକ ସଂଖ୍ୟାରେ ବାହାରି ଆସିଲେ ଏବଂ ସାଧାରଣ କାର୍ଯ୍ୟ ସହିତ ଆଗରୁ ସମ୍ପର୍କରେ ଆସି ନ ଥିଲେ ସୁଦ୍ଧା ସଂଗ୍ରାମରେ ଝାସ ଦେଲେ । ମଦ ଦୋକାନ ଓ ବିଦେଶୀ ଲୁଗା ଦୋକାନରେ ପିକେଟିଂହିଁ ସେମାନଙ୍କର କାର୍ଯ୍ୟ ହୋଇଥିଲା । ପ୍ରତ୍ୟେକ ସହରରେ ସ୍ତ୍ରୀଲୋକମାନଙ୍କର ବଡ଼ ବଡ଼ ଶୋଭାଯାତ୍ରା ବାହାରି ଥିଲା, ସାଧାରଣତଃ ପୁରୁଷଙ୍କ ଅପେକ୍ଷା ସ୍ତ୍ରୀ ଲୋକମାନେ ଅଧିକ ଦୃଢ଼ତା ଦେଖାନ୍ତି । ଅନେକ ସ୍ଥଳରେ ପ୍ରଦେଶରେ ଏବଂ ସ୍ଥାନୀୟ ଅଞ୍ଚଳରେ ସେମାନେ କଂଗ୍ରେସ "ଡ଼ିକ୍‌ଟେଟର" ନିଯୁକ୍ତ ହୋଇଥିଲେ ।

ଲବଣ ଆଇନ ଭଙ୍ଗ ପରେ ଅନ୍ୟ କ୍ଷେତ୍ରକୁ ମଧ୍ୟ ଆଇନ ଅମାନ୍ୟ ବ୍ୟାପିଲା । ବଡ଼ଲାଟ ଅନ୍ୟ ଅନେକ କାର୍ଯ୍ୟକୁ ବାରଣ କରି ଅନେକ ଅର୍ଡିନାନ୍‌ସ ଜାରି କରିବାରୁ ଏହା କରିବା ସୁବିଧା ହେଲା । ଅର୍ଡିନାନ୍‌ସ ଏବଂ ନିଷେଧାଜ୍ଞା ବଢ଼ିବା ସଙ୍ଗେ ସଙ୍ଗେ ଆଇନ ଭାଙ୍ଗିବାର ସୁବିଧା ମଧ୍ୟ ବଢ଼ିଲା ଏବଂ ଅର୍ଡିନାନ୍‌ସ ଯେଉଁ ସବୁ କଥା ଦମନ କରିଦେବାକୁ

ହୋଇଥିଲା, ସେହିସବୁ କାର୍ଯ୍ୟ କରି ଆଇନ ଅମାନ୍ୟ କରାଗଲା । କଂଗ୍ରେସ ଓ ଲୋକସାଧାରଣ ଅଗ୍ରଦୂତ ହୋଇ କାର୍ଯ୍ୟ କରିବାକୁ ଲାଗିଲେ ଏବଂ ସରକାର ଦୃଷ୍ଟିରୁ ପ୍ରତ୍ୟେକ ଅର୍ଡିନାନ୍ସ ଆଇନ ଅବଜ୍ଞାକୁ ଆୟତ୍ତ କରି ନ ପାରୁଥିବା ହେତୁ ନୂତନ ଅର୍ଡିନାନ୍ସ ପୁଣି ବଢ଼ାଇ ଜାରି କରୁଥିଲେ । କଂଗ୍ରେସ କାର୍ଯ୍ୟକାରୀ ସମିତିର ଅଧିକାଂଶ ସଭ୍ୟ ଗିରଫ ହୋଇଯାଇଥିଲେ । ମାତ୍ର ତାଙ୍କ ବଦଳରେ ନୂଆ ନୂଆ ସଭ୍ୟ ନିଆଯାଇ ଏହି କାର୍ଯ୍ୟ କରୁଥାନ୍ତି । ପ୍ରତ୍ୟେକ ସରକାରୀ ଅର୍ଡିନାନ୍ସ ବିରୁଦ୍ଧରେ କିପରି କାର୍ଯ୍ୟ କରିବାକୁ ହେବ, ସେ ସମ୍ବନ୍ଧରେ କାର୍ଯ୍ୟକାରୀ ସମିତି ନିର୍ଦ୍ଦେଶ ଦେବାକୁ ଲାଗିଲା । ସାରା ଦେଶରେ କେବଳ ସମ୍ବାଦପତ୍ର ପ୍ରକାଶ ଛଡ଼ା ଅନ୍ୟ ସବୁ କଥାରେ କଂଗ୍ରେସ ନିର୍ଦ୍ଦେଶ ସମସ୍ତେ ମାନି ଚାଲିଲେ ।

ସମ୍ବାଦପତ୍ରକୁ ଅଧିକାର ଆୟତ୍ତ କରିବା ନିମନ୍ତେ ଯେତେବେଳେ ନୂତନ ଅର୍ଡିନାନ୍ସ ଜାରି ହେଲା ଏବଂ ସମ୍ବାଦପତ୍ରମାନଙ୍କଠାରୁ ଜାମିନ ଟଙ୍କା ଦାବୀ କରାଗଲା, ସେତେବେଳେ ଜାତୀୟବାଦୀ ସମ୍ବାଦପତ୍ରମାନେ ଟଙ୍କା ନ ଦିଅନ୍ତୁ ଏବଂ ପ୍ରକାଶ ବନ୍ଦ କରିବା ନିମନ୍ତେ କାର୍ଯ୍ୟକାରୀ ସମିତି ନିର୍ଦ୍ଦେଶ ଦେଲା । ଏହା ଗ୍ରହଣ କରିବା ସମ୍ବାଦପତ୍ର ପରିଚାଳକମାନଙ୍କ ପକ୍ଷରେ କଷ୍ଟକର ଥିଲା—କାରଣ ସେତେବେଳେ ଖବର ପାଇଁ ସାଧାରଣଙ୍କ ଭିତରେ ବେଶି ଦାବୀ ଥିଲା । ତଥାପି କେତେକ ମଡ଼ରେଟ କାଗଜ ବ୍ୟତୀତ ଅଧିକ ସଂଖ୍ୟକ ସମ୍ବାଦପତ୍ର ପ୍ରକାଶ ବନ୍ଦ କଲେ । ଏହା ଫଳରେ ନାନାପ୍ରକାର ଗୁଜବ ଦେଶରେ ପ୍ରଚଳିତ ହେଲା । ମାତ୍ର ସେମାନେ ବେଶିଦିନ ଏପରି ରହିପାରିଲେ ନାହିଁ । ଲୋକ ସମ୍ଭାଳିବା ମୁସ୍କିଲ ହେଲା । ମଡ଼ରେଟ କାଗଜଗୁଡ଼ିକର ବ୍ୟବସାୟ ପ୍ରସାର କରିବା ଦେଖି ସେମାନେ ସହ୍ୟ କରିପାରିଲେ ନାହିଁ । ତେଣୁ ଅଧିକାଂଶ କାଗଜ ପୁନର୍ବାର ପ୍ରକାଶିତ ହେଲା ।

ଗାନ୍ଧିଜୀ ମେ ମାସ ୫ ତାରିଖରେ ଗିରଫ ହୋଇଥିଲେ । ତାଙ୍କ ଗିରଫ ପରେ ପଶ୍ଚିମ ଉପକୂଳରେ ଲୁଣ ଗୋଲା ଆକ୍ରମଣ ଚାଲିଲା । ଏହି ଆକ୍ରମଣବେଳେ ପୁଲିସ ଅତି ଅମାନୁଷିକ ବ୍ୟବହାର କରିଥିଲା । ବମ୍ବେ ସହର ସେତେବେଳେ କେନ୍ଦ୍ର ହୋଇ ପଡ଼ିଲା — ଏଠାରେ ବଡ଼ ବଡ଼ ହରତାଳ ଓ ଶୋଭାଯାତ୍ରା ହେଉଥିଲା ଏବଂ ଲାଠିମାଡ଼ ଚାଲିଥାଏ । ଲାଠି ମାଡ଼ରେ ଆହତ ଲୋକଙ୍କ ଚିକିତ୍ସା ନିମନ୍ତେ ଜରୁରୀ ହସ୍ପିଟାଲ ସବୁ ଖୋଲା ହୋଇଗଲା । ଅନେକ ଉଲ୍ଲେଖଯୋଗ୍ୟ ଘଟଣା ବମ୍ବେ ସହରରେ ଘଟିଥିଲା ଏବଂ ଏହା ବଡ଼ ସହର ହୋଇଥିବାରୁ ଏଠାର ଘଟଣାସବୁ ବେଶି ପ୍ରଚାରିତ ହୋଇ ପାରୁଥିଲା । ଏହିପରି ଗୁରୁତ୍ୱପୂର୍ଣ୍ଣ ଘଟଣା ସବୁ ଛୋଟ ସହର ଏବଂ ମଫସଲ ଅଞ୍ଚଳରେ ଘଟିଥିଲେ ସୁଦ୍ଧା ସେପରି ପ୍ରଚାର ହୋଇପାରୁ ନ ଥିଲା ।

ଜୁନମାସର ଶେଷାର୍ଦ୍ଧ ବେଳକୁ ମୋର ପିତା ବମ୍ବେ ଗଲେ—ତାଙ୍କ ସହିତ ମୋର ମାଆ ଓ କମଳା ଗଲେ । ସେମାନେ ବିରାଟ ଅଭ୍ୟର୍ଥନା ପାଇଲେ ଏବଂ ସେମାନଙ୍କର ଅବସ୍ଥାନ ସମୟରେ ସେଠାରେ କେତେକ-ବାର ଭୀଷଣ ଲାଠି ପ୍ରହାର ହୋଇଥିଲା । ବାସ୍ତବିକ ଏ ସବୁ ବମ୍ବେରେ ପ୍ରାୟ ଘଟୁଥାଏ । ୧୫ ଦିନ ବା ତା ପରେ ଏଠାରେ ଏକ ଅସାଧାରଣ ଘଟଣା ଘଟିଲା । ମାଳବ୍ୟଜୀ ଏବଂ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ଓ ଏକ ବିରାଟ ଜନତାର ପଥ ପୁଲିସ ଅବରୋଧ କରିବାରୁ ସେମାନେ ପୁଲିସର ସମ୍ମୁଖୀନ ହୋଇ ସାରା ରାତି ସେଠାରେ ବସି ରହିଥିଲେ ।

ବମ୍ବେରୁ ଫେରିଲା ପରେ ଜୁନ ତା ୩୦ ରିଖରେ ପିତା ଗିରଫ ହେଲେ—ତାଙ୍କ ସହିତ ସଯ୍ୟଦ ମାମୁଦ ମଧ୍ୟ ଗିରଫ ହେଲେ । ବେଆଇନ କାର୍ଯ୍ୟକାରୀ ସମିତିର ସଂପାଦକ ଓ ଅସ୍ଥାୟୀ ସଭାପତି ରୂପେ ସେମାନେ ଗିରଫ ହେଲେ । ଉଭୟଙ୍କୁ ୬ ମାସ ଲେଖାଏଁ ଜେଲ ଦଣ୍ଡ ହେଲା । ନିରସ୍ତ୍ର ଜନତା ଉପରେ ଗୁଳି କରିବାକୁ ଆଦେଶ ହେଲେ ସୈନ୍ୟ ବା ପୁଲିସମାନଙ୍କର କର୍ତ୍ତବ୍ୟ କଣ, ସେହି ସମ୍ବନ୍ଧରେ ଏକ ଇସ୍ତାହାର

ଦେଇଥିବାରୁ ସମ୍ଭବତଃ ମୋ ପିତାଙ୍କୁ ଗିରଫ କରାଗଲା । ଏହା ଇସ୍ତାହାରଟି ବ୍ରିଟିଶ ଭାରତର ଆଇନ ଅନୁସାରେ ଲେଖା ହୋଇଥିଲା । ତଥାପି ଏହା ଉତ୍ତେଜନକ ଓ ଆପତ୍ତିକର ବୋଲି କୁହାଗଲା ।

ବମ୍ବେରେ ପିତାଙ୍କୁ ଅତ୍ୟଧିକ ପରିଶ୍ରମ କରିବାକୁ ପଡ଼ିଥିଲା । ଖୁବ୍ ଭୋରରୁ ଅନେକ ରାତି ପର୍ଯ୍ୟନ୍ତ ସେ ବ୍ୟସ୍ତ ରହୁଥିଲେ ଏବଂ ପ୍ରତ୍ୟେକ ଗୁରୁତର ବିଷୟରେ ସିଦ୍ଧାନ୍ତ କରିବାର ଦାୟିତ୍ୱ ତାଙ୍କୁ ନେବାକୁ ପଡ଼ୁଥିଲା । ଅନେକ ଦିନରୁ ସେ ଅସୁସ୍ଥ ଥିଲେ—ଏଥିରେ ଅଧିକ କ୍ଲାନ୍ତ ହୋଇ ଫେରିବାରୁ ଡାକ୍ତରମାନଙ୍କ ପରାମର୍ଶ ଅନୁସାରେ ସେ ପୂର୍ଣ୍ଣ ବିଶ୍ରାମ ନେବାର ସ୍ଥିର କଲେ । ସେ ମସୋରୀ ଯିବା ସକାଶେ ଜିନିଷପତ୍ର ବାନ୍ଧିଲେ—ମାତ୍ର ସେ ମସୋରୀ ଯେଉଁଦିନ ଯିବା ନିମନ୍ତେ ସ୍ଥିର କରିଥିଲେ, ତାର ପୂର୍ବଦିନ ଆସି ନୈନୀ କେନ୍ଦ୍ର ଜେଲରେ ଆମ ସହିତ ଯୋଗ ଦେଲେ ।

## ନୈନୀ ଜେଲରେ

ପ୍ରାୟ ସାଢ଼େ ବର୍ଷପରେ ମୁଁ ପୁଣି ଜେଲକୁ ଫେରିଗଲି । ଜେଲ ଜୀବନ ସ୍ମୃତି ଏକପ୍ରକାର ଭୁଲିଯାଇଥିଲି । ପ୍ରଦେଶର ଏକ ବଡ଼ ଜେଲ ନୈନୀ ଜେଲରେ ମୁଁ ରହିଲି । ଏଥରକ ମୋତେ ଏକାକୀ ରହିବାର ନୂତନ ଅଭିଜ୍ଞତା ଅର୍ଜନ କରିବାକୁ ହେଲା । ଜେଲର ବଡ଼ ପାଚେରୀ ଭିତରେ ପ୍ରାୟ ୨୨୦୦, ୨୩୦୦ ବନ୍ଦୀ ଥାଆନ୍ତି—ତା' ଭିତରେ ଆଉର ଗୋଟିଏ ଛୋଟ ଓ ଅଲଗା ପାଚେରୀ ଭିତରେ ମୁଁ ରହିଲି । ଏହା ଏକ ବୃତ୍ତାକାର ସ୍ଥାନ—ପ୍ରାୟ ଶହେ ଫୁଟ ପରିଧି ହେବ ଏବଂ ଏହାର ଚାରିଆଡ଼େ ୧୫ ଫୁଟ ଉଚ୍ଚ କାନ୍ଥ ଅଛି । ଏହା ମଝିରେ ଏକ ଅତି କୁତ୍ସିତ କୋଠରେ ଚାରୋଟି ସେଲଘର ଥାଏ । ଏଥିଭିତରୁ ପରସ୍ପର ସଂଲଗ୍ନ ଦୁଇଟି ସେଲ ମତେ ଦିଆଯାଇଥିଲା—ଗୋଟିଏ ଗାଧୋଇବା ଘର ଏବଂ ଅନ୍ୟଟି ପାଇଖାନା ଭାବରେ ବ୍ୟବହାର କରୁଥିଲି । ଅନ୍ୟଗୁଡ଼ିକ କେତେଦିନ ପାଇଁ ବ୍ୟବହାର ନ ହୋଇ ରହିଲା ।

ବାହାରେ ଅତ୍ୟନ୍ତ କର୍ମଠ ଉଲ୍ଲାସପୂର୍ଣ୍ଣ ଜୀବନ ପରେ ଜେଲରେ ମୁଁ ବଡ଼ ଏକାକୀ ଏବଂ ହତାଶ ଅନୁଭବ କଲି । ମୋତେ ବଡ଼ କ୍ଲାନ୍ତ ଲାଗିଲା ଏବଂ ୨।୩ ଦିନ ପର୍ଯ୍ୟନ୍ତ ମୁଁ ଅନେକବେଳ ପର୍ଯ୍ୟନ୍ତ ଶୋଇ ରହିଲି । ଶୀଘ୍ର ଦିନ ଆଉମ୍ଭ ହୋଇଯାଇଥାଏ । ଭିତରେ କୋଠରୀ ଏବଂ ତହିଁ ସଂଲଗ୍ନ ପାଚେରୀ ମଧ୍ୟରେ ଥିବା ସଂକୀର୍ଣ୍ଣ ସ୍ଥାନରେ ରାତିରେ ମୋତେ ବାହାରେ ଶୋଇବାକୁ ଅନୁମତି ମିଳିଥିଲା । ମୋ ଖଟକୁ ଜଞ୍ଜିରରେ ଦୃଢ଼ ଭାବରେ ବନ୍ଧା ଯାଇଥିଲା—କାରଣ ମୁଁ ଯଦି ଏହାକୁ ନେଇ ପଳାଇ ଯାଇପାରେ କିମ୍ବା ସମ୍ଭବତଃ ଏହାକୁ ଏକ ସିଢ଼ି ଭାବରେ ବ୍ୟବହାର କରି ପାଚେରୀ ଡେଇଁ ପଳାଇ ଯିବାରୁ ବାଧା ଦେବାଲାଗି ଏହି ସତର୍କତା ଅବଲମ୍ବନ କରି ଯାଇଥିଲା । ରାତିରେ ଅଦ୍ଭୁତ ଶବ୍ଦ ସବୁ ହେଉଥିଲା । ପ୍ରଧାନ ଦାନ୍ତ ଜଗିଥିବା ବନ୍ଦୀ ଓ ଭାର-ପ୍ରାପ୍ତ ଅଫିସରମାନେ ନାନାଭାବରେ ଚିତ୍କାର କରୁଥିଲେ—ବେଳେ ବେଳେ ସୁଦୂର ପବନର ଶବ୍ଦପରି ଏହି ଚିତ୍କାର ଶୁଭୁଥାଏ । ବାରିକ ଭିତରେ ଯେଉଁ ରାତି ପହରା ଥାଏ, ସେ ତା ପାଖରେ କେତେ ବନ୍ଦୀ ଅଛନ୍ତି ତାହା ବଡ଼ ପାଟିରେ ଗଣେ ଏବଂ ସବୁ ଠିକ୍ ଅଛି ବୋଲି କୋହରେ ପାଟି କରି କହେ; ଅନେକ ସମୟରେ ରାତିରେ ପହରା ପଡ଼ୁଥିବା କୌଣସି ଜେଲ କର୍ମଚାରୀ ଜେଲ ଭିତରେ ବୁଲିଯିବା ସମୟରେ ଆମ ପାଚେରୀ ନିକଟକୁ ଆସି ଯେଉଁ ଓ୍ୟାର୍ଡ଼ର ପହରା ଦେଉଥାଏ, ତା' ଠାରୁ ଖବର ବୁଝନ୍ତି । ଅନ୍ୟ ବାରିକ୍‌ମାନଙ୍କଠାରୁ ମୁଁ ବହୁତ ଦୂରରେ ଥିବାରୁ ଏ ସବୁ ଶବ୍ଦ ଅସ୍ପଷ୍ଟ ଭାବରେ ଶୁଣିପାରେ—ପ୍ରଥମେ ଏହା କଣ ମୁଁ ବୁଝିପାରି ନ ଥିଲି । ବେଳେ ବେଳେ ମୁଁ ଏକ ଅରଣ୍ୟ ପାଖରେ ପହଞ୍ଚିଲି ପରି ବୋଧହୁଏ—ହୁଏତ ପଶୁମାନଙ୍କୁ ଫସଲ ଜମିରୁ ହରୁଡ଼ାଇବା ପାଇଁ କୃଷୀମାନେ ପାଟି କରୁଛନ୍ତି; ବେଳେ ବେଳେ ମନେହୁଏ, ସତେକି ମୁଁ ଜଙ୍ଗଲ ଭିତରେ ରହିଛି ଏବଂ ରାତିରେ ପଶୁମାନେ ଏହିପରି ଶବ୍ଦ କରୁଛନ୍ତି ଏପରି ।

ମୁଁ ବେଳେ ବେଳେ ଖୁବ ତାଟକା ହୁଏ, ଏଇଟା କଣ ମୋର ରୋଗ ନା ଏକ ବୃତ୍ତାକାର କାନ୍ଥ ଭିତରେ ବନ୍ଦୀ ହୋଇଛନ୍ତି ବୋଲି ମନରେ ବେଶି ଭାବ ଜାଗ୍ରତ କରାଏ କୌଣସି କାରଣରୁ ବନ୍ଦ ଅତ୍ୟାଗୃହ ହୋଇଗଲାପରି ମନେହୁଏ । ଦିନବେଳେ ଏହି ପାଚେରି ହେତୁ ଆକାଶର କେବଳ ଏକ ସଂକୀର୍ଣ୍ଣ ଅଂଶ ମୁଁ ଦେଖିପାରେ । ମୁଁ ସନ୍ତୁଷ୍ଟ ଦୃଷ୍ଟିରେ ଦେଖେ—"ଏହି ନୀଳବର୍ଣ୍ଣକୁ ବନ୍ଦୀମାନେ ଆକାଶ ବୋଲି କହନ୍ତି—ରୂପା ପାଲଗୁଡ଼ିକ ଉଡ଼ିଲାବେଳେ ଆକାଶରେ ମେଘ ଭାସିଗଲା ଭଳି ମନେ କରନ୍ତି ।" ରାତିରେ ମୁଁ ଆହୁରି ଅଧିକ ଆବଦ୍ଧ ହୋଇ ରହିଲାପରି ବୋଧହୁଏ ଏବଂ ଏକ କୂଅ ତଳେ ରହିଲାପରି ମନେହୁଏ । କାରଣ ମୁଁ ଯେଉଁ ନକ୍ଷତ୍ର ଖଚିତ ଆକାଶ ଦେଖିପାରୁଛି, ତାହାହିଁ ଏତ ଆଉ ବାସ୍ତବ ନୁହେଁ ଏବଂ ଏକ ଅକୃତ୍ରିମ ଗ୍ରହା-ବାସ ମାତ୍ର ।

ମୋ ରହିବା ସ୍ଥାନକୁ ଜେଲରେ କୁତ୍ତାଘର ବୋଲି କହୁଥିଲେ । ଏହା ଏକ ପୁରୁଣା ନାମ—ମୋ ସହିତ ଏହାର କୌଣସି ସମ୍ପର୍କ ନାହିଁ । ବିପଜ୍ଜନକ ଅପରାଧୀଙ୍କୁ ଅଲଗା ରଖିବା ଉଦ୍ଦେଶ୍ୟରେ ଏହି ସ୍ତେଠ ବାରକ୍ ଟାଓର ହୋଇଥିଲା । ପରେ ଏହା ରାଜବନ୍ଦୀ, ଅନ୍ତରୀଣ ଇତ୍ୟାଦିଙ୍କ ପାଇଁ ବ୍ୟବହାର ହେଉଛି—ଏହିରୂପେ ଜେଲରେ ଅନ୍ୟ ଅଂଶରୁ ସେମାନଙ୍କୁ ଅଲଗା ରଖାଯାଇଥାଏ । ମୋ ପାଚେରୀରୁ କିଛି ଦୂରରେ ଗୋଟିଏ ଜିନିଷ ମୁଁ ପ୍ରଥମେ ମୋ ବାରଣ୍ଡାରୁ ଦେଖି ଚମକି ପଡ଼ିଥିଲି । ଏହା ଗୋଟାଏ ମସ୍ତବଡ଼ ପଞ୍ଜୁରୀ ପରି ଦେଖାଯାଉଥିଲା ଏବଂ ଏହା ଭିତରେ ଲୋକ ଘୂରି ଘୂରି ବୁଲୁଥାନ୍ତି । ମୁଁ ପରେ ଜାଣିଲି ଯେ ଏହା ଏକ ପାଣିକଳ—ଏକାଥରକେ ୧୬ ଜଣ ଲାଗି ଏଥିରୁ ପାଣି ପମ୍ପ କରି ବାହାର କରନ୍ତି । ପ୍ରତ୍ୟେକ ଜିନିଷ ଲୋକର ଅଭ୍ୟାସରେ ପଡ଼ିଗଲା ପରି ମୋର ଏଇଟା ମଧ୍ୟ ଅଭ୍ୟାସରେ ପଡ଼ିଗଲା—ମାତ୍ର ମସ୍ତିଷ୍କ ଭ୍ରମର ଏହା ଏକ ନିର୍ବୋଧ ଏବଂ ଅସଭ୍ୟ ବ୍ୟବହାର ପରି ମୋତେ ବୋଧ ହେଲା । ମୁଁ ଏହି ବାଟେ ଗଲାବେଳେ ମୋତେ ଯାଦୁଘର ଭଳି ଲାଗେ ।

କେତେଦିନ ସକାଳେ କସରତ୍ ବା' ଅନ୍ୟ କିଛି କାମରେ ମୋତେ ମେ ପାଚେରୀ ବାହାରକୁ ଯିବାକୁ ଅନୁମତି ମିଳିଲା ନାହିଁ । ପରେ ସକାଳେ ପ୍ରାୟ ଅନ୍ଧାରୁଆ ବେଳେ ମୋତେ ଅଧଘଣ୍ଟା ପାଇଁ ଛଡ଼ା ଦିଆଗଲା -- ଏହି ସମୟରେ ମୁଁ ପ୍ରଧାନ କାନ୍ଥ ପାଖେ ପାଖେ ଚାଲି ବା ଦୌଡ଼ିପାରେ । ମୁଁ କୌଣସି ବନ୍ଦୀ ସହିତ ସମ୍ପର୍କରେ ଆସିବି ନାହିଁ କିମ୍ବା ମୋତେ କେହି ଦେଖି ପାରିବେ ନାହିଁ ବୋଲି ଏହି ବେଳର ସମୟ ନିର୍ଦ୍ଦିଷ୍ଟ ହୋଇଗଲା । ଏପରି ଟିକିଏ ବାହାରକୁ ଯିବା ମୋତେ ଖୁବ୍ ଭଲ ଲାଗିଲା । ସେହି ଅଳ୍ପ ସମୟ ମଧ୍ୟରେ ଯେତେଦୂର ସମ୍ଭବ ଖୋଲା ପବନରେ କସରତ୍ କରିବା ନିମନ୍ତେ ମୁଁ ଦୌଡ଼ିବାକୁ ଲାଗିଲା ଏବଂ କ୍ରମେ ଏହାକୁ ବଢ଼ାଇ ପ୍ରତିଦିନ ପ୍ରାୟ ଦୁଇ ମାଇଲରୁ ଅଧିକ ଦୌଡ଼ୁଥିଲି ।

ମୁଁ ଖୁବ୍ ସକାଳୁ ଉଠେ—ପ୍ରାୟ ୪ଟା, ସମୟ ସମୟରେ ସାଢ଼େ ୩ଟାରେ ମୋର ନିଦ ଭାଙ୍ଗିଯାଏ । ଏତେବେଳେ ବେଶ୍ ଅନ୍ଧାର ଥାଏ । ମୋତେ ଯେଉଁ ଆଲୁଅ ଦିଆଯାଏ, ତାହା ବେଶୀ ପଢ଼ିବା ପାଇଁ ଉପଯୁକ୍ତ ହୋଇ ନ ଥିବାରୁ ମୁଁ ଶୀଘ୍ର ଶୋଇବାରୁ ସମ୍ଭବତଃ ଏପରି ନିଦ ଭାଙ୍ଗିଯାଏ । ମୁଁ ତାରକାର ଗତି ଲକ୍ଷ୍ୟ କରିବାକୁ ଭଲ ପାଏ ଏବଂ ମୋର ଜଣାଶୁଣା ତାରକା ମଣ୍ଡଳୀର ସ୍ଥିତି ଦେଖି ମୁଁ ସମୟ ଜାଣିପାରେ । ମୋ ପାଚେରି ଉପରେ ଠିକ୍ ମୁଁ ଧ୍ରୁବତାରା ଥିବାର ଦେଖି ପାରୁଥିଲି ଏବଂ ଦେଖିଲା ମାତ୍ରକେ ମୋର ମନ ଉଚ୍ଛନ୍ନ ହୁଏ । ଏକ ଘୂର୍ଣ୍ଣାୟମାନ ଆକାଶ ଭିତରେ ଏହା ଯେପରି ନିଷ୍ଠାବଦ୍ଧତାର ପ୍ରତୀକ ରୂପେ ଦେଖାଯାଏ ।

ମସକ ପର୍ଯ୍ୟନ୍ତ ମୋର କେହି ସାଥି ନ ଥିଲେ । ତଥାପି ମୁଁ ଏକୁଟିଆ ନ ଥିଲି । କାରଣ ମୋ ପାଖରେ ଜଣେ ବନ୍ଦୀ ଓ୍ୱାର୍ଡର, ଜଣେ ବନ୍ଦୀ ସୁଇପର ଏବଂ ଘର ସଫା କରିବା ନିମନ୍ତେ ଆଉ ଜଣେ ବନ୍ଦୀ । ସମୟ ସମୟରେ କୌଣସି କାର୍ଯ୍ୟରେ ଅନ୍ୟ ବନ୍ଦୀ ସବୁ

ସେଠାକୁ ଆସନ୍ତି, ସେଥିମଧ୍ୟରୁ ଅଧିକାଂଶ ବନ୍ଦୀ ଓଭରସିଅର—ଦୀର୍ଘ କାରାବାସ ଭୋଗିଲାବାଲା । ସାଧାରଣତଃ ଯାବଜ୍ଜୀବନ କାରାବାସ ଲଭିଥିବା ବନ୍ଦୀ ଆସନ୍ତି । ସାଧାରଣତଃ ଯାବଜ୍ଜୀବନ କାରାବାସ ୨୦ ବର୍ଷ ଲମ୍ବା ତହିଁରୁ କମ୍ ଜେଲ ଭୋଗିଲା ପରେ ଶେଷ ହୋଇଯାଏ । ମାତ୍ର ଜେଲରେ ଏପରି ଅନେକ ଲୋକ ଥାଆନ୍ତି, ସେମାନେ ୨୦ ବର୍ଷ ଭୋଗିଲା ପରେ ମୁକ୍ତ ଖଲାସ ହୋଇ ନ ଥାନ୍ତି । ମୁଁ ନେଳରେ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ଦେଖିଲି । କଏଦୀମାନଙ୍କର ପୋଷାକ ଉପରେ ତାଙ୍କ ଛାତି ପାଖରେ ଏକ କାଠ ବୋର୍ଡ଼ ଝୁଲୁଥାଏ—ସେଥିରେ ତାଙ୍କୁ କେତେ କାରାବାସ ହୋଇଛି ଏବଂ କେତେ ତାରିଖରେ ସେ ଖଲାସ ହେବେ, ତାହା ଲେଖାଥାଏ । ମୁଁ ଜଣେ କଏଦୀର କାଠରୁ ଦେଖିଲି ଯେ, ସେ ୧୯୯୭ ଖ୍ରୀଷ୍ଟାବ୍ଦରେ ଖଲାସ ହେବ ବୋଲି ଲେଖା ହୋଇଛି । ୧୯୬୦ ବେଳକୁ ସେ ଅନେକ ବର୍ଷ ଜେଲ ଭୋଗିସାରି ଥିଲା—ତଥାପି ତାର ମଧ୍ୟମ ବୟସ ମାତ୍ର । ସମ୍ଭବତଃ ତାକୁ ଅନେକ ଅଭିଯୋଗରେ ଶାସ୍ତି ଦିଆଯାଇଥିଲା—ଗୋଟିକ ପରେ ଗୋଟିଏ ଶାସ୍ତି ଭୋଗ ତାକୁ ମୋଟରେ ୭୫ ବର୍ଷ ଭୋଗିବାକୁ ଦିଆଯାଇଥିଲା ।

ବର୍ଷ ବର୍ଷ ଧରି ଏହି ଯାବଜ୍ଜୀବନ କାରାବାସୀମାନେ ଗୋଟିଏ ପିଲା, ସ୍ତ୍ରୀଲୋକ ଏବଂ ଏପରିକି ପଶୁଟିଏ ସୁଦ୍ଧା ଦେଖି ନଥାନ୍ତି । ସେ-ମାନେ ବାହାର ଜଗତରୁ ସମସ୍ତ ସମ୍ପର୍କ ହରାଇ ଥାଆନ୍ତି—ଲୋକଙ୍କ ସହିତ କିଛି ସମ୍ପର୍କ ନ ଥାଏ । ସେମାନଙ୍କ ଭିତରେ ଭୟ, ପ୍ରତିହିଂସା ଏବଂ ଘୃଣା ଭାବ ଭରିଥାଏ; ଦୁନିଆର ଯାହା କିଛି ଭଲ, ଦୟା ଓ ଆନନ୍ଦ ବାଦ୍ ଦେଲେ ଖାଲି ଖଣ୍ଡପଡ଼ି ରହିଯାଏ—କ୍ରମେ ଘୃଣା ସୁଦ୍ଧା ଶୁଖିଯାଏ ଏବଂ ଲୋକର ଜୀବନ ଏକ ଆଶାଶୂନ୍ୟ ଜଡ଼ତ୍ୱ, ଯନ୍ତ୍ରଚାଳିତ ପରି ହୋଇଯାଏ । ଆପଣାଛାଏଁ ଚାଳିତ କଲା ପରି ସେମାନେ ତାଙ୍କ ଦିନ କାଟନ୍ତି—ପ୍ରତ୍ୟେକଙ୍କର ଜୀବନ ଠିକ୍ ଏକା ପରି କଟେ; ଭୟ ଛଡ଼ା ଆଉ କୌଣସି ଭାବ ମନରେ ନ ଥାଏ । କଏଦୀମାନଙ୍କୁ ଥରକୁ ଥର ଓଜନ କରାଯାଏ, ମାପ କରାଯାଏ । ମାତ୍ର ଅତ୍ୟାଚାରର ଏହି ଲକ୍ଷଣ

ବାୟୁମଣ୍ଡଳ ଭିତରେ ଯେଉଁ ମନ ଓ ହୃଦ୍‌ ଅବସନ୍ନ ହୋଇଯାଏ, ତାହା କିପରି ବଞ୍ଚି ପାରିବ ? ମୃତ୍ୟୁ ଶାସ୍ତି କ୍ଷେତ୍ରରେ ଲୋକେ ମୁକ୍ତ କରନ୍ତି ଏବଂ ପ୍ରକୃତରେ ମୋତେ ବଡ଼ ମନଲାଗେ । ମାତ୍ର ସାରା ଜୀବନ କଏଦୀ ରୂପେ କଟାଇବାର ଦୀର୍ଘ ଯନ୍ତ୍ରଣା ଦେଖିଲେ, ଏପରି ଅଳ୍ପେ ଅଳ୍ପେ ମରିବା ଅପେକ୍ଷା ଫାଶି ପାଇ ମରିବା ଭଲ ବୋଲି ମୋର ମନେ ହୁଏ । ଯାବଜ୍ଜୀବନ କାରା-ବାସ ଭୋଗୁଥିବା ଜଣେ କଏଦୀ ଥରେ ମୋ ପାଖକୁ ଆସି ମୋତେ ପଚାରିଲା —"ଯାବଜ୍ଜୀବନ ବନ୍ଦୀଙ୍କ ପାଇଁ କଣ ହେବ ? ସ୍ୱରାଜ୍ୟ ହେଲେ ସେମାନଙ୍କୁ କ'ଣ ଏହି ନର୍କରୁ ଉଦ୍ଧାର କରାଯିବ ?"

ଏହି ଯାବଜ୍ଜୀବନ କାରାବାସୀ କିଏ ? ଏମାନଙ୍କ ଭିତରୁ ଅନେକେ ଡକାଇତି ମକଦ୍ଦମାରେ ଆସିଥାଆନ୍ତି — ଏକ ସଙ୍ଗରେ ପ୍ରାୟ ୫୦।୧୦୦ ଜଣ ଏକାଠି ଶାସ୍ତି ଭୋଗନ୍ତି । ଏମାନଙ୍କ ମଧ୍ୟରୁ କେତେକ ସମ୍ଭବତଃ ଦୋଷୀ, ମାତ୍ର ଅଧିକାଂଶ ପ୍ରକୃତ ନିର୍ଦୋଷୀ କି ନା ସେ ବିଷୟରେ ମୋର ସନ୍ଦେହ ଜନ୍ମେ; ଏପରି ମକଦ୍ଦମାରେ ଲୋକଙ୍କୁ ପକାଇ ଦେବା ସହଜ । ଜଣେ ପକ୍ଷସମର୍ଥନକାରୀ (Approver) ମିଳିଲେ ଏବଂ ଚିହ୍ନଟ ଦେବାବାଲା ହେଲେ ଯଥେଷ୍ଟ ହୋଇଥିଲା । ଆଜିକାଲି ଡକାଇତି ବଢ଼ୁଛି ଏବଂ ବର୍ଷକୁ ବର୍ଷ କଏଦୀଙ୍କ ସଂଖ୍ୟା ମଧ୍ୟ ବଢ଼ିବାରେ ଲାଗିଛି । ଲୋକେ ଉପାସ ରହିଲେ କଣ କରିବେ ? ଅପରାଧ ବଢ଼ୁଛି ବୋଲି ମାଜିଷ୍ଟ୍ରେଟ ଓ ବିଚାରପତିମାନେ ବଡ଼ ଚିତ୍କାର କରନ୍ତି; ମାତ୍ର ଏହାର ଅର୍ଥନୈତିକ କାରଣ ସମ୍ବନ୍ଧରେ ସେମାନେ ସମ୍ପୂର୍ଣ୍ଣ ଅନ୍ଧ ଥାଆନ୍ତି ।

ଏଠାରେ କୃଷକମାନେ ବି ଥାଆନ୍ତି — ହୁଏତ ଜମି କଳହ ପାଇଁ ଗାଁରେ ଝଗଡ଼ା ଦଙ୍ଗା ହୁଏ — ଲାଠି ଚାଲେ — କେହି ମରିଯାଏ । ତା ଫଳରେ ଅନେକ ଲୋକ ଯାବଜ୍ଜୀବନ କିମ୍ବା ଦୀର୍ଘକାଳ କାରାବାସ ପାଆନ୍ତି । ବେଳେ ବେଳେ ଗୋଟିଏ ପରିବାରର ସମସ୍ତ ପୁରୁଷ ଏହିପରି ଜେଲ ପାଆନ୍ତି—ସ୍ତ୍ରୀଲୋକମାନଙ୍କୁ ତାଙ୍କ ଭାଗ୍ୟ ଆଦରି ପଡ଼ି ରହିବାକୁ ପଡ଼େ । ଏମାନେ ଅପରାଧୀ ଶ୍ରେଣୀର ନୁହନ୍ତି । ସାଧାରଣତଃ ଏମାନେ

ଅତ ସୁନ୍ଦର ମୁବକ—ସାଧାରଣ ଗ୍ରାମବାସୀଠାରୁ ଶାରୀରିକ ଓ ମାନସିକ ଉଭୟ ଢଗରେ ଉଚ୍ଚରେ ଥାଆନ୍ତି । ଏହି ଲୋକଙ୍କୁ ଅନ୍ୟ କିଛି ଶିଳ୍ପ ବା ଉପଯୋଗୀ କାର୍ଯ୍ୟ ଶିକ୍ଷାଦେଲେ ଏମାନେ ଦେଶର ମୂଲ୍ୟବାନ ସମ୍ପଦ ହୋଇପାରିବେ ।

ଅବଶ୍ୟ ବିଦେଶୀୟ ଜେଲମାନଙ୍କରେ ଅନେକ ଭୟଙ୍କର ସମାଜ-ବିରୋଧୀ, ଜାତି ପ୍ରତି ବିପଜ୍ଜନକ ଅପରାଧୀ ରହିଥାଆନ୍ତି । ମାତ୍ର ଜେଲ-ଖାନାରେ ମୁଁ ଅନେକ ମଧ୍ୟକ ବାଳକ ଓ ମୁବକଙ୍କୁ ଦେଖିଛି ଯେଉଁମାନଙ୍କୁ ସହଜରେ ବିଶ୍ୱାସ କରାଯାଇ ପାରେ । ପ୍ରକୃତ ଅପରାଧୀଙ୍କ ଛଡ଼ା ଅନ୍ୟ ପ୍ରକାର ବନ୍ଦୀ କେତେ ଅନୁପାତରେ ଜେଲରେ ଥାଆନ୍ତି, ମୋତେ ଜଣା-ନାହିଁ—ସମ୍ଭବତଃ ସରକାର ଏହା ଜାଣିବା ଲାଗି କେବେ ଇଚ୍ଛା କରିନାହିଁ । ନ୍ୟୁୟର୍କର ସିଙ୍ଗ୍ ସିଙ୍ଗ୍ କାରାଗାରର ଓ୍ୟାର୍ଡ଼ନ ଲଜ-ଇସ୍ ଇ. ଲେ ଏ ସମ୍ବନ୍ଧରେ କେତେ ଆମୋଦପ୍ରଦ ପ୍ରସ୍ତାବ ତାହାର କରିଛନ୍ତି । ସେ କହୁଛନ୍ତି, ତାଙ୍କ ଅଧୀନରେ ଥିବା ଜେଲଖାନାରେ ବନ୍ଦୀଙ୍କ ଭିତରୁ ଶତକଡ଼ା ୫୦ ଜଣଙ୍କର ଅପରାଧ କରିବା ମନୋବୃତ୍ତି ନ ଥାଏ; ଶତକଡ଼ା ୨୫ଜଣ ପାରିପାର୍ଶ୍ୱିକ ଅବସ୍ଥା ଓ ଅନ୍ୟ ପରିସ୍ଥିତି ଯୋଗୁଁ ଏପରି ହୋଇଥାନ୍ତି, ଅବଶିଷ୍ଟ ୨୫ରୁ ଅଧେ ଅର୍ଥାତ୍ ୧୨.୫ ଅଂଶ ହିଁ ଅତ୍ୟନ୍ତ ସମାଜ ବିରୋଧୀ । ଏ କଥା ଜଣା ଶୁଣା ଯେ ଅନ୍ୟାନ୍ୟ ଦେଶ ଅପେକ୍ଷା ଆଧୁନିକ ସଭ୍ୟତାର କେନ୍ଦ୍ର ଓ ବଡ଼ ବଡ଼ ସହରମାନଙ୍କରେ ବେଶୀ ଅପରାଧୀ ହେବାର ଦେଖାଯାଏ । ଆମେରିକାର ଉକ୍ତ ଏହି ପ୍ରଥିବୀ ବିଖ୍ୟାତ ଏବଂ ସଙ୍ଗ୍ ସିଙ୍ଗ୍ କାରାଗାରରେ ଏହି ସବୁ ଭୟଙ୍କର ଅପରାଧୀ ଥାଆନ୍ତି ବୋଲି ବିଶେଷ ଖ୍ୟାତି ଅଛି । ଅଥଚ ସେ ଜେଲର ପରିଚାଳକଙ୍କ ରିପୋର୍ଟରୁ ଜଣାଯାଉଛି, ଶତକଡ଼ା ୧୨.୫ ପ୍ରକୃତରେ ଖରାପ । ମୋର ମନେହୁଏ, ଭାରତୀୟ କାରାଗାରରେ ଏହାର ସଂଖ୍ୟା ଆହୁରି କମ ହେବ ବୋଲି କରାପଦରେ କୁହାଯାଇ ପାରେ । ଆହୁରି ଉନ୍ନତ ଅର୍ଥନୈତିକ ଗତି, ଅଧିକ କାର୍ଯ୍ୟ ଏବଂ ଅଧିକ ଶିକ୍ଷାର ବ୍ୟବସ୍ଥା ହେଲେ ଆମ ଜେଲଖାନା ସବୁ ଖାଲି ପଡ଼ିଯାଇପାରେ । ଅବଶ୍ୟ ଏହାକୁ ସଫଳ କରିବାକୁ ହେଲେ

ଆମର ସାମାଜିକ ପରିସ୍ଥିତିର ଆମୂଳ ପରିବର୍ତ୍ତନ କରି ଏକ ଯୋଜନା କରିବା ଦରକାର । ବ୍ରିଟିଶ ସରକାର ଏହା ବଦଳରେ ଠିକ୍ ବିପରୀତ କଥାହିଁ କରୁଛନ୍ତି । ଏହା ଭାରତୀୟ ପୁଲିସ ଫୌଜ ଏବଂ କାରାଗାର ସଂଖ୍ୟା ବୃଦ୍ଧି କରୁଛି । ଭାରତରେ ଜେଲକୁ ଯିବା ଲୋକଙ୍କ ସଂଖ୍ୟା ଅତ୍ୟନ୍ତ ଅଧିକ । ଏବେ ନିଖିଳ ଭାରତ ବନ୍ଦୀ-ସାହାଯ୍ୟ ସମିତିର ସମ୍ପାଦକଙ୍କ ରିପୋର୍ଟରୁ ଜଣାପଡ଼େ ଯେ, କେବଳ ବମ୍ବେ ପ୍ରଦେଶରେ ୧୯୩୩ରେ ୧୨୮୦୦୦ ହଜାର ଲୋକଙ୍କୁ ଜେଲ ପଠାଯାଇଥିଲା ଏବଂ ସେହି ବର୍ଷ ବଙ୍ଗଳାରେ ୧୨୪୦୦୦* ଲୋକ ଜେଲ ଯାଇଥିଲେ । ମୋତେ ସବୁ ପ୍ରଦେଶର ବିବରଣୀ ଜଣାନାହିଁ; ଦୁଇଟି ପ୍ରଦେଶରେ ଯଦି ଏକ ନିୟୁତର ଚତୁର୍ଥାଂଶ ହୁଏ, ତେବେ ସାରା ଭାରତରେ ପ୍ରାୟ ଏକ ନିୟୁତ ବନ୍ଦୀ ଥିବେ । ଜେଲରେ ଏହା ସ୍ଥାୟୀ ବନ୍ଦୀ ସଂଖ୍ୟା ନୁହେଁ, କାରଣ ଅନେକ ଲୋକ ଅଳ୍ପଦିନ ସକାଶେ କାରାବାସ ପାଇଥାଆନ୍ତି । ସ୍ଥାୟୀ ବନ୍ଦୀ ସଂଖ୍ୟା କମ ହେବ, ତଥାପି ଏହା ଅନେକ । ଭାରତର କେତେକ ବୃହତ୍ ପ୍ରଦେଶରେ ପୃଥିବୀର ସବୁଠାରୁ ବେଶି ଜେଲଖାନା ରହିଛି । ଯୁକ୍ତପ୍ରଦେଶ ଏହି ସମ୍ମାନର ଉପଯୁକ୍ତ ବୋଲି ଧରାଯାଏ, ମାତ୍ର ଏଠାରେ ଜେଲ ଶାସନ ଅତ୍ୟନ୍ତ ଅନୁନ୍ନତ ଓ ପ୍ରତିକ୍ରିୟାଶୀଳ ବନ୍ଦୀକୁ ଜଣେ ବ୍ୟକ୍ତିବିଶେଷ, ମଣିଷ ହିସାବରେ ବିଚାର କରିବାକୁ କିମ୍ବା ତାର ମନୋବୃତ୍ତିକୁ ସଜାଡ଼ିବା ନିମନ୍ତେ ଆଦୌ ଉଦ୍ୟମ ହୁଏ ନାହିଁ । ସବୁଠାରୁ ବେଶୀ ବନ୍ଦୀ ରଖିବାରେ ଏହା ସମସ୍ତଙ୍କୁ ଟପି ଯାଇଛି । ପଳାଇଯିବା ଲାଗି ଖୁବ କମ ଉଦ୍ୟମ ହୁଏ ଏବଂ ଦଶ ହଜାର ଭିତରୁ ଜଣେ ହେଲେ ପଳାଇବାରେ ସଫଳ ହୁଅନ୍ତି କି ନାହିଁ ମୋର ସନ୍ଦେହ ।

କାରାଗାରରେ ଆଉ ଏକ ଦୁଃଖଜନକ ବିଷୟ ହେଉଛି, ଏଠାରେ ୧୫ ବର୍ଷରୁ ଅଧିକ ବର୍ଷର ଅନେକ ବାଳକ ଥାଆନ୍ତି । ଏମାନଙ୍କ ଭିତରୁ ଅନେକ ବୁଦ୍ଧିମାନ୍ ବାଳକ ଏବଂ ସୁବିଧା ପାଇଲେ ଭଲ ହୁଅନ୍ତେ ।

*'ଷ୍ଟେଟ୍ସମ୍ୟାନ'ର ଡିସେମ୍ବର ୧୯୩୪ରେ ବାହାରିଥିଲା ।

ଏବେ ସେମାନଙ୍କୁ ଲେଖିବା ଓ ପଢ଼ିବାର ପ୍ରାଥମିକ ଶିକ୍ଷା ଦେବାର ଆରମ୍ଭ ହୋଇଛି, ମାତ୍ର ଅନ୍ୟ କାର୍ଯ୍ୟ ପରି ଏହା ଅତ୍ୟନ୍ତ ଅସମ୍ପୂର୍ଣ୍ଣ । ଖେଳ ବା ଅବକାଶ ଦିଆଯାଏ ନାହିଁ—କୌଣସି ସମ୍ବାଦପତ୍ର ବା ପୁସ୍ତକ ପଢ଼ିବାକୁ ଦିଆଯାଏ ନାହିଁ । ପ୍ରାୟ ୧୨ ଘଣ୍ଟା ପର୍ଯ୍ୟନ୍ତ ବାରକ ଭିତରେ ବନ୍ଦୀମାନଙ୍କୁ ତାଲା ପକାଇ ବନ୍ଦ ରଖାଯାଏ, ଅଥଚ ଏହି ଦୀର୍ଘ ସମୟରେ ସେମାନଙ୍କର କିଛି କାମ ନ ଥାଏ ।

ଛଅମାସରେ ଥରେ ଚିଠି ଓ ବାହାର ଲୋକଙ୍କ ସାକ୍ଷାତ ପାଇଁ ଅନୁମତି ମିଳେ, ଏହା ଅତ୍ୟନ୍ତ ଦୀର୍ଘକାଳ । ଏହା ହେଲେ ସୁଦ୍ଧା ଅନେକ ବନ୍ଦୀ ଏହାର ସୁବିଧା ଉଠାଇ ପାରନ୍ତି ନାହିଁ ; ଅଧିକାଂଶ ପ୍ରାୟ ନିରକ୍ଷର ଥାଆନ୍ତି ଏବଂ ଚିଠି ଲେଖିବାପାଇଁ ସେମାନଙ୍କୁ ଜେଲ କର୍ମଚାରୀଙ୍କ ଉପରେ ନିର୍ଭର କରିବାକୁ ପଡ଼େ । ଜେଲକର୍ମଚାରୀ ତାହା ହାତରେ ଥିବା କାମ ଆଉ ବଢ଼ାଇବାକୁ ଚାହୁଁ ନ ଥିବାରୁ ଏହା କରିବାକୁ ଚାହେଁ ନା । କିମ୍ବା ଚିଠିଟିଏ ଲେଖା ହେଲେ ଠିକଣା ଠିକ୍‌ରୂପେ ଦିଆଯାଏନା ଏବଂ ଚିଠିଟି ଠିକ ସ୍ଥାନରେ ପହଞ୍ଚି ପାରେନା । ସାକ୍ଷାତ୍ ହେବା ଆହୁରି କଷ୍ଟକର । ଏଥିପାଇଁ ସେମାନଙ୍କୁ ଜେଲ କର୍ମଚାରୀଙ୍କ ଅନୁଗ୍ରହ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିବାକୁ ପଡ଼େ । ଅନେକ ସମୟରେ ବନ୍ଦୀମାନେ ଭିନ୍ନ ଜେଲକୁ ବଦଳି ହୁଅନ୍ତି ଏବଂ କେଉଁଠାକୁ ଗଲେ ତାଙ୍କର ଆତ୍ମୀୟ ସ୍ୱଜନ ତାହା ଜାଣିପାରନ୍ତି ନାହିଁ । ଅନେକ ବନ୍ଦୀ ଅନେକ ବର୍ଷ ହେଲା ପରିବାରଠାରୁ ସମସ୍ତ ସମ୍ପର୍କ ହରାଇଛନ୍ତି ଏବଂ କଣ ଘଟିଛି, ଜାଣି ନ ଥିବାର ମୁଁ ଦେଖିଛି । ଛଅମାସ ବା ତହୁଁରୁ ଅଧିକ ଦିନ ପରେ ଯେଉଁ ସାକ୍ଷାତ୍ ହୁଏ, ତାହା ମଧ୍ୟ ଅଦ୍ଭୁତ ରକମର । ମଝିରେ ଏକ ଜାଲି ଥାଏ—ତାହା ଦୁଇ ପାଖରେ ଏକାବେଳେକେ କେତେକ ବନ୍ଦୀ ଏବଂ ସାକ୍ଷାତ୍‌କାରୀଙ୍କୁ ଠିଆ ହେବାକୁ ଦିଆଯାଏ—ସମସ୍ତେ ଏକସଙ୍ଗରେ କଥାବାର୍ତ୍ତା ଆରମ୍ଭ କରନ୍ତି । ଏଥିରେ ଖୁବ ଗୋଟାଏ ପାଟି ହୁଏ—ଫଳରେ ସାକ୍ଷାତ୍ ଫଳରେ ଯାହା କିଛି ସାମାନ୍ୟ ମନୁଷ୍ୟ ସମ୍ପର୍କ ଆସିବାର କଥା, ତାହା ବି ହୋଇପାରେ ନା ।

ସାଧାରଣତଃ ଖୁବ କମ୍ ସଂଖ୍ୟକ ବନ୍ଦୀଙ୍କୁ—ପ୍ରତି ହଜାରରେ ଏକରୁ ବେଶି ହେବ ନାହିଁ (ଇଉରୋପର ବନ୍ଦୀଙ୍କୁ ଛାଡ଼ି) ଭଲ ଖାଦ୍ୟ ଏବଂ ଅଧିକ ସାକ୍ଷାତ୍ ଓ ଚିଠି ଦେବାର ସୁବିଧା ଦିଆଯାଏ । କୌଣସି ରାଜନୀତିକ ଆଇନ ଅମାନ୍ୟ ଆନ୍ଦୋଳନରେ ବେଶି ସଂଖ୍ୟକ ଲୋକ ଜେଲ ଗଲେ ବିଶେଷ ଶ୍ରେଣୀ କଏଦୀଙ୍କ ସଂଖ୍ୟା ଟିକିଏ ବଢ଼େ, ମାତ୍ର ଏହା ମଧ୍ୟ ଅତି କମ୍ । ରାଜବନ୍ଦୀଙ୍କ ଭିତରୁ ଶତକରା ୯୫ ଜଣ ସ୍ତ୍ରୀ ହୁଅନ୍ତୁ ବା ପୁରୁଷ ହୁଅନ୍ତୁ ସେମାନଙ୍କୁ ସାଧାରଣ ଭାବରେ ବ୍ୟବହାର କରାଯାଏ ଏବଂ ଏହିସବୁ ସୁବିଧା ପାଆନ୍ତି ନାହିଁ ।

ବିପ୍ଳବାତ୍ମକ କାର୍ଯ୍ୟପନ୍ଥା ଯୋଗୁଁ ଯାବଜ୍ଜୀବନ ବା ଦୀର୍ଘ ସମୟ ନିମନ୍ତେ କାରାବାସ ପାଇଥିବା ଲୋକଙ୍କୁ ଅନେକ ଦିନ ପର୍ଯ୍ୟନ୍ତ ନିର୍ଜନ କାରାବାସରେ ରଖାଯାଏ । ମୋର ବିଶ୍ୱାସ, ଯୁକ୍ତ ପ୍ରଦେଶରେ ଏପରି ସମସ୍ତ ବନ୍ଦୀଙ୍କୁ ନିର୍ଜନ କାରାବାସରେ ରଖାଯାଏ । ସାଧାରଣତଃ ଜେଲରେ କୌଣସି ଅପରାଧ ଯୋଗୁଁ ନିର୍ଜନ କାରାବାସ ଦଣ୍ଡ ଦିଆ-ଯାଏ ! ମାତ୍ର ଏମାନଙ୍କୁ—ଏମାନେ ଯୁବକ—ଜେଲଖାନାରେ ଆଦର୍ଶ ବ୍ୟବହାର କରୁଥିଲେ ସୁଦ୍ଧା ଏକାକୀ ରଖାଯାଏ । କଡେଇବାର ଶାସ୍ତି ଉପରେ କୌଣସି କାରଣ ନ ଥାଇ ଜେଲ ବିଭାଗ ଆହୁରି ଏକ ଭୟଙ୍କର ଶାସ୍ତି ଏମାନଙ୍କୁ ଦିଅନ୍ତି । ଏହା ଅତ୍ୟନ୍ତ ଅଦ୍ଭୁତ କଥା—ଏହା ଆଇନ ଅନୁମୋଦିତ ନୁହେଁ । ଅଳ୍ପ ସମୟ ପାଇଁ ହେଲେ ସୁଦ୍ଧା ନିର୍ଜନ କାରାବାସ ବଡ଼ ଯନ୍ତ୍ରଣାଦାୟକ । ବର୍ଷ ବର୍ଷ ଧରି ରହିବା ଉପର ଭୀଷଣ, ଏହା ଫଳରେ ଅଳ୍ପେ ଆଳ୍ପେ ଏବଂ କ୍ରମେ ମାନସିକ ଅଧୋଗତି ହୁଏ—ଶେଷକୁ ଲୋକ ପାଗଳ ହେବା ଅବସ୍ଥାରେ ପଡ଼େ । ମନରେ ଏକ ଶୂନ୍ୟତା ଜାତହୁଏ ଏବଂ ପଶୁ ପରି ଭୀତଦୃଷ୍ଟି ହୋଇଯାଏ । ଏହା ଠିକ ଠିକ କରି ମଣିଷର ଭାବକୁ ହତ୍ୟା କରିବା—ଅଳ୍ପେ ଆଳ୍ପେ ଆତ୍ମାକୁ ଖଣ୍ଡ ବିଖଣ୍ଡ କରିବା । କୌଣସି ଲୋକ ଏହା ସତ୍ତ୍ୱେ ବଞ୍ଚି ରହିଲେ, ସେ ଅତି ଅସାଧାରଣ ଏବଂ ସଂସାରପଥରେ ସଂପୂର୍ଣ୍ଣ ଅଯୋଗ୍ୟ ହୋଇପଡ଼େ । ମନରେ ସର୍ବଦା ପ୍ରଶ୍ନ ଉଠେ—

କୌଣସି କାର୍ଯ୍ୟ ବା ଅପରାଧ ଲାଗି କଣ ପ୍ରକୃତରେ ଏ ଦୋଷୀ ? ଭାରତରେ ପୁଲିସ ସର୍ବଦା ସନ୍ଦେହ ଉପରେ ଗତି କରନ୍ତି – ରାଜନୈତିକ ବ୍ୟାପାରରେ ଏହା ଦୁଇଗୁଣ ଦେଖାଯାଏ ।

ଇଉରୋପୀୟ କିମ୍ବା ଇଉରେସିୟ ବନ୍ଦୀମାନଙ୍କର ଅପରାଧ ଯାହା ହେଉ ପଛକେ, ସେମାନଙ୍କୁ ଉଚ୍ଚଶ୍ରେଣୀରେ ରଖାଯାଏ, ଭଲ ଖାଦ୍ୟ, ହାଲୁକା କାମ ଏବଂ ଅଧିକ ସାକ୍ଷାତ୍ ଓ ଚିଠିପତ୍ରର ସୁବିଧା ଦିଆଯାଏ । ପ୍ରତି ସପ୍ତାହରେ ପାଦ୍ରୀ ସେମାନଙ୍କ ନିକଟକୁ ଆସୁଥିବାରୁ ସେମାନେ ବାହାର ଲୋକଙ୍କ ସହ ସମ୍ପର୍କ ରଖନ୍ତି । ସେ ଆମୋଦପ୍ରଦ ଏବଂ ସଚିତ୍ର ବିଦେଶୀ ସମ୍ବାଦପତ୍ର ଆଣନ୍ତି ଏବଂ ଦରକାର ପଡ଼ିଲେ ବନ୍ଦୀଙ୍କ ପରିବାରକୁ ମଧ୍ୟ ଚିଠିପତ୍ର ଲେଖନ୍ତି ।

ଇଉରୋପୀୟ କଇଦୀଙ୍କ ପ୍ରତି ଏପରି ବ୍ୟବହାରରେ କେହି ଆପତ୍ତି କରୁନାହିଁ—ସେମାନଙ୍କ ସଂଖ୍ୟା ବହୁତ କମ । ମାତ୍ର ଅନ୍ୟ ନରନାରୀଙ୍କ ପ୍ରତି ବ୍ୟବହାରରେ ସାଧାରଣ ମାନବିକ ସମ୍ମାନ ନ ଥିବା ଦେଖିଲେ ବଡ଼ ଦୁଃଖ ଲାଗେ । କଏଦୀଙ୍କୁ ଏକ ମାନବ ବିଶେଷରୂପେ ଗଣ୍ୟ କରାଯାଏ ନା ଏବଂ ସେପରି ବ୍ୟବହାର ସେ ଆଦୌ ପାଏ ନାହିଁ । ସରକାରୀ ଶାସନଯନ୍ତ୍ରର ଅମାନୁଷିକ ବ୍ୟବହାର କିପରି କଦର୍ଯ୍ୟ ଏହା ଜେଲକୁ ଆସିଲେ ଜଣାପଡ଼େ । ଏହି ଯନ୍ତ୍ର ନିର୍ବେଦ ଓ ବିନା ହୃଦୟରେ ଚଳୁଥାଏ—ଏହା ହାବୁଡ଼ରେ ଯାହା ପଡ଼େ, ତାହା ଦଳି ହୋଇଯାଏ ଏବଂ ଏହି ଯନ୍ତ୍ର ଏପରି ଚାଳନ କରିବା ନିମନ୍ତେ ଜେଲ ନିୟମ ବିଶେଷ ଭାବରେ ପ୍ରଣୟନ କରାଯାଇଛି । ଭାବପ୍ରବଣ ନରନାରୀଙ୍କ ପକ୍ଷରେ ଏହି ଆତ୍ମାଶୂନ୍ୟ ଶାସନ ଏକ ଅତ୍ୟାଚାର ଏବଂ ମାନସିକ ଅଶାନ୍ତି । ଏହି ଖାପଣତା ଭିତରେ ଦୀର୍ଘକାଳ କାରାବାସ ଲଭିଥିବା ବନ୍ଦୀମାନେ ସମ୍ପୂର୍ଣ୍ଣରୂପେ ଭାଙ୍ଗି ପଡ଼ି ସ୍ନେହ ଶିଶୁଙ୍କ ପରି କାନ୍ଦୁଥିବାର ମୁଁ ଦେଖିଛି । ଏଠାରେ ସହାନୁଭୂତି ପାଇବା ସେମାନଙ୍କ ପକ୍ଷରେ ସ୍ୱପ୍ନ – ଯଦି କେହି ଟିକିଏ ସହାନୁଭୂତି ଦେଖାଇ କଥାବାର୍ତ୍ତା

ଥିଲେ, ତେବେ ସେମାନଙ୍କ ମୁଖମଣ୍ଡଳ ହଠାତ୍ ଆନନ୍ଦ ଓ କୃତଜ୍ଞତାରେ ଭରି ହୋଇଯାଏ ।

ତଥାପି ବନ୍ଦୀଙ୍କ ଭିତରେ ଅନେକ ଦୟା ଦାକ୍ଷିଣ୍ୟ ଏବଂ ବନ୍ଧୁତ୍ୱର ମର୍ମସ୍ପର୍ଶୀ ଦୃଷ୍ଟାନ୍ତ ଦେଖାଯାଏ । ଥରେ ଜଣେ ଅନ୍ଧ 'ବାହ୍ୟାର ଜେଲକୁ ଆସୁଥିବା' ବନ୍ଦୀ ହଠାତ୍ ୧୩ ବର୍ଷ ପରେ ଖଲାସ ହୋଇଥିଲା । ଦୀର୍ଘକାଳ ପରେ ଅବ୍ୟବସ୍ଥ ଭାବରେ ଏକ ବନ୍ଧୁହୀନ ଜଗତକୁ ସେ ଯାଉଛି । ତାହାର ସହବନ୍ଦୀମାନେ ତାକୁ ସାହାଯ୍ୟ କରିବାକୁ ଇଚ୍ଛା କରୁଥାନ୍ତି, ମାତ୍ର ସେମାନେ ବିଶେଷ କିଛି କରିପାରିଲେ ନାହିଁ । ଜଣେ ଜେଲ ପାଠକରେ ଜମାଥିବା ତାହାର କାମିଜଟି ତାକୁ ଦେଲା — ଆଉ ଜଣେ ଅନ୍ଧ ଅନ୍ୟ କିଛି ଦେଲା । ଆଉ ଜଣେ ଲୋକ ହଲେ ଚମଡ଼ା ଯୋତା ପାଇଥିବାରୁ ଏହା ମିଳିଛି ବୋଲି ସେଦିନ ସକାଳେ ମୋତେ ଖବର ସହିତ ଦେଖାଉଥିଲା । ଜେଲଖାନାର ଏହା କେତେ ବଡ଼ ଜିନିଷ ! ତାହାର ଅନେକ ଦିନର ଏହି ଅଙ୍ଗ ସାଥି ବହୁଦିନ ପରେ ଖାଲି ଗୋଡ଼ରେ ଯାଉଛି ଦେଖି ସେ ଆନନ୍ଦର ସହିତ ତାକୁ ଦେଇଦେଲା । ମୋର ମନେହେଲା, ବାହାର ଅପେକ୍ଷା ଜେଲ ଭିତରେ ଦୟା ଦାକ୍ଷିଣ୍ୟ ହୁଏତ ବେଶି !

* ୧୯୩୦ ମସିହାରେ ଅନେକ ନାଟକୀୟ ପରିସ୍ଥିତି ଓ ଉତ୍ସାହଜନକ ଘଟଣା ଘଟିଲା; ସମଗ୍ର ଜନତାକୁ ଗାନ୍ଧିଜୀଙ୍କର ପ୍ରେରଣା ଓ ଜାଗ୍ରତ କରାଇବାର ଅଦ୍ଭୁତ ଶକ୍ତି ଦେଖି ଅଧିକାଂଶ ଚମତ୍କୃତ ହୋଇଗଲେ । ଏଥିରେ ଯେପରି କିଛି କୁହୁକ ଥିଲା — ମୋର ମନେ ଅଛି, ଗୋଖଲେ ତାଙ୍କ ସମ୍ବନ୍ଧରେ କହିବାକୁ ଯାଇ ଥରେ କହିଥିଲେ ଯେ, କାଦୁଅ ଭିତରୁ ବୀର ବାହାର କରିବାର ଶକ୍ତି ତାଙ୍କର ଅଛି । ଜାତୀୟ ଲକ୍ଷ୍ୟ ହାସଲ ନିମନ୍ତେ ଶାନ୍ତିପୂର୍ଣ୍ଣ ଆଇନ ଅମାନ୍ୟମୂଳକ କାର୍ଯ୍ୟପନ୍ଥାର କୌଶଳର ଯଥାର୍ଥତା ଏକପ୍ରକାର ପ୍ରମାଣିତ ହେଲାପରି ବୋଧ ହେଲା; ଆମେ ଜୟ ଢଙ୍ଗରେ ଅଗ୍ରସର ହେଉଥାଉଁ ବୋଲି ସମର୍ଥକ ଓ ବିରୋଧୀ

ତ୍ୟେକଙ୍କ ହୃଦୟରେ ଏକ ଅଟଳ ବିଶ୍ୱାସ ଜାଗ୍ରତ ହୋଇଥିଲା । ସେଉଁମାନେ ର୍ମଠ ଭାବରେ ଆନ୍ଦୋଳନରେ ଲାଗିଥିଲେ, ସେମାନଙ୍କ ଭିତରେ ଏକ ଭୂତ ଉତ୍ତେଜନା ଦେଖାଗଲା । ଜେଲ ଭିତରେ ମଧ୍ୟ ଏହି ଭାବ ଦେଖା- ଲା । ସାଧାରଣ କଏଦୀ ସୁଦ୍ଧା କହିବାକୁ ଲାଗିଲେ 'ସ୍ୱରାଜ ଆସୁଛି ।' ଥିରେ ସେମାନଙ୍କର କିଛି ଉପକାର ହୋଇପାରେ ଭାବି ସେମାନେ ଆଗ୍ରହରେ ହିତ ଏହାକୁ ଅପେକ୍ଷା କରି ରହିଲେ । ବାହାରର ଗପସପ ଶୁଣି ୱାର୍ଡରମାନେ ମଧ୍ୟ ସ୍ୱରାଜ୍ୟ ନିକଟରେ ହେବ ବୋଲି ଆଶା କରୁଥିଲେ; ଷ୍ଟ ଜେଲକର୍ମଚାରୀ ବଡ଼ମାନ ମଧ୍ୟ ଟିକିଏ ଭୟ ପାଇଗଲେ ।

ଆମେ ଜେଲ ଭିତରେ କୌଣସି ଦୈନିକ ସମ୍ବାଦ ପତ୍ର ପାଉ ନ ଥିଲୁ; ଏକ ହିନ୍ଦୀ ସାପ୍ତାହିକ ପତ୍ରିକାରେ ଆମେ କିଛି ସମ୍ବାଦ ପାଉଁ— ଏତିକି ପଢ଼ି ମଧ୍ୟ ଆମର ଚଳନା ଅନେକ ଦୂର ହୋଇଯାଉଥିଲା । ପ୍ରତ୍ୟେକ ଦିନ ଲୁଠିମାଡ଼ ହେଉଛି—ବେଳେ ବେଳେ ଗୁଳି ଚଳୁଛି— ସୋଲାପୁରରେ ସାମରିକ ଆଇନ ଜାରି ହୋଇଥିଲା ବେଳେ ଜାତୀୟ ପତାକା ଧରି ଯାଉଥିବା ହେତୁ ଲୋକେ ଦଶବର୍ଷ ଲେଖାଏଁ କାରାବାସ ପାଇଲେ । ଆମ ଲୋକଙ୍କର ଏବଂ ବିଶେଷତଃ ସ୍ତ୍ରୀଲୋକମାନଙ୍କର କାର୍ଯ୍ୟ ଦେଖି ଆମେ ଗର୍ବ ଅନୁଭବ କଲୁ । ମୋର ମାଆ, ସ୍ତ୍ରୀ, ଭଉଣୀ ଏବଂ ଆମ ବଂଶର ଆଉ ଅନେକ ଝିଅଙ୍କ କାର୍ଯ୍ୟ ଦେଖି ମୁଁ ବିଶେଷଭାବରେ ସନ୍ତୁଷ୍ଟ ହୋଇଥିଲି । ମୁଁ ସେମାନଙ୍କଠାରୁ ଅଲଗା ହୋଇ ବନ୍ଦୀଶାଳାରେ ରହିଥିଲେ ସୁଦ୍ଧା ଏକ ବଡ଼ ଉଦ୍ଦେଶ୍ୟ ହାସଲ କରିବା କାର୍ଯ୍ୟରେ ଆମେ ଅଧିକ ସନ୍ନିକଟ ହୋଇଗଲୁ । ଏକ ବଡ଼ ସମ୍ପ୍ରଦାୟ ଭିତରେ ପରିବାର ବୁଡ଼ିଗଲା—ତଥାପି ସେହି ଘନିଷ୍ଠତା ଓ ବନ୍ଧୁଭାବ ରହିଥିଲା । କମଳାର କାର୍ଯ୍ୟ ଦେଖି ମୁଁ ବିସ୍ମିତ ହୋଇଗଲି । ତାହାର ଉତ୍ସାହ ଓ ଶକ୍ତି ଫଳରେ ତାହାର ଶାରୀରିକ ଅସୁସ୍ଥତା ପଳାଇଲା ଏବଂ ଅନ୍ତତଃ କେଇଦିନ ପାଇଁ ଅଜସ୍ର ପରିଶ୍ରମ କରି ସୁଦ୍ଧା ସେ ଭଲ ଥିଲା ।

ବାହାରେ ଅନ୍ୟମାନେ ବିପଦର ସମ୍ମୁଖୀନ ହୋଇ ଦୁଃଖ ବରଣ କରୁଥିଲେ ବେଳେ ମୁଁ ତାହା ତୁଳନାରେ ଜେଲଖାନାରେ ଯେ ଟିକିଏ ଆରାମରେ ରହିଛି, ଏହି ଭାବନା ମୋତେ ଦୁଃଖ ଦେଉ । ମୁଁ ବାହାରକୁ ଯିବାକୁ ଇଚ୍ଛା କରୁଥିଲି—ମାତ୍ର ଯାଇ ନ ପାରିବାରୁ ଜେଲଖାନାରେ ମୋ ଜୀବନକୁ ଠିକ୍ କଲି—କାର୍ଯ୍ୟବ୍ୟସ୍ତ ରଖିଲି । ମୋ ନିଜ ଚରଖାରେ ପ୍ରତିଦିନ ୨।୩ ଘଣ୍ଟା ପର୍ଯ୍ୟନ୍ତ ସୂତା କାଟୁଥିଲି; ଆହୁରି ୨।୩ ଘଣ୍ଟା ନେୱାର (ଚମଡ଼ା ଫିତା) ବୁଣୁଥିଲି । ଜେଲ କର୍ମଚାରୀଙ୍କୁ କହି ଏହା ବିଶେଷଭାବରେ ବ୍ୟବସ୍ଥା କରିଥାଏ । ଏ ସବୁ କାମ ମୋତେ ଭଲ ଲାଗିଲା । ବିଶେଷ ପରିଶ୍ରମ ପଡ଼େ ନାହିଁ କିମ୍ବା ଅଧିକ ମନୋଯୋଗ ଦରକାର ପଡେ ନାହିଁ—ଅଥଚ ମୁଁ ନିଯୁକ୍ତ ହୋଇ ରହେ ଏବଂ ମୋର ମନର ବ୍ୟଗ୍ରତା କମିଯାଏ । ମୁଁ ଖୁବ୍ ପଢ଼େ—ନଚେତ୍ ମୋର ଲୁଗା ସଫା ଇତ୍ୟାଦି ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟସ୍ତ ଥାଏ । ମୋତେ 'ଅଶ୍ରମ କାରାବାସ' ମିଳିଥିଲା—ତେଣୁ ମୁଁ ନିଜେ ମାଗି ଶାରୀରିକ ପରିଶ୍ରମ କରିବା ଭଳି କାର୍ଯ୍ୟ ନେଇଥିଲି ।

ଏହିପରି ଭାବରେ ବାହାର ଘଟଣାର ଚିନ୍ତା ଏବଂ ମୋ ଜେଲ ଜୀବନ ଭିତରେ ମୁଁ ନୈନୀ ଜେଲରେ ଦିନ କଟାଇଲି । ମୁଁ ଭାରତର ବନ୍ଦୀ ଘରର କାର୍ଯ୍ୟ ଦେଖି ଦେଖିଲି ଏହା ଯେପରି ଭାରତରେ ବ୍ରିଟିଶ ସରକାରର ପରି । ସରକାରୀ ଶାସନତନ୍ତ୍ରରେ କର୍ମକୁଶଳତା ପୂରି ରହିଛି; ଏହା ଦେଶରେ ସରକାରର ପ୍ରାଧାନ୍ୟ ଦୃଢ଼ କରି ରଖୁଛି—ଅଥଚ ଦେଶର ମନୁଷ୍ୟମାନଙ୍କ ସମ୍ବନ୍ଧରେ ଆଦୌ ଚିନ୍ତା ନାହିଁ । ବାହାରେ ଜେଲଖାନା ବେଶ୍ କୁଶଳର ସହିତ ଶାସନ ହେଉଥିବା ପରି ମନେ ହୁଏ । କେତେକାଂଶରେ ଏହା ସତ୍ୟ, ମାତ୍ର ଜେଲଖାନା ଭିତରକୁ ଯେଉଁ ହତଭାଗ୍ୟ ଲୋକ ଆସନ୍ତି, ସେମାନଙ୍କର ଉନ୍ନତି ହିଁ ଯେ ଜେଲର ମୁଖ୍ୟ ଉଦ୍ଦେଶ୍ୟ ହେବା ଉଚିତ, ଏହା କେହି ଚିନ୍ତା କଲାପରି ମନେହୁଏ ନାହିଁ । ସେମାନଙ୍କୁ ଜବତ କର—ଏହି ଭାବରେ କାର୍ଯ୍ୟ ହୁଏ । ସେମାନେ ବାହାରକୁ ଗଲାବେଳକୁ ତାଙ୍କର ଯେପରି

ଅବ ହିଁସ ହେଲେ ତେଜ ନ ଥିବ ଜେଲଖାନା କିପରି ଆୟତ୍ତ ହୁଏ ? ବନ୍ଦୀମାନଙ୍କୁ କିପରି ଅଧୀନରେ ରଖାଯାଏ ? ଶାସ୍ତି ଦିଆଯାଏ ? ଅଧିକାଂଶ ଭାବରେ କଏଦୀମାନଙ୍କ ସାହାଯ୍ୟରେ ଶାସ୍ତି ଦିଆଯାଏ । ସେମାନଙ୍କ ଭିତରୁ କେତେକଙ୍କୁ କଏଦୀ ଓ୍ୱାର୍ଡ଼ର ବା କଏଦୀ ଓଭରସିଅର କରି ଦିଆଯାଏ । ସେମାନେ ଭୟ ଏବଂ ପୁରସ୍କାର ଓ ଅଧିକ ମାଫ (Remission) ପାଇବା ଆଶାରେ ଜେଲ କର୍ତ୍ତୃପକ୍ଷଙ୍କ ସହିତ ସହଯୋଗ କରନ୍ତି । ସଂଖ୍ୟାନୁପାତରେ କମ ଅନ୍ୟ ଓ୍ୱାର୍ଡ଼ର ଆସନ୍ତି । ଜେଲ ଭିତରେ ଜଗିବା କାମ ବିଶେଷ ଭାବରେ କଏଦୀ ଓ୍ୱାର୍ଡ଼ର ଓ ଓଭରସିଅରମାନେ କରନ୍ତି । ଜେଲ ଭିତରେ ମଧ୍ୟ ବ୍ୟାପକଭାବେ ଗୁପ୍ତଚର କାର୍ଯ୍ୟ ଦେଖାଯାଏ —କଏଦୀମାନଙ୍କୁ ପରସ୍ପର ବିପକ୍ଷରେ, କର୍ତ୍ତୃପକ୍ଷଙ୍କୁ ଗୁପ୍ତରେ ଖବର ଦେବାଲାଗି ଉତ୍ସାହିତ କରାଯାଏ । ଜେଲ ଭିତରେ ଏକାଠି ମିଳି ବା କୌଣସି ମିଳିତ କାର୍ଯ୍ୟ କରିବା ସମ୍ଭବ ହୋଇପାରେ, ନା । ଏହା ବୁଝିବା ସହଜ କାରଣ ସେମାନଙ୍କ ମଧ୍ୟରେ ଭେଦ ସୃଷ୍ଟି ହେଲେହିଁ ସେମାନଙ୍କୁ ଆୟତ୍ତ କରି ରଖାଯାଇ ପାରିବ ।

ଆମ ଦେଶରେ ବାହାରେ ଆମେ ମଧ୍ୟ ଏହା ଠିକ୍‌ ଅଧିକ ଦେଖିପାରୁ ପାଉଁ, ମାତ୍ର ଭିତରେ କଏଦୀ ଓ୍ୱାର୍ଡ଼ର ଓ ଓଭରସିଅର ଭିନ୍ନ ପ୍ରକାର । ସେମାନଙ୍କର ବଡ଼ ବଡ଼ ଉପାୟ ଥାଏ ଏବଂ ଖୁବ ଜାକଜମକ ପୋଷାକ ପିନ୍ଧି ଥାଆନ୍ତି । ତାଙ୍କ ପାଖରେ କାଗାରାର ପରି ଅସ୍ତ୍ରଧାରୀ ରକ୍ଷୀମାନେ ପ୍ରସ୍ତୁତ ହୋଇ ରହିଛନ୍ତି !

ଆଧୁନିକ ଶାସନର କାରାଗାରର ପ୍ରୟୋଜନୀୟତା କିପରି ଅପରିହାର୍ଯ୍ୟ ଅନ୍ତତଃ ବନ୍ଦୀ ସେହିପରି ଭାବେ—ଜେଲଖାନା, ପୁଲିସ ଏବଂ ସୈନ୍ୟ ତୁଳନାରେ ସରକାରର ଅନ୍ୟ କାର୍ଯ୍ୟ ଉପରଠାଉରିଆ ପରି ମନେ ହୁଏ । ମାର୍କସ୍ କହିଥିଲେ—ଯେଉଁ ଦଳଙ୍କ ହାତରେ ସରକାର ଥାଏ; ସେମାନେ ତାଙ୍କର ମତଲବ ଅନ୍ୟମାନଙ୍କ ଉପରେ ଜବରଦସ୍ତି ଲଦିବାର ପ୍ରକୃତ ପୀଡ଼ାଦାୟକ ଯନ୍ତ୍ର ହେଉଛି ସ୍ଥିତି । ଜେଲଖାନାରେ ଏହି ଉକ୍ତିର ଯଥାର୍ଥତା ଅନ୍ତତଃ ଦେଖାଯାଏ ।

ମାସକ ପାଇଁ ମୁଁ ମୋ ବାରିକରେ ଏକାକୀ ଥିଲି । ତା ପରେ ଏକ ସାଥୀ ନର୍ମଦାପ୍ରସାଦ ସିଂହ ଆସିଲେ—ମୁଁ ଟିକିଏ ଆରାମ ବୋଧକଲି । ୨।୩ମାସ ପରେ ୧୯୩୦ ମସିହା ଜୁନ ମାସ ଶେଷଦିନ ଆମ ଛୋଟ ବେଷ୍ଟନୀ ଭିତରେ ଅସାଧାରଣ ଉତ୍ସାହ ଦେଖାଗଲା । ଅପ୍ରତ୍ୟାଶିତ ଭାବରେ ମୋର ପିତା ଓ ଡାକ୍ତର ସଯ୍ୟଦ ମାହମୁଦ ସେଠାକୁ ଅଣାହେଲେ । ସେଦିନ ସକାଳେ ସେମାନେ ବାସ୍ତବିକ ବିଛଣାରୁ ଉଠି ନ ଥିଲାବେଳେ ସେମାନଙ୍କୁ ଆନନ୍ଦ ଭବନରୁ ଗିରଫ କରାଯାଇଥିଲା ।

---

## ଯେରବାଡାରେ ମିଳାମିଶା ପାଇଁ କଥାବାର୍ତ୍ତା

କଂଗ୍ରେସ କାର୍ଯ୍ୟକାରୀ ସମିତିକୁ ବେଆଇନ ଘୋଷଣା କରିବା ସଙ୍ଗେ ସଙ୍ଗେ ମୋ ପିତାଙ୍କୁ ଗିରଫ କରାଯାଇଥିଲା । ଏଥିରେ ବାହାରେ ଏକ ନୂଆ ପରିସ୍ଥିତି ସୃଷ୍ଟି ହେଲା । କମିଟିର ବୈଠକ ହେଉଥିବାବେଳେ ସମସ୍ତ ସଭ୍ୟମାନେ ଏକାଠି ଗିରଫ ହେବାକୁ ଲାଗିଲେ । ତାଙ୍କ ସ୍ଥାନରେ ନୂତନ ସଭ୍ୟ ନିଆହେଲେ—ଅସ୍ଥାୟୀ ସଭ୍ୟପଦ କ୍ଷମତାପ୍ରାପ୍ତ ହୋଇ ନିଯୁକ୍ତ କରୁଥାଆନ୍ତି—ଏହିପରି ଭାବରେ ଅନେକେ ସ୍ତ୍ରୀଲୋକ ମଧ୍ୟ ଅସ୍ଥାୟୀ ସଦସ୍ୟ ହେଲେ । କମଳା ମଧ୍ୟ ଜଣେ ସଭ୍ୟ ହେଲା ।

ବାପା ଜେଲକୁ ଆସିଲାବେଳକୁ ତାଙ୍କର ସ୍ୱାସ୍ଥ୍ୟ ବଡ଼ ଖରାପ ଥିଲା, ତାଙ୍କୁ ଯେପରି ଅବସ୍ଥାରେ ରଖାଗଲା, ସେଥିରେ ସେ ବଡ଼ ଅସ୍ୱାଚ୍ଛନ୍ଦ୍ୟ ବୋଧ କଲେ । ସରକାର ଜାଣିଶୁଣି ଏପରି କରୁ ନ ଥିଲେ—ଏହି ଅସ୍ୱାଚ୍ଛନ୍ଦ୍ୟ କମାଇବା ପାଇଁ ସେମାନଙ୍କ ପକ୍ଷେ ଯାହା ସମ୍ଭବ, ସେମାନେ କରିବାକୁ ପ୍ରସ୍ତୁତ ଥିଲେ । ମାତ୍ର ନୈନି ଜେଲରେ ସେମାନେ ଅଧିକ କରିପାରିଲେ ନାହିଁ । ମୋ ବାରିକରେ ଥିବା ଚାରୋଟି [illegible] ସେଲରେ [illegible] ୪ ଜଣ ଲୋକ ରହୁଥିଲେ । [illegible] କହିଲେ ପିତାଙ୍କୁ

ଜେଲଖାନାର ଅନ୍ୟ କୌଣସି ସ୍ଥାନରେ ରଖିଲେ ସେ ଟିକଏ ଆହୁରି ଖୋଲାଜାଗା ପାଆନ୍ତେ । ମାତ୍ର ଆମେ ଏକାଠି ରହିବାକୁ ପସନ୍ଦ କଲୁ, କାରଣ ତାହାହେଲେ ଆମେ ତାଙ୍କୁ ସାହାଯ୍ୟ କରିପାରିବୁ ।

ବର୍ଷା ଋତୁ ଆରମ୍ଭ ହେଉଥାଏ—ସେଲ ଭିତରକୁ ସମ୍ପୂର୍ଣ୍ଣ ଶୁଖିଲା ରଖିବା ସହଜ ନଥିଲା । କାରଣ ବେଳେବେଳେ ଛାତ ଉପରୁ ବର୍ଷାପାଣି ବନ୍ଦୀଶାଳାରେ ପଡୁଥିଲା । ରାତିରେ ପିତାଙ୍କର ଶଯ୍ୟା କେଉଁଠି କରିବୁ, ଏହା ଆମ ପାଖରେ ଗୋଟାଏ ସମସ୍ୟା ହୋଇଥାଏ । ଆମ ସେଲ ସଂଲଗ୍ନ ୧୪ × ୫ ଫୁଟ ବାରଣ୍ଡାରେ ବର୍ଷାପାଣିରୁ ରକ୍ଷା ପାଇବା ନିମନ୍ତେ ତାଙ୍କ ଶଯ୍ୟା କରୁଥିଲୁ । ବେଳେ ବେଳେ ତାଙ୍କୁ ଜର ହୁଏ । ଶେଷରେ ଆମ ସେଲକୁ ଲଗାଇ ଏକ ପ୍ରସ୍ତୁତ ନୂଆ ବାରଣ୍ଡା ତିଆରି କରିବା ନିମନ୍ତେ ଜେଲ କର୍ତ୍ତୃପକ୍ଷ ସ୍ଥିର କଲେ । ବାରଣ୍ଡା ତିଆରି ହେଲା—ଏହା ଆମ ପକ୍ଷରେ ଭାରି ସୁବିଧା ହେଲା । ମାତ୍ର ପିତାଙ୍କର ଏଥିରେ କିଛି ସୁବିଧା ହେଲାନାହିଁ—କାରଣ ବାରଣ୍ଡା ତିଆରି ପୂର୍ବରୁ ସେ ଖଲାସ ହୋଇଗଲେ । ଆମେ ଯେତେ ଜଣ ସେ ଜାଗାରେ ଥିଲୁ, ଆମେ ଏହାର ସୁବିଧା ଉଠାଇଲୁ ।

ଜୁଲାଇ ମାସ ଶେଷ ବେଳକୁ ସାର୍ ତେଜବାହାଦୁର ସାପ୍ରୁ ଏବଂ ଶ୍ରୀ ଏମ୍. ଆର. ଜୟକାର ସରକାର ଓ କଂଗ୍ରେସ ଭିତରେ ଗୋଟିଏ ମିଳାମିଶାର ଚେଷ୍ଟା କରୁଛନ୍ତି ବୋଲି ଶୁଣାଯାଉଥିଲା । ବାପାଙ୍କୁ ବିଶେଷ ଅନୁଗ୍ରହ ଦେଖାଇ ଗୋଟିଏ ଦୈନିକ ଖବରକାଗଜ ଦିଆଯାଇଥିଲା—ସେଥିରେ ଏ ସମ୍ବାଦ ଆମେ ପାଇଲୁ । ତତ୍କାଳୀନ ବଡ଼ଲାଟ ଲର୍ଡ଼ ଇର୍‌ଉଇନ ଏବଂ ସାପ୍ରୁ ଜିନ୍ନକାରଙ୍କ ଭିତରେ ଯେଉଁ ଚିଠିପତ୍ର ଦିଆନିଆ ଚାଲିଥିଲା, ତାହା କାଗଜରେ ପଢ଼ିଲୁ ଏବଂ ତଥାକଥିତ "ଶାନ୍ତିଦୂତ"-ମାନେ ଗାନ୍ଧୀଙ୍କ ସହ ସାକ୍ଷାତ୍ କରୁଛନ୍ତି ବୋଲି ଶୁଣିଲୁ । ସେମାନେ କାହିଁକି ଏଥିରେ ଅଗ୍ରଣୀ ହୋଇ ବାହାରିଲେ କିମ୍ବା କେଉଁ ଆଡ଼କୁ ଗତି କରୁଥାନ୍ତି, ଆମେ ଆଦୌ ଜାଣି ନ ଥିଲୁ । ପରେ ଆମେ ଜାଣିଲୁ, ପିତା ତାଙ୍କ ଗିରଫର କିଛିଦିନ ପୂର୍ବରୁ ବମ୍ବେରେ ଯେଉଁ ସଂକ୍ଷିପ୍ତ ଘୋଷଣାରେ ରାଜି ହୋଇଥିଲେ, ସେଥିରେ ଉତ୍ସାହିତ ହୋଇ ସେମାନେ ଏ

ଧାରଣା ଗଠନ କଲେ । ମିଷ୍ଟର ଷ୍ଲୋକମ୍ବ (ଲଣ୍ଡନ "ଡେଲି ହେରାଲ୍ଡ" କାଗଜର ସମ୍ବାଦଦାତା । ସେତେବେଳେ ସେ ଭାରତରେ ଥାଆନ୍ତି) ବାପୁଙ୍କ ସହିତ କଥାବାର୍ତ୍ତା କରି ଏହି ବକ୍ତୃତାଟି ଲେଖିଥିଲେ ଏବଂ ବାପୁ ଏହାକୁ ସମର୍ଥନ କରିଥିଲେ । ସରକାର କେତେକ ସର୍ତ୍ତରେ ରାଜି ହେଲେ କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହାର କରିନେବାର ସମ୍ଭାବନା ରହିଥିବା କଥା ଏଥିରେ * ଥିଲା । ଏହା ଏକ

---

* ୧୯୩୦ ମସିହା ଜୁନ ୨୫ ତାରିଖରେ ବମ୍ବେଠାରେ ପଣ୍ଡିତ ମୋତିଲାଲ ନେହରୁ ନିମ୍ନଲିଖିତ ବକ୍ତୃତିରେ ରାଜି ହୋଇଥିଲେ—"ଗୋଲଟେବୁଲ ସମ୍ମିଳନୀ ସ୍ୱାଧୀନଭାବରେ ଯାହା ମତ ପ୍ରକାଶ କରିବେ କିମ୍ବା ବ୍ରିଟିଶ ପାର୍ଲିମେଣ୍ଟ ଏହି ଅନୁମୋଦନ ଉପରେ କିପରି ମନୋଭାବ ପ୍ରକାଶ କରିବେ, ତାହା ଆଗରୁ କହିବାକୁ ଅସମର୍ଥ ଥିବା ଅବସ୍ଥାରେ ଯଦି ବ୍ରିଟିଶ ସରକାର ଓ ଭାରତ ସରକାର କେତେକ ସର୍ତ୍ତରେ ଘରୋଇ ଭାବରେ ଏକ ଜବାବ ଦେବେ ଯେ ସେମାନେ ଭାରତ ପାଇଁ ପୂର୍ଣ୍ଣ ସ୍ୱାୟତ୍ତଶାସନ ଦାବୀକୁ ସମର୍ଥନ କରିବେ । ଅବଶ୍ୟ ଭାରତ-ସହିତ ଦୀର୍ଘକାଳ ସମ୍ବନ୍ଧହେତୁ ଓ ବର୍ତ୍ତମାନ ଅବସ୍ଥା ଅନୁସାରେ ଦରକାର ଆପୋଷ ବ୍ୟବସ୍ଥା ବିଷୟରେ ଗୋଲଟେବୁଲ ସମ୍ମିଳନୀ ଯାହା ସ୍ଥିର କରିବେ ! ତାହାହେଲେ ପଣ୍ଡିତ ମୋତିଲାଲ ନେହରୁ ଏହା ଗ୍ରହଣ କରିବେ କିମ୍ବା ଏପରି ଏକ ଜବାବ ମିଳିବ ବୋଲି କୌଣସି ଦାୟିତ୍ୱପୂର୍ଣ୍ଣ ତୃତୀୟ ପକ୍ଷ ସୂଚନା ଦେବେ, ତେବେ ପଣ୍ଡିତ ମୋତିଲାଲ, ଗାନ୍ଧିଜୀ ଓ ପଣ୍ଡିତ ଜବାହରଲାଲ ନେହରୁଙ୍କ ସହିତ ତାହା ଆଲୋଚନା କରିବେ । ଏପରି ଏକ ପ୍ରତିଶ୍ରୁତି ପ୍ରାପ୍ତ ହେଲେ ଗୋଟାଏ ସାଧାରଣ ମିଳାମିଶା ହେବାର ସମ୍ଭବନା ହେବ—ତାହା ସଙ୍ଗେ ସଙ୍ଗେ ଆଇନ ଅମାନ୍ୟ ଆନ୍ଦୋଳନ ମଧ୍ୟ ପ୍ରତ୍ୟାହାର କରାଯିବ; ସରକାର ତାର ଦମନମୂଳକ ନୀତି ରହିତ କରିବ ଏବଂ ସମସ୍ତ ରାଜବନ୍ଦୀଙ୍କୁ ଖଲାସ କରିଦିଆଯିବ । ପରସ୍ପର ରାଜିନାମାରେ ହୋଇଥିବା ସର୍ତ୍ତ ଅନୁସାରେ କଂଗ୍ରେସ ଗୋଲଟେବୁଲ ସମ୍ମିଳନୀରେ ଯୋଗ ଦେବ ।

ଅସ୍ପଷ୍ଟ ଓ ମୋଟା ମୋଟି ବକ୍ତୃତି — ଏଥିରେ ଆହୁରି ପରିଷ୍କାର ରୂପେ ଜଣାଇ ଦିଆଯାଇଥିଲା ଯେ ପିତା ଓ ଗାନ୍ଧିଜୀ ମୋ ସହିତ ପରାମର୍ଶ ନ କରିବା ପର୍ଯ୍ୟନ୍ତ ଏହି ଅସ୍ପଷ୍ଟ ସନ୍ଧି ମଧ୍ୟ ହସ୍ତଗତ କରାଯାଇ ପାରିବ ନାହିଁ । ସେ ବର୍ଷ ମୁଁ କଂଗ୍ରେସ ସଭାପତି ଥିବାରୁ ମୋ କଥା ଉଠିଥିଲା । ମୋର ମନେହୁଏ ପିତା ଗିରଫ ପରେ ନୈନି ଜେଲରେ ମୋତେ ଏକଥା କହିଥିଲେ । ସେ ଆହୁରି କହିଲେ ଯେ ଭଡ଼ଭଡ଼ ହୋଇ ଏପରି ଏକ ଅସ୍ପଷ୍ଟ ବକ୍ତୃତା ଦେଇଥିବାରୁ ସେ ଦୁଃଖିତ — କାରଣ ଏଥିରେ ଭୁଲ ବୁଝି ପାରିବାର ସମ୍ଭାବନା ରହିବ । ଆଜି ପରିଷ୍କାର ବକ୍ତୃତାକୁ ମଧ୍ୟ ଲୋକେ ଭୁଲ ବୁଝନ୍ତି — ସେହିପରି ଯେଉଁ ଲୋକଙ୍କର ଚିନ୍ତାଧାରା ସଂପୂର୍ଣ୍ଣ ପୃଥକ୍ ସେମାନେ ମଧ୍ୟ ଏହାକୁ ଭୁଲ ବୁଝିବେ ।

ହଠାତ୍ ଜୁଲାଇ ୨୭ ତାରିଖରେ ଗାନ୍ଧିଜୀଙ୍କଠାରୁ ଏକ ଲେଖା ସଙ୍ଗରେ ନେଇ ସାର୍ ତେଜ ବାହାଦୁର ସାପ୍ରୁ ଓ ମିଷ୍ଟର ଜୟକାର ଆସି ନୈନି ଜେଲରେ ଆମ ପାଖରେ ପହଞ୍ଚିଲେ । ସେଦିନ ଓ ତା ପରଦିନ ଆମର ତାଙ୍କ ସହିତ ଦୀର୍ଘକାଳ ପର୍ଯ୍ୟନ୍ତ ସାକ୍ଷାତ୍ ହୋଇଥିଲା — କାରଣ ବାପା ଜର ଭୋଗୁଥିବାରୁ ବଡ଼ କ୍ଳାନ୍ତ ହୋଇ ପଡ଼ିଥିଲେ । ଆମ ରାଜନୀତି ଦୃଷ୍ଟିକୋଣ ମଧ୍ୟରେ ଏପରି ପ୍ରଭେଦ ଥିଲା ଯେ, ଆମେ ବୁଲେଇ ବୁଲେଇ କଥାବାର୍ତ୍ତା କରୁଥିଲୁ — ପରସ୍ପରର ଭାଷା ବା ଭାବ କେହି ବୁଝିପାରି ନ ଥିଲୁ । ଅବସ୍ଥା ଯେପରି ସେଥିରେ କଂଗ୍ରେସ ଓ ସରକାର ମଧ୍ୟରେ ମିଳାମିଶା ହେବା ଆଦୌ ସମ୍ଭାବନା ନାହିଁ ବୋଲି ଆମକୁ ମାଲୁମ ହେଉଥିଲା । ଆମେ ପ୍ରଥମେ କାର୍ଯ୍ୟକାରୀ ସମିତିର ସଭ୍ୟମାନଙ୍କୁ ବିଶେଷତଃ ଗାନ୍ଧିଜୀଙ୍କୁ ପରାମର୍ଶ ନ କରି କିଛି ମତ ଦେଇପାରିବୁ ନାହିଁ ବୋଲି କହିଲୁ । ଆମେ ଗାନ୍ଧିଜୀଙ୍କୁ ମଧ୍ୟ ସେହିପରି ଲେଖିଦେଲୁ ।

୧୧ ଦିନ ପରେ ଅଗଷ୍ଟ ୮ ତାରିଖରେ ଡ଼ାକ୍ତର ସାପ୍ରୁ ବଡ଼ଲାଟଙ୍କ ଉତ୍ତର ନେଇ ପୁଣି ଆମ ସହିତ ସାକ୍ଷାତ୍ କରିବାକୁ ଆସିଲେ । ଆମକୁ ଯେରବାଡା ଜେଲକୁ ( ଗାନ୍ଧିଜୀ ପୁନାର ଏହି ଜେଲରେ ଥାଆନ୍ତି )

ଯଠାଇବାରେ ବଡ଼ଲାଟଙ୍କର କୌଣସି ଆପତ୍ତି ନ ଥିଲା, ମାତ୍ର ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏବଂ ମୌଲାନା ଆବୁଲ କାଲାମ ଆଜାଦ ଓ ବାହାରେ ଥିବା କଂଗ୍ରେସ କାର୍ଯ୍ୟକାରୀ ସମିତି ସଭ୍ୟଙ୍କ ସହିତ ସାକ୍ଷାତ କରିବାକୁ ଅନୁମତି ଦେଇ ପାରିବେ ନାହିଁ—ସେମାନେ ଏବେ ସୁଦ୍ଧା ବାହାରେ ରହି ସରକାର ବିରୁଦ୍ଧରେ ଆନ୍ଦୋଳନ ଚଳାଇଛନ୍ତି । ଏପରି ଅବସ୍ଥାରେ ଆମେ ସ୍ୱୈରବାର୍ତ୍ତା ପିବାକୁ ରାଜି ଅଛୁ କି ନାହିଁ ଆମକୁ ଡାକ୍ତର ସାପ୍ରୁ ପଚାରିଲେ । ଆମେ କହିଲୁ କୌଣସି ସମୟରେ ଗାନ୍ଧିଜୀଙ୍କ ସହିତ ଦେଖା କରିବାକୁ ଆମର କୌଣସି ଆପତ୍ତି ନ ଥିଲା ଏବଂ ନ ଥାଇ ପାରେ, ମାତ୍ର ଆମେ ଅନ୍ୟ ସହକର୍ମୀଙ୍କ ସହିତ ସାକ୍ଷାତ୍ କରିପାରୁ ନ ଥିବାରୁ କୌଣସି ଶେଷ ନିଷ୍ପତ୍ତିରେ ପହଞ୍ଚିପାରିବୁ ନାହିଁ । ସେହିଦିନ କାଗଜରେ (କିମ୍ବା ତା ପୂର୍ବଦିନ) ଖବର ପ୍ରକାଶ ପାଇଥିଲା ଯେ, ବମ୍ବେରେ ଭୀଷଣ ଲାଠିପ୍ରହାର ହୋଇଛି ଏବଂ ସେଠାରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ମାଲବ୍ୟଜୀ, ତସଦୁକ ଶେରୱାନୀ ଏବଂ କାର୍ଯ୍ୟକାରୀ ସମିତିର ସ୍ଥାୟୀ ବା ଅସ୍ଥାୟୀ ସଭ୍ୟ କେତେକ ଗିରଫ ହୋଇଛନ୍ତି । ଅବସ୍ଥାର କିଛି ଉନ୍ନତି ହୋଇନାହିଁ ବୋଲି ଆମେ ଡାକ୍ତର ସାପ୍ରୁଙ୍କୁ ଦେଖାଇଲୁ ଏବଂ ବଡ଼ଲାଟଙ୍କ ପାଖରେ ସବୁ କଥା ପରିଷ୍କାରରୂପେ ଜଣାଇଦେବା ନିମନ୍ତେ କହିଲୁ; ମାତ୍ର ଡାକ୍ତର ସାପ୍ରୁ କହିଲେ, ସେ ଯାହାହେଉ ଗାନ୍ଧିଜୀଙ୍କ ସହ ଯେତେ ଶୀଘ୍ର ସମ୍ଭବ ସାକ୍ଷାତ୍ କଲେ କିଛି କ୍ଷତି ନାହିଁ । ଆମେ ଆଗରୁ ଡାକ୍ତର ସାପ୍ରୁଙ୍କୁ କହିଥିଲୁ ଯେ, ଆମକୁ ଯଦି ସ୍ୱୈରବାର୍ତ୍ତା ପଠାଯାଏ, ତେବେ ଆମ ସହିତ ଡାକ୍ତର ସୟଦ ମାମୁଦ ମଧ୍ୟ ପିବେ । କାରଣ ସେ କଂଗ୍ରେସ ସମ୍ପାଦକ ।

ଦୁଇଦିନ ପରେ ଅଗଷ୍ଟ ୧୦ ତାରିଖରେ ମୁଁ, ପିତା ଏବଂ ଡାକ୍ତର ସୟଦ ମାମୁଦ ଏକ ସ୍ୱତନ୍ତ୍ର ରେଲଗାଡ଼ିରେ ନୈନୀରୁ ପୁନା ପଠାହେଲୁ । ବଡ଼ ବଡ଼ ଷ୍ଟେସନମାନଙ୍କରେ ଆମ ଗାଡ଼ି ରହୁ ନ ଥିଲା; ଆମେ ସେଗୁଡ଼ିକ ଅତିକ୍ରମ କରିବାକୁ ଛୋଟ ଛୋଟ ଷ୍ଟେସନରେ

ଷ୍ଟେସନମାନଙ୍କରେ ଗାଡ଼ି ରହୁଥାଏ । ତଥାପି ଖବର ଗୁରିଆଡ଼େ ବ୍ୟାପିଯାଉଥାଏ—ଗାଡ଼ି ଯେଉଁଠି ରହୁଥିଲା ସେଠାରେ ଏବଂ ନ ରହୁଥିବା ସ୍ଥାନରେ ମଧ୍ୟ ବହୁତ ଲୋକ ଜମା ହୋଇ ଯାଉଥିଲେ । ୯୧ ତାରିଖ ଅନେକ ରାତିରେ ଆମେ ପୁନା ନିକଟସ୍ଥ କର୍କି ଷ୍ଟେସନରେ ପହଞ୍ଚିଲୁ ।

ଆମେ ଆଶା କରୁଥିଲୁ ଗାନ୍ଧିଜୀଙ୍କ ସହିତ ଏକା ବାରିକ୍‌ରେ ଆମ୍ଭମାନଙ୍କୁ ରଖାଯିବ କିମ୍ବା ଅନ୍ତତଃ ଅତି ଶୀଘ୍ର ତାଙ୍କ ସହିତ ଆମର ସାକ୍ଷାତ୍ ହେବ । ଯେରବାଦା ଜେଲର ସୁପରିଣ୍ଟେଣ୍ଡେଣ୍ଟ ସେହିପରି ବ୍ୟବସ୍ଥା କରିଥିଲେ; ମାତ୍ର ଶେଷ ମୁହୂର୍ତ୍ତରେ ଆମ ସହିତ ନେଇଆସୁ ଯାଇଥିବା ପୁଲିସ କର୍ମଚାରୀଠାରୁ ଜଣେ ଇଙ୍ଗିତ ପାଇ ତାଙ୍କ ବ୍ୟବସ୍ଥା ବଦଳାଇବାକୁ ପଡ଼ିଲା । ଯେରବାଦା ଜେଲ ସୁପରିଣ୍ଟେଣ୍ଡେଣ୍ଟ କର୍ଣ୍ଣେଲ ମାର୍ଟିନ୍ ଆମକୁ ଏହି ଗୁପ୍ତ କଥା ଜଣାଇ ନ ଥିଲେ; କିନ୍ତୁ ପିତା ସେ ଭାବରେ ଗୋଟିଏ ପ୍ରଶ୍ନ ପଚାରିବାରୁ ଜଣାପଡ଼ିଲା, ସାପ୍ରୁ ଓ ଜୟକାରଙ୍କ ଅନୁପସ୍ଥିତିରେ ଆମର ଗାନ୍ଧିଜୀଙ୍କ ସହ ଅନ୍ତତଃ ପ୍ରଥମ ଭେଟ ହେବା ଉଚିତ ନୁହେଁ ମନେ କରି ଏପରି ବ୍ୟବସ୍ଥା ହୋଇଛି । ଆମେମାନେ ପୂର୍ବରୁ ସାକ୍ଷାତ୍ କଲେ ହୁଏତ ଆମର ମନୋଭାବ ଆହୁରି ଦୃଢ଼ ହୋଇଯାଇପାରେ କିମ୍ବା ଆମର ପରସ୍ପର ମତ ଆହୁରି ଦୃଢ଼ତାର ସହିତ ବ୍ୟକ୍ତ କରିପାରୁ ବୋଲି ଭୟ କରାଯାଉଥିଲା । ତେଣୁ ସେହି ରାତିଟି ଓ ତାପରର ଦିନ ଓ ରାତି ଆମକୁ ଏକ ପୃଥକ୍ ବାରିକରେ ରଖାଗଲା । ତାହା ଏଥିରେ ଭୀଷଣ ବିରକ୍ତ ହୋଇ ଉଠିଲେ । କେବଳ ଗାନ୍ଧିଜୀଙ୍କ ସହ ସାକ୍ଷାତ୍ କରିବା ନିମନ୍ତେ ଏତେ ବାଟ ଆସିଛନ୍ତି—ଅଥଚ ସେଠାକୁ ଆସି ତାଙ୍କ ସହିତ ସାକ୍ଷାତ କରିବାକୁ ଅନୁମତି ନ ପାଇବାରୁ ବଡ଼ ବିରକ୍ତିକର ବୋଧ ହେଲା । ତା ୧୩ ରିଖ ଉପରବେଳା ସାର ତେଜବାହାଦୁର ସାପ୍ରୁ ଓ ମିଷ୍ଟର ଜୟକାର ଆସିଛନ୍ତି ବୋଲି ଆମେ ଶୁଣିଲୁ । ଗାନ୍ଧିଜୀଙ୍କୁ ଜେଲଖାନା ଅଫିସକୁ କଢ଼ା ହୋଇଥିଲା, ଆମକୁ ସେଠାକୁ ଦିବା ସକାଶେ ଲୁହାଗଲା । ବାପା ପିତାଙ୍କୁ ଅସ୍ୱୀକାର କଲେ । ତାପରେ କ୍ଷମା ଓ ନାନା

କୈଫିୟତ ପରେ ଯଦି ଏକାକୀ ପ୍ରଥମେ ଗାନ୍ଧିଜୀଙ୍କ ସହ ସାକ୍ଷାତ ହୋଇ ପାରିବ ତେବେ ସେ ଯିବାକୁ ସମ୍ମତ ହେବେ । ତାହାହିଁ ହେଲା । ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ଜୟରାମ ଦାସ ଦୌଲତରାମ ଯେରବାଦା ଜେଲକୁ ଆସିଥାଆନ୍ତି । ସରୋଜିନୀ ନାଇଡ଼ୁଙ୍କୁ ମଧ୍ୟ ସ୍ତ୍ରୀଲୋକଙ୍କ ଜେଲରେ ସେଠାରେ ରଖାଯାଇଥିଲା ପରେ ଆମର ମିଳିତ ଅନୁରୋଧକ୍ରମେ ଏହି ସମ୍ମିଳନୀକୁ ସେମାନଙ୍କୁ ମଧ୍ୟ ଅଣା ହେଲା । ସେଦିନ ସନ୍ଧ୍ୟାବେଳେ ବାପା, ମୁଁ ଓ ମାମୁଦ ଗାନ୍ଧିଜୀଙ୍କ ବେଷ୍ଟନୀକୁ ଗଲୁ—ଆମେ ଯେରବାଦା ଜେଲରେ ରହିଥିବା ଅବଶିଷ୍ଟ ସମୟ ସେଠାରେ ତାଙ୍କ ସହିତ କଟାଇଲୁ । ଆମେ ସବୁ ଏକାଠି ପରାମର୍ଶ କରିବା ସୁବିଧା ହେବା ନିମନ୍ତେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ଜୟରାମ ଦାସ ଦୌଲତରାମ ମଧ୍ୟ ସେଠାକୁ ଅଣାହେଲେ ।

ଅଗଷ୍ଟ ୧୩, ୧୪ ଓ ୧୫ ତିନି ଦିନ ପର୍ଯ୍ୟନ୍ତ ଜେଲଖାନା ଅଫିସରେ ଆମର ଡାକ୍ତର ସାପ୍ରୁ ଓ ଜୟକାରଙ୍କ ସହ ସମ୍ମିଳନୀ ଚାଲିଲା । ପରସ୍ପର ମତ ଲେଖି ଆମର ଚିଠି ଦିଆନିଆ ହେଲା । ଅନ୍ୟୂନ କେଉଁ ସର୍ତ୍ତ ପୂରଣ ହେଲେ ଆମେ ଆଇନ ଅମାନ୍ୟ ପ୍ରତ୍ୟାହାର କରିବୁ ଏବଂ ସରକାର ସହିତ ସହଯୋଗ କରିପାରିବୁ, ଏହା ଜଣାଇ ଦେଇଥିଲୁ । ପରେ ଏହି ଚିଠି*ସବୁ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା ।

ଏହି ସମ୍ମିଳନୀରେ ପରିଶ୍ରମ ହେତୁ ପିତାଙ୍କ ଦେହ ଖରାପ ହେଲା ଏବଂ ହଠାତ୍ ୧୬ ତାରିଖ ଦିନ ରାତିରେ ତାଙ୍କର ବେଶି ଜ୍ୱର ହେଲା । ଏଥିଯୋଗୁଁ ଆମର ଫେରିବାରେ ଡେରି ହେଲା । ଆମେ ସ୍ୱତନ୍ତ୍ର ଗାଡ଼ିରେ ୧୯ ତାରିଖ ରାତିରେ ପୁଣି ନୈନୀକୁ ଆସିଲୁ । ପିତା-ଙ୍କର ଯେପରି ସ୍ୱଚ୍ଛନ୍ଦ ପାଇବା ହୁଏ, ସେଥିପାଇଁ ବମ୍ବେ ସରକାର ସକଳ ପ୍ରକାର ଉଦ୍ୟମ କରିଥିଲେ—ଯେରବାଦା ଜେଲରେ କ୍ଷଣକାଳ ପାଇଁ ଥିବା ସମୟରେ ମଧ୍ୟ ସମସ୍ତ ସୁବିଧା ହେବା ସକାଶେ ଚେଷ୍ଟା ହେଉ-

---

*ଏହି ଚିଠି ପରିଶିଷ୍ଟରେ ଦିଆଯାଇଛି ।

ଥିଲି । ଆମେ ପହଞ୍ଚିବା ଦିନ-ରାତିରେ ଏକ ମଜାର ଘଟଣା ଘଟିଥିଲା । କେଉଁ ଖାଦ୍ୟ ପିତାଙ୍କର ପସନ୍ଦ ହେବ ବୋଲି ସେଦିନ ଜେଲ ସୁପରି-ଣ୍ଟେଣ୍ଡେଣ୍ଟ କର୍ଣ୍ଣେଲ ମାର୍ଟିନ ପଚାରିଲେ । ବାପା କହିଲେ, ସେ ଅତି ସରଳ ଓ ହାଲୁକା ଖାଦ୍ୟ ଚାହାନ୍ତି—ସେହି ଅନୁସାରେ ସକାଳ ଗୃହାଠାରୁ ରାତି ଭୋଜନ ପର୍ଯ୍ୟନ୍ତ ତାଙ୍କର କଣ ଦରକାର ତାହା କହିଦେଲେ । (ନୈନୀରେ ପ୍ରତିଦିନ ଆମ ଘରୁ ତାଙ୍କ ପାଇଁ ଖାଦ୍ୟ ତିଆରି ହୋଇ ଯାଏ) । ବାପା ସରଳ ଭାବରେ ଯେଉଁ ଲଘୁଖାଦ୍ୟ ତାଲିକା ଦେଲେ, ତାହା ଗୁରୁତର ମନେ ହେଲା । ଖୁବ୍ ସମ୍ଭବତଃ ଲଣ୍ଡନର ରିଜ୍ ବା ସାଭଏ ହୋଟେଲରେ ଏହା ଅତି ସାଧାରଣ ଖାଦ୍ୟ ବୋଲି ଧରାଯିବ । ବାପାଙ୍କର ମଧ୍ୟ ଧାରଣା ଥିଲା ଯେ, ଏହା ଅତ୍ୟନ୍ତ ସରଳ ଖାଦ୍ୟ । ମାତ୍ର ଯେରବାଦା ଜେଲ ଭିତରେ ଏହା ଅତ୍ୟନ୍ତ ଅଦ୍ଭୁତ ଓ ଦୁର୍ଲଭ ଜିନିଷ ହୋଇ ପଡ଼ିଲା । ଖାଦ୍ୟ ବିଷୟରେ ପିତାଙ୍କର ବ୍ୟୟସାପେକ୍ଷ ଅନେକ ପ୍ରକାର ଖାଦ୍ୟର ବିବାଦ ଶୁଣି କର୍ଣ୍ଣେଲ ମାର୍ଟିନଙ୍କ ମୁହଁରେ ଯେପରି ଭାବ ପ୍ରକାଶିତ ହେଉଥିଲା, ତାହା ଲକ୍ଷ୍ୟ କରି ମୁଁ ଓ ମାମୁଦ ହସୁଥାଉଁ । ଅନେକଦିନ ଧରି ତାଙ୍କ ଅଧୀନରେ ଭାରତର ସର୍ବାପେକ୍ଷା ଉତ୍କୃଷ୍ଟ ନେତା ରହିଥିଲେ । ମାତ୍ର ତାଙ୍କର ଖାଦ୍ୟ ଲାଗି କେବଳ ଛେଳିଦୁଧ, ଖଜୁରି ଏବଂ ସମସ୍ତ ସମୟରେ ଲେମ୍ବୁ ଦରକାର ହେଉଥିଲା । ମାତ୍ର ଏ ଯେଉଁ ନୂଆ ପ୍ରକାର ନେତା ଆସି ପହଞ୍ଚିଲେ, ଏ ସମ୍ପୂର୍ଣ୍ଣ ଭିନ୍ନ ଧରଣର ଲୋକ ।

ଆମେ ପୁନାରୁ ନୈନୀ ଫେରିବା ବେଳେ ମଧ୍ୟ ଆମ ଗାଡ଼ି ବଡ଼ ବଡ଼ ଷ୍ଟେସନ ଦେଇ ଦ୍ରୁତଗତିରେ ଚାଲିଆସି ଅଣଅଡ଼ୁଆ ଜାଗାରେ ରହୁଥିଲା । ମାତ୍ର ଏଥରକ ଲୋକଗହଳି ଆହୁରି ବେଶି ହୋଇଥାଏ ପ୍ଲାଟଫର୍ମ ଏବଂ ସମୟ ସମୟରେ ରେଲଲାଇନରେ ମଧ୍ୟ ଲୋକ ଜମା ହୋଇଯାଆନ୍ତି—ବିଶେଷତଃ ହାର୍ଡ଼ା, ଇଟାର୍ସି ଓ ସୋହାଗପୁରରେ ଏପରି ହୋଇଥିଲା । ଦୁର୍ଘଟଣା ସବୁ ଅତି ଅଳ୍ପକେ ରକ୍ଷା ପାଇଥିଲା ।

ପିତାଙ୍କର ଶରୀର ଦିନକୁ ଦିନ ଖରାପ ହେଉଥାଏ । ତାଙ୍କ ନିଜ ଡାକ୍ତର ଏବଂ ପ୍ରାଦେଶିକ ସରକାର ତରଫରୁ କେତେ ଡାକ୍ତର ଆସି ତାଙ୍କୁ ପରୀକ୍ଷା କଲେ । ଜେଲରେ ତାଙ୍କର ଉପଯୁକ୍ତ ଚିକିତ୍ସା ହୋଇପାରିବ ନାହିଁ ବୋଲି ପରିଷ୍କାର ଜଣାପଡ଼ିଲା । ଅଥଚ ତାଙ୍କର ଅସୁସ୍ଥତା ଯୋଗୁ ତାଙ୍କୁ ଖଲାସ କରିଦେବା ଉଚିତ ବୋଲି ଯେତେବେଳେ କୌଣସି ବନ୍ଧୁ ଖବରକାଗଜରେ ମତ ପ୍ରକାଶ କରିଥିଲେ, ସେତେବେଳେ ସେ ଖୁବ୍ ବିରକ୍ତ ହୋଇଗଲେ । ତାଙ୍କ ତରଫରୁ ଏପରି ପ୍ରସ୍ତାବ ହେଉଛି ବୋଲି ଲୋକେ ଭାବିପାରନ୍ତି । ଏପରିକି ସେ ଲର୍ଡ଼ ଇରଉଇନଙ୍କୁ ତାର ପଠାଇ ଜଣାଇ ଦେଲେ ଯେ, ଏକ ବିଶେଷ ଅନୁଗ୍ରହ ଭାବରେ ସେ ଖଲାସ ହେବାକୁ ଚାହାନ୍ତି ନାହିଁ । ମାତ୍ର ତାଙ୍କ ଅବସ୍ଥା ଦିନକୁ ଦିନ ଖରାପ ହେବାକୁ ଲାଗିଲା; ତାଙ୍କର ଓଜନ ଦ୍ରୁତ ଗତିରେ କମୁଥିଲା ଏବଂ ଦେହ ଅତ୍ୟନ୍ତ ଶୀର୍ଣ୍ଣ ହୋଇଗଲା । ସେପ୍ଟେମ୍ବର ତା୮ରିଖରେ ଠିକ୍ ଦଶ ସପ୍ତାହ ରହିବାପରେ ତାଙ୍କୁ ଖଲାସ କରି ଦିଆଗଲା ।

ପିତା ଚାଲିଗଲା ପରେ ଆମ ବାରାକ୍‌ର ଜୀବନ ବଡ଼ ନିରାନନ୍ଦମୟ ଓ ପ୍ରାଣହୀନ ହୋଇ ପଡ଼ିଥିଲା । ସେ ଆମ ସହିତ ଥିଲାବେଳେ ଆମକୁ କେତେ କାର୍ଯ୍ୟ କରିବାକୁ ପଡ଼ୁଥିଲା—ତାଙ୍କୁ ଆରାମ ନିମନ୍ତେ ମାମୁଦ ନର୍ମଦା ପ୍ରସାଦ ସିଂ ଓ ମୋତେ କିଛି କିଛି କାର୍ଯ୍ୟ କରିବାକୁ ପଡ଼ୁଥିଲା ଏବଂ ଏପରି ସେବାରେ ଆମେ ଆନନ୍ଦ ଅନୁଭବ କରୁଥିଲୁ । ମୁଁ ଫିତା-ବୁଣା ଛାଡ଼ିଦେଲି, ସୂତା ଖୁବ୍ କମ କାଟୁଥିଲି ଏବଂ ବେଶି ବହି ପଢ଼ି-ବାକୁ ମଧ୍ୟ ମୋର ସମୟ ନ ଥିଲା । ସେ ଚାଲିଗଲା ପରେ ଆମେ ଅତି ନିୟମିତ ଭାବରେ ଆମର ପୁରୁଣା ରୁଟିନ୍ ଅନୁସାରେ ପୁଣି କାର୍ଯ୍ୟ କରିବାକୁ ଲାଗିଲୁ । ଏପରିକି ପିତା ଖଲାସ ହୋଇଯିବା ପରେ ଦୈନିକ ସମ୍ବାଦପତ୍ର ବି ବନ୍ଦ ହୋଇଗଲା । ୪।୫ ଦିନ ପରେ ମୋ ଭଣେଇ ରଣଜିତ୍ ଏସ, ପଣ୍ଡିତ ଗିରଫ ହୋଇ ଆସି ଆମ ସହିତ ବାରାକ୍‌ରେ ରହିଲେ ।

ଏହା ମାସ ପରେ ଅକ୍ଟୋବର ୧୧ ତାରିଖରେ ମୋର ୬ ମାସ ପୂରଗଲା ପରେ ମୁଁ ଖଲାସ ହୋଇଗଲି । ସଂଗ୍ରାମ ଦିନଙ୍କୁ ଦିନ ଗୁରୁତର ଆକାର ଧାରଣ କରୁଥାଏ—ଏପରି ଅବସ୍ଥାରେ ମୁଁ ଅଳ୍ପଦିନ ବାହାରେ ରହିବି ବୋଲି ଜାଣିଥିଲି । 'ଶାନ୍ତିଦୂତ' ଗାନ୍ଧୀ ଓ କଂଗ୍ରେସଙ୍କ ଉଦ୍ୟମ ବିଫଳ ହୋଇଥିଲା । ମୁଁ ଖଲାସ ହେବା ଦିନ ଆଉ ଗୋଟିଏ ବା ଦୁଇଟି ଅର୍ଡିନାନ୍ସ ଘୋଷଣା କରାଗଲା । ମୁଁ ଖଲାସ ହୋଇ ଖୁସି ହେଲି ଏବଂ ଯେଉଁ ଅଳ୍ପଦିନ ମୁକ୍ତ ପାଇଲି, ସେହି ସମୟ ଭିତରେ କିଛି ଫଳପ୍ରଦ କାର୍ଯ୍ୟ କରିବା ନିମନ୍ତେ ବ୍ୟଗ୍ର ଥିଲି ।

ସେତେବେଳେ କମଳା ଏଲାହାବାଦରେ ଥାଏ—ତାର କଂଗ୍ରେସ କାର୍ଯ୍ୟରେ ସେ ବ୍ୟସ୍ତ ଥାଏ । ପିତା ଚିକିତ୍ସା ସକାଶେ ମସୌରୀରେ ଥାଆନ୍ତି—ମୋ ମାଆ ଓ ଭଉଣୀମାନେ ତାଙ୍କ ପାଖରେ ଥାଆନ୍ତି । ମୁଁ କମଳା ସହିତ ମସୌରୀ ଯିବା ପୂର୍ବରୁ ଏଲାହାବାଦରେ ଦିନେ ଦି' ଦିନ ଖୁବ୍ କାର୍ଯ୍ୟବ୍ୟସ୍ତ ରହିଲି । ସେତେବେଳେ ମଫସଲ ଅଞ୍ଚଳରେ ଟିକସ-ବନ୍ଦ ଆନ୍ଦୋଳନ ଚଳାଇବୁ କି ନାହିଁ ଏହି ସମ୍ବନ୍ଧେ ଆମେ ବିଚାର କରୁଥାଉଁ । ଖଜଣା ଆଦାୟ ଓ ରାଜସ୍ୱ ଦେବାର ସମୟ ନିକଟବର୍ତ୍ତୀ ହୋଇଥାଏ ଏବଂ ଶସ୍ୟ ପ୍ରଭୃତିର ମୂଲ୍ୟ ହ୍ରାସ ହୋଇ ଯାଇଥିବାରୁ ଆଦାୟ ବଡ଼ କଷ୍ଟକର ହେଉଥିଲା । ଏତେବେଳକୁ ପୃଥିବୀର ଆର୍ଥିକ ଦୁର୍ଗତିର ପ୍ରତିଫଳ ଭାରତରେ ଆସି ପଡ଼ିଥିଲା ।

ଏକ ସାଧାରଣ ଆଇନ ଅମାନ୍ୟ ଆନ୍ଦୋଳନର ଅଙ୍ଗ ଏବଂ ସ୍ୱାଧୀନ ଭାବରେ ସେହି କଥାକୁ ଦେଖିଲେ ଟିକସ ବନ୍ଦ ଆନ୍ଦୋଳନ ଆରମ୍ଭର ଏହାହିଁ ଶୁଭ ମୁହୂର୍ତ୍ତ । ସେ ବର୍ଷର ଉତ୍ପନ୍ନ ଶସ୍ୟରୁ କୃଷି ଖଜଣା ଓ ରାଜସ୍ୱ ଦେବା ପ୍ରଜା ଓ ଜମିଦାର ଉଭୟଙ୍କ ପକ୍ଷେ କଷ୍ଟକର ଥିଲା । କିଛି ମୂଳଧନ ସଞ୍ଚିତ ଧନ ଥିଲେ ସେଥିରୁ ଦେବେ ନଚେତ୍ ଧାର କରିବାକୁ ହେବ । ଜମିଦାରଙ୍କ ହାତରେ ସାଧାରଣତଃ କିଛି ହେଲେ ଥାଏ, ନଚେତ୍ ସେମାନେ ଅତି ସହଜରେ ଋଣ କରିପାରନ୍ତି, ମାତ୍ର

ସର୍ବଦା ହତାଶ ଓ କ୍ଷୁଧାର୍ତ୍ତ ଅବସ୍ଥାରେ ଥିବା ସାଧାରଣ କୃଷକ ହାତରେ କିଛି ନ ଥାଏ। କୌଣସି ଗଣତନ୍ତ୍ର ଦେଶରେ କର୍ମୀ ଚାଷୀମାନେ ଯେଉଁଠାରେ ଠିକ୍ ଭାବରେ ସଙ୍ଗଠିତ ହୋଇଛନ୍ତି ଓ ପ୍ରବଳ ଅଛି, ସେଠାରେ ଏପରି ଅବସ୍ଥାରେ ସେମାନଙ୍କଠାରୁ ବର୍ଦ୍ଧିତ ଆଦାୟ କରିବା ସମ୍ପୂର୍ଣ୍ଣ ଅସମ୍ଭବ ଥିଲା। ଭାରତରେ ସେମାନଙ୍କର ସେପରି କିଛି ପ୍ରଭାବ ହୋଇ ନ ଥିଲା—କେବଳ ଦେଶର କେତେକ ଅଞ୍ଚଳରେ କଂଗ୍ରେସ ସେମାନଙ୍କ ସମସ୍ୟା ବୁଝାସୁଝା କରୁଥିଲା। ଅବଶ୍ୟ ଅବସ୍ଥା ସହ୍ୟ କରି ନ ପାରି କୃଷକମାନେ ବିଦ୍ରୋହୀ ହୋଇ ଉଠିବାର ଆଶଙ୍କା ସବୁବେଳେ ଥିଲା। କିଛି ପାଟିତୁଣ୍ଡ ନ କରି ଯୁଗ ଯୁଗ ଧରି ଏପରି ଅବସ୍ଥାକୁ ସହ୍ୟ କରିବା ସେମାନେ ଶିଖିଛନ୍ତି।

ଗୁଜରାଟ ଏବଂ ଅନ୍ୟ କେତେକ ଅଞ୍ଚଳରେ ସେତେବେଳକୁ ଟିକସ ବନ୍ଦ ଆନ୍ଦୋଳନ ଚାଲୁଥାଏ। ଆଇନ ଅମାନ୍ୟ ଆନ୍ଦୋଳନର ଅଙ୍ଗ ରୂପେ ଏହା ଏକ ରାଜନୈତିକ ସଂଗ୍ରାମ ଭାବରେ କରାଯାଉଥାଏ। ସେଠାରେ ରୟତବାରୀ ପ୍ରଥା ପ୍ରଚଳନ ଏବଂ କୃଷକମାନେ ପ୍ରତ୍ୟକ୍ଷଭାବରେ ସରକାରଙ୍କୁ ଖଜଣା ଦିଅନ୍ତି। ସେମାନେ ଖଜଣା ନ ଦେଲେ ସରକାରଙ୍କୁ ସାଙ୍ଗେ ସାଙ୍ଗେ ସ୍ପର୍ଶ କରିବ। ଯୁକ୍ତପ୍ରଦେଶର ଅବସ୍ଥା ସ୍ୱତନ୍ତ୍ର—ଏଠାରେ ଜମିଦାରୀ ଓ ତାଲୁକଦାରୀ ପ୍ରଥା ପ୍ରଚଳିତ ଏବଂ ଚାଷୀ ଓ ସରକାର ଭିତରେ ମଧ୍ୟବର୍ତ୍ତୀ ଶ୍ରେଣୀ ଥାଆନ୍ତି। ଚାଷୀ ଖଜଣା ଦେବା ବନ୍ଦ କଲେ ଜମିଦାରମାନେ ସଙ୍ଗେ ସଙ୍ଗେ କଷ୍ଟ ପାଇବେ। ଏପରି ଭାବରେ ଏକ ଶ୍ରେଣୀ ସମସ୍ୟା ମଧ୍ୟ ଉଠୁଥିଲା। ମୋଟାମୋଟି ଭାବରେ କଂଗ୍ରେସ ଏକ ସ୍ୱତନ୍ତ୍ର ଜାତୀୟ ଅନୁଷ୍ଠାନ ଥିଲା—ଏଥିରେ ଅନେକ ମଧ୍ୟଭିତ୍ତିଆ ଓ ବଡ଼ ଜମିଦାର ମଧ୍ୟ ଥିଲେ। ଜମିଦାରଙ୍କୁ ଚିଡ଼ାଇବା ଭଳି କିମ୍ବା ଏକ ଶ୍ରେଣୀ ସମସ୍ୟା ଉସୁକାଇବା ଭଳି କୌଣସି କାର୍ଯ୍ୟ କରିବାକୁ ଏହାର ନେତାମାନେ ଭୟ କରୁଥିଲେ। ସେଥିପାଇଁ ଅନୁକୂଳ ଅବସ୍ଥା ଥାଇ ସୁଦ୍ଧା ପ୍ରଥମ ଛଅମାସ ଭିତରେ ଟିକସ ବନ୍ଦ ଆନ୍ଦୋଳନ କରିବା ନିମନ୍ତେ କଂଗ୍ରେସ ନେତାମାନେ ଆହ୍ୱାନ ଦେଲେ ନାହିଁ। ଏପରି ଭାବରେ

ବା ଅନ୍ୟ କୌଣସି ଉପାୟରେ ଶ୍ରେଣୀ ସମସ୍ୟା ଉଠିବାରେ ମୋର ଇଚ୍ଛା ଆଦୌ ନ ଥିଲା, ମାତ୍ର କଂଗ୍ରେସ ନେତୃବୃନ୍ଦ ଯେଉଁ ଅବସ୍ଥାରେ ଥିଲେ; ସେଥିରେ ଶ୍ରେଣୀ ସଂଘର୍ଷକୁ ଅନାହୂତ କରିବା ଠିକ୍ ହେବ ବୋଲି ମୁଁ ବୁଝିଲି । ଯାହା ହେଉ, ଖଜଣା ନଦେବା ନିମନ୍ତେ କଂଗ୍ରେସ ଜମିଦାର ଓ କୃଷକ ଉଭୟଙ୍କୁ ନିବେଦନ କରିଥାନ୍ତେ । ସାଧାରଣ ଜମିଦାର ହୁଏତ ସରକାରି ଦାବି ଖଜଣା ଦେଇଦେବେ—ମାତ୍ର ଦେଲେ ଦୋଷ ହେବ ତାଙ୍କର ।

ମୁଁ ଅକ୍ଟୋବରରେ ଅଲ୍ମୋଡ଼ା ହୋଇ ଆସି, ଦେଖିଲି, ରାଜନୈତିକ ଓ ଅର୍ଥନୈତିକ ଉଭୟ ଦୃଷ୍ଟିରୁ ମଫସଲ ଅଞ୍ଚଳରେ ଖଜଣା ବନ୍ଦ ଆନ୍ଦୋଳନ ପାଇଁ ଉପଯୁକ୍ତ ସମୟ ପହଞ୍ଚିଛି । ଚାଷୀମାନଙ୍କର ଆର୍ଥିକ ଦୁର୍ଗତି ଯଥେଷ୍ଟ ହୋଇଥାଏ । ରାଜନୈତିକ ଦୃଷ୍ଟିରୁ ଆମର ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟେକ ସ୍ଥାନରେ ଜୋର ସୋରରେ ଚାଲିଥିଲେ ସୁଦ୍ଧା ଟିକିଏ ଧୀରମନ୍ଥର ନିଷ୍ପ୍ରଭ ହୋଇ ଯାଇଥାଏ । ଅଳ୍ପ ସଂଖ୍ୟାରେ ଲୋକ ଜେଲ ଯାଉଥାନ୍ତି—ବେଳେବେଳେ ବହୁସଂଖ୍ୟାରେ ମଧ୍ୟ—ମାତ୍ର ବାୟୁମଣ୍ଡଳରୁ ସେ ଉତ୍ସାହ ଚାଲି ଯାଇଥାଏ । ହରତାଳ ଓ ଶୋଭାଯାତ୍ରା ଦ୍ୱାରା ସହରବାସୀ ଲୋକେ ଓ ମଧ୍ୟବିତ୍ତ ଶ୍ରେଣୀ କ୍ଲାନ୍ତ ହୋଇ ପଡ଼ିଥିଲେ । ଏହାକୁ ଜୀବନ୍ତ କରିବା ନିମନ୍ତେ କିଛି ଅଧିକ କାର୍ଯ୍ୟପନ୍ଥା ଦରକାର ହେଉଥିଲା—ନୂତନ କାର୍ଯ୍ୟପନ୍ଥା ଆବଶ୍ୟକ ଥିଲା । କୃଷକ ଛଡ଼ା ଆଉ କିଏ ତାହା କରି ପାରିବ ? ଏସବୁ ତ ଦେଶର ଅସ୍ଥିମଜ୍ଜା ସହିତ ସମ୍ବନ୍ଧ । ସେମାନେ ମାତିଲେ ଜନ-ସାଧାରଣଙ୍କ ଜୀବନ୍ତ ସମସ୍ୟା ସହିତ ସମ୍ପୃକ୍ତ ହୋଇ ଏକ ପ୍ରକୃତ ଗଣ ଆନ୍ଦୋଳନ ହୋଇ ଉଠିବ ଏବଂ ଏଥିରେ ମୂଳ ସାମାଜିକ ସମସ୍ୟା ସବୁ ଉଠିବ ବୋଲି ମୁଁ ଏହାକୁ ଅଧିକ ଗୁରୁତ୍ୱ ଦେଉଥିଲି ।

ମୁଁ ଏଲାହାବାଦରେ ଯେଉଁ ଦିନେ ଦି'ଦିନ ରହିଥିଲି, ସେତେବେଳେ ସହକର୍ମୀମାନଙ୍କ ସହ ଏ ସମ୍ବନ୍ଧରେ ଆଲୋଚନା କଲି । [illegible]

ସମସ୍ତ ଭିତରେ ଆମେ ପ୍ରାଦେଶିକ କଂଗ୍ରେସ କମିଟିର କାର୍ଯ୍ୟକାରୀ ସମିତିର ବୈଠକ ଡାକିଲୁ । ଦୀର୍ଘ ସମୟ ଆଲୋଚନା ପରେ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କରିବା ସ୍ଥିର କଲୁ । ସେ କୌଣସି ଜିଲ୍ଲା ଏହା ଆରମ୍ଭ କରିପାରେ ବୋଲି ଅନୁମତି ଦିଆଗଲା । ଆମେ ପ୍ରଦେଶରେ କୌଣସି ଅଂଶରେ ଏହା ଘୋଷଣା କଲୁ ନାହିଁ । କାର୍ଯ୍ୟକାରୀ ସମିତି ଜମିଦାର ଓ ପ୍ରଜା ଉଭୟଙ୍କୁ ନିବେଦନ କଲା ଏବଂ ଯଥାସମ୍ଭବ ଶ୍ରେଣୀ ସମସ୍ୟା ନ ଉଠାଇବାକୁ କହିଲା । ଅବଶ୍ୟ ଆମେ ଜାଣିଥିଲୁ ଯେ, କୃଷକମାନେ ହିଁ ଏଥିରେ ବେଶି ଯୋଗ ଦେବେ ।

ଏପରି ଅନୁମତି ମିଳିବା ସଙ୍ଗେ ସଙ୍ଗେ ଆମ ଏଲାହାବାଦ ଜିଲ୍ଲା ପ୍ରଥମେ ଆରମ୍ଭ କରିବା ନିମନ୍ତେ ଇଚ୍ଛା କଲା । ଆମର ନୂଆ ଆନ୍ଦୋଳନକୁ ଟିକିଏ ଅଗ୍ରସର କରାଇବା ନିମନ୍ତେ ଆମେ ଏକ ସପ୍ତାହ ପରେ ଜିଲ୍ଲାର ପ୍ରତିନିଧି-ସ୍ଥାନୀୟ କୃଷକଙ୍କର ସଭା ବା ଏକ କୃଷକ ସମ୍ମିଳନୀ ଡକାଇବାର ସ୍ଥିର କଲୁ । ମୁଁ ଜେଲରୁ ଖଲାସ ହେବା ଦିନଠୁଁ ଭଲ କାର୍ଯ୍ୟ କରିପାରିଛି ବୋଲି ଅନୁଭବ କଲି । ସେଦିନ ଏଲାହାବାଦରେ ଏକ ବିରାଟ ସାଧାରଣ ସଭାରେ ମୁଁ ଅନେକ କ୍ଷଣ ପର୍ଯ୍ୟନ୍ତ ବକ୍ତୃତା ଦେଲି । ଏହି ବକ୍ତୃତା ସକାଶେ ପରେ ପୁଣି ମୋତେ ଜେଲଦଣ୍ଡ ଦିଆଯାଇଥିଲା ।

ତା' ପରେ ମୁଁ ଓ କମଳା ମସୌରୀ ଯାଇ ପିତାଙ୍କ ସହିତ କିଛିଦିନ ରହିଲୁ । ତାଙ୍କ ଦେହ ଟିକିଏ ଭଲ ଥାଏ ଏବଂ ସେ ଭଳି ଆଗରୁ ଅସୁସ୍ଥ ନୁହନ୍ତି ଦେଖି ମୁଁ ସୁଖୀ ହେଲି । ସେହି ଆନନ୍ଦ ଓ ଶାନ୍ତିପ୍ରଦ କେତୋଟି ଦିନ ମୋର ଆଜି ସୁଦ୍ଧା ମନେ ଅଛି; ପରିବାର ଭିତରକୁ ପୁଣି ଫେରି ଆସିବାରେ କି ଆନନ୍ଦ ! ମୋ ଝିଅ ଇନ୍ଦିରା ସେଠାରେ ଥିଲା; ମୋ ଭଉଣୀର ତିନି ଝିଅ—ମୋ ଭାଣିଜୀ—ମଧ୍ୟ ସେଠାରେ ଥାଆନ୍ତି । ମୁଁ ପିଲାଙ୍କ ସହିତ ଖେଳୁଥାଏ—ବେଳେ ବେଳେ ଘର ଭିତରେ ଏକ ଶୋଭାଯାତ୍ରା କରି ଆମେ ସବୁ ବୁଲୁ—ସବୁଠାରୁ ଛୋଟପିଲାଟି—ତାହାର ବୟସ ପ୍ରାୟ ତିନି ବରଷ ହେବ—ହାତରେ ପତାକା ଧରି ଆଗରେ

...କିଆସେ—ଆମେ ସବୁ ଖଣ୍ଡା ନଇଁ ନେତା ନୂଆ ଶାରୀ ଗୀତ ଗାଇ ଘଣ୍ଟରେ ପାଉଥାଉ । ତା ପୀଡ଼ିତ ହୋଇ ଆମକୁ ଛାଡ଼ିଯିବା ପୂର୍ବରୁ କେବଳ ସେହି ଛଳକ୍ଷଣରୁ ମୁଁ ତାଙ୍କ ସହିତ ଶେଷଥର ପାଇଁ ରହି ପାରିଥିଲି ।

ମୁଁ ଅତି ଶୀଘ୍ର ଗିରଫ ହୋଇଯିବି ବୋଲି ଅନୁମାନ କରି ଏବଂ ମୋତେ ଆଉ କିଛିକାଳ ଦେଖିବାପାଇଁ ସେ ହଠାତ୍ ଏଲାହାବାଦ ଫେରିବାକୁ ସ୍ଥିର କଲେ । ୧୯ ତାରିଖରେ ଏଲାହାବାଦରେ କୃଷକ ସମ୍ମିଳନୀରେ ଉପସ୍ଥିତ ହେବା ନିମନ୍ତେ ମୁଁ ଓ କମଳା ଅକ୍ଟୋବର ୧୭ ତାରିଖରେ ମସୋରୀରୁ ଫେରିଲୁ । ଆମ ଆସିବା ପରଦିନ ଆମ୍ଭମାନଙ୍କ ସହିତ ପିତା ଆସିବାକୁ ସ୍ଥିର କଲେ ।

ଫେରିବାବେଳେ କମଳା ଓ ମୁଁ କିଛି ଉତ୍ତେଜନା ଅନୁଭବ କଲୁ । ଡେରାଡୁନ ଠିକ ମୁଁ ଛାଡ଼ି ଆସୁଥିବା ବେଳେ ମୋ ଉପରେ ଏକ ୧୪୪ ଧାରା ନୋଟିସ ଜାରୀ କରାଗଲା । ଲକ୍ଷ୍ନୌରେ ଆମେ କେତେକ ଘଣ୍ଟା ପାଇଁ ଓହ୍ଲାଇଲୁ—ସେଠାରେ ମଧ୍ୟ ଏକ ୧୪୪ ଧାରା ନୋଟିସ ହୁକୁମ ହୋଇ-ଥିବାର ମୁଁ ଶୁଣିଲି; ମାତ୍ର ଷ୍ଟେସନ ଭିଡ଼ ହେତୁରୁ ପୁଲିସ କର୍ମଚାରୀ ମୋ ନିକଟରେ ପହଞ୍ଚି ନ ପାରିବାରୁ ସେ ହୁକୁମ ଜାରି ହୋଇ ନ ଥିଲା । ମୋତେ ସେଠାକାର ମ୍ୟୁନିସିପାଲିଟି ଗୋଟିଏ ଅଭିନନ୍ଦନ ପତ୍ର ଦେଲା—ତା ପରେ ଆମେ ଦୁହେଁ ମଟର ଗାଡ଼ିରେ ଏଲାହାବାଦ ଆସିଲୁ । ବାଟରେ ଅନେକ ସ୍ଥାନରେ କେତେକ କୃଷକସଭାରେ ବକ୍ତୃତା କରିଥିଲୁ । ଆମେ ୧୮ ତାରିଖ ରାତିରେ ଏଲାହାବାଦରେ ପହଞ୍ଚିଲୁ ।

ତା ୧୯ରିଖ ସକାଳେ ପୁଣି ଏକ ୧୪୪ ଧାରା ନୋଟିସ ମୋ ଉପରେ ଜାରୀ ହେଲା । ବୁଝିପାରିଲି ଦେହ ଶୃଙ୍ଖଳ ମୋ ପାଦରେ ଲାଗିଛି—ମୋର ଯିବା ଆଉ ଅଳ୍ପଦିନ ବାକି । ମୁଁ ପୁନର୍ବାର ଗିରଫ ହେବା ପୂର୍ବରୁ କୃଷକ ସମ୍ମିଳନୀରେ ଯୋଗ ଦେବା ନିମନ୍ତେ ବ୍ୟସ୍ତ ଥିଲି । ଆମେ ପ୍ରକୃତ—

ମାନଙ୍କର ଏହା ଏକ ଘରୋଇ ସଭା ବୋଲି କହିଲେ ଏବଂ ବାହାର ଲୋକଙ୍କୁ ଏହି ସମ୍ମିଳନୀକୁ ଯିବାକୁ ଅନୁମତି ଦେଲେ ନାହିଁ । ଏଲାହାବାଦ ଜିଲ୍ଲାର ଗ୍ରାମାଞ୍ଚଳରୁ ପ୍ରତିନିଧି ଆସିଥିଲେ । ମୋର ଯେତେଦୂର ମନେଅଛି ପ୍ରାୟ ୧୬୦୦ ପ୍ରତିନିଧି ଉପସ୍ଥିତ ଥିଲେ । ଜିଲାର ଖଜଣା ବନ୍ଦ ଆନ୍ଦୋଳନ ଚଳାଇବା ନିମନ୍ତେ ସମ୍ମିଳନୀ ଉତ୍ସାହର ସହିତ ସ୍ଥିର କଲା । ଆମର ପ୍ରଧାନ କର୍ମୀମାନେ କେବଳ ଗୋଟିଏ ଚିନ୍ତା କରୁଥିଲେ—ଏହାର ସଫଳତା ସମ୍ବନ୍ଧରେ ସେମାନଙ୍କର ସନ୍ଦେହ ରହୁଥିଲା । କାରଣ ସରକାରୀ ସାହାଯ୍ୟରେ ବଡ଼ ବଡ଼ ଜମିଦାରମାନେ ପ୍ରଜାଙ୍କ ଉପରେ ଉତ୍ପୀଡ଼ନ କରିବେ । କୃଷକମାନେ ଏହା ସହ୍ୟ କରିବେ ତ ? ଏହି ଭାବ ସେମାନଙ୍କ ମନରେ ହେଉଥିଲା । ମାତ୍ର ସକଳ ଶ୍ରେଣୀର ଯେଉଁ ୧୬୦୦ କିମ୍ବା ତହିଁରୁ ଅଧିକ ପ୍ରତିନିଧି ଉପସ୍ଥିତ ଥିଲେ, ସେମାନଙ୍କ ମନରେ କିଛି ସନ୍ଦେହ ନ ଥିଲା ବୋଲି ଜଣା ପଡ଼ୁଥିଲା । ସେ ସମ୍ମିଳନୀରେ ମୁଁ ବକ୍ତୃତା କରିଥିଲି । ମୁଁ ସାଧାରଣରେ ଭାଷଣ ଦେଇ ପାରିବି ନାହିଁ ବୋଲି ନିଷେଧ କରି ଯେଉଁ ୧୪୪ ଧାରା ମୋ ଉପରେ ଜାରୀ ହୋଇଥିଲା, ଏଥିରେ ମୁଁ ତାହା ଭଙ୍ଗିଲି କି ନାହିଁ ମୁଁ ଜାଣେ ନା ।

ତାପରେ ମୋ ପିତା ଓ ଅନ୍ୟମାନଙ୍କୁ ପାଛୋଟି ଆଣିବା ନିମନ୍ତେ ମୁଁ ଷ୍ଟେସନକୁ ଗଲି । ଗାଡ଼ି ଆସିବା ଡେରି ଥିଲା । ସେମାନେ ପହଞ୍ଚିବା ସଙ୍ଗେ ସଙ୍ଗେ ମୁଁ ସେମାନଙ୍କୁ ଛାଡ଼ି ଏକ ସାଧାରଣ ସଭାରେ ଯୋଗ ଦେବା ନିମନ୍ତେ ଗଲି—ନିକଟବର୍ତ୍ତୀ ଅଞ୍ଚଳରୁ ଆସିଥିବା କୃଷକ ଏବଂ ସହର ବାସୀଙ୍କର ଏକ ମିଳିତ ସଭା କରାଯାଇଥାଏ । ମୁଁ ଓ କମଳା ବଡ଼ କ୍ଲାନ୍ତ ହୋଇ ରାତି ନଅଟା ପରେ ସେହି ସଭାରୁ ଫେରୁଥିଲୁ । ମୁଁ ପିତାଙ୍କ ସହିତ କଥାବାର୍ତ୍ତା କରିବାକୁ ବ୍ୟଗ୍ର ଥାଏ—ସେ ମୋତେ ଅପେକ୍ଷା କରିଥିଲେ; କାରଣ ସେ ଫେରିବା ବେଳଠାରୁ ଆମର ପ୍ରାୟ କଥାବାର୍ତ୍ତା ହୋଇ ନ ଥିଲା । ଆମେ ଫେରିଲା ବେଳେ ଆମ ଘରର ଖୁବ ନିକଟରେ ଆମ ମଟର ଗାଡ଼ି ବନ୍ଦ କରିଗଲା ଓ ମୋତେ ଗିରଫ କରାଯାଇ ଯମୁନା ନଦୀ ଆରପାରିରେ ନୈନୀ ଜେଲକୁ ନିଆଯାଇଥିଲା । କମଳା ଏକାକୀ ଆନନ୍ଦ



ସାଧାରଣ ସଭାରେ ବକ୍ତୃତା

ଭବନରେ ମୋତେ ଅପେକ୍ଷା କରି ରହିଥିବା ପରିବାରଙ୍କୁ ସମ୍ବାଦ ଦେବା ନିମନ୍ତେ ଗଲି; ନଅଟା ବାଜିଲା ବେଳକୁ ମୁଁ ନୈନି ଜେଲର ବିସ୍ତୃତ ପାଚେରି ଭିତରେ ପୁନର୍ବାର ପ୍ରବେଶ କରିଥିଲି ।

---

## ଯୁକ୍ତପ୍ରଦେଶରେ ଖଜଣା ବନ୍ଦ ଆନ୍ଦୋଳନ

ଆଠଦିନ ଅନୁପସ୍ଥିତି ପରେ ମୁଁ ପୁଣି ନୈନିକୁ ଫେରି ଆସିଲି ଓ ସୟଦ ମାମୁଦ, ନର୍ମଦା ପ୍ରସାଦ ସିଂ ଏବଂ ରଣଜିତ୍ ପଣ୍ଡିତଙ୍କ ସହଯୋଗୀ ହେଲି । କେତେକ ଦିନ ପରେ ଅନେକ ଗୁଡ଼ିଏ ଦଫାରେ ଜେଲ ଭିତରେ ମୋର ବିଚାର ହେଲା । ମୋର ଖଲାସ ପରଦିନ ମୁଁ ଏଲାହାବାଦରେ ଯେଉଁ ଗୋଟିଏ ବକ୍ତୃତା ଦେଇଥିଲି, ତାହାକୁ ଭାଗ ଭାଗ କରି ଏହିସବୁ ଅଭିଯୋଗ କରାଯାଇଥିଲା । ଆମେ ତ ସାଧାରଣତଃ ମକଦ୍ଦମା ଲଢ଼ୁନା — ମୁଁ ମଧ୍ୟ ଲଢ଼ିଲି ନାହିଁ, ମାତ୍ର କୋର୍ଟରେ ଗୋଟିଏ ସଂକ୍ଷିପ୍ତ ବକ୍ତୃତା ଦେଲି । ୧୨୪ (କ) ରାଜଦ୍ରୋହ ଦଫାରେ ମୋତେ ୧୮ ମାସ ସଶ୍ରମ କାରାଦଣ୍ଡ ଓ ୫୦୦ ଟଙ୍କା ଜୋରିମାନା ହେଲା; ୧୮୮୨ ମସିହାର ଲବଣ ଆଇନ ଅନୁସାରେ ୬ ମାସ ଓ ଟ ୧୦୦ ଙ୍କା ଜୋରିମାନା ଏବଂ ୧୯୩୦ ମସିହାର ୬ଷ୍ଠ ଅର୍ଡିନାନ୍ସ ଅନୁସାରେ (କେଉଁ ସମ୍ବନ୍ଧରେ ଅର୍ଡିନାନ୍ସ ହୋଇଥିଲା ମୁଁ ଭୁଲିଯାଇଛି) ପୁଣି ୬ମାସ ଓ ଟ୧୦୦ଙ୍କା ଜୋରିମାନା କରାଗଲା । ଶେଷ ଦୁଇଟି ଏକ ସଙ୍ଗରେ ଭୋଗ କରିବାକୁ ଥିଲା । ତେଣୁ ମୋଟରେ ଦୁଇବର୍ଷ ସଶ୍ରମ କାରାବାସ ଭୋଗିବି ଏବଂ ଜୋରିମାନା ପରିବର୍ତ୍ତେ ଅଧିକ ୬ମାସ ମୋତେ ଭୋଗିବାକୁ ପଡ଼ିବ । ମୋର ଏହି ଜେଲଦଣ୍ଡ ପଞ୍ଚମ ଥର ସକାଶେ ହେଲା ।

ମୋର ପୁନର୍ବାର ଗିରଫ ଓ ଜେଲଦଣ୍ଡ ହେତୁ ଆଇନ ଅମାନ୍ୟ ଆନ୍ଦୋଳନରେ ଅନ୍ତରାଳ ଆଉ କିଛି ଶକ୍ତି ସଞ୍ଚାର ହେଲା [illegible]

ଅଧିକ ବ୍ୟଗ୍ରତା ଓ ଉନ୍ମାଦନା ପ୍ରକାଶ ପାଇଲା । ପିତାଙ୍କ ସକାଶେ ଅନେକାଂଶରେ ହୋଇଥିଲା । ମୋର ଗିରଫ ଖବର କମଳା ନେଇ-ପହଞ୍ଚାଇଲା ମାତ୍ରେ ସେ ଟିକିଏ ଆଘାତ ପାଇଲେ । ସାଙ୍ଗେ ସାଙ୍ଗେ ସେ ଉଠିପାଇ ତାଙ୍କ ସ୍ପ୍ରିଙ୍ଗଖଟକୁ ଠେଲି ଠାଣି ଆସି କହିଲେ, ମୁଁ ଆଉ ଅସମର୍ଥ ହୋଇନାହିଁ । ମୁଁ ଭଲ ହେଲିଣି — ମଫିସ ପରି କାମ କରିବି — ଆଉ ପୀଡ଼ିତାବସ୍ଥାରେ ପଡ଼ି ରହିବି ନାହିଁ — ଏହା କହିଲେ । ଏହା ଏକ ସାହସିକ ପ୍ରତିଜ୍ଞା; ମାତ୍ର ଦୁର୍ଭାଗ୍ୟର କଥା ଇଚ୍ଛାଶକ୍ତି ଯେତେ ପ୍ରବଳ ହେଲେ ପଛକେ ଯେଉଁ ଅସ୍ଥିମଜ୍ଜାଗତ ରୋଗ ତାଙ୍କୁ ଗିଳି ପକାଇଥିଲା, ତାହା ଦମନ କରି ପାରିଲେ ନାହିଁ । ତଥାପି କେତେ ସପ୍ତାହ ପର୍ଯ୍ୟନ୍ତ ତାଙ୍କର ଗୋଟାଏ ଅଦ୍ଭୁତ ପରିବର୍ତ୍ତନ ହେଲା — ଯେଉଁମାନେ ତାଙ୍କୁ ଆଗରୁ ଦେଖିଥିଲେ, ଆଶ୍ଚର୍ଯ୍ୟ ହୋଇଗଲେ । ଗତ କେତେମାସ ହେଲା ସେ ହେସ୍ୱରବାଦାରେ ରହିବା ଦିନଠାରୁ ତାଙ୍କର ଖେପ ସହିତ ରକ୍ତ ପଡ଼ୁଥିଲା । ହଠାତ୍ ତାଙ୍କର ଏହି ଶପଥରେ ତାହା ବନ୍ଦ ହୋଇଗଲା ଏବଂ କେତେଦିନ ପର୍ଯ୍ୟନ୍ତ ଏହା ଆଉ ଦେଖାଗଲା ନାହିଁ । ସେ ଏଥିରେ ଖୁସି ହୋଇଗଲେ । ସେ ମୋ ସହିତ ଜେଲରେ ଦେଖା କରିବାକୁ ଆସି ଅତି ଆନନ୍ଦର ସହିତ ମୋତେ କଥା କହିଥିଲେ । ଦୁର୍ଭାଗ୍ୟ ବଶତଃ ଏହା କ୍ଷଣକାଳସ୍ଥାୟୀ ଥିଲା, କାରଣ ପରେ ରକ୍ତ ପୁଣି ବେଶୀ ପରି-ମାଣରେ ପଡ଼ିଲା ଏବଂ ରୋଗ ପୁଣି ଦେଖାଦେଲା । ଏହି କ୍ଷଣକାଳ ଭିତରେ ସେ ତାଙ୍କର ସ୍ଫୁରଣା ଶକ୍ତି ସହିତ ସମଗ୍ର ଭାରତରେ ଆଇନ ଅମାନ୍ୟ ଆନ୍ଦୋଳନକୁ ଏକ ପ୍ରେରଣା ଦେଲେ । ଭିନ୍ନ ସ୍ଥାନରୁ କର୍ମୀ ଆସି ତାଙ୍କ ସହ ସାକ୍ଷାତ କଲେ ଓ ସେମାନଙ୍କୁ ସେ ଉପଯୁକ୍ତ ପରାମର୍ଶ ଦେଉଥିଲେ । ମୋର ବକ୍ତୃତାର ଯେଉଁ ଦୋଷଯୁକ୍ତ ଅଂଶ ସକାଶେ ମୋତେ ଶାସ୍ତି ଦିଆଯାଇଥିଲା, ତାହା ସାଧାରଣ ସଭାରେ ପଢ଼ା ହେବା ନିମନ୍ତେ ସେ ଏକ ନିଖିଳ ଭାରତ ଦିବସ ଧାର୍ଯ୍ୟ କଲେ । (ନଭେମ୍ବର ମାସର ଏହି ଦିନ ମୋର ଜନ୍ମ ଦିବସ) । ସେହି ଦିବସରେ ଦେଶସାରା ଅନେକ ଲାଠିମାଡ଼ ହୋଇଥିଲା — ଜବରଦସ୍ତି ଶୋଭାଯାତ୍ରା ଓ ସଭା ସବୁ ଭାଙ୍ଗି ଦିଆଯାଇଥିଲା ଏବଂ ହିସାବ କରି ଦେଖାଯାଉଛି

ଯେ, କେବଳ ସେହିଦିନ ଭାରତବର୍ଷରେ ପ୍ରାୟ ୫୦୦୦ ଲୋକ ଗିରଫ ହୋଇଥିଲେ । ଜାନୁଦିନ କମଳ ବମ୍ବାଇ ରୂପେ ପାଳିତ ହେଲା ।

ପୀଡ଼ିତାବସ୍ଥାରେ ଏପରି ଦାୟିତ୍ୱ ମୁଣ୍ଡାଇବାକୁ ଏବଂ କାର୍ଯ୍ୟ କରିବାକୁ ପିତାଙ୍କ ପକ୍ଷରେ ବଡ଼ କଷ୍ଟକର ହେଲା । ପୂର୍ଣ୍ଣ ବିଶ୍ରାମ ନେବା ନିମନ୍ତେ ମୁଁ ତାଙ୍କୁ ଅନୁରୋଧ କଲି । ମୁଁ ଜାଣିଥିଲି ଯେ, ଭାରତରେ ତାଙ୍କ ପକ୍ଷରେ ବିଶ୍ରାମ ନେବା ଅସମ୍ଭବ—କାରଣ ଆନ୍ଦୋଳନର ଉତ୍ଥାନ ପତନରେ ତାଙ୍କ ମନ ସର୍ବଦା ବ୍ୟସ୍ତ ରହିବ ଏବଂ ତାଙ୍କର ପରାମର୍ଶ ନେବା ନିମନ୍ତେ ଲୋକମାନେ ତାଙ୍କ ପାଖକୁ ଯିବା ସ୍ୱାଭାବିକ । ତେଣୁ ରେଙ୍ଗୁନ, ସିଙ୍ଗାପୁର ଓ ଡଚ ଇଣ୍ଡିଆ ଆଡ଼କୁ ଏକ ଜାହାଜ ସମୁଦ୍ର ଯାତ୍ରାରେ ଯିବା ନିମନ୍ତେ ମୁଁ ତାଙ୍କୁ କହିଲି—ଏହା ତାଙ୍କର ପସନ୍ଦ ହେଲା । ଏକ ଡାକ୍ତର ବନ୍ଧୁଙ୍କର ତାଙ୍କ ସହିତ ଯିବାର ମଧ୍ୟ ବ୍ୟବସ୍ଥା ହେଲା । ଏହି ଉଦ୍ଦେଶ୍ୟରେ ସେ କଲିକତା ଗଲେ, ମାତ୍ର ତାଙ୍କ ଅବସ୍ଥା ବଡ଼ ଖରାପ ହେଲା ଏବଂ ସେ ଆଉ ଅଗ୍ରସର ହେବାକୁ ସମର୍ଥ ହେଲେ ନାହିଁ । କଲିକତାର ଉପାନ୍ତ ଅଞ୍ଚଳରେ ସେ ସାତ ସପ୍ତାହ ରହିଲେ—କମଳା ଛଡ଼ା ପରିବାରର ଅନ୍ୟ ସମସ୍ତ ଲୋକ ତାଙ୍କ ସହିତ ଯାଇଥିଲେ । କମଳା କଂଗ୍ରେସ କାର୍ଯ୍ୟରେ ଏଲାହାବାଦରେ ବ୍ୟସ୍ତ ଥାଏ ।

ଖଜଣା ବନ୍ଦ ଆନ୍ଦୋଳନ ସଙ୍କ୍ରାନ୍ତରେ ମୋର କାର୍ଯ୍ୟକଳାପ ହେତୁ ସମ୍ଭବତଃ ମୋର ପୁନର୍ବାର ଗିରଫ ଶୀଘ୍ର ହୋଇଥିଲା । ପ୍ରକୃତରେ କହିବାକୁ ଗଲେ କୃଷକ ସମ୍ମିଳନୀର ଠିକ ପରେ, କୃଷକ ପ୍ରତିନିଧିମାନେ ଏଲାହାବାଦରେ ଥିବାବେଳେ ମୋର ଗିରଫ ହେବାଦ୍ୱାରା ଯେପରି କାର୍ଯ୍ୟ ହେଲା, ଅନ୍ୟ କୌଣସି କାର୍ଯ୍ୟ ତାହା ଅପେକ୍ଷା ଅଧିକ ପ୍ରଭାବ ପକାଇ ପାରି ନ ଥାନ୍ତା । ଏହିଥିଯୋଗୁ ସେମାନଙ୍କର ଉତ୍ସାହ ବୃଦ୍ଧିପାଇଲା ଏବଂ ଜିଲ୍ଲାର ପ୍ରତ୍ୟେକ ଗ୍ରାମରେ ସମ୍ମିଳନୀର ସିଦ୍ଧାନ୍ତ ପ୍ରଚାରିତ ହୋଇଗଲା । ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ ହେଲାଣି ବୋଲି ଦୁଇ ତିନିଦିନ ପରେ ସାରା ଜିଲ୍ଲାରେ ପ୍ରଚାର ହୋଇଗଲା ଏବଂ ପ୍ରତ୍ୟେକ ସ୍ଥାନରେ ଲୋକେ ଆନନ୍ଦର ସହିତ ଯୋଗ ଦେଲେ ।

ଆମର ସେତେବେଳେ ପ୍ରଧାନ ଅସୁବିଧା ଥିଲା, ଖବର ଆଦାନ ପ୍ରଦାନ—ଆମେ କଣ କରୁଛୁ କିମ୍ବା ସେମାନଙ୍କଠାରୁ ଆମେ କଣ ଚାହୁଁ, ତାହା ଆମେ ଲୋକଙ୍କୁ ଜଣାଇ ପାରୁ ନ ଥିଲୁଁ । ସରକାର ଦଣ୍ଡଦେବ ଏବଂ ବନ୍ଦ କରିଦେବ ଏହି ଭୟରେ ଖବରକାଗଜରେ ଆମ ସମ୍ବାଦ ପ୍ରକାଶିତ ହେଉ ନ ଥିଲା; ଛାପାଖାନା ସବୁ ଆମର ପ୍ରଚାରପତ୍ର ଓ ନୋଟିସ ଆଦି ଛାପୁ ନାହିଁ, ଚିଠି ଓ ତାର ସବୁ ଖୋଲି ଦିଆଯାଏ, ସମୟେ ସମୟେ ବନ୍ଦ କରି ଦିଆଯାଏ । କେବଳ ଲୋକଦ୍ୱାରା ସମ୍ବାଦ ପଠାଇବା ପାଇଁ ଆମ ପକ୍ଷରେ ଏକମାତ୍ର ବିଶ୍ୱାସଯୋଗ୍ୟ ପନ୍ଥା ଥିଲା—ଏଥିରେ ମଧ୍ୟ ସେମାନେ ଅନେକ ସମୟରେ ଗିରଫ ହୋଇ ଯାଉଥିଲେ । ଏହା ଏକ ବ୍ୟୟସାପେକ୍ଷ କାର୍ଯ୍ୟ ଏବଂ ଏଥିପାଇଁ ବଡ଼ ସଂଗଠନ ଲୋଡ଼ା । ସରକାରର ସହିତ ଏହି ସଂଗଠନ ହୋଇ ପାରୁଥିଲା ଏବଂ ପ୍ରାଦେଶିକ କେନ୍ଦ୍ର ସବୁ ହେଡ୍‌କ୍ୱାର୍ଟର ଓ ପ୍ରଧାନ ଜିଲ୍ଲା କେନ୍ଦ୍ରମାନଙ୍କ ସହିତ ଅନବରତ ଖବର ଦେବା ନେବା କରୁଥିଲେ । ସହରରେ କୌଣସି ସମ୍ବାଦ ପ୍ରଚାର କରିବା ଅସୁବିଧା ଥିଲା । ଅନେକ ସହରରେ ଛୋଟ ହେଲେ ସାପ୍ତାହିକ ବା ଦୈନିକ ପତ୍ରିକା ବେଆଇନ ଭାବରେ ପ୍ରକାଶ କରା ଯାଉଥିଲା ଏବଂ ଲୋକେ ଏହା ଖୁବ ଚାହୁଁଥିଲେ । ସାଧାରଣ ବିଜ୍ଞାପନ ଓ ଚିଠି ସହରରେ ବାଣ୍ଟି ଦିଆଯାଏ—ଏହା ଫଳରେ ବାଣ୍ଟିବାଲା ସାଧାରଣତଃ ଗିରଫ ହୋଇଯାଏ । ଏଥିରେ କିଛି ଯାଏ ଆସେ ନା—କାରଣ ଗିରଫ ତ ଲୋକେ କାମିଶୁଣି ହେଉଛନ୍ତି—ଏଥିରୁ ଦୂରରେ ରହିବାକୁ କେହି ଚାହୁଁ ନ ଥିଲେ । ସହର ପାଇଁ ଏ ସବୁ ଉପାୟ ଉପଯୋଗୀ ହେଉଥିଲା; ମାତ୍ର ମଫସଲ ଲାଗି ନୁହେଁ । କଥା ନୋଟିସ ଓ ଲୋକ ପଠାଇ ପ୍ରଧାନ ମଫସଲ କେନ୍ଦ୍ର ସହିତ ସମ୍ପର୍କ ରଖାଯାଉଥିଲା । ମାତ୍ର ଏହା ସନ୍ତୋଷଜନକ ହେଲା ନାହିଁ ଏବଂ ଆମ ଦେଶର ସବୁ ସୁଦୂର ଗ୍ରାମରେ ପହଞ୍ଚିବା ପାଇଁ ଅନେକ ସମୟ ଲାଗି ଯାଉଥିଲା ।

ଏଣ୍ଟାବାଡ଼ିରେ ହୋଇଥିବା କୃଷକ ସମ୍ମିଳନୀରେ ଏହି ଅସୁବିଧା ଦୂର ହେଲା । ଜିଲ୍ଲାର ପ୍ରାୟ ପ୍ରତ୍ୟେକ ଗ୍ରାମରୁ ପ୍ରତିନିଧିମାନେ ଏଠାକୁ

ଲଣ୍ଡନରେ ଗୋଲଟେବୁଲ ସଭା ଜମି ଚାଲିଥାଏ, ଏପରି ଅବସ୍ଥାରେ ଭାରତରେ ଗୋଳମାଳ ବଢ଼ିବାଟା କିମ୍ବା ସରକାର 'ପ୍ରଚଣ୍ଡ' ରୂପ ଅଧିକ ଦେଖାଇବାକୁ ଚାହୁଁ ନ ଥାଏ ।

ଯୁକ୍ତପ୍ରଦେଶରେ ଖଜଣା ବନ୍ଦ ଆନ୍ଦୋଳନ ହେତୁ ସେ ପ୍ରଦେଶରେ ଦୋଟାଏ ଫଳ ହେଲା । ଆମ ସଂଗ୍ରାମର କେନ୍ଦ୍ର ସହରରୁ ମଫସଲକୁ ଗଲା— ଏହା ଫଳରେ ଆନ୍ଦୋଳନ ନୂତନ ଜୀବନଶକ୍ତି ପାଇଲା — ଆହୁରି ବ୍ୟାପକ ଓ ବେଶିକ୍ଷଣସ୍ଥାୟୀ ଅବସ୍ଥାକୁ ଆସିଲା । ସହରର ଲୋକେ କ୍ଳାନ୍ତ ଓ ଅବସନ୍ନ ହୋଇ ପଡ଼ିଥିଲେ । ମଧ୍ୟବିତ୍ତ ଶ୍ରେଣୀର କର୍ମୀମାନଙ୍କୁ ମଧ୍ୟ କାର୍ଯ୍ୟପନ୍ଥା ପୁରୁଣା ମନେ ହେଉଥିଲା—ମାତ୍ର ଆନ୍ଦୋଳନ ଖୁବ ଶକ୍ତିଶାଳୀ ଥିଲା—ହୁଏ ତ ଅନ୍ୟ ଯେ କୌଣସି ସମୟଠାରୁ ଏହା ଅଧିକ ଶକ୍ତିଶାଳୀ ଥିଲା । ଅନ୍ୟ ପ୍ରଦେଶମାନଙ୍କରେ ସେହି ପରିମାଣରେ ସଂଗ୍ରାମଟା ସହରରୁ ମଫସଲ ଯାଇ ନଥିଲା କିମ୍ବା ରାଜନୀତିକ ସମସ୍ୟାରୁ ଅର୍ଥନୀତିକ ସମସ୍ୟାରେ ପରିଣତ ହୋଇ ନ ଥିଲା—ତାହା ଫଳରେ କେବଳ ସହରହିଁ ଏଥିରେ ପ୍ରାଧାନ୍ୟ ଲଭିଥିଲା ଏବଂ ମଧ୍ୟବିତ୍ତ ଶ୍ରେଣୀ ଯେପରି ହୁଅନ୍ତି, ଏଥିରେ ବି କ୍ଳାନ୍ତ ହୋଇ ପଡ଼ିଥିଲେ । ଏପରିକି ଆନ୍ଦୋଳନରେ ସର୍ବଦା ଅଗ୍ରଗତି କରୁଥିବା ବମ୍ବେ ସହରରେ ମଧ୍ୟ ଟିକିଏ ମନ୍ଦତା ଆସି ଯାଉଥିଲା । ସେଠାରେ ଏବଂ ଅନ୍ୟ ସ୍ଥାନରେ ମଧ୍ୟ ଭ୍ରଲୁଷ୍ଣ ବରୁଙ୍କରେ ଅଭିଯାନ ହେଉଥିଲା—ଗଉଫ ଚାଲୁଥିଲା । ମାତ୍ର ଏ ସବୁ ବଡ଼ କୃତ୍ରିମ ମନେ ହେଉଥିଲା । ଏହାର ମୂଳତଥ୍ୟ ଦୂର ହୋଇ ଯାଇଥିଲା । ଏହା ହେବା ସ୍ୱାଭାବିକ—ଏକା ରକମ ବୈପ୍ଳବ କାର୍ଯ୍ୟରେ ଜନସାଧାରଣ ଦୀର୍ଘକାଳ ରହିବା ଅସମ୍ଭବ ସାଧାରଣତଃ ଏହିସବୁ କାର୍ଯ୍ୟ କେଇଟା ଦିନରେ ନିଷ୍ପତ୍ତି ହେବାର କଥା—ମାତ୍ର ଆଇନ ଅମାନ୍ୟ ଆନ୍ଦୋଳନରେ ଏହା ଅନେକ ଦିନ ପର୍ଯ୍ୟନ୍ତ ଚାଲିଥିଲା—ଏହା ପୁଣି ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଚଳିବାର କଥା ।

ସରକାରର ଦମନନୀତି ଚଳିଲା । ସ୍ଥାନୀୟ କଂଗ୍ରେସ କମିଟି ଓ ଯୁବକ ସଙ୍ଘ ଇତ୍ୟାଦି ଯେଉଁ ଅନୁଷ୍ଠାନ ଏପର୍ଯ୍ୟନ୍ତ କାର୍ଯ୍ୟ ଚଳାଉଥିଲେ

ସେ ସବୁ ବେଆଇନ ଘୋଷଣା କରାଯାଇ ଦମନ କରାଗଲା । ଜେଲରେ ରାଜନୈତିକ ବନ୍ଦୀଙ୍କ ପ୍ରତି ଆହୁରି ଖରାପ ବ୍ୟବହାର କରାଗଲା । ଖଲାସ ହେବାର ଅଳ୍ପଦିନ ପରେ ପୁଣି ବ୍ରିଟିଶ୍ର ଅର ପାଇଁ ଲୋକ ଜେଲ ଆସିବାରୁ ସରକାର ବିଶେଷ ଭାବରେ ବିରକ୍ତ ହୋଇ ଉଠିଲେ । ଶାସ୍ତି ସତ୍ତ୍ୱେ ନଇଁ ନ ପଡ଼ିବାରୁ ଶାସକଙ୍କର ନୈତିକତାରେ ଆଘାତ ହେଲା । ଖୁବ୍ ସମ୍ଭବତଃ ଜେଲ ଶୃଙ୍ଖଳା ଭଙ୍ଗ ଯୋଗୁଁ ୧୯୩୦ ମସିହା ନଭେମ୍ବର ବା ଡ଼ିସେମ୍ବର ମାସର ପ୍ରଥମ ଭାଗରେ ଯୁକ୍ତପ୍ରଦେଶ ଜେଲମାନଙ୍କରେ କେତେକ ରାଜବନ୍ଦୀଙ୍କୁ ବେତମାଡ଼ ଦିଆଯାଇଥିଲା । ଆମେ ନୈନି ଜେଲରେ ଏ ସମ୍ବାଦ ପାଇ ବ୍ୟସ୍ତ ହୋଇପଡ଼ିଲୁ । ସେହିଦିନଠାରୁ ଏହା ଆମର ଦେହସହା ହୋଇଗଲା, କାରଣ ଏହା ଅପେକ୍ଷା ଆହୁରି ଖରାପ ଘଟଣାମାନ ଭାରତରେ ହେଲା । ଅତି ତୁଚ୍ଛ ଅପରାଧୀଙ୍କ ପାଇଁ ସୁଦ୍ଧା ବେତମାଡ଼ ଏକ ଅବାଞ୍ଛନୀୟ ଶାସ୍ତି ପରି ମୋର ମନେ ହେଉଥିଲା । ଶୃଙ୍ଖଳା ଅପରାଧରେ ଯୁବକ ଏବଂ ଭାବପ୍ରବଣ ବାଳକଙ୍କ ଉପରେ ଏପରି ଶାସ୍ତି ବର୍ବରତାର ପରିଚୟ । ସେହି ବାରକରେ ଥିବା ଆମେ ଚାରିଜଣ ଏ ସମ୍ବନ୍ଧରେ ସରକାରଙ୍କୁ ଲେଖିଲୁ, ମାତ୍ର କୌଣସି ଉତ୍ତର ନ ପାଇବାରୁ ବେତମାଡ଼ର ପ୍ରତିବାଦ ସ୍ୱରୂପ ଓ ଏହି ବର୍ବରତାର ଶିକାର-ମାନଙ୍କ ସହିତ ସହାନୁଭୂତି ଦେଖାଇ ନିଶ୍ଚିତ ଭାବରେ କିଛି କରିବା ନିମନ୍ତେ ଆମେ ସ୍ଥିର କଲୁ । ଆମେ ତିନି ଦିନ ଅର୍ଥାତ୍ ୭୨ ଘଣ୍ଟା ଲାଗି ପୂର୍ଣ୍ଣ ଉପବାସ କଲୁ । ଆଜିକାଲି ଯେପରି ଉପବାସ ହେଉଛି ତାହା ତୁଳନାରେ ଏହା କିଛି ନୁହେଁ; ମାତ୍ର ଆମ ଭିତରୁ କେହି ପୂର୍ବରୁ ଉପବାସ କରିନଥିଲେ । ସୁତରାଂ ଆମେ ଏହାପାଇଁ କିଛି ସାବଧାନ ହୋଇଥିଲୁ । ଏଥିପୂର୍ବେ ମୁଁ ୨୪ ଘଣ୍ଟା ତ ଉପାସ ରହିଥିଲି କି ନା ସନ୍ଦେହ ।

ନୈନି ଜେଲରେ ଆମେ ଥିବାବେଳେ ଉଡ଼ାଜାହାଜ ଆମ ଉପରେ ଦେଇ ଉଡ଼ିଗଲାବେଳେ ବେଶ ଆନନ୍ଦ ଜାତ ହୁଏ । ପଶ୍ଚିମ ଓ ପୂର୍ବଗାମୀ ଉଡ଼ାଜାହାଜ ପଥର ଏଲାହାବାଦ ହେଉଛି ଗୋଟିଏ

ଘାଟି । ଅଷ୍ଟ୍ରେଲିଆ, ପାରିସ ଏବଂ ଫରାସି ଇଣ୍ଡୋ-ଚାଇନାକୁ ଯାଉଥିବା ଉଡ଼ାଜାହାଜ ସବୁ ପ୍ରାୟ ଆମ ମୁଣ୍ଡ ଉପରେ ଉଡ଼ିଯାଏ । ସବାପେକ୍ଷା ବାଟେଭିଆକୁ ଯାଉଥିବା ଓ ଆସୁଥିବା ଡଚ ଉଡ଼ାଜାହାଜକୁ ଦେଖିବାକୁ ଭଲ । ଆମେ ଅତି ଭାଗ୍ୟବାନ୍ ହୋଇଥିଲେ ଶୀତକାଳର ଅତି ସକାଳୁ କେବଳ ଅନ୍ଧାରୁଆ ଅବସ୍ଥାରେ ଏବଂ ତାରକା ସବୁ ଦୃଶ୍ୟମାନ ହେଉଥିବାବେଳେ ଏପରି ଅତିରେ ଉଡ଼ାଜାହାଜ ଉଡ଼ିଯାଉଥିବାର ଦେଖିପାରୁ । ଉଡ଼ାଜାହାଜଟିରେ ଖୁବ ଉଜ୍ଜଳ ଆଲୁଅ ଥାଏ—ଦୁଇ ପାଖରେ ଲାଲବତୀ ଜଳୁଥାଏ । ସକାଳର ଅନ୍ଧକାରମୟ ଆକାଶ ପୃଷ୍ଠଭୂମିରେ ଏହା ପତଙ୍ଗ-ଗତିବେଳେ ଏକ ମନୋରମ ଦୃଶ୍ୟ ହୁଏ ।

ଅନ୍ୟ କୌଣସି ଜେଲରୁ ପଣ୍ଡିତ ମଦନମୋହନ ମାଳବ୍ୟ ମଧ୍ୟ ନୈନି ଜେଲକୁ ବଦଳି ହୋଇ ଆସିଲେ । ସେ ଆମ ବାରକରେ ରହୁ ନ ଥିଲେ, ତାଙ୍କୁ ଅଲଗା ରଖାଗଲା; ମାତ୍ର ପ୍ରାୟ ପ୍ରତ୍ୟେକ ଦିନ ତାଙ୍କ ସହିତ ସାକ୍ଷାତ ହେଉଥିଲା, ମୋର ମନେହୁଏ, ଜେଲ ଭିତରେହିଁ ମୁଁ ତାଙ୍କୁ ବାହାର ଅପେକ୍ଷା ବେଶି ଚିହ୍ନିପାରିଥିଲି । ସେ ଜଣେ ଭଲ ସାଥୀ—ପ୍ରତ୍ୟେକ ଜିନିଷରେ ଯୁବକସୁଲଭ ଆଗ୍ରହ ଦେଖାନ୍ତି । ସେ ରଣ୍ଜିତଙ୍କ ସାହାଯ୍ୟରେ ଜର୍ମାନ ଭାଷା ଶିଖିବାକୁ ଆରମ୍ଭ କଲେ । ତାଙ୍କର ଅପୂର୍ବ ସ୍ମୃତି ଶକ୍ତି ଅଛି । ସେ ନୈନିରେ ଥିଲାବେଳେ ଭେତ-ମାଉ ଖବର ଆସି ପହଞ୍ଚିଲା, ଏଥିରେ ସେ ବଡ଼ ବିଚଳିତ ହୋଇଗଲେ ଏବଂ ପ୍ରଦେଶର ଅସ୍ଥାୟୀ ଲାଟଙ୍କ ପାଖକୁ ଏ ସମ୍ବନ୍ଧରେ ଚିଠି ଲେଖିଲେ । ଅଳ୍ପ କେତେଦିନ ପରେ ସେ ବେମାର ପଡ଼ିଲେ । ଜେଲଖାନାରେ ଯେପରି ଅବସ୍ଥା, ସେଥିରେ ଥଣ୍ଡା ସେ ସହ୍ୟ ପାରିଲେ ନାହିଁ । ତାଙ୍କର ରୋଗ ବଢ଼ିଲା ଏବଂ ତାଙ୍କୁ ସହରର ହାସପାତାଳକୁ ନିଆଗଲା । ପରେ ତାଙ୍କର ଜେଲ ସମୟ ନ ପୂରୁଣୁ ତାଙ୍କୁ ଖଲାସ କରିଦିଆଗଲା । ସୁଖର କଥା ଯେ, ହାସପାତାଳରେ ସେ ଆରୋଗ୍ୟ ଲାଭ କଲେ ।

ନୂତନ ବର୍ଷର ପ୍ରଥମ ଦିବସ ଅର୍ଥାତ ୧୯୩୧ ମସିହା ଜାନୁଆରୀ ପହିଲା ତାରିଖରେ କମଳାର ଗିରଫ ସମ୍ବାଦ ମୁଁ ପାଇଲି । ମୁଁ ଖୁସି-

ଅନ୍ୟମାନଙ୍କ ସହ ଅଭି କେତେଦିନ ପରେ ଜେଲେ ଆସିଲେ । ଜାନୁୟାରୀ ତା ୧୨ ରିଖରେ ମୋ ସହିତ ସାକ୍ଷାତ୍ କରିବା ନିମନ୍ତେ ନୈନି ଜେଲକୁ ଆସିଲେ । ପ୍ରାୟ ୨ ମାସ ପରେ ତାଙ୍କ ସହିତ ମୋର ଦେଖା ହେଲା— ତାଙ୍କୁ ଦେଖି ମୋ ମନରେ ଯେ ଆଘାତ ହେଲା, ତାହା ମୁଁ ଚେଷ୍ଟା କରି ଲୁଚା ଘୋଡ଼ାଇ ପାରିଲି ନାହିଁ । ତାଙ୍କ ଚେହେରା ଦେଖି ମନରେ ଯେ ବିଷାଦ ହୋଇଥିଲା, ତାହା ସେ ନ ଜାଣିପାରିଲେ ପରି ମନେହେଲା ଏବଂ କହିଲେ ସେ କଲିକତାରେ ତାଙ୍କ ଦେହ ଯେପରି ଥିଲା, ଏବେ ତାହା ଅପେକ୍ଷା ଅନେକ ଭଲ ଅଛି । ତାଙ୍କ ମୁହଁ ଟିକିଏ ଫୁଲିଥିଲା—ମାତ୍ର ଏହା ଏହା କୌଣସି ସାମୟିକ କାରଣରୁ ଘଟିଛି ବୋଲି ସେ ମୋତେ କହିଲେ ।

ତାଙ୍କର ମୁଖମଣ୍ଡଳ ସବୁବେଳେ ମୋର ମନେ ପଡ଼ିଲା । ଏହା ତାଙ୍କ ମୁଖଠାରୁ ସମ୍ପୂର୍ଣ୍ଣ ଅଲଗା ପରି ଦେଖା ଯାଉଥିଲା । ତାଙ୍କ ସମ୍ବନ୍ଧରେ ମୁଁ ପ୍ରଥମ ଥର ପାଇଁ ବିପଦ ଆଶଙ୍କା କରିବାକୁ ଲାଗିଲି । ସେ ବଳବାନ୍ ଓ ସ୍ୱାସ୍ଥ୍ୟକର ବୋଲି ମୁଁ ସବୁବେଳେ ଜାଣି ଆସିଛି ଏବଂ ତାଙ୍କର ମୃତ୍ୟୁ କଥା ମୁଁ ଭାବି ସୁଦ୍ଧା ପାରେନା । ସେ ସର୍ବଦା ମୃତ୍ୟୁ କଥା ଶୁଣି ହସନ୍ତି, ଥଟ୍ଟା କରନ୍ତି ଏବଂ ଆମକୁ କହନ୍ତି ଯେ ସେ ଆହୁରି ଅନେକ ବର୍ଷ ବଞ୍ଚିବେ । କେତେ ଦିନ ହେଲା ମୁଁ ଲକ୍ଷ୍ୟ କରୁଛି—ତାଙ୍କର ଯୁବାବୟସରେ କେତେ ପୁରୁଣା ବନ୍ଧୁ ମରିଗଲେ ସେ ନିଃସଙ୍ଗ ଭାବ ଅନୁଭବ କରୁଥିଲେ—ସତେ କି ସେ ଅପରିଚିତ ବନ୍ଧୁ ମେଳରେ ରହିଯାଇଛନ୍ତି ଓ ତାଙ୍କର ଦିବସ ମଧ୍ୟ ନିକଟ ହୋଇଗଲାଣି । ମାତ୍ର ସାଧାରଣତଃ ଏହି ଭାବ ପୁଣି ତାଙ୍କ ମନରୁ ଦୂର ହୋଇଯାଏ, ସ୍ଫୂର୍ତ୍ତି ଜୀବନ ପ୍ରକାଶ ପାଏ—ଆମେ ତାଙ୍କର ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ଓ ସମସ୍ତଙ୍କ ପ୍ରତି ସ୍ନେହରେ ଏପରି ଅଭିଭୂତ ହୋଇଥିଲୁ ଯେ, ତାଙ୍କ ଛଡ଼ା ଏକ ଜଗତର କଳ୍ପନା ସୁଦ୍ଧା କରିପାରୁ ନ ଥିଲୁ ।

ତାଙ୍କର ସେହି ମୁଖ ମୋର ମନେ ପଡ଼େ ମୁଁ ବଡ଼ ବ୍ୟଗ୍ର ହେଲି ଏବଂ ନାନା ଅମଙ୍ଗଳ ଆଶଙ୍କା ମୋ ମନରେ ଉଠିଲା । ତଥାପି ନିକଟ

ଭବିଷ୍ୟତରେ ତାଙ୍କ ପାଇଁ କୌଣସି ବିପଦ ଥିଲା ପରି ମୁଁ ମନେ କଲି ନାହିଁ । କେତେକ ଅଜଣା କାରଣରୁ ମୋ ଦେହ ସେତେବେଳେ ମଧ୍ୟ ଭଲ ନଥିଲା ।

ଏତେବେଳକୁ ଗୋଲଟେବୁଲ ସମ୍ମିଳନୀ ଆସି ଶେଷ ହେବା ଉପରେ । ଆମେ ଏହାର ଶେଷ ଅବସ୍ଥା ଦେଖି ବିକଟ ଉପହାସ କରିଥିଲୁ—ଏହି ଉପହାସ ସହିତ ଘୃଣା ମଧ୍ୟ ମିଶ୍ରିତ ଥିଲା । ବକ୍ତୃତା, ନିବେଦନ ଓ ଆଲୋଚନା ବଡ଼ ଅବାସ୍ତବ ଓ ନିଷ୍ଫଳ ମନେ ହେଲା; ମାତ୍ର ଏଥିରେ ଗୋଟିଏ ମାତ୍ର ବାସ୍ତବ କଥା ପ୍ରକାଶ ପାଇଲା । ଆମ ଦେଶ ଏକ ଭୀଷଣ ପରୀକ୍ଷା ମଧ୍ୟରେ ଯାଉଥିଲା ବେଳେ ଏବଂ ଆମ ଦେଶର ନରନାରୀ ଏପରି ଅଦ୍ଭୁତ ଭାବରେ କାର୍ଯ୍ୟ କରୁଥିଲା ବେଳେ, ଆମର କେତେକ ଦେଶବାସୀ ଆମ ସଂଗ୍ରାମ ପ୍ରତି ଅବହେଳା କରି ଅନ୍ୟ ପକ୍ଷକୁ ନିଜର ନୈତିକ ସମର୍ଥନ ଦେଇ ପାରନ୍ତି । ଜାତୀୟତା ଏବଂ ସ୍ୱ-ତାର ଶଠ ଆବରଣ ଭିତରେ ପରସ୍ପରବିରୋଧୀ ଅର୍ଥନୈତିକ ସ୍ୱାର୍ଥ କାର୍ଯ୍ୟ କରୁଛି ଏବଂ ନ୍ୟସ୍ତସ୍ୱାର୍ଥ ବିଶିଷ୍ଟ ଲୋକେ ସେହି ଜାତୀୟତା-ନାମରେ କପଟ ନିଜର ଭବିଷ୍ୟତ ରକ୍ଷା କରିବା ନିମନ୍ତେ ଚେଷ୍ଟା କରୁଛନ୍ତି, ଏ କଥା ପୂର୍ବାପେକ୍ଷା ଆମକୁ ଅଧିକ ପରିଷ୍କାର ରୂପେ ଦେଖା ହେଲା । ଏହି ସବୁ ନ୍ୟସ୍ତସ୍ୱାର୍ଥ ବିଶିଷ୍ଟ ଲୋକଙ୍କୁ ନେଇ ଗୋଲଟେବୁଲ ସମ୍ମିଳନୀ ହୋଇଥିଲା । ସେମାନଙ୍କ ଭିତରୁ ଅନେକେ ଆମ ସଂଗ୍ରାମର ବିରୋଧୀ ଥିଲେ; ଅନେକେ ନୀରବରେ ଅଲଗା ହୋଇ ରହିଥିଲେ ଏବଂ ସେମାନେ ଆମ୍ଭର ମନନ ପକାଇ ଦେଉଥିଲେ ଯେ, ଯେଉଁମାନେ ଜୁଲରେ ବନ୍ଦ ଅପେକ୍ଷା କରିଛନ୍ତି; ସେମାନେ ମଧ୍ୟ ଏକପ୍ରକାର ସେବା କରୁଛନ୍ତି । ମାତ୍ର ଲଣ୍ଡନକୁ ଉର୍ଲିତ ପାଇଲାମାତ୍ରେ ତାଙ୍କର ଅପେକ୍ଷା କରିବାଠା ହଠାତ୍ ଶେଷ ପାଇଗଲା—ନିଜର, ବିଶେଷ ସ୍ୱାର୍ଥ ନିଷ୍ପନ୍ନ କରିବା ନିମନ୍ତେ ଏବଂ ଆଉ ଯାହା ବା ଆସିବ ସେଥିରୁ ତାଙ୍କର ଅଂଶ ପାଇବା ନିମନ୍ତେ, ସେମାନେ ଏକଜୁଟ ହୋଇ ପଡ଼ିଲେ । କଂଗ୍ରେସ ଯେପରି ଦିନକୁ ଦିନ ଅଧିକ ବାମପନ୍ଥୀ ହେଉଛି ଏବଂ ଜନସାଧାରଣ

ଏହିରେ ଇଂରେଜଙ୍କୁ ଅଧିକ ପ୍ରବଳ ଦେଖାଉଛନ୍ତି, ଏହି କଥା ବୁଝିପାରି ଲଣ୍ଡନରେ ସମସ୍ତେ ଏକ ମେଳ ହୋଇଗଲେ । ସେମାନେ ଅନୁଭବ କଲେ ଯେ, ଯଦି ଭାରତରେ ରାଜନୈତିକ ପରିସ୍ଥିତିରେ ଏକ ଆମୂଳ ପରିବର୍ତ୍ତନ ଘଟେ, ତାହାହେଲେ ଜନସାଧାରଣଙ୍କର ପ୍ରାଧାନ୍ୟ ବଢ଼ିବ, ଅନ୍ତତଃ ସେମାନଙ୍କର ପ୍ରଭାବ ବଢ଼ିବ । ସେମାନେ ସାମାଜିକ ବ୍ୟବସ୍ଥାର ଆମୂଳ ପରିବର୍ତ୍ତନ ଦାବି କରିବେ, ତାହା ଫଳରେ ନ୍ୟସ୍ତସ୍ୱାର୍ଥରେ ଆଘାତ ପଡ଼ିପାରେ । ଏଥିରେ ଆଶଙ୍କାଜନକ ପରିସ୍ଥିତି ଘଟିବ ବୋଲି ଭାରତୀୟ ନ୍ୟସ୍ତସ୍ୱାର୍ଥ ବିଶିଷ୍ଟ ଲୋକେ ଅନୁମାନ କଲେ ଏବଂ ଏଥିଲାଗି ସେମାନେ କୌଣସି ସୁଦୂରଗାମୀ ରାଜନୈତିକ ପରିବର୍ତ୍ତନର ବିରୋଧ କଲେ । ସେମାନେ ଇଚ୍ଛା କଲେ ଯେ, ଭାରତରେ ଇଂରେଜମାନେ ମୁରବି ରୂପେ ରହିଲେ ପ୍ରଚଳିତ ସାମାଜିକ ବ୍ୟବସ୍ଥା ଏବଂ ବର୍ତ୍ତମାନ ନ୍ୟସ୍ତସ୍ୱାର୍ଥ କାଏମ ରହିବ । ଔପନିବେଶିକ ସ୍ୱାୟତ୍ତ ଶାସନ ଦାବି ମୂଳରେ ପ୍ରକୃତରେ ଏହି ଚିନ୍ତାଧାରା ଥିଲା । ଗ୍ରେଟ୍ ବ୍ରିଟେନ ସହିତ କୌଣସି ମିଳାମିଶା ହେଲେ ପ୍ରଥମେ ଇଂରେଜ ସୈନ୍ୟ ଭାରତରୁ ଚାଲିଯିବେ ଏବଂ ଭାରତୀୟ ସୈନ୍ୟ ଗଣତନ୍ତ୍ର ଭାରତର ଅଧୀନରେ ରହିବେ ବୋଲି ମୁଁ ଦାବୀ କରିବାରୁ ଜଣେ ଖ୍ୟାତନାମା ଲିବରାଲ ନେତା ମୋ ଉପରେ ଅତ୍ୟନ୍ତ ବିରକ୍ତ ହୋଇଯାଇଥିଲେ । ସେ କହିବାକୁ ଲାଗିଲେ ଯେ, ବ୍ରିଟିଶ ସରକାର ଏଥିରେ ରାଜି ହେଲେ ସୁଦ୍ଧା ସେ ତାଙ୍କର ସମସ୍ତ ଶକ୍ତି ଦେଇ ଏହାର ବିରୋଧ କରିବେ । ପ୍ରଚଳିତ ପରିସ୍ଥିତିରେ ଜାତୀୟ ସ୍ୱାଧୀନତାର ଏହି ପ୍ରାଥମିକ ଓ ପ୍ରୟୋଜନୀୟ ଦାବୀ ହାସଲ ହୋଇ ପାରିବ ନାହିଁ ବୋଲି ଯେ ସେ ଆପତ୍ତି କରୁଥିଲେ, ତାହା ନୁହେଁ, ମାତ୍ର ଏହା ସେ ଅବାଞ୍ଛନୀୟ ବୋଲି ମନେ କଲେ । ବାହ୍ୟିକ ଆକ୍ରମଣର ଭୟ ହେତୁ ଏପରି ଚିନ୍ତା ହୋଇ ପାରଥାଏ — କାରଣ ବାହାର ଆକ୍ରମଣରୁ ବ୍ରିଟିଶ ସୈନ୍ୟମାନଙ୍କୁ ରକ୍ଷା କରିବେ ବୋଲି ସେ ବୁଝିଥିଲେ । ଏପରି ଏକ ଆକ୍ରମଣ ଛଡ଼ା ଅନ୍ୟ କୌଣସି ସମ୍ଭାବନା ଛଡ଼ା କୌଣସି ଭାରତୀୟ ପକ୍ଷରେ ବାହାର ଶକ୍ତିର ସାହାଯ୍ୟ ଇଚ୍ଛା କରିବା ମଧ୍ୟ ଅପମାନଜନକ । ମାତ୍ର ଭାରତରେ

ଇଂରେଜ ସୈନ୍ୟ ରକ୍ଷିବା ମୂଳରେ ଏହା ପ୍ରକୃତ କାରଣ ଥିଲା ମୋର ମନେ ହୁଏ ନା; ଭାରତୀୟମାନଙ୍କ ହାତରୁ ... ଓ ସ୍ୱାର୍ଥରକ୍ଷା ନିମନ୍ତେ, ଖାଣ୍ଟି ଗଣତନ୍ତ୍ରକୁ ରକ୍ଷା ନିମନ୍ତେ ଏବଂ ଜନସାଧାରଣଙ୍କ ଉଦ୍ବୋଧନ ... ନିମନ୍ତେ ବ୍ରିଟିଶ ଶକ୍ତିର ଆବଶ୍ୟକତା ଅଛି ।

ସେତେବେଳେ ସହିତ ଯାଉଥିବା କଂଗ୍ରେସ ପ୍ରତିନିଧିଙ୍କ ଭିତରୁ ଅନେକ ଶାନ୍ତିପ୍ରିୟ ଓ ସାମ୍ପ୍ରଦାୟିକ ଥିଲେ – ଏହା ଛଡ଼ା ଯେଉଁମାନେ ନିଜକୁ ପ୍ରଗତିପନ୍ଥୀ ବା ଜାତୀୟତାବାଦୀ ବୋଲି ଦାବି କରୁଥିଲେ, ସେମାନେ ମଧ୍ୟ ବ୍ରିଟିଶ ସରକାର ସହିତ ନିଜର ସ୍ୱାର୍ଥର ଅନେକ ସାମଞ୍ଜସ୍ୟ ଦେଖି ପାଉଥିଲେ । ଜାତୀୟତାର ଅର୍ଥ ବାସ୍ତବରେ ବଡ଼ ବ୍ୟାପକ ଓ ଜଟିଳ ମନେ ହୁଏ । ଯେଉଁମାନେ ସ୍ୱାଧୀନତା ସଂଗ୍ରାମକୁ ଅଗ୍ରସର କରିବା ନିମନ୍ତେ ଭାରତରେ ଜେଲ ବରଣ କଲେ, ସେମାନେ ଜାତୀୟତାବାଦୀ ଏବଂ ଯେଉଁମାନେ ଜେଲଗାଡ଼ିଙ୍କ ସହ ଅନୁମୋଦନ କରି ତାଙ୍କ ସହ ଏକମତ ହୋଇ ଚାଲୁଥିଲେ, ସେମାନେ ବି ଜାତୀୟତାବାଦୀ । ଏହା ଛଡ଼ା ଆମ ଦେଶରେ ଆଉ କେତେକ ଲୋକ ଥିଲେ, ଯେଉଁମାନେ ଖୁବ୍ ଜାତୀୟତାବାଦୀ ଉତ୍ତେଜନାମୂଳକ ଭାଷଣ ଦେଉଥିଲେ, ସେମାନେ ସକଳ ପ୍ରକାରେ ସ୍ୱଦେଶୀ ଆନ୍ଦୋଳନକୁ ଉତ୍ସାହିତ କରୁଥିଲେ ଏବଂ ଏଥିରେ ସ୍ୱରାଜ୍ୟ ଅଛି ବୋଲି କହୁଥିଲେ । ଦେଶବାସୀ ତ୍ୟାଗ ସ୍ୱୀକାର କରି ଏହା ପାଳନ କରିବା ନିମନ୍ତେ ନିବେଦନ କରୁଥିଲେ । ସୌଭାଗ୍ୟର କଥା, ଏପରି ଆନ୍ଦୋଳନରେ କୌଣସି ତ୍ୟାଗର ଆବଶ୍ୟକତା ହେଉ ନ ଥିଲା—ଏଥିରେ ତାଙ୍କର ବ୍ୟବସାୟ ଓ ଲାଭ ବଢ଼ୁଥିଲା । ଲୋକେ ଜେଲ ଯାଉଥିବାବେଳେ ବା ଲାଠି ମାଡ଼ ଖାଉଥିବାବେଳେ ଏମାନେ ନିଜ ଗଦା ଘରେ ବସି ଟଙ୍କା ଗଣୁଥିଲେ । ତଥାପି ସେତେବେଳେ ସଂଗ୍ରାମଶୀଳ ଜାତୀୟତାବାଦ କିଛିଟା ଦୁର୍ବଳ ମନେହେଲା, ସେତେବେଳେ ଏମାନେ ନିଜ ସ୍ୱର ନରମ କଲେ—'ଚରମପନ୍ଥୀ'ଙ୍କୁ ନିନ୍ଦା କଲେ ଏବଂ ଅନ୍ୟ ପକ୍ଷ ସହିତ ଚୁକ୍ତି ଓ ବୁଝାମଣାରେ ପଡ଼ୁଥିଲେ ।

ପ୍ରକୃତରେ ଗୋଲଟେବଲ ବୈଠକରେ କଣ ନ ହେଲା ସେଥିପ୍ରତି ଆମେ ମନ ଦେଉ ନ ଥିଲୁ । ଏହା ଆମଠାରୁ ଅନେକ ଦୂରରେ ଥିଲା, ବଡ଼ ଅବାସ୍ତବ ଓ ଏକ ସ୍ୱପ୍ନ ପରି ମନେ ହେଉଥିଲା । ସଂଗ୍ରାମ ଆମର ସହର ଓ ଗ୍ରାମରେ ଚାଲିଥିଲା । ଆମ ଆନ୍ଦୋଳନର ଦ୍ରୁତ ସଫଳତା କିମ୍ବା ଆସନ୍ନ ବିପଦ ସମ୍ବନ୍ଧରେ ଆମର କିଛି ମାୟା ନ ଥିଲା; ତଥାପି ୧୯୩୦ ମସିହାର ଘଟଣାବଳୀରେ ଆମର ଜାତୀୟ ଶକ୍ତି ଦୃଢ଼ତାରେ ଗୋଟାଏ ବିଶ୍ୱାସ ଜନ୍ମି-ଥିଲା ଏବଂ ସେହି ବିଶ୍ୱାସରେ ଆମେ ଭବିଷ୍ୟତର ସମ୍ମୁଖୀନ ହେଲୁ ।

ଡିସେମ୍ବର କିମ୍ବା ଜାନୁୟାରୀ ମାସ ପ୍ରଥମ ଭାଗରେ ଏକ ଘଟଣା ଆମ ମନରେ ବଡ଼ ଦୁଃଖ ଦେଲା । ଶ୍ରୀ ଶ୍ରୀନିବାସ ଶାସ୍ତ୍ରୀ ଏଡ଼ିନବର୍ଗରେ ଏକ ବକ୍ତୃତାରେ (ମୋର ମନେହୁଏ ଏହାରେ ତାଙ୍କୁ 'ଫ୍ରିଡ଼ମ ଅଫ୍ ଦି ସିଟି' ଉପହାର ଦିଆଯାଇଥିଲା) ଆଇନ ଅମାନ୍ୟ ଆନ୍ଦୋଳନ ସଂକ୍ରାନ୍ତରେ ଭାରତରେ ଜେଲ ଯାଉଥିବା ଲୋକଙ୍କ ପ୍ରତି ସୁବ୍ୟବହାରର କଥା କହୁଥିଲେ । ସେହି ବକ୍ତୃତା ଏବଂ ବିଶେଷତଃ ଯେଉଁ ଉଦ୍ଦେଶ୍ୟରେ ତାହା କୁହାଗଲା, ସେଥିରେ ଆମେ ଆଘାତ ପାଇଲୁ । ଶାସ୍ତ୍ରୀଙ୍କ ସହିତ ରାଜନୀତିରେ ଅନେକ ମତଭେଦ ଥିଲେ ସୁଦ୍ଧା ତାଙ୍କୁ ଆମେ ସମ୍ମାନ କରୁଥିଲୁ ।

ଗୋଲଟେବଲ ବୈଠକ ସମାପ୍ତି ବେଳକୁ ରାମସେ ମାକ୍‌ଡୋନାଲଡ଼୍ ତାଙ୍କର ପ୍ରକୃତିସୁଲଭ ଏକ ସଦ୍‌ଭାବସୂଚକ ବକ୍ତୃତା ଦେଇଥିଲେ । କଂଗ୍ରେସ ତାର ଅନ୍ୟାୟ ବାଟ ଛାଡ଼ିଦେଇ ଏହି ସୁଖ ସମ୍ମିଳନୀରେ ଯୋଗ ଦେବା ନିମନ୍ତେ ଏକ ନିବେଦନର ଇଙ୍ଗିତ ଏଥିରେ ଥିଲା । ସେହି ସମୟରେ ୧୯୩୧ ମସିହା ଜାନୁୟାରୀ ମଧ୍ୟ ଭାଗରେ ଏଲାହାବାଦରେ କଂଗ୍ରେସ କାର୍ଯ୍ୟକାରୀ ସମିତିର ବୈଠକ ହେଲା ଏବଂ ଅନ୍ୟ ବିଷୟ ସହିତ ଏହି ବକ୍ତୃତା ଓ ନିବେଦନର ମଧ୍ୟ ବିଚାର ହୋଇଥିଲା । ମୁଁ ସେତେ-ବେଳେ ନୈନୀ ଜେଲରେ ଥିଲି—ଖଲାସ ହୋଇ ମୁଁ ସେ ବିବରଣୀ ଦେଖିଥିଲି । ପିତା ସେତେବେଳକୁ କଲିକତାରୁ ଫେରିଥାନ୍ତି, ସେ

ଅତ୍ୟନ୍ତ ଅସୁସ୍ଥ ଥିଲେ ମୁଖ୍ୟ ମନ୍ତ୍ରୀମାନେ ତାଙ୍କ ଶଯ୍ୟା ନିକଟରେ ବସି ଏହି ସମ୍ବନ୍ଧରେ ଆଲୋଚନା କରନ୍ତୁ ବୋଲି ସେ ଚାହୁଁଲେ । କେହି ଜଣେ ମତ ଦେଲେ ଯେ ମାଉଣ୍ଟବାଟେନଙ୍କ ଯେଉଁ ଉକ୍ତି ଦେଇଛନ୍ତି, ସେଥିପାଇଁ ଆଉ ନ ସମାନ ଆନ୍ଦୋଳନ ଟିକିଏ ମାତ୍ର ଭଲ ଦେଖାଯାଏ । ଏଥିରେ ପିତା ଖୁବ ଉତ୍ତେଜିତ ହୋଇଥିଲେ ଏବଂ ଶଯ୍ୟାରୁ ଉଠି ବସି ପଡ଼ିଲେ । ସେ ଘୋଷଣା କଲେ ଯେ, ଯାହାକୁ ଲକ୍ଷ୍ୟ ହାସଲ ନ ହେବା ପର୍ଯ୍ୟନ୍ତ ସେ କୌଣସି ମିଳାମିଶା ଉଦ୍ୟମରେ ନାହିଁ—ସେ ଏକାକୀ ରହିଲେ ମଧ୍ୟ ସଂଗ୍ରାମ ଚଳାଇବେ । ଏହି ଉତ୍ତେଜନାରେ ତାଙ୍କର ବଡ଼ ଖରାପ ହେଲା—ତାପ ବୃଦ୍ଧି ହେଲା – ଶେଷରେ ଡାକ୍ତରମାନେ ଅନ୍ୟମାନଙ୍କୁ ସେଠୁ ଚାଲିଯିବା ସକାଶେ ଏବଂ ତାଙ୍କୁ ଏକାକୀ ରହିବାକୁ ଉପଦେଶ ଦେଲେ ।

ଅନେକାଂଶରେ ସେ ଜୋର ଦେବାରୁ କାର୍ଯ୍ୟକାରୀ ସମିତି ଗୋଟିଏ ମିଳାମିଶା ବିରୋଧୀ ପ୍ରସ୍ତାବ ଗ୍ରହଣ କଲା । ଏହା ପ୍ରକାଶିତ ହେବା ପୂର୍ବରୁ ପିତାଙ୍କ ନାମରେ ଇଂଲଣ୍ଡରୁ ଏକ ତାର ସ୍ୟାର୍ ତେଜ୍ ବାହାଦୁର ସାପ୍ରୁ ଓ ଶ୍ରୀନିବାସ ଶାସ୍ତ୍ରୀଙ୍କ ନିକଟରୁ ଆସି ପହଞ୍ଚିଲା । ସେଥିରେ ତାଙ୍କ ଜରିଆରେ କଂଗ୍ରେସ ନେତାମାନଙ୍କ ସହିତ ଆଲୋଚନା କରିବା ପୂର୍ବରୁ କୌଣସି ଶେଷ ନିଷ୍ପତ୍ତି ନ କରିବା ନିମନ୍ତେ ସେମାନେ ଅନୁରୋଧ କରିଥିଲେ । ସେମାନେ ଭାରତକୁ ଫେରୁଥିଲେ । ତାଙ୍କୁ ଉତ୍ତର ପଠାଗଲା ଯେ, କାର୍ଯ୍ୟକାରୀ ସମିତି ସେ ସମ୍ବନ୍ଧରେ ପ୍ରସ୍ତାବ ଗ୍ରହଣ କରି ସାରିଛି; ମାତ୍ର ସାପ୍ରୁ ଓ ଜୟକାର ପହଞ୍ଚି ତାଙ୍କ ସହିତ ଆଲୋଚନା ନ ହେବା ପର୍ଯ୍ୟନ୍ତ ଏହା ସମ୍ବାଦପତ୍ରରେ ପ୍ରକାଶ ନିମନ୍ତେ ଦିଆଯିବ ନାହିଁ ।

ବାହାରର ଏହି ସବୁ ଘଟଣା ସମ୍ବନ୍ଧରେ ଆମେ ଜେଲ ଭିତରେ କିଛି ଜାଣି ନ ଥିଲୁ । ମାତ୍ର ଆମେ ଜାଣିଥିଲୁ ଗୋଟାଏ କଥା ନିଶ୍ଚିତ—ଏଥିରେ ଆମେ ବଡ଼ ବିରକ୍ତ ହେଉଥିଲୁ । ଆଗାମୀ ଜାନୁୟାରୀ ୨୬ ତାରିଖ ସ୍ୱାଧୀନତା ଉତ୍ସବ ରୂପରେ ପାଳିତ ହେବ; ଏହି କଥା ଆମ

# ମୋ ପିତାଙ୍କ ମୃତ୍ୟୁ

ଦୁଇ ସପ୍ତାହ ପରେ ମୁଁ ପିତାଙ୍କୁ ଦେଖିଲି । ସେ ମୋ ସହିତ ନୈନୀରେ ଜାନୁଆରୀ ତା ୧୨ ରିଖରେ ଦେଖା କରିଥିଲେ—ତାଙ୍କ ଚେହେରା ଦେଖି ମୁଁ ବ୍ୟଥିତ ହୋଇଥିଲି ! ତାଙ୍କ ଅବସ୍ଥା ଅତ୍ୟନ୍ତ ଖରାପ ହୋଇ ଯାଇଥିଲା । ତାଙ୍କ ମୁହଁ ଆହୁରି ଫୁଲି ଯାଇଥିଲା । କଥା କହିବାକୁ ସେ ଟିକିଏ କଷ୍ଟ ବୋଧ କରୁଥିଲେ ଏବଂ ତାଙ୍କର ମନ ସମ୍ପୂର୍ଣ୍ଣ ପରିଷ୍କାର ନ ଥିଲା । ମାତ୍ର ତାଙ୍କର ପୁରାତନ ଇଚ୍ଛାଶକ୍ତି ସେତେବେଳେ ଥିଲା, ତାହାହିଁ ତାଙ୍କର ମନ ଓ ଦେହକୁ କୌଣସି ପ୍ରକାରେ ଚଳାଇ ନେଉଥିଲା ।

ସେ ରଣଜିତ ଓ ମୋତେ ଦେଖି ଖୁସି ହେଲେ । ତିନି ଦୁଇଦିନ ପରେ ରଣଜିତଙ୍କୁ ପୁଣି ନୈନୀ ଜେଲକୁ ଫେରାଇ ନଆଗଲା । ( ସେ କାର୍ଯ୍ୟକାରୀ ସମିତିର ସଭ୍ୟ ଶ୍ରେଣୀରେ ଆସୁ ନ ଥିଲେ ) । ଏଥିରେ ପିତା ଅନନ୍ତୁଷ୍ଟ ହୋଇଗଲେ, ସେ ବରାବର ତାଙ୍କୁ ଖୋଜୁଥାଆନ୍ତି । ସାରା ଦେଶର ସୁଦୂର ଅଞ୍ଚଳମାନଙ୍କରୁ ଏତେ ଲୋକ ତାଙ୍କୁ ଦେଖିବାକୁ ଆସୁଥିଲେ ଯେ ତାଙ୍କ ଉପର ଜୋରିଙ୍କୁ ତାହିଁକି ଅଲଗା ରଖାଗଲା । ଏହି ଉତ୍ପାତ ଏହି ହେତୁ ତାଙ୍କ ଦେହ ବେଶି ଖରାପ ହେଲା — ଡାକ୍ତରମାନେ ନିଜ ଚିନ୍ତା କଲେ । ୩/୪ ଦିନ ପରେ ମୋର ମନେହୁଏ ଡାକ୍ତରଙ୍କ ପରାମର୍ଶ ଅନୁଯାୟୀ ଯୁକ୍ତପ୍ରଦେଶ ସରକାର ତାଙ୍କୁ ଖଲାସ କରିଦେଲେ ।

ଜାନୁଆରୀ ତା ୨୬ ରିଖ ଦିନ ମୁଁ ଖଲାସ ହେଲି, ସେହିଦିନ ସ୍ୱତନ୍ତ୍ରଭାବେ ଜେଲରୁ ଗାନ୍ଧୀଜୀ ମଧ୍ୟ ଖଲାସ ହେଲେ । ସେ ଏକାବେଳକେ [illegible]ବାଟ । "ମୁଁ ଗୃହ[illegible]" ଏବଂ ସେ ଖଲାସ ହୋଇଥିଲେ [illegible]

ପିତାଙ୍କୁ ଖବର ଦେବାମାତ୍ରେ ସେ ତାଙ୍କୁ ଦେଖିବା ନିମନ୍ତେ ବ୍ୟଗ୍ର ହୋଇଉଠିଲେ । ବମ୍ବେଠାରେ ତାଙ୍କର ଅଭ୍ୟର୍ଥନା ଉପଲକ୍ଷେ ଏକ ବିରାଟ ସଭା ହୋଇଥିଲା—ଏପରି ସଭା ଏଥିପୂର୍ବେ କେବେ ବମ୍ବେରେ ହୋଇନାହିଁ । ସେ ସଭା ସାରି ତତ୍ପରଦିନ ଗାନ୍ଧିଜୀ ଆସିଲେ । ସେ ନିଜେ ଆସି ଏଲାହାବାଦରେ ପହଞ୍ଚିଲେ । ପିତା ତାଙ୍କ ଅପେକ୍ଷାରେ ରହିଥାନ୍ତି— ତାଙ୍କର ଉପସ୍ଥିତି ଏବଂ ସେଠି ଦୁଇତିନି ଦିନ ସେ ରହିଲେ, ସେଥିରେ ପିତା ଶାନ୍ତି ବୋଧ କଲେ । ତାଙ୍କ ଆସିବାରେ ମୋ ମା' ମଧ୍ୟ କିଛିଏ ଶାନ୍ତି ଓ ଆରାମ ବୋଧ କଲେ ।

କାର୍ଯ୍ୟକାରୀ ସମିତିର ସଭ୍ୟ ମୁକ୍ତ ହୋଇ ଏଣେ ତେଣେ ଥାଆନ୍ତି । ସେମାନେ ବୈଠକ ପାଇଁ ଯେତେବେଳେ ଡାକରା ଆସିବ, ଚାହିଁ ରହିଥାନ୍ତି । ଅନେକେ ପିତାଙ୍କ ସ୍ୱାସ୍ଥ୍ୟ କଥା ଶୁଣି ତାଙ୍କୁ ଦେଖିବା ନିମନ୍ତେ ଏଲାହାବାଦ ଆସିବା ପାଇଁ ବ୍ୟଗ୍ର ଥାଆନ୍ତି । ସେଥିଲାଗି ସଙ୍ଗେ ସଙ୍ଗେ ଏଲାହାବାଦରେ ଏକ ବୈଠକ ଡକାଇବା ଲାଗି ସ୍ଥିର ହେଲା । ଦୁଇ ତିନି ଦିନ ପରେ ୩୦।୪୦ ଜଣ ସଭ୍ୟ ପହଞ୍ଚିଲେ — ଆମ ଘର ନିକଟରେ ଥିବା ସ୍ୱରାଜ୍ୟ ଭବନରେ ବୈଠକ ବସିଲା । ମୁଁ ଥରକୁ ଥର ଏହି ସଭାକୁ ଯାଉଥାଏ; ମାତ୍ର ମାନସିକ ଦୁଶ୍ଚିନ୍ତା ହେତୁ ଏଥିରେ ମନ ଦେଇପାରୁ ନ ଥିଲି । ସେତେବେଳେ କାର୍ଯ୍ୟକାରୀ ସମିତି କଣ ନିଷ୍ପତ୍ତି କଲା, ମୋର ମନେ ନାହିଁ । ମୋର ମନେହୁଏ, ଆଇନ ଅମାନ୍ୟ ଆନ୍ଦୋଳନ ଚଳାଇବା ସପକ୍ଷରେ ସମସ୍ତେ ମତ ଦେଲେ ।

ଏହି ସବୁ ପୁରାତନ ବନ୍ଧୁ ଓ ସହକର୍ମୀ ନିକଟରେ ଜେଲରୁ ଖଲାସ ହୋଇ ସୁଦ୍ଧା ପୁଣି ଅତି ଶୀଘ୍ର ଫେରିଯିବାକୁ ଆଶା କରୁଥାଆନ୍ତି । ସେଥି ପାଇଁ ପିତାଙ୍କଠାରୁ ଶେଷ ବିଦାୟ ନେବା ନିମନ୍ତେ ଇଚ୍ଛା କରୁଥାଆନ୍ତି । ସେମାନେ ୨।୩ ଜଣ ଲେଖାଏଁ ସକାଳେ ଓ ସନ୍ଧ୍ୟାରେ ଆସୁଥିଲେ— ପୁରୁଣା ବନ୍ଧୁମାନଙ୍କ ସହ ସାକ୍ଷାତ୍ କରିବା ନିମନ୍ତେ ପିତା ଏକ [illegible] ଚଉକିରେ ବସିରହୁଥିଲେ । ସେହି ଚଉକିରେ, ସେ [illegible]

ଭାବରେ ବସିଲେ, କାରଣ ତାଙ୍କର ମୁହଁ ଫୁଲି ଯାଇଥିବାରୁ କୌଣସି ଭାବ ଲେଶମାତ୍ର ନଥିଲା । ଜଣକ ପରେ ଜଣେ ପୁରାତନ ବନ୍ଧୁ ଆସୁଥାଆନ୍ତି । ସେମାନଙ୍କୁ ସେ ଚିହ୍ନିପାରନ୍ତି ତାଙ୍କ ମୁଣ୍ଡ ଟିକିଏ ତଳକୁ ହୋଇଯାଉଥାଏ, ହାତ ମିଳାଇ ଦିଅନ୍ତି—ତାଙ୍କ ଆଖିରୁ ଏକ ଜ୍ୟୋତି ବାହାରୁଥାଏ । ସେ ବେଶି କଥା କହି ନ ପାରୁଥିଲେ ମଧ୍ୟ ବେଳେ ବେଳେ ତାଙ୍କ ମୁହଁରୁ କଥା ବାହାରି ପଡୁଥିଲା—ଏହିବେଳେ ମଧ୍ୟ ରହସ୍ୟ କରିବାକୁ ସେ ଛାଡ଼ୁ ନଥିଲେ । ଏକ ମୁମୂର୍ଷୁ ସିଂହ ମରଣାନ୍ତକ ଆଘାତ ଖାଇ ପଡ଼ି ରହିଥିଲା ପରି ସେ ସେଠାରେ ପଡ଼ି ଥାଆନ୍ତି—ତାଙ୍କର ଶାରୀରିକ ଶକ୍ତି ପ୍ରାୟ ନ ଥାଏ, ତଥାପି ସେ ସିଂହ ପରି ଦେଖାଯାଉଥାଆନ୍ତି । ମୁଁ ତାଙ୍କୁ ଲକ୍ଷ୍ୟ କରି ରହୁଥାଏ, ତାଙ୍କ ମନରେ କି ଚିନ୍ତା ଅଛି, ଆମ କାର୍ଯ୍ୟକଳାପ ପ୍ରତି କଣ ତାଙ୍କର ଆଉ ଆଗ୍ରହ ଅଛି ? ସେ ଯେପରି କି ନିଜ ସହିତ ଯୁଦ୍ଧ କରୁଥିଲେ । ଘଟଣା ସ୍ରୋତ ତାଙ୍କଠାରୁ ଛାଡ଼ି ପଳାଉଥିଲା—ସେ ତାକୁ ଧରି ରଖିବାକୁ ଚେଷ୍ଟା କରୁଥିଲେ । ଏହି ସଂଗ୍ରାମ ଶେଷ ପର୍ଯ୍ୟନ୍ତ ଚାଲିଲା—ସେ ଶେଷ ପର୍ଯ୍ୟନ୍ତ ହାର ମାନି ନଥିଲେ । ବେଳେବେଳେ ଆମ ସହିତ ପରିଷ୍କାର ଭାବରେ କଥାବାର୍ତ୍ତା କରନ୍ତି । ଯେତେବେଳେ ଗଳା ପରିଷ୍କାର ନ ଥିବା ହେତୁ କଥା କହିବାକୁ ଅସୁବିଧା ମନେ କରନ୍ତି, ସେତେବେଳେ ତାଙ୍କର ଯାହା କହିବାର କଥା କାଗଜରେ ଲେଖି ଦେଉଥାନ୍ତି ।

ଆମର ପାର୍ଶ୍ୱବର୍ତ୍ତୀ ଘରେ କାର୍ଯ୍ୟକାରୀ ସମିତିର ଯେଉଁ ବୈଠକ ହେଉଥିଲା, ସେଥିରେ ସେ ଆଦୌ ଆଗ୍ରହ ନେଇ ନ ଥିଲେ । ପନ୍ଦର ଦିନ ପୂର୍ବରୁ ହୋଇଥିଲେ ସେ ବ୍ୟଗ୍ରତାର ସହିତ ଏଥିରେ ଲାଗି ପଡ଼ିଥାଆନ୍ତେ; ମାତ୍ର ଏବେ ସେ ଏ ଘଟଣାରୁ ବହୁ ଦୂରରେ ଥିଲେ । ସେ ଗାନ୍ଧିଜୀଙ୍କୁ କହିଥିଲେ—"ମୁଁ ଶୀଘ୍ର ଚାଲିଯାଉଛି, ମହାତ୍ମାଜୀ ! ମୁଁ ସ୍ୱରାଜ ଦେଖିବାକୁ ରହିପାରିବି ନାହିଁ ; କିନ୍ତୁ ମୁଁ ଜାଣେ, ତୁମେ ଏହା ଶୀଘ୍ର ଲାଭ କରିବ ଓ ଉପଭୋଗ କରିବ ।"

ଅନ୍ୟ ପ୍ରଦେଶରୁ ଆସିଥିବା ଅଧିକାଂଶ ଲୋକ ଯେ ଯାହା ପ୍ରଦେଶକୁ ଫେରି ଗଲେ । ଗାନ୍ଧିଜୀ ଏବଂ ଅନ୍ୟ କେତେକ ଘନିଷ୍ଠ ବନ୍ଧୁ ଓ ଆତ୍ମୀୟ ରହିଲେ । [illegible] ବିଖ୍ୟାତ ଚିକିତ୍ସକ ଡାକ୍ତର ବିଧାନ ଚନ୍ଦ୍ର ରାୟ, ଏମ୍. ଏ. ଅନ୍ସାରୀ ଓ ଜୀବରାଜ ମେହେତା ରହିଲେ । ତାଙ୍କ ହାତରେ ସେ ନିଜର ଜୀବନ ସମର୍ପି ଦେଇଛନ୍ତି ବୋଲି କହୁଥିଲେ । ଫେବୃଆରୀ ୩ ତାରିଖ ସକାଳେ ତାଙ୍କ ଦେହ ଟିକିଏ ଭଲ ଦେଖା ହେଲା—ଏଲାହାବାଦରେ ଭଲ ଯନ୍ତ୍ରପାତିର ସୁବିଧା ନଥିବାରୁ ଏତିକି ବେଳେ ଲକ୍ଷ୍ନୌ ନେଇଯିବା ଲାଗି ଆମେ ସ୍ଥିର କଲୁ । ସେହିଦିନ ମଟର ଗାଡ଼ିରେ ଆମେ ତାଙ୍କୁ ଲକ୍ଷ୍ନୌ ନେଲୁ—ଗାନ୍ଧିଜୀ ଓ ଅନ୍ୟମାନେ ମଧ୍ୟ ସଙ୍ଗରେ ଗଲେ । ଆମେ ବହୁତ ଆସ୍ତେ ଆସ୍ତେ ଗଲୁ, ତଥାପି ସେ କ୍ଲାନ୍ତ ହୋଇଗଲେ । ତତ୍‌ପରଦିନ କ୍ଲାନ୍ତି ଦୂର ହୋଇଗଲେ ସୁଦ୍ଧା କେତେକ ମନ୍ଦ ଲକ୍ଷଣ ଦେଖାଗଲା । ଫେବୃଆରୀ ୬ ତାରିଖ ଖୁବ୍ ସକାଳେ ମୁଁ ତାଙ୍କ ବିଛଣା ପାଖରେ ବସି-ଥାଏ । ସାରା ରାତି ସେ ଅଶାନ୍ତ ଓ କଷ୍ଟରେ କଟାଇ ଥାଆନ୍ତି; ମୁଁ ହଠାତ୍ ଦେଖିଲି ଯେ, ତାଙ୍କ ମୁଖ ସ୍ଥିର ହୋଇ ଯାଇଛି ଏବଂ ସଂଗ୍ରାମ ଚିହ୍ନ ଅନ୍ତର୍ହିତ ହୋଇଛି । ମୁଁ ଭାବିଲି ଯେ ଶୋଇ ପଡ଼ିଛନ୍ତି—ଏଥିପାଇଁ ମୁଁ ଖୁସି ହେଲି । ମାତ୍ର ମୋର ମାତାଙ୍କ ପର୍ଯ୍ୟବେକ୍ଷଣ ଶକ୍ତି ତୀକ୍ଷ୍ଣ । ସେ କାନ୍ଦି ଉଠିଲେ । ମୁଁ ତାଙ୍କ ପାଖକୁ ଯାଇ ବାପା ଶୋଇଛନ୍ତି ବୋଲି ଗୋଲମାଳ ନ କରିବା ପାଇଁ କହିଲି । ସେ ତାଙ୍କର ଶେଷ ନିଦ୍ରା, ତାପରେ ଆଉ ସେ ଉଠିନାହାନ୍ତି ।

ସେହିଦିନ ଆମେ ତାଙ୍କ ଶରୀର ମଟରରେ ଏଲାହାବାଦ ଆଣିଲୁ । ମୁଁ ସେହି ଗାଡ଼ିରେ ବସିଲି—ରଣଜିତ୍ ଗାଡ଼ି ଚଳାଉଥିଲେ ଏବଂ ପିତାଙ୍କର ପ୍ରିୟ ଭୃତ୍ୟ ହରି ମଧ୍ୟ ସଙ୍ଗରେ ଥାଏ । ଆମ ପଛ ଗାଡ଼ିରେ ଗାନ୍ଧିଜୀ ଓ ମା [illegible] ଥାଆନ୍ତି—ତା ପର ଗାଡ଼ିରେ ଅନ୍ୟମାନେ । ସାରାଦିନଟି ସେଦିନ ମୋତେ ଅଦ୍ଭୁତ ଲାଗିଲା—କଣ ଘଟୁଥାଏ, ମୁଁ ଜାଣିପାରୁ ନ ଥାଏ—ପରବର୍ତ୍ତୀ ଘଟଣା ଏବଂ ବୃହତ୍ ଜନତା ଭିତରେ କିଛି ଭାବିବା ଅସମ୍ଭବ ଥିଲା । ତାଙ୍କ ଶରୀର ପାଖରେ ବସି ଲକ୍ଷ୍ନୌରୁ ଏଲାହାବାଦ ଗଲୁ ।

ଜାତୀୟ ପତାକାରେ ତାଙ୍କ ଦେହ ଘୋଡ଼ା ହୋଇଥାଏ—ଉପରେ ଗୋଟିଏ ବଡ଼ ଜାତୀୟ ପତାକା ଉଡ଼ୁଥାଏ । ଏଣ୍ଟା ବାଡ଼ିରେ ପହଞ୍ଚିଲା ମାତ୍ରେ ଅଗଣିତ ଜନତା ତାଙ୍କୁ ଭକ୍ତି ପ୍ରଦର୍ଶନ କରିବା ନିମନ୍ତେ ସାଇଲବାଣୀ ଅସି ଜୁଟି ହୋଇଗଲେ । ପରେ ସେତେବେଳେ କିଛି ଦୂର ଗମନ ଏବଂ ବିଶାଳ ଜନତା ସହ ତାଙ୍କ ଦେହକୁ ଘେନି ଗଙ୍ଗାକୁ ଶେଷଯାତ୍ରା ହେଲା । ଶୀତକାଳର ସେହି ସନ୍ଧ୍ୟାବେଳେ ନଦୀକୂଳରେ ଚିତା ଜଳି ଉଠିଲା—ତାଙ୍କର ପାର୍ଥିବ ଓ ସ୍ୱବତର ଲକ୍ଷ ଲକ୍ଷ ନରନାରୀଙ୍କ ପ୍ରିୟ ଶରୀରଟି ସେଥିରେ ପୋଡ଼ିଗଲା । ଗାନ୍ଧିଜୀ ଜନତାଙ୍କୁ ସେତେବେଳେ ମର୍ମସ୍ପର୍ଶୀ ବାଣୀ ଶୁଣାଇଥିଲେ—ତାପରେ ଆମେ ସମସ୍ତେ ନୀରବରେ ଘରକୁ ଫେରିଲୁ । ଆମେ ଫେରିଲା ବେଳକୁ ନକ୍ଷତ୍ର ସବୁ ବାହାରି ଥାଏ ଓ ଝଲମଲ ଦେଖା ଯାଉଥାଏ—ଆମେ ଏକାକୀ ଅନାଥ ହୋଇ ଫେରିଲୁ ।

ସହସ୍ର ସହସ୍ର ସହାନୁଭୂତି ସୂଚକ ସନ୍ଦେଶ ମୋ ପାଖକୁ ଓ ମାଆଙ୍କ ପାଖକୁ ଆସିଥିଲା । ଲର୍ଡ଼ ଏବଂ ଲେଡ଼ି ଇରଉଇନ୍ ମଧ୍ୟ ମାଆଙ୍କ ପାଖକୁ ଏକ ଭଦ୍ର ସନ୍ଦେଶ ପଠାଇଲେ । ଏହି ଅସଂଖ୍ୟ ସଦିଚ୍ଛା ଓ ସହାନୁଭୂତି ଯୋଗୁଁ ଦୁଃଖ ଏକପ୍ରକାର ଆମଠୁ ଦୂରେଇଗଲା; କିନ୍ତୁ ଗାନ୍ଧିଜୀଙ୍କ ଉପସ୍ଥିତି ହେତୁ ମାଆ ଓ ଆମେ ସବୁ ସାନ୍ତ୍ୱନା ପାଇଲୁ ଏବଂ ଆମର ଜୀବନରେ ସେହି ସଙ୍କଟ ସମୟର ସମ୍ମୁଖୀନ ହୋଇ ପାରିଥିଲୁ ।

ସେ ଚାଲିଯାଇଛନ୍ତି, ଏ କଥା ବିଶ୍ୱାସ କରିବା ମୋ ପକ୍ଷରେ କଷ୍ଟକର ହେଲା । ତିନିମାସ ପରେ ମୁଁ ମୋର ସ୍ତ୍ରୀ ଓ ଝିଅଙ୍କ ସହ ସିଲୋନ ଗଲି । ନୁଆରା ଏଲିଆରେ ଆମେ କେତେଦିନ ଶାନ୍ତିରେ କଟାଇ ଆରାମ ନେଲୁ । ମୋତେ ସେ ସ୍ଥାନଟି ଭଲ ଲାଗିଲା—ହଠାତ୍ ମୋ ମନକୁ ଆସିଲା ଯେ ବାପାଙ୍କ ପାଇଁ ଏହା ଉପଯୋଗୀ ହୋଇ ଥାଆନ୍ତା । ତାଙ୍କୁ ଡକାଇ ପଠାଇଲେ ହୁଅନ୍ତା ନାହିଁ ? ସେ କ୍ଲାନ୍ତ ହୋଇ ପଡ଼ିଥିବେ—ବିଶ୍ରାମ ପାଇଲେ ତାଙ୍କର ଭଲ ହେବ । ମୁଁ ତାଙ୍କ ନିକଟକୁ ଏହି ବାବଦ ଗୋଟିଏ ଟେଲିଗ୍ରାମ ପଠାଇବାକୁ ଯାଉଥିଲି ।

ସିଲୋନ୍‌ରୁ ଏଲାହାବାଦ ଫେରିବା ପରେ ଏଇ ଅଦ୍ଭୁତ ଚିଠି ଆସି ମୋ ହାତରେ ପଡ଼ିଥିଲା । ଲଫାଫାରେ ପିତାଙ୍କ ହସ୍ତାକ୍ଷରରେ ମୋ ପାଖକୁ ଠିକଣା ଲେଖାଯାଇଥିଲା । ଭାରତ ଡାକଘରର ଅସଂଖ୍ୟ ମୋହର ସେଥିରେ ବସିଥାଏ । ଏଥିରେ କଣ ଅଛି ଦେଖିବାକୁ ଅଧୀର ହୋଇ ଖୋଲିଲି—ବାସ୍ତବିକ ଦେଖିଲି ଯେ ପିତା ଏ ଚିଠିଟି ମୋତେ ଲେଖିଥିଲେ—ଏହା ୧୯୨୬ ମସିହା ଫେବ୍ରୁଆରୀ ୨୬ ତାରିଖରେ ଲେଖାଯାଇଥିଲା, ମାତ୍ର ୧୯୩୧ ମସିହା ଗ୍ରୀଷ୍ମ ଋତୁରେ ଏହା ମୋତେ ମିଳିଲା । ମୋ ନିକଟରେ ପହଞ୍ଚିବାକୁ ସାଢ଼େ ପାଞ୍ଚବର୍ଷ ଲାଗିଲା । ୧୯୨୬ ରେ ମୁଁ କମଳା ସହିତ ୟୁରୋପ ଯିବା ପୂର୍ବରୁ ପିତା ଅହ୍ମଦାବାଦରୁ ଏ ଚିଠି ମୋତେ ଲେଖିଥିଲେ । ଆମେ ଇଟାଲିୟାନ ଲଏଡ୍ ଜାହାଜରେ ଯାଇଥିଲୁ—ସେହି ଠିକଣାରେ ବମ୍ବେକୁ ଏହା ଲେଖା ହୋଇଥିଲା । ସମ୍ଭବତଃ ଚିଠି ପହଞ୍ଚିଲା ବେଳକୁ ଆମେ ଚାଲିଯାଇଥିଲୁ—ତାପରେ ଏହା ଅନେକ ସ୍ଥାନକୁ ଗଲା—ସମ୍ଭବତଃ ଏହା କେତେଟି ପତ୍ରବାହକ—ହଠାତ୍ କୌଣସି ଉଦ୍‌ଯୋଗୀ ଲୋକ ମୋ ପାଖକୁ ପଠାଇ ଦେଇଥିଲା । ଆଶ୍ଚର୍ଯ୍ୟ କଥା ଯେ, ଏହା ଏକ ପଦାସ୍ତ ଚିଠି ।

# ଦିଲ୍ଲୀ ଚୁକ୍ତି

ସେହି ଦିନ ମୋ ପିତା ଯେତେବେଳେ ମଲେ, ସେହି ଘଣ୍ଟାରେ ବମ୍ବେରେ ଗୋଲଟେବୁଲ ସମ୍ମିଳନୀର ଭାରତୀୟ ସଦସ୍ୟ କେତେକ ଆସି ପହଞ୍ଚିଲେ । ଶ୍ରୀନିବାସ ଶାସ୍ତ୍ରୀ, ସାର୍ ତେଜବାହାଦୁର ସାପ୍ରୁ ଏବଂ ଆଉ କେତେଜଣ—ସେମାନଙ୍କ ନାମ ମୋର ମନେନାହିଁ—ସିଧା ଏଲାହାବାଦ ଆସିଲେ । ଗାନ୍ଧିଜୀ ଏବଂ କଂଗ୍ରେସ କାର୍ଯ୍ୟକାରୀ ସମିତିର କେତେକ ସଭ୍ୟ ସେଠାରେ ଥିଲେ । ଆମ ଘରେ କେତେକ ଘରୋଇ ବୈଠକ ହୋଇଥିଲା—ଗୋଲଟେବୁଲ ସମ୍ମିଳନୀରେ କଣ ହୋଇଥିଲା, ସେଠାରେ ସେମାନେ ବର୍ଣ୍ଣନା କଲେ । ଯାହାହେଉ ଏହା ଆରମ୍ଭ ବେଳେ ଗୋଟାଏ ଘଟଣା ଘଟିଗଲା । ମିଷ୍ଟର ଶାସ୍ତ୍ରୀ ନିଜ ଇଚ୍ଛାନୁସାରେ ଏଡ଼ନବନ୍ଦରେ ଯାହା କହିଥିଲେ, ସେଥିପାଇଁ ଦୁଃଖ ପ୍ରକାଶ କଲେ । ସେ କହିଲେ ଯେ ସେ ସବୁଦା ପାରିପାର୍ଶ୍ୱିକ ଅବସ୍ଥାରେ ପ୍ରଭାବିତ ହୋଇଯାଆନ୍ତି ଏବଂ ତାଙ୍କର ଉଚ୍ଛ୍ୱସିତ ବାଗାଡ଼ମ୍ବରରେ ବାନ୍ଧ ନ ଥାଏ ।

ଗୋଲଟେବୁଲ ବୈଠକର ପ୍ରତିନିଧିଙ୍କଠାରୁ ଆମେ ଗୋଲଟେବୁଲ ସମ୍ବନ୍ଧରେ କିଛି ନୂଆ କଥା ଶୁଣିଲୁ ନାହିଁ । ଅସଲ କାର୍ଯ୍ୟ ପଶ୍ଚାତରେ ଭିତର ସବୁ ଘଟଣା ହେଉଥିଲା—କେଉଁ ଲର୍ଡ଼ କିପରି କହିଲେ, ଗୁପ୍ତରେ କଣ କହିଲେ ସେହି ସବୁ କଥା ଅବଶ୍ୟ ସେ ଆମକୁ କହୁଥିଲେ । ମୋତେ ବୋଧହେଲା ଭାରତରେ ଆମ ଲିବରାଲ ନେତାମାନେ ଘରୋଇ କଥାବାର୍ତ୍ତା ଏବଂ ଉଚ୍ଚ କର୍ମଚାରୀ କଣ କହିଲେ ବା ସେମାନଙ୍କ ସହିତ ଏମାନେ କଣ କଥାବାର୍ତ୍ତା କରୁଥିଲେ, କୌଣସି ନୀତି ବା ଭିତ୍ତିଭୂମି ପରିସ୍ଥିତିର ବାସ୍ତବତା ଅପେକ୍ଷା ଏହିସବୁ ଉପରେ ବେଶି ଗୁରୁତ୍ୱ ଦିଅନ୍ତି । ଲିବରାଲ ନେତାମାନଙ୍କ ସହ ଆମର ଆଲୋଚନାରେ କିଛି ହେଲା ନାହିଁ – ଗୋଲଟେବୁଲ ସମ୍ମିଳନୀ ସିଦ୍ଧାନ୍ତରେ କିଛି ମୂଲ୍ୟ ନାହିଁ ବୋଲି ଆମର ଆଗରୁ ଯାହା ମତ ଥିଲା; ତାହା ଏବେ ଦୃଢ଼ ହେଲା ।

ସେତେବେଳେ ଜଣେ କେହି ମତ ଦେଲେ—କିଏ ତାଙ୍କ ନାମ ମୁଁ ଭୁଲିଯାଇଛି—ଯେ ଗାନ୍ଧିଜୀ ହିଟଲରଙ୍କ ପାଖକୁ ସାକ୍ଷାତ ପାଇଁ ଏକ ଚିଠି ଲେଖନ୍ତୁ ଏବଂ ତାଙ୍କ ସହିତ ଖୋଲିଖୋଲି କଥାବାର୍ତ୍ତା ହେଉ । ସେ ଏହା କରିବାକୁ ପ୍ରସ୍ତୁତ ହେବେ—ଅବଶ୍ୟ ଏଥିରେ କିଛି ଫଳ ହେବ ବୋଲି ସେ ଆଶା କରୁଥିବେ ମୋର ମନେହୁଏ ନାହିଁ; ମାତ୍ର ନିଜ ଦୃଷ୍ଟିରୁ ସେ ସର୍ବଦା ନିଜ ପଥରୁ ଟିକିଏ ତଳକୁ ଖସି ଶତ୍ରୁ ସହିତ ସାକ୍ଷାତ ଏବଂ ଆଲୋଚନା କରିବାକୁ ସର୍ବଦା ପ୍ରସ୍ତୁତ ଥାଆନ୍ତି । ନିଜ ହୃଦୟରେ ସେ ଯାହା ଠିକ୍ ବୋଲି ଉପଲବ୍ଧି କରିଥିବାକୁ ଅନ୍ୟ ପକ୍ଷକୁ ବୁଝାଇ ପାରିବେ ବୋଲି ସର୍ବଦା ଆଶା ରଖୁଥିଲେ; କିନ୍ତୁ ସମ୍ଭବତଃ ମାନସିକ ବିଶ୍ୱାସ ଛଡ଼ା ତାଙ୍କର ଉଦ୍ଦେଶ୍ୟ ଆଉ ଅଲଗା କିଛି ଥିଲା । ସେ ସର୍ବଦା ହୃଦୟ ପରିବର୍ତ୍ତନର ଚେଷ୍ଟା କରୁଥିଲେ—କ୍ରୋଧ ଓ ଅବିଶ୍ୱାସ ଶତ୍ରୁ ମନରୁ ଦୂର କରି ଅନ୍ୟର ସଦିଚ୍ଛା ଏବଂ ପ୍ରୀତି ଲାଭ ଆଶା କରୁଥିଲେ । ତାଙ୍କର ବିଶ୍ୱାସ ଯେ, ଏହି ପରିବର୍ତ୍ତନ ହୋଇ ପାରିଲେ ତାଙ୍କର ବିଶ୍ୱାସ ଜନ୍ମାଇବା ସହଜ ହୁଏ କିମ୍ବା ବିଶ୍ୱାସ ନ ଜନ୍ମିଲେ ମଧ୍ୟ ବିରୋଧ ଟିକିଏ ନରମ ପଡ଼ିଯାଏ ଏବଂ ମଧ୍ୟସ୍ଥରେ ତିକ୍ତତା ରହେନା । ତାଙ୍କର ବିରୋଧୀ ଲୋକଙ୍କ ସହ ବ୍ୟକ୍ତିଗତ ବ୍ୟବହାରରେ ସେ ନମ୍ରଭାବ ଦେଖାନ୍ତି; ଜଣେ ଶତ୍ରୁକୁ ସେ ଉପର ନିଜର କେବଳ ବ୍ୟକ୍ତିତ୍ୱ ବଳରେ ଆପଣାର କରି ନେଉଥିଲେ, ତାହାହିଁ ଆଶ୍ଚର୍ଯ୍ୟ କଥା । ଅନେକ ସମାଲୋଚକ ଓ ପରିହାସକାରୀ ତାଙ୍କର ବ୍ୟକ୍ତିତ୍ୱରେ ଅଭିଭୂତ ହୋଇ ପଡ଼ି ତାଙ୍କର ଗ୍ରାହକ ହୋଇଛନ୍ତି । ସମାଲୋଚନା କରୁଥିଲେ ମଧ୍ୟ ଆଉ ପରିହାସ କରନ୍ତି ନାହିଁ ।

ତାଙ୍କର ଏହି କ୍ଷମତା ସମ୍ବନ୍ଧରେ ସେ ସଚେତନ ଥିବାରୁ ତାଙ୍କ ସହିତ ଅସମ୍ମତ ହେଉଥିବା ଲୋକଙ୍କ ସହିତ ସାକ୍ଷାତ କରିବାକୁ ସେ ସର୍ବଦା ଚାହାନ୍ତି । ବ୍ୟକ୍ତିଗତ ବା ଗୋଷ୍ଠି ସମସ୍ୟାରେ ବ୍ୟକ୍ତିବିଶେଷଙ୍କ ସହ କାରବାର କରିବା ଏକ କଥା; କିନ୍ତୁ ଶକ୍ତିଶାଳୀ ସାମ୍ରାଜ୍ୟବାଦୀ ବ୍ରିଟିଶ ସରକାରର ପ୍ରତିନିଧି ସହିତ କାରବାରରେ

ଦିଅନ୍ତା, ଅଳ୍ପରେ ଭଲ ଥିଆ । ଏହା ଜାଣିଥିବାରୁ ଗାନ୍ଧିଜୀ ତତ୍କାଳ ଉକ୍ତ ଆଶା ନ କରି ଲର୍ଡ଼ ଇରଉଇନଙ୍କ ସହିତ ସାକ୍ଷାତ୍ କରିବାକୁ ଗଲେ । ଆଇନ ଅମାନ୍ୟ ଆନ୍ଦୋଳନ ସେତେବେଳେ ଚାଲୁଥାଏ—ଅତଏବ ସରକାର ସହିତ ମିଳାମିଶା କଥାବାର୍ତ୍ତା ବେଶୀ ଶୁଣାଯାଉଥିବାରୁ ଏହା ନୂଆ ଲାଗୁ ଥାଉଥିଲା ।

ସାକ୍ଷାତ୍ ଫଳପ୍ରଦ ହେବା ସମ୍ଭବ ହେଲା ନାହିଁ । ଗାନ୍ଧିଜୀ ଫେରି ଆସିଲେ । ଗାନ୍ଧିଜୀ ଗଲାବେଳେ ଆମକୁ କହିଗଲେ ଯେ, ଅସ୍ଥାୟୀ ମିଳାମିଶାର ଗୋଟିଏ ସର୍ତ୍ତ ଯଦି ବଡ଼ଲାଟ ସହିତ ଆଲୋଚନାରେ ସେ ଦେଖିପାରନ୍ତି, ତେବେ ସେ ଆମମାନଙ୍କ ସମିତିର ସଭ୍ୟମାନଙ୍କୁ ଡକାଇ ପଠାଇବେ । କେତେକ ଦିନପରେ ଆମ ସମସ୍ତଙ୍କୁ ଦିଲ୍ଲୀ ଡକରା ହେଲା । ତିନ ସପ୍ତାହ ଆମେ ସେଠି ରହିଲୁ—ପ୍ରତିଦିନ ବୈଠକ ହେଉଥିଲା—ଦୀର୍ଘ ସମୟ ଧରି ଆଲୋଚନା କରି ଆମେ କ୍ଳାନ୍ତ ହୋଇଯାଉଥିଲୁ । ଲର୍ଡ଼ ଇରଉଇନଙ୍କ ସହିତ ଗାନ୍ଧିଜୀଙ୍କର ବାରମ୍ବାର ସାକ୍ଷାତ୍ ହେଉଥିଲା—କେବେ କେବେ ମଝିରେ ମଝିରେ ବା ଦିନ ଥରେ ପାଏ—ସମ୍ଭବତଃ ଭାରତ ସରକାର ଲଣ୍ଡନରେ ଭାରତ ଅଫିସକୁ ଖବର ପଠାଇ ତାଙ୍କ ମତ ନେଉଥିଲେ । କେବେ କେବେ ଅତି ଛୋଟ ଛୋଟ ତଥା ଏପରି କି କେବଳ ଶବ୍ଦ ନେଇ ଆଲୋଚନା ବନ୍ଦ ହୋଇ ଯାଉଥିଲା । ଆଇନ ଅମାନ୍ୟ ଆନ୍ଦୋଳନ “ସ୍ଥଗିତ” ଶବ୍ଦ ନେଇ ଅସୁବିଧା ଲାଗିଲା । ଗାନ୍ଧିଜୀ ଆଗରୁ ସରକାରଙ୍କୁ ସ୍ପଷ୍ଟ ଜଣାଇ ଦେଇଥିଲେ ଯେ, ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥାୟୀ ଭାବରେ ବନ୍ଦ କରାଯାଇ ପାରିବ ନାହିଁ; ଏହା ଛାଡ଼ି ଦିଆଯାଇ ପାରିବ ନାହିଁ—ନାଗରିକମାନଙ୍କ ହାତରେ ଏହାହିଁ ଏକମାତ୍ର ଅସ୍ତ୍ର । ଏହା ସ୍ଥଗିତ ରଖାଯାଇ ପାରେ । ଲର୍ଡ଼ ଇରଉଇନ ଏଥିରେ ଆପତ୍ତି କଲେ ଏବଂ ଏ ବିଷୟରେ ଏକ ଶେଷ ନିଷ୍ପତ୍ତି କରିବା ଭଳି ଶବ୍ଦ ପ୍ରୟୋଗ କରିବାକୁ ଚାହିଁଲେ—ଗାନ୍ଧିଜୀ ସମ୍ମତ ହେଲେ ନାହିଁ । ଶେଷରେ “ଆପାତତଃ ନ ଚଳାଇବା” ଶବ୍ଦଟି ରହିଲା । ବିଦେଶୀ ଲୁଗା

ଓ ମଦ ଦୋକାନ ଆଗରେ ପିକେଟିଂ ସମ୍ବନ୍ଧରେ ମଧ୍ୟ ଦୀର୍ଘ ଆଲୋଚନା ହେଉଥିଲା । ଚୁକ୍ତି ପାଇଁ ଏକ ଅସ୍ଥାୟୀ ବ୍ୟବସ୍ଥା ସମ୍ବନ୍ଧରେ ଆଲୋଚନାରେ ଆମର ଅଧିକାଂଶ ସମୟ ଯାଉଥିଲା—ମୌଳିକ କଥା ପ୍ରତି ବେଶି ଦୃଷ୍ଟି ଦିଆଯାଉ ନ ଥିଲା । ସମ୍ଭବତଃ ଏକ ଅସ୍ଥାୟୀ ମିଳାମିଶା ହୋଇଗଲା ପରେ ଅନୁକୂଳ ଅବସ୍ଥାରେ ଏହି ସବୁ ମୌଳିକ କଥାର ବିଚାର ହେବ, ସେତେବେଳକୁ ସଂଗ୍ରାମ ମଧ୍ୟ ବନ୍ଦ ହୋଇଥିବ । ଏହି କଥାବାର୍ତ୍ତା ଶାନ୍ତି ଆଡ଼କୁ ଗତି କରୁଛି ବୋଲି ଆମେ ଧରି ନେଉଥାଉ—ପରେ ପ୍ରକୃତ ସମସ୍ୟା ସମ୍ବନ୍ଧରେ ଆହୁରି କଥାବାର୍ତ୍ତା ହୋଇ ଠିକ ହୋଇପାରେ ।

ସେ ସମୟରେ ସକଳ ଶ୍ରେଣୀର ଲୋକଙ୍କର ଦୃଷ୍ଟି ଦିଲ୍ଲୀରେ ଥାଏ । ଅନେକ ବିଦେଶୀ ସାମ୍ବାଦିକ, ବିଶେଷତଃ ଆମେରିକାରୁ ଆସିଥାନ୍ତି—ଏମାନେ ଆମର ନୀରବତା ଦେଖି ଏକପ୍ରକାର ବିରକ୍ତ ହୋଇଥିଲେ । ସେମାନେ ଆମକୁ କହୁଥିଲେ ଯେ, ନଉଦିଲ୍ଲୀ ସେକ୍ରେଟେରି-ଏଟରୁ ସେମାନେ ଆମଠାରୁ ଯଥେଷ୍ଟ ଅଧିକ ସମ୍ବାଦ ପାଉଥିଲେ, ଏହା ପ୍ରକୃତ ସତ୍ୟ । ଅନେକ ଥର ଶାନ୍ତିପ୍ରିୟ ଲୋକ ଗାନ୍ଧିଜୀଙ୍କୁ ସମ୍ମାନ ଦେଖାଇବା ପାଇଁ ଦୌଡ଼ିବାକୁ ଲାଗିଲେ—ଗାନ୍ଧୀଜୀଙ୍କ ଛବି ପରି କେଉଁ ଅଛି ? ଯେଉଁ ଲୋକେ ଗାନ୍ଧିଜୀ ଓ କଂଗ୍ରେସଠାରୁ ବହୁ ଦୂରରେ ରହୁଥିଲେ ଓ ନିନ୍ଦା କରୁଥିଲେ, ସେମାନେ ନିଜର ସଂଶୋଧନ କରିବା ସକାଶେ ଗାନ୍ଧିଜୀଙ୍କ ପାଖକୁ ଦୌଡ଼ିବା ଦେଖିଲେ ବଡ଼ କୌତୁକ ଲାଗୁଥିଲା । ଯେ କୌଣସି ପ୍ରକାରେ କଂଗ୍ରେସ ଓ ତାର ନେତାଙ୍କ ସହ ଭଲ ସମ୍ବନ୍ଧ ରଖିଥିବା ଭଲ । ବର୍ଷକ ପରେ ସେମାନଙ୍କଠାରେ ଆଉ ଏକ ପରିବର୍ତ୍ତନ ଦେଖାଦେଲା—ସେମାନେ କଂଗ୍ରେସ ପ୍ରତି ଖୁବ ଘୃଣା ପ୍ରଦର୍ଶନ କଲେ—ଏହାର କାର୍ଯ୍ୟକୁ ନିନ୍ଦା କଲେ ଏବଂ ଏଥିପ୍ରତି ନିଜର ସମ୍ପୂର୍ଣ୍ଣ ଅସହଯୋଗ ଦେଖାଇଲେ ।

ଏପରି କି ସାଂପ୍ରଦାୟିକ ନେତାମାନଙ୍କ ମଧ୍ୟରେ ଏହି ଘଟଣାବଳୀରେ ଚହଳ ପଡ଼ିଗଲା ଏବଂ ସେମାନେ ଆଶଙ୍କା କଲେ ଯେ, ଏହା ପରେ

ସେମାନଙ୍କର ରୂପ ବା ଭଙ୍ଗୀ ସମ୍ବନ୍ଧ କହିବ ନାହିଁ । ତେଣୁ ସେମାନଙ୍କ ଭିତରୁ ଅନେକ ଗାନ୍ଧିଜୀଙ୍କ ପାଖକୁ ଆସି କହୁଥିଲେ ଯେ, ସାଂପ୍ରଦାୟିକ ସମସ୍ୟାରେ ସେମାନେ ମେଳାମିଶା କରିବାକୁ ଚାହାଁନ୍ତି । ଗାନ୍ଧିଜୀ ଯଦି ଏ ସମ୍ବନ୍ଧରେ ଉଦ୍ୟମ କରନ୍ତି, ତେବେ ଗୋଟାଏ ସମାଧାନ ହେବାରେ କିଛି ଅସୁବିଧା ହେବନାହିଁ ।

ଗାନ୍ଧିଜୀ ଓ ଆମ ଭିତରୁ ଅଧିକାଂଶ ବ୍ୟକ୍ତି ଅନସାରୀଙ୍କ ଘରେ ଥିଲୁ—ସେଠାକୁ ହିନ୍ଦୁ ଓ ମୁସଲମାନ ସବୁଶ୍ରେଣୀର ଲୋକ ଆସିବାକୁ ଲାଗିଲେ । ଆମେ ଅବସର ସମୟରେ ଏହି ଲୋକମାନଙ୍କୁ ବୌଦ୍ଧିକ ବୃତ୍ତିରେ ଲକ୍ଷ୍ୟ କରୁଥାଉ ଓ ଅନେକ ଅଭିଜ୍ଞତା ମଧ୍ୟ ଅର୍ଜନ କରୁ । କେତେକ ବର୍ଷ ହେଲା ସହର ଓ ମଫସଲର ଦରିଦ୍ର ଲୋକ ଏବଂ ଜେଲରେ ସଢ଼ୁଥିବା ଲୋକଙ୍କ ସହିତ ମୁଖ୍ୟତଃ ଆମର ସମ୍ପର୍କ ଥିଲା । ଗାନ୍ଧିଙ୍କୁ ଦେଖିବାକୁ ଆସୁଥିବା ଭଦ୍ର ମହୋଦୟଙ୍କଠାରେ ଆମେ ମାନବ ଚରିତ୍ରର ଆଉ ଏକ ଦିଗ ଦେଖିପାରିଲୁ । ଯେଉଁଠାରେ ସେମାନେ ଶକ୍ତି ଓ ସାଫଲ୍ୟ ଦେଖୁଥିଲେ, ସେଠାକୁ ଯାଇ ସହାସ୍ୟ ବଦନରେ ନିଜର ମସ୍ତକ ଅବନତ କରୁଥିଲେ । ସେମାନଙ୍କ ଭିତରୁ ଅନେକେ ଜାଣନ୍ତିଲେ ବ୍ରିଟିଶ ସରକାରର ଶକ୍ତି କ୍ଷୀଣ । ଏହା ବୁଝି ଖୁସି ଲାଗିଲା ଯେ, ଭାରତରେ ଯେ କୌଣସି ସରକାର ହେଉ ତାହାର ସେମାନେ ଅନୁଗତ [illegible] ହୋଇ ପାରିବେ ।

ସେ ସମୟରେ କିଛି ଦିନ ପାଇଁ ଗାନ୍ଧିଜୀ ସକାଳେ ବୁଲିଲା ବେଳେ ମୁଁ ପ୍ରାୟ ତାଙ୍କ ସହିତ ଯାଉଥିଲି । ତାଙ୍କ ସହିତ ଆଲୋଚନା କରିବାର ଏହାହିଁ ଏକମାତ୍ର ଉତ୍କୃଷ୍ଟ ସମୟ—କାରଣ ଅବଶିଷ୍ଟ ସମୟର ପ୍ରତ୍ୟେକ ମିନିଟ ପୂରା କୌଣସି ଲୋକ ସହିତ କଥାବାର୍ତ୍ତା ବା କୌଣସି କାର୍ଯ୍ୟ କରିବା ନିମନ୍ତେ ଆଗରୁ ନିର୍ଦ୍ଦିଷ୍ଟ ହୋଇଥାଏ । ଏପରିକି ସକାଳ ବୁଲିବେଳେ ମଧ୍ୟ ସାକ୍ଷାତକାରୀଙ୍କ ଲାଗି ସ୍ଥିର ହୋଇଥାଏ—ବିଶେଷତଃ ପ୍ରଦେଶରୁ ଆସିଥିବା ଲୋକ କିମ୍ବା କେହି ବନ୍ଧୁ ବାନ୍ଧବ, [illegible]

ସମସ୍ତେ ଅଟିଥିଲେ, ସେମାନଙ୍କ ପାଇଁ ଏହି ସମସ୍ୟା ନିର୍ଦ୍ଦିଷ୍ଟ ହୋଇ ଥାଏ । ସେ ଅତୀତ, ବର୍ତ୍ତମାନ ଏବଂ ବିଶେଷତଃ ଭବିଷ୍ୟତ ସମ୍ବନ୍ଧରେ ଅନେକ କ୍ଷେତ୍ରରେ କଥାବାର୍ତ୍ତା କଲେ । ମୋର ମନେ ଅଛି, କଂଗ୍ରେସ ଭବିଷ୍ୟତ ସମ୍ବନ୍ଧରେ ତାଙ୍କର ଧାରଣା ଶୁଣି ମୁଁ ଅବାକ ହୋଇଥିଲି । ମୋର ଅନୁମାନ ଥିଲା ଯେ, ସ୍ୱାଧୀନତା ପାଇବା ସଙ୍ଗେ ସଙ୍ଗେ କଂଗ୍ରେସ ଆପଣାଛାଏଁ ଲୋପ ପାଇଯିବ । ସେ କହିଲେ ଯେ, କଂଗ୍ରେସ କେବଳ ଗୋଟିଏ ସର୍ତ୍ତରେ ରହିପାରେ । କଂଗ୍ରେସ ସ୍ୱେଚ୍ଛାରେ ଏକ ତ୍ୟାଗ ସ୍ୱୀକାର କରି ପ୍ରସ୍ତାବ ଗ୍ରହଣ କରିବ ଯେ, ଏହାର ସଭ୍ୟମାନେ ସରକାର ଅଧୀନରେ କୌଣସି ବେତନଭୋଗୀ ଚାକିରି ଗ୍ରହଣ କରିବେ ନାହିଁ ଏବଂ କେହି ଯଦି ଏପରି ସ୍ଥାନ ଗ୍ରହଣ କରିବାକୁ ଚାହିଁବେ, ତେବେ ତାକୁ କଂଗ୍ରେସ ଛାଡ଼ିବାକୁ ହେବ । ସେ କପଟ୍ ଏହା କାର୍ଯ୍ୟତଃ ହେବ ବୋଲି କହିଥିଲେ, ମୋର ମନେ ନାହିଁ । ଏହା ମୂଳରେ ଏହି ନୀତି ଥିଲା ଯେ-କଂଗ୍ରେସ ଅନାସକ୍ତ ଭାବରେ ମୁକ୍ତ ହୋଇ ରହିଥାଏ, ତେବେ ଶାସନ ଶକ୍ତି ଓ ଅନ୍ୟ ଶକ୍ତି ଉପରେ ନୈତିକ ଚାପ ଦେବ—ଯାହା ଫଳରେ ସେମାନେ ଆଉ ଖରାପ ବାଟରେ ଯାଇପାରିବେ ନାହିଁ ।

ଏହି ଅଦ୍ଭୁତ ଧାରଣାକୁ ମୁଁ ବୁଝିପାରିଲି ନାହିଁ—ଏହା ପରୀକ୍ଷଣ କଲେ ଅନେକ ଅସୁବିଧା ଆଗରେ ଦେଖାଗଲା । ମୋର ମନେ ହେଲା, ଏପରି କୌଣସି ସର୍ତ୍ତ ଲାଗୁ କରିବା ସମ୍ଭବପର ହେଲେ ସୁଦ୍ଧା ନ୍ୟସ୍ତସ୍ୱାର୍ଥ-ବିଶିଷ୍ଟ ଲୋକେ ଏହାର ସୁବିଧା ଉଠାଇ ପାରନ୍ତି । ଏହାର କାର୍ଯ୍ୟକାରିତା ହୁଏତ ଗାନ୍ଧିଜୀଙ୍କ ଚିନ୍ତାଧାରା ମୂଳରେ କଣ ଥିଲା, ତାହା ଠିକ୍ ଏ ବୁଝି ହୋଇଥିଲି । ସେତେବେଳ ପୂର୍ବ ନିର୍ଦ୍ଦିଷ୍ଟ ଆଦର୍ଶ ନେଇ ସ୍ୱଜାତୀୟ ଓ ଅର୍ଥନୈତିକ ବ୍ୟବସ୍ଥାରେ ରାଷ୍ଟ୍ରକୁ ଗଢ଼ି ରାଷ୍ଟ୍ରର ସମତା ଗ୍ରହଣ କରିବା ଉଦ୍ଦେଶ୍ୟରେ ଦଳ ଗଠନ କରିବାର ଯେ ଅଧୁନିକ ଧାରଣା, ଗାନ୍ଧିଜୀ ତାହାର ଠିକ୍ ବିପରୀତ । ରୁଷିଆ (ଆଉ ଏବେ ଅନେକ କଥିତ) ବର୍ତ୍ତମାନ ବୃଦ୍ଧି ପାଉଥିବା ସଂଖ୍ୟା ଲୋକଙ୍କପାଇଁ ବେଶି ଖାଦ୍ୟ ଯୋଗାଇବାକୁ ଗଢ଼ା ହେଉଥିବା ଜାତିର ସମ୍ପୂର୍ଣ୍ଣ ବିପରୀତ ।

୮— ଗଣତନ୍ତ୍ର ସମ୍ପର୍କରେ ଗାନ୍ଧିଜୀଙ୍କର ଧାରଣା ବୁଦ୍ଧି-ଦାର୍ଶନିକ ଭିତ୍ତି ଉପରେ ପ୍ରତିଷ୍ଠିତ । ଏହା ପ୍ରକୃତ ସାଧାରଣ ଅର୍ଥରେ ସଂଖ୍ୟା, ସଂଖ୍ୟାଧିକ୍ୟ ଏବଂ ପ୍ରତିନିଧିତ୍ୱର କିଛି ମୂଳକ ନାହିଁ । ଏହା ସେବା ଓ ତ୍ୟାଗ ଉପରେ ପ୍ରତିଷ୍ଠିତ ଏବଂ ନୈତିକ ଚାପ ପକାଇବାକୁ ହେବ, ଏବେ ଏହି ଦୃଷ୍ଟିରେ * ସେ ଗଣତନ୍ତ୍ରର ଅର୍ଥ କରିଛନ୍ତି । ସେ ନିଜକୁ "ଅନ୍ତରୁ ଗଣତନ୍ତ୍ରବାଦୀ" ବୋଲି ଦାବି କରନ୍ତି । ସେ କହିଲେ—"ଯଦି କେହି ମନୁଷ୍ୟ ଜାତିର ଦରିଦ୍ରତମ ଲୋକଙ୍କ ସହ ସମ୍ପୂର୍ଣ୍ଣ ଭାବରେ ନିଜକୁ ଏକ କରିପାରେ, ତାଙ୍କ ଅପେକ୍ଷା ଉତ୍କୃଷ୍ଟ ଜୀବନ ଯାପନ କରେ ନାହିଁ, ନିଜର ଶକ୍ତି ସାମର୍ଥ୍ୟ ଅନୁସାରେ ସେହି ସ୍ତରରେ ରହିବାପାଇଁ ସଚେତନ ଭାବରେ ଚେଷ୍ଟା କରେ, ତାହାହେଲେ ସେ ଗଣତନ୍ତ୍ରବାଦୀ ହୋଇପାରେ ।" ଗଣତନ୍ତ୍ର ସମ୍ବନ୍ଧରେ ସେ ଆଲୋଚନା କରି କହିଛନ୍ତି—

"କଂଗ୍ରେସ ଯେ ଗଣତନ୍ତ୍ର ଅନୁଷ୍ଠାନରୂପେ ସମ୍ମାନ ଓ ମର୍ଯ୍ୟାଦା ଲାଭ କରିଛି, ତାହା ଏହାର ବାର୍ଷିକ ଅଧିବେଶନକୁ 'ଆସୁଥିବା ପ୍ରତିନିଧି ଏବଂ ଦର୍ଶକମାନଙ୍କ ଯୋଗୁଁ ନୁହେଁ; ମାତ୍ର କ୍ରମବର୍ଦ୍ଧିତ ସେବାଦ୍ୱାରା ସେ ଏହା ଲାଭ କରିଛି । ପାଶ୍ଚାତ୍ୟ ଗଣତନ୍ତ୍ର ସମ୍ପୂର୍ଣ୍ଣ ବିଫଳ ବୋଲି ପ୍ରମାଣ ନ ହୋଇଥିଲେ ସୁଦ୍ଧା ଏହା ବର୍ତ୍ତମାନ ପରୀକ୍ଷାରେ ପଡ଼ିଛି । ଗଣତନ୍ତ୍ର ପ୍ରକୃତ ବିଜ୍ଞାନ ଆବିଷ୍କାର କରି ଜଗତ ସମ୍ମୁଖରେ ଏହାର ସାଫଲ୍ୟ ପ୍ରମାଣ କରିବାର ଭାର ଭାରତବର୍ଷ ଉପରେ ।"

ଆଜିକାଲି ଯେପରି ଦେଖୁଛୁ, ସେପରି ଗଣତନ୍ତ୍ରର ଦୁର୍ଗତି ଯେ ଅବଶ୍ୟ ଅନୁଭବ, ଏହା ନିଃସନ୍ଦେହ । ସଂଖ୍ୟାର ଗୁରୁତ୍ୱ ଗଣତନ୍ତ୍ରର ପ୍ରକୃତ ମାପକାଠି ନୁହେଁ । ଅଳ୍ପ ସଂଖ୍ୟକ ଲୋକ ଯଦି ଜନସାଧାରଣଙ୍କର ଆଶା, ଆକାଂକ୍ଷା, ଭାବକୁ ଠିକ୍‌ରୂପେ ପ୍ରକାଶ କରିପାରନ୍ତି, ତେବେ ଏହା ପ୍ରକୃତ ଗଣତନ୍ତ୍ରର କୌଣସି ଅସଙ୍ଗତି ନାହିଁ । ମୋର ମତ ଯେ ଗଣତନ୍ତ୍ର ବାହୁବଳ ଜୋରପୂର୍ବକ ପ୍ରତିଷ୍ଠା କରାଯାଇ ପାରିବ ନାହିଁ । ଗଣତନ୍ତ୍ରର

* ସେପ୍ଟେମ୍ବର ୧୭ ତାରିଖ ୧୯୩୪ ମସିହା ।

ଆଦର୍ଶ କେଉଁବେଳେ ଧାରାରୁ ଲୁପ୍ତ ନିଶ୍ଚିହ୍ନ ହୋଇଯାଏ ନାହିଁ—ଏଥିପ୍ରତି ସତର୍କ ଜାଗ-ରୂକ ହେବ !”

ସେ ନିଜେ କହିଛନ୍ତି, ଏହା ପ୍ରକୃତରେ ମାର୍କ୍ସୀୟ ଗଣତନ୍ତ୍ର ନୁହେଁ। ମାତ୍ର ଆଶ୍ଚର୍ଯ୍ୟର କଥା ଯେ, କମ୍ୟୁନିଷ୍ଟ ଗଣତନ୍ତ୍ର ଆଦର୍ଶ ମଧ୍ୟରେ ଏହାର ଅନେକ ସାମଞ୍ଜସ୍ୟ ରହିଛି, କାରଣ ସେଥିରେ ମଧ୍ୟ କର୍ତ୍ତା ଭାବନାର ମନୋଭାବ ରହିଛି। ଜନସାଧାରଣ ଜାଣନ୍ତୁ ବା ନ ଜାଣନ୍ତୁ, କେତେକ କମ୍ୟୁନିଷ୍ଟ ଜନସାଧାରଣଙ୍କ ଅନ୍ତର ଓ ଆକାଂକ୍ଷାର ଅନ୍ତରର ପ୍ରତିନିଧିତ୍ୱ କରିବାର ଦାବୀ କରନ୍ତି। ସେମାନଙ୍କ ମତରେ ଜନସାଧାରଣ ଏକ ଦାର୍ଶନିକ ଅନୁଭୂତ ମାତ୍ର ଏବଂ ଏହି କାରଣରୁ ସେମାନେ ପ୍ରତିନିଧିତ୍ୱ ଦାବୀ କରନ୍ତି; ମାତ୍ର ସାମଞ୍ଜସ୍ୟ ଖୁବ ଅଳ୍ପ। ଏହିଠାରେ ଆମେ ଅନେକ ଦୂର ଯାଇପାରୁ ନାହିଁ; ମାତ୍ର ଦୃଷ୍ଟିକୋଣ ଓ କାର୍ଯ୍ୟ ଉଦ୍ଭବ କରିବାର ପ୍ରଣାଳୀରେ ଅଦ୍ଭୁତ ପାର୍ଥକ୍ୟ ରହିଛି। ବିଶେଷତଃ କାର୍ଯ୍ୟପନ୍ଥା ଓ ଜୋର ଜବରଦସ୍ତି ସମ୍ବନ୍ଧରେ ପାର୍ଥକ୍ୟ ରହିଛି।

ଗାନ୍ଧିଜୀ ଗଣତନ୍ତ୍ରବାଦୀ ହୁଅନ୍ତୁ ବା ନ ହୁଅନ୍ତୁ, ସେ ଭାରତର କୃଷକ ଜନସାଧାରଣଙ୍କର ପ୍ରତିନିଧି, ଏହି କୋଟି କୋଟି ନରନାରୀଙ୍କର ସେହି ହିଁ ସଚେତନ ଓ ଅର୍ଦ୍ଧଚେତନ ଆକାଂକ୍ଷାର ପ୍ରତିମୂର୍ତ୍ତି। ଏହା ପ୍ରତିନିଧିତ୍ୱ ଅପେକ୍ଷା ହୁଏତ ଅଦ୍ଭୁତ ଅଧିକ—କାରଣ ଏଣିକି ଜନସାଧାରଣଙ୍କ ଦୃଷ୍ଟିରେ ସେ ହେଉଛନ୍ତି ଜଣେ ଆଦର୍ଶ ଦୈହିକ ପ୍ରତୀକ। ଅବଶ୍ୟ ସେ ସାଧାରଣ କୃଷକ ପରି ନୁହନ୍ତି। ସେ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ, ସୂକ୍ଷ୍ମରୁଚି ସମ୍ପନ୍ନ ଏବଂ ଦୂରଦର୍ଶୀ ଲୋକ; ମାନବସୁଲଭ ପ୍ରକୃତି ତାଙ୍କଠାରେ ବର୍ତ୍ତମାନ—ତଥାପି ସେ ଜଣେ ତପସ୍ୱୀ। ନିଜର ଇନ୍ଦ୍ରିୟ ଓ ବାସନାଲାଳସା ଦମନ କରି ଏହାକୁ ନୈତିକ ପଥରେ ଚାଳନା କରିଛନ୍ତି; ତାହାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଚୁମ୍ବକ ପରି ଲୋକସାଧାରଣଙ୍କୁ ତାଙ୍କ ନିକଟକୁ ଆକୃଷ୍ଟ କରେ; ମଧ୍ୟ ସ୍ନେହରେ ତାଙ୍କ ନିକଟରେ ଆତ୍ମସମର୍ପଣ କରେ—ତାଙ୍କ ନିକଟକୁ ଟାଣି ହୋଇଯାଏ—ଏସବୁ ଗୁଣ

ସାଧାରଣ କୃଷକଠାରେ ଦେଖାଯାଏ ନାହିଁ । ତଥାପି ସେ ଏକ କୃଷକ ପରି ଘଟଣାବଳୀ କୃଷକ ଦୃଷ୍ଟିକୋଣରୁ ଦେଖନ୍ତି ଏବଂ ଜୀବନର କେତେକ ବ୍ୟାପାରରେ କୃଷକମାନଙ୍କ ପରି ସେ ଅନ୍ଧ । ମାତ୍ର ଭାରତ ହିଁ କୃଷକର ଦେଶ—ସେ ତାଙ୍କ ଭାରତକୁ ଭଲରୂପେ ଚିହ୍ନି ପାରିଛନ୍ତି, ତାହାର ମନର ପ୍ରତ୍ୟେକ ଗତି ତାଙ୍କ ମନରେ ପ୍ରତିକ୍ରିୟା କରେ, ପ୍ରତ୍ୟେକ ପରିସ୍ଥିତିକୁ ଠିକ୍ ରୂପେ ଚିହ୍ନିପାରନ୍ତି ଏବଂ ଅନୁକୂଳ ମୁହୂର୍ତ୍ତରେ କାର୍ଯ୍ୟ କରିବାର ଅପୂର୍ବ କ୍ଷମତା ତାଙ୍କର ଅଛି ।

ଖାଲି ବ୍ରିଟିଶ ସରକାର ପାଖରେ ନୁହେଁ, ତାଙ୍କର ନିଜ ଲୋକ ଓ ଘନିଷ୍ଠ ସହକର୍ମୀଙ୍କ ପାଖରେ ମଧ୍ୟ ସେ ଏକ ଦୁର୍ବୋଧ ସମସ୍ୟା ହୋଇ ରହିଛନ୍ତି । ବୋଧହୁଏ ବର୍ତ୍ତମାନ ସମୟରେ ଅନ୍ୟ ସବୁ ଦେଶରେ ତାଙ୍କୁ କେହି ପଚାରୁ ନ ଥାନ୍ତେ; ମାତ୍ର ଭାରତବର୍ଷ ଅବତାର ସ୍ୱରୂପ ଧାର୍ମିକ ପୁରୁଷ, ଯେ ପାପ, ମୁକ୍ତି ଓ ଅହିଂସା କଥା କହେ, ତାକୁ ପୂଜା କରିପାରେ—ଗ୍ରହଣ କରିପାରେ । ଭାରତର ପୁରାଣମାନଙ୍କରେ ମହାନ୍ ଋଷିମାନଙ୍କର ଗଳ୍ପ ପୂର୍ଣ୍ଣ ହୋଇଛି—ସେମାନେ ନିଜର ତ୍ୟାଗ ଏବଂ ନିଜେ ବରଣ କରିଥିବା ତପସ୍ୟା ଫଳରେ ଏକ ଶକ୍ତିର ସମଷ୍ଟି ହୋଇ ଉଠିଥିଲେ—ରାଜା ଓ ରାଜ୍ୟ ଭାଙ୍ଗି ଦେଇଛନ୍ତି । ଗାନ୍ଧିଜୀଙ୍କର ଅପୂର୍ବ ଉତ୍ସାହ ଓ ବଳ ଓ ଅନ୍ତର୍ନିହିତ ଶକ୍ତି ଦେଖି ମୋ ମନରେ ଏହି ପୁରାଣ କଥା ଅନେକ ସମୟରେ ଉଠେ—ଏହା ଯେପରି ଅସରନ୍ତି ଆଧ୍ୟାତ୍ମ୍ୟ ଶକ୍ତିରୁ ନିଃସୃତ ହୋଇ ଆସୁଛି । ପୃଥିବୀର ସାଧାରଣ ଛାଞ୍ଚରେ ସେ ଗଢ଼ା ନୁହନ୍ତି; ସେ ସ୍ୱତନ୍ତ୍ର ଓ ଅତୁଳନୀୟ, ତାଙ୍କ ଚକ୍ଷୁରେ ଏକ ଅଜଣାର ଆଭାସ ଦେଖାଯାଏ ।

ଭାରତର ନବ ନାଗରିକ ସଭ୍ୟତା ଓ ଆଧୁନିକ ଜୀବନରେ ମଧ୍ୟ କୃଷକ ଭାରତର ଛାପ ରହିଛି । ଭାରତର ଏହି ସନ୍ତାନ ସ୍ୱତନ୍ତ୍ର ଓ ବିଶିଷ୍ଟ ହୋଇଥିଲେ ସୁଦ୍ଧା ତାଙ୍କୁ ଆଦର୍ଶ ଓ ନେତା ରୂପେ ଗ୍ରହଣ କରିଅଛି । ସେ ପୁରାତନ ଓ ଭୁଲିଯାଇଥିବା ସ୍ମୃତି ଜାଗ୍ରତ କରାଇଲେ ଏବଂ

ଭାରତବାସୀଙ୍କ ସମ୍ମୁଖରେ ନିଜର ଆତ୍ମାକୁ ଉନ୍ମୁକ୍ତ କରିଦେଲେ । ବର୍ତ୍ତମାନର ଏହି ଘନ ଦୁର୍ଦ୍ଦଶାରେ କ୍ଷତପାଇଥିବା ଭାରତ ଯେତେବେଳେ ଅତୀତ ଓ ଭବିଷ୍ୟତର ଅସହାୟ ବିଳାପ ଓ ଅସ୍ପଷ୍ଟ ସ୍ୱପ୍ନ ମଧ୍ୟରେ ସାହାଯ୍ୟ ଖୋଜୁଥିଲା, ସେତେବେଳେ ସେ ଆବିର୍ଭାବ ହୋଇ ତା ହୃଦୟରେ ଆଶାର ସଞ୍ଚାର କଲେ—ତାହାର ଦୁର୍ବଳ ଶରୀରରେ ଶକ୍ତି ଦାନ କଲେ ଏବଂ ଭବିଷ୍ୟତ୍ [illegible] ଦେଖାଇଲେ । ସେ ଅତୀତ ଓ ଭବିଷ୍ୟତ ଉଭୟ ଦିଗରେ ନଜର ଦେଇ ଦୁହିଁଙ୍କୁ ଏକତ୍ର କରିବାକୁ ଚେଷ୍ଟା କରୁଥିଲେ ।

ଗାନ୍ଧିଜୀଙ୍କ ଏହି କୃଷକ ଜୀବନରୁ ଆମେ ଅନେକେ ବିଚ୍ଛିନ୍ନ ହୋଇ ଯାଇଛୁ—ସୂକ୍ଷ୍ମ ଚିନ୍ତା, ନୈତିକତା ଓ ଧର୍ମ ଆମ ପକ୍ଷରେ ପ୍ରକୃତ ଗରୁଢ ହୋଇଛି । ଆମେ ନିଜକୁ "ଆଧୁନିକ" ବୋଲି କହୁ ଏବଂ "ପ୍ରଗତି" ପଥରେ ଚିନ୍ତା କରୁ—ଆମେ ବୈଜ୍ଞାନିକ ଉପାୟ, କଳକାରଖାନାର ପ୍ରସାର; ଉନ୍ନତ ଧରଣରେ ଜୀବନଯାପନ ଏବଂ ଯୌଥ ଭାବରେ କାର୍ଯ୍ୟ ପରିଚାଳନାରେ ବିଶ୍ୱାସ କରୁ । ଆମେ କୃଷକ ଦୃଷ୍ଟିକୋଣକୁ ପ୍ରଗତି ବିରୋଧୀ ବୋଲି ଭାବୁ ଏବଂ କ୍ରମେ ଅଧିକ ସଂଖ୍ୟାରେ ଆମେ ସୋସିଆଲିଜମର ଓ କମ୍ୟୁନିଜମର ଅନୁରାଗୀ ହୋଇଛୁଁ । ଆମେ ରାଜନୀତିକ କ୍ଷେତ୍ରରେ ଗାନ୍ଧୀଜୀଙ୍କ ସହ କପଟ ସପକ୍ଷରେ ଆସିଲୁ ଏବଂ ଅନେକ ସ୍ଥଳରେ କ୍ୱପର ବା ତାଙ୍କର ବିଶୁଦ୍ଧ ଅନୁଗତ ହୋଇଛୁଁ, ଏହି ପ୍ରଶ୍ନର ଉତ୍ତର ଦେବା କଠିନ—ଯେ ଗାନ୍ଧୀଜୀଙ୍କୁ ଚିହ୍ନି ନାହିଁ, ସେ କୌଣସି ଉପାୟରେ ସନ୍ତୁଷ୍ଟ ହୋଇପାରେ ନା । ବ୍ୟକ୍ତିତ୍ୱର ବ୍ୟାଖ୍ୟା କରାଯାଇପାରେ ନା—ଏହି ଆଶ୍ଚର୍ଯ୍ୟ ଶକ୍ତି ମନୁଷ୍ୟକୁ ମୁଗ୍ଧ କରେ, ଗାନ୍ଧୀଜୀଙ୍କଠାରେ ଏହା ପ୍ରଚୁର ପରିମାଣରେ ଅଛି ଏବଂ ତାଙ୍କ ନିକଟକୁ ଯେ ଆସିଛନ୍ତି, ସେ ବିଭିନ୍ନ ରୂପରେ ତାଙ୍କୁ ଦେଖି ପାଇଛନ୍ତି । ସେ ମନୁଷ୍ୟକୁ ଆକର୍ଷଣ କରନ୍ତି—ମାତ୍ର ଶେଷରେ ବୁଦ୍ଧି ବିଚାର ବିଶ୍ୱାସ ଦ୍ୱାରାହିଁ ଲୋକ ତାଙ୍କ ନିକଟରେ ରହିପାରେ । ସେମାନେ ହୁଏତ ତାଙ୍କର ଜୀବନର ଦର୍ଶନ କିମ୍ବା ଏପରି ତାଙ୍କର ଆଦର୍ଶ ଗ୍ରହଣ କରନ୍ତି ନାହିଁ । ଅନେକ ସମୟରେ ସେମାନେ ତାଙ୍କୁ ବୁଝି ପାରନ୍ତି ନାହିଁ । ମାତ୍ର ତାଙ୍କ କାର୍ଯ୍ୟ ପ୍ରଣାଳୀର ମୁକ୍ତମୁକ୍ତତା

ଦୃଷ୍ଟି ଦ୍ୱାରା—ମୁକ୍ତିର ଯଥାର୍ଥତା ଜଣାପଡ଼େ । ଦୀର୍ଘକାଳ ଧର୍ମହୀନ ଓ ମେରୁଦଣ୍ଡହୀନ ରାଜନୀତି ହେତୁ ଯେ କୌଣସି କାର୍ଯ୍ୟ ଆଗ୍ରହର ସହିତ ହୁଏ ନାହିଁ—ସେ ତାଙ୍କର ନୈତିକ ପ୍ରଭାବ ଉପରେ କହି ଯେତେବେଳେ ସାହସିକ ଓ ଅସଲ କାର୍ଯ୍ୟ ପଦ୍ଧତି ବଦଳାଇ ଦେଲେ, ସେତେବେଳେ ସେ ଆଧ୍ୟାତ୍ମିକ କୌଣସି ଆଡ଼ମ୍ବର ଦେଇ ପାରିଲେ ନାହିଁ—ବୁଦ୍ଧି ଓ ଭାବାବେଗ ସବୁ ଦିଗରୁ ସେ ସମସ୍ତେ ଏହାକୁ ଗ୍ରହଣ କଲେ । ପ୍ରତ୍ୟେକ ପଦକ୍ଷେପରେ ତାଙ୍କ କାର୍ଯ୍ୟର ଯଥାର୍ଥତା ଯେ ଆମ ଆଗରେ ପ୍ରମାଣିତ ହୋଇଛି—ଆମେ ତାଙ୍କ ଦର୍ଶନ ଗ୍ରହଣ କରୁ ନ ଥିଲେ ମଧ୍ୟ ତାଙ୍କ ପଥରେ ଗଲୁ । ଭାବନାରୁ କାର୍ଯ୍ୟକୁ ପୃଥକ କରି ଦେଖିବା ହୁଏତ ଠିକ୍ ପଦ୍ଧତି ନୁହେଁ—ଫଳରେ ଏଥିଯୋଗୁଁ ମାନସିକ ଦ୍ୱନ୍ଦ୍ୱ ଓ ଅଶାନ୍ତି ହେବା ସ୍ୱାଭାବିକ । ଆମ ଭିତରେ ଏକ ଅସ୍ପଷ୍ଟ ଆଶା ଥିଲା ଯେ ଗାନ୍ଧିଜୀ ଏକ କାର୍ଯ୍ୟର ଲୋକ—ଅବସ୍ଥାର ପରିବର୍ତ୍ତନ ସମ୍ବନ୍ଧରେ ସେ ସର୍ବଦା ସଚେତନ ଅଛନ୍ତି—ତେଣୁ ଆମେ ଯାହା ସତ୍ୟବୋଲି ଭାବୁଛୁ, ସେହି ପଥରେ ସେ ଯାଇପାରନ୍ତି । ମାତ୍ର ସେ ଯାହାହେଉ, ଏ ପର୍ଯ୍ୟନ୍ତ ତାଙ୍କର ଗନ୍ତବ୍ୟ ପଥ ସତ୍ୟ ବୋଲି ପ୍ରମାଣିତ ହୋଇଛି ଏପରି ଅବସ୍ଥାରେ ଭବିଷ୍ୟତରେ ପ୍ରଭେଦ ଘଟିବ ବୋଲି ଆଗରୁ ଧାରଣା କରିନେବା ନିର୍ବୋଧତା ।

ଏଥିରୁ ଦେଖାଯାଉଛି, ଆମ ନିଜର ମନରେ କୌଣସି ସ୍ପଷ୍ଟ ବା ନିର୍ଦ୍ଦିଷ୍ଟ ଧାରଣା ନାହିଁ । ଆମର ଏହି ଭାବ ହେଉଥିଲା ଯେ ଆମେ ଅଧିକ ଯୁକ୍ତିବାଦୀ ହେଲେ ମଧ୍ୟ ଗାନ୍ଧିଜୀ ଆମ ଅପେକ୍ଷା ଭାରତକୁ ଭଲଭାବେ ଜାଣନ୍ତି । ଯେଉଁ ଲୋକ ଜନସାଧାରଙ୍କ ଠାରୁ ଏତେ ଅନୁରକ୍ତି ଓ ଭକ୍ତି ଲାଭ କରୁଛି, ସେମାନଙ୍କର ଆଶା ଆକାଂକ୍ଷା ପୂରଣ କରିବାର ତାହା ପାଖରେ କିଛି ଅଛି ନିଶ୍ଚୟ । ଆମେ ତାଙ୍କୁ ବଞ୍ଚିତ କରିପାରିଲେ, ଜନସାଧାରଣଙ୍କୁ ମଧ୍ୟ ଆମ ମତରେ ସାମିଲ କରିପାରିବୁ ବୋଲି ବୁଝିବାକୁ ହେବ । ମନେ ହେଉଥିଲା, ତାଙ୍କୁ ବୁଝାଇବା ସହଜ । ତାଙ୍କର କୃଷକ ଦୃଷ୍ଟିକୋଣ ସତ୍ତ୍ୱେ ସେ ଜଣେ ଆଜନ୍ମ ବିଦ୍ରୋହୀ—ବିସ୍ତୃତ ପରିବର୍ତ୍ତନ ଲାଗି

ଉନ୍ମୋଚିତ କରିବାକୁ ପ୍ରସ୍ତୁତ--କୌଣସି ଫଳାଫଳ ତାଙ୍କୁ ଅଟକାଇ ପାରେନା ।

ଆମର ଆଳସ୍ୟ ପରାୟଣ ଓ ଦଳିତ ଜନସାଧାରଣଙ୍କୁ ସେ କପରି ଶୃଙ୍ଖଳିତ ଭାବରେ କାର୍ଯ୍ୟରେ ଲଗାଇଲେ—ଜୋର ଦେଖାଇ ନୁହେଁ କିମ୍ବା କୌଣସି ବୈଷୟିକ ଲୋଭ ଆଶା ଦେଇ ନୁହେଁ—ମାତ୍ର ନିଜର ବ୍ୟକ୍ତିଗତ କୃଷ୍ଣାନ୍ତରେ—ଏକ ସ୍ନିଗ୍ଧ ଦୃଷ୍ଟି, କୋମଳ ବଚନ ଦ୍ୱାରାହିଁ ସେମାନଙ୍କୁ ବଶୀଭୂତ କଲେ । ୧୯୧୯ ରେ ଭାରତରେ ସତ୍ୟାଗ୍ରହର ପ୍ରଥମ ସୂଚନା ବେଳେ ବମ୍ବେର ଓମାର ସୋବାନି ତାଙ୍କୁ "କ୍ରୀତଦାସ ଗୃଲକ" ବୋଲି ଯେ କହିଥିଲେ, ତାହା ମୋର ମନେ ଅଛି । ସେହି ଦିନଠାରୁ ବାରବର୍ଷ ଭିତରେ ଅନେକ କଥା ଘଟି ଯାଇଛି । ଓମାର ଏହି ପରିବର୍ତ୍ତନ ସବୁ ଦେଖି ନ ପାରି ମରି ଯାଇଛନ୍ତି, ମାତ୍ର ୧୯୩୧ ମସିହାର ଆରମ୍ଭରୁ ଆମେ ଆନନ୍ଦ ଓ ଗର୍ବର ସହିତ ତାଙ୍କୁ ଦେଖୁନ୍ତୁ । ୧୯୩୦ ବାସ୍ତବିକ୍ ଆମ ପକ୍ଷରେ ଏକ ଅପୂର୍ବ ବର୍ଷ—ଗାନ୍ଧିଜୀ ତାଙ୍କର ଅଦ୍ଭୁତ ସ୍ପର୍ଶଦ୍ୱାରା ଦେଶର ମୁଖ ପରିବର୍ତ୍ତନ କଲାପରି ମନେ ହେଉଛି । ଆମେ ବ୍ରିଟିଶ ସରକାର ଉପରେ ପୂର୍ଣ୍ଣ ଜୟଲାଭ କରିଛୁଁ, ଏପରି ଭାବିବା ଭଳି ମୂର୍ଖ କେହି ନ ଥିଲି । ଆମ ଗର୍ବ ଅନୁଭବ ସହିତ ସରକାରଙ୍କର କୌଣସି ସମ୍ପର୍କ ନାହିଁ । ଆମ ଦେଶର ଜନସାଧାରଣ, ନାରୀଜାତି, ଯୁବକ ଏବଂ ସନ୍ତାନମାନଙ୍କ ଆନ୍ଦୋଳନରେ ଯେପରି ଭାଗ ନେଇଥିଲେ, ସେଥିରେ ଆମ ହୃଦୟ ଗର୍ବରେ ପୂରି ଯାଉଥିଲା । ଏହା ଏକ ନୈତିକ ଲାଭ—ଯେ କୌଣସି ସମୟରେ ଏବଂ ଯେ କୌଣସି ଲୋକଙ୍କ ପକ୍ଷରେ ଏହା ମୂଲ୍ୟବାନ ସମ୍ପଦ । ମାତ୍ର ଆମପରି ପରାଧୀନ ଓ ପଦଦଳିତ ଦେଶପକ୍ଷରେ ଏହାର ମୂଲ୍ୟ ଦ୍ୱିଗୁଣ ଅଧିକ । ଏହା ଯେପରି ଆମଠାରୁ ଚାଲି ନ ଯାଏ, ଏହା ଦେଖିବା ଲାଗି ଆମେ ବ୍ୟଗ୍ର ଥିଲୁ ।

ବ୍ୟକ୍ତିଗତ ଭାବରେ ମୁଁ ଗାନ୍ଧିଜୀଙ୍କର ଅପୂର୍ବ ଦୟା ଓ ସହାନୁଭୂତି ପାଇଅଛି—ମୋର ପିତାଙ୍କ ମୃତ୍ୟୁ ପରେ ତାଙ୍କ ସହିତ ସମ୍ପର୍କ ଅଧିକ

ନିକଟ ହୋଇଥିଲି । ମୋ କଥାକୁ ସେ ସର୍ବଦା ଧୈର୍ଯ୍ୟର ସହିତ ଶୁଣନ୍ତି ଏବଂ ମୋର ଇଚ୍ଛା ପୂରଣ ପାଇଁ ସକଳ ପ୍ରକାର ଉଦ୍ୟମ କରନ୍ତି । ବାସ୍ତବିକ ଏହି ହେତୁ ମୁଁ ଭାବିଲି ଯେ, ମୁଁ ଏବଂ ଆଉ କେତେକ ସହକର୍ମୀ ତାଙ୍କୁ ସାମ୍ୟବାଦ ଢଙ୍ଗରେ ପ୍ରଭାବିତ କରିପାରିବୁ । ସେ ନିଜେ କହୁଥିଲେ ଯେ, ନିଜେ କରିବା ଭଳି ଅବସ୍ଥା ଦେଖିଲେ ପ୍ରତି ପଦକ୍ଷେପରେ ଆଗକୁ ଯିବାପାଇଁ ପ୍ରସ୍ତୁତ ଅଛନ୍ତି । ସେ ମୌଳିକ ସାମ୍ୟବାଦ ନୀତି ଅବଶ୍ୟ ଗ୍ରହଣ କରିବେ, ମୋର ସେତେବେଳେ ଧାରଣା ଥିଲା—କାରଣ ପ୍ରଚଳିତ ସମାଜରେ ଥିବା ଦୁଃଖ, ଦୈନ୍ୟ, ଅଭାବ, ଅନ୍ୟାୟ ଓ ହିଂସାରୁ ମୁକ୍ତ ପାଇବାଲାଗି ଆଉ କିଛି ବାଟ ନାହିଁ ବୋଲି ମୋର ମନେ ହେଲା । ସେ କାର୍ଯ୍ୟ କରିବାର ଉପାୟରେ ଅସମ୍ମତ ହୋଇପାରନ୍ତି: ମାତ୍ର ଆଦର୍ଶରେ ନୁହେଁ । ମୁଁ ସେତେବେଳେ ଏହିପରି ଭାବୁଥିଲି—ମାତ୍ର ଏବେ ବୁଝି ପାରିଲି ଯେ, ଗାନ୍ଧିଜୀଙ୍କ ଆଦର୍ଶ ଓ ସାମ୍ୟବାଦ ଆଦର୍ଶ ଭିତରେ ଅନେକ ମୌଳିକ ପାର୍ଥକ୍ୟ ରହିଛି ।

୧୯୩୧ ମସିହା ଫେବୃଆରୀରେ ଦିଲ୍ଲୀରେ ଥିବା ଘଟଣାକୁ ଫେରିଯିବା । ଗାନ୍ଧୀ ଇରଉଇନ କଥାବାର୍ତ୍ତା ଚାଲୁଥାଏ ଚାଲୁଥାଏ – ତା ପରେ ହଠାତ୍ ବନ୍ଦ ହୋଇଯାଏ । କେତେକଦିନ ପର୍ଯ୍ୟନ୍ତ ବଡ଼ଲାଟ ଆଉ ଗାନ୍ଧିଜୀଙ୍କୁ ଡକାଇ ପଠାଇଲେ ନାହିଁ—ଆମେ ଭାବିଲୁ ଏଥର କଥାବାର୍ତ୍ତା ଭାଙ୍ଗିଗଲା । ନିଜ ନିଜ ପ୍ରଦେଶକୁ ଫେରିଯିବା ନିମନ୍ତେ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ପ୍ରସ୍ତୁତ ଥିଲେ । ଯିବା ପୂର୍ବରୁ ଆମେମାନେ ଭବିଷ୍ୟତ କାର୍ଯ୍ୟପନ୍ଥା ଏବଂ ଆଇନ ଅମାନ୍ୟ (ସେତେବେଳକୁ ଏହା ଖାଲି କଥାରେ ଚାଲୁଥାଏ) ସମ୍ବନ୍ଧରେ ଆଲୋଚନା କଲୁ । ଆମେ ଅନୁଭବ କରୁଥିଲୁ ଯେ ଭାଙ୍ଗିଯିବା କଥା ନିର୍ଦ୍ଦିଷ୍ଟ ରୂପେ ଘୋଷଣା ହେବା ପରେ ଆମର ଆଉ ଭେଟ ଓ ଆଲୋଚନା କରିବାର ସୁଯୋଗ ମିଳିବ ନାହିଁ । ଆମେ ଗିରଫ ହେବୁ ବୋଲି ଆଶା କରୁଥିଲୁ – ଆମେ ଶୁଣିଲୁ ଯେ, ସରକାର ଏଥର କଂଗ୍ରେସ ବିରୁଦ୍ଧରେ ଗୋଟାଏ ଭୀଷଣ ଅଭିଯାନ ଚଳାଇବ । ଏହା ସମ୍ଭବପର ମନେ ହେଉଥିଲା । ଏପର୍ଯ୍ୟନ୍ତ ଯାହା ହୋଇଥିଲା, ତାହାଠାରୁ

ଅଧିକ ଭାବରେ ଅଭ୍ୟାଗତ ଆଶା କରାଯାଉଥିଲା । ସୁତରାଂ ଆଜି ସବୁ ବୈଶଥକ ପାଇଁ ବୈଠକ କଲୁ ଏବଂ ଭବିଷ୍ୟତରେ ଆନ୍ଦୋଳନ କରିବା ଚାଲିବ, ସେ ସମ୍ବନ୍ଧରେ କେତେକ ପ୍ରସ୍ତାବ ପାସ କଲୁ । ଆମ ପ୍ରସ୍ତାବର କେତେକ ମହତ୍ତ୍ୱ ଥିଲା । ଏ ପର୍ଯ୍ୟନ୍ତ ଅସ୍ଥାୟୀ ସଭାପତି ଗିରଫ ହେଲେ, ତାଙ୍କ ସ୍ଥାନରେ ଆଉ ଜଣେ ସଭାପତି ଓ କାର୍ଯ୍ୟକାରୀ ସମିତିର ସଭ୍ୟପଦ ଖାଲି ହେଲେ ତାହା ପୂରଣ ପାଇଁ ସଭ୍ୟ ମନୋନୀତ କରିପାରୁଥିଲେ । ସ୍ଥାନାପନ୍ନ କାର୍ଯ୍ୟକାରୀ ସମିତି ପ୍ରାପ୍ତ କାର୍ଯ୍ୟକାରୀ ହୋଇ ନ ଥିଲା— କୌଣସି ବିଷୟରେ ମଧ୍ୟ ସେମାନେ କିଛି କରିପାରୁ ନ ଥିଲେ । ସେମାନେ କେବଳ ଜେଲ ଯାଉଥିଲେ । ଯାହାହେଉ, ଏପରି ଜଣକ ପରେ ଜଣେ କାର୍ଯ୍ୟକାରୀ ସମିତିରେ ସଭ୍ୟ ନିଯୁକ୍ତରେ କଂଗ୍ରେସ ଗୋଷ୍ଠୀ ଖରାପ ଅବସ୍ଥାରେ ପହଞ୍ଚିବାର କାରଣ ଥିଲା । ଏହି ବିପଦ କଷ୍ଟକୁ ଘଟିପାରେ; ଏହି ହେତୁ କାର୍ଯ୍ୟକାରୀ ସମିତି ଭଙ୍ଗିରେ ସ୍ଥିର କଲୁ ଯେ, ଭବିଷ୍ୟତରେ କୌଣସି ଅସ୍ଥାୟୀ ସଭାପତି ବା କାର୍ଯ୍ୟକାରୀ ସମିତିର ଅନ୍ୟ ସଭ୍ୟ ମନୋନୀତ ହେବ ନାହିଁ । ଯେପର୍ଯ୍ୟନ୍ତ ମୂଳ କମିଟିର କେତେକ ସଭ୍ୟ ( ବା ଜଣେ ସଭ୍ୟ ) ଜେଲ ବାହାରେ ଥିବେ, ସେମାନେ ପୂର୍ଣ୍ଣ କମିଟିର କ୍ଷମତା ପାଇ କାର୍ଯ୍ୟ କରିପାରିବେ । ସମସ୍ତେ ଜେଲ ଗଲେ ଆଉ କମିଟି କାର୍ଯ୍ୟକାରୀ ହେବ ନାହିଁ— ଆମେ ଏବଂ ସହିତ ଘୋଷଣା କଲୁ ଯେ, ସେତେବେଳେକୁ ଦେଶର ପ୍ରତ୍ୟେକ ନରନାରୀ ଉପରେ କାର୍ଯ୍ୟକାରୀ ସମିତିର କ୍ଷମତା ଅର୍ପିତ ହୋଇଯିବ । କୌଣସି ପ୍ରକାର ମିଳାମିଶା ନ କରି ସଂଗ୍ରାମ ଚଳାଇବା ନିମନ୍ତେ ଆମେ ସେମାନଙ୍କୁ ନିବେଦନ କଲୁ ।

ସଂଗ୍ରାମ ଜାରି ରଖିବାପାଇଁ ଏହା ଏକ ସାହସିକ ନେତୃତ୍ୱ— ସେଥିରେ ମିଳାମିଶାର ବାଟ ନ ଥିଲା । ଏଥିରେ ମଧ୍ୟ ଏ କଥା ସ୍ୱୀକାର କରିଗଲୁ ଯେ; ଆମର ପ୍ରଧାନ ଅଫିସ ଦେଶର ସବୁ ଅଂଶର ସମ୍ପର୍କରେ ଅଧି ନିୟମିତ ରୂପେ ସେମାନଙ୍କୁ ନିର୍ଦ୍ଦେଶ ପଠାଇବା କଠିନ ହୋଇଥିଲା । ଏହା ଘଟିବା ସ୍ୱାଭାବିକ— କାରଣ ଆମର ଅଧିକାଂଶ କର୍ମୀ ଜଣାଶୁଣା ଏବଂ

ସେମାନେ ପ୍ରକାଶ୍ୟ ଭାବରେ କାର୍ଯ୍ୟ କରୁଥିଲେ । ସେମାନେ ଯେ କୌଣସି ମୁହୂର୍ତ୍ତରେ ଗିରଫ ହୋଇ ପାରୁଥିଲେ । ୧୯୩୦ରେ ନିର୍ଦ୍ଦେଶ ଦେବାପାଇଁ ରିପୋର୍ଟ ଆଣିବା ଏବଂ କାର୍ଯ୍ୟ ତଦାରଖ କରିବା ନିମନ୍ତେ ଗୋଟାଏ ଗୁପ୍ତ ଡାକବାହାକ ସର୍ଭିସ ଚାଲୁ କରାଯାଇଥିଲା । ଏହା ଖୁବ ଭଲ ଭାବରେ କାର୍ଯ୍ୟ କରିଥିଲା ଏବଂ ଏଥିରୁ ଆମେ ଜାଣିପାରିଲୁ ଯେ; ଆମେ ସଫଳତାର ସହିତ ଏପରି ଗୁପ୍ତ ସମ୍ବାଦ ବହନ କାର୍ଯ୍ୟ କରିପାରିବୁ । ମାତ୍ର ଏହା ଆମର ପ୍ରକାଶ୍ୟ ଆନ୍ଦୋଳନ ସହିତ କେତେକ ସବୁମାନରେ ଖାପ ଖାଇଲା ନାହିଁ— ଗାନ୍ଧିଜୀ ମଧ୍ୟ ଏହାର ବିରୁଦ୍ଧରେ ଥିଲେ । ପ୍ରଧାନ ଅଫିସରୁ ନିର୍ଦ୍ଦେଶ ଆସି ନ ପାରିବାରୁ ଆମେ ସ୍ଥାନୀୟ ଲୋକଙ୍କ ଉପରେ ଦାୟିତ୍ୱ ଦେଇଦେଲୁ—ନଚେତ୍ ସେମାନେ ଉପର ନିର୍ଦ୍ଦେଶକୁ କେବଳ ଅସହାୟ ଭାବରେ ଅନାଇ ରହିବେ ଏବଂ କିଛି କରିବେ ନାହିଁ । ଯେତେବେଳେ ସମ୍ଭବ ହେଉଥିଲା, ନିର୍ଦ୍ଦେଶ ପଠାଯାଉଥିଲା ।

ସୁତରାଂ ଆମେ ଏହି ପ୍ରସ୍ତାବ ଓ ଆହୁରି କେତେକ ପ୍ରସ୍ତାବ ଗ୍ରହଣ କଲୁ (ଏଗୁଡ଼ିକ ପ୍ରକାଶିତ ହୋଇ ନ ଥିଲା କିମ୍ବା ପରବର୍ତ୍ତୀ ଘଟଣା ଯୋଗୁଁ କାର୍ଯ୍ୟକାରୀ ହୋଇ ନ ଥିଲା) ଏବଂ ଯିବାପାଇଁ ପୁଟୁଳା ପଟଳ ବାନ୍ଧିଲୁ । ଠିକ୍ ଏପରି ସମୟରେ ଲର୍ଡ ଆରଉଇନଙ୍କ ଠାରୁ ପୁଣି ଡାକରା ଆସିଲା—କଥାବାର୍ତ୍ତା ଚାଲିଲା ।

ମାର୍ଚ୍ଚ ୪ ତାରିଖରେ ଅପରାହ୍ନ ପର୍ଯ୍ୟନ୍ତ ଆମେ ଗାନ୍ଧିଜୀ ବଡ଼ଲାଟ ପାଖରୁ ଫେରିବେ ବୋଲି ଅପେକ୍ଷା କରିଥାଉ । ସେ ପ୍ରାୟ ରାତି ୨ଟା ବେଳେ ଫେରି ଆସିଲେ—ଆମକୁ ଉଠାଇଲେ ଏବଂ ଏକ ରାଜିନାମା ହୋଇ ଯାଇଛି ବୋଲି ଜଣାଇଲେ । ଆମେ ସେ ଖସଡ଼ାଟି ଦେଖିଲୁ । ମୋତେ ସବୁ ଦଫା ଜଣା ଥିଲା—କାରଣ ସେଗୁଡ଼ିକ ପ୍ରାୟ ଆଲୋଚନା ହେଉଥିଲା—ଉପରେ ଭାରତର ପାଇଁ ସମ୍ପର୍କରେ ୨ୟ ଦଫା * ଦେଖି ମୁଁ

* ଦିଲ୍ଲୀ ଚୁକ୍ତିନାମା (୧୯୩୧ ମସିହା ମାର୍ଚ୍ଚ ୫ ତାରିଖ) ର ୨ୟ ଦଫା ହେଉଛି—"ଶାସନ ବ୍ୟବସ୍ଥାଗତ ସମସ୍ୟା ସମ୍ପର୍କରେ

ବଡ଼ ମର୍ମାହତ ହେଲି । ମୁଁ ଏହାକୁ ଗ୍ରହଣ କରିବାକୁ ଆଦୌ ପ୍ରସ୍ତୁତ ନ ଥିଲି । ମୁଁ ସେତେବେଳେ କିଛି କହିଲି ନାହିଁ—ଆମେ ସବୁ ଶୋଇବାକୁ ଗଲୁ ।

ଆଉ ଅଧିକା କିଛି କହିବାକୁ ନ ଥିଲା । କାର୍ଯ୍ୟ ତ ହୋଇ ସାରିଥିଲା—ଆମ ନେତା ମତ ଦେଇ ସାରିଥିଲେ । ଆମେ ତାଙ୍କ ସହିତ ଏକମତ ନ ହେଲେ ବା କଣ କରିପାରନ୍ତୁ ? ଖୁବ୍ ଜୋରରେ ଆମର ଅସନ୍ତୋଷ ଘୋଷଣା କରିଦେବୁ—ଏଥିରେ କୌଣସି ବ୍ୟକ୍ତିବିଶେଷ ହୁଏତ ସନ୍ତୋଷ ଲାଭ କରିପାରେ; ମାତ୍ର ଶେଷ ନିଷ୍ପତ୍ତିରେ କିଛି ପାର୍ଥକ୍ୟ ଏଥିରେ ଘଟିବ ନାହିଁ । ଅନ୍ତତଃ ସେ ସମସ୍ତପାଇଁ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରହିଲା—କାର୍ଯ୍ୟକାରୀ ସମିତି ମଧ୍ୟ ଏହା ଆଉ ଅଗ୍ରସର କରାଇପାରିବ ନାହିଁ । ଗାନ୍ଧିଜୀ ଗୋଟାଏ ଚୁକ୍ତିନାମାରେ ସମ୍ମତ ହୋଇଛନ୍ତି ବୋଲି ସରକାର ଘୋଷଣା କଲାବେଳେ ଏହା ଉପରି ବା ହେବ । ମୁଁ ଓ ଆମର ଅନ୍ୟ ସାଥିମାନେ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖିବାକୁ ଏବଂ ସରକାର ସହିତ ଗୋଟାଏ ଅସ୍ଥାୟୀ ମିଳାମିଶା କରିବାକୁ ସମ୍ପୂର୍ଣ୍ଣ ଇଚ୍ଛୁକ ଥିଲୁ । ଆମର ସହକର୍ମୀମାନଙ୍କୁ ପୁନର୍ବାର ଜେଲକୁ ପଠାଇବା କିମ୍ବା ଯେଉଁ ହଜାର ହଜାର ଲୋକ ଜେଲରେ

---

ମହାମାନ୍ୟବର ସରକାରଙ୍କ ସମ୍ମତି ଅନୁସାରେ ଭବିଷ୍ୟତ ଆଲୋଚନାର ସୀମା ଏହିରୂପେ ନିର୍ଦ୍ଦିଷ୍ଟ ହେବ ଯେ, ଗୋଲଟେବୁଲ ସମ୍ମିଳନୀରେ ଭାରତ ସରକାର ଶାସନ ବିଧାନ ସମ୍ବନ୍ଧରେ ଯେ ଆଲୋଚନା ହୋଇଥିଲା, ତାହା ପୁନର୍ବାର ବିଚାର ହେବ । ସେଠାରେ ଯେଉଁ ଯୋଜନା କରାଯାଇ ଥିଲା, ସେଥିରୁ ରାଷ୍ଟ୍ରସଂଘ ଏକ ଆବଶ୍ୟକୀୟ ଅଂଶ । ସେହିପରି ଭାରତୀୟ-ଦାୟିତ୍ୱ ବା ଭାରତ ସ୍ୱାର୍ଥ ଦୃଷ୍ଟିରୁ ହାତର ପାଞ୍ଚ କ୍ଷମତା—ଯଥା—ଦେଶରକ୍ଷା ସମସ୍ୟା, ବୈଦେଶିକ ବ୍ୟାପାର, ସଂଖ୍ୟାନ୍ୟୂନ ଗୋଷ୍ଠୀଙ୍କର ସ୍ଥାନ, ଭାରତର ଋଣ ଓ ସର୍ବ ପ୍ରତିଶ୍ରୁତି ପୂରଣ''

ରହିଛନ୍ତି, ସେମାନଙ୍କୁ ସେଠାରେ ରହିବାରେ ନିମନ୍ତ୍ରଣ ହେବା କିଛି ସମ୍ମାନର କଥା ନୁହେଁ । ଆମ ଭିତରୁ ଅନେକ ଜେଲଖାନାରେ ରହିବାକୁ ନିଜକୁ ଶିକ୍ଷିତ କରାଇଥିଲେ ସୁଦ୍ଧା ଏବଂ ଜେଲଖାନା ସମ୍ବନ୍ଧରେ ଖୁବ୍ ହାଲୁକା ଭାବରେ କଥାବାର୍ତ୍ତା କରୁଥିଲେ ସୁଦ୍ଧା ଆମର ଦିନ କଟାଇବାପାଇଁ ଜେଲଖାନା କିଛି ସୁଖପ୍ରଦ ସ୍ଥାନ ନଥିଲା । ଏହା ଛଡ଼ା ମଧ୍ୟ ପ୍ରାୟ ତିନି ସପ୍ତାହ ବା ତହିଁରୁ ଅଧିକ ଦିନ ପର୍ଯ୍ୟନ୍ତ ଗାନ୍ଧିଜୀ ଓ ଲର୍ଡ଼ ଇର୍‌ଉଇନଙ୍କ ସହ କଥାବାର୍ତ୍ତା ଫଳରେ ଗୋଟାଏ ମିଳାମିଶା ହେବ ବୋଲି ଦେଶ ଆଶା କରୁଥିଲା; କଥା ଶେଷଥର ପାଇଁ ଭାଙ୍ଗିଯାଇଥିଲେ ହତାଶ ଭାବ ଆସିଥାନ୍ତା । ଏହି କାରଣରୁ ଆମେ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ଗୋଟାଏ ଅସ୍ଥାୟୀ ( ଏହା ଛଡ଼ା ଏହା ଅନ୍ୟ କିଛି ହୋଇ ନପାରେ ) ସନ୍ଧି ସପକ୍ଷରେ ମତ ଦେଲୁ । ଏହା ସଙ୍ଗେ ସଙ୍ଗେ ଆମେ ଘୋଷଣା କଲୁ ଯେ, ଆମ ମୂଳନୀତି ସମ୍ପର୍କରେ ଆତ୍ମସମର୍ପଣ କରିପାରିବୁ ନାହିଁ ।

ପରେ ଯେଉଁସବୁ କଥା ଘେନି ଭୂମୂଳ ମୁକ୍ତ ଲାଗିଥିଲା ସେ ସମ୍ବନ୍ଧରେ ମୁଁ କିଛି ବିଶେଷ ମନୋଯୋଗ ଦେଇ ନ ଥିଲି । ଏ ସବୁଥିରେ ଦୁଇଟି କଥାରେ ମୋର ଆଗ୍ରହ ହୋଇଥିଲା । ଗୋଟିଏ କଥା ହେଉଛି, ଆମର ସ୍ୱାଧୀନତା ଲକ୍ଷ୍ୟ କୌଣସି ପ୍ରକାରେ କୋହଳ କରାଯାଇ ପାରିବ ନାହିଁ ଏବଂ ଦ୍ୱିତୀୟ ହେଉଛି ମୁକ୍ତ ପ୍ରଦେଶରେ କୃଷକ ଆନ୍ଦୋଳନରେ ଏହି ମିଳାମିଶାଦ୍ୱାରା କିପରି ଫଳ ହେଉଛି ଦେଖିବା । ଏପର୍ଯ୍ୟନ୍ତ ଆମର ଖଜଣା ବନ୍ଦ ବା ଟିକସ ବନ୍ଦ ଆନ୍ଦୋଳନ ଖୁବ୍ ସଫଳ ହୋଇଥାଏ ଏବଂ କେତେକ ଅଞ୍ଚଳରେ ଆଦୌ କିଛି ଆଦାୟ ହୋଇ ପାରି ନ ଥାଏ । କୃଷକମାନେ ଏକ ଦୁରବସ୍ଥାରେ ପଡ଼ିଥିଲେ । ପୃଥିବୀର କୃଷି ଅବସ୍ଥା ଏବଂ ମୂଲ୍ୟ ପୂର୍ବାପେକ୍ଷା ଅଧିକ ପଡ଼ିଯାଇଥିଲା — ସେମାନଙ୍କ ପକ୍ଷରେ ଖଜଣା ଦେବା ଅତ୍ୟନ୍ତ କଷ୍ଟକର ହୋଇ ପଡ଼ିଥିଲା । ଆମର ଟିକସ ବନ୍ଦ ଆନ୍ଦୋଳନ ରାଜନୈତିକ ଓ ଅର୍ଥନୈତିକ ଉଭୟ ଦିଗରୁ କରାଯାଇଥିଲା । ସରକାର ସହିତ ଗୋଟାଏ ଅସ୍ଥାୟୀ ମିଳାମିଶା ହେଲେ ଆଇନ ଅମାନ୍ୟ ପ୍ରତ୍ୟାହାର କରିଯିବ ଏବଂ ଟିକସ ବନ୍ଦ ଆନ୍ଦୋଳନର ରାଜନୈତିକ ଭିତ୍ତି ଲୋପ ପାଇବ । ମାତ୍ର

ଅର୍ଥନୀତିକ ଅବସ୍ଥା ବଦଳିବ କିପରି? ସେମାନଙ୍କ ଉପରେ ଲାଗିଥିବା ଦାବି ଦେବା ନିମନ୍ତେ ସେମାନେ ସମ୍ପୂର୍ଣ୍ଣ ଅସମର୍ଥ, ଏ ସମ୍ବନ୍ଧରେ କଣ କରାଯିବ? ଗାନ୍ଧିଜୀ ଲର୍ଡ ଇରଉଇନଙ୍କୁ ଏ ସମ୍ବନ୍ଧରେ ପରିଷ୍କାର ଭାବେ ଜଣାଇ ଦେଇଥିଲେ। ସେ କହିଥିଲେ ଯେ, କରଦ ବନ୍ଦ ଆନ୍ଦୋଳନ ଅବଶ୍ୟ ପ୍ରତ୍ୟାହାର କରାଯିବ; ମାତ୍ର କୃଷକମାନେ ଦେବା ଶକ୍ତି ନ ଥିବା ଅବସ୍ଥାରେ ଆମେ ଲୋକଙ୍କୁ ଖଜଣା ଦେବା ସକାଶେ ପରାମର୍ଶ ଦେଇପାରିବୁ ନାହିଁ। ଏହା ଏକ ପ୍ରାଦେଶିକ ସମସ୍ୟା ହୋଇ ଭାରତ ସରକାର ସହିତ ଏ ସମ୍ବନ୍ଧରେ ବିସ୍ତୃତ ଭାବରେ ଆଲୋଚନା ହୋଇପାରି ନ ଥିଲା। ଆମକୁ ପ୍ରତିଶ୍ରୁତି ମିଳିଥିଲା ଯେ, ପ୍ରାଦେଶିକ ସରକାର ଏ ସମ୍ପର୍କରେ ଆମ ସହିତ ଆନନ୍ଦର ସହିତ ଆଲୋଚନା କରିବେ ଏବଂ କୃଷକଙ୍କ ଦୁର୍ଦ୍ଦଶା ଦୂର କରିବା ନିମନ୍ତେ ଚେଷ୍ଟା କରିବେ। ଏହା ଏକ ଅସ୍ପଷ୍ଟ ଜବାବ; ମାତ୍ର ସେ ପରିସ୍ଥିତିରେ ଏହାଠାରୁ ନିର୍ଦ୍ଦିଷ୍ଟ ଭାବେ କିଛି ଅଧିକ ମାଗିବା କଷ୍ଟକର ଥିଲା। ସୁତରାଂ ସେହି ଷଣକ ପାଇଁ ଅନ୍ତତଃ ଏହି ସମସ୍ୟା ଆଲୋଚନା ଶେଷ ହେଲା।

ଆମର ସ୍ୱାଧୀନତା ଲକ୍ଷ୍ୟ ଓ ମୁଖ୍ୟ ଉଦ୍ଦେଶ୍ୟଟି ରହିଗଲା। ମୁଁ ଦେଖିଲି ଯେ ଦ୍ୱିତୀୟ ଦଫା ଅନୁସାରେ ଏହା ମଧ୍ୟ ଖର୍ବ ହୋଇ ଯାଇଛି। ଏଇଥିପାଇଁ କଣ ଆମ ଲୋକେ ବର୍ଷେକାଳ ଏପରି ବୀର ଭାବରେ କାର୍ଯ୍ୟ କରୁଥିଲେ! ଆମର ସମସ୍ତ ସାହସିକ କାର୍ଯ୍ୟ ଓ କଥାର କି ସମାପ୍ତି ଏଇଠାରେ? ଆମର ସ୍ୱାଧୀନତା ଶପଥ, ଜାନୁଆରୀ ତା ୨୬ ରେଖର ପ୍ରତିଜ୍ଞାପତ୍ର କଣ ଏଇଥିପାଇଁ ବାରମ୍ବାର ଗ୍ରହଣ କରାଯାଉଥିଲା? ସୁତରାଂ ସେଦିନ ରାତିରେ ମୁଁ ଏ ସମ୍ବନ୍ଧରେ ଚିନ୍ତା କରିବାକୁ ଲାଗିଲି—ଏକ ମୂଲ୍ୟବାନ୍ ଜିନିଷ ଚାଲିଗଲା, ଏହା ଆଉ ଫେରାଇ ଆଣି ହେବ ନାହିଁ। ଏପରି ଏକ ଶୂନ୍ୟତାରେ ମୋର ହୃଦୟ ପୂର୍ଣ୍ଣ ହୋଇଗଲା।

"ଜଗତରେ ପ୍ରଳୟ, ଦେଶ ମୁଖରିତ କରି ଆସେ ନା, ଏହା ନୀରବରେ ଆସେ।"

---

# କରାଚୀ କଂଗ୍ରେସ

ଗାନ୍ଧୀଜୀ ପରିଷ୍କାରଭାବେ ମୋ ମନର ଅବସ୍ଥା ବୁଝି ପାରିଥିଲେ ଏବଂ ତହିଁ ଆରଦିନ ପ୍ରାତଃଭ୍ରମଣ ସମୟରେ ତାଙ୍କ ସହିତ ବୁଲି କଥାବାର୍ତ୍ତା କରିବାକୁ ଡାକିଲେ । ଦୀର୍ଘ ସମୟ ପର୍ଯ୍ୟନ୍ତ ଆମର କଥାବାର୍ତ୍ତା ହେଲା । ସେ ମୋତେ ବୁଝାଇବାକୁ ଚେଷ୍ଟା କଲେ ଯେ, ଶର୍ତ୍ତରେ କିଛି ମୂଳନୀତି ବିସର୍ଜନ ବା ନୀତି ପ୍ରତ୍ୟାହାର କରାଯାଇ ନାହିଁ । ସେ ଚୁକ୍ତିନାମାର ଦ୍ୱିତୀୟ ଦଫାକୁ ଏକ ବିଶେଷ ଭାବରେ ଅର୍ଥ କରି ଏହା ସ୍ୱାଧୀନତା ଦାବି ସହିତ ଖାପ ଖାଇବ ବୋଲି କହୁଥିଲେ । ପ୍ରଧାନତଃ "ଭାରତର ସ୍ୱାର୍ଥ ଦୃଷ୍ଟିରୁ" କଥାର ଏହି ଅର୍ଥ ସେ କରୁଥିଲେ । ଏହି ବ୍ୟାଖ୍ୟା ମୋତେ ଜବରଦସ୍ତି ପରି ମନେ ହେଲା ଏବଂ ସେ ବିଷୟରେ ମୋର ଦୃଢ଼ବୋଧ ହେଲନାହିଁ, ମାତ୍ର ତାଙ୍କ କଥାରେ ମୁଁ ଏକ ପ୍ରକାର ଶାନ୍ତ ହେଲି । ଚୁକ୍ତିନାମାରେ ଗୁଣ ଛାଡ଼ି ସେ ଆଜପର୍ଯ୍ୟନ୍ତ ଭାବିଲେ ଆମକୁ ଯେପରି ଅସ୍ଥିର କରି ପକାନ୍ତି, ସେଥିରେ ଆମେ ଭିନ୍ନ ହୋଇପାରୁ ବୋଲି ମୁଁ ତାହାଙ୍କୁ କହିଲି । ତାଙ୍କ ସହିତ ୧୪ ବର୍ଷ ପର୍ଯ୍ୟନ୍ତ ଘନିଷ୍ଠ ସମ୍ପର୍କ ସତ୍ତ୍ୱେ ତାଙ୍କ ସମ୍ବନ୍ଧରେ ମୋର କିଛି ଅଜଣା ରହିଯାଇଥିଲା । ମୁଁ ତାହା ଆଦୌ ବୁଝିପାରି ନ ଥିଲି ଏବଂ ମୋର ମନ ଆଶଙ୍କାପୂର୍ଣ୍ଣ ହୋଇ ରହିଥିଲା । ସେ ତାଙ୍କ ନିଜ ଭିତରେ ଏହି ଅଜଣା ବସ୍ତୁ ଥିବାର ସ୍ୱୀକାର କରିଥିଲେ । ସେ ନିଜେ କହିଲେ ଯେ, ଏହାର ସେ ଉତ୍ତର ଦେଇ ପାରିବେ ନାହିଁ । କିମ୍ବା ଏହା କେଉଁ ଆଡ଼କୁ ନେଇଯିବ ତାହା ସେ ଆଗରୁ କହିପାରିବେ ନାହିଁ ।

ତେବେ ଦୁଇ ଦିନ ପର୍ଯ୍ୟନ୍ତ ମୁଁ ସନ୍ଦେହରେ ପଡ଼ିଲି ଏବଂ କଣ କରିବି ଜାଣିପାରିଲି ନାହିଁ । ସେତେବେଳେ ସେହି ଚୁକ୍ତିନାମାକୁ ବାଧା ଦେବା ବା ବିରୋଧ କରିବାର ପ୍ରଶ୍ନ ଉଠୁ ନ ଥିଲା । ଅସଲ ସମୟ ବିତିଯାଇଥିଲା—ଏହା ଏକ ବାସ୍ତବ ଘଟଣାରୂପେ ଗ୍ରହଣ କରି କଳନା ହିସାବରେ ମୁଁ ଖୁବ୍ ଜୋରରେ ଏଥିରୁ ନିଜକୁ ଅସହଯୋଗ କରିପାରେ ।

ଏଥିରେ ମୋର ବ୍ୟକ୍ତିଗତ ଅନୁମିକା ଶାନ୍ତ ହୋଇଥିବେ; ମାତ୍ର ବୃହତ ବୃହତ୍ ସମସ୍ୟାକୁ ଏହା କିପରି ସାହାଯ୍ୟ କରିବ ? ଯାହା ହୋଇଛି ତାହା ଆନନ୍ଦର ସହିତ ଗ୍ରହଣ କରି ଗାନ୍ଧିଜୀ ଯେପରି ଏହା ଅନୁକୂଳ ବ୍ୟାଖ୍ୟା କରୁଛନ୍ତି ସେପରି କରିବାଟା କଣ ଭଲ ହେବ ନାହିଁ ? ଚୁକ୍ତିନାମାର ଠିକ ପରେ ଖବର କାଗଜ ପ୍ରତିନିଧିଙ୍କୁ ସାକ୍ଷାତ୍ ଦେଇ ସେ ଏହି ଅର୍ଥ ସମ୍ପର୍କରେ ଜୋର୍ ଦେଇଥିଲେ ଏବଂ ଆମର ଲକ୍ଷ୍ୟପୂର୍ଣ୍ଣ ସ୍ୱାଧୀନତା ଦାବୀ ଆମେ ଛାଡ଼ି ନାହୁଁ ବୋଲି କହିଲେ । ସେ ଲର୍ଡ଼ ଇରଉଇନଙ୍କ ପାଖକୁ ଯାଇ ଏହି ବିଷୟ ପରିଷ୍କାର କରି ଦେଇଥିଲେ—ଭବିଷ୍ୟତରେ ବା ସେତେବେଳେ ଯେପରି ଏ ସମ୍ବନ୍ଧରେ ଆଉ କିଛି ଭ୍ରାନ୍ତ ଧାରଣା ନ ହୁଏ । କଂଗ୍ରେସ ଯଦି ଗୋଲଟେବୁଲ ସମ୍ମିଳନୀକୁ ପ୍ରତିନିଧି ପଠାଏ, ତେବେ ଏହି ଭିତ୍ତି ଉପରେ ଏବଂ ଏହି ଦାବୀ କରିବା ନିମନ୍ତେ ପଠାଇବ । ଅବଶ୍ୟ ଲର୍ଡ଼ ଇରଉଇନ ଏହି ଦାବୀକୁ ସ୍ୱୀକାର କରି ନ ଥିଲେ; ମାତ୍ର କଂଗ୍ରେସର ଏହି ଦାବୀ କରିବାର ଅଧିକାରକୁ ସେ ମାନିଥିଲେ ।

ମୋର ଯଥେଷ୍ଟ ମାନସିକ ଦ୍ୱନ୍ଦ୍ୱ ଓ ଦୁଃଖ ସତ୍ତ୍ୱେ ମୁଁ ଏହି ଚୁକ୍ତିନାମା ଗ୍ରହଣ କରିବାକୁ ଏବଂ ଏଥିପାଇଁ ପୂର୍ଣ୍ଣ ହୃଦୟରେ କାର୍ଯ୍ୟ କରିବାକୁ ସ୍ଥିର କଲି । ଏହାଛଡ଼ା ଆଉ କିଛି ମଧ୍ୟ ପନ୍ଥା ମୋତେ ଦେଖାଗଲା ନାହିଁ ।

ଚୁକ୍ତି ପୂର୍ବରୁ ଏବଂ ପରେ ଲର୍ଡ଼ ଇରଉଇନଙ୍କ ସହିତ ଗାନ୍ଧିଜୀ ସାକ୍ଷାତ୍ ବେଳେ ଆଇନ ଅମାନ୍ୟ ବନ୍ଦୀଙ୍କ ଛଡ଼ା ଅନ୍ୟ ରାଜବନ୍ଦୀଙ୍କୁ ମଧ୍ୟ ଖଲାସ କରି ଦେବାପାଇଁ ଦାବୀ କରିଥିଲେ । ଚୁକ୍ତିର ଏକ ଦଫା ଅନୁସାରେ ଆଇନ ଅମାନ୍ୟ ବନ୍ଦୀମାନେ ଖଲାସ ହେଉଥିଲେ । ଏହାଛଡ଼ା ବିଚାର ହୋଇ ଶାସ୍ତି ପାଇ ଏବଂ ବିନା କୌଣସି ଅଭିଯୋଗ ବା ବିଚା-ରରେ ହଜାର ହଜାର ବନ୍ଦୀ ଜେଲରେ ଥିଲେ । କେତେକ ଅନ୍ତରୀଣ ବନ୍ଦୀ କେତେ ବର୍ଷ ହେଲା ଜେଲରେ ରହିଥିଲେ ଏବଂ ଯାହା ଭାରତରେ

ଏଥିପାଇଁ ଗଭୀର ଅସନ୍ତୋଷ ପ୍ରକାଶ ପାଉଥିଲୁ । ବିଶେଷତଃ ଉନା ବଗ୍ରରେ ବଙ୍ଗଳା ପ୍ରଦେଶରେ ଅଧିକ ଲୋକ ବନ୍ଦୀ ହୋଇଥିଲେ । ସେପଙ୍ଗ ଜନ ଦ୍ଵୀପର ପ୍ରଧାନ ମୁରବିଙ୍କ ପତ୍ର (ଅଥବା ଡେଫସ୍ ମକଦମା ପତ୍ର) ପ୍ରମାଣରେ ଅନ୍ତର୍ବନ୍ଦୀ ସର୍ବୋତ୍କୃଷ୍ଟ ପ୍ରମାଣ ବୋଲି ଭାରତ ସରକାର ସ୍ଵୀକାର କରୁଥିଲେ । କୌଣସି ପ୍ରମାଣକୁ ଅପ୍ରମାଣ କରି ହେବ ନାହିଁ । ଅନ୍ତରୀଣ ବନ୍ଦୀମାନେ ପ୍ରକୃତରେ ହିଂସା କାର୍ଯ୍ୟ କରିବା ଭଳି ବିପ୍ଳବୀ ବା ସେହିପରି ବିପ୍ଳବୀ । ଗାନ୍ଧିଜୀ ସେମାନଙ୍କର ମୁକ୍ତିଲାଗି ଦାବି କରିଥିଲେ—ତାହା ଦୟା ନାମରେ ଏକ ଦୟା ଆକାରରେ ନୁହେଁ, ମାତ୍ର ବିଶେଷତଃ ବଙ୍ଗଳାରେ ରାଜନୀତିକ ଅଶାନ୍ତି ଦୂର କରିବା ପାଇଁ ଏକ ସାଧାରଣ ବାୟୁ-ମଣ୍ଡଳ ସୃଷ୍ଟି କରିବା ନିମନ୍ତେ ଏହା ବାଞ୍ଛନୀୟ ବୋଲି ଦାବି କରିଥିଲେ । ମାତ୍ର ସରକାର ଏଥିରେ ରାଜି ହୋଇ ନ ଥିଲେ ।

ଭଗତ୍ ସିଂହଙ୍କର ମୃତ୍ୟୁଦଣ୍ଡ ସ୍ଥଗିତ କରିବା ନିମନ୍ତେ ଗାନ୍ଧିଜୀଙ୍କର କରୁଣ-ନିବେଦନ ମଧ୍ୟ ସରକାର ରକ୍ଷା କରି ନ ଥିଲା । ଏହାର ମଧ୍ୟ ଚୁକ୍ତି ସହିତ ସମ୍ବନ୍ଧ ନ ଥିଲା; ମାତ୍ର ସମଗ୍ର ଭାରତର ଏ ବିଷୟରେ ଗଭୀର ଉଦ୍‌ବେଗ ପ୍ରକାଶ ପାଉଥିବାରୁ ସେ ସ୍ଵତନ୍ତ୍ର ଭାବରେ ଏଥିପାଇଁ ଦାବି କରିଥିଲେ; ମାତ୍ର ତାଙ୍କର ଚେଷ୍ଟା ବିଫଳ ହେଲା ।

ସେ ସମୟରେ ଏକ ଅଦ୍ଭୁତ ଘଟଣା ମୋର ମନେ ଅଛି—ଏଥିରୁ ଭାରତରେ ଆତଙ୍କବାଦୀ ଆନ୍ଦୋଳନର ମନୋଭାବ ମୁଁ ବୁଝିପାରିଥିଲି । ମୋର ଜେଲରୁ ଖଲାସ ହେବା ପିତାଙ୍କ ମୃତ୍ୟୁପୂର୍ବରୁ ବା ପରେ ଏହା ଘଟିଥିଲା । ଜଣେ ଅପରିଚିତ ଲୋକ ମୋ ସହିତ ଦେଖା କରିବାକୁ ଆମ ଘରକୁ ଆସିଲେ । ତାଙ୍କ ନାମ ହେଉଛି ଚନ୍ଦ୍ରଶେଖର ଆଜାଦ । ମୁଁ ତାଙ୍କୁ ପୂର୍ବେ କେବେ ଦେଖି ନଥିଲି, ମାତ୍ର ୧୦ ବର୍ଷ ତଳେ ମୁଁ ତାଙ୍କ ସମ୍ବନ୍ଧରେ ଶୁଣିଥିଲି । ସେ ୧୯୨୧ ମସିହା ଅସହଯୋଗ ଆନ୍ଦୋଳନବେଳେ ସ୍କୁଲ ଛାଡ଼ି ଜେଲକୁ ଯାଇଥିଲେ । ସେତେବେଳକୁ ତାଙ୍କ ବୟସ ୧୪ ବା ୧୫ ହୋଇଥାଏ ଏବ ଜେଲ ଶୃଙ୍ଖଳା ଭାଙ୍ଗିଥିବାରୁ

ଜେଲରେ ତାଙ୍କୁ ବେତପ୍ରହାର ହୋଇଥିଲା । ପରେ ସେ ଆତଙ୍କବାଦୀ ହୋଇଗଲେ ଏବଂ ଉତ୍ତର ଭାରତରେ ସେମାନଙ୍କର ଜଣେ ମୁଖ୍ୟ ନେତା ହେଲେ । ମୁଁ ଅସ୍ପଷ୍ଟ ଭାବରେ ଏ ସବୁ ଶୁଣିଥିଲି ଏବଂ ଏହିସବୁ ଜନରବ ପ୍ରତି ବିଶେଷ ଧ୍ୟାନ ଦେଉ ନ ଥିଲି । ଆମନ୍ଦ ଓଲାସ ହେତୁ କଂଗ୍ରେସ ଓ ସରକାର ଭିତରେ ଗୋଟାଏ ମିଳାମିଶାର ସମ୍ଭାବନା ଅଛି ବୋଲି ସାଧାରଣତଃ ଆଶା କରାଯାଉଥିବାରୁ ସେ ମୋତେ ଦେଖା କରିବାକୁ ଆସିଥିଲେ । ସେ ମୋତେ ପଚାରିଲେ ଯେ, ମିଳାମିଶା ହେଲେ ତାଙ୍କ ଦଳ ଶାନ୍ତିରେ ରହିପାରିବେ କି ନାହିଁ । ସେମାନେ ଜଣ ଏହିପରି ବିଦ୍ରୋହୀ ପରି ବ୍ୟବହାର ପାଉଥିବେ । ଏକ ସ୍ଥାନରୁ ଅନ୍ୟ ସ୍ଥାନ ପର୍ଯ୍ୟନ୍ତ ତାଙ୍କ ପଛରେ ଶିକାରୀ ପରି ଲୋକ ଲାଗିଥିବେ । ସେମାନଙ୍କ ମସ୍ତକ ଧରି ଦେବାଲାଗି ପୁରସ୍କାର ଘୋଷିତ ହୋଇଥିବ ଏବଂ ଫାଶୀକାଠରେ ଝୁଲିବାର ସମ୍ଭାବନା ରହିଥିବ ? ଶାନ୍ତିପୂର୍ଣ୍ଣ ଉପାୟରେ ସେମାନେ କାଳ କାଟିବାର ସମ୍ଭାବନା ହୋଇପାରିବ କି ? ସେ ମୋତେ କହିଲେ ଯେ, ମୋ ଓ ତାଙ୍କର ଅନେକ ସହକର୍ମୀ ବର୍ତ୍ତମାନ ଉପଲବ୍ଧି କରୁଛନ୍ତି ଯେ, କେବଳ ଆତଙ୍କବାଦ ନିଷ୍ଫଳ ଏବଂ ଏଥିରେ କିଛି ମଙ୍ଗଳ ହେବ ନାହିଁ । ଯାହାହେଉ ନିଶ୍ଚିତ ସମ୍ପୂର୍ଣ୍ଣରୂପେ ଶାନ୍ତିପୂର୍ଣ୍ଣ ଉପାୟରେ ଯେ ସ୍ୱାଧୀନତା ପାଇହେବ, ଏହା ସେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନ ଥିଲେ । ସେ ଭାବୁଥିଲେ ଯେ, ଭବିଷ୍ୟତରେ କେତେବେଳେ ହିଂସା ସଂଗ୍ରାମ ହେବ—ମାତ୍ର ଏହା ଆତଙ୍କବାଦ ନୁହେଁ । ଆତଙ୍କବାଦ ଦ୍ୱାରା ଭାରତର ସ୍ୱାଧୀନତା ହାସଲ ହୋଇପାରିବ ନାହିଁ ବୋଲି ସେ କହିଲେ । ମାତ୍ର ସେ କହିଲେ ଯେ, ତାଙ୍କୁ ଯେତେ-ବେଳେ ନିର୍ଦ୍ଦିଷ୍ଟ ଭାବରେ କୌଣସି ସ୍ଥାନରେ ରହିବାକୁ ସୁବିଧା ଦିଆଯାଉ ନାହିଁ ଏବଂ ସବୁବେଳେ ତାଙ୍କ ପଛରେ ପୁଲିସ ଗୋଡ଼ାଉଛନ୍ତି, ସେପରି ଅବସ୍ଥାରେ ସେ କଣ କରିବେ ? ତାଙ୍କ କଥାନୁସାରେ ଏ ପର୍ଯ୍ୟନ୍ତ ଯେତେ ଆତଙ୍କବାଦ କାର୍ଯ୍ୟ ହୋଇଛି, ତାହା ଆତ୍ମରକ୍ଷା ଉଦ୍ଦେଶ୍ୟରେ ହୋଇଛି ।

ମୁଁ ଆଜାଦଙ୍କଠାରୁ ଏ କଥା ଶୁଣି ଖୁସି ହୋଇଥିଲି—ପରବର୍ତ୍ତୀ ଘଟଣାରୁ ମଧ୍ୟ ମୋର ବିଶ୍ୱାସ ହେଲା ଯେ, ଆତଙ୍କବାଦରୁ କ୍ରମେ ଆସ୍ଥା କମିଯାଉଛି। ବାସ୍ତବିକ ଏକ ଦଳ ହିସାବରେ ଏହା ପ୍ରାୟ ଶେଷ ହୋଇଥିଲା। ବିଶେଷ କାରଣ ବଶତଃ ପ୍ରତିଶୋଧ ନେବାଲାଗି କିମ୍ବା ବ୍ୟକ୍ତିଗତ ଆକ୍ରୋଶ ଯୋଗୁଁ ସମ୍ଭବତଃ କେବେ କେମିତି ଗୋଟାଏ ଗୋଟାଏ କାର୍ଯ୍ୟ ଦେଖାଯାଉଥିଲା— ସାଧାରଣ ଭାବରେ ଏହା ହେଉ ନ ଥିଲା। ଅବଶ୍ୟ ଏହାର ଅର୍ଥ ଏହା ନୁହେଁ ଯେ, ପୁରାତନ ଆତଙ୍କବାଦୀ ବା ସେମାନଙ୍କ ସହକର୍ମୀମାନେ ଅହିଂସା ଧାରା ଗ୍ରହଣ କରିଛନ୍ତି କିମ୍ବା ବ୍ରିଟିଶ ଶାସନର ସ୍ତାବକ ହୋଇ ପଡ଼ିଛନ୍ତି। ମାତ୍ର ସେମାନେ ଯେପରି ଆତଙ୍କବାଦରେ ବିଶ୍ୱାସ କରୁଥିଲେ, ତାହା କରୁ ନାହାନ୍ତି। ମୋତେ ବୋଧହୁଏ ତାଙ୍କ ଭିତରୁ ଅନେକଙ୍କର ଫାସିଷ୍ଟ ମନୋଭାବ ଥିଲା।

ମୁଁ ମୋର ରାଜନୈତିକ କାର୍ଯ୍ୟର ଦର୍ଶନ ଚନ୍ଦ୍ରଶେଖର ଆଜାଦଙ୍କୁ ବୁଝାଇ ତାଙ୍କୁ ସେଥିରେ ଦୀକ୍ଷିତ କରାଇବାକୁ ଚେଷ୍ଟା କଲି। ସେ କ'ଣ କରିବେ ଏହି ପ୍ରଶ୍ନର ଜବାବ ମୁଁ ଦେଇପାରି ନ ଥିଲି। ତାଙ୍କୁ ବା ତାଙ୍କପରି ଲୋକଙ୍କୁ ଶାନ୍ତି ବା ଆରାମ ଦେଲାପରି କିଛି ଘଟିବାର ସମ୍ଭାବନା ନ ଥାଏ। ମୁଁ ତାଙ୍କୁ ଅନୁରୋଧ କଲି ଯେ, ଭବିଷ୍ୟତରେ ଯେପରି ଏହି ଆତଙ୍କବାଦ ଘଟଣା ସବୁ ନ ଘଟେ, ସେଥିପାଇଁ ସେ ଯେପରି ନିଜର ପ୍ରଭାବ ବିସ୍ତାର କରନ୍ତି; କାରଣ ଏଥିରେ ଆମର ମହତ୍ ଉଦ୍ଦେଶ୍ୟ ଏବଂ ତାଙ୍କ ଦଳର ମଧ୍ୟ କ୍ଷତି ପହଞ୍ଚିବ।

୨।୩ ସପ୍ତାହ ପରେ ଗାନ୍ଧି-ଇରୱିନ କଥାବାର୍ତ୍ତା ଚାଲିଥିଲା ବେଳେ ମୁଁ ଦିଲ୍ଲୀରେ ଶୁଣିଲି ଯେ ଚନ୍ଦ୍ରଶେଖର ଆଜାଦଙ୍କୁ ଏଲାହାବାଦରେ ପୁଲିସ ଗୁଳିକରି ମାରିଦେଇଛି। ଗୋଟିଏ ପାର୍କରେ ତାଙ୍କୁ ଦିନବେଳେ ଚିହ୍ନିପାରି ବହୁତ ପୁଲିସ ଫୌଜ ଘେରିଗଲେ। ସେ ଏକ ଗଛର ଅନ୍ତରାଳରେ ରହି ନିଜକୁ ରକ୍ଷା କରିବା ନିମନ୍ତେ ଚେଷ୍ଟା କରିଥିଲେ। ପରସ୍ପର ଭିତରେ ଗୁଳି ପ୍ରୟୋଗ ଚାଲିଲା। ସେ ନିଜେ ଗୁଳି ଖାଇବା

ପ୍ରବଳ୍ରୁ ୨।୩ ଜଣ ପୁଲିସ କର୍ମଚାରୀଙ୍କୁ ଗୁଳି ମାରି ଆଘାତ କରିଥିଲେ ।

ଦିଲ୍ଲୀରେ ଅସ୍ଥାୟୀ ଚୁକ୍ତିନାମା ହେବା ପରେ ପରେ ମୁଁ ଲକ୍ଷ୍ନୌ ଆସିଲି । ସମଗ୍ର ଦେଶରୁ ଆଇନ ଅମାନ୍ୟ ଆନ୍ଦୋଳନ ତତ୍ପର ସ୍ଥଗିତ ରଖିବା ନିମନ୍ତେ ଆମେ ବନ୍ଦୋବସ୍ତ କରିଥିଲୁ ଏବଂ ଅତ୍ୟନ୍ତ ଶୃଙ୍ଖଳାର ସହିତ ସମଗ୍ର କଂଗ୍ରେସ ଅନୁଷ୍ଠାନ ଆମର ନୂତନ ନିର୍ଦ୍ଦେଶ ମାନି କାର୍ଯ୍ୟ କରିଥିଲା । ଆମ ଭିତରୁ ଅନେକ ସହକର୍ମୀ ଅସନ୍ତୁଷ୍ଟ ଥିଲେ ଅନେକ ଉଗ୍ରପନ୍ଥୀ ଥିଲେ – ସେମାନଙ୍କୁ ପୁରାତନ କାର୍ଯ୍ୟରୁ ବିରତ କରିବାର କୌଣସି ଉପାୟ ଆମର ନ ଥିଲା । କିନ୍ତୁ ଅନେକ କଂଗ୍ରେସରେ ଏହି ନୂତନ-ନିର୍ଦ୍ଦେଶକୁ ସମାଲୋଚନା କରୁଥିଲେ ସୁଦ୍ଧା ଏତେ ବଡ଼ ବିଶାଳ ଅନୁଷ୍ଠାନର ସମସ୍ତେ ଏହାକୁ କାର୍ଯ୍ୟରେ ପରିଣତ କଲେ—କେହି ଜଣେ ହେଲେ ଅମାନ୍ୟ କରିଥିବାର ମୋତେ ଜଣା ନାହିଁ । ଆମ ପ୍ରଦେଶର କେତେକ ଅଞ୍ଚଳରେ ଟିକସ ବନ୍ଦ ଆନ୍ଦୋଳନ ପ୍ରବଳ ବେଗରେ ଚାଲିଥିବାରୁ ଏହାର ଲୋକଙ୍କ ଉପରେ କିପରି ପ୍ରତିକ୍ରିୟା ହେଉଛି ଜାଣିବା ନିମନ୍ତେ ମୁଁ ବିଶେଷ ଭାବରେ ଆଗ୍ରହୀ ଥିଲି । ଆଇନ ଅମାନ୍ୟ ବାନ୍ଦୀ ସବୁ ଯେପରି ଖଲାସ ହୋଇ ଯାଆନ୍ତି, ଏହା ଦେଖିବା ଆମର ପ୍ରଥମ କାର୍ଯ୍ୟ ଥିଲା । ପ୍ରତିଦିନ ହଜାର ହଜାର ଖଲାସ ହେଉଥାନ୍ତି; କେବଳ କେତେକଜଣଙ୍କ ଅପରାଧ ବିଷୟରେ ଅନିଶ୍ଚିତତା ଥିବାରୁ ସେମାନେ କିଛିଦିନ ଡେରିପାଇଥିଲେ । ଅବଶ୍ୟ ଏହା ଛଡ଼ା ହଜାର ହଜାର ଅନ୍ତରୀଣ ବନ୍ଦୀ ଏବଂ ହିଂସା କାର୍ଯ୍ୟ ହେତୁ ଶାସ୍ତି ପାଇଥିବା ବନ୍ଦୀ ମଧ୍ୟ ରହିଗଲେ—ସେମାନଙ୍କୁ ଖଲାସ କରା ହୋଇ ନ ଥିଲା ।

ଖଲାସ ହୋଇ ଆସିବା ବନ୍ଦୀମାନେ ନିଜ ସହର ଓ ଗ୍ରାମକୁ ଫେରିଯିବାରୁ ସେମାନଙ୍କୁ ଲୋକେ ଅଭିନନ୍ଦନ କରିନେଲେ । ଖୁବ୍ ସାଜସଜ୍ଜା, ପତାକା ସଜା, ଶୋଭାଯାତ୍ରା, ସଭା, ବକ୍ତୃତା ଓ ଅଭିନନ୍ଦନ ପତ୍ର ଚାଲିଲା । ଏହା ହେବା ସ୍ୱାଭାବିକ ଏବଂ ଆଶା କରାଯାଉଥିଲା ମଧ୍ୟ

ଖୋଲି ଦେଲା । ସେମାନଙ୍କର ମାନସିକ ଅବସ୍ଥା ଓ ସେମାନେ ନିଜ ମନକୁ କିପରି ଦମନ କରି ରଖିଛନ୍ତି, ତାହା ଆମେ ଏବେ ବୁଝି ପାରିଲୁ । ଆମର ସହକର୍ମୀମାନଙ୍କର କେତେକ ବକ୍ତୃତା ଓ ଶୋଭାଯାତ୍ରାରେ ଯେ ସେମାନେ ଏପରି ଉତ୍ତେଜିତ ହୋଇ ପଡ଼ିଥିଲେ, ଏହା ଏକ ଅଦ୍ଭୁତ କଥା ।

ପ୍ରକୃତରେ କହିବାକୁ ଗଲେ ସେତେବେଳେ କଂଗ୍ରେସର ସାଧାରଣ କର୍ମୀ ଏବଂ ନେତାମାନଙ୍କଠାରେ ମଧ୍ୟ ବ୍ରିଟିଶ ସରକାରକୁ "ପରାସ୍ତ" କରି ଦେଇଥିବାର ଧାରଣା ଆଦୌ ନ ଥିଲା । କିନ୍ତୁ ଆମ ନିଜ ଲୋକଙ୍କର ତ୍ୟାଗ ଓ ସାହସ ଦେଖି ଆମେ ଗର୍ବ ଅନୁଭବ କରୁଥିଲୁ । ୧୯୩୦ ରେ ଦେଶରେ ଯାହା ଘଟିଲା; ସେଥିରେ ମଧ୍ୟ ଆମେ ନିଶ୍ଚୟ ଗର୍ବିତ ହେଲୁ; ଏହା ଆମର ଆତ୍ମପ୍ରତ୍ୟୟ ବଢ଼ାଇଲା—ଆମଠାରେ ବିଶ୍ୱାସ ଜନ୍ମାଇଲା ଏବଂ ଏପରିକି ଆମର ଶ୍ରେଷ୍ଠ ସ୍ୱେଚ୍ଛାସେବକ ସୁଦ୍ଧା ଏହିକଥା ଚିନ୍ତାକରି ମସ୍ତକ ଉତ୍ତୋଳନ କରି ଗର୍ବର ସହିତ ବୁଲୁଥିଲେ । ଆମେ ଅନୁଭବ କଲୁ ଯେ ଆମର ଏହି ବିରାଟ ଉଦ୍ୟମ ସାରା ଜଗତର ଦୃଷ୍ଟି ଆକର୍ଷଣ କରିପାରିଥିବାରୁ ବ୍ରିଟିଶ ସରକାର ଉପରେ ଖୁବ୍ ଚାପ ପକାଇ ପାରିଛି ଏବଂ ଆମକୁ ଆମ ଲକ୍ଷ୍ୟସ୍ଥଳର ନିକଟରେ ପହଞ୍ଚାଇ ଦେଇଛି । ଏହାର ସରକାରକୁ ପରାସ୍ତ କରିବା ସହିତ କୌଣସି ସମ୍ପର୍କ ନାହିଁ ଏବଂ ବାସ୍ତବିକ ଆମ ଭିତରୁ ଅନେକ ଏ କଥା ଭଲରୂପେ ବୁଝି ପାରୁଥିଲୁ ଯେ, ସରକାର ଦିଲ୍ଲୀ ଚୁକ୍ତିକରି ନିଜର ଭଲ କରିଛନ୍ତି । ଆମ ଭିତରୁ ଯେଉଁମାନେ ଆମେ ଆମର ଉଦ୍ଦେଶ୍ୟରୁ ବହୁ ଦୂରରେ ଅଛୁ ଏବଂ ଆମ ସମ୍ମୁଖରେ ଆହୁରି ବୃହତ୍ ଓ କଠୋର ସଂଗ୍ରାମ ରହିଛି ବୋଲି କହୁଥିଲେ, ସରକାର ସେମାନଙ୍କୁ ଯୁଦ୍ଧପ୍ରୟାସୀ ଏବଂ ଦିଲ୍ଲୀ ଚୁକ୍ତିର ଭାବ ମାନୁ ନାହାନ୍ତି ବୋଲି ଅଭିଯୋଗ କରୁଥିଲେ ।

ଯୁକ୍ତ ପ୍ରଦେଶରେ ଆମକୁ କୃଷକ ସମସ୍ୟାର ସମ୍ମୁଖୀନ ହେବାକୁ ହେଲା । ବର୍ତ୍ତମାନ ଯଥାସମ୍ଭବ ବ୍ରିଟିସ ସରକାର ସହିତ ସହଯୋଗ କରିବା ଆମର ନୀତି ଥିଲା—କିନ୍ତୁ ହେଲେ ଅତି ଶୀଘ୍ର ଯୁକ୍ତପ୍ରଦେଶର

ପ୍ରାଦେଶିକ ସରକାର ସହିତ ଆମେ ସଂପର୍କ ସ୍ଥାପନ କଲୁ । ପାର୍ଥକ୍ୟଲ ହେଲା — ପ୍ରାୟ ବାରବର୍ଷ ହେବ, ଆମର ସରକାରୀ ସ୍ତରରେ ସେମାନଙ୍କ ସହିତ କୌଣସି କାରବାର ନ ଥିଲା । କୃଷକ ସମସ୍ୟା ସମ୍ବନ୍ଧରେ ଆଲୋଚନା କରିବା ନିମନ୍ତେ ମୁଁ ପ୍ରଦେଶରେ କେତେକ ଉଚ୍ଚପଦସ୍ଥ କର୍ମଚାରୀଙ୍କ ସହ ସାକ୍ଷାତ କରିଥିଲୁ । ଏ ସମ୍ପର୍କରେ ମଧ୍ୟ ସ୍ୱାର୍ଥ ଚିଠିପତ୍ର ଆଦାନ ପ୍ରଦାନ ଚାଲିଲା । ଆମ ପ୍ରାଦେଶିକ କଂଗ୍ରେସ କମିଟି ସରକାର ସହିତ ମୁଖପତ୍ର ହିସାବରେ କଥାବାର୍ତ୍ତା ଚଳାଇବା ନିମନ୍ତେ ଗୋବିନ୍ଦ ବଲ୍ଲଭ ପନ୍ତଙ୍କୁ ନିଯୁକ୍ତ କଲା । କୃଷକ ସମସ୍ୟାରେ ଯେ ସଙ୍କଟ ସମୟ ପହଞ୍ଚିଛି, କୃଷିଜାତ ଦ୍ରବ୍ୟର ମୂଲ୍ୟ ବହୁ ପରିମାଣରେ କମିଯାଇଛି ଏବଂ ସାଧାରଣ କୃଷକ ଦାବି କରାଯାଉଥିବା ଖଜଣା ଦେବାକୁ ଅସମର୍ଥ, ଏକଥା ସ୍ୱୀକାର କଲୁ । ବର୍ତ୍ତମାନ ପ୍ରଶ୍ନ ହେଲା, କେତେ ମାଫି କରାଯିବ ଏବଂ ଏ ସମ୍ପର୍କରେ ପ୍ରାଦେଶିକ ସରକାର ହିଁ ଆଗଭର ହୋଇ ବାହାରିବାର କଥା । ସାଧାରଣତଃ ସରକାର ଜମିଦାର ସହିତ କାରବାର କରନ୍ତି, ପ୍ରତ୍ୟକ୍ଷ ଭାବରେ ପ୍ରଜାଙ୍କ ସହିତ କାରବାର କରନ୍ତି ନାହିଁ । ଖଜଣା କମାଇବା ବା ଛାଡ଼ ଦେବା ବର୍ତ୍ତମାନ ଜମିଦାରଙ୍କ ଉପରେ ନିର୍ଭର କରୁଥିଲା । ମାତ୍ର ସରକାର ଜମିଦାରଙ୍କ ରାଜସ୍ୱ ନ କମାଇବା ପର୍ଯ୍ୟନ୍ତ ସେମାନେ କିଛି କରିବାକୁ ଅସ୍ୱୀକାର କଲେ । ଯେ କୌଣସି କାରଣରୁ ହେଉ, ସେମାନେ ସାଧାରଣତଃ ଖଜଣା ମାଫ କରିବା ବିଷୟରେ ସେତେ ଇଚ୍ଛୁକ ନଥିଲେ । ସୁତରାଂ ଏ ସମ୍ପର୍କରେ ନିଷ୍ପତ୍ତି ସରକାର ହାତରେ ରହିଥିଲା ।

ପ୍ରାଦେଶିକ କଂଗ୍ରେସ କମିଟି କୃଷକମାନଙ୍କୁ ଜଣାଇ ଦେଇଥାଏ ଯେ ଟିକସ ବନ୍ଦ ଆନ୍ଦୋଳନ ବନ୍ଦ କରାଯାଇଛି । ସେମାନେ ଯେତେଦୂର ପାରନ୍ତି ଖଜଣା ଦେଇ ଦିଅନ୍ତୁ । କୃଷକଙ୍କର ପ୍ରତିନିଧି ହିସାବରେ କଂଗ୍ରେସ କମିଟି, ଖଜଣାର ବହୁତ ଛାଡ଼ ଦାବୀ କରୁଥାଏ । ଅନେକ ସମୟ ପର୍ଯ୍ୟନ୍ତ ସରକାର ଏଥିରେ କିଛି କରି ନ ଥିଲେ । ସମ୍ପ୍ରତି ପ୍ରଦେଶର ଗଭର୍ଣ୍ଣର ସାର୍ ମାଲକମ୍ ହେଲି ଛୁଟି ବା ବିଶେଷ

ଭାଷାରେ ଯାଉଥିବାରୁ ଅସୁବିଧା ହେଲା । ଅତ୍ୟନ୍ତ ମୃଦୁଭାଷୀ ଓ ଭଦ୍ରଲୋକ କାର୍ଯ୍ୟ କରିବାର ଆବଶ୍ୟକତା ଥିଲା । ମାତ୍ର ଅସ୍ଥାୟୀ ଗଭର୍ଣ୍ଣର ଓ ତାଙ୍କ ସାଥୀ କର୍ମଚାରୀମାନେ କଷ୍ଟ ଦେବାକୁ ଉତ୍ପ୍ରେରିତ କଲେ ଏବଂ ଗ୍ରୀଷ୍ମ-ଋତୁରେ ସ୍ଥାୟୀ ଗଭର୍ଣ୍ଣର ମାଲକମ ହେଲି ଆସିବା ପର୍ଯ୍ୟନ୍ତ ଚାଲିଥିଲେ । ଏପରି ଅନିଶ୍ଚିତତା ଏବଂ ଏହିଯୋଗୁଁ ପରିସ୍ଥିତି ବଡ଼ କଠିନ ହେଲା ଏବଂ ବନ୍ଦୀମାନେ ଅନେକ କଷ୍ଟ ସହିଲେ ।

ଦିଲ୍ଲୀ ଚୁକ୍ତି ପରେ ମୋର ଟିକିଏ ସ୍ୱାସ୍ଥ୍ୟଭଙ୍ଗ ହୋଇଥିଲା । ଜେଲରେ ମଧ୍ୟ ମୁଁ ସୁସ୍ଥ ନ ଥିଲି — ପିତାଙ୍କ ମୃତ୍ୟୁ, ତା ପରେ ପରେ ଦିଲ୍ଲୀ ମିଳାମିଶା ସମ୍ବନ୍ଧରେ ଦୀର୍ଘକାଳ ଧରି କଥାବାର୍ତ୍ତା ଫଳରେ ମୋର ଶାରୀରିକ ସ୍ୱାସ୍ଥ୍ୟ ଅଧିକ ଖରାପ ହୋଇଗଲା । କରାଚୀ କଂଗ୍ରେସ ବେଳକୁ ମୁଁ ସୁସ୍ଥ ହୋଇଥିଲି ।

ଏକ ପ୍ରାନ୍ତରେ କରାଚୀ ଭାରତର ଉତ୍ତର ପଶ୍ଚିମରେ ବହୁଦୂରରେ ଅବସ୍ଥିତ ଏଠାକୁ ଯିବା କଷ୍ଟକର — ମରୁଭୂମି ଅଞ୍ଚଳ ଯୋଗୁଁ ଏହା କେତେକାଂଶରେ ଦେଶର ଅନ୍ୟ ଅଂଶଠାରୁ ବିଚ୍ଛିନ୍ନ ହୋଇ ରହିଥାଏ । ତଥାପି ଦୂର ଅଞ୍ଚଳମାନଙ୍କରୁ ବହୁତ ଲୋକ ଏଠାକୁ ଆସିଥିଲେ ଏବଂ ସେ ସମୟରେ ଦେଶର ମନୋଭାବ ପ୍ରକୃତରେ ପ୍ରକାଶ ପାଉଥିଲା । ଭାରତରେ ଜାତୀୟ ଆନ୍ଦୋଳନର କ୍ରମବର୍ଦ୍ଧିଷ୍ଣୁ ଶକ୍ତି ଦେଖି ଗୋଟାଏ ଗଭୀର ସନ୍ତୋଷ ଓ ସ୍ଫୂର୍ତ୍ତି ଜନ୍ମି ଆସୁଥାଏ । କଂଗ୍ରେସ ଅନୁଷ୍ଠାନ ଯେ ଏତେ ବଡ଼ ଦାୟିତ୍ୱ ସବୁ ଉଠାଇ ଚଳୁଛି, ମୁଣ୍ଡାଇ କାର୍ଯ୍ୟ କରିଯାଉଛି, ସେଥିରେ ତ ଅନୁଭବ କରାଯାଉଥାଏ । ଲୋକଙ୍କର ଶୃଙ୍ଖଳିତ ତ୍ୟାଗ ହେତୁ ଏଥିର ଯଥାର୍ଥତା ଅଧିକ ପ୍ରମାଣିତ ହେଉଥାଏ, ଲୋକଙ୍କ ଭିତରେ ଆତ୍ମବିଶ୍ୱାସ ଓ ଉତ୍ସାହ ଜାଗ୍ରତ ଥାଏ । ଏହା "ସଙ୍ଗେ ସଙ୍ଗେ" ସମ୍ମୁଖରେ ଥିବା ବିରାଟ ସମସ୍ୟା ଓ ଦୁଃଖ କଥା ଭୀଷଣ ଭାବେ ଗୁରୁ ଦାୟିତ୍ୱ ମନରେ ଉଠେ ଥାଏ । ଆମର ବକ୍ତୃତା ବା ପ୍ରସ୍ତାବ ହାଲୁକା ଭାବରେ କରାଯାଇ ପାରେ ନାହିଁ — କାରଣ ଏହାର ପ୍ରଭାବ ଓ ପ୍ରତିକ୍ରିୟା ସାରା ଜାତିର କାର୍ଯ୍ୟ

ଝିପିରେ ପଡ଼ିବ । ଦିଲ୍ଲୀ ରହିବା ଅଧିକାଂଶ ଲୋକ ଗାନ୍ଧିଙ୍କ ଭାଷଣରେ ଖୁସି ଏହା ସେପରି ଲୋକପ୍ରିୟ ନ ଥିଲା କିମ୍ବା ପସନ୍ଦ ହେବ ନ ଥିଲା । କାରଣ ଏଥିପାଇଁ ଯଦିମ୍ କିଛି ଅସୁବିଧାରେ ପଡ଼ିପାଇପାରୁ ବୋଲି ଆଶଙ୍କା ଥିଲା । କୌଣସି ପ୍ରକାରେ ଦେଶ ସ୍ୱାଧୀନରେ ଅସଲ ସମସ୍ୟା ଲୋକମାନଙ୍କ ଧାରଣାପର ମନେ ହେଉଥିଲା । ଠିକ୍ କଂଗ୍ରେସ ଅଧିବେଶନ ପୂର୍ବରୁ ଭଗତ ସିଂହଙ୍କ ଫାଶୀ ଯୋଗୁଁ ଏକ ନୂଆ ଅସନ୍ତୋଷ ଚାରିଆଡ଼େ ଦେଖାଯାଇଥିଲା । ଉତ୍ତର ଭାରତରେ ବିଶେଷ ଭାବରେ ଏହି ଉଦ୍‌ବେଗ ପ୍ରକାଶ ପାଇଥିଲା— କରାଚୀ ଉତ୍ତର ଭାରତରେ ଅବସ୍ଥିତ ଥିବାରୁ ପଞ୍ଜାବରୁ ବହୁ ସଂଖ୍ୟ ଲୋକ ସେଠାକୁ ଯାଇଥିଲେ ।

ଅନ୍ୟ କଂଗ୍ରେସ ଅପେକ୍ଷା କରାଚୀ କଂଗ୍ରେସରେ ବ୍ୟକ୍ତିଗତ ଭାବରେ ଗାନ୍ଧିଜୀଙ୍କର ବେଶୀ ଜୟ ହୋଇଥିଲା । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ସଭାପତି ହୋଇଥିଲେ । ସେ ଭାରତର ଜଣେ ଶକ୍ତିମାନ୍ ଓ ଲୋକପ୍ରିୟ ଜନନାୟକ । ଗୁଜୁରାଟ ଆନ୍ଦୋଳନର ଯଶସ୍ୱୀ ନେତା ଗାନ୍ଧିଜୀଙ୍କ କଂଗ୍ରେସରେ ପ୍ରାଧାନ୍ୟ କରିଥିଲେ । ଖାଁ ଅବଦୁଲ ଗଫର ଖାଁଙ୍କ ନେତୃତ୍ୱରେ ସୀମାନ୍ତ ପ୍ରଦେଶରୁ ଅନେକ ସଂଖ୍ୟକ "ଲାଲ କୁର୍ତ୍ତି" ଦଳ ମଧ୍ୟ କଂଗ୍ରେସକୁ ଆସିଥିଲେ । ଏମାନେ ଖୁବ ଲୋକପ୍ରିୟ ଥିଲେ ଏବଂ ଯେଉଁଠାକୁ ଯାଉଥିଲେ ଜୟ ଧ୍ୱନି ହେଉଥିଲା; କାରଣ ୧୯୩୦ ମସିହା ଏପ୍ରିଲ ମାସଠାରୁ ବଡ଼ ଉତ୍ତେଜନାର ସମ୍ମୁଖୀନ ହୋଇ ସେମାନେ ଯେପରି ଅପୂର୍ବ ଉତ୍ସାହ ଓ ଶାନ୍ତିପୂର୍ଣ୍ଣ ସାହସ ଦେଖାଇଥିଲେ, ସେଥିରେ ସାରା ଭାରତ ମୁଗ୍ଧ ହୋଇଯାଇଥିଲା । ଲାଲକୁର୍ତ୍ତି ଯୋଗୁଁ କେତେକ ଲୋକଙ୍କର ଭୁଲ ଧାରଣା ଥିଲା ଯେ, ସେମାନେ ହେଉଛନ୍ତି କମ୍ୟୁନିଷ୍ଟ ବା ବାମପନ୍ଥୀ ଶ୍ରମିକ ଦଳ ପ୍ରକୃତରେ ସେମାନଙ୍କର ନାମ ହେଉଛି "ଖୋଦାଇ ଖିଦମତ୍‌ଗାର" ଏବଂ ଏହି ଅନୁଷ୍ଠାନ କଂଗ୍ରେସ ସହିତ ସଂଯୁକ୍ତ ହୋଇଥିଲା (ପରେ ୧୯୩୧ରେ ଏମାନେ କଂଗ୍ରେସ ଅନୁଷ୍ଠାନର ଏକ ଅଙ୍ଗ ହୋଇଥିଲେ) । ତାଙ୍କର ପୋଷାକ ଲୁଗା ଲାଲ ରଙ୍ଗର ବୋଲି ସେମାନଙ୍କୁ ଲାଲକୁର୍ତ୍ତି ଦଳ କହୁଥିଲେ । ସେମାନଙ୍କର କାର୍ଯ୍ୟପନ୍ଥା

ଜାତୀୟତାମୂଳକ—ସେଥିରେ ଅର୍ଥନୀତି ନ ଥିଲା—ସମାଜ ସମ୍ପର୍କ ବିଷୟରେ ସେମାନେ ଆନ୍ଦୋଳନ କରୁଥିଲେ ।

ଦିଲ୍ଲୀ ଚୁକ୍ତି ଏବଂ ଗୋଲଟେବୁଲ ସମ୍ମିଳନୀ ସମ୍ବନ୍ଧରେ କରାଚୀ କଂଗ୍ରେସରେ ପ୍ରଧାନ ପ୍ରସ୍ତାବ ଗୃହୀତ ହେଲା । କାର୍ଯ୍ୟକାରୀ ସମିତି ଯେପରି ଭାବରେ ଏହା ଆଣିଥିଲା, ମୁଁ ଅବଶ୍ୟ ସେହିପରି ଏହାକୁ ଗ୍ରହଣ କରିଥିଲି, ମାତ୍ର ଏହାକୁ ସାଧାରଣ ଅଧିବେଶନରେ ଉପସ୍ଥାପିତ କରିବା ନିମନ୍ତେ ଗାନ୍ଧିଜୀ ଯେତେବେଳେ ମୋତେ କହିଲେ, ମୁଁ ଇତସ୍ତତଃ କଲି । ପ୍ରସ୍ତାବଟି ମୋର ମନମୁତାବକ ହୋଇନାହିଁ ବୋଲି ମୁଁ ପ୍ରଥମେ ଅସ୍ୱୀକାର କଲି; ମାତ୍ର ଏହା ମୋତେ ଅତ୍ୟନ୍ତ ଦୁର୍ବଳତା ଓ ଅସନ୍ତୋଷ-ଜନକ ମନୋଭାବପରି ମନେ ହେଲା । ହୁଏତ ମୁଁ ଏହା ସପକ୍ଷରେ ନହେବି କିମ୍ବା ବିରୋଧ କରିବି—ଦୋମନାରେ ପଡ଼ି ଲୋକଙ୍କୁ ଏ ସମ୍ବନ୍ଧରେ କଳ୍ପନା କରିବାକୁ ଦେବା ଠିକ୍ ନୁହେଁ । ଶେଷ ମୁହୂର୍ତ୍ତରେ ସାଧାରଣ ଅଧିବେଶନରେ ଏହା ଆଲୋଚିତ ହେବାର କେତେକ ସମୟ ପୂର୍ବରୁ ମୁଁ ଆଗତ କରିବା ନିମନ୍ତେ ସ୍ଥିର କଲି । ଏ ସମ୍ପର୍କରେ ମୋର ଭାବ ସେହି ବିରାଟ ଜନତା ଆଗରେ ମୁଁ ଉପସ୍ଥାପିତ କରିବାକୁ ଚେଷ୍ଟା କଲି । ମୁଁ ପୂର୍ଣ୍ଣଭାବରେ ସେହି ପ୍ରସ୍ତାବକୁ ଗ୍ରହଣ କଲି ଏବଂ ଏହା ଗ୍ରହଣ କରିବା ନିମନ୍ତେ ଲୋକଙ୍କୁ ନିବେଦନ କରିଥିଲି । ସେହି ମୁହୂର୍ତ୍ତର ଉତ୍ତେଜନାବେଳେ ମୋ ହୃଦୟରୁ ସେ ବକ୍ତୃତା ବାହାରି ଆସିଥିଲା । ଏଥିରେ ଅଳଙ୍କାର ବା ଶବ୍ଦ ଚାତୁରୀ ନ ଥିଲା—ମୁଁ ଏହା ଦେବା ଆଗରୁ ଚିନ୍ତା ବି କରି ନ ଥିଲି । ସମ୍ଭବତଃ ଆଗରୁ ଖୁବ ଚିନ୍ତା ଦେଉଥିବା ବକ୍ତୃତାମାନଙ୍କ ଅପେକ୍ଷା ଏହା ଭଲ ହୋଇଥିଲା ।

ଆଉ କେତେକ ପ୍ରସ୍ତାବ ପ୍ରଧାନତଃ ଭଗତସିଂ ଓ ମୌଳିକ ଦାବୀ ଏବଂ ଅର୍ଥନୈତିକ ନୀତି ସମ୍ବନ୍ଧୀୟ ପ୍ରସ୍ତାବ ବିଷୟରେ କହିଥିଲି ଦ୍ୱିତୀୟ ପ୍ରସ୍ତାବଟିରେ ମୋର ବିଶେଷ ଆଗ୍ରହ ଥିଲା; କାରଣ ଏକାଂଶରେ ଏହାର ମର୍ମ ହେତୁ ଏବଂ ଦ୍ୱିତୀୟରେ କଂଗ୍ରେସରେ ଏହା ଏକ ନୂତନ

ଦୃଷ୍ଟିକୋଣ ପ୍ରବେଶ କରାଇଥିଲେ ବୋଲି ମୋର ଆଗ୍ରହ ଥିଲା । ଏପର୍ଯ୍ୟନ୍ତ କଂଗ୍ରେସ କେବଳ ଜାତୀୟତା ଦୃଷ୍ଟିରୁ ଚିନ୍ତା କରି ଆସିଛି । ସାଧାରଣ ଭାବରେ ସ୍ୱଦେଶୀ ଏବଂ ଗ୍ରାମର ଶିଳ୍ପକୁ ଉତ୍ସାହିତ କରିବା ଛଡ଼ା ଅର୍ଥନୈତିକ ଦିଗ ପ୍ରତି ଦୃଷ୍ଟିପାତ କରି ନ ଥିଲା । କରାଚୀ ପ୍ରସ୍ତାବରେ କଂଗ୍ରେସ ସାମ୍ୟବାଦ ପଥରେ ପ୍ରଥମ ପାଦ ପକାଇ କିଛିଏ ଅଗ୍ରସର ହେଲା । ପ୍ରଧାନ ପ୍ରଧାନ ବ୍ୟବସାୟ ଓ ଲୋକହିତକର କାର୍ଯ୍ୟସବୁ ଜାତୀୟ ସମ୍ପତ୍ତି ରୂପେ ପରିଣତ କରାଯାଉ, ଗରିବ ଉପରୁ କୋଟି କମି ଧନୀଙ୍କ ଉପରେ ବୃଦ୍ଧି ପାଉ ଇତ୍ୟାଦି କଥା ସେଥିରେ ଥିଲା । ଏହା ଅବଶ୍ୟ ସାମ୍ୟବାଦ ନୁହେଁ—ଏହି ପ୍ରସ୍ତାବରେ ଥିବା ପ୍ରତ୍ୟେକ ଦାବିକୁ ଏକ ପୁଞ୍ଜିବାଦୀ ସରକାର ସହଜରେ ଗ୍ରହଣ କରିନେବ ।

ଏହି ନରମ ଓ ନୀରସ ପ୍ରସ୍ତାବରେ ସୁଦ୍ଧା ଭାରତ ସରକାରର ଉଚ୍ଚ ପାହ୍ୟାର ଲୋକଙ୍କ ମନରେ ଗୋଟିଏ ଅଦ୍ଭୁତ ଭାବ ଦେଖାଦେଲା । ସମ୍ଭବତଃ ସେମାନେ ତାଙ୍କର ପ୍ରକୃତିଗତ ଦୂରଦୃଷ୍ଟିରେ ଦେଖି ପାରିଲେ ଯେ ବଲ୍‌ସେଭିକମାନଙ୍କର ସୁନା ଆସି ଗୋପନରେ କରାଚୀରେ ପହଞ୍ଚି କଂଗ୍ରେସ୍ ନେତାମାନଙ୍କୁ ଭିଜାଇ ଦେଇଛି । ଏକପ୍ରକାର ରାଜନୀତି ଅନ୍ତରାଳରେ ରହିଥିବାରୁ, ବାହାର ଦୁନିଆରୁ ବିଚ୍ଛିନ୍ନ ହୋଇଥିବାରୁ ଏବଂ ଏକ ଗୋପନୀୟ ବାୟୁମଣ୍ଡଳରେ ପରିବେଷ୍ଟିତ ହୋଇଥିବାରୁ ସେମାନେ ସବୁବେଳେ କୌତୂହଳପୂର୍ଣ୍ଣ ଓ ଗାଲ୍‌ଗଳ୍ପ ସବୁ ଶୁଣି ବିଶ୍ୱାସ କରନ୍ତି । ଅଧିକ ମଧ୍ୟ ଶାସକମାନଙ୍କର ଅନୁଗୃହୀତ ସମ୍ବାଦପତ୍ରରେ ଏହି ଗପ ସବୁ କୌତୂହଳପୂର୍ଣ୍ଣ ଭାବରେ ପ୍ରକାଶ ପାଏ । ଏହି ଆବରଣ ହଟାଇଦେଲେ ଅନେକ ଷଡ଼ଯନ୍ତ୍ରର ସୂଚନା ମିଳିବ ବୋଲି କୁହାଯାଉଥିଲା । ଏହି ଶରାରତ ପ୍ରଥାନୁସାରେ କରାଚୀ ପ୍ରସ୍ତାବର ମୌଳିକ ଦାବୀ ସମ୍ବନ୍ଧରେ ବାରମ୍ବାର ଉଲ୍ଲେଖ କରାଯାଉଥିଲା । ମୋ ମତରେ ଏ ପ୍ରସ୍ତାବ ସମ୍ବନ୍ଧରେ ସରକାରୀ ମତ ଏହି ଲେଖାମାନଙ୍କରୁ ପ୍ରକାଶ ପାଉଥିଲା । ଗପ ଉଠିଲା ଯେ, ଜଣେ ରହସ୍ୟମୟ କମ୍ୟୁନିଷ୍ଟ ଜବାହର ଭାଇଙ୍କ ଏହି ପ୍ରସ୍ତାବ ତିଆ

କରିଥିଲି । ମାତ୍ର ଏମ୍. ଏନ୍. ରାୟଙ୍କର ଏଥିରେ ଆଦୌ କିଛି ନଥିଲା । ମୁଁ ଭଲ ରୂପେ ଜାଣିଥିଲି ଯେ, ସେ ଏହାକୁ ନାପସନ୍ଦ କରି ହସିଦେବେ ।

କରାଚୀକୁ ଆସିବାର କେତେକ ଦିନ ପୂର୍ବରୁ ଏଲାହାବାଦରେ ଏମ୍. ଏନ୍. ରାୟଙ୍କ ସହିତ ମୋର ସାକ୍ଷାତ ହୋଇଥିଲା । ସେ ହଠାତ୍ ଦିନେ ସନ୍ଧ୍ୟାବେଳେ ଆସି ଆମ ଘରେ ପହଞ୍ଚିଲେ । ସେ ଭାରତରେ ଅଛନ୍ତି ବୋଲି ମୋର ଧାରଣା ନ ଥିଲେ ସୁଦ୍ଧା ମୁଁ ତାଙ୍କୁ ଦେଖି ହଠାତ୍ ଚମକିଗଲି । ୧୯୨୭ ମସିହାରେ ମସ୍କୋରେ ତାଙ୍କ ସହିତ ସାକ୍ଷାତ୍ ହୋଇଥିଲା । କରାଚୀରେ ମଧ୍ୟ ସେ ମୋ ସହିତ ଦେଖା କରିଥିଲେ, ମାତ୍ର ତାହା ପାଞ୍ଚମିନିଟ ପାଇଁ ହୋଇଥିଲା । ଗତ କେତେକ ବର୍ଷ ହେଲା ରାୟ ମୋର ରାଜନୀତିକ ମତର ନିନ୍ଦା କରି ଅନେକ ଲେଖା ପ୍ରକାଶ କରିଥିଲେ ଏବଂ ସେଥିରେ ମୁଁ ଟିକିଏ ଆଘାତ ପାଇଥିଲି । ଆମ ଭିତରେ ଅନେକ ପାର୍ଥକ୍ୟ ଥିଲା, ତଥାପି ମୁଁ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲି । ପରେ ସେ ଯେତେବେଳେ ଗିରଫ ହୋଇ-ହଇରାଣରେ ପଡ଼ିଲେ, ସେତେବେଳେ ମୋ ପକ୍ଷରେ ଯଥା ସାମାନ୍ୟ ସମ୍ଭବ ସାହାଯ୍ୟ ମୁଁ କରିଥିଲି (ମାତ୍ର ଏହା ଅତିତୁଚ୍ଛ କହିଲେ ଚଳେ) ତାଙ୍କର ତୀକ୍ଷ୍ଣ ବିଚକ୍ଷଣତା ଦେଖି ମୁଁ ଆକୃଷ୍ଟ ହୋଇଥିଲି — ଆଉ ଏକ କାରଣ ହେଉଛି; ସେ ଏପରି ନିଃସଙ୍ଗଭାବରେ ଜୀବନଯାପନ କରୁଥିଲେ — ପ୍ରତ୍ୟେକ ଲୋକ ତାଙ୍କୁ ଛାଡ଼ି ଦେଇଥିଲେ । ବ୍ରିଟିଶ ସରକାର ତାଙ୍କ ପଛରେ ଲାଗିବା ତ ସ୍ୱାଭାବିକ, ଜାତୀୟ ଭାରତ ମଧ୍ୟ ତାଙ୍କଠାରେ କିଛି ଆଗ୍ରହ ପ୍ରକାଶ କରୁ ନ ଥିଲା । ଯେଉଁମାନେ ଭାରତରେ ନିଜକୁ କମ୍ୟୁନିଷ୍ଟ ବୋଲି କହୁଥିଲେ, ସେମାନେ ମଧ୍ୟ ତାଙ୍କୁ ବିଶ୍ୱାସଘାତକ ବୋଲି କହୁଥିଲେ । ମୁଁ ଜାଣିଥିଲି ଯେ ଉପରେ ଅନେକ ବର୍ଷ ରହି ଏବଂ କମିଣ୍ଟର୍ଣ୍ଣ ସହିତ ଘନିଷ୍ଠ ସମ୍ପର୍କରେ ଆସି ସୁଦ୍ଧା ତାଙ୍କଠାରୁ ସମ୍ବନ୍ଧ ତୁଟିଥିଲା ସମ୍ଭବତଃ ସମ୍ପର୍କ ତୁଟାଇବାକୁ ପଡ଼ିଥିଲା । ଏହା କାହିଁକି ହେଲା ମୁଁ ଜାଣି ନଥିଲି । ଏବେ ସୁଦ୍ଧା ତାଙ୍କର ମତ କଣ ଏବଂ ଉନ୍ନତିଶୀଳ କମ୍ୟୁନିଷ୍ଟ ସହିତ ତାଙ୍କର

କାହିଁକି ମତଭେଦ ହୋଇଛି ଏ ସମ୍ବନ୍ଧରେ ମୋତେ ଭଲରୂପେ ଜଣା ନାହିଁ। ମାତ୍ର ତାଙ୍କ ପରି ଜଣେ ଲୋକଙ୍କୁ ଏପରି ସମୟରେ ଛାଡ଼ି ଦେଇଥିବାରୁ ମୋ ମନରେ କଷ୍ଟ ହୋଇଥିଲା—ମୋର ସାଧାରଣ ପ୍ରକୃତି ସତ୍ତ୍ୱରେ ମଧ୍ୟ ମୁଁ ତାଙ୍କ ମକଦ୍ଦମା ଲଢ଼ିବା କମିଟିରେ ଯୋଗ ଦେଇଥିଲି। ୧୯୩୧ ମସିହା ଗ୍ରୀଷ୍ମ ଋତୁଠାରୁ ପ୍ରାୟ ତିନି ବର୍ଷରୁ ଅଧିକ ହେବ ସେ ଜେଲଖାନାରେ ଅଛନ୍ତି—ତାଙ୍କ ଦେହ ଭଲ ନାହିଁ—ଏକପ୍ରକାର ନିର୍ଜନ କାରାବାସ ହେଉଛନ୍ତି।

ନୂଆ କାର୍ଯ୍ୟକାରୀ ସମିତି ନିର୍ବାଚନ କରାଚୀ କଂଗ୍ରେସ ଅଧିବେଶନର ଶେଷ କାର୍ଯ୍ୟ ଥିଲା। ନିଖିଳ ଭାରତ କଂଗ୍ରେସ କମିଟି ତାହା ନିର୍ବାଚନ କରୁଥିଲା, ମାତ୍ର ସାଧାରଣତଃ ସେହି ବର୍ଷର ସଭାପତିଙ୍କ ମନୋନୀତ ସଭ୍ୟଙ୍କୁ (ଗାନ୍ଧିଜୀଙ୍କ ପରାମର୍ଶ ଓ ସମୟ ସମୟରେ ଅନ୍ୟ ସହକର୍ମୀଙ୍କ ସହିତ କଥାବାର୍ତ୍ତା କରି ସେ କରୁଥିଲେ) ସାଧାରଣତଃ ନିଖିଳ ଭାରତ କଂଗ୍ରେସ କମିଟି ଗ୍ରହଣ କରିବା ଗୋଟାଏ ରୀତି ହୋଇ ଆସିଥିଲା। କରାଚୀରେ କାର୍ଯ୍ୟକାରୀ ସମିତି ନିର୍ବାଚନରେ ଏକ ଅସୁନ୍ଦର ଘଟଣା ଘଟିଲା। ଏପରି ଘଟିବ ବୋଲି ଆମେ କେହି ଆଗରୁ ଆଶା କରି ନଥିଲୁ। ନିଖିଳ ଭାରତ କଂଗ୍ରେସ କମିଟିର କେତେକ ମୁସଲମାନ ସଭ୍ୟ ଏଥିରେ ଥିବା ଜଣେ ମୁସଲମାନ ସଭ୍ୟଙ୍କ ନାମକୁ ଆପତ୍ତି କଲେ। ସେମାନଙ୍କ ଦଳ ଭିତରୁ କାହାରିକୁ ନିଆଯାଇ ନଥିବାରୁ ସେମାନେ ମଧ୍ୟ ଟିକଏ ଅପମାନ ବୋଧ କରିଥିଲେ। ପନ୍ଦରଜଣିଆ ନିଖିଳ ଭାରତ କମିଟିରେ ସବୁ ସ୍ୱାର୍ଥର ପ୍ରତିନିଧି ଦେବା ଅସମ୍ଭବ ଥିଲା—ବର୍ତ୍ତମାନ ଯେଉଁ ବିବାଦ ହେଲା ଏ ସମ୍ବନ୍ଧରେ ଆମେ କିଛି ଜାଣି ନଥିଲୁ—ଏ ସମ୍ପୂର୍ଣ୍ଣ ରୂପେ ବ୍ୟକ୍ତିଗତ ଓ ପଞ୍ଜାବର ସ୍ଥାନୀୟ କଳହରୁ ଜାତ। ଏହା ଫଳରେ ପ୍ରତିବାଦ କରୁଥିବା ଲୋକ ଅଳ୍ପେ ଅଳ୍ପେ କଂଗ୍ରେସରୁ ଅଲଗା ହୋଇଯାଇ 'ଅହରର ଦଳ' ବା 'ମଜ୍‌ଲିସ୍ ଅହରର'ରେ ଯୋଗ ଦେଲେ। ପଞ୍ଜାବର କେତେକ କର୍ମକୁଶଳ ଏବଂ ଲୋକପ୍ରିୟ ମୁସଲମାନ କଂଗ୍ରେସକର୍ମୀ ଏଥିରେ ଯୋଗ ଦେଲେ ଓ ଅନେକ ସଂଖ୍ୟକ ପଞ୍ଜାବୀ ମୁସଲମାନ ଏଥିରେ ଯୋଗ

ହେଲେ । ପ୍ରଧାନତଃ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଏହା ପ୍ରତିନିଧିତ୍ୱ କରୁଥିଲା ଏବଂ ମୁସଲମାନ ଜନସାଧାରଣଙ୍କ ସହ ସେମାନଙ୍କର ଖୁବ ସମ୍ପର୍କ ଥିଲା । ଏହିରୂପେ ଏହା ଖୁବ ଶକ୍ତିଶାଳୀ ଅନୁଷ୍ଠାନ ହୋଇଗଲା । ଉପର ଶ୍ରେଣୀର ଅକର୍ମଣ୍ୟ ସାମ୍ପ୍ରଦାୟିକ ଅନୁଷ୍ଠାନ ଯାହା କେବଳ କାଗଜରେ ଥିଲା ଅଥବା କେବଳ ବୈଠକଖାନା ଓ କମିଟି ଘରେ କାର୍ଯ୍ୟ କରୁଥିଲା । ତାହା ଅପେକ୍ଷା ଏହା ଅଧିକ ଶକ୍ତିଶାଳୀ ହୋଇ ଉଠିଲା । ଅହରାରମାନେ କ୍ରମେ ସାମ୍ପ୍ରଦାୟିକତା ଆଡ଼କୁ ଗତି କଲେ, ମାତ୍ର ଜନସାଧାରଣଙ୍କ ସହ ସେମାନଙ୍କର ସମ୍ପର୍କ ଯୋଗୁଁ ଅସ୍ପଷ୍ଟ ଭାବରେ ଅର୍ଥନୈତିକ ଦୃଷ୍ଟିକୋଣ ମଧ୍ୟ ତାଙ୍କର ଥିଲା । ପରେ ଦେଶୀୟ ରାଜ୍ୟ ବିଶେଷତଃ କାଶ୍ମୀର ରାଜ୍ୟରେ ମୁସଲମାନ ଆନ୍ଦୋଳନରେ ସେମାନେ ଖୁବ ଭାଗ ନେଇଥିଲେ—ସେଠାରେ ଅର୍ଥନୈତିକ ଦୁଃଖ ଏବଂ ସାମ୍ପ୍ରଦାୟିକତା ବଡ଼ ଦୁର୍ଭାଗ୍ୟବଶତଃ ଅଦ୍ଭୁତରୂପେ ଏକତ୍ର ହୋଇଗଲା । ଅହରାର ଦଳର କେତେକ ନେତା କଂଗ୍ରେସରୁ ଚାଲିଯିବା ଦ୍ୱାରା ପଞ୍ଜାବ କଂଗ୍ରେସର ଘୋର କ୍ଷତି ହୋଇଥିଲା । ମାତ୍ର ଆମେ କରାଚୀରେ ଏହା ଜାଣି ନଥିଲୁ । ପରେ ଆମେ କ୍ରମେ ତାହା ବୁଝି ପାରିଥିଲୁ । କଂଗ୍ରେସ କାର୍ଯ୍ୟକାରୀ ସମିତି ନିର୍ବାଚନରେ ଅସନ୍ତୋଷ ଯୋଗୁଁ ଅବଶ୍ୟ ଏହା ଘଟିନଥିଲା । ଖସିଯିବାର ଏହା ଏକ ଛଳନା—ଏହାର କାରଣ ଅନ୍ତର ଭିତରେ ।

ଆମେ କରାଚୀରେ ଥିଲାବେଳେ କାନପୁରରେ ହିନ୍ଦୁ ମୁସଲମାନ ଦଙ୍ଗା ସମ୍ବାଦ ପାଇଲୁ—ତାପରେ ଏକ ଉନ୍ମତ୍ତ ଜନତାକୁ ସାହାଯ୍ୟ କରିବାକୁ ଯାଉଥିବା ଗଣେଶ ଶଙ୍କର ବିଦ୍ୟାର୍ଥୀଙ୍କ ହତ୍ୟା ସମ୍ବାଦ ମଧ୍ୟ ପାଇଲୁ । ଏପରି ଭୀଷଣ ଓ ଅମାନୁଷିକ ଦଙ୍ଗା ଗୋଟିଏ ଖରାପ କଥା—ମାତ୍ର ଗଣେଶଜୀଙ୍କ ମୃତ୍ୟୁ ଆମକୁ ଏହାର ଭୀଷଣତା ଅଧିକ ଦର୍ଶାଇ ଦେଲା । କଂଗ୍ରେସ ଶିବିରରେ ହଜାର ହଜାର ଲୋକ ତାଙ୍କୁ ଜାଣନ୍ତି—ମୁକ୍ତପ୍ରଦେଶର ସମସ୍ତଙ୍କର ସେ ଏକ ପ୍ରିୟ ସହକର୍ମୀ ଓ ବନ୍ଧୁ ଥିଲେ । ସାହସୀ ଏବଂ ନିର୍ଭୀକ, ଦୂରଦୃଷ୍ଟି ସମ୍ପନ୍ନ, ସୁପରାମର୍ଶଦାତା, କେତେ-

ହେଲେ - ତାହାଙ୍କ ହୃଦ୍‌ଯନ୍ତ୍ର ନାହିଁ — ଶେଷରେ ନିଜର କାର୍ଯ୍ୟ ଭଲ ସାଧାନ୍ତି । ବାହାରେ ନଜର ପ୍ରକୃତ ଭାଷା କ୍ରୈଶପ ଅଫିସ ପ୍ରତ୍ୟାଶୀ ହେଇ ନ ଥିଲେ । ସେ ତାଙ୍କର ମୃତ୍ୟୁର ଉଦ୍ଘାଟନାରେ ଏକ ମହତ୍ତ୍ୱ ଉଦ୍ଦେଶ୍ୟରେ ସେବା ନିମନ୍ତେ ନିଜର ଜୀବନ ସ୍ୱେଚ୍ଛାରେ ଅର୍ପଣ କଲେ — ମାତ୍ର ଅବୋଧ୍ୟ ଜନତା ତାଙ୍କୁ ମାରି ପକାଇଲେ—କାନପୁର ଓ ମୁକ୍ତପ୍ରଦେଶ ଏକ ଉତ୍କଳ ମଣି ହରାଇଲା । ଏହି ସମ୍ବାଦ ପହଞ୍ଚିଲା ମାତ୍ରେ ମୁକ୍ତପ୍ରଦେଶ ଶିଖରରେ ଏକ ଶୋକଛାୟା ଘୋଟିଗଲା, ଯେପରିକି ଗୌରବ ରବି ଅସ୍ତ ହୋଇ ଯାଇଛି । ସେ ଅକୁଣ୍ଠିତ ଭାବରେ ମୃତ୍ୟୁର ସମ୍ମୁଖୀନ ହୋଇଥିଲେ ଏବଂ ଏପରି ଗୌରବମୟ ମୃତ୍ୟୁ ତାଙ୍କର ହୋଇଛି ଏହା ଭାବି ମନରେ ଗର୍ବ ଅନୁଭବ କରୁଥିଲି ।

---

## ଦକ୍ଷିଣରେ ବିଶ୍ରାମ

ମୋ ଡାକ୍ତରମାନେ ମୋତେ ବିଶ୍ରାମ ନେବାପାଇଁ ଏବଂ ବାୟୁ ପରିବର୍ତ୍ତନ ଲାଗି ପରାମର୍ଶ ଦେଲେ । ମୁଁ ସିଲୋନରେ ଏକମାସ କଟାଇବା ସ୍ଥିର କଲି । ଭାରତ ପରି ବିଶାଳ ଦେଶରେ ମୁଁ ଯେଉଁ ସ୍ଥାନକୁ ଯାଏ, ପ୍ରକୃତରେ ପରିବର୍ତ୍ତନ ବା ମାନସିକ ଶାନ୍ତି ପାଇବାର ସୁବିଧା ନ ଥିଲା । ସବୁ ସ୍ଥାନରେ ରାଜନୈତିକ ସହକର୍ମୀମାନଙ୍କ ସହିତ ସାକ୍ଷାତ ହେବ ଏବଂ ସେହି ସବୁ ସମସ୍ୟାକୁ ମୋ ପଛରେ ଲାଗି ରହିବ। ସିଲୋନ ଭାରତର ନିକଟବର୍ତ୍ତୀ — ସୁତରାଂ କମଳା ଓ ଇନ୍ଦିରାଙ୍କୁ ନେଇ ମୁଁ ସିଲୋନ ଗଲି । ୧୯୨୭ରେ ଇଉରୋପରୁ ଫେରିଲା ପରେ ପ୍ରଥମଥର ପାଇଁ ମୁଁ ଅବକାଶରେ ଗଲି—କାର୍ଯ୍ୟରୁ ଟିକିଏ ଅଲଗା ରହି ମୁଁ ମୋର ସ୍ତ୍ରୀ ଓ ଝିଅଙ୍କ ସହିତ ଶାନ୍ତିପୂର୍ଣ୍ଣ ଭାବରେ ଜୀବନରେ ଏହି ପ୍ରଥମ ଥର ବିଶ୍ରାମ ପାଇଁ ଗଲି । ଆଉ ସେପରି ସୁବିଧା ହୋଇନାହିଁ—ଜୀବନରେ ଆଉ ସେପରି ହେବ କି ନା ସନ୍ଦେହ ।

ତଥାପି ଆମେ ପ୍ରକୃତରେ ସିଲୋନରେ ଅଧିକ ବିଶ୍ରାମ ପାଇଲୁ ନାହିଁ—କେବଳ ନୁଆ ଆର ଇଲିଆରେ ଦୁଇ ସପ୍ତାହ କଟାଇଲୁ । ସେଠାରେ ସବୁ ଶ୍ରେଣୀର ଲୋକଙ୍କର ଆତିଥ୍ୟ ଓ ବନ୍ଧୁତାରେ ଆମେ ଅଭିଭୂତ ହୋଇଗଲୁ । ସମସ୍ତଙ୍କର ଏପରି ସଦିଚ୍ଛା ପାଇବା ଆନନ୍ଦଦାୟକ, ମାତ୍ର ଅନେକ ସମୟରେ ତାହା ବିରକ୍ତିକର ମଧ୍ୟ । ନୁଆରା ଇଲିୟାରେ ଦଳ ଦଳ ହୋଇ ଶ୍ରମିକ ଓ ଚା ବଗିଚା କୁଲି ଏବଂ ଅନ୍ୟମାନେ ପ୍ରତିଦିନ ଅନେକ ଦୂର ଚାଲି ଚାଲି ଆସି ପହଞ୍ଚନ୍ତି—ସେମାନେ ଆମକୁ ବଣଫୁଲ, ପନିପରିବା ଏବଂ ନିଜ ଘର ତିଆରି ଲହୁଣି ଇତ୍ୟାଦି ଅନେକ ଜିନିଷ ଉପହାର ଦିଅନ୍ତି । ଆମେ ସେମାନଙ୍କ ସହିତ କଥାବାର୍ତ୍ତା କରିପାରୁ ନଥିଲୁ; କେବଳ ପରସ୍ପର ପ୍ରତି ଦୃଷ୍ଟିପାତ କରି ହସି ଦେଉଥିଲୁ । ସେ ଗରିବ ଲୋକଙ୍କ ଦାନରେ ଆମର ଛୋଟ ଘରଟି ପୂର୍ଣ୍ଣ ହୋଇଥିଲା ଏବଂ ଆମେ ଏସବୁ ସ୍ଥାନୀୟ ହାସପାତାଳ ଓ ଅନାଥାଶ୍ରମକୁ ପଠାଇ ଦେଉଥିଲୁ ।

ଆମେ ସେ ଦ୍ୱୀପର ଅନେକ ମନୋରମ ଦୃଶ୍ୟ, ଐତିହାସିକ ଭଗ୍ନାବଶେଷ, ବୌଦ୍ଧ ବିହାର ଏବଂ ସୁନ୍ଦର ଅରଣ୍ୟ ସବୁ ଦେଖିଲୁ । ଅନୁରାଧାପୁରରେ ବୁଦ୍ଧଙ୍କ ଏକ ପୁରୁଣା ମୂର୍ତ୍ତି ଦେଖି ମୋତେ ଅତ୍ୟନ୍ତ ଭଲ ଲାଗିଲା । ବର୍ଷକ ପରେ ମୁଁ ଡେରାଡୁନ ଜେଲରେ ଥିବାବେଳେ ସିଲୋନର ଜଣେ ବନ୍ଧୁ ଏହି ମୂର୍ତ୍ତିର ଏକ ଛବି ମୋ ପାଖକୁ ପଠାଇ ଦେଇଥିଲେ । ମୁଁ ତାକୁ ମୋ ସେଲର ଛୋଟ ଟେବୁଲ ଉପରେ ରଖିଥିଲି । ଏହା ମୋର ଏକ ଅମୂଲ୍ୟ ସାଥି ହେଲା—ବୁଦ୍ଧଙ୍କର ଶକ୍ତିଶାଳୀ ଓ ଶାନ୍ତ ଆକୃତି ଦେଖି ମୁଁ ଶାନ୍ତି ଅନୁଭବ କଲି ଏବଂ ଏହା ମୋତେ ବଳ ଦେଇଛି ଏବଂ ନିରାଶ ସମୟରେ ଏହା ମୋତେ ଖୁବ୍ ସାହାଯ୍ୟ କରିଛି ।

ବୁଦ୍ଧଙ୍କ ପ୍ରତି ମୁଁ ସର୍ବଦା ବଡ଼ ଅନୁରାଗୀ । ମୋର ଅନୁରାଗର କାରଣ ବୁଝିପାରିବା କଷ୍ଟକର; ମାତ୍ର ଏହା ଧର୍ମଯୋଗୁଁ ନୁହେଁ ଏବଂ ବୌଦ୍ଧ ଧର୍ମର ଗୁଣ ଉପରେ ଯେଉଁ ସବୁ ଅନୁଶାସନ ଗଢ଼ି ଉଠିଛି,



ଶ୍ରୀମତୀ ଇନ୍ଦିରା ପ୍ରିୟଦର୍ଶିନୀ

ସେଥିରେ ମୋର କିଛି ଆପତ୍ତି ନାହିଁ । ତାଙ୍କର ବ୍ୟକ୍ତିତ୍ୱ ହିଁ ମୋତେ ଆକର୍ଷଣ କରୁଛି । ସେହିପରି ଯୀଶୁଙ୍କ ବ୍ୟକ୍ତିତ୍ୱ ମଧ୍ୟ ମୋତେ ଅନେକ ପରିମାଣରେ ଆକୃଷ୍ଟ କରିଅଛି ।

ବୌଦ୍ଧବିହାର ଓ ପାହାଡ଼ମାନଙ୍କରେ ଅନେକ ବୌଦ୍ଧ ଭିକ୍ଷୁଙ୍କ ସହିତ ମୋର ସାକ୍ଷାତ୍ ହେଲା ଏବଂ ସେମାନେ ଯେଉଁଠିକି ଯାଆନ୍ତି ସମ୍ମାନ ଲାଭ କରନ୍ତି । ସେମାନଙ୍କର ପ୍ରତ୍ୟେକଙ୍କର ମୁହଁରେ ପ୍ରାୟ ଧୀର ଓ ଶାନ୍ତଭାବର ଆଭାସ ଫୁଟି ଉଠେ—ସଂସାରର କ୍ରିୟାକଳାପରୁ ସେମାନେ ଅନାସକ୍ତ ଭାବରେ ଥାଆନ୍ତି । ଏମାନଙ୍କ ମୁଖରେ ଦୁଃଖର ଚିହ୍ନ ନାହିଁ—ସେମାନଙ୍କ ଚେହେରାରେ କୌଣସି ମାନସିକ ଦ୍ୱନ୍ଦ୍ୱ ଦେଖାଯାଏ ନାହିଁ । ନଦୀ ମନ୍ଥର-ଗତିରେ ସ୍ୱଚ୍ଛନ୍ଦରେ ବହିଯାଇ ସମୁଦ୍ରକୁ ଗତି କଲାପରି ସେମାନଙ୍କ ଜୀବନ ପ୍ରବାହିତ ହୋଇଯାଉଛି । ସେମାନଙ୍କୁ ଦେଖି ମୋର ଟିକିଏ ଈର୍ଷା ହେଲା ଏହିପରି ଶାନ୍ତି ପାଇବା ଲାଗି ବ୍ୟାକୁଳତା ହୁଏ । ମାତ୍ର ମୁଁ ଭଲରୂପେ ଜାଣେ ଯେ, ମୋର କପାଳ ସମୁଦ୍ର ପରି—ଝଡ଼ ଓ ତରଙ୍ଗ ମାଳାରେ ଏହା ଗଠିତ । ମୋ ଜୀବନରେ ଶାନ୍ତି ନାହିଁ—କାରଣ ମୋ ଭିତରେ ଠିକ୍ ତାହାର ପରି ଝଡ଼ ଲାଗି ରହିଛି । ଭାଗ୍ୟବଶତଃ ମୁଁ ବାୟୁର ପ୍ରଚଣ୍ଡତାରୁ ରକ୍ଷା ଲାଗି କୌଣସି ଉତ୍ତମ ବନ୍ଦରରେ ନିରାପଦରେ ରହିଲେ ମଧ୍ୟ ସେଠାରେ ମୁଁ ସୁଖ ଓ ଶାନ୍ତି ପାଇ ପାରିବି କି ?

କିଛିକ୍ଷଣ ପାଇଁ ସେହି ବନ୍ଦର ଆରାମଦାୟକ ହୋଇଥିଲା । ସେଠାରେ ଜଣେ ସ୍ୱଚ୍ଛନ୍ଦରେ ବିଶ୍ରାମ କରି ସ୍ୱପ୍ନ ଦେଖିପାରେ; ପ୍ରକୃତିର ମନୋରମ ଦୃଶ୍ୟରେ ନିଜକୁ ଭୁଲିଯାଏ । ମୋର ପ୍ରକୃତି ଅନୁସାରେ ସିଲୋନ ମୋର ପସନ୍ଦ ହେଲା ଏବଂ ସେହି ଦ୍ୱୀପର ସୌନ୍ଦର୍ଯ୍ୟରେ ମୋର ମନ ଆନନ୍ଦରେ ଭରି ହୋଇଗଲା । ଅତିଶୀଘ୍ର ଏକମାସ ବିତିଗଲା—ଆମେ ବଡ଼ ମନଦୁଃଖରେ ଫେରିଲୁ । ଏହିରୂପେ ସେହି ଦ୍ୱୀପ ଓ ସେଠା ଅଧିବାସୀଙ୍କର ଅନେକ ସ୍ମୃତି ମୋ ମନରେ ଜାଗି ଉଠିଛି—କାରାଗାରର ଦ୍ୱନ୍ଦ୍ୱ ଓ ଶୂନ୍ୟ ଜୀବନରେ ଏହି ସ୍ମୃତି ଆନନ୍ଦପ୍ରଦ ସାଥୀ ହୋଇଛି । ଏକ ଶ୍ରେଷ୍ଠ ଘଟଣା ମୋ

ଯେଉଁ ଟିକକ ନାଗରିକ ସ୍ୱାଧୀନତା ଏବଂ ରାଜନୈତିକ କାର୍ଯ୍ୟର ସୁବିଧା ଟ୍ରାଭାଙ୍କୋର ଓ ମହୀଶୂରରେ ଥିଲା ତାହା ପରେ ପ୍ରତ୍ୟାହାର କରାଯାଇଛି ।

ମହୀଶୂର ରାଜ୍ୟର ବାଙ୍ଗାଲୋରଠାରେ ଏକ ବିରାଟ ଜନତା ସମ୍ମୁଖରେ ଏକ ନିର୍ଦ୍ଦିଷ୍ଟ ଲୌହସ୍ତମ୍ଭ ଉପରେ ମୁଁ ଜାତୀୟ ପତାକା ଉତ୍ତୋଳନ କରିଥିଲି । ମୋର ଆସିବାର ଅଳ୍ପଦିନ ପରେ ମହୀଶୂର ସରକାର ଏହି ଲୌହସ୍ତମ୍ଭକୁ ଟିକି ଟିକି କରି ଭାଙ୍ଗି ପକାଇଲେ ଏବଂ ପତାକା ଉଡ଼ାଇବା ଏକ ଅପରାଧ ହୋଇଗଲା । ମୁଁ ଯେଉଁ ପତାକା ଉତ୍ତୋଳନ କରିଥିଲି, ତାହା ପ୍ରତି ଏପରି ଅପମାନ ଓ ଖରାପ ବ୍ୟବହାର ଦେଖି ମୁଁ ଅତ୍ୟନ୍ତ ବ୍ୟଥିତ ହେଲି ।

ଏପରିକି ଆଜିକାଲି ଟ୍ରାଭାଙ୍କୋରରେ କଂଗ୍ରେସ ମଧ୍ୟ ବେଆଇନ ଅନୁଷ୍ଠାନ ହୋଇଛି—କେହି ସାଧାରଣ ସଭ୍ୟ ଏଠାରେ ସଂଗ୍ରହ କରିପାରିବେ ନାହିଁ । ଅଥଚ ବ୍ରିଟିଶ ଭାରତରେ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହାର ପରେ ଏହା ଆଇନସଙ୍ଗତ ହୋଇଛି । ଏହିପରି ମହୀଶୂର ଓ ଟ୍ରାଭାଙ୍କୋର ଉଭୟ ରାଜ୍ୟ ଶାନ୍ତିପୂର୍ଣ୍ଣ ରାଜନୈତିକ କାର୍ଯ୍ୟ ଦମନ କରି ଦେଇଛନ୍ତି ଏବଂ ଆଗେ ଯାହା ଟିକିଏ ସୁବିଧା ଦେଉଥିଲେ, ତାହା କାଢ଼ି ନେଇଛନ୍ତି । ସେମାନେ ପଛକୁ ଗତି କରିଛନ୍ତି । ହାଇଦ୍ରାବାଦର ପଛକୁ ଯିବା ବା ସୁବିଧା କାଢ଼ିନେବା ଦରକାର ପଡ଼ିନାହିଁ—କାରଣ ଏହା କେବେ ଅଗ୍ରସର ହୋଇ ନାହିଁ କିମ୍ବା କୌଣସି ସୁବିଧା ଦେଇ ନାହିଁ । ରାଜନୈତିକ ସଭା କରିବା ହାଇଦ୍ରାବାଦରେ ଜଣା ନାହିଁ—ଏପରିକି ସାମାଜିକ ଓ ଧର୍ମ ସଭାକୁ ମଧ୍ୟ ସନ୍ଦେହ ଦୃଷ୍ଟିରେ ଦେଖାଯାଏ—ଏଥିପାଇଁ ବିଶେଷ ଅନୁମତି ଆବଶ୍ୟକ ପଡ଼େ । ଏଠାରେ ସେପରି ଉଲ୍ଲେଖଯୋଗ୍ୟ କୌଣସି ସମ୍ବାଦପତ୍ର ପ୍ରକାଶ ପାଏ ନାହିଁ ଏବଂ ଭାରତର ଅନ୍ୟାନ୍ୟ ଅଞ୍ଚଳର ସମ୍ବାଦପତ୍ର ପ୍ରବେଶଦ୍ୱାର ଦୂଷିତ ବାଜ ପ୍ରବେଶ କରିବାରେ

ବାଧା ଦେବା ପାଇଁ ଏଠାରେ ଅନ୍ୟ ସମ୍ପ୍ରଦାୟର ପ୍ରବେଶ ନିଷେଧ କରା-ଯାଇଛି । ଏହି ଆଦେଶ ଏତେ କଠିନ ଯେ ମନ୍ଦିରରେ ସମ୍ପ୍ରଦାୟ ମଧ୍ୟ ଯାଇପାରେ ନା ।

କୋଚିନରେ ଆମେ "ଧଳା ଇହୁଦୀ"ଙ୍କର ଅଞ୍ଚଳ ଦେଖିଲୁ— ସେମାନଙ୍କ ପ୍ରାଚୀନ ମନ୍ଦିରରେ ପ୍ରାର୍ଥନାବି ମଧ୍ୟ ଦେଖିଲୁ । ଏହି କ୍ଷୁଦ୍ର ଜାତି ଅତି ପୁରାତନ ଏବଂ ଏହାର ବିଶେଷତ୍ୱ ରହିଛି । ଏହାର ସଂଖ୍ୟା କମେ କମିଯାଉଛି । ସେମାନେ କୋଚିନର ଯେଉଁ ଅଞ୍ଚଳରେ ବାସ କରୁଥିଲେ, ତାହା ସହିତ ପ୍ରାଚୀନ ଜେରୁଜେଲମର ସାମଞ୍ଜସ୍ୟ ଥିଲା । ତାହା ପୁରାତନ ବୋଲି ଦେଖିଲେ ଜଣାପଡ଼େ ।

ମାଲବାରର କେତୋଟି ସହରରେ ସିରୀୟାନ ଖ୍ରୀଷ୍ଟିୟାନମାନେ ବହୁ ସଂଖ୍ୟାରେ ବାସ କରୁଥିବାର ଆମେ ଦେଖିଲୁ । ଖ୍ରୀଷ୍ଟଙ୍କ ପରେ ପ୍ରଥମ ଶତାବ୍ଦୀରେ ଇଉରୋପ ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ପୂର୍ବରୁ ଯେ ଖ୍ରୀଷ୍ଟଧର୍ମ ଭାରତକୁ ଆସିଥିଲା ଏବଂ ଦକ୍ଷିଣ ଭାରତରେ ଏକ ଅଞ୍ଚଳରେ ପ୍ରାଧାନ୍ୟ ଲାଭ କରିଥିଲା, ତାହା ଅଳ୍ପ ଲୋକଙ୍କୁ ଜଣା ଅଛି । ଏମାନେ ଧର୍ମଗୁରୁ ସିରୀଆର ଆଣ୍ଟିୟୋକ ନାମକ ସ୍ଥାନକୁ ବା ଅନ୍ୟ କେଉଁଠି ଅଛି ବୋଲି ମାନୁଥିଲେ ଯେଉଁ ଏମାନଙ୍କର ଖ୍ରୀଷ୍ଟଧର୍ମ କାର୍ଯ୍ୟତଃ ସ୍ଥାନୀୟ ଏବଂ ବାହାର ସହିତ ସମ୍ପର୍କ ନ ଥାଏ ।

ଦକ୍ଷିଣରେ ନେଷ୍ଟୋରିଅନମାନଙ୍କ ବସତି ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ମୁଁ ତାଙ୍କ ବିଶପଙ୍କଠାରୁ ଶୁଣିଲି ଯେ ଏମାନଙ୍କ ସଂଖ୍ୟା ଦଶ ହଜାର ହେବ । ମୋର ଗୋଟାଏ ଧାରଣା ଥିଲା ଯେ; ନେଷ୍ଟୋରିୟାନମାନେ ଅନ୍ୟ ଜାତିରେ ମିଶି ଯାଇଛନ୍ତି—ସେମାନେ ଭାରତରେ ଅଛି ରହିଛନ୍ତି ମୋର ଧାରଣା ନ ଥିଲା । ମୁଁ ଶୁଣିଲି ଯେ, ଭାରତରେ ଅନେକେ ସେ ଧର୍ମରେ ଦୀକ୍ଷିତ ହୋଇଥିଲେ – ଏପରିକି ଉତ୍ତରରେ ବନାରସ ପର୍ଯ୍ୟନ୍ତ ସେମାନେ ବ୍ୟାପିଥିଲେ ।

ଆମେ ସରୋଜିନୀ ନାଇଡ଼ୁ, ତାଙ୍କର ଝିଅ ପଦ୍ମଜା ଓ ଲୀଲାମଣିଙ୍କ ସହିତ ସାକ୍ଷାତ କରିବା ନିମନ୍ତେ ବିଶେଷ ଭାବରେ ହାଇଦ୍ରାବାଦ ଗଲୁ । ଆମେ ସେଠାରେ ଥିଲାବେଳେ ପର୍ଦ୍ଦା ମାନୁଥିବା କେତେକ ସ୍ତ୍ରୀଲୋକ ତାଙ୍କ ଘରେ ମୋ ସ୍ତ୍ରୀକୁ ଦେଖିବାକୁ ଜମାହେଲେ ଏବଂ କମଳା ସେମାନଙ୍କୁ କେତେକ କଥା କହିଥିଲା । ସମ୍ଭବତଃ ପୁରୁଷ ଗଢ଼ିଥିବା ନିୟମ ଓ ରୀତିରୁ ମୁକ୍ତି ପାଇଁ ସଂଗ୍ରାମ ଚଳାଇବାର ସ୍ତ୍ରୀଲୋକର ଦାବୀ ସମ୍ବନ୍ଧରେ ସେ କହିଥିଲା (ଏହା ତାର ପ୍ରିୟ ଆଲୋଚ୍ୟ ବିଷୟ) ଏବଂ ପୁରୁଷଙ୍କର ବେଶି ବଶୀଭୂତ ନ ହେବା ନିମନ୍ତେ ନାରୀମାନଙ୍କୁ ନିବେଦନ କଲା । ଦୁଇ ତିନି ସପ୍ତାହ ପରେ ଏହି ବକ୍ତୃତା ହେତୁ ଏକ ମଜାର ଘଟଣା ଘଟିଲା—ଜଣେ ବିଭ୍ରାନ୍ତ ସ୍ୱାମୀ କମଳା ନିକଟକୁ ହାଇଦ୍ରାବାଦରୁ ଏକ ଚିଠି ଲେଖିଲେ ଯେ, "ଆପଣ ଆସିବା ପର ଦିନଠାରୁ ମୋ ସ୍ତ୍ରୀର ବ୍ୟବହାର ଅତି ଅଦ୍ଭୁତ ହୋଇଯାଇଛି । ସେ ପୂର୍ବେ ଯେପରି ମୋ କଥା ମାନୁଥିଲା ସେପରି ଆଉ ଶୁଣୁ-ନାହିଁ; ମାତ୍ର ମୋ ସହିତ ଯୁକ୍ତି କରୁଛି—ଏପରିକି କଳିଆ ମଧ୍ୟ କରୁଛି ।"

ସାତ ସପ୍ତାହ ପୂର୍ବେ ଆମେ ବମ୍ବେରୁ ସିଲୋନ ଯାଇଥିଲୁ—ପୁଣି ସେହି ସମୟ ଭିତରେ ଫେରି ଆସିଲୁ । ସଙ୍ଗେ ସଙ୍ଗେ କଂଗ୍ରେସ ରାଜନୀତିରେ ମଗ୍ନ ହୋଇଗଲି । କେତେକ ଗୁରୁତର ସମସ୍ୟା ବିଚାର କରିବା ନିମନ୍ତେ କାର୍ଯ୍ୟକାରୀ ସମିତିର ବୈଠକ ହେଲା—ଭାରତରେ ଅତି ଦ୍ରୁତବେଗରେ ପରିସ୍ଥିତି ବଦଳୁଥାଏ; ଯୁକ୍ତପ୍ରଦେଶରେ କୃଷକ ସମସ୍ୟା; ଖାଁ ଅବଦୁଲ ଗଫୁର ଖାଁଙ୍କ ନେତୃତ୍ୱରେ ସୀମାନ୍ତ ପ୍ରଦେଶରେ "ଲାଲକୁର୍ତ୍ତି" ଆନ୍ଦୋଳନର ଅଭିବୃଦ୍ଧି; ବଙ୍ଗଳାରେ ଅସନ୍ତୋଷ ଓ ଅଶାନ୍ତି, ପ୍ରବଳ ମାନସିକ ଉତ୍ତେଜନା, ଅନେକ ବିଷୟ ନେଇ ଛୋଟ ଛୋଟ ସ୍ଥାନୀୟ ବିବାଦ—ଦିଲ୍ଲୀ ଚୁକ୍ତିକୁ ନେଇ କଂଗ୍ରେସ ଲୋକ ଓ ସରକାରୀ କର୍ମଚାରୀଙ୍କ ମଧ୍ୟରେ ବିବାଦ ଇତ୍ୟାଦି ଅନେକ ସମସ୍ୟା ଉପୁଜିଥିଲା । ଆଲୋଚନାର ବିଷୟର ଅଭାବ ନ ଥିଲା । ତାପରେ [illegible]

ପ୍ରଶ୍ନ ଉଠୁଥିଲା— କଂଗ୍ରେସ ଦ୍ୱିତୀୟ ଗୋଲଟେବୁଲ ବୈଠକକୁ ପ୍ରତିନିଧି ପଠାଇବ କି ନା ? ମହାତ୍ମା ଗାନ୍ଧୀଙ୍କର କଣ ଯିବା ଉଚିତ ?



## ସନ୍ଧି ସମୟରେ ବିବାଦ

ଗାନ୍ଧୀଜୀଙ୍କର ଲଣ୍ଡନ ଗୋଲଟେବୁଲ ସମ୍ମିଳନୀକୁ ଯିବା ଉଚିତ କି ନା ? ଏହି ପ୍ରଶ୍ନ ବାରମ୍ବାର ଉଠିଲା; ମାତ୍ର ଏହାର କୌଣସି ନିର୍ଦ୍ଦିଷ୍ଟ ଜବାବ ମିଳିଲା ନାହିଁ । ଶେଷ ପର୍ଯ୍ୟନ୍ତ ତାହାଙ୍କୁ ବୁଦ୍ଧି ଦେଖାଗଲା ନାହିଁ — ଏପରିକି କଂଗ୍ରେସ କାର୍ଯ୍ୟକାରୀ ସମିତି କିମ୍ବା ଗାନ୍ଧୀଜୀ ନିଜେ ବି କିଛି ସ୍ଥିର କରିପାରିଲେ ନାହିଁ । କାରଣ ଏ ସମ୍ବନ୍ଧରେ କିଛି ସ୍ଥିର କରିବାକୁ ହେଲେ ଅନେକ ବିଷୟରେ ନିର୍ଭର କରିବାକୁ ହେବ ଏବଂ ନୂତନ ଘଟଣାର ପରିସ୍ଥିତି ବରାବର ପରିବର୍ତ୍ତିତ ହେଉଥିଲା । ଅତି ବାସ୍ତବ ଓ ଜଟିଳ ସମସ୍ୟାସବୁ ଏହି ପ୍ରଶ୍ନୋତ୍ତର ସହିତ ଜଡ଼ିତ ଥିଲା ।

ବ୍ରିଟିଶ ସରକାର ଓ ତାଙ୍କର ବନ୍ଧୁମାନେ ବାରମ୍ବାର କହୁଥିଲେ ଯେ, ଶାସନବିଧାନର ଏକ ଖସଡ଼ା ଗୋଲଟେବୁଲ ସମ୍ମିଳନୀରେ ଆଗରୁ ହୋଇ ସାରିଛି — ଏହି ଚିତ୍ରର ପ୍ରଧାନ ରେଖା ସବୁ ଟଣା ହୋଇଛି — କେବଳ ରଙ୍ଗ ପୂରଣ କରିବାକୁ ବାକି ରହିଛି । ମାତ୍ର କଂଗ୍ରେସ ସେପରି ଭାବୁ ନ ଥିଲା — କଂଗ୍ରେସ ମତରେ ମୂଳରୁ ଶେଷ ପର୍ଯ୍ୟନ୍ତ ଚିତ୍ରଟି ପୁନର୍ବାର ନୂତନ କରି ଆଙ୍କିବାକୁ ପଡ଼ିବ । ଏକଥା ସର୍ତ୍ତ ସେ ଦିଲ୍ଲୀଚୁକ୍ତି ଅନୁସାରେ ବାହ୍ୟତଃ ଏହି ଶର୍ତ୍ତ ସ୍ୱୀକାର କରାଯାଇଥିଲା ଏବଂ ରକ୍ଷାକବଚ କଥା ଗ୍ରହଣ କରାଯାଇଥିଲା । ଭାରତର ଶାସନବିଧାନ ସମସ୍ୟାର ସମାଧାନ ଲାଗି ବହୁସଂଖ୍ୟ ସର୍ବୋତ୍କୃଷ୍ଟ ଅନୁମୋଦିତ ଆମେ ଅନେକ ଦିନରୁ ଯୋଜନା କରିଛୁ, ମାତ୍ର 'ପ୍ରଥମ ଗୋଲଟେବୁଲ ସମ୍ମିଳନୀରେ ବ୍ରିଟିଶ ସରକାର ଯେଉଁ ନିର୍ଦ୍ଦିଷ୍ଟ ତାଙ୍କର ସଂରକ୍ଷଣ କରିଥିଲେ ତାହା ନୁହେଁ । ରାଜନୈତିକ ସ୍ୱାଧୀନତା।

ଏ ସାମାଜିକ ପରିବର୍ତ୍ତନ ସବୁ ରାଷ୍ଟ୍ରପ୍ରଶ୍ନର ପୂର୍ଣ୍ଣ ପ୍ରଗତି ରହୁଛି । ଯାହା ଉପାଦାନର ଧାରଣା ଏହା ସହିତ ଖାପ ଖାଇବା କଷ୍ଟକର ଏବଂ ସାଧାରଣତଃ ଏହା ରାଷ୍ଟ୍ରର ସ୍ୱାଧୀନତା ଖର୍ବ କରେ ; ମାତ୍ର "ଅବଡର ସ୍ୱାର୍ଥ ସଂରକ୍ଷଣ" ରହିଥିବା ଧାରା ଯୋଗୁଁ ଏହି ଅସୁବିଧା ସବୁ ଭଲ ଭାବରେ ନ ହେଲେ ସୁଦ୍ଧା ଅନ୍ତତଃ ଅତିକ୍ରମ କରିପାରୁଥିଲୁ । ଯାହା ହେଉ କରାଚୀ କଂଗ୍ରେସ ସ୍ଥିର କରିଥିଲା ଯେ, ନୂତନ ଶାସନ ବିଧାନରେ ଦେଶରକ୍ଷା, ବୈଦେଶିକ ନୀତି, ରାଜସ୍ୱ ଓ ଅର୍ଥନୈତିକ ନୀତି ବ୍ୟବସ୍ଥାର ପୂର୍ଣ୍ଣ କର୍ତ୍ତୃତ୍ୱ ରହିବ । ଭାରତ ବୈଦେଶିକ (ପ୍ରଧାନତଃ ବ୍ରିଟିଶ) ଋଣର ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ପ୍ରଥମେ ତାହାର ପରୀକ୍ଷା ହେବା ଦରକାର; କଂଗ୍ରେସ ଏପରି ରାଜନୈତିକ ଓ ଅର୍ଥନୈତିକ ପରିବର୍ତ୍ତନ ଦାବୀ କରୁଥିଲା, ତାହାର ସୂଚନା ମୌଳିକ ଦାବୀ ପ୍ରସ୍ତାବରେ ମଧ୍ୟ ଦିଆଯାଇଥିଲା । ଗୋଲଟେବୁଲ ସମ୍ମିଳନୀର ସିଦ୍ଧାନ୍ତ ଏବଂ ପ୍ରଚଳିତ ଭାରତ ସରକାରର ଶାସନବିଧାନ ସହିତ ଏହାର ସଂଗତି ନ ଥିଲା ।

କଂଗ୍ରେସ ଦୃଷ୍ଟିକୋଣ ଓ ବ୍ରିଟିଶ ସରକାର ଭିତରେ ବହୁ ବ୍ୟବଧାନ ଥିଲା । ଏପରି ଅବସ୍ଥାରେ ତାହାର ସଂଯୋଗ ହେବାର ସମ୍ଭାବନା ଖୁବ୍ କମ ମନେ ହେଉଥିଲା । ଗୋଲଟେବୁଲ ସମ୍ମିଳନୀରେ କଂଗ୍ରେସ ଓ ସରକାର ଭିତରେ ଗୋଟାଏ ବୁଝାମଣା ହେବ ବୋଲି କଂଗ୍ରେସ ଲୋକେ ପ୍ରାୟ ବିଶ୍ୱାସ କରୁ ନ ଥିଲେ । ଏପରି କି ଗାନ୍ଧିଜୀ ଅତ୍ୟନ୍ତ ଆଶାବାଦୀ ହୋଇ ସୁଦ୍ଧା ଏଥିରେ ବେଶି କିଛି ଆଶା କରୁ ନ ଥିଲେ । ତଥାପି ସେ ନିରାଶ ହୋଇ ନ ଥିଲେ ଏବଂ ଶେଷ ପର୍ଯ୍ୟନ୍ତ ଚେଷ୍ଟା କରିବାକୁ ମନସ୍ଥ କରିଥିଲେ । ଆମେ ସମସ୍ତେ ମଧ୍ୟ ଭାବୁଥିଲୁ ଯେ, ସଫଳ ହେଉ ବା ନ ହେଉ ଦିଲ୍ଲୀ ଚୁକ୍ତି ରକ୍ଷା ନିମନ୍ତେ ଉଦ୍ୟମ କରିବାକୁ ହେବ । ମାତ୍ର ଏପରି ଦୁଇଟି ପ୍ରଧାନ ଘଟଣା ହେବାର ଥିଲା, ଯାହା ଫଳରେ ଦ୍ୱିତୀୟ ଗୋଲଟେବୁଲ ସମ୍ମିଳନୀରେ ଆମର ଯୋଗ ଦେବାରେ ବାଧା ସୃଷ୍ଟି ପାରିଥାଆନ୍ତା । ଆମର ମତ, ଆମେ ଗୋଲଟେବୁଲ ସମ୍ମିଳନୀରେ ପ୍ରସ୍ତାବ ଉପସ୍ଥାପିତ କରି ପାରିବାର ପୂର୍ଣ୍ଣ ସ୍ୱାଧୀନତା ପାଇବେ

ଯାଉଥାନ୍ତୁ । ଆଗକୁ ନିସ୍ତବ୍ଧ ହୋଇ ଯାଉଛୁ ବା ଅନ୍ୟ କୌଣସି କାରଣରୁ ଆଲୋଚନା ହୋଇ ପାରିବ ନାହିଁ, ଏପରି କିଛି ବାଧା ଯେପରି ଆମକୁ ଦିଆ ନ ଯାଏ । ବର୍ତ୍ତମାନ ମଧ୍ୟ ଏପରି ଅବସ୍ଥା ହୋଇଥାନ୍ତା ଯେଉଁଥିରେ ଆମର ଗୋଲଟେବୁଲ ବୈଠକକୁ ଯିବା ହୋଇ ପାରି ନ ଥାନ୍ତା । ଏପରି ହୋଇପାରେ ଯେ, ସରକାର ସହିତ ଗୋଟାଏ ସଂଘର୍ଷ ଘଟିପାରେ କିମ୍ବା ଭୀଷଣ ଦମନନୀତିର ସମ୍ମୁଖୀନ ହେବାକୁ ପଡ଼ନ୍ତା । ଭାରତରେ ଏ ସବୁ ଘଟୁଥିବାବେଳେ ଏବଂ ଆମ ନିଜ ଘରେ ନିଆଁ ଲାଗିଥିଲାବେଳେ ଏ ସବୁ କଥା ଭୁଲିଯାଇ ଆମ ପ୍ରତିନିଧି ଲଣ୍ଡନରେ ବସି ଶାସନତନ୍ତ୍ରଗତ ତତ୍ତ୍ୱ ଆଲୋଚନାରେ ବ୍ୟସ୍ତ ହେବା ଅସମ୍ଭବ ।

ଉତ୍ତେଜିତ ପରିସ୍ଥିତି ଦ୍ରୁତଗତିରେ ବୃଦ୍ଧି ପାଇଲା । ସମଗ୍ର ଦେଶରେ ବିଶେଷତଃ ବଙ୍ଗଳା, ଯୁକ୍ତପ୍ରଦେଶ ଓ ସୀମାନ୍ତରେ ଏହା ଦେଖାଦେଲା । ବଙ୍ଗଳାରେ ବନ୍ଦୀମୁକ୍ତି ହୋଇ ଯୁଦ୍ଧ ଅବସ୍ଥାର କିଛି ପରିବର୍ତ୍ତନ ହେଲା ନାହିଁ — ସେପରି ଅଶାନ୍ତି ରହିଥିଲା, ବରଂ ଦିନକୁ ଦିନ ଅବସ୍ଥା ଖରାପ ହେଲା । କେତେକ ଆଇନ ଅମାନ୍ୟ ବନ୍ଦୀଙ୍କୁ ଖଲାସ କରି ଦିଆଗଲା, ଅଥଚ ହଜାର ହଜାର ରାଜବନ୍ଦୀଙ୍କୁ ସାମାନ୍ୟ କାରଣରୁ ଆଇନ ଅମାନ୍ୟ ବନ୍ଦୀ ନୁହନ୍ତି ବୋଲି କହି ଖଲାସ କରାଗଲା ନାହିଁ । ଅନ୍ତରୀଣ ବନ୍ଦୀମାନେ ଜେଲଖାନା ଅଥବା ବନ୍ଦୀଶିବିରରେ ରହିଥିଲେ । "ରାଜଦ୍ରୋହସୂଚକ" ବକ୍ତୃତା ବା ଅନ୍ୟ ରାଜନୈତିକ କାର୍ଯ୍ୟହେତୁ ଗିରଫ ବରାବର ଚାଲିଥାଏ — ସାଧାରଣ ଭାବରେ ମନେ ହେଉଥିଲା ଯେ, ପୂର୍ବପରି ସରକାର ଚାଲିଛି । ଆତଙ୍କବାଦ ହେତୁ କଂଗ୍ରେସ ପକ୍ଷରେ ବଙ୍ଗଳା ସମସ୍ୟା ମଧ୍ୟ ଏକ ଅଧିକତର କଠୋର ସମସ୍ୟା ହୋଇ ଉଠିଥିଲା । କଂଗ୍ରେସର ସାଧାରଣ କାର୍ଯ୍ୟ ଏବଂ ଆଇନ ଅମାନ୍ୟ ତୁଳନାରେ ଏହି ଆତଙ୍କବାଦ କାର୍ଯ୍ୟର ବ୍ୟାପକତା ଏବଂ ଗୁରୁତ୍ୱ ଖୁବ୍ କମ୍ ଥିଲା । ମାତ୍ର ହଠାତ୍ ଭାବରେ ତାହା ଚମତ୍କାର ହେଉଥିବାରୁ ଲୋକଙ୍କର ଖୁବ୍ ଦୃଷ୍ଟି ଆକୃଷ୍ଟ ହେଉଥିଲା । ଅନ୍ୟ ପ୍ରଦେଶ ପରି ଏଠାରେ କଂଗ୍ରେସ କାର୍ଯ୍ୟ ଚଳାଇବାରେ ମଧ୍ୟ କଷ୍ଟକର ହୋଇଥିଲା । କାରଣ ଆତଙ୍କବାଦ ଯୋଗୁଁ

ଏ ପ୍ରଦେଶରେ ଶାନ୍ତିପୂର୍ଣ୍ଣ ପ୍ରତ୍ୟକ୍ଷ ସଂଗ୍ରାମର ଅନୁକୂଳ ବାୟୁମଣ୍ଡଳ ନ ଥିଲା । ଏଥିରେ ଖ୍ରିଷ୍ଟ ଦମନ ହେବା ଅବଶ୍ୟମ୍ଭାବୀ ଏବଂ ଏହାର ଆଘାତ ନିରପେକ୍ଷ ଭାବରେ ଆତଙ୍କବାଦୀ ଓ ଆତଙ୍କବାଦୀ ହୋଇ ନ ଥିବା ସମସ୍ତଙ୍କ ଉପରେ ପଡ଼ିଲା ।

ଯେଉଁସବୁ ବିଶେଷ ଆଇନ ଏବଂ ଅର୍ଡିନାନ୍ସ (ଆତଙ୍କବାଦୀଙ୍କ ପାଇଁ ହୋଇଥିଲା) ତାହା ସ୍ଥାନୀୟ କର୍ତ୍ତୃପକ୍ଷ ଓ ପୁଲିସ କଂଗ୍ରେସ, ଶ୍ରମିକ ଓ କୃଷକମାନଙ୍କ ବିରୁଦ୍ଧରେ ପ୍ରୟୋଗ ନ କରି ରହି ପାରୁ ନ ଥିଲେ । ଏହି ସବୁ କାର୍ଯ୍ୟ ମଧ୍ୟ ସେମାନେ ମାପସନ୍ଦ କରିଥିଲେ । ବିନା ଅଭିଯୋଗ, ବିଚାର ବା ଶାସ୍ତିରେ ଅନେକ ବର୍ଷ ଧରି ଜେଲରେ ରହିଥିବା ଲୋକଙ୍କ ଭିତରୁ ଅନେକଙ୍କର ପ୍ରକୃତ ଅପରାଧ ଆତଙ୍କବାଦ କାର୍ଯ୍ୟ ନୁହେଁ – ମାତ୍ର ଅନ୍ୟ କିଛି ଫଳପ୍ରଦ ରାଜନୀତିକ କାର୍ଯ୍ୟ ଯୋଗୁଁ ହୋଇଥିବାର ସମ୍ଭାବନା । ସେମାନଙ୍କୁ କୌଣସି କଥା ପ୍ରମାଣ ବା ଅପ୍ରମାଣ କରାଇବାର ସୁବିଧା ଦିଆଯାଇ ନାହିଁ—ଏପରିକି ସେମାନଙ୍କ ଦୋଷ କଣ ସେମାନେ ଜାଣନ୍ତି ନାହିଁ । ସମ୍ଭବତଃ ଶାସ୍ତି ଦେବାଭଳି ସେମାନଙ୍କ ବିରୁଦ୍ଧରେ ପୁଲିସ ନିକଟରେ ଯଥେଷ୍ଟ ପ୍ରମାଣ ନ ଥିବାରୁ ସେମାନଙ୍କର କଚେରୀରେ ବିଚାର କରିପାଇ ନ ଥିଲା—ଅଥଚ ଏ କଥା ଭଲରୁପେ ଜଣା ଯେ, ସରକାରଙ୍କ ବିରୁଦ୍ଧରେ କୌଣସି ଅପରାଧ ପାଇଁ ବ୍ରିଟିଶ ଭାରତରେ ଏପରି ବିସ୍ତୃତ ଆଇନ ପ୍ରଚଳିତ ଯେ, ଏଥିରୁ ଉଦ୍ଧାର ପାଇବା କାହାର ପକ୍ଷେ ବଡ଼ କଷ୍ଟକର । ଅନେକ ସ୍ଥଳରେ କେତେକ ଆଇନ ଅଦାଲତରେ ଖଲାସ ହେବା ସଙ୍ଗେ ସଙ୍ଗେ ପୁଣି ଗିରଫ ହୋଇ ଅନିର୍ଦ୍ଦିଷ୍ଟ ବନ୍ଦୀରୂପେ ରଖା ହୋଇଛନ୍ତି ।

ବଙ୍ଗଳାର ଏହି ଜଟିଳ ସମସ୍ୟାରେ କଂଗ୍ରେସ କାର୍ଯ୍ୟକାରୀ ସମିତି ଅତ୍ୟନ୍ତ ଅସହାୟ ବୋଧକଲା । ଏଥିରେ ସେମାନେ ବାରମ୍ବାର ବ୍ୟତିବ୍ୟସ୍ତ ହୋଇଗଲେ ଏବଂ ନାନା ପ୍ରକାରରେ ବଙ୍ଗଳାର କିଛି ନା କିଛି ସମସ୍ୟା କାର୍ଯ୍ୟକାରୀ ସମିତି ସମ୍ମୁଖକୁ ଆସୁଥିଲା । ସେମାନେ

ଯେତେଦୂର ଭଲଭାବରେ ପାରନ୍ତି, ଏହାର ସନ୍ତୁଷ୍ଟିଜନକ ହେଉଥିଲେ । ମାତ୍ର ସେମାନେ ଭଲଭାବରେ ଜାଣିଥିଲେ ଯେ ପ୍ରକୃତ ସମସ୍ୟା ଏଥିରେ ସମାଧାନ ହେଉନାହିଁ; ସୁତରାଂ ଦୁର୍ବଳ ଭାବରେ ଏହି ପଦକ୍ଷେପ ଗ୍ରହଣ କରିବା ନିମନ୍ତେ ସେମାନେ ଛାଡ଼ିଦେଲେ । ସେମାନଙ୍କର ଅବସ୍ଥା ଯାହା ସେଥିରେ ସେମାନେ ଏହା ଅପେକ୍ଷା ଅଧିକ କିଛି କରିପାରିଥାନ୍ତେ କହିବା କଷ୍ଟକର । କାର୍ଯ୍ୟକାରୀ ସମିତିର ଏହି ମନୋଭାବ ହେତୁ ବଙ୍ଗଳାରେ ଅସନ୍ତୋଷ ଦେଖାଦେଲା ଏବଂ ଗୋଟିଏ ଧାରଣା ଜନ୍ମିଗଲା ଯେ କଂଗ୍ରେସ କାର୍ଯ୍ୟକାରୀ ସମିତି ଓ ଅନ୍ୟାନ୍ୟ ପ୍ରଦେଶମାନେ ବଙ୍ଗଳାକୁ ଅବହେଳା ଦେଖାଉଛନ୍ତି । ବଙ୍ଗଳାର ପରୀକ୍ଷା ସମୟରେ ତାକୁ ତ୍ୟାଗ କରିଦେଲେ । ଏପରି ଧାରଣା ଅତ୍ୟନ୍ତ ଭୁଲ, କାରଣ ସମଗ୍ର ଭାରତ ବଙ୍ଗଳା ପାଇଁ ସହାନୁଭୂତି ସମ୍ପନ୍ନ ଥିଲା; ମାତ୍ର ଏହି ସହାନୁଭୂତିକୁ କିପରି ଫଳପ୍ରଦ କରାଯାଇ ପାରିବ ତାହା ସେମାନେ ଜାଣି ନ ଥିଲେ । ଏହାଛଡ଼ା ଭାରତର ପ୍ରତ୍ୟେକ ଅଞ୍ଚଳରେ ମଧ୍ୟ ନିଜ ନିଜର ଅଭାବ ଅସୁବିଧା ଥିଲା ।

ଯୁକ୍ତପ୍ରଦେଶରେ କୃଷକସମସ୍ୟା ଅଧିକ ଖରାପ ଆଡ଼କୁ ଗତି କରୁଥିଲା । ପ୍ରାଦେଶିକ ସରକାର ଏହି ସମସ୍ୟା ଏକତ ସେକଡ଼ା କେତେ ଖଜଣା ଓ ରାଜସ୍ୱ ଛାଡ଼ ବିଷୟରେ କିଛି ଦେବାକୁ ରାଜି ହେଲେ ଏବଂ ଜୋର ଜବରଦସ୍ତି ଆଦାୟ ଆରମ୍ଭ ହୋଇଗଲା । ଅନେକ ସଂଖ୍ୟକ ଲୋକଙ୍କୁ ତାଙ୍କ ଭୂମିରୁ ଉଚ୍ଛେଦ କରାଗଲା ଏବଂ ସମ୍ପତ୍ତି ବାଜ୍ୟାପ୍ତ କରାଗଲା । ଆମେ ସିଲୋନରେ ଥିଲାବେଳେ ଖଜଣା ଆଦାୟ ଲାଗି ଜବରଦସ୍ତି ଉଦ୍ୟମ ହୋଇଥିବାରୁ ମାରପିଟ ଦଙ୍ଗା କୃଷକମାନଙ୍କ ଭିତରେ ହୋଇଥିବାର ସମ୍ବାଦ ଆମେ ପାଇଲୁ । ଏହି ଦଙ୍ଗାଗୁଡ଼ିକ ଅତି ଛୋଟ ଧରଣର । ମାତ୍ର ଦୁଇଜଣ ଶ୍ୟବଣ୍ଟିତ ଜମିଦାର କିମ୍ବା ତାଙ୍କ ଗୁମାସ୍ତା ଏଥିରେ ମରିଯାଇଥିଲେ । ଗାନ୍ଧିଜୀ ଯୁକ୍ତପ୍ରଦେଶ ଗଭର୍ଣ୍ଣରଙ୍କ ସହିତ ଯୁକ୍ତପ୍ରଦେଶ କୃଷକ ସମସ୍ୟା

ଆଲୋଚନା ପାଇଁ ନୈନିତାଲ ଯାଇଥିଲେ । (ମୁଁ ସେତେବେଳେ ସିଲୋନରେ ଥିଲି) । ସାର ମାଲ୍‌କମ୍ ହେଲିଙ୍କ ସହ କଥାବାର୍ତ୍ତା କରି ସୁଦ୍ଧା ବିଶେଷ କିଛି ଫଳ ହେଲା ନାହିଁ । ସରକାର ଶେଷରେ ଯେଉଁ ଘୋଷଣା କଲେ ତାହା ଲୋକଙ୍କ ଦାବୀରୁ ବହୁତ କମ ଥିଲା ଏବଂ ମଫସଲ ଅଞ୍ଚଳରେ ବାରମ୍ବାର ଟକ୍କର ବଢ଼ିବାକୁ ଲାଗିଲା । ସରକାର ଓ ଜମିଦାର ଉଭୟଙ୍କର ମିଳିତ ଚାପରେ ହଜାର ହଜାର କୃଷକଙ୍କୁ ଜମିରୁ ଉଚ୍ଛେଦ କରାଗଲା— ସେମାନଙ୍କର ସମ୍ପତ୍ତି ବାଜ୍ୟାପ୍ତି କରାଗଲା; ଏପରି ପରିସ୍ଥିତିରେ ଅନ୍ୟ ଦେଶ ହୋଇଥିଲେ ବଡ଼ ବଡ଼ କୃଷକ ବିଦ୍ରୋହ ହୋଇଥାଆନ୍ତା । ମୋର ମନେ ହୁଏ କଂଗ୍ରେସର ଉଦ୍ୟମ କୃଷକମାନଙ୍କୁ ହିଂସାକାର୍ଯ୍ୟରୁ ନିବୃତ୍ତାଇ ପାରିଥିଲା; ମାତ୍ର ସେମାନଙ୍କ ବିରୁଦ୍ଧରେ ପ୍ରଚୁର ହିଂସା ପ୍ରୟୋଗ କରାଯାଉଥିଲା ।

ଏହି କୃଷକ ଜାଗୃତି ଓ ଦୁର୍ଗତିର ଏକ ଉଜ୍ଜ୍ୱଳ ଦିଗ ମଧ୍ୟ ଥିଲା । କୃଷିଜାତ ଦ୍ରବ୍ୟର ଦରହ୍ରାସ ଯୋଗୁଁ ଦରିଦ୍ର ଶ୍ରେଣୀର ବ୍ୟକ୍ତି ଓ କୃଷକ (ଯେଉଁମାନଙ୍କୁ ଉଚ୍ଛେଦ କରାଯାଇ ପାରୁନା) ସେମାନେ ଅନେକ ଦିନ ପରେ ପେଟ ପୂରାଇ ଦୁଇଟା ଖାଇବାକୁ ପାଉଥିଲେ ।

ବଙ୍ଗଳା ପ୍ରଦେଶ ଓ ସୀମାନ୍ତ ପ୍ରଦେଶରେ ମଧ୍ୟ ଦଳୀ ଚକ୍ର ହୋଇ କିଛି ଶାନ୍ତ ହେଲା ନାହିଁ । ସେଠାରେ ସ୍ଥାୟୀରୂପେ ଏକ ବିଶୃଙ୍ଖଳା ସୃଷ୍ଟି ହୋଇଥିଲା । ବିଶେଷ ଆଇନ, ଅର୍ଡିନାନ୍ସ ଏବଂ ଅତି ସାମାନ୍ୟ ଅପରାଧ ଯୋଗୁଁ ଗୁରୁତର ଶାସ୍ତି ହେବାରୁ ସରକାର ତରଫରୁ ଏକ ପ୍ରକାର ସାମରିକ କାରବାର ହୋଇ ଯାଇଥିଲା । ଏହି ଅବସ୍ଥାର ବିରୋଧ କରିବା ନିମନ୍ତେ ଖାଁ ଅବଦୁଲ ଗଫୁର ଖାଁ ଗୋଟାଏ ବଳିଷ୍ଠ ଆନ୍ଦୋଳନ ଚଳାଇଲେ ଏବଂ ସେଥିପାଇଁ ସେ ସରକାରର ଚକ୍ଷୁଶୂଳ ହେଲେ । ସେହି ଛଅଫୁଟ ତିନ ଇଞ୍ଚ ଉଚ୍ଚତାବିଶିଷ୍ଟ ପଠାଣ ମୂର୍ତ୍ତି ଗାଁରେ ଗାଁରେ ବୁଲି "ଖଲକୁଣ୍ଡୀ" କେନ୍ଦ୍ର ସ୍ଥାପନ କରିବାକୁ ଲାଗିଲେ । ସେ ଏବଂ ତାଙ୍କର ପ୍ରଧାନ ସହକର୍ମୀ

ମାନେ ଯେଉଁଠାକୁ ଗଲେ ସେଠାରେ ଲାଲକୁର୍ତ୍ତି ଦଳ ଗଢ଼ିଉଠିଲା ଏବଂ ଅଳ୍ପ ଦିନ ଭିତରେ ସମଗ୍ର ପ୍ରଦେଶରେ "ଖୁଦାଇ ଖିଦମତ୍‌ଗାର" ଙ୍କର ଶାଖା ପ୍ରଶାଖା ବିସ୍ତାର ହୋଇଗଲା । ସେମାନେ ସମ୍ପୂର୍ଣ୍ଣରୂପେ ଶାନ୍ତିପୂର୍ଣ୍ଣ ଥିଲେ ଏବଂ ଅନେକ ଅସ୍ପଷ୍ଟ ଅଭିଯୋଗ ହୋଇଥିଲେ ସୁଦ୍ଧା ସେମାନଙ୍କ ବିରୁଦ୍ଧରେ ଗୋଟିଏ ହେଲେ ହିଂସା କାର୍ଯ୍ୟ ସରକାର ପ୍ରମାଣ କରିପାରି ନାହିଁ । ମାତ୍ର ସେମାନେ ଶାନ୍ତିପୂର୍ଣ୍ଣ ହୁଅନ୍ତୁ ବା ନ ହୁଅନ୍ତୁ ସେମାନେ ମୁକ୍ତିପ୍ରୟାସୀ ଓ ହିଂସାବାଦୀ ବୋଲି ଅପବାଦ ତାଙ୍କ ଉପରେ ଥିଲା—ସେମାନେ ଦୁର୍ଦ୍ଧର୍ଷ ପଠାଣଜାତିଙ୍କ ସୀମାନ୍ତରେ ଥିଲେ—ଭାରତ ଜାତୀୟ ଆନ୍ଦୋଳନ ସହିତ ଘନିଷ୍ଠଭାବରେ ସଂଯୁକ୍ତ ହୋଇ ଏପରି ଶୃଙ୍ଖଳାବଦ୍ଧ ସଂଗଠନର ଦ୍ରୁତ ଅଭିବୃଦ୍ଧି ଦେଖି ସରକାର ବିବ୍ରତ ହୋଇ ପଡ଼ିଲା । ମୋର ମନେହୁଏ ଏମାନଙ୍କର ଶାନ୍ତି ଓ ଅହିଂସା ଆଦର୍ଶରେ ସରକାର ବିଶ୍ୱାସ କରୁ ନ ଥିଲା । ବିଶ୍ୱାସ କରୁଥିଲେ ମଧ୍ୟ ଏହାକୁ ସେମାନେ ଭୟ ଓ ବିରକ୍ତିର ଦୃଷ୍ଟିରେ ଦେଖୁଥିବେ । ଏହି ଆନ୍ଦୋଳନର ପ୍ରକୃତ ଓ ଭବିଷ୍ୟତ ଶକ୍ତି ଦେଖି ସେମାନଙ୍କ ପକ୍ଷେ ମୁଣ୍ଡ ଥଣ୍ଡା ରଖିବା ସହଜ ନ ଥିଲା ।

ଏହି ବିରାଟ ଆନ୍ଦୋଳନର ଅପ୍ରତିଦ୍ୱନ୍ଦ୍ୱୀ ନେତା ହେଉଛନ୍ତି ଖାଁ ଅବଦୁଲ ଗଫୁର ଖାଁ । ସେ "ଫକ୍‌ରେ ଆଫଗାନ୍" "ଫକ୍‌ରେ ପଠାନ୍" "ପଠାଣଙ୍କର ଗର୍ବ" "ସୀମାନ୍ତ ଗାନ୍ଧି ଗାନ୍ଧିଇ ସରହଦ୍" ନାମରେ ପରିଚିତ । ସବୁକାଳର ଶାନ୍ତି ଏବଂ ବାଧାରେ ଅବିଚଳିତ ରହି ଶାନ୍ତ ଭାବରେ କାର୍ଯ୍ୟ କରି ଯାଇଥିବାରୁ ସେ ସୀମାନ୍ତ ପ୍ରଦେଶରେ ଅପୂର୍ବ ପ୍ରଭାବ ପ୍ରତିପତ୍ତି ବିସ୍ତାର କରିଥିଲେ । ରାଜନୀତିକ ବୋଲି ଯାହା ବୁଝାଏ ସେ ସେପରି ନ ଥିଲେ କି ନୁହନ୍ତି । ସେ ରାଜନୀତିର ଷଡ଼ଯନ୍ତ୍ର ବା କୌଶଳ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଜ୍ଞ । ଏକ ଦୀର୍ଘ ସଲକ୍ଷ ପୁରୁଷ—ଶରୀର ଓ ମନ ଉଭୟ ହିଁ ସରଳ—ସେ ବହୁତ କଥା ବା ହୁଙ୍କୁମକୁ ଘୃଣା କରନ୍ତି—ଭାରତର ସ୍ୱାଧୀନତା ସହିତ ତାଙ୍କ ସୀମାନ୍ତ ପ୍ରଦେଶର ସ୍ୱାଧୀନତା ଲାଗି ଅଧୀର—ମାତ୍ର ଏ ସମ୍ବନ୍ଧରେ ତାଙ୍କର ଚିନ୍ତା ଅସ୍ପଷ୍ଟ—

ଶାସନତନ୍ତ୍ର ବା ଅନ୍ୟ ଆଇନଗତ ପ୍ରଶ୍ନ ସମ୍ବନ୍ଧରେ ଆଲୋଚନା କରିବା ନିମନ୍ତେ ତାଙ୍କର ଆଗ୍ରହ ନାହିଁ । କୌଣସି ଉଦ୍ଦେଶ୍ୟ ହାସଲ କରିବା ନିମନ୍ତେ କାର୍ଯ୍ୟ ଲୋଡ଼ା ଏବଂ ମହାତ୍ମାଗାନ୍ଧିଙ୍କ ପ୍ରଦର୍ଶିତ ଅଦ୍ଭୁତ ଶାନ୍ତିପୂର୍ଣ୍ଣ କାର୍ଯ୍ୟ ସେ ଅନୁସରଣ କରିଥିଲେ । କାର୍ଯ୍ୟ କରିବା ନିମନ୍ତେ ସଂଗଠନ ଲୋଡ଼ା — ସେଥିପାଇଁ ଅଧିକ ସ୍ପଷ୍ଟ ନ କରି କିମ୍ବା ତାଙ୍କର ସଂଗଠନପାଇଁ କିମ୍ବା କାନୁନ ତିଆରି ନ କରି ସେ ସଂଗଠନ କରିବାରେ ବ୍ରତୀ ହେଲେ ଏବଂ ଅପୂର୍ବ ସଫଳତା ଲାଭ କଲେ ।

ଗାନ୍ଧିଜୀଙ୍କ ପ୍ରତି ସେ ବିଶେଷଭାବରେ ଆକୃଷ୍ଟ ହୋଇଥିଲେ । ପ୍ରଥମେ ତାଙ୍କର ସଙ୍କୋଚଭାବ ଏବଂ ପଛରେ ରହିବାର ଇଚ୍ଛା ଯୋଗୁଁ ସେ ତାଙ୍କଠାରୁ ଦୂରରେ ରହିଥିଲେ । ପରେ ଅନେକ ବିଷୟ ଆଲୋଚନା କରିବା ନିମନ୍ତେ ତାଙ୍କର ସାକ୍ଷାତ୍ ହେଲା ଓ ସମ୍ପର୍କ ବୃଦ୍ଧି ପାଇଲା । ଆମ ଅନେକଙ୍କ ଅପେକ୍ଷା ଅହିଂସା ମତବାଦ କାର୍ଯ୍ୟରେ ଏବଂ ଆଦର୍ଶରେ ଉପରେ ଏହି ପଠାଣ ଗ୍ରହଣ କଲେ, ଏହା ଆଶ୍ଚର୍ଯ୍ୟ କଥା । ସେ ଏଥିରେ ବିଶ୍ୱାସ କରୁଥିବାରୁ ଉତ୍ତେଜନା ସତ୍ତ୍ୱେ ଶାନ୍ତିପୂର୍ଣ୍ଣ ରହିବାର ଉପକାରିତା ତାଙ୍କ ନିଜ ଲୋକଙ୍କୁ ବୁଝାଇ ପାରିଥିଲେ । ସୀମାନ୍ତ ପ୍ରଦେଶର ଲୋକେ ଆଉ କେବେ ହିଂସାରେ ବ୍ରତୀ ହେବାର କଳ୍ପନା ପୁଣି ଛାଡ଼ି ଦେଇଛନ୍ତି ବୋଲି କହିବା ଅର୍ଥ ହାସ୍ୟାସ୍ପଦ ହେବା । ସେହିପରି ଅନ୍ୟ ପ୍ରଦେଶ ଲୋକ ଛାଡ଼ିଛନ୍ତି ବୋଲି କହିବା ମଧ୍ୟ ହାସ୍ୟାସ୍ପଦ ହେବା । ଜନସାଧାରଣ ଭାବପ୍ରବଣତାର ତରଙ୍ଗରେ ଭାସନ୍ତି ଏବଂ ସେମାନେ ଉତ୍ତେଜନା ବେଳେ କଣ କରିପକାଇବେ କେହି କହିପାରିବ ନାହିଁ । ମାତ୍ର ସୀମାନ୍ତ ପ୍ରଦେଶର ଲୋକେ ଯେଉଁ ଆତ୍ମସଂଯମ ୧୯୩୦ ଓ ତା ପରବର୍ତ୍ତୀ ବର୍ଷମାନଙ୍କରେ ଦେଖାଇଛନ୍ତି, ତାହା ଅଭୂତପୂର୍ବ ।

ସରକାରୀ କର୍ମଚାରୀ ଏବଂ ଆମ ଦେଶର କେତେକ ଭୀରୁ ଲୋକେ ସୀମାନ୍ତଗାନ୍ଧିଙ୍କୁ ସନ୍ଦେହଦୃଷ୍ଟିରେ ଦେଖନ୍ତି । ସେମାନେ ତାଙ୍କ କଥାକୁ ବିଶ୍ୱାସ କରନ୍ତି ନାହିଁ । ତାଙ୍କ କଥାରେ ଏକ ଗଭୀର

ଷଡ଼ଯନ୍ତ୍ର ଅନୁମାନ କରନ୍ତି । ମାତ୍ର ଗତ କେତେକ ବର୍ଷ ଭିତରେ ସେ ଓ ସୀମାନ୍ତର ଅନ୍ୟାନ୍ୟ କଂଗ୍ରେସ ଲୋକେ ଭାରତର ଅନ୍ୟ ଅଞ୍ଚଳ ଲୋକଙ୍କର ନିକଟ ସମ୍ପର୍କରେ ଆସିପାରିଛନ୍ତି । ସେମାନଙ୍କ ଭିତରେ ଘନିଷ୍ଠ ବନ୍ଧୁତା, ପ୍ରୀତି ଓ ଭକ୍ତି ହୋଇ ପାରିଛି । କଂଗ୍ରେସ ମଣ୍ଡଳରେ ଅବଦୁଲ ଗଫୁର ଖାଁ ଜଣାଶୁଣା ଓ ଲୋକପ୍ରିୟ । ଜଣେ ସହକର୍ମୀ ବ୍ୟକ୍ତି ବିଶେଷରୂପେ ନୁହେଁ, ମାତ୍ର ଭାରତ ଚକ୍ଷୁରେ ଆମର ସାଧାରଣ ସଂଗ୍ରାମରେ ଆମ ସହିତ ଲଢ଼ୁଥିବା ଏକ ସାହସୀ ଓ ଦୁର୍ଦ୍ଧର୍ଷ ଜାତିର ସାହସ ଓ ତ୍ୟାଗର ପ୍ରତୀକ ରୂପେ ସେ ବିଦ୍ୟମାନ ।

ମୁଁ ଖାଁ ଅବଦୁଲ ଗଫରଖାଁଙ୍କର ନାମ ଶୁଣିବାର ବହୁପୂର୍ବରୁ ତାଙ୍କ ଭାଇ ଡାକ୍ତର ଖାଁ ସାହେବଙ୍କୁ ଜାଣିଥିଲି । ସେ ଲଣ୍ଡନ ଟମାସ୍ ହାସପାତାଲରେ ଛାତ୍ର ଥିବା ବେଳେ ମୁଁ କେମ୍ବ୍ରିଜରେ ଥିଲି ଏବଂ ପରେ ଯେତେବେଳେ ମୁଁ ଇନର ଟେମ୍ପଲରେ ଓକିଲାତି ଶିକ୍ଷା ପାଉଥିଲି ସେତେବେଳେ ମୋର ତାଙ୍କ ସହିତ ଘନିଷ୍ଠ ବନ୍ଧୁତ୍ୱ ହେଲା । ଲଣ୍ଡନରେ ଏପରି ଦିନ ଯାଇନାହିଁ ଯେଉଁଦିନ ମୋର ତାଙ୍କ ସହିତ ସାକ୍ଷାତ ହୋଇନାହିଁ । ମୁଁ ତାଙ୍କୁ ଇଂଲଣ୍ଡରେ ଛାଡ଼ି ଭାରତକୁ ଚାଲି ଆସିଲି ଏବଂ ସେ ସେଠାରେ ଆହୁରି ଅନେକ ବର୍ଷ ପର୍ଯ୍ୟନ୍ତ ରହିଥିଲେ—ଯୁଦ୍ଧ ସମୟରେ ଡାକ୍ତର ରୂପେ କାର୍ଯ୍ୟ କରୁଥିଲେ । ପରେ ନୈନି ଜେଲରେ ମୋର ତାଙ୍କ ସହିତ ଭେଟ ହେଲା ।

ସୀମାନ୍ତ "ଲାଲ କୁର୍ତ୍ତି" ଦଳ କଂଗ୍ରେସ ସହିତ ସହଯୋଗ କରୁଥିଲେ, ମାତ୍ର ସେମାନଙ୍କର ଏକ ସ୍ୱତନ୍ତ୍ର ସଂଗଠନ ଥିଲା । ଏହା ଏକ ଅଦ୍ଭୁତ ସ୍ଥିତି । କଂଗ୍ରେସ ଓ ତାହା ମଧ୍ୟରେ ଖାଁ ଅବଦୁଲ ଗଫୁର ଖାଁ ଯୋଗସୂତ୍ର ଥିଲେ । ୧୯୩୧ ମସିହା ଗ୍ରୀଷ୍ମ ଋତୁରେ ସୀମାନ୍ତ ପ୍ରଦେଶର ନେତାମାନଙ୍କ ସହିତ ପରାମର୍ଶ କରି ଏହି ବିଷୟ ସମ୍ପୂର୍ଣ୍ଣଭାବରେ ଆଲୋଚନା ହୋଇଥିଲା ଏବଂ "ଲାଲକୁର୍ତ୍ତି" ଦଳକୁ କଂଗ୍ରେସରେ ମିଶାଇ ଦେବାକୁ ସ୍ଥିର ହେଲା । ସେହିଦିନରୁ "ଲାଲକୁର୍ତ୍ତି" ଆନ୍ଦୋଳନ କଂଗ୍ରେସର ଏକ ଅଙ୍ଗ ହୋଇ ରହିଛି ।

କରାଚୀ କଂଗ୍ରେସ ଶେଷ ହେବା ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କର ସୀମାନ୍ତ ପ୍ରଦେଶକୁ ଯିବାର ଇଚ୍ଛା ଥିଲା, ମାତ୍ର ସରକାର ଏଥିରେ ଉତ୍ସାହ ଦେଖାଇଲେ ନାହିଁ । ପରେ ଯେତେବେଳେ "ଲାଲକୁର୍ତ୍ତି" ଦଳଙ୍କ କାର୍ଯ୍ୟ ସମ୍ବନ୍ଧରେ ସରକାରୀ କର୍ମଚାରୀମାନେ ଆପତ୍ତି ଦର୍ଶାଇଲେ, ସେତେବେଳେ ସେ ନିଜେ ସେଠାକୁ ଯାଇ ଘଟଣା ଜାଣି ଦେଖି ଆସିବା ନିମନ୍ତେ ବାରମ୍ବାର ନିବେଦନ କରିବା ସତ୍ତ୍ୱେ କିଛି ଫଳ ହେଲା ନାହିଁ । ମୋଟେ ଯିବାକୁ ଦିଆଗଲା ନାହିଁ । ଦିଲ୍ଲୀ ଚୁକ୍ତି ହେବାରୁ ସରକାରଙ୍କ ସ୍ପଷ୍ଟ ଇଚ୍ଛା ଗାନ୍ଧିଜୀଙ୍କ ସୀମାନ୍ତ ପ୍ରଦେଶରେ ପ୍ରବେଶ କରିବା ବାଞ୍ଛନୀୟ ମନେ ହେଉ ନ ଥିଲା ।

ଏହା ଛଡ଼ା ସାମ୍ପ୍ରଦାୟିକ ପ୍ରଶ୍ନ କାର୍ଯ୍ୟକାରୀ ସମିତି ଆଗରେ ଥିଲା । ଏଥିରେ ନୂଆ କିଛି ନ ଥିଲା; ମାତ୍ର ଏକ ନୂତନ ଓ ଧର୍ମାନ୍ଧ ରୂପରେ ଏହା ପୁନର୍ବାର ଆବିର୍ଭୂତ ହେଉଥିଲା । ସେ ସମୟରେ ଗୋଲ ଟେବୁଲ ବୈଠକ ହେବାରୁ ଏହା ଅଧିକ ବୃଦ୍ଧି ପାଇଲା—କାରଣ ଦେଖାଗଲା ଯେ ବ୍ରିଟିଶ ସରକାର ଏହି ସମସ୍ୟା ପଛରେ ଅନ୍ୟ ସବୁ ସମସ୍ୟାକୁ ରଖିବେ । ସାମ୍ପ୍ରଦାୟିକ ଓ ଦଳଗତ ସ୍ୱାର୍ଥକୁ ଗୁରୁତ୍ୱ ଦେବା ନିମନ୍ତେ ଏବଂ ସାଧାରଣ ସ୍ୱାର୍ଥ ଛଡ଼ା ମତଭେଦ ଉପରେ ଜୋର ଦେବା ନିମନ୍ତେ ସରକାର ସମ୍ମିଳନୀକୁ ପ୍ରତିନିଧି ବାଛୁଥିଲେ । ଏପରି କି କୌଣସି ଜାତୀୟତାବାଦୀ ମୁସଲମାନ ନେତାଙ୍କୁ ପ୍ରତିନିଧି ରୂପେ ମନୋନୀତ କରିବାପାଇଁ ସରକାର ବଡ଼ ଦୃଢ଼ଭାବରେ ପରିଷ୍କାର ଅସ୍ୱୀକାର କରିଦେଲେ । ଗାନ୍ଧିଜୀ ଅନୁଭବ କଲେ ଯେ ବ୍ରିଟିଶ ଗଭର୍ଣ୍ଣମେଣ୍ଟର ନିର୍ଦ୍ଦେଶମତେ ସମ୍ମିଳନୀ ଯଦି ପ୍ରଥମରୁ ସାମ୍ପ୍ରଦାୟିକ ସମସ୍ୟା ଆଲୋଚନା କରି ବସେ, ତେବେ ପ୍ରକୃତ ରାଜନୈତିକ ଓ ଅର୍ଥନୈତିକ ସମସ୍ୟାର ଠିକ ବିଚାର ହୋଇ ପାରିବ ନାହିଁ । ଏପରି ଅବସ୍ଥାରେ ସେ ସମ୍ମିଳନୀକୁ ଯାଇ କିଛି ଲାଭ ନାହିଁ । ସେଥିହେତୁ କାର୍ଯ୍ୟକାରୀ ସମିତି ଆଗରେ ଏହି ମତ ପ୍ରକାଶ କଲେ ଯେ, ପୂର୍ବରୁ ଯଦି ଭିନ୍ନ ଦଳଙ୍କ ଭିତରେ ରାଜିନାମା ହୋଇ ସାମ୍ପ୍ରଦାୟିକ ସମସ୍ୟାର ଗୋଟାଏ ମିଳାମିଶା ହୋଇପାରିବ, ତେବେ ସେ ଲଣ୍ଡନ ଯିବେ । ଏପରି

ହେବବାର ଯଥାର୍ଥତା ଥିଲି, ମାତ୍ର ସମିତି ତାଙ୍କ କଥା ରଖିଲା ନାହିଁ ଏବଂ କେବଳ ସାମ୍ପ୍ରଦାୟିକ ସମସ୍ୟାର ସମାଧାନରେ ନିଷ୍ଫଳ ହୋଇଛୁ ବୋଲି କାରଣ ଦର୍ଶାଇ ତାଙ୍କର ନ ଯିବା ଠିକ ହେବ ନାହିଁ । ଶେଷରେ ସମ୍ପ୍ରଦାୟର ପ୍ରତିନିଧିମାନଙ୍କ ସହିତ ପରାମର୍ଶ କରି ରୋଝାଏ ସମାଧାନର ଚେଷ୍ଟା କାର୍ଯ୍ୟକାରୀ ସମିତି କଲା । ମାତ୍ର ଏହା ସଫଳ ହେଲା ନାହିଁ ।

ଅନେକଗୁଡ଼ିଏ ଛୋଟ ସମସ୍ୟା ଛଡ଼ା ଆହୁରି କେତେକ ବଡ଼ ସମସ୍ୟା ୧୯୩୯ ମସିହା ଗ୍ରୀଷ୍ମଋତୁରେ ଆମ ସମ୍ମୁଖରେ ଉପୁଜିଥିଲା । ସ୍ଥାନୀୟ କର୍ମଚାରୀ-ମାନେ ଉଚ୍ଛୃଙ୍ଖଳ ହୋଇ ଉଠୁଛନ୍ତି ବୋଲି ସାରା ଦେଶର ସ୍ଥାନୀୟ କଂଗ୍ରେସ କମିଟିମାନଙ୍କରୁ ଆମେ ବରାବର ଅଭିଯୋଗ ପାଉଥାଉଁ । ଏଥିରୁ ଗୁରୁତର ବିଷୟଗୁଡ଼ିକ ବାଛି ସରକାର ନିକଟକୁ ପଠାଇ ଦେଉ—ସରକାର ତା ବଦଳରେ କଂଗ୍ରେସ ଲୋକେ ରୀତି ଭଙ୍ଗ କରୁଛନ୍ତି ବୋଲି ଅଭିଯୋଗ ଆଣନ୍ତି । ଏହିପରି ପରସ୍ପର ପ୍ରତି ଅଭିଯୋଗ ହେବାକୁ ଲାଗିଲା ଏବଂ ପରେ ତାହା ସମ୍ବାଦପତ୍ରରେ ପ୍ରକାଶିତ ହେଲା । ଏହା ଫଳରେ କଂଗ୍ରେସ ଓ ସରକାର ମଧ୍ୟରେ ଯେ କୌଣସି ଉନ୍ନତି ହେଲା ନାହିଁ ଏହା କହିବା ନିଷ୍ପ୍ରୟୋଜନ ।

ଛୋଟ ଛୋଟ ବିଷୟ ନେଇ ଏହି ସଂଘର୍ଷ କିଛି କମ୍ ଗୁରୁତର ନୁହେଁ । ଏଥିରେ ଏହି ସଂଘର୍ଷର ମୂଳ କାରଣ ପ୍ରକାଶ ପାଇଲା—ଏଥିରେ କୌଣସି ବ୍ୟକ୍ତି ବିଶେଷର ହାତ ନାହିଁ; ଆମ ଜାତୀୟ ସଂଗ୍ରାମରୁ ଏହାର ଉତ୍ପତ୍ତି ହୋଇଥିଲା—ଆମର ମୌଳିକ ଅର୍ଥନୈତିକ ସମସ୍ୟାରେ ସମାନତା ଅଭାବରୁ ହୋଇଥିଲା—ଏହାର ମୂଳ କାରଣ ପରିବର୍ତ୍ତନ ନ ହେବା ପର୍ଯ୍ୟନ୍ତ ଏହା ଦୂର କରିହେବ ନାହିଁ କିମ୍ବା କମ୍ କରାଯାଇ ପାରିବ ନାହିଁ । ଆମର ଉଚ୍ଚ ମଧ୍ୟବିତ୍ତଶ୍ରେଣୀଙ୍କ ଆତ୍ମପ୍ରକାଶ ଏବଂ ନିଜର ଉନ୍ନତି ଅଭିଳାଷରୁ ପ୍ରଥମେ ଆମର ଜାତୀୟ ଆନ୍ଦୋଳନ ଆରମ୍ଭ ହୋଇଥିଲା ଏବଂ ଏହା ପଛରେ ଏକ ରାଜନୈତିକ ଓ ଅର୍ଥନୈତିକ ପ୍ରେରଣା ଥିଲା । ଏହା କ୍ରମେ ମଧ୍ୟବିତ୍ତଶ୍ରେଣୀ ମଧ୍ୟରେ ପ୍ରସାରିତ ହେଲା ଏବଂ ଦେଶରେ

ଏକ ଶକ୍ତିଶାଳୀ ସଙ୍ଗଠନ ହୋଇ ଉଠିଲା, ଜନସାଧାରଣ ଦାରିଦ୍ର୍ୟ ଓ ଅଭାବର ଚରମ ସୀମାରେ ପହଞ୍ଚିଲେ—ସେମାନଙ୍କ ମଧ୍ୟରେ ଏହା ଗୃଙ୍ଖଳ୍ୟ ଜାତ କଲା । ପୂର୍ବେ ଗ୍ରାମମାନଙ୍କରେ ଅତି ସନ୍ତୁଷ୍ଟ ହୋଇଥିବା ଅର୍ଥନୈତିକ ବ୍ୟବସ୍ଥା ଅନେକ କାଳରୁ ଲୋପ ପାଇଥିଲା । କୃଷି ସହିତ ସାହାଯ୍ୟକାରୀ କୁଟୀରଶିଳ୍ପ ଯୋଗୁଁ ଜମି ଉପରେ ଲୋକେ ଟିକିଏ କମ୍ ନିର୍ଭର କରୁଥିଲେ, ତାହା ମଧ୍ୟ ଲୋପ ପାଇ ଯାଇଥିଲା । ଏହା ହେବାରେ ଗୋଟିଏ କାରଣ ହେଉଛି, ସରକାରୀ ନୀତି, ଦ୍ୱିତୀୟ ହେଉଛି ଯନ୍ତ୍ରଶିଳ୍ପର ଉନ୍ନତି ଏହା ସହିତ ଗ୍ରାମ୍ୟ ଶିଳ୍ପ କାନ୍ଧ ପକାଇ ଗୃହ୍ଣ ପାରିଲା ନାହିଁ । ଜମି ଉପରେ ଲୋକେ ବେଶି ନିର୍ଭର କଲେ—ସେହି ତୁଳନାରେ ଭାରତରେ ଶିଳ୍ପକାରଖାନା ଉନ୍ନତ ହୋଇ ନାହିଁ ବୋଲି ଏଥିରେ ବିଶେଷ କିଛି ପ୍ରଭେଦ ଘଟିଲା ନାହିଁ । ଗ୍ରାମଗୁଡ଼ିକ ତୃପ୍ତି ନହେବାର ଶକ୍ତିର ଅଭାବ ଥିଲା । ଋଣଭାରରେ ପ୍ରପୀଡ଼ିତ ଗ୍ରାମଗୁଡ଼ିକ ପୃଥିବୀ ବଜାରରେ ପଡ଼ି ଇତସ୍ତତଃ ହେବାକୁ ଲାଗିଲା । ସମାନ ସର୍ତ୍ତରେ ଏହା ପ୍ରତିଯୋଗିତା କରିପାରେ ନା । ଶସ୍ୟ ଉତ୍ପାଦନର ପ୍ରଣାଳୀ ବଡ଼ ଅନୁନ୍ନତ ଥିଲା; ଜମିସବୁ ଖଣ୍ଡ ଖଣ୍ଡ ହୋଇ ବିଭକ୍ତ ହୋଇଥିବାରୁ ଏହାର ଆମୂଳ ଉନ୍ନତି ଅସମ୍ଭବ ଥିଲା । ସୁତରାଂ କେତେକେତେବେଳେ ଭଲ ବଜାର ଛଡ଼ା ଅନ୍ୟ ସମୟରେ କ୍ରମେ କୃଷି ଉପରେ ନିର୍ଭର କରୁଥିବା କ ଜମିଦାର କ ପ୍ରଜା ସମସ୍ତଙ୍କ ଅବସ୍ଥା କ୍ରମେ ଶୋଚନୀୟ ହୋଇ ପଡ଼ିଲା । ଜମିଦାର-ମାନେ ତାଙ୍କ ବୋଝ କୃଷକମାନଙ୍କ ଉପରେ ପକାଇବାକୁ ଲାଗିଲେ—କୃଷକ—ଶ୍ରେଷ୍ଠ ଜମିଦାର ଓ ପ୍ରଜା ଉଭୟଙ୍କର କ୍ରମବର୍ଦ୍ଧିତ ଦାରିଦ୍ର୍ୟହିଁ ସେମାନଙ୍କୁ ଜାତୀୟ ଆନ୍ଦୋଳନ ଭିତରକୁ ଟାଣି ଆଣିଥିଲା । ଗ୍ରାମ ଅଞ୍ଚଳର ଭୂମିହୀନ ବହୁସଂଖ୍ୟକ କୃଷୀ ମୂଲିଆ ମଧ୍ୟ ଏଥିପ୍ରତି ଆକୃଷ୍ଟ ହେଲେ ଏବଂ ଏହି ଗ୍ରାମ ଅଞ୍ଚଳ ଲୋକେ "ଜାତୀୟତା" ବା "ସ୍ୱରାଜ" ବୋଇଲେ ଜମି-ପ୍ରଥାର ମୌଳିକ ପରିବର୍ତ୍ତନ ଏବଂ ସେଥିରେ ତାଙ୍କର ଅବସ୍ଥା ଲଘବ ହେବ ଏବଂ ଭୂମିହୀନ ଲୋକ ଭୂମି ପାଇବ ଏହି ଆଶା କରୁଥିଲେ । ମାତ୍ର କୃଷକ ସମ୍ପ୍ରଦାୟ ଏବଂ ଜାତୀୟ ଆନ୍ଦୋଳନର ମଧ୍ୟଶ୍ରେଣୀର ନେତା ତାହାର-ଦ୍ୱାରେ ଏହି ଆକାଙ୍କ୍ଷା ପରିସ୍ଫୁଟ ହୋଇନାହିଁ ।

୧୯୩୦ ମସିହାର ଅଭିନ ଅମାନ୍ୟ ଆନ୍ଦୋଳନ ସଙ୍ଗେ ସଙ୍ଗେ ଛୁଥିବାରେ କୃଷି ଓ ବାଣିଜ୍ୟ ସଙ୍କଟ ଦେଖାଗଲା—ଏହାର ନେତାମାନେ ଆଗରୁ ତାହା ଜାଣି ନ ଥିଲେ । କୃଷକ ସମ୍ପ୍ରଦାୟ ଏଥିରେ ବେଶି ଦୁଃଖ ଭୋଗିଲେ—ସେମାନେ କଂଗ୍ରେସ ଓ ଅଭିନ ଅମାନ୍ୟ ଆଡ଼କୁ ଦୃଷ୍ଟିପାତ କଲେ । ଲଣ୍ଡନରେ କିମ୍ବା ଅନ୍ୟ କୌଣସି ସ୍ଥାନରେ ଗଢ଼ା ହେଉଥିବା ସୁଷ୍ଠୁ ଶାସନତନ୍ତ୍ର ସହିତ ତାଙ୍କର କିଛି ସମ୍ପର୍କ ନ ଥିଲା ମାତ୍ର ଭୂମି ସମସ୍ୟା ବିଶେଷତଃ ଜମିଦାରୀ ଅଞ୍ଚଳରେ—ସେମାନେ ମୌଳିକ ପରିବର୍ତ୍ତନ ଦାବୀ କରିଥିଲେ ! ଜମିଦାରୀ ପ୍ରଥାର ଦିନ ଗୃଳିଯାଇଛି—ଏହାର ଆଉ ନିଜ ଗୋଡ଼ରେ ଠିଆ ହେବାର ଶକ୍ତି ନାହିଁ । ମାତ୍ର ବ୍ରିଟିଶ ସରକାର ଯେପରି ପରିସ୍ଥିତିରେ ଅଛି ଏହା ଜମିପ୍ରଥାର କୌଣସି ଆମୂଳ ପରିବର୍ତ୍ତନ କରିବାକୁ ସାହସ କରେନା । ଏପରି କି ଯେଉଁ ରୟାଲ କୃଷି କମିସନ ନିଯୁକ୍ତ ହୋଇଥିଲା, ସେଥିରେ ଜମିର ମାଲିକାନା ସ୍ୱତ୍ୱ କିମ୍ବା ଜମିପ୍ରଥାର ପରିବର୍ତ୍ତନ ଆଦି ସମସ୍ୟାର ଆଲୋଚନା କରିବାକୁ ଦିଆଗଲା ନାହିଁ ।

ଏହିପରି ଭାରତରେ ସଂଘର୍ଷ ହେଉଛି; ଏହାକୁ କୌଣସି ଶବ୍ଦ ଗୁଡ଼ିକ ବା ଆପୋଷ ମୀମାଂସାରେ ଉଡ଼ାଇଦେବା ସମ୍ଭବ ନୁହେଁ । କେବଳ ଭୂମିସଂକ୍ରାନ୍ତ ମୌଳିକ ସମସ୍ୟା ଛଡ଼ା ଅନ୍ୟ ଜୀବନ୍ତ ଜାତୀୟ ସମସ୍ୟା କଥା ଏଥିରେ ଉଲ୍ଲେଖ କରାଯାଉ ନାହିଁ । ସମାଧାନରେ ଏହି ସଂଘର୍ଷ ଦୂର ହୋଇପାରେ । ବ୍ରିଟିଶ ସରକାର ଜରିଆରେ ଏହି ସମାଧାନ ହେବାର କୌଣସି ସମ୍ଭାବନା ନ ଥିଲା ଅସ୍ଥାୟୀ ବ୍ୟବସ୍ଥାଦ୍ୱାରା କ୍ଷଣକାଳ ଦୁଃଖ କିଛି ଲାଘବ ହୋଇପାରେ, ଭୀଷଣ ଦମନ ଫଳରେ ଭୟଭୀତ ହୋଇ ଏହା ହୁଏ ତ ଆତ୍ମପ୍ରକାଶରେ ବାଧା ପାଇପାରେ—ମାତ୍ର କେଉଁଥିରେ ସମସ୍ୟା ସମାଧାନରେ ସୁବିଧା ହୁଏ ନା ।

ମୋର ମନେ ହୁଏ ଅନ୍ୟ ସବୁ ସରକାର ପରି ବ୍ରିଟିଶ ସରକାରର ଧାରଣା ଯେ ଭାରତରେ "ଆନ୍ଦୋଳନକାରୀଙ୍କ ଯୋଗୁଁ ଅଶାନ୍ତି ସବୁ

ଉଠୁଛି । ଏହାପରି ଭୂଲ ଧାରଣା ଆଉ ନାହିଁ । ଗତ ୧୫ ବର୍ଷ ହେଲି ଭାରତରେ ଏକ ବଡ଼ ନେତା ବାହାରିଛନ୍ତି—ସେ ଏହି ଦେଶର କୋଟି କୋଟି ଜନସାଧାରଣଙ୍କର ଶ୍ରଦ୍ଧା ଓ ପ୍ରଶଂସାଭାଜନ ହୋଇଛନ୍ତି—ସେ ଅକ୍ଲେଶରେ ନିଜ ମତରେ ଭାରତକୁ ଚଳାଇ ପାରନ୍ତେ । ଭାରତର ବର୍ତ୍ତମାନ ଇତିହାସ ଗଢ଼ିବାରେ ତାଙ୍କର ବେଶି ହାତ ଅଛି । ମାତ୍ର ଅଧିକ ହାତ ଅଛି ଭାରତର ଲୋକ ସାଧାରଣଙ୍କର । ସେମାନେ ଅନ୍ଧଭାବରେ ତାଙ୍କର ଉପଦେଶ ମାନି ଚଳିଛନ୍ତି । ଲୋକେ ହିଁ ଏଥିରେ ପ୍ରଧାନ ଅଗ୍ରନେତା—ତାଙ୍କ ପଶ୍ଚାତରେ ଥିବା ବିରାଟ ଐତିହାସିକ ପ୍ରେରଣାହିଁ ତାଙ୍କୁ ଅଗ୍ରସର କରାଇ ପ୍ରସ୍ତୁତ କରୁଥିଲା ଏବଂ ନେତାମାନଙ୍କ ଉପଦେଶ ମାନିବାକୁ ପ୍ରସ୍ତୁତ ହୋଇ ଯାଉଥିଲେ । ମାତ୍ର ଏହି ଐତିହାସିକ ଘଟଣା ଏବଂ ରାଜନୈତିକ ଓ ସାମାଜିକ ପ୍ରେରଣା ନଥିଲେ କୌଣସି ନେତା ବା 'ଆନ୍ଦୋଳନକାରୀ' କେବେହେଁ ସେମାନଙ୍କ ଭିତରେ କର୍ମପ୍ରେରଣା ଜାଗ୍ରତ କରି ପାରି ନ ଥାନ୍ତେ । ନେତା ହିସାବରେ ଗାନ୍ଧିଜୀଙ୍କର ପ୍ରଧାନ ଗୁଣ ହେଉଛି ଯେ ସେ ଲୋକଙ୍କର ନାଡ଼ୀ ଚିହ୍ନି ପାରୁଥିଲେ ଏବଂ କାର୍ଯ୍ୟ ଓ ପ୍ରଗତି ନିମନ୍ତେ ଅନୁକୂଳ ପରିସ୍ଥିତି ଥିବାର ଜାଣିପାରୁଥିଲେ ।

ଦେଶରେ ଅନ୍ୟ ସାମାଜିକ ଆନ୍ଦୋଳନ ସହ ସାମଞ୍ଜସ୍ୟ ରଖି ଭାରତରେ ୧୯୩୦ ରେ ଏହି ଜାତୀୟ ଆନ୍ଦୋଳନ ଅଗ୍ରସର ହେଲା—ଏଥିଯୋଗୁଁ ଗୋଟାଏ ପ୍ରଧାନ ଶକ୍ତି ଉପୁଜିଲା—ଗୋଟାଏ ବାସ୍ତବତା ଫୁଟି ଉଠିଲା ଏବଂ ଏହା ଇତିହାସ ସହିତ ପଦକ୍ଷେପରେ ଆଗକୁ ଅଗ୍ରସର ହେଲା । କଂଗ୍ରେସ ଏହି ଜାତୀୟ ଆନ୍ଦୋଳନର ପ୍ରତିନିଧିତ୍ୱ କରୁଥିଲା ଏବଂ କଂଗ୍ରେସର ସମ୍ମାନବୃଦ୍ଧି ସଙ୍ଗେ ସଙ୍ଗେ ଏହି ଶକ୍ତି ଓ ସାମର୍ଥ୍ୟ ପ୍ରକାଶ ପାଇଲା । ଏହା ଅତ୍ୟନ୍ତ ଅସ୍ପଷ୍ଟ, ଏହାକୁ ହିସାବ କରାଯାଇ-ପାରେନା, କିମ୍ବା ନିର୍ଦ୍ଦିଷ୍ଟ କରାଯାଇ ପାରେନା—ମାତ୍ର ଯାହାହେଉ ଏହା ଥିଲା । ଅବଶ୍ୟ କୃଷକମାନେ କଂଗ୍ରେସରେ ପଶି ଏହାକୁ ପ୍ରକୃତ ଶକ୍ତିଦାନ କଲେ । ନିମ୍ନ ମଧ୍ୟବିତ୍ତଶ୍ରେଣୀହିଁ କଂଗ୍ରେସର ଯୋଦ୍ଧା

ହେଲେ । ଏପରି କି ଏହି ନୂତନ ବାୟୁମଣ୍ଡଳରେ ଭୀତଗ୍ରସ୍ତ ହୋଇ ଉଚ୍ଚ ବୁର୍ଜୋୟା ଶ୍ରେଣୀ ମଧ୍ୟ କଂଗ୍ରେସ ସହିତ ବନ୍ଧୁତା ସ୍ଥାପନ କରିବା ନିରାପଦ ମନେ କଲେ । କଂଗ୍ରେସ ନିର୍ଦ୍ଦେଶ ମତେ ଏକ ପ୍ରଚଣ୍ଡ ଝ ଫଳରେ ଭାରତର ଅଧିକାଂଶ ଲୋକଙ୍କ ମାଲିକ ଦସ୍ତଖତ ନେଲେ ଏବଂ କଂଗ୍ରେସ ସେମାନଙ୍କ ଉପରେ ଅସନ୍ତୁଷ୍ଟ ହେଲେପରି କୌଣସି କାର୍ଯ୍ୟ କରିବା ନିମନ୍ତେ ଭୟ କରୁଥିଲେ । ପ୍ରଥମ ଗୋଲ ଟେବୁଲ ବୈଠକରେ ଲଣ୍ଡନରେ ଲୋକେ ବସି ସୂକ୍ଷ୍ମ ଆଇନଗତ ପ୍ରଶ୍ନ ଉପରେ ତର୍କ କରୁଥିବାବେଳେ କଂଗ୍ରେସ ଅଲକ୍ଷିତ ଭାବରେ କ୍ରମେ ଜନସାଧାରଣଙ୍କ ପ୍ରତିନିଧି ହୋଇ ଶକ୍ତିଶାଳୀ ହୋଇ ଉଠୁଥିଲା । ଦିଲ୍ଲୀ ଚୁକ୍ତି ପରେ ଏହା କ୍ରମେ ବୃଦ୍ଧି ପାଇଲା କୌଣସି ବୃଥା ଆସ୍ଫାଳନପ୍ରଦ ବକ୍ତୃତା ଯୋଗୁଁ ନୁହେଁ ମାତ୍ର ୧୯୩୦ ଓ ତାର ପରବର୍ତ୍ତୀ ଘଟଣା ଯୋଗୁଁ ଏହା ହୋଇଥିଲା । ବାସ୍ତବିକ କଂଗ୍ରେସ ଲୋକଙ୍କ ସମ୍ମୁଖରେ ଥିବା ବିପଦ ଓ ଅସୁବିଧା ବିଷୟରେ ସଚେତନ ଥିଲେ ଏବଂ ଏହାକୁ ସ୍ପଷ୍ଟ କରି ସେମାନେ ଦେଖି ନ ଥିଲେ ।

ଦେଶରେ ଏପରି ଦୁଇଟି ଶକ୍ତି ପ୍ରଭାବଶାଳୀ ହେଉଛନ୍ତି ଦେଖି ସରକାର ବ୍ୟସ୍ତ ହେବା ସ୍ୱାଭାବିକ । ଏହାର କିଛି ଉତ୍ତର ନ ଥିଲା, କାରଣ କର୍ତ୍ତୃପକ୍ଷଙ୍କ ହାତରେହିଁ ପ୍ରକୃତ ଶକ୍ତିଥିଲା – ଏହା ମନସ୍ତତ୍ତ୍ୱ ଦିଗରୁ ରହିଲା ଏଥିରେ ସନ୍ଦେହ ନାହିଁ । ଭିତ୍ତିହୀନ ପ୍ରବାସୀ ଓ ଲୋକସାଧାରଣଙ୍କ ଦ୍ୱାରା ଚୂର୍ଣ୍ଣୀଭୂତ ନ ହୋଇ ପାରୁଥିବା ସରକାର ପକ୍ଷରେ ଏହା ଅସହ୍ୟ; ଏହି ବାୟୁମଣ୍ଡଳ ଦେଖି ସେମାନଙ୍କର ଭୟ ସଞ୍ଚାର ହୋଇଗଲା— ପରେ ଯେଉଁ ସବୁ ଗ୍ରାମ୍ୟ ବକ୍ତୃତା ବା ଶୋଭାଯାତ୍ରା ଆଦି କଥା ଉଠାଇ ସେମାନେ ଆପତ୍ତି କରିଥିଲେ, ତାହା କିଛି ନୁହେଁ । ସୁତରାଂ ସଂଘର୍ଷ ଅବଶ୍ୟମ୍ଭାବୀ ମନେ ହେଲା; କଂଗ୍ରେସ ଆତ୍ମହତ୍ୟା କରି ପାରେ ନା— ସରକାର ଏପରି ଦ୍ୱୈତ ପ୍ରଭୁତ୍ୱ ସହ୍ୟକରି ନ ପାରି କଂଗ୍ରେସକୁ ଦମନ କରିବା ନିମନ୍ତେ ବ୍ୟଗ୍ର ଥିଲା । କେବଳ ଦ୍ୱିତୀୟ ଗୋଲ ଟେବୁଲ ବୈଠକ ହେତୁ ଏହି ସଂଘର୍ଷ ଘଟିବାରେ ବିଳମ୍ବ ହେଲା । କେତେକ କାରଣରୁ

କୌଣସି ପ୍ରକାରେ ଗାନ୍ଧିଜୀ ଲଣ୍ଡନକୁ ଯିବା ବ୍ରିଟିଶ ସରକାରର ଇଚ୍ଛା ଥିଲା—ସେଥିପାଇଁ ସେମାନେ ଯଥାସମ୍ଭବ ସଂଘର୍ଷ କରାଇଦେଲେ ନାହିଁ ।

ତଥାପି ସଂଘର୍ଷ ଭାବ ବୃଦ୍ଧି ପାଇଲା ଏବଂ ସରକାର ଯେ କଠିନ ହେଉଛନ୍ତି ତାହା ଆମେ କ୍ରମେ ଅନୁଭବ କଲୁ । ଦିଲ୍ଲୀ ଚୁକ୍ତିର ଅଲଡନ ପରେ ଲର୍ଡ଼ ଇରଉଇନ୍ ଭାରତରୁ ଗଲେ ଏବଂ ତାଙ୍କ ସ୍ଥାନରେ ଲର୍ଡ଼ ଉଇଲିଙ୍ଗ୍‌ଡ଼ନ୍ ବଡ଼ଲାଟ ହୋଇ ଆସିଲେ । ଗୋଟିଏ ପ୍ରବାଦ ଥିଲା ଯେ ଏହି ନୂତନ ବଡ଼ଲାଟ ବଡ଼ କଡ଼ା ଏବଂ ରୁକ୍ଷ ଲୋକ—ତାଙ୍କ ପୂର୍ବ ବଡ଼ଲାଟଙ୍କ ପରି ମିଳାମିଶା ଗୃହାନ୍ତ ନାହିଁ । ନୀତି ଦିଗରୁ ନଦେଖି ବ୍ୟକ୍ତି ବିଶେଷ ଦୃଷ୍ଟିରୁ 'ଲିବରାଲ' ମାନଙ୍କ ପରି ରାଜନୀତି ବିଚାର କରିବାର ଅଭ୍ୟାସ ଆମ ରାଜନୀତିଜ୍ଞମାନଙ୍କ ଭିତରେ ଅନେକଙ୍କର ଅଛି । ସେମାନେ ବୁଝିପାରନ୍ତି ନାହିଁ ଯେ ବ୍ରିଟିଶ ସାମ୍ରାଜ୍ୟର ନୀତି ବଡ଼ ଲୋକଙ୍କ ବ୍ୟକ୍ତିଗତ ମତ ଉପରେ ନିର୍ଭର କରେନା । ତେଣୁ ବଡ଼ଲାଟ ବଦଳିରେ କିଛି ପ୍ରଭେଦ ହୋଇପାରେନା ଓ ହୋଇ ନଥିଲା ମଧ୍ୟ; ପରିସ୍ଥିତି ଅଗ୍ରସର ହେବା ସଙ୍ଗେ ସଙ୍ଗେହିଁ କ୍ରମେ ସରକାର ନୀତି ପରିବର୍ତ୍ତିତ ହୋଇଛି । ସିଭିଲିୟାନମାନେ ଚୁକ୍ତି ଏବଂ କଂଗ୍ରେସ ସହିତ ଗୋଟିଏ କାରବାରକୁ ପସନ୍ଦ କରୁ ନଥିଲେ; ସେମାନଙ୍କର ଶିକ୍ଷା ଏବଂ ପ୍ରଭୁତ୍ୱମୂଳକ ସରକାର ସମ୍ବନ୍ଧରେ ଧାରଣା ଏହାର ବିରୋଧୀ । ସେମାନଙ୍କର ଗୋଟିଏ ଧାରଣା ହେଲା ଯେ ଗାନ୍ଧିଜୀଙ୍କୁ ପ୍ରାୟ ସମାନ ଭାବରେ ବ୍ୟବହାର କରିବାରୁ କଂଗ୍ରେସର ପ୍ରଭାବ ଓ ଗାନ୍ଧିଜୀଙ୍କର ସମ୍ମାନ ବଢ଼ିଗଲା । ଏହାକୁ ଦୁଇ ଉଜ ପାଦ ତଳକୁ ଖସାଇ ଦେବାର ବେଳ ଆସିଛି । ଏହା ଏକ ନିର୍ବୋଧ ଧାରଣା; ମାତ୍ର କୌଣସି ମୌଳିକ ଚିନ୍ତା କେତେକ ଭାରତର ସିଭିଲ ସର୍ଭିସ ଲୋକଙ୍କଠାରେ ଦେଖାଯାଏ ନାହିଁ । ଯେଉଁ କାରଣରୁ ହେଉ ପଛକେ, ସରକାର ଖୁବ ଠାଣ ହେବାକୁ ଲାଗିଲେ ଏବଂ ପୁରୁଣା ଧର୍ମ ଗୁରୁଙ୍କ ପରି ଆମକୁ କହିବାକୁ ଲାଗିଲେ—"ମୋର କନିଷ୍ଠ ଅଙ୍ଗୁଳି ମୋ ପିତାଙ୍କ ଅଣ୍ଟା ଅପେକ୍ଷା ମୋଟା; ସେ ତମକୁ ଚାବୁକଦେଇ ଶାସନ କରୁଥିଲେ ମୁଁ ବିଛା ଦେଇ ଶିକ୍ଷା ଦେବ ।"

କିନ୍ତୁ ଶିକ୍ଷା ଦେବାର ସମୟ ସେତେବେଳ ପର୍ଯ୍ୟନ୍ତ ପହଞ୍ଚି ନଥିଲା । ସମ୍ଭବ ହେଲେ କଂଗ୍ରେସକୁ ଗୋଲ ଟେବୁଲ ବୈଠକରେ ପ୍ରତିନିଧିତ୍ୱ କରିବାକୁ ପଡ଼ିବ । ବଡ଼ଲାଟ ଓ ଅନ୍ୟ କର୍ମଚାରୀଙ୍କ ସହ କଥାବାର୍ତ୍ତା କରିବା ନିମନ୍ତେ ଗାନ୍ଧିଜୀ ଦୁଇଥର ସିମଲା ଗଲେ । ସେମାନେ ଅନେକ ବିଷୟ ବିଶେଷରୂପେ ବଙ୍ଗଳା ଛଡ଼ା ସୀମାନ୍ତରେ 'ଲାଲକୁର୍ତ୍ତି' ଆନ୍ଦୋଳନ ଯୁକ୍ତପ୍ରଦେଶର କୃଷକ ସମସ୍ୟା ଆଲୋଚନା କଲେ—ସରକାର ଏଥିରେ ବ୍ୟତିବ୍ୟସ୍ତ ହୋଇଥିଲେ ।

ଗାନ୍ଧିଜୀ ସିମଲାରୁ ମୋତେ ଡକାଇ ପଠାଇଲେ ଏବଂ ଭାରତ ସରକାରର କେତେକ କର୍ମଚାରୀଙ୍କ ସହ ସାକ୍ଷାତ ହେବାର ମୋର ସୁବିଧା ହେଲା । ମୁଁ କେବଳ ଯୁକ୍ତପ୍ରଦେଶ ବିଷୟରେ କଥାବାର୍ତ୍ତା କରିଥିଲି । ଖୋଲା ଖୋଲି କଥାବାର୍ତ୍ତା ହେଲା—ଏହି ସବୁ ପରସ୍ପରର ଛୋଟ ଛୋଟ ଅଭିଯୋଗ ଛଡ଼ା ପ୍ରକୃତ ସଂଘର୍ଷ କେଉଁଠି ସେ କଥା ମଧ୍ୟ ଆଲୋଚିତ ହୋଇଥିଲା । ମୋର ମନେ ଅଛି, ମୁଁ କଥାପ୍ରସଙ୍ଗରେ ଶୁଣିଲି ଯେ ଖୁବ ଜୋରରେ ଛଅମାସ ଭିତରେ ଆଇନ ଅମାନ୍ୟ ଆନ୍ଦୋଳନ ସମ୍ପୂର୍ଣ୍ଣ ରୂପେ ଦମନ କରିଦେବା ନିମନ୍ତେ ସରକାର ୧୯୩୧ ମସିହା ଫେବ୍ରୁଆରୀ ମାସରେ ବ୍ୟବସ୍ଥା କରିଥିଲା । ସେମାନେ ଦମନ ଯନ୍ତ୍ର ସଜାଡ଼ି ରଖିଥିଲେ; କେବଳ ତାହା ଚାଲୁ କରିବା ବାକି ଥିଲା । ମାତ୍ର ମୋର ଜବରଦସ୍ତି କିଛି କରିବା ଅପେକ୍ଷା ପରସ୍ପର କଥାବାର୍ତ୍ତାରେ ଯଦି ଏକ ଚୁକ୍ତିନାମାରେ ପହଞ୍ଚିବା ସମ୍ଭବ ହୋଇପାରେ ଏହା ସ୍ଥିର ସେମାନେ କଥାବାର୍ତ୍ତା ଆରମ୍ଭ କଲେ ଏବଂ ଏହା ଫଳରେ ଦିଲ୍ଲୀଚୁକ୍ତି ହୋଇପାରିଥିଲା । ଚୁକ୍ତି ରହି ନ ପାରିଲେ ଅନ୍ୟ ଦିଗ ଚଲାଇବାପାଇଁ ଡେରି ନଥିଲା—ଅଙ୍ଗୁଳି ନିର୍ଦ୍ଦେଶରେ ଏହା ହୋଇ ପାରନ୍ତା । ଆମକୁ ଏକ ସୂଚନା ଦେଲାପରି ଜଣାପଡ଼ିଲା ଯେ ଯଦି ଆମ୍ଭେମାନେ ଭଲ ବ୍ୟବହାର ନକରୁ ତେବେ ଅଦୂର ଭବିଷ୍ୟତରେ ଏହା ଆରମ୍ଭ ହୋଇଯିବ । ଏହା ଖୁବ ଭଦ୍ରତା ଓ ଖୋଲାଖୋଲି ଭାବରେ

ଆମକୁ ଲୁହାହେଲା—ବଉସ୍ତ ଠକ ଜାଣିଥିଲେ ଯେ ଆମକୁ ଛାଡ଼ ଏବଂ ଆମେ ଯାହା କରୁ ବା କହୁ ସେଥିରେ ଅଦ୍ଧବ୍ୟର୍ଥ ।

ଆଉ ଜଣେ ବଡ଼ ସରକାରୀ କର୍ମଚାରୀ କଂଗ୍ରେସର ପ୍ରଶଂସା କରୁଥିଲେ । ଆମେ ଅରାଜନୈତିକ କେତେକ ସମସ୍ୟା ସେତେବେଳେ ବ୍ୟାପକ ଭାବରେ ଆଲୋଚନା କରୁଥିଲୁ ଏବଂ ସେ ମୋତେ କହିଲେ ଯେ ରାଜନୀତି ବାଦ ଦେଲେ କଂଗ୍ରେସ ଭାରତର ଗୋଟାଏ ବଡ଼ସେବା କରିଛି । ଭାରତୀୟମାନେ ଭଲ ସଙ୍ଗଠନକାରୀ ନୁହନ୍ତି ବୋଲି ସାଧାରଣତଃ ଦୋଷାରୋପ କରାଯାଏ, ମାତ୍ର ଚଳିତ ବିରୋଧ ଓ ଅସୁବିଧା ସତ୍ତ୍ୱେ ୧୯୩୦ ରେ କଂଗ୍ରେସ ଅଦ୍ଭୁତ ସଙ୍ଗଠନ କାର୍ଯ୍ୟ କରି ପାରିଛି ।

ଗାନ୍ଧିଜୀ ପ୍ରଥମଥର ସିମିଲା ଗଲା ପରେ ସୁଦ୍ଧା ଗୋଲଟେବୁଲ ସମ୍ମିଳନୀକୁ ଯିବା ସମ୍ବନ୍ଧରେ ନିଶ୍ଚିତ ହୋଇ ପାରି ନ ଥିଲା । ଅଗଷ୍ଟ ଶେଷ ସପ୍ତାହରେ ଦ୍ୱିତୀୟ ଥର ପାଇଁ ସେ ସିମଲା ଗଲେ । ଏକଥା ନଚେତ ସେକଥା କୌଣସି ପ୍ରକାର ଗୋଟାଏ ନିଶ୍ଚିତ କରିବାକୁ ପଡ଼ିବ ତଥାପି ଭାରତ ଛାଡ଼ିବା ସମ୍ବନ୍ଧରେ ମନସ୍ଥ କରିବାକୁ ଗାନ୍ଧିଜୀ କଷ୍ଟକର ମନେ କଲେ । ସେ ବଙ୍ଗଳା, ସୀମାନ୍ତପ୍ରଦେଶ ଓ ଯୁକ୍ତପ୍ରଦେଶରେ ଅଶାନ୍ତିର ବୀଜ ଦେଖି ପାରିଥିଲେ ଏବଂ ଭାରତରେ ଶାନ୍ତି ହେବାର ପ୍ରତିଶ୍ରୁତି ନ ପାଇଲେ ସେ ଯିବାଲାଗି ଇଚ୍ଛା କରୁ ନ ଥିଲେ । ଶେଷରେ ସରକାର ସହିତ ଗୋଟାଏ ପ୍ରକାର ରାଜିନାମା ହେଲା—ତାହା ଏକ ବିବୃତ୍ତିରେ ଏବଂ ତାଙ୍କ ଭିତରେ ଆଦାନ ପ୍ରଦାନ ହୋଇଥିବା ଚିଠି ପତ୍ରରେ ଲିପିବଦ୍ଧ ହୋଇଥିଲା । ଶେଷ ମୁହୂର୍ତ୍ତରେ ଯେଉଁ ଜାହାଜରେ ଗୋଲଟେବୁଲ ସମ୍ମିଳନୀର ପ୍ରତିନିଧିମାନେ ଯାଉଛନ୍ତି ସେଥିରେ ସେ ଯାଇପାରିବେ ବୋଲି ଏହା କରାଗଲା । ଏହା ପ୍ରକୃତରେ ଶେଷ ମୁହୂର୍ତ୍ତରେ ହେଲା । ସେତେବେଳକୁ ଶେଷ ଗାଡ଼ି ଯାଇ ସାରିଥିଲା । ସିମଲାରୁ କାଲ୍‌କା ପର୍ଯ୍ୟନ୍ତ ଏକ ସ୍ୱତନ୍ତ୍ର ଗାଡ଼ିର ବ୍ୟବସ୍ଥା ହେଲା—ଏହା ଯିବା ନିମନ୍ତେ ଅନ୍ୟ ଗାଡ଼ିର ସମୟ ଡେରି କରାଗଲା ।

ମୁଁ ତାଙ୍କ ସହିତ ସିମଲାରୁ ବମ୍ବେ ଗଲି ଏବଂ ସେଠାରେ ଜାହାଜ ଛାଡ଼ିଲେ ମୁଁ ତାଙ୍କୁ ବିଦାୟ ଦେଲି । ଜାହାଜ ତାଙ୍କୁ ଆରବ ସାଗର ଭିତରେ ପ.ଶ୍ଚାତ୍ୟ ଦେଶକୁ ନେଇଗଲା । କୁଡ଼ିବର୍ଷ ପାଇଁ ଆମର ଏହି ଶେଷ ଦେଖା ।



## ଗୋଲଟେବୁଲ ସମ୍ମିଳନୀ

ଭାରତରେ ଏବଂ ଲଣ୍ଡନରେ ଗୋଲଟେବୁଲ ସମ୍ମିଳନୀରେ ଗାନ୍ଧିଜୀଙ୍କୁ ଭଲରୂପେ ଚିହ୍ନିପାରିଥିବାର ଦାବୀ କରୁଥିବା ଜଣେ ଇଂରେଜ ସାମ୍ବାଦିକ ଲେଖିଛନ୍ତି:—

"ମୁଲତାନ ଜାହାଜରେ ଯାଇଥିବା ନେତାମାନେ ଜାଣିଥିଲେ ଯେ କଂଗ୍ରେସ କାର୍ଯ୍ୟକାରୀ ସମିତି ଭିତରେ ଗାନ୍ଧିଜୀଙ୍କ ବିରୁଦ୍ଧରେ ଏକ ଷଡ଼ଯନ୍ତ୍ର ଚାଲିଛି । ସେମାନେ ଜାଣିଥିଲେ ଯେ ଅନୁକୂଳ ମୁହୂର୍ତ୍ତ ପହଞ୍ଚିଲେ କଂଗ୍ରେସ ଗାନ୍ଧିଙ୍କୁ ତଡ଼ିଦେଇପାରେ । ମାତ୍ର କଂଗ୍ରେସ ଗାନ୍ଧିଙ୍କୁ ତଡ଼ିଦେଲେ ବୋଧହୁଏ ଏହାର ଅଧେ ସଭ୍ୟ ବାହାରିଯିବେ । ଏହି ଅଧେଙ୍କୁ ସାର୍ ତେଜ ବାହାଦୁର ସାପ୍ରୁ ଓ ମିଷ୍ଟର ଜୟକାର ନିଜର ଲିବରାଲ ମତବାଦ ଆଡ଼କୁ ଆଣିବାକୁ ଚେଷ୍ଟା କରିଥିଲେ । ତାଙ୍କ ନିଜ ଭାଷାରେ ଗାନ୍ଧି "ବିଭ୍ରାନ୍ତ ମସ୍ତିଷ୍କ" ବୋଲି ସେମାନେ ଗୋପନ ରଖି ନଥିଲେ । ଯେଉଁ ବିଭ୍ରାନ୍ତମସ୍ତିଷ୍କ ନେତା ତାହା ସହିତ କୋଟି କୋଟି ବିଭ୍ରାନ୍ତମସ୍ତିଷ୍କ ଅନୁଚର ଆଣିପାରିବ ତାଙ୍କୁ ଆପଣାର କରିନେବା ଭଲ ।*

---

*ଗ୍ଲୋଣ୍ଡି ବୋଲଟନଙ୍କର 'ଟ୍ରାଜେଡ଼ି ଅଫ୍ ଗାନ୍ଧିରୁ ନିଆ ହୋଇଛି ! ମୋର ଏ ପର୍ଯ୍ୟନ୍ତ ସେ ବହି ପଢ଼ିବାର ସୁଯୋଗ ମିଳିନାହିଁ—କେବଳ ଏ ସମ୍ବନ୍ଧରେ ବାହାରିଥିବା ଏକ ମନ୍ତବ୍ୟରୁ ମୁଁ ଏହା ନେଇଛି । ମୋର ଆଶା ଏଥିରେ ମୁଁ ଲେଖକ ବା ଏହି ଲେଖାରେ ଥିବା ଲେକ-

ମୁଁ ଜାଣେ ନା ସାଇ ତେଜବାହାଦୂର ସାପ୍ରୁ, ମିଷ୍ଟର ଜୟକାର ଓ ୧୯୩୨ରେ ଗୋଲ ଟେବୁଲ ବୈଠକକୁ ସେହି ଜାହାଜରେ ଯାଉଥିବା ଅନ୍ୟ ପ୍ରତିନିଧିଙ୍କ ମତ ଏଥିରେ କେତେଦୂର ଅଛି ମାତ୍ର ସାମ୍ବାଦିକ ବା ନେତା ଯେ ହେଉ ପଛକେ, ଭାରତ ରାଜନୀତି ସମ୍ବନ୍ଧରେ କିଛି ଜ୍ଞାନ ନ ଥାଇ ଏପରି ଏକ ମତ ଦେବା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ମୁଁ ତେବେ ଏପରି କଥା ଶୁଣି ନ ଥିଲି । ଅବଶ୍ୟ ଏହା ବୁଝିବା କଠିନ ନୁହେଁ—ସେହି ଦିନଠାରୁ ମୁଁ ଅଧିକାଂଶ ସମୟ ଜେଲରେ ଅଛି ।

ଷଡ଼ଯନ୍ତ୍ରକାରୀ କିଏ ଓ କେଉଁଥିପାଇଁ ସେମାନେ ଷଡ଼ଯନ୍ତ୍ର କରୁଥିଲେ ? ବେଳେ ବେଳେ କୁହାଯାଏ ଯେ ସର୍ଦ୍ଦାର ପଟେଲ ଓ ମୁଁ

---

ମାନଙ୍କ ପ୍ରତି କିଛି ଅନ୍ୟାୟ କରିନାହୁଁ । ଉପରେ ଲେଖା ଲେଖିବା ପରେ ମୁଁ ସେ ବହି ପଢ଼ିଲି । ବୋଲ୍‌ଟନ ଲେଖିଥିବା ଅନେକ କଥା ଏବଂ ସେଥିରୁ ସେ ଯେଉଁ ସବୁ ମତ ବାହାର କରିଛନ୍ତି, ତାହା ମୋ ମତରେ ସମ୍ପୂର୍ଣ୍ଣ ଅଯୌକ୍ତିକ । ପ୍ରକୃତ ଘଟଣାରେ ମଧ୍ୟ ଅନେକ ଭୁଲ ରହିଛି । ବିଶେଷତଃ କାର୍ଯ୍ୟକାରୀ ସମିତି ବୈଠକୀ ଚକ୍ର ବେଳେ ବା ପରେ କଣ କରିଥିଲି ଏ ସମ୍ବନ୍ଧରେ ଗୋଟାଏ ଅଦ୍ଭୁତ କଥା ଲେଖା ଅଛି । ୧୯୩୧ ମସିହାରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ କଂଗ୍ରେସ ସଭାପତି ହେଲେ ; ସେ ଗାନ୍ଧିଜୀଙ୍କର ବିରୋଧ କରି ନେତୃତ୍ୱ ନିଜ ହାତକୁ ନେଲେ ! ପ୍ରକୃତରେ କହିବାକୁ ଗଲେ ଗତ ୧୫ବର୍ଷ ଭିତରେ କଂଗ୍ରେସରେ (ଦେଶରେ ମଧ୍ୟ) କୌଣସି କଂଗ୍ରେସ ସଭାପତିଠାରୁ ସେ ପଥେଷ୍ଟ ବଡ଼ଲୋକ ହୋଇଛନ୍ତି ସେହିହେଁ ସଭାପତି ବାଛନ୍ତି ଏବଂ ତାଙ୍କ ମତ ଗ୍ରହଣ କରାଯାଏ । ସେ ନିଜେ ସଭାପତି ହେବାକୁ ବାରମ୍ବାର ଅନିଚ୍ଛା ପ୍ରକାଶ କରି ନିଜର ସହକର୍ମୀମାନଙ୍କୁ ଏଥିରେ ବସାଇବାକୁ ପସନ୍ଦ କରନ୍ତି । ତାଙ୍କ ଯୋଗୁହିଁ ମୁଁ ସଭାପତି ହୋଇଥିଲି । ପ୍ରକୃତରେ ସେ ନିର୍ବାଚିତ ହୋଇଥିଲେ—ମାତ୍ର ସେ ପ୍ରତ୍ୟାହାର କରି ମୋତେ ଜବରଦସ୍ତି

କାର୍ଯ୍ୟକାରୀ ସମିତିରେ ଚରମବାଦୀ—ତେଣୁ ଆମେ ସେହି ଷଡ଼ଯନ୍ତ୍ରକାରୀ ନେତାଙ୍କ ମଧ୍ୟରେ ଗଣ୍ୟ ହୋଇ ଥାଇ ପାରୁ । ବୋଧହୁଏ ସମଗ୍ର ଭାରତରେ ବଲ୍ଲଭଭାଇ ଯେପରି ଗାନ୍ଧିଜୀଙ୍କ ପ୍ରତି ଅନୁରକ୍ତ କେହି ସେପରି ନାହାନ୍ତି । ସେ ଜଣେ ବଳବାନ୍ ଲୋକ । ତାଙ୍କ କାର୍ଯ୍ୟରେ ଅଦମ୍ୟ—ତଥାପି ବ୍ୟକ୍ତିଗତ ଭାବରେ ଏବଂ ଗାନ୍ଧିଜୀଙ୍କର ଆଦର୍ଶ ଓ ନୀତି ସେ ଗ୍ରହଣ କରିଛନ୍ତି । ମୁଁ ଏହିସବୁ ଆଦର୍ଶ ଓ ସେହିରୂପେ ଗ୍ରହଣ କରିଚି ବୋଲି ଦାବୀ କରେ ନା, ମାତ୍ର ଗାନ୍ଧିଜୀଙ୍କ ସହିତ ଘନିଷ୍ଠ ସମ୍ପର୍କ ରଖି କାର୍ଯ୍ୟ କରିବାର ସୁବିଧା ମୁଁ ପାଇଛି ଏବଂ ତାଙ୍କ ବିରୁଦ୍ଧରେ କୌଣସି ପ୍ରକାର ଷଡ଼ଯନ୍ତ୍ର କରିବା କଥା ଆଦୌ ଚିନ୍ତା

---

ବସାଇଲେ । ବଲ୍ଲଭ ଭାଇ ପଟେଲ ସାଧାରଣ ନିର୍ବାଚନରେ ନିର୍ବାଚିତ ହୋଇଥିଲେ । ଆମେ ନିକଟରେ ଜେଲରୁ ଫେରିଥାଉ; କଂଗ୍ରେସ କମିଟି-ଗୁଡ଼ିକ ବେଆଇନ ଅନୁଷ୍ଠାନରୂପେ ଥିବାରୁ ସାଧାରଣ ଭାବରେ କାର୍ଯ୍ୟ କରୁ ନ ଥାଏ । ସେଥିପାଇଁ କାର୍ଯ୍ୟକାରୀ ସମିତି କରାଚୀ କଂଗ୍ରେସପାଇଁ ସଭାପତି ନିର୍ବାଚନ କଲା । ବଲ୍ଲଭଭାଇ ପଟେଲଙ୍କ ସମେତ ସମସ୍ତ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ଗାନ୍ଧିଜୀଙ୍କୁ ସଭାପତି ହେବା ନିମନ୍ତେ ଅନୁରୋଧ କଲେ । ସେ ଯଦିଓ କଂଗ୍ରେସର ମସ୍ତିଷ୍କ ଥିଲେ, ତଥାପି ଏକ ସଂକଟ ବର୍ଷ ନାମରେ ମଧ୍ୟ କଂଗ୍ରେସର ପ୍ରଧାନ ଅଧିନାୟକ ହେବା ନିମନ୍ତେ ସମସ୍ତେ ଚାହୁଁଥିଲେ । ସେ ନିଜେ ରାଜିହେଲେ ନାହିଁ ଏବଂ ବଲ୍ଲଭଭାଇ ପଟେଲଙ୍କୁ ଏହା ଗ୍ରହଣ କରିବାକୁ ଜିଦ ଧରିଲେ । ମୋର ମନେ ଅଛି ସେତେବେଳେ ତାଙ୍କୁ କୁହାଗଲା ଆପଣ ସବୁବେଳେ ମୁସୋଲିଣୀ ହେବାକୁ ଚାହାନ୍ତି—ସବୁବେଳେ ଆମକୁ ସାମୟିକ ରାଜା ଏବଂ ବଡ଼ କର୍ତ୍ତା କରିବାକୁ ଚାହାନ୍ତି ।

ମିଷ୍ଟର୍ ବୋଲଟନଙ୍କ ବହିରେ ଆଉ ଯେଉଁସବୁ ଭୁଲଧାରଣା ରହିଛି ତାହା ଏକ ନୋଟରେ ଲେଖିବା ସମ୍ଭବ ନୁହେଁ । ଯାହାହେଉ ଏଥିରେ ଗୋଟିଏ ବ୍ୟକ୍ତିଗତ କଥା ମୁଁ ଲେଖିବାକୁ ଚାହେଁ । ତାଙ୍କର ବହି

କରାଯାଇ ପାରେ ନା । ସମଗ୍ର କାର୍ଯ୍ୟକାରୀ ସମିତି ପକ୍ଷରେ ମଧ୍ୟ ଏହା ପ୍ରଯୁଜ୍ୟ । ପ୍ରକୃତରେ କାର୍ଯ୍ୟକାରୀ ସମିତି ତାଙ୍କ ଦ୍ୱାରା; ସେ ଅନ୍ୟ କେତେକ ବନ୍ଧୁଙ୍କ ସହଯୋଗରେ ଏହା ମନୋନୀତ କରୁଥିଲେ ଏବଂ ଗୋଟାଏ ଶୃଙ୍ଖଳା କରିବା ନିମନ୍ତେ ନିର୍ବାଚନ ହେଉଥିଲା । ଏହି କମିଟିର ଯେଉଁମାନେ ମେରୁଦଣ୍ଡ ସେମାନେ ଅନେକ ବର୍ଷ ହେଲା ଏହାର ଏକପ୍ରକାର ସ୍ଥାୟୀ ସଭ୍ୟ ହୋଇ ରହିଛନ୍ତି । ଏମାନଙ୍କ ଭିତରେ ରାଜନୀତିକ ମତଭେଦ ଅଛି, ଦୃଷ୍ଟିକୋଣ ଓ ମନୋଭାବରେ ମଧ୍ୟ ପ୍ରଭେଦ ଅଛି; ମାତ୍ର ବର୍ଷ ବର୍ଷ ଧରି ସମ୍ବନ୍ଧ ଏବଂ ଏକ ସଙ୍ଗରେ ବୋଝ ବୋହି ଓ କଷ୍ଟର ସମ୍ମୁଖୀନ ହୋଇଥିବାରୁ ଏହା ପରସ୍ପରକୁ ବାନ୍ଧି ରଖିଛି । ପରସ୍ପର ଭିତରେ ବନ୍ଧୁଭାବ ବୃଦ୍ଧି ପାଇଛି—ପରସ୍ପର ପ୍ରତି ଖାତିର ବଢ଼ିଛି । ସେମାନେ କେତେକ ଲୋକଙ୍କର ସମାବେଶ ନୁହନ୍ତି; ମାତ୍ର ପରସ୍ପର ସଂହତ ଅଙ୍ଗାଙ୍ଗୀ ସମ୍ବନ୍ଧ ରହିଛି । କେହି କାହାର ବିରୁଦ୍ଧରେ ଷଡ଼ଯନ୍ତ୍ର କରିବା କଥା କଳ୍ପନା କରାଯାଇ ପାରେ ନା । ଗାନ୍ଧିଜୀ କମିଟିରେ ପ୍ରାଧାନ୍ୟ କରନ୍ତି ଏବଂ ନିର୍ଦ୍ଦେଶ ସକାଶେ ତାଙ୍କ ମୁଖକୁ ସମସ୍ତେ ଅନାଇ ଥାଆନ୍ତି । ଅନେକ ବର୍ଷ ହେଲା ଏହିପରି ହୋଇଛି !

---

ଧାରଣା ଜନ୍ମିଥିଲା ପରି ଜଣାପଡ଼ୁଛି ଯେ, ଗୋଟିଏ ଇଉରୋପୀୟାନ କ୍ଲବକୁ ନିର୍ବାଚିତ ହୋଇ ନ ପାରିବାରୁ ପିତାଙ୍କର ରାଜନୀତି କ୍ଷେତ୍ରରେ ପରିବର୍ତ୍ତନ ଘଟିଲା—ଏଥିଯୋଗୁଁ ସେ ଯେ କ୍ରମେ କ୍ରମେ ଉଗ୍ରପନ୍ଥୀ ହେଲେ ତାହା ନୁହେଁ, ଇଂରେଜ ସମାଜ ବି ଛାଡ଼ିଦେଲେ । ଏହି ଗଳ୍ପ ବାରମ୍ବାର କୁହାଯାଉଥିଲେ ସୁଦ୍ଧା ଏହା ସମ୍ପୂର୍ଣ୍ଣ ଅସତ୍ୟ । ପ୍ରକୃତ ଘଟଣା ଅତି ସାମାନ୍ୟ—ତଥାପି ରହସ୍ୟ ଦୂର କରିବାପାଇଁ ମୁଁ ତାହା ଲେଖୁଛି । ତାଙ୍କ ଓକିଲାତିର ପ୍ରଥମାବସ୍ଥାରେ ସେତେବେଳର ଏଲାହାବାଦ ହାଇକୋର୍ଟ ବିଚାରପତି ସାର୍ ଜନ ଏଜ୍‌ଙ୍କର ସେ ପ୍ରିୟପାତ୍ର ହୋଇ ଉଠିଲେ । ସାର୍ ଜନ ତାଙ୍କୁ ଏଲାହାବାଦ ଇଉରୋପୀୟାନ କ୍ଲବରେ ଯୋଗ ଦେବା ନିମନ୍ତେ କହିଥିଲେ ଏବଂ ସେ ନିଜେ ତାଙ୍କ ନାମ ପ୍ରସ୍ତାବ କରିବେ ବୋଲି କହିଲେ । ତାଙ୍କର ଏହି ସଦିଚ୍ଛା ପରାମର୍ଶ

୧୯୩୦ରେ ଆମର ସଂଗ୍ରାମ ଯେଉଁ ସଫଳତା ଲାଭ କଲା, ତାହା ଫଳରେ ୧୯୩୧ରେ ଏହି ପ୍ରବୃତ୍ତି ଅଧିକ ଦେଖା ଦେଲା ।

'ଚରମପନ୍ଥୀ' ମାନେ ତାଙ୍କୁ କଂଗ୍ରେସରୁ 'ତଡ଼ି ଦେବାକୁ' ଚେଷ୍ଟା କରୁଥିବାର ଉଦ୍ଦେଶ୍ୟ କଅଣ ? ସେ ସର୍ବଦା ମିଳାମିଶା କରିବାକୁ ପ୍ରସ୍ତୁତ; ସେଥିପାଇଁ ସେ ଟିକିଏ ବୋଝସ୍ୱରୂପ ଥିଲେ ବୋଲି ବୋଧହୁଏ ଧାରଣା ଥିଲା । ମାତ୍ର ତାଙ୍କ ଛଡ଼ା ସଂଗ୍ରାମ, ଆଇନ ଅମାନ୍ୟ ବା ସତ୍ୟାଗ୍ରହ କେଉଁଠି ? ସେ ଏହି ଜୀବନ୍ତ ଆନ୍ଦୋଳନର ଏକ ଅଙ୍ଗ, ପ୍ରକୃତରେ ସେ ନିଜେହିଁ ଆନ୍ଦୋଳନ । ସଂଗ୍ରାମ ସମ୍ପୂର୍ଣ୍ଣରୂପେ ତାଙ୍କ ଉପରେ ନିର୍ଭର କରୁଥିଲା । ଅବଶ୍ୟ ଜାତିର ସଂଗ୍ରାମ ତାଙ୍କର ସୃଷ୍ଟି ନୁହେଁ କିମ୍ବା କୌଣସି ବ୍ୟକ୍ତିବିଶେଷ ଉପରେ ଏହା ନିର୍ଭର କରୁ ନ ଥିଲା । ଏହାର ମୂଳ ଗଭୀର ଭିତରେ ଥିଲା । ଏହି ସଂଗ୍ରାମର ଏକ ଅଂଶର ପ୍ରତୀକ ହେଉଛି ଆଇନ ଅମାନ୍ୟ ଆନ୍ଦୋଳନ — ଏହା ତାଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲା । ତାଙ୍କଠାରୁ ଅଲଗା ହେବା ଅର୍ଥ ଏହି ଆନ୍ଦୋଳନକୁ ବନ୍ଦ କରି ଦେଇ ପୁଣି ନୂତନ ଭିତ୍ତି ଉପରେ ଠିଆ ହେବା । ଯେ କୌଣସି ସମୟରେ ଏପରି ପ୍ରସ୍ତାବ ବଡ଼ କଷ୍ଟକର ହେବ, ୧୯୩୧ ମସିହାରେ ଏହା ତ କଳ୍ପନା କରିବାପାଇଁ ଅସମ୍ଭବ ।

---

ସକାଶେ ମୋ ପିତା ତାଙ୍କୁ ଧନ୍ୟବାଦ ଦେଲେ — ମାତ୍ର ଗୋଲମାଲ ହୋଇପାରେ ବୋଲି ଦର୍ଶାଇଲେ । ସେ ଜଣେ ସରକାରୀ ଥିବାରୁ କେତେକ ଇଂରେଜ ତାଙ୍କ ନାମକୁ ଆପତ୍ତି କରି ତାଙ୍କ ବିରୁଦ୍ଧରେ ଭୋଟ ଦେଇ ପାରନ୍ତି । କୌଣସି ସାମରିକ କର୍ମଚାରୀ ପରୋକ୍ଷଭାବରେ ହୁଏ ତ ତାଙ୍କର ନିନ୍ଦା କରି ପାରନ୍ତି — ଏପରି ଅବସ୍ଥାରେ ସେ ପ୍ରାର୍ଥୀ ହେବାକୁ ଚାହାନ୍ତି ନାହିଁ । ସାର୍ ଜନ କହିଲେ ଏଲାହାବାଦର ବ୍ରିଗେଡ଼ିୟର ଜେନେରାଲ ତାଙ୍କ ନାମ ସମର୍ଥନ କରିବେ । ଯାହାହେଉ ଶେଷରେ ଏକଥା ଆଉ ହେଲା ନାହିଁ — ପିତା କୌଣସି ପ୍ରକାର ଅପମାନ ବରଣ କରିବାକୁ ଚାହାନ୍ତି ନାହିଁ ବୋଲି ପରିଷ୍କାର ରୂପେ କହିଦେବାରୁ

ବାସ୍ତବରେ ଆମ ଭିତରୁ କେତେକ ଲୋକ ତାଙ୍କୁ କଂଗ୍ରେସରୁ ତଡ଼ିଦେବା ନିମନ୍ତେ ଷଡ଼ଯନ୍ତ୍ର କରୁଥିଲେ ବୋଲି କେତେକ ଲୋକଙ୍କର ଯେ ଧାରଣା ଏହା ଶୁଣିଲେ କୌତୁକ ଲାଗେ । ସାମାନ୍ୟ ସୂଚନା ଦେଲେ ଯେ ବାହାରି ଯିବେ ତାଙ୍କ ଲାଗି ଷଡ଼ଯନ୍ତ୍ର କଣ ଲୋଡ଼ା ? ସେ ଅବସର ନେବେ ବୋଲି ମତ ଦେବା ମାତ୍ରେ କାର୍ଯ୍ୟକାରୀ ସମିତି ଏବଂ ସାରା ଦେଶ ଶଙ୍କିତ ହୋଇ ପଡ଼ୁଥିଲା । ସେ ଆମ ସଂଗ୍ରାମର ଏପରି ଏକ ଅଂଶ ହୋଇଥିଲେ ଯେ ସେ ଆମକୁ ଛାଡ଼ିଦେଇ ପାରନ୍ତି ଏହା ଚିନ୍ତା କରିବା ଅସମ୍ଭବ ଥିଲା । ଆମେ ତାଙ୍କୁ ଲଣ୍ଡନ ପଠାଇବାକୁ ଇତଃସ୍ତତଃ କରୁଥିଲୁ—କାରଣ ତାଙ୍କ ଅନୁପସ୍ଥିତିରେ ଭାରତର ବୋଝ ଆମମାନଙ୍କ ଉପରେ ପଡ଼ିବ—ଆମେ ଏପରି ଅବସ୍ଥା ସୃଷ୍ଟି କରିଥିଲୁ—ଆମେ ତାଙ୍କ ଉପରେ ସର୍ବଦା ବୋଝ ଲଦି ଦେଇ ନିଶ୍ଚିନ୍ତ ରହୁଥିଲୁ । କାର୍ଯ୍ୟକାରୀ ସମିତିରେ ଓ ବାହାରେ ଆମ ଭିତରୁ ଅନେକଙ୍କର ଗାନ୍ଧୀଜୀଙ୍କ ସହିତ ଏପରି ଦୃଢ଼ ବନ୍ଧନ ହୋଇଛି ଯେ ତାଙ୍କ ବ୍ୟତୀତ କୌଣସି

---

ତାଙ୍କ ନାମ ଆଉ ପ୍ରସ୍ତାବିତ ହେଉ ନାହିଁ । ଏହି ଘଟଣା ହେତୁ ଇଂରେଜମାନଙ୍କ ସହିତ ତାଙ୍କର ବିରୋଧ ବଢ଼ିବା ଅପେକ୍ଷା ସେ ସାର୍ ଜନ୍ ଏଜ୍‌କର ଅଧିକ ପ୍ରିୟପାତ୍ର ହେଲେ ଏବଂ ପରେ ଅଧିକାଂଶ ଇଂରେଜଙ୍କ ସହିତ ତାଙ୍କର ବନ୍ଧୁତା ଜନ୍ମିଥିଲା । ଏହା ୧୮୯୦-୧୯୦୦ ମସିହା ବେଳର କଥା — ଏହି ଘଟଣା ଘଟିବାର ପ୍ରାୟ ୨୫ ବର୍ଷ ପରେ ସେ ଜଣେ ଅଗ୍ରଗାମୀ ରାଜନୈତିକ ଏବଂ ଅସହଯୋଗୀ ହେଲେ । ଏହି ପରିବର୍ତ୍ତନ କିଛି ଆଶ୍ଚର୍ଯ୍ୟ ନୁହେଁ । ପଞ୍ଜାବ ସାମରିକ ଆଇନ ଯୋଗୁଁ ଏହା ଶୀଘ୍ର ହୋଇପାରିଥିଲା ଏବଂ ଠିକ୍ ଏହି ସମୟରେ ଗାନ୍ଧୀଜୀଙ୍କର ପ୍ରଭାବରେ ପରିବର୍ତ୍ତନ ଘଟିଥିଲା । ସେତେବେଳେ ସୁଦ୍ଧା ଇଂରେଜମାନଙ୍କ ସହ ସମ୍ପର୍କ ସେ କୌଣସି ମୁଣ୍ଡ ଛିଣ୍ଡାଇବାକୁ ଚାହୁଁ ନଥିଲେ । ମାତ୍ର ଇଂରେଜ ଲୋକେ ଅଧିକାଂଶ ସରକାରୀ କର୍ମଚାରୀ ହୋଇଥିବାରୁ ଆଇନ ଅମାନ୍ୟ ଓ ଅସହଯୋଗ ଫଳରେ ସେମାନଙ୍କ ସହିତ ପୂର୍ବ ସମ୍ପର୍କରେ ବାଧା ପଡ଼ିବା ଅବଶ୍ୟମ୍ଭାବୀ ।

ସାମଗ୍ରିକ ସୁବିଧା ଭୋଗ କରିବା ଅପେକ୍ଷା ତାଙ୍କ ସଙ୍ଗେ ବିଫଳତା ବରଂ ଶ୍ରେୟସ୍କର ବୋଲି ମନେ ହୁଏ ।

ଗାନ୍ଧିଜୀ "ବିଭ୍ରାନ୍ତମସ୍ତିଷ୍କ" କି ନା ଏହା ସ୍ଥିର କରିବାର ଭାର ଆମ ଲିବରାଲ ନେତାମାନେ ନିଅନ୍ତୁ । ଏଥିରେ ସନ୍ଦେହ ନାହିଁ ଯେ ସମସ୍ତ ସମୟରେ ତାଙ୍କର ରାଜନୀତି ବଡ଼ ଦାର୍ଶନିକ ଏବଂ ବୁଝିବା କଷ୍ଟକର । ମାତ୍ର ସେ ଏକ ଅଦ୍ଭୁତ କାର୍ଯ୍ୟକ୍ଷମ ଓ ଅପୂର୍ବ ସାହସିକ ମନୁଷ୍ୟ ଭାବରେ ନିଜକୁ ପ୍ରମାଣିତ କରିଛନ୍ତି ସେ କେବଳ ଜାତିକୁ ଚଳାଇ ପାରନ୍ତି ଏହା ବହୁବାର ପ୍ରମାଣିତ ହୋଇ ଯାଇଛି । ଯଦି "ବିଭ୍ରାନ୍ତମସ୍ତିଷ୍କ"ର ଏପରି କାର୍ଯ୍ୟକାରୀ ଫଳ ହୁଏ, ତେବେ ମୁଷ୍ଟିମେୟ ଲୋକଙ୍କ ଭିତରେ ଆରମ୍ଭ ଓ ଶେଷ ଏବଂ ଆଲୋଚନାରେ ପର୍ଯ୍ୟବସିତ "ବାସ୍ତବ ରାଜନୀତି" ତୁଳନାରେ ଏହା କିଛି ଖରାପ ନୁହେଁ । ଏ କଥା ସତ୍ୟ ଯେ, ତାଙ୍କର କୋଟି କୋଟି ଅନୁଚର "ବିଭ୍ରାନ୍ତମସ୍ତିଷ୍କ" । ସେମାନେ ଗଣତନ୍ତ୍ର ଏବଂ ଶାସନତନ୍ତ୍ର ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ; ସେମାନେ ଦୈନନ୍ଦିନ ଜୀବନର ଆବଶ୍ୟକତା, ଖାଦ୍ୟ, ବସ୍ତ୍ର, ଭୂମି ଓ ବିଶ୍ରାମ ଏହି ଦିଗରେ ଚିନ୍ତା କରନ୍ତି ।

ମାନବ ପ୍ରକୃତି ପର୍ଯ୍ୟବେକ୍ଷଣରେ ନିପୁଣ ବିଦେଶୀ ସାମ୍ବାଦିକମାନେ ଭିତରକୁ ଅସିଲେ କିପରି ଭ୍ରମରେ ପଡ଼ି ଯାଆନ୍ତି ଏହା ମୋତେ ବଡ଼ ଅଦ୍ଭୁତ ପରି ଜଣାପଡ଼େ । ପ୍ରାଚ୍ୟ ସମ୍ପୂର୍ଣ୍ଣରୂପେ ସ୍ୱତନ୍ତ୍ର ଏବଂ ସାଧାରଣ ମାପକାଠିରେ ତାହା ମପାଯାଇ ପାରେ ନା ପିଲ୍ଟଡ୍ନ୍ ଏହି ବଦ୍ଧମୂଳ ଧାରଣା ଯୋଗୁଁ କଅଣ ଏହା ହୁଏ ? କିମ୍ବା ଇଂରେଜମାନଙ୍କୁ ଏପରି ସାମ୍ରାଜ୍ୟ ବନ୍ଧନ ଘାରିଥାଏ ଯେ ସେମାନଙ୍କ ଦୃଷ୍ଟିଶକ୍ତି ଏହି ଅନୁସାରେ ଗୃଳତ ହୁଏ ଏବଂ ବିକୃତ ହୋଇ ପଡ଼େ ? ଯେତେ ଅସମ୍ଭବ କଥା ହେଉ ପଛକେ ସେମାନେ ଆଦୌ ଆଶ୍ଚର୍ଯ୍ୟ ନ ହୋଇ ତାହା ବିଶ୍ୱାସ କରିବେ । କାରଣ ଏହି ରହସ୍ୟପୂର୍ଣ୍ଣ ପ୍ରାଚ୍ୟ ଭୂଖଣ୍ଡରେ ସବୁ କଥା ସମ୍ଭବ । ସମସ୍ତ ସମୟରେ ସେମାନଙ୍କ ପୁସ୍ତକରେ ସତ୍ୟ ବିବରଣୀ

ଦେଖାଯାଏ—ପର୍ଯ୍ୟବେକ୍ଷଣର ପ୍ରକୃତ ଶକ୍ତି ଦେଖାଯାଏ, ମାତ୍ର ଏଥିରେ ଅଦ୍ଭୁତ ଭୁଲସବୁ ମିଶିଯାଇଥାଏ ।

ମୋର ମନେ ଅଛି ୧୯୩୧ ମସିହାରେ ଗାନ୍ଧିଜୀ ଲଣ୍ଡନ ଯିବା ପୂର୍ବରୁ ଗୋଟିଏ ଲଣ୍ଡନ ସମ୍ବାଦପତ୍ରରେ ଜଣେ ଖ୍ୟାତନାମା ଫରାସୀ ସାମ୍ବାଦିକଙ୍କ ପ୍ରବନ୍ଧ ପଢ଼ିଥିଲି । ଭାରତ ସମ୍ବନ୍ଧରେ ତାହା ଲେଖା ହୋଇଥିଲା—ଏଥିରେ ତାଙ୍କ ମତାନୁସାରେ ୧୯୨୧ ମସିହାରେ ପ୍ରିନ୍ସ ଅଫ୍ ୱେଲସ୍ ଭାରତକୁ ଆସିଲାବେଳେ ଅସହଯୋଗ ଆନ୍ଦୋଳନ ସମୟରେ ଏକ ଘଟଣା ଘଟିଥିବାର ସେ ଉଲ୍ଲେଖ କରିଅଛନ୍ତି । ସେ ଲେଖିଛନ୍ତି, କୌଣସି ଏକ ସ୍ଥାନରେ (ସମ୍ଭବତଃ ଦିଲ୍ଲୀ) ମହାତ୍ମା ଗାନ୍ଧି ଅଜଣା ଭାବରେ ନାଟକୀୟ ଭାବରେ ଯୁବରାଜଙ୍କ ପାଦତଳେ ଆଣ୍ଠୁମାଡ଼ି ବସି ତାଙ୍କ ପାଦ ଧରିଲେ ଏବଂ ଏହି ହତଭାଗ୍ୟ ଦେଶକୁ ଶାନ୍ତି ଦେବା ନିମନ୍ତେ କାନ୍ଦି କାନ୍ଦି କହିବାକୁ ଲାଗିଲେ । ଆମ ଭିତରୁ କାହାରିକି ଏପରିକି ଗାନ୍ଧିଜୀଙ୍କୁ ମଧ୍ୟ ଏ କଥା ଜଣା ନାହିଁ—ମୁଁ ସେହି ସାମ୍ବାଦିକଙ୍କ ନିକଟକୁ ଏହା ଦର୍ଶାଇ ଖଣ୍ଡେ ଚିଠି ଲେଖିଲି । ସେ ଦୁଃଖ ପ୍ରକାଶ କରିଥିଲେ ମାତ୍ର ଗୋଟିଏ ବିଶ୍ୱସ୍ତ ସୂତ୍ରରୁ ସେ ଏହା ପାଇଥିଲେ ବୋଲି କହିଲେ । ମୋତେ ସବୁଠାରୁ ଆଶ୍ଚର୍ଯ୍ୟ ଲାଗିଲା ଯେ, ଗୋଟିଏ ଅତି ଅସମ୍ଭବ ଗପ ଯାହା କି ଗାନ୍ଧିଜୀ, କଂଗ୍ରେସ ବା ଭାରତ ସହିତ ସଂଯୁକ୍ତ ଲୋକେ ବିଶ୍ୱାସ ସୁଦ୍ଧା କରିପାରିବେ ନାହିଁ, ଏପରି କଥାଟାକୁ କୌଣସି ତଦନ୍ତ ନ କରି ପ୍ରକାଶ କରି ଦିଆଗଲା । ଦୁର୍ଭାଗ୍ୟର କଥା, ଯେ ଭାରତରେ ଅନେକ ଇଂରେଜ ବହୁତ ଦିନ ରହି ସୁଦ୍ଧା ଏ ଦେଶ, କଂଗ୍ରେସ ଏବଂ ଗାନ୍ଧିଜୀଙ୍କ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । ଏହା ଅତ୍ୟନ୍ତ ଅବିଶ୍ୱାସଯୋଗ୍ୟ ଓ ହାସ୍ୟକର ଗଳ୍ପ—କାଣ୍ଟରବରୀର ଆର୍ଚ୍ଚ ବିଶପ ହଠାତ୍ ମୁସୋଲିନୀଙ୍କ ମୁଣ୍ଡ ଉପରେ ଛିଡ଼ା ହୋଇ ଗୋଡ଼ ହଲାଇ ଆଶୀର୍ବାଦ କରିଥିଲେ ବୋଲି ଯେପରି ଗଳ୍ପ ଅଛି ଏହା ସେହିପରି ହାସ୍ୟପ୍ରଦ ।

ଏବେ ଖବରକାଗଜରେ ଆଉ ଏକ ପ୍ରକାର ଗଳ୍ପ ବାହାରୁଛି । କଥା ଉଠିଛି ଯେ ଗାନ୍ଧିଜୀଙ୍କ ପାଖରେ ଅଜସ୍ର ଧନ ଅଛି । କୋଟି କୋଟି ଟଙ୍କା ଗୁପ୍ତଭାବରେ ବନ୍ଧୁମାନଙ୍କ ପାଖରେ ଜମା ରହିଛି ଏବଂ ସେହି ଟଙ୍କା କ୍ଷେତ୍ରରେ କଂଗ୍ରେସ ତାଙ୍କ ପଛରେ ରହିଛି । କହିବାର ଭୟ ଯେ, ଗାନ୍ଧିଜୀ ଯଦି ସଭ୍ୟ ପଦରୁ ଅବସର ଗ୍ରହଣ କରନ୍ତି, ତେବେ କଂଗ୍ରେସ ଏହି ଧନ ଆଉ ପାଇବ ନାହିଁ । ଏ ଗଳ୍ପଟି ଅତ୍ୟନ୍ତ ମିଥ୍ୟା, କାରଣ ସେ ବ୍ୟକ୍ତିଗତ ଭାବରେ ବା ଗୁପ୍ତରେ ଆଦୌ ଧନ ରଖନ୍ତି ନାହିଁ ଏବଂ ଯାହା କିଛି ଧନ ସଂଗ୍ରହ କରନ୍ତି, ତାହା ସାଧାରଣ ଅନୁଷ୍ଠାନ ହାତରେ ଅର୍ପଣ କରି ଦିଅନ୍ତି । ବର୍ଷ ଶେଷ ପରେ ସେ ହିସାବ କଡ଼ାକଡ଼ି ରଖନ୍ତି—ତାଙ୍କ ସଂଗୃହୀତ ଧନ ପାଇଁ ହୋଇ ସାଧାରଣରେ ପ୍ରକାଶିତ ହୁଏ ।

୧୯୨୧ ରେ କଂଗ୍ରେସ ଯେଉଁ ଏକକୋଟି ଟଙ୍କା ସଂଗ୍ରହ କରିଥିଲା ତାହାକୁ ଲକ୍ଷ୍ୟକରି ସମ୍ଭବତଃ ଏ ଗୁଜବ ଉଠିଛି । ଏହି ଧନର ପରିମାଣ ବହୁତ ଜଣା ପଡ଼ୁଛି ! ମାତ୍ର ସମଗ୍ର ଦେଶରେ ବାଣ୍ଟି ହେଲେ ଏହା ଅଦ୍ଭୁତ କମ୍ ହେବ— ଏହି ଧନ ଜାତୀୟ ବିଶ୍ୱବିଦ୍ୟାଳୟ, ସ୍କୁଲ, କୁଟୀରଶିଳ୍ପ ବିଶେଷତଃ ଖଦଡ଼ର ଉନ୍ନତି, ହରିଜନ କାର୍ଯ୍ୟ ଏବଂ ଅନ୍ୟାନ୍ୟ ଅନେକ ଗଠନମୂଳକ କର୍ମଯୋଜନାରେ ଲାଗିଥିଲା । ଅଧିକାଂଶ ଧନହିଁ ବିଶେଷ କୌଣସି କାର୍ଯ୍ୟ ଉଦ୍ଦେଶ୍ୟରେ ଦିଆ ହୋଇଥିଲା—ଏହା ଏବେ ପୁଞ୍ଜି ରହିଛି ଏବଂ ସେହି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଖରଚ କରିଯାଉଛି । ସଂଗୃହୀତ ଧନର ଅବଶିଷ୍ଟାଂଶ ସ୍ଥାନୀୟ କମିଟିମାନଙ୍କ ହାତରେ ଦିଆଯାଇଥିଲା ଏବଂ କଂଗ୍ରେସର ରାଜନୈତିକ ଓ ସଂଗଠନ କାର୍ଯ୍ୟରେ ଖରଚ କରାଗଲା । ଅସହଯୋଗ ଆନ୍ଦୋଳନ ଏବଂ ତା ପରେ କଂଗ୍ରେସ କାର୍ଯ୍ୟ କେତେକ ବର୍ଷ ପର୍ଯ୍ୟନ୍ତ ଏହି ଅର୍ଥରେ ଚାଲିଥିଲା । ଗାନ୍ଧିଜୀ କହନ୍ତି ଦେଶର ଦାରିଦ୍ର୍ୟ ହେତୁ ଆମେ ଅତି ଅଳ୍ପ ଖରଚରେ ରାଜନୈତିକ ଆନ୍ଦୋଳନ ଚଳାଉ; ଅଧିକାଂଶ କାର୍ଯ୍ୟହିଁ ବିନା ବେତନରେ ସ୍ୱେଚ୍ଛାପୂର୍ବକ କରାଯାଏ ଏବଂ ଯେଉଁଠାରେ

ବେତନ 'ଅନ୍ୟାୟ୍ୟ,' ତାହା କୌଣସି ପ୍ରକାରେ ଜୀବନ ବଞ୍ଚାଇ ରଖିବା ନିମନ୍ତେ । ଆମର ସର୍ବୋଚ୍ଚ କର୍ମୀ, ଯାହା ଏଠି ହୋଇ ଏବଂ ତାଙ୍କ ଉପରେ ପରିବାର ନିର୍ଭର କରୁଥିଲେ ମଧ୍ୟ ନିୟମ ମଧ୍ୟ ପାଉଥିବା ବେତନ ଅଳ୍ପ, ତାହା ଇଂଲଣ୍ଡର ବେକାର ଭତ୍ତାଠାରୁ କମ । କଂଗ୍ରେସ ଆନ୍ଦୋଳନ ଗତ ପନ୍ଦର ବର୍ଷ ହେଲା ଯେତେ କମ୍ ଖରଚରେ ଚାଲିଛି, ଅନ୍ୟ କୌଣସି ରାଜନୈତିକ ବା ସାମାଜିକ ଆନ୍ଦୋଳନ ଏପରି ବ୍ୟାପକଭାବରେ ଚାଲିପାରେ କି ନା ସନ୍ଦେହ । କଂଗ୍ରେସର ସମସ୍ତ ଆୟ ଓ ଖର୍ଚ୍ଚ ହିସାବ ପରୀକ୍ଷିତ ସାଧାରଣ ପାଇଁ ହୋଇ ପ୍ରକାଶ କରାଯାଇଛି । ଏହାର କୌଣସି ଅଂଶ ଗୋପନ ରହି ନାହିଁ । କେବଳ ଆଇନ ଅମାନ୍ୟ ଆନ୍ଦୋଳନ ସମୟରେ କଂଗ୍ରେସ ବେଆଇନ ହୋଇ ଥିବାରୁ ଗୋପନ ରଖାଯାଇଥିଲା ।

ଗାନ୍ଧିଜୀ କଂଗ୍ରେସର ଏକମାତ୍ର ପ୍ରତିନିଧିରୂପେ ଲଣ୍ଡନ ଗୋଲ ଟେବୁଲ ବୈଠକକୁ ଗଲେ । ଆମେ ସାଙ୍ଗରେ ଅନ୍ୟ କେହି ଅଧିକ ପ୍ରତିନିଧି ପଠାଇବୁ ନାହିଁ ବୋଲି ସ୍ଥିର କଲୁ । ଏହା ସଙ୍କଟ ସମୟରେ ବୁଦ୍ଧିମାନ ପୂର୍ବଭାବରେ କାର୍ଯ୍ୟ ଚଳାଇବାପାଇଁ ଉତ୍କୃଷ୍ଟ ଲୋକମାନଙ୍କୁ ଭାରତରେ ରହିବା ଆବଶ୍ୟକ ମନେ କରି ମଧ୍ୟ ଆମେ ଏପରି ନିଷ୍ପତ୍ତି କଲୁ । ଆମେ ଅନୁଭବ କଲୁ ଯେ, ଲଣ୍ଡନରେ ଗୋଲଟେବୁଲ ସମ୍ମିଳନୀ ସତ୍ତ୍ୱେ ଅସଲ କେନ୍ଦ୍ରସ୍ଥଳ ହେଲା ଭାରତ—ଭାରତର ଅବସ୍ଥାର ପ୍ରତିକ୍ରିୟା ଲଣ୍ଡନ ଉପରେ ହେବା ଅନିବାର୍ଯ୍ୟ । ଆମେ କୌଣସି ଅପ୍ରୀତିକର ଘଟଣା ଯେପରି ନ ଘଟେ ସେଥିଲାଗି ଚେଷ୍ଟା କଲୁ । ଆମର ଅନୁଷ୍ଠାନକୁ ଠିକ୍ ଅବସ୍ଥାରେ ରଖିବାକୁ ଚେଷ୍ଟା କଲୁ । ଯାହାହେଉ, ଆମର ଏକମାତ୍ର ପ୍ରତିନିଧି ପଠାଇବାର ପ୍ରକୃତ କାରଣ ଏହା ନୁହେଁ । ଆବଶ୍ୟକ ଏବଂ ବାଞ୍ଛନୀୟ ମନେ କରିଥିଲେ ଆମ୍ଭେ ଅନ୍ୟମାନଙ୍କୁ ପଠାଇଥାନ୍ତୁ । ଆମେ ଜାଣି ଶୁଣି ତାହା କଲୁ ନାହିଁ ।

ଆମେ ଶାସନତନ୍ତ୍ରର ଖୁଣ୍ଟିନାଟି ଆଲୋଚନା କରିବାପାଇଁ ଗୋଲ-ଟେବୁଲ ସମ୍ମିଳନୀରେ ଯୋଗ ଦେଇ ନ ଥିଲୁ । ସେପରି ଅବସ୍ଥାରେ

ବ୍ୟାପକ ଆଲୋଚନାରେ କିଛି ଲାଭ ନ ଥିଲା । ମୌଳିକ ବ୍ୟାପାରରେ ବ୍ରିଟିଶ ସରକାର ସହିତ ଗୋଟାଏ ରାଜିନାମା ହୋଇ ସାରିଲା ପରେ ସେ କଥା ବିଚାର କରାଯାଇ ପାରେ । ବର୍ତ୍ତମାନ ପ୍ରଶ୍ନ ଥିଲା ଯେ, ଗଣତନ୍ତ୍ର ଭାରତକୁ କେତେ କ୍ଷମତା ଦିଆଯାଉଛି । ତାହାର ମୀମାଂସା ହୋଇଗଲେ ଯେ କୌଣସି ଆଇନଜ୍ଞ ବସି ଚିଠା କରି ପାରିବ ଓ ପରେ କୁଣ୍ଟିନାଣ୍ଟି ଲେଖି ପାରିବ । ମୂଳ ବିଷୟଗୁଡ଼ିକ ସମ୍ବନ୍ଧରେ କଂଗ୍ରେସର ମତ ଅତି ସ୍ପଷ୍ଟ ଥିଲା । ଏ ସମ୍ବନ୍ଧରେ ବିଶେଷ ମନ୍ତ୍ରର ଆବଶ୍ୟକତା ନ ଥିଲା । ଆମର ମନେ ହେଲା ଆମ ପକ୍ଷରେ ମର୍ଯ୍ୟାଦାଜନକ ଉପାୟ ହେଉଛି ଆମର ନେତାଙ୍କୁ ଏକମାତ୍ର, ପ୍ରତିନିଧିରୂପେ ପଠାଇବା — ସେ ଯାଇ ଆମର ଅବସ୍ଥା ବୁଝାଇ ଦେବେ— ଆମର ଦାବୀର ଯୁକ୍ତିଯୁକ୍ତତା ଏବଂ ଏହା କିପରି ଅନିବାର୍ଯ୍ୟ ତାହା ଜଣାଇଦେବେ ଏବଂ ଯଦି ପାରନ୍ତି ତେବେ ବ୍ରିଟିଶ ସରକାର ଦ୍ୱାରା ତାହା ସ୍ୱୀକାର କରାଇ ନେବେ । ଏହା ଅତ୍ୟନ୍ତ କଷ୍ଟକର କଥା ଆମେ ଜାଣିଥିଲୁ । ଅବସ୍ଥା ଯେପରି ହୋଇଗଲା, ସେଥିରେ ଏହା ପ୍ରାୟ ସମ୍ଭବ ନ ଥିଲା — ମାତ୍ର ଏହାଛଡ଼ା ଗତ୍ୟନ୍ତର ନ ଥିଲା । ଆମେ ଯେଉଁ ନୀତି ଓ ଆଦର୍ଶ ଧରିଥିଲୁ ଏବଂ ଯାହାଲାଗି ଶପଥ ଗ୍ରହଣ କରିଥିଲୁ ଓ ଦୃଢ଼ଭାବରେ ଯେଉଁଥିରେ ବିଶ୍ୱାସ କରୁଥିଲୁ, ତାହା ଛାଡ଼ିପାରନ୍ତୁ ନାହିଁ । ଯଦି କୌଣସି ଅପୂର୍ବ ସୁଯୋଗ ହେତୁ ଏହି ମୂଳ ବିଷୟରେ ରାଜିନାମା ହୋଇ ପାରେ, ତାହାହେଲେ ଅନ୍ୟ ପ୍ରାସଙ୍ଗିକ କାର୍ଯ୍ୟ ସହଜରେ ହୋଇ ପାରିବ । ବାସ୍ତବିକ ଆମମାନଙ୍କ ଭିତରେ ସ୍ଥିର ହୋଇଥିଲା ଯେ, ଯଦି ଗୋଟାଏ ରାଜିନାମା ସମ୍ଭବ ହୁଏ, ତେବେ ଗାନ୍ଧିଜୀ କେତେକ କିମ୍ବା କାର୍ଯ୍ୟକାରୀ ସମିତିର ସମସ୍ତ ସଭ୍ୟଙ୍କୁ ସଙ୍ଗେ ସଙ୍ଗେ ଲଣ୍ଡନ ଡାକିବେ ଏବଂ ବିସ୍ତୃତ ଆଲୋଚନା ସମସ୍ତେ କରିପାରିବେ । ଆମେ ସମସ୍ତେ ସେହି ଡାକରା ପାଇଁ ପ୍ରସ୍ତୁତ ହୋଇ ରହିଥିବୁ ଏବଂ ଦରକାର ପଡ଼ିଲେ ଉଡ଼ାଜାହାଜରେ ଯିବୁ । ତାହାହେଲେ ଆମେ ଦଶଦିନ ଭିତରେ ତାଙ୍କ ପାଖରେ ପହଞ୍ଚି ପାରିବୁ ।

ମାତ୍ର ଯଦି ମୂଳ କଥାରେ ପ୍ରଥମେ ବୁଝାମଣା ହୋଇ ପାରିବ ନାହିଁ ତେବେ ବସ୍ତୁତଃ ମିଳାମିଶା କଥା ଆଲୋଚନାର ପ୍ରଶ୍ନ ଉଠୁ ନାହିଁ କିମ୍ବା ଆଉ ଅଧିକା କଂଗ୍ରେସ ପ୍ରତିନିଧିଙ୍କର ଗୋଲ ଟେବୁଲ ବୈଠକକୁ ଯିବାର ଆବଶ୍ୟକତା ନାହିଁ । ତେଣୁ ଆମେ କେବଳ ଗାନ୍ଧିଜୀଙ୍କୁ ପଠାଇବା ସ୍ଥିର କଲୁ । କଂଗ୍ରେସ କାର୍ଯ୍ୟକାରୀ ସମିତିର ଆଉ ଜଣେ ସଭ୍ୟ ଶ୍ରୀମତୀ ସରୋଜିନୀ ନାଇଡୁ ମଧ୍ୟ ଗୋଲଟେବୁଲ ବୈଠକରେ ଯୋଗ ଦେଇଥିଲେ, ମାତ୍ର ସେ କଂଗ୍ରେସ ପ୍ରତିନିଧିରୂପେ ଯାଇ ନ ଥିଲେ । ସେ ଭାରତର ନାରୀଜାତିର ପ୍ରତିନିଧି ଭାବରେ ନିମନ୍ତ୍ରିତ ହୋଇଥିଲେ ଏବଂ ସେହିଭାବରେ ତାଙ୍କୁ ଯିବା ସକାଶେ କଂଗ୍ରେସ ଅନୁମତି ଦେଇଥିଲା ।

ଯାହାହେଉ ଏ ସମ୍ବନ୍ଧରେ ବ୍ରିଟିଶ ସରକାରର ଆମ ଇଚ୍ଛାପୂରଣ କରିବାର ଆଦୌ ମତଲବ ନଥିଲା । ସେମାନଙ୍କର ନୀତି ଅନୁସାରେ ମୌଳିକ ସମସ୍ୟାର ଦ୍ୱାରକୁ ବନ୍ଦ ରଖାଗଲା ଏବଂ ଓଲଟା ଅଧିକେ ଛୋଟ ଛୋଟ ଓ ଅବାସ୍ତବ ବିଷୟ ଆଲୋଚନା ଅଧିକ ହେଲା । ବଡ଼ ବଡ଼ ସମସ୍ୟା ଆଲୋଚନା ହେଲାବେଳେ ସରକାର ନିଜେ ନୀରବ ରହି କୌଣସି ମତ ପ୍ରକାଶ କଲେ ନାହିଁ ଏବଂ ଏ ସମ୍ବନ୍ଧରେ ଭଲଭାବରେ ଆଲୋଚନା କରି ପରେ ମତ ଦେବେ ବୋଲି ପ୍ରତିଶ୍ରୁତି ଦେଲେ । ସାମ୍ପ୍ରଦାୟିକ ସମସ୍ୟା ଅବଶ୍ୟ ତାଙ୍କ ହାତରେ ଅସଲ ଅସ୍ତ୍ର ଥିଲା ଏବଂ ଏହାକୁ ସେ ପରେ ଭଲଭାବରେ ପ୍ରୟୋଗ କରିଥିଲେ । ଏହି ସମସ୍ୟାହିଁ ସମ୍ମିଳନୀରେ ପ୍ରଧାନ ସମସ୍ୟା ହୋଇ ଉଠିଲା ।

ସମ୍ମିଳନୀର ଭାରତୀୟ ସଦସ୍ୟଙ୍କ ଭିତରୁ ଅଧିକାଂଶ ସ୍ୱେଚ୍ଛାରେ ହେଉ ବା ଅନିଚ୍ଛାରେ ହେଉ ସରକାରୀ ଜାଲରେ ପଡ଼ିଗଲେ । ଏଥିରେ ଥିବା ଲୋକେ ପରସ୍ପରଠାରୁ ବିଚ୍ଛିନ୍ନ ଥିଲେ । ସେମାନଙ୍କ ଭିତରୁ କେତେକ କାହାରି ପ୍ରତିନିଧିତ୍ୱ କରୁ ନ ଥିଲେ – ନିଜପାଇଁ ଯାଇଥିଲେ । କେତେକ ସମର୍ଥ ଓ ସମ୍ମାନସ୍ପଦ ଲୋକ ଥିଲେ—ଅନେକଙ୍କ ପକ୍ଷରେ ଏ କଥା କୁହାଯାଇ ପାରିବ ନାହିଁ । ମୋଟାମୋଟି ସେମାନେ ଭାରତରେ

ରାଜନୈତିକ ଓ ସାମାଜିକ ଭାବରେ ପ୍ରତିକ୍ରିୟାପନ୍ଥୀ । ସେମାନେ ଏତେ ଅନୁନ୍ନତ ଓ ପ୍ରତିକ୍ରିୟାପନ୍ଥୀ ଯେ ଅତି ସଙ୍କୀର୍ଣ୍ଣମୂଳକ ଓ ମାମୁଲି ଧରଣର ଭାରତୀୟ ଉଦାରଦଳମାନେ ମଧ୍ୟ ଏମାନଙ୍କ ଭିତରେ ପ୍ରଗତିପନ୍ଥୀ ପରି ବୋଧ ହେଉଥିଲେ । ସେମାନେ ସଂଘୃ ସ୍ୱାର୍ଥ ବିଶିଷ୍ଟ ମୁଷ୍ଟିମେୟ ଲୋକଙ୍କର ପ୍ରତିନିଧି । ତାଙ୍କର ସ୍ୱାର୍ଥ ବ୍ରିଟିଶ ସାମ୍ରାଜ୍ୟବାଦ ସହିତ ସଂଶ୍ଳିଷ୍ଟ ଥିଲା ଏବଂ ନିଜର ଉନ୍ନତି ଓ ରକ୍ଷା ନିମନ୍ତେ ସେ ତାହାର ସାହାଯ୍ୟପ୍ରାର୍ଥୀ ଥିଲେ । ଏହା ଛଡ଼ା ସାମ୍ପ୍ରଦାୟିକ ସମସ୍ୟାରେ "ଅଳ୍ପ ସଂଖ୍ୟକ" ଓ "ଅଧିକ ସଂଖ୍ୟକ" ଦଳର ପ୍ରତିନିଧି ଥିଲେ । ଏହି ସବୁ ଉଚ୍ଚଶ୍ରେଣୀର ଲୋକଙ୍କର ପରସ୍ପର ସହିତ ପଡ଼େ ନା, ସେମାନେ ନିଜ ଭିତରେ କେବେହେଁ ରାଜନୀତିରେ ଏକମତ ହୋଇ ପାରନ୍ତି ନାହିଁ, ରାଜନୈତିକ ଦୃଷ୍ଟିରେ ସେମାନେ ଅତ୍ୟନ୍ତ ପ୍ରତିକ୍ରିୟାପନ୍ଥୀ ଥିଲେ ଏବଂ ସାମ୍ପ୍ରଦାୟିକ ସମସ୍ୟାର ସୁବିଧା ଉଠାଇ ନିଜ ଲାଭ ଉଠାଇବାହିଁ ତାଙ୍କର ପ୍ରଧାନ ସ୍ୱାର୍ଥ ଥିଲା—ତାଙ୍କ ପରେ ରାଜନୈତିକ ଅଗ୍ରଗତିକୁ ଆତ୍ମସମର୍ପଣ କରିଗଲେ କିଛି ଯାଏ ଆସେନା । ବାସ୍ତବିକ ସେମାନେ ଘୋଷଣା କଲେ ଯେ, ସାମ୍ପ୍ରଦାୟିକ ଦାବୀ ପୂରଣ ନହେବା ପର୍ଯ୍ୟନ୍ତ ସେମାନେ କୌଣସି ପ୍ରକାର ରାଜନୈତିକ ସ୍ୱାଧୀନତାରେ ସମ୍ମତ ହେବେ ନାହିଁ । ଏହା ଏକ ଅଦ୍ଭୁତ ପ୍ରଦର୍ଶନ । ଏକ ପରାଧୀନ ଜାତିର ଲୋକେ କେତେ ତଳକୁ ଯାଇପାରନ୍ତି, ତାହା ପରିଷ୍କାର ଭାବରେ ଏଥିରେ ଜଣାପଡ଼ିଲା—ସେମାନେ ବ୍ରିଟିଶ ସରକାର ହାତରେ ଖେଳନା ପରି ହୋଇ ପାରନ୍ତି । ଏକଥା ସତ୍ୟ ଯେ, ଭାରତୀୟ ଜନସାଧାରଣ ସେହି ରାଜାମହାରାଜ, ନାଇଟ୍ ଉପାଧିଧାରୀ କିମ୍ବା ଉଚ୍ଚପଦସ୍ଥ ଲୋକମାନଙ୍କୁ କେବେହେଁ ପ୍ରତିନିଧି ରୂପେ ସ୍ୱୀକାର କରୁ ନ ଥିଲେ । ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଗୋଲଟେବୁଲ ସମ୍ମିଳନୀକୁ ପ୍ରତିନିଧି ମନୋନୀତ କରିଥିଲେ ଏବଂ ତାହା ଦୃଷ୍ଟିରୁ ସେ ଭଲ ବାଛି ଥିଲା । ମାତ୍ର ବ୍ରିଟିଶ କର୍ତ୍ତାଗଣ ଯେ ଆମମାନଙ୍କ ପ୍ରତି ଏପରି ଭାବରେ ବ୍ୟବହାର କରିପାରିଲେ, ଏଥିରୁ ଆମ ଲୋକଙ୍କର ଦୁର୍ବଳତା ଏବଂ କେତେ ସହଜରେ ସେମାନଙ୍କୁ ଭୁଲାଇ ପରସ୍ପରର

ଉଦ୍ୟମ ପଣ୍ଡ କରାଇବାରେ ଲଗାଇ ପାରନ୍ତି, ତାହା ଏଠାରେ ଦେଖାଗଲା । ଆମ ଉଚ୍ଚଶ୍ରେଣୀର ଲୋକେ ସାମ୍ରାଜ୍ୟବାଦୀ ଶାସକଙ୍କ ମତବାଦରେ ଆଚ୍ଛନ୍ନ ଥିଲେ ଏବଂ ସେମାନଙ୍କ ଖେଳ ଖେଳୁଥିଲେ । ସେମାନେ କଣ ଏହା ବୁଝିପାରୁ ନଥିଲେ ? ଅଥବା ସେମାନେ ଏହାର ମତଲବ ବୁଝିପାରି ସୁଦ୍ଧା ଭାରତରେ ଗଣତନ୍ତ୍ର ଓ ସ୍ୱାଧୀନତା ଉପ୍ରରେ ଏହାକୁ ଜାଣି ଶୁଣି ଗ୍ରହଣ କରୁଥିଲେ କି ?

ଏହି ନ୍ୟସ୍ତସ୍ୱାର୍ଥମାନଙ୍କର ଯଥା—ସାମ୍ରାଜ୍ୟବାଦୀ, ସାମନ୍ତବାଦୀ, ପୁଞ୍ଜିବାଦୀ, ଧାର୍ମିକ ଓ ସାଂପ୍ରଦାୟିକ—ସମ୍ମିଳନୀରେ ବ୍ରିଟିଶ ଭାରତ ପ୍ରତିନିଧିମାନଙ୍କର ନେତୃତ୍ୱ ଆଗା ଖାଁ ନେବା ସ୍ୱାଭାବିକ—କାରଣ କେତେକ ପରିମାଣରେ ସେ ଏହି ସମସ୍ତ ସ୍ୱାର୍ଥର ସମଷ୍ଟି ଥିଲେ । ସେ ଆଜୀବନ ବ୍ରିଟିଶ ସାମ୍ରାଜ୍ୟବାଦ ଏବଂ ଇଂରେଜ ଶାସକ ସମ୍ପ୍ରଦାୟଙ୍କ ସହିତ ଘନିଷ୍ଠରୂପେ ସଂପୃକ୍ତ ହୋଇ ଇଂଲଣ୍ଡରେ ଅଧିକାଂଶ ସମୟ ରହିଥିବାରୁ ଶାସକମାନଙ୍କର ଦୃଷ୍ଟିକୋଣ ଓ ସ୍ୱାର୍ଥ ସେ ଭଲ-ଭାବରେ ବ୍ୟକ୍ତ କରିପାରନ୍ତି । ସେ ଗୋଲଟେବୁଲ ସମ୍ମିଳନୀରେ ସାମ୍ରାଜ୍ୟବାଦୀ ଇଂଲଣ୍ଡର ଜଣେ ଯୋଗ୍ୟ ପ୍ରତିନିଧି ହୋଇ ପାରିଥାନ୍ତେ । କିନ୍ତୁ ଭାଗ୍ୟ ଏପରି ଯେ, ସେ ଭାରତର ପ୍ରତିନିଧିରୂପେ ମନୋନୀତ ହୋଇଥିଲେ ।

ସମ୍ମିଳନୀରେ ଆମର ଆଗ୍ରହ ପାଇଁ ପଦାର୍ଥ ବହୁତ ଅଳ୍ପ ଥିଲା ଏବଂ ଆମେ ଏଥିରୁ ଖୁବ କମ୍ ଆଶା କରିଥିଲୁ—ଆମେ ଏହାର ଖବରଣୀ ପଢ଼ି ଅସନ୍ତୁଷ୍ଟ ହେଉଥିଲୁ ଏବଂ ବିରକ୍ତି କ୍ରମେ ବଢ଼ିଲା । ଆମେ ଦେଖିଲୁ ଜାତୀୟ ଏବଂ ଅର୍ଥନୈତିକ ସମସ୍ୟା ଯେପରି ଅଯଥା ଓ ଅସମ୍ପୂର୍ଣ୍ଣ ଉଦ୍ୟମ, ଚକ୍ରାନ୍ତ, ଷଡ଼ଯନ୍ତ୍ର, କୌଶଳ ବ୍ୟବହାର, ବ୍ରିଟିଶ ଜାତୀୟଦଳର କେତେକ ଅତି ରକ୍ଷଣଶୀଳ ଲୋକଙ୍କ ସହିତ ଆମର କେତେକ ଦେଶବାସୀଙ୍କର ମିଳନ, ଛୋଟ ଛୋଟ ସମସ୍ୟା ଯେପରି ଅସରନ୍ତି ଆଲୋଚନା, ପ୍ରକୃତ ସମସ୍ୟାକୁ ଜାଣିଶୁଣି ଏଡ଼ାଇଦେବା, ବଡ଼ ବଡ଼ ନ୍ୟସ୍ତସ୍ୱାର୍ଥ ଏବଂ

ବିଶେଷତଃ ବ୍ରିଟିଶ ସାମ୍ରାଜ୍ୟବାଦୀ ହାତରେ ବାରମ୍ବାର ଖେଳନା ପଣ ହେବା, ପରସ୍ପର କଳହ—କେତେ କେତେବେଳେ ଖେଳା ଏବଂ ପରସ୍ପର ଗୁଣ୍ଡାମି ଆଦି ଚାଲିଲା । ଏଥିରେ କେବଳ ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧିର ଉଦ୍ୟମ—ଚଢ଼ା ଚାକିରି, ଶ୍ରେଷ୍ଠ ଚାକିରି, ହିନ୍ଦୁ, ମୁସଲମାନ, ଶିଖ, ଆଙ୍ଗ୍ଲୋଇଣ୍ଡିଆନ୍ ଏବଂ ଇଉରୋପୀୟାନ୍‌ମାନଙ୍କ ପାଇଁ କାଉନ୍‌ସିଲରେ ସ୍ଥାନ ଏହି ସବୁ ଯେନ ଠେଶା ଓଟଚି । ଏହି ସବୁ ଚାକିରି ଉଚ୍ଚ ଶ୍ରେଣୀଙ୍କ ପାଇଁ ଲୋଡ଼ା, ଜନସାଧାରଣଙ୍କର ଏଥିରେ କିଛି ଯାଏ ଆସେନା । ସୁବିଧାବାଦର ଚକ୍ରାନ୍ତ—କ୍ଷୁଧିତ ବ୍ୟାଘ୍ର ଯେପରି ତାହାର ଶିକାର ଲାଗି ଜଗି ବସିଥାଏ, ସେହିପରି ନୂତନ ଶାସନତନ୍ତ୍ରର ଲାଭ ପାଇବାପାଇଁ ବିଭିନ୍ନ ଦଳ ଲାଗିପଡ଼ିଥାନ୍ତି । ସ୍ୱାଧୀନତାର ଅର୍ଥ ସେମାନଙ୍କ ନିକଟରେ ବସ୍ତୁତଃରୂପେ ସ୍ୱାର୍ଥସିଦ୍ଧି—ଏହାକୁ ଭାରତୀୟକରଣ କହୁଥିଲେ; ଅର୍ଥାତ୍ ସୈନ୍ୟ ଓ ସିଭିଲ ସର୍ଭିସ ଆଦିରେ ଭାରତୀୟମାନଙ୍କର ବେଶି ଚାକିରି ପାଇବା । କେହି ସ୍ୱାଧୀନତା, ପ୍ରକୃତ ସ୍ୱାଧୀନତା, ଗଣତନ୍ତ୍ର ଭାରତ ହାତରେ କ୍ଷମତା ହସ୍ତାନ୍ତର ଏବଂ ଭାରତୀୟ ଜନସାଧାରଣଙ୍କର ସମ୍ମୁଖରେ ଥିବା ଜରୁରୀ ଓ ଜୀବନ୍ତ ଅର୍ଥନୈତିକ ସମସ୍ୟା-ସମ୍ବନ୍ଧରେ ଚିନ୍ତା କରୁ ନ ଥିଲେ । ଏଥିପାଇଁ କଣ ଭାରତ ଏପରି ସାହସର ସହିତ ଯୁଦ୍ଧ କରିଥିଲା ? ସୁନ୍ଦର ଆଦର୍ଶବାଦ ଓ ତ୍ୟାଗର ବାୟୁମଣ୍ଡଳ ପରିବର୍ତ୍ତେ କଣ ଆମେ ଏହି ଘନାଚ୍ଛନ୍ନ ବାୟୁମଣ୍ଡଳରେ ରହିବା ?

ସେପରି ଏକ ସୁସଜ୍ଜିତ ଏବଂ ଲୋକପୂର୍ଣ୍ଣ କୋଠରୀ ଭିତରେ ଗାନ୍ଧିଜୀ ନିଃସଙ୍ଗ ବୋଧ କରୁଥିଲେ । ତାଙ୍କର ପୋଷାକ ( ବା ପୋଷାକ ନାହିଁ ବୋଲିଲେ ଚଳେ ) ଯୋଗୁଁ ସେ ଅନ୍ୟମାନଙ୍କଠାରୁ ଅଲଗା ଜଣାପଡ଼ୁଥିଲେ, ମାତ୍ର ତାଙ୍କର ଚିନ୍ତା ଓ ଦୃଷ୍ଟିକୋଣ ସହିତ ତାଙ୍କ ଚତୁର୍ଦ୍ଦିଗରେ ବସିଥିବା ପୋଷାକ ପରିପାଟି ସଜ୍ଜିତ ବ୍ୟକ୍ତିମାନଙ୍କ ଭିତରେ ଗୁରୁତର ପାର୍ଥକ୍ୟ ଥିଲା । ସେହି ସମ୍ମିଳନୀରେ ସେ ଆଉ ଏକ ଅସୁବିଧା

ଅବସ୍ଥାରେ ପଡ଼ିଥିଲେ ଏବଂ ଏହା ସେ କେତେଦୂର ସହ୍ୟ କରିବେ ସ୍ଥିର ଆମେ ଆଶ୍ଚର୍ଯ୍ୟ ହେଉଥିଲୁ । ମାତ୍ର ଅପୂର୍ବ ଧୈର୍ଯ୍ୟର ସହ ସେ କାର୍ଯ୍ୟ ଚଳାଇଲେ ଏବଂ ରାଜନୀତିର ବାଟ ଫିଟାଇବା ନିମନ୍ତେ ଉଦ୍ୟମ ପରେ ଉଦ୍ୟମ କରିବାକୁ ଲାଗିଲେ । ସେ ତାଙ୍କର ସ୍ୱଭାବ ସିଦ୍ଧ ଏକ ସୂଚନାରେ ସାମ୍ପ୍ରଦାୟିକତା କିପରି କେବଳ ରାଜନୈତିକ ପ୍ରତିକ୍ରିୟାର ଆବରଣ ମାତ୍ର, ତାହା ଦେଖାଇ ଦେଲେ । ସେହି ସମ୍ମିଳନୀର ମୁସଲମାନ ପ୍ରତିନିଧିମାନେ ଯେଉଁ ସବୁ ସାମ୍ପ୍ରଦାୟିକ ଦାବୀ କରୁଥିଲେ; ତାହା ସେ ପସନ୍ଦ କରୁ ନ ଥିଲେ—ସେ ଭାବିଲେ ଏବଂ ତାଙ୍କ ମତାବଲମ୍ବୀ ମୁସଲମାନ ବନ୍ଧୁମାନେ ମଧ୍ୟ ଭାବିଲେ ଯେ, ଏହା ସ୍ୱାଧୀନତା ଓ ଗଣତନ୍ତ୍ର ଦାବୀର ଅନ୍ତରାୟ ମାତ୍ର । ତଥାପି ଯଦି ମୁସଲମାନ ପ୍ରତିନିଧିମାନେ ରାଜନୈତିକ ସମସ୍ୟା ଅର୍ଥାତ୍ ସ୍ୱାଧୀନତା ସମ୍ବନ୍ଧରେ ତାଙ୍କ ସହିତ ଓ କଂଗ୍ରେସ ସହିତ ଏକମତ ହୁଅନ୍ତି, ତେବେ ସେ ବିନା ଯୁକ୍ତି ଓ ତର୍କରେ ସେମାନଙ୍କର ସମସ୍ତ ଦାବୀ ଗ୍ରହଣ କରିବେ ବୋଲି ରାଜି ହେଲେ ।

ଏହି ସବୁ ସେ ନିଜ ଦାୟିତ୍ୱରେ ଦେଇଥିଲେ—କାରଣ ସେତେବେଳ ଅବସ୍ଥାରେ କଂଗ୍ରେସ ନାଁରେ କୌଣସି ପ୍ରତିଶ୍ରୁତି ଦେବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ମାତ୍ର କଂଗ୍ରେସକୁ ଏଥିରେ ରାଜି କରାଇବା ଲାଗି ସେ ପ୍ରତିଶ୍ରୁତି ଦେଲେ ଏବଂ କଂଗ୍ରେସରେ ତାଙ୍କର ଯେ ସ୍ଥାନ, ସେଥିରେ ଏହା କରାଇବାରେ ସେ ଯେ ସମର୍ଥ ହେବେ, ଏଥିରେ କାହାରି ସନ୍ଦେହ ନ ହେବାର କଥା । ଯାହାହେଉ ଏହି ସବୁ ଗୃହୀତ ହେଲା ନାହିଁ—ବାସ୍ତବରେ ଆଗା ଖାଁ ଯେ ଭାରତର ସ୍ୱାଧୀନତା ଦାବୀ ଗ୍ରହଣ କରିବେ ଏହା ଅନୁମାନ କରିବା କଷ୍ଟକର । ସମ୍ମିଳନୀରେ ସାମ୍ପ୍ରଦାୟିକ ସମସ୍ୟା ପ୍ରଧାନ ହୋଇ ଉଠିଥିଲେ ସୁଦ୍ଧା ପ୍ରକୃତ ଗୋଳମାଳ ଯେ ସାମ୍ପ୍ରଦାୟିକ ସମସ୍ୟା ଯେ ନୁହେଁ; ଏହା ଏତଦ୍ୱାରା ପ୍ରମାଣିତ ହୋଇଗଲା । ରାଜନୈତିକ ପ୍ରତିକ୍ରିୟାବାଦୀ ସକଳ ପ୍ରକାରରେ ଅନ୍ତରାୟ ହୋଇଥିଲା ଏବଂ ସାମ୍ପ୍ରଦାୟିକ ସମସ୍ୟା ନାମରେ ଆଶ୍ରା ନେଇଥିଲା । ବ୍ରିଟିଶ ସରକାର ସାବଧାନତାର ସହିତ ପ୍ରତିକ୍ରିୟାପନ୍ଥୀ-

ମାନଙ୍କୁ ସମ୍ମିଳନୀର ପ୍ରତିନିଧିରୂପେ ବାଛିଥିଲେ ଏବଂ ବୈଠକର କାର୍ଯ୍ୟ ପ୍ରଣାଳୀ ନିଜେ ଅଯୁକ୍ତ କରି ସାମ୍ପ୍ରଦାୟିକ ସମସ୍ୟାକୁ ପ୍ରଧାନ କରି ପକାଇଲେ । ଯେଉଁମାନେ କୌଣସି ମୀମାଂସାରେ ରାଜି ହେବେ ନାହିଁ, ସେମାନଙ୍କ ସହିତ ମୀମାଂସା ଅସମ୍ଭବ ।

ବ୍ରିଟିଶ ସରକାରର ଚେଷ୍ଟା ସଫଳ ହେଲା । ଏଥିରେ ପ୍ରମାଣିତ ହେଲା ଯେ, ବ୍ରିଟିଶ ସରକାର ଖାଲି ବାହୁବଳରେ ନୁହେଁ, ନିଜର ଚତୁରତା ଓ ରାଜନୀତି କୌଶଳରେ ଅନେକକାଳ ପର୍ଯ୍ୟନ୍ତ ସାମ୍ରାଜ୍ୟ ଚଳାଇ ପାରେ । ଗୋଲଟେବୁଲ ସମ୍ମିଳନୀରେ ଭାରତର ପ୍ରକୃତ ପ୍ରତିନିଧି ନ ଥିଲେ କମ୍ଭା! ଏହା ତାର ବଳ ପରୀକ୍ଷାର ସ୍ଥାନ ନୁହେଁ । ତଥାପି ଭାରତୀୟ ଲୋକେ ବିଫଳ ହେଲେ ବୋଲି ଘୋଷଣା ହେଲା । ସେମାନେ ଯାହା ଦାବୀ କରୁଥିଲେ, ତାହା ପଛରେ କୌଣସି ମତବାଦର ଦୃଢ଼ତା ନ ଥିବାରୁ ଏବଂ ସେମାନଙ୍କୁ ଭୁଲ ପଥରେ ନେବା ଅତି ସହଜ ହୋଇ ଥିବାରୁ ସେମାନେ ବିଫଳ ହେଲେ । ଯେଉଁ ନ୍ୟସ୍ତସ୍ୱାର୍ଥ ଶ୍ରେଣୀ ତାଙ୍କ ପ୍ରଗତିରେ ବାଧା ସ୍ୱରୂପ ଥିଲେ, ସେମାନଙ୍କୁ ଅନ୍ତର କରିବା ନିମନ୍ତେ ସେମାନେ ଯଥେଷ୍ଟ ଶକ୍ତିଶାଳୀ ନ ଥିବାରୁ ବିଫଳ ହେଲେ । ବେଶି ଧର୍ମଭୀରୁ ହେତୁ ଏବଂ ଅତି ସହଜରେ ସାମ୍ପ୍ରଦାୟିକ ଭାବ ଜାଗ୍ରତ କରିଦେଇ ପାରୁଥିବାରୁ ସେମାନେ ବିଫଳ ହେଲେ । ସଂକ୍ଷେପରେ କହିବାକୁ ଗଲେ ସେମାନେ ଅତ୍ୟନ୍ତ ଉନ୍ନତ ଓ ଶକ୍ତିଶାଳୀ ହୋଇ ନ ଥିବାରୁ ବ୍ୟର୍ଥକାମ ହେଲେ ।

ଏହି ଗୋଲଟେବୁଲ ବୈଠକର ସାଫଲ୍ୟ ବା ବିଫଳତାରେ କିଛି ଯାଏ ଆସେ ନାହିଁ; ଏଥିରୁ କିଛି ଆଶା କରାଯାଉ ନ ଥିଲା — ତଥାପି ଅନ୍ୟ ଦିଗରୁ ଏହି ବୈଠକ ସ୍ୱତନ୍ତ୍ର ଧରଣର ଥିଲା । ଭାରତରେ ଆଇନ ଅମାନ୍ୟ ଆନ୍ଦୋଳନ ଚାଲିଥିବାରୁ ପ୍ରଥମ ଗୋଲଟେବୁଲ ସମ୍ମିଳନୀ ପ୍ରତି ଭାରତରେ କାହାରି ଦୃଷ୍ଟି ପଡ଼ି ନ ଥିଲା । ୧୯୩୦ରେ ଯେଉଁମାନେ ବ୍ରିଟିଶ ସରକାରଦ୍ୱାରା ମନୋନୀତ ହୋଇ ଗୋଲଟେବୁଲ ବୈଠକକୁ

ପାଇଥିଲେ, ସେମାନଙ୍କୁ କଲା ପତାକା ଓ ଅପ୍ରୀତିକର ଧ୍ୱନିରେ ଅଭ୍ୟର୍ଥନା କରି ପାଉଥିଲ । ମାତ୍ର ୧୯୩୧ ମସିହା ସ୍ୱତନ୍ତ୍ର ଥିଲା । ଗାନ୍ଧିଜୀ କଂଗ୍ରେସର ପ୍ରତିନିଧିରୂପେ ଯିବାରୁ ଏବଂ କୋଟି କୋଟି ଲୋକ ତାଙ୍କୁ ଅନୁସରଣ କରୁଥିବାରୁ ଏଥିରେ ଗୁରୁତ୍ୱ ଦିଆ ଯାଉଥିଲା । ଏହା ଯୋଗୁଁ ସମ୍ମିଳନୀର ମର୍ଯ୍ୟାଦା ବଢ଼ିଥିଲା ଏବଂ ଭାରତ ଅଧିକ ଆଗ୍ରହର ସହିତ ଏହାର ଆଲୋଚନା ଲକ୍ଷ୍ୟ କରୁଥିଲା । ଯେଉଁ କାରଣରୁ ହେଉ ପଛକେ ଏହା ନିଷ୍ଫଳ ହୋଇଥିବା ଯୋଗୁଁ ଭାରତର ଅସନ୍ତୋଷ ବଢ଼ିଲା । ବ୍ରିଟିଶ ସରକାର ଗାନ୍ଧିଜୀଙ୍କର ଏଥିରେ ଯୋଗଦାନକୁ କାହିଁକି ଏତେ ଗୁରୁତ୍ୱ ଦେଇଥିଲେ, ତାହା ବର୍ତ୍ତମାନ ବୁଝାଗଲା ।

ସମସ୍ତ ଚକ୍ରାନ୍ତ, ସୁବିଧାବାଦ ଓ ଅନ୍ୟ କୁଟୀଳ ଷଡ଼ଯନ୍ତ୍ର ସତ୍ତ୍ୱେ ଏହି ସମ୍ମିଳନୀ ଭାରତ ପକ୍ଷରେ ବ୍ୟର୍ଥ ହୋଇ ନ ଥିଲା । ଏହା ବ୍ୟର୍ଥ ହେବା ନିମନ୍ତେହିଁ ତିଆରି ହୋଇଥିଲା ଏବଂ ଏହାର ନିଷ୍ଫଳତା ପାଇଁ ଭାରତର ଲୋକେ ଆଦୌ ଦାୟୀ ନୁହନ୍ତି । ମାତ୍ର ଭାରତର ପ୍ରକୃତ ସମସ୍ୟା ଉପରୁ ଅନ୍ୟ ଦିଗକୁ ଏହା ପୃଥିବୀର ଦୃଷ୍ଟି ନେଇପାରି ପାରିଥିଲା ଏବଂ ଭାରତରେ ଏହା ଆଶାଭଙ୍ଗ, ହତାଶ ଓ ଅପମାନବୋଧ ସୃଷ୍ଟିକଲା । ପ୍ରତିକ୍ରିୟାଶୀଳମାନେ ସେମାନଙ୍କ ମୁଣ୍ଡ ଉଠାଇବାକୁ ଏହା ସୁବିଧା ଦେଲା ।

ଭାରତର ଘଟଣାରେହିଁ ଭାରତୀୟଙ୍କ ସଫଳତା ବା ନିଷ୍ଫଳତା ନିର୍ଭର କରେ । ସୁଦୂର ଲଣ୍ଡନରେ ହେଉଥିବା ଚକ୍ରାନ୍ତରେ ଭାରତର ଶକ୍ତିଶାଳୀ ଜାତୀୟ ଆନ୍ଦୋଳନ ଲିଭିପାରି ପାରେନା । ମଧ୍ୟବିତ୍ତ ଶ୍ରେଣୀ ଓ କୃଷକ ସମ୍ପ୍ରଦାୟଙ୍କ ପକ୍ଷରେ ଜାତୀୟବାଦ ଏକ ପ୍ରକୃତ ଓ ଜରୁରୀ ଜିନିଷ ହୋଇ ପଡ଼ିଲା ଏବଂ ସେମାନେ ଏହା ଜରିଆରେ ନିଜର ସମସ୍ୟା ସମାଧାନ କରିବାକୁ ଇଚ୍ଛା କରୁଥିଲେ । ଏହିପରି ଭାବରେ ହୁଏତ ଆନ୍ଦୋଳନ ସଫଳ ହେବ, ଏହାର କାର୍ଯ୍ୟ ଶେଷ ହେବ—ନଚେତ୍

ଏହା ପରିବର୍ତ୍ତେ ଅନ୍ୟ ଆନ୍ଦୋଳନ ହେବ – ଯାହା କି ଲୋକଙ୍କୁ ପ୍ରଗତି ଓ ସ୍ୱାଧୀନତା ପଥରେ ଚାଳିତ କରିବ; ଅଥବା କିଛି କ୍ଷଣଲାଗି ଏହାକୁ ଜୋର ଜବରଦସ୍ତି ବନ୍ଦ କରି ଦିଆଯାଇ ପାରେ । ଅଳ୍ପ ଦିନ ପରେ ଭାରତରେ ସଂଗ୍ରାମ ହେବାର ଥିଲା ଏବଂ ଫଳରେ ସାମୟିକ ଅବସାଦ ଦେଖା ଦେଲା । ଦ୍ୱିତୀୟ ଗୋଲଟେବୁଲ ବୈଠକର ଏହି ସଂଗ୍ରାମ ଉପରେ କିଛି ପ୍ରଭାବ ପଡ଼ି ନ ଥିଲା, ମାତ୍ର ଏହା ଏଥିପାଇଁ ଏକ ପ୍ରତିକୂଳ ବାୟୁମଣ୍ଡଳ ସୃଷ୍ଟି କରିଥିଲା ।

---

## ଯୁକ୍ତପ୍ରଦେଶରେ କୃଷକଙ୍କ ଭିତରେ ଅଶାନ୍ତି

କଂଗ୍ରେସର ଜଣେ ସାଧାରଣ ସମ୍ପାଦକ ଭାବରେ ଏବଂ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟରୂପେ ମୋର ନିଖିଳ ଭାରତ ରାଜନୀତି ସହିତ ସମ୍ବନ୍ଧ ଥିଲା ଏବଂ ସମୟ ସମୟରେ ମୋତେ ଏଥିଲାଗି ଟିକିଏ ଭ୍ରମଣ କରିବାକୁ ପଡ଼ୁଥିଲା—ମାତ୍ର ମୁଁ ଯଥାସମ୍ଭବ ଏହା ନ କରିବାଲାଗି ଚେଷ୍ଟା କରୁଥାଏ । ଆମର ଦାୟିତ୍ୱ ଓ ବୋଝ ବଢ଼ିବା ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ ସମିତିର ବୈଠକ ଅଧିକ କାଳ ପର୍ଯ୍ୟନ୍ତ ବସିଲା – ଶେଷରେ ଏହା ଏକା-ବେଳକେ ଥରେ ଅରେ ଦୁଇ ସପ୍ତାହ ପର୍ଯ୍ୟନ୍ତ ବସୁଥାଏ । ଏହା ଖାଲି ସମାଲୋଚନାମୂଳକ ପ୍ରସ୍ତାବ ପାସ ହେବା ନିମନ୍ତେ ହେଉ ନ ଥିଲା; ମାତ୍ର ଏକ ବିଶାଳ ଓ ବହୁମୁଖୀ ଅନୁଷ୍ଠାନରେ ଅସଂଖ୍ୟ ପ୍ରକାର ରଚନାତ୍ମକ ପ୍ରଶ୍ନ ସବୁ ଚଳାଇବାର ସମସ୍ୟା ସମାଧାନ ଆଗରେ ଥିଲା । ତାପରେ ଦିନ ଅନେକ ଜଟିଳ ସମସ୍ୟା ସମାଧାନ କରିବାକୁ ପଡ଼ୁଥିଲା, କାରଣ ଟିକିଏ ଏକଟ ଭେକ ହେଲେ ଦେଶବ୍ୟାପୀ ଏକ ବିରାଟ ସଙ୍ଘର୍ଷ ହୋଇପାରେ ।

ଯୁକ୍ତପ୍ରଦେଶର କୃଷକ ସମସ୍ୟାରେ କଂଗ୍ରେସର ସମସ୍ତ ଦୃଷ୍ଟି ନେଇଥିଲା ଏବଂ ମୋର ଏହା ପ୍ରଧାନକାର୍ଯ୍ୟ ହୋଇଥିଲା । ଯୁକ୍ତପ୍ରଦେଶର

କଂଗ୍ରେସ କମିଟିର ସଭ୍ୟସଂଖ୍ୟା ୧୫୦ରୁ ବେଶି ହେବ ଏବଂ ଏହା ପ୍ରାୟ ପ୍ରତ୍ୟେକ ୨।୩ ମାସରେ ଥରେ ବସୁଥିଲା । ଏହାର କାର୍ଯ୍ୟକାରୀ ସମିତିର ସଭ୍ୟ ଥିଲେ ୧୫ ଜଣ—ଏହା ଅନେକ ସମୟରେ ବସୁଥିଲେ ଏବଂ କୃଷକ ସମସ୍ୟା ଏମାନଙ୍କ ସମ୍ମୁଖରେ ଥିଲା ।

ଏହି ସମିତି ୧୯୩୧ ମସିହାର ଶେଷାର୍ଦ୍ଧ ଆଡ଼କୁ ଗୋଟିଏ ସ୍ୱତନ୍ତ୍ର କୃଷକ କମିଟି ନିଯୁକ୍ତ କଲେ । ଏଥିରେ ଲକ୍ଷ୍ୟ କରିବାର କଥା ଯେ, କେତେକ ଜମିଦାର ଏହି ସମିତିର ସଦସ୍ୟ ଥିଲେ ଏବଂ ସେମାନଙ୍କ ସମ୍ମତିକ୍ରମେ ସବୁ କାର୍ଯ୍ୟ ହେଉଥିଲା । ବାସ୍ତବିକ ଆମ କମିଟିର ସେ ବର୍ଷର ସଭାପତି (ସେ କାର୍ଯ୍ୟକାରୀ ସମିତି ଓ କୃଷକ ସବ୍‌କମିଟିର ମଧ୍ୟ ସଭାପତି) ଥିଲେ ଏକ ଖ୍ୟାତ ଜମିଦାର ପରିବାରର ତସଦ୍ଦୁକ ଅହମଦ ଖାଁ ଶେରୱାନୀ । ସାଧାରଣ ସଂପାଦକ ଶ୍ରୀପ୍ରକାଶ ଏବଂ ସମିତିର କେତେକ ମୁଖ୍ୟସଭ୍ୟ ହୁଏତ ଜମିଦାର କିମ୍ବା ଜମିଦାର ପରିବାରର ଲୋକ ଥିଲେ । ଅବଶିଷ୍ଟ ସଭ୍ୟମାନେ ମଧ୍ୟବିତ୍ତ ଶ୍ରେଣୀର ବୁଦ୍ଧିଜୀବୀ ଲୋକ । ଆମ ପ୍ରାଦେଶିକ କାର୍ଯ୍ୟକାରୀ ସମିତିରେ ଜଣେ ହେଲେ ପ୍ରଜା ବା ଦରିଦ୍ର କୃଷକ ପ୍ରତିନିଧି ନ ଥିଲେ । ଆମ ଜିଲା କମିଟିମାନଙ୍କରେ କୃଷକ ଥିଲେ—ମାତ୍ର ନାନା ନିୟମକାନୁନ ଦେଇ ଯେତେବେଳେ ପ୍ରାଦେଶିକ କାର୍ଯ୍ୟକାରୀ ସମିତିର ନିର୍ବାଚନ ହୁଏ, ସେଥିରେ ମଧ୍ୟବିତ୍ତ ଶ୍ରେଣୀର ଶିକ୍ଷିତ ଏବଂ ଜମିଦାର ଶ୍ରେଣୀର ଲୋକହିଁ ଅଧିକ ଆସନ୍ତି । ସାଧାରଣତଃ ଚରମପନ୍ଥୀ କହିଲେ ଯାହା ବୁଝାଏ, ସେହି ଅର୍ଥରେ ଏହାକୁ ଆଦୌ ଚରମପନ୍ଥୀ ସମିତି ବୋଲି ବୁଝାଯାଇ ପାରେ ନା—କୃଷକସମସ୍ୟା ଘେନି ତ ଆଦୌ ନୁହେଁ ।

ପ୍ରାଦେଶିକ କାର୍ଯ୍ୟ ସମ୍ପର୍କରେ ମୁଁ କେବଳ ପ୍ରାଦେଶିକ କଂଗ୍ରେସ କାର୍ଯ୍ୟକାରୀ ସମିତି ଓ କୃଷକ ସମିତିର ସଭ୍ୟ ଥିଲି—ଏହା ଛଡ଼ା ଆଉ କିଛି ନୁହେଁ । ତର୍କର ଆଲୋଚନା ଓ ଅନ୍ୟ କାର୍ଯ୍ୟରେ ମୁଁ ବିଶେଷ ଭାବରେ ଯୋଗ ଦେଉଥିଲି; ମାତ୍ର ମୁଁ କୌଣସି ପ୍ରକାରେ

ମୁଖ୍ୟଭାଗ ନେଇ ନ ଥିଲି । ପ୍ରକୃତରେ ଆମ ପ୍ରଦେଶରେ କେହି ମୁଖ୍ୟଭାଗ ନେଇଥିଲି ବୋଲି କୁହାଯାଇ ପାରେ ନା—କାରଣ ଦୀର୍ଘକାଳ ହେଲା ଆମେମାନେ ମିଳିତ ଓ ସାମୂହିକ ଭାବରେ କାର୍ଯ୍ୟ କରୁଥିଲୁ—ବ୍ୟକ୍ତିବିଶେଷ ଅପେକ୍ଷା ଅନୁଷ୍ଠାନକୁ ଅଧିକ ପ୍ରାଧାନ୍ୟ ଦିଆଯାଉଥିଲା । ପ୍ରତ୍ୟେକ ବର୍ଷରେ ସଭାପତି ଅସ୍ଥାୟୀ ଭାବରେ ଆମର ମୁଖ୍ୟ ଥିଲେ, ପ୍ରତିନିଧିତ୍ୱ କରୁଥିଲେ; ମାତ୍ର ତାଙ୍କର ମଧ୍ୟ ବିଶେଷ କିଛି କ୍ଷମତା ନ ଥିଲା ।

ମୁଁ ଏଲାହାବାଦ ଜିଲ୍ଲା କଂଗ୍ରେସ କମିଟିର ମଧ୍ୟ ଜଣେ ସଭ୍ୟ ଥିଲି । ସଭାପତି ପୁରୁଷୋତ୍ତମ ଦାସ ଟାଣ୍ଡନଙ୍କ ନେତୃତ୍ୱରେ ଏହି କମିଟି କୃତିତ୍ୱର ସହିତ କୃଷକ ଆନ୍ଦୋଳନ ଚଳାଇଥିଲା । ୧୯୩୦ରେ ଖଜଣା ବନ୍ଦ ଆନ୍ଦୋଳନ ପ୍ରଦେଶରେ ଏହା ପ୍ରଥମେ ଆରମ୍ଭ କରିଥିଲା । ଶସ୍ୟ ଦ୍ରବ୍ୟ ମୂଲ୍ୟ ହ୍ରାସ ହେତୁ ଏଲାହାବାଦ ଜିଲ୍ଲା ଅବସ୍ଥା ବିଶେଷ ଶୋଚନୀୟ ହୋଇଥିଲା ବୋଲି ନୁହେଁ—ତାଲୁକଦାରୀ ଅଞ୍ଚଳ ଅବସ୍ଥା ଅଧିକ ଶୋଚନୀୟ ଥିଲା ମାତ୍ର ଏଲାହାବାଦ ଜିଲ୍ଲା ଭଲ ଭାବରେ ସଂଗଠିତ ଓ ଏଠାରେ ରାଜନୈତିକ ପ୍ରଗତି ବେଶି ହୋଇଥିବାରୁ ଏପରି ହୋଇଥିଲା । କାରଣ ଏଲାହାବାଦ ସହର ରାଜନୈତିକ କାର୍ଯ୍ୟର କେନ୍ଦ୍ର ଥିଲା ଏବଂ ଏହାର ନିକଟବର୍ତ୍ତୀ ଅଞ୍ଚଳକୁ ପ୍ରାୟ ପ୍ରଧାନ ପ୍ରଧାନ କର୍ମୀ ଯାଉଥିଲେ ।

୧୯୩୧ ମସିହା ମାର୍ଚ୍ଚ ମାସରେ ଦିଲ୍ଲୀ ଚୁକ୍ତି ହେବା ସଙ୍ଗେ ସଙ୍ଗେ ଆଇନ ଅମାନ୍ୟ ଓ ଖଜଣା ବନ୍ଦ ଆନ୍ଦୋଳନ ସ୍ଥଗିତ ରଖାଗଲା ବୋଲି କୃଷକମାନଙ୍କୁ ଜଣାଇବା ସକାଶେ ଆମେ କର୍ମୀ ପ୍ରେରଣ କଲୁ ଓ ପ୍ରଚୁର ପତ୍ର ବାଣ୍ଟିଲୁ । ରାଜନୈତିକ ଦୃଷ୍ଟିରୁ ସେମାନଙ୍କର ଖଜଣା ଦେବାରେ କିଛି ବାଧା ନ ଥିଲା ଏବଂ ସେମାନଙ୍କୁ ଦେଇଦେବା ନିମନ୍ତେ ଆମେ ପରାମର୍ଶ ଦେଲୁ । ମାତ୍ର ସଙ୍ଗେ ସଙ୍ଗେ ଆମେ ମତ ପ୍ରକାଶ କଲୁ ଯେ, ଅସମ୍ଭବ ଦରହ୍ରାସ ଯୋଗୁଁ ସେମାନଙ୍କୁ ବହୁତ ଛାଡ଼ ମିଳିବା ଦରକାର ଏବଂ ଏଥିଲାଗି ଆମେ ମିଳିତ ଭାବରେ ଦାବୀ କରିବାକୁ ପ୍ରସ୍ତାବ କଲୁ

ସାଧାରଣ ଅବସ୍ଥାରେ ତ ଭଣାଶ୍ଚିର ଅସମ୍ଭବ ଥିଲା, ଦୁର୍ଗତି ସମୟରେ ପୂରା ଖଜଣା କିମ୍ବା ଆଂଶିକ କିଛି ଦେବା ଅସମ୍ଭବ ଥିଲା । ଆମେ କୃଷକ ପ୍ରତିନିଧିମାନଙ୍କ ସହିତ ସମ୍ମିଳନୀ କରି ପରାମର୍ଶ କଲୁ । ଅସ୍ଥାୟୀ ରକ୍ଷା ପ୍ରସ୍ତାବ ହିସାବରେ ଆମେ ସାଧାରଣ ଭାବରେ ଶତକଡ଼ା ପଚାଶ ଏବଂ କେତେକ ସ୍ଥଳରେ ତାଠାରୁ ଅଧିକ ଖଜଣା ଛାଡ଼ ଦେବା ଲାଗି ପ୍ରସ୍ତାବ କଲୁ ।

ଆମେ ଆଇନ ଅମାନ୍ୟର ସାଧାରଣ ପ୍ରଶ୍ନରୁ କୃଷକ ସମସ୍ୟାକୁ ସମ୍ପୂର୍ଣ୍ଣ ଅଲଗା ରଖିବାକୁ ଚାହୁଁଥିଲୁ । ଆମେ ୧୯୩୧ରେ ରାଜନୀତିକୁ କଥା ବାଦ୍ ଦେଇ କେବଳ ଅର୍ଥନୈତିକ ଦୃଷ୍ଟିରୁ ଏହା ବିଚାର କରିବାକୁ ଚାହୁଁଥିଲୁ । ମାତ୍ର ଏହି ଦୁଇଟିର ପରସ୍ପର ସହିତ ଘନିଷ୍ଠ ସମ୍ପର୍କ ଥିବାରୁ ଏବଂ ଅତୀତରେ ଏହା ଏକତ୍ର ଚାଲୁଥିବାରୁ ଟିକିଏ କଷ୍ଟକର ହେଲା । କଂଗ୍ରେସ ଅନୁଷ୍ଠାନ ଦୃଷ୍ଟିରୁ ଆମେ ସବୁ ପୂର୍ବପରି ରାଜନୀତିଜ୍ଞ ଥିଲୁ । କ୍ଷଣକାଳ ପାଇଁ ଆମେ ସବୁ ଏକପ୍ରକାର କୃଷକ ସମିତି ପରି କାର୍ଯ୍ୟ କରିବାକୁ ଲାଗିଲୁ । (ଏଥିରେ ଅକୃଷକ ଏବଂ ଏପରିକି ଜମିଦାର ମଧ୍ୟ ଥିଲେ) । ଆମେ ଆମର ରାଜନୀତି ଏକଦମ୍ ଛାଡ଼ି ପାରି ନ ଥିଲୁ ବା ଛାଡ଼ିବାର ଇଚ୍ଛା ନ ଥିଲା । ଆମର ପ୍ରତ୍ୟେକ କାର୍ଯ୍ୟରେ ସରକାର ରାଜନୀତିର ଗନ୍ଧ ଦେଖୁଥିଲା । ଭବିଷ୍ୟତ ଆଇନ ଅମାନ୍ୟର ଛାୟା ଆମେ ଆଖି ଆଗରେ ଦେଖି ପାରୁଥିଲୁ ଏବଂ ଏହା ଆସିଲେ ରାଜନୀତି ଓ ଅର୍ଥନୀତି ଯେ ଏକ ସଙ୍ଗରେ ଚାଲିବ, ଏଥିରେ ସନ୍ଦେହ ନାହିଁ ।

ଏହିପରି ସବୁ କେତେକ ବାଧା ସତ୍ତ୍ୱେ ଦିଲ୍ଲୀ ଚୁକ୍ତି ସମୟରୁ ରାଜନୈତିକ ସଂଗ୍ରାମରୁ କୃଷକ ସମସ୍ୟା ଅଲଗା ରଖିବା ନିମନ୍ତେ ଆମେ ବରାବର ଉଦ୍ୟମ କରି ଆସିଥିଲୁ । ଏହାର ପ୍ରକୃତ କାରଣ ହେଉଛି ଦିଲ୍ଲୀ ଚୁକ୍ତିରେ ଏହି ସମସ୍ୟାର ଅନ୍ତ ହେଲା ନାହିଁ । ଆମେ ଏହା ସରକାର ଓ ଲୋକଙ୍କ ସମ୍ମୁଖରେ ପରିଷ୍କାର ରୂପେ ଜଣାଇ ଦେବାକୁ ଚାହୁଁ ଥିଲୁ । ମୋର ବିଶ୍ୱାସ ଦିଲ୍ଲୀ କଥାବାର୍ତ୍ତାବେଳେ ଗାନ୍ଧିଜୀ ଲର୍ଡ଼

ଇନ୍‌ଉଇନଙ୍କୁ ଜବାବ ଦେଇଥିଲେ ଯେ, ସେ ଗୋଲଟେବୁଲ ବୈଠକକୁ ନ ଗଲେ ମଧ୍ୟ ସନ୍ଧି ଲଗା ଗୃଲୁଥିବା ପର୍ଯ୍ୟନ୍ତ ଆଉ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବେ ନାହିଁ । ସନ୍ଧିଲଗାକୁ ସବୁପ୍ରକାର ସୁଯୋଗ ଦେବା ନିମନ୍ତେ ଏବଂ ଏହାର ଫଳାଫଳକୁ ଅପେକ୍ଷା କରିବା ନିମନ୍ତେ ସେ କଂଗ୍ରେସକୁ ନିର୍ଦ୍ଦେଶ ଦେବେ । ଏହା ସତ୍ତ୍ୱେ କୌଣସି ସ୍ଥାନୀୟ ଅର୍ଥନୀତିକ ସମସ୍ୟା ଯଦି ଆସି ଉପୁଜେ, ଏହା ସହିତ ଏଥିର କୌଣସି ସମ୍ପର୍କ ନାହିଁ ବୋଲି ସେ କହିଥିଲେ । ଯୁକ୍ତପ୍ରଦେଶରେ ସଙ୍ଗଠିତ କୃଷକ ଆନ୍ଦୋଳନ ଗୃଲୁ ଥିବାରୁ ଏହି ପରିସ୍ଥିତି ସମସ୍ତଙ୍କ ସମ୍ମୁଖରେ ଥିଲା, ପ୍ରକୃତରେ କହିବାକୁ ଗଲେ ସମଗ୍ର ଭାରତରେ କୃଷକମାନଙ୍କ ଏହି ସମସ୍ୟା ସ୍ପର୍ଶ କରିଥିଲା । ସିମଲାରେ କଥାବାର୍ତ୍ତାବେଳେ ଗାନ୍ଧିଜୀ ବାରମ୍ବାର ଏହି କଥା ଉଠାଇଥିଲେ ଏବଂ ପ୍ରକାଶିତ ଚିଠି ପତ୍ରରେ ଏହାର ଉଲ୍ଲେଖ ଥିଲି * । ଠିକ୍ ଇଂଲଣ୍ଡ ଯିବା ପୂର୍ବରୁ ସେ ପରିଷ୍କାର ଭାବରେ ଜଣାଇ ଦେଇଥିଲେ ଯେ, ଗୋଲଟେବୁଲ ସନ୍ଧିଲଗା ଓ ରାଜନୀତିକ ସମସ୍ୟା ଛଡ଼ା କଂଗ୍ରେସ ଲୋକଙ୍କୁ ରକ୍ଷା କରିବା ବିଶେଷତଃ ଅର୍ଥନୀତିକ ସଂଗ୍ରାମରେ କୃଷକଙ୍କ ଅଧିକାର ରକ୍ଷା କରିବାର ଆବଶ୍ୟକ ହୋଇପାରେ । କୌଣସି ସଂଗ୍ରାମ

---

* ୧୯୩୧ ଅଗଷ୍ଟ ୨୭ ତାରିଖରେ ସିମଲା ଚୁକ୍ତିର ଅଂଶ:—

ମହାତ୍ମା ଗାନ୍ଧି ଭାରତ ସରକାରର ଘରୋଇ ବିଭାଗର ସେକ୍ରେଟେରୀ ମିଷ୍ଟର ଇମର୍ସନଙ୍କୁ ଲେଖିଥିଲେ ।

ସିମଲା, ଅଗଷ୍ଟ ୨୭, ୧୯୩୧

ପ୍ରିୟ ଇମର୍ସନ,

ନୂତନ ଖସଡ଼ା ସହ ଆସିଥିବା ଆପଣଙ୍କ ଚିଠିର ପ୍ରାପ୍ତି ସ୍ୱୀକାର ଧନ୍ୟବାଦର ସହିତ କରୁଛି । ଆପଣ ଯେଉଁ ସମସ୍ତ ସଂଶୋଧନ ପ୍ରସ୍ତାବ କରିଛନ୍ତି, ତାହା ସାର୍ କାଇଜ୍‌ସି ମୋତେ ଲେଖିଛନ୍ତି । ମୋର ବନ୍ଧୁମାନେ ଓ ମୁଁ ସେହି ସଂଶୋଧିତ ଖସଡ଼ାକୁ ଯତ୍ନର ସହିତ ବିଗୃର କରୁଛୁ । ଆମେ ନିମ୍ନଲିଖିତ ମନ୍ତବ୍ୟ ସହିତ ଏହା ଗ୍ରହଣ କରିବାକୁ ପ୍ରସ୍ତୁତ ଅଛୁଁ ।

କରିବାକୁ ତାଙ୍କର ଇଚ୍ଛା ନ ଥିଲା । ସେ ଏହା ଯେପରି ନ ହେବ ତାହା ଇଚ୍ଛା କରୁଥିଲେ; ମାତ୍ର ଏହା ଅନିବାର୍ଯ୍ୟ ହେଲେ ନିଶ୍ଚୟ କରାଯିବ । ଆମେମାନେ ଜନସାଧାରଣଙ୍କୁ ଛାଡ଼ି ପାରିବୁ ନାହିଁ । ତାଙ୍କ କଥାନୁସାରେ ଦିଲ୍ଲୀ ଚୁକ୍ତି ସାଧାରଣ ଏବଂ ରାଜନୈତିକ ଆଇନ ଅମାନ୍ୟ ପ୍ରତି ପ୍ରଯୁଜ୍ୟ ହେଲେ ସୁଦ୍ଧା ଏସବୁ କାର୍ଯ୍ୟରେ ଅନ୍ତରାୟ ନ ଥିଲା ।

ଯୁକ୍ତପ୍ରଦେଶ ପ୍ରାଦେଶିକ କଂଗ୍ରେସ କମିଟି ଏବଂ ଏହାର ନେତାମାନେ ପୁନର୍ବାର ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କରି ଦିଲ୍ଲୀ ଚୁକ୍ତି ଭାଙ୍ଗିଲେ ବୋଲି ବାରଂବାର ଅଭିଯୋଗ ହୋଇଥିବାରୁ ମୁଁ ଏ କଥା ଏଠାରେ ଉଲ୍ଲେଖ କଲି । ସୁବିଧା ସମୟରେ ମଧ୍ୟ ସରକାର ଏହି ଅଭିଯୋଗ ଆଣିଥିଲେ । ଯେଉଁମାନଙ୍କ ବିରୁଦ୍ଧରେ ଏହି ଅଭିଯୋଗ ଅଣାଯାଇଥିଲା ଏବଂ ଯେଉଁମାନେ ଏହାର ଜବାବ ଦେଇ ପାରିଥାନ୍ତେ, ସେମାନଙ୍କୁ ଜେଲ ଭିତରେ ଭର୍ତ୍ତି କରାଯାଇଥିଲା — ପ୍ରତ୍ୟେକ ସମ୍ବାଦପତ୍ର

---

ଚତୁର୍ଥ ଦଫାରେ ସରକାର ଯେଉଁସବୁ ସର୍ତ୍ତ ଦେଇଛନ୍ତି, ତାହା ମୁଁ କଂଗ୍ରେସ ତରଫରୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । କାରଣ ଆମେ ଅନୁଭବ କରୁଛୁ ଯେ; କଂଗ୍ରେସ ମତରେ ଯେଉଁଠାରେ ଚୁକ୍ତି ଅନୁସାରେ ଲୋକଙ୍କର ଆପତ୍ତି ଦୂର ନ ହୋଇପାରେ, ସେଠାରେ ସେ ସମ୍ବନ୍ଧରେ ତଦନ୍ତ ହେବା ଆବଶ୍ୟକ । କାରଣ ଦିଲ୍ଲୀ ଚୁକ୍ତି ଚାଲୁଥିବା ପର୍ଯ୍ୟନ୍ତ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖାଯାଇଛି । ମାତ୍ର ଯଦି ପ୍ରାଦେଶିକ ଓ କେନ୍ଦ୍ର ସରକାର ଏଭଳି ତଦନ୍ତ ସକାଶେ ପ୍ରସ୍ତୁତ ନ ଥାନ୍ତି; ତାହାହେଲେ ଏହି ସର୍ତ୍ତ ରହିବାରେ ମୋର ବା ମୋ ସହକର୍ମୀମାନଙ୍କର କୌଣସି ଆପତ୍ତି ନାହିଁ । ଏହାର ଫଳ ଏହା ହେବ ଯେ, ଏ ପର୍ଯ୍ୟନ୍ତ ଯେଉଁସବୁ ସମସ୍ୟା ଉଠିଛି, ସେ ସମ୍ବନ୍ଧରେ ତଦନ୍ତ ଲାଗି କଂଗ୍ରେସ ଜୋର କରିବ ନାହିଁ ସତ୍ୟ, ମାତ୍ର ଦୁର୍ଭାଗ୍ୟବଶତଃ ଯଦି ଏହା ଲାଘବ କରିବାପାଇଁ କଂଗ୍ରେସର କର୍ତ୍ତବ୍ୟ ହୋଇ ଉଠେ, ତଦନ୍ତ ପ୍ରତିବଦଳରେ ଅନୁଷ୍ଠା

ଓ ଛାପାଖାନା ଉପରେ ବଡ଼ କଡ଼ା କଟକଣା ଥିଲା । ୧୯୩୧ରେ ଯୁକ୍ତପ୍ରଦେଶ କମିଟି ତ ଆଦୌ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କରିନଥିଲା—ଏହାଛଡ଼ା ଆଇନ ଅମାନ୍ୟ କଥାକୁ ବ   ଛାଡ଼ିଦେଲେ ଅର୍ଥନୀତିକ ଉଦ୍ଦେଶ୍ୟରେ ଏପରି ଆନ୍ଦୋଳନ କରିବାଟା ଦିଲ୍ଲୀ ଚୁକ୍ତିଭଙ୍ଗ ନୁହେଁବୋଲି ମୁଁ ପରିଷ୍କାର କରି-ଦେବାକୁ ଚାହେଁ । ଏହା ବାସ୍ତବିକ ଅବସ୍ଥାଦୃଷ୍ଟିରେ ଯଥାର୍ଥ ହୋଇଥିଲା କି ନାହିଁ ତାହା ଅଲଗା କଥା; ଯେପରି କାରଖାନାର ଶ୍ରମିକ ତାହାର କୌଣସି ଅର୍ଥନୈତିକ ଅସୁବିଧା ଦୂର କରିବା ନିମନ୍ତେ ଧର୍ମଘଟ କରିପାରେ, ସେହିପରି କୃଷକମାନଙ୍କର ଏହା କରିବାର ଅଧିକାର ମଧ୍ୟ ଅଛି । ଆମେ ଦିଲ୍ଲୀଠାରୁ ସିମଲା ପର୍ଯ୍ୟନ୍ତ ସବୁଠାରେ ଏହିକଥା ଜଣାଇ ଦେଇଥିଲୁ—ସରକାର ସେ ଝାଲ ଆମ ମତ ବୁଝୁଥିଲେ ତାହାନୁହେଁ, ପସନ୍ଦ ମଧ୍ୟ କରୁଥିଲେ ।

୧୯୨୯ ମସିହା ଏବଂ ତା ପରେ ଘଟିଥିବା କୃଷିଜାତ ଦ୍ରବ୍ୟ ମାନ୍ଦା ହେତୁ କ୍ରମେ ଅବସ୍ଥା ଅତି ଖରାପ ଆଡ଼କୁ ଗତି କଲା । କେତେକ ବର୍ଷ ହେଲା ପୃଥିବୀର ଚାରିଆଡ଼େ କୃଷିଜାତ ଦର ଚଢ଼ା ଥିଲା ଏବଂ ପୃଥିବୀ ବଜାର ସହିତ ସମ୍ବନ୍ଧ ଥିବାରୁ ଭାରତରେ ମଧ୍ୟ ଏହା

---

ପାଇଁ ପ୍ରତ୍ୟକ୍ଷ ସଂଗ୍ରାମ କରିବାକୁ ପଡ଼େ, ତେବେ କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖିବା ସଙ୍ଗେ ସଙ୍ଗେ ଏହା କରିବାର ତାହା ସ୍ୱାଧୀନତା ରହିବ ।

ମୁଁ ସରକାରଙ୍କୁ ପ୍ରତିଶ୍ରୁତି ଦେବାକୁ ଚାହେଁ ଯେ, କଂଗ୍ରେସ ପ୍ରତ୍ୟକ୍ଷ ସଂଗ୍ରାମ ନ କରିବାକୁ ସର୍ବଦା ଚେଷ୍ଟା କରିବ ଏବଂ ଆଲୋଚନା, ଅନୁରୋଧ ପ୍ରଭୃତି ଦ୍ୱାରା ସର୍ବଦା ପ୍ରତିକାରର ଚେଷ୍ଟା କରିବ । ଭବିଷ୍ୟ-ତରେ ଯେପରି କୌଣସି ମତାନ୍ତର ନ ଘଟେ ଏବଂ କଂଗ୍ରେସ ଉପରେ ଚୁକ୍ତିଭଙ୍ଗ ଦୋଷାରୋପ କରା ନ ଯାଏ, ସେଥିଲାଗି କଂଗ୍ରେସର ମତଟା ପରିଷ୍କାର ଭାବରେ ଜଣାଇ ଦେବାର ଆବଶ୍ୟକତା ଥିଲା । ଆମର ବର୍ତ୍ତମାନ ଆଲୋଚନା ସଫଳ ହେଲେ ଇସ୍ତାହାର, ଏହି ଶର୍ତ୍ତ ଏବଂ

ପାଇଁ ଥିଲା । ସମଗ୍ର ଜଗତରେ ଶିଳ୍ପ ଓ କୃଷିର ଉନ୍ନତି ହେତୁ କୃଷିଜାତ ଦ୍ରବ୍ୟର ବୃଦ୍ଧି ହେଉଥିଲା । ଭାରତରେ ଏହି ଦର ବୃଦ୍ଧି ସଙ୍ଗେ ସଙ୍ଗେ ସରକାରୀ ରାଜସ୍ୱ ଓ ଜମିଦାରଙ୍କ ଖଜଣା ମଧ୍ୟ ବଢ଼ିଗଲା, ସୁତରାଂ ଏହି ଚଢ଼ା ଦରରେ କୃଷକମାନେ ପ୍ରାୟ ଲାଭବାନ ହୋଇ ନ ଥିଲେ । ମୋଟାମୋଟି କେତେକ ଉନ୍ନତ ଅଞ୍ଚଳ ଛଡ଼ା ଅନ୍ୟ ସବୁଆଡ଼େ କୃଷକଙ୍କ ଅବସ୍ଥା ଦିନକୁ ଦିନ ଖରାପ ଆଡ଼କୁ ଗଲା । ଯୁକ୍ତପ୍ରଦେଶରେ ସରକାରୀ ରାଜସ୍ୱ ଅପେକ୍ଷା ଜମିଦାରୀ ଖଜଣା ଅତି ଦ୍ରୁତଗତିରେ ବଢ଼ିବାକୁ ଲାଗିଲା—୩୦ ବର୍ଷ ଭିତରେ ବଢ଼ିଥିବା ହିସାବ ଧରିଲେ ରାଜସ୍ୱ ଟଙ୍କାଏ ବଢ଼ିବାସ୍ଥଳେ ଖଜଣା ୨.୫୦ଟଙ୍କା ବଢ଼ିଥିଲା (ଏହା ମୁଁ ମନରୁ ଲେଖୁଛି ।) ତେଣୁ ଜମିରୁ ସରକାରର ଆୟ ଅନେକ ପରିମାଣରେ ବଢ଼ିଲା— ଜମିଦାରଙ୍କର ତାହା ଅପେକ୍ଷା ଆହୁରି ବଢ଼ିଲା; ମାତ୍ର କୃଷକ ପୂର୍ବପରି ଶୋକରେ ପଡ଼ି ରହିଲା । କୌଣସି ସ୍ଥାନରେ ଦର କମିଲେ ବା କୌଣସି ଦୈବଦୁର୍ବିପାକ ଯଥା—ମରୁଡ଼ି, ବନ୍ୟା, ଝଡ଼ ଇତ୍ୟାଦିରେ ଫସଲ ନଷ୍ଟ ହେଲେ ପୁରା ଖଜଣା ଓ ରାଜସ୍ୱ ପୂର୍ବପରି ରହୁଥିଲା, କେବଳ ସେହି ସମସ୍ତ ସ୍ଥାନରେ ଅତି ଅନିଚ୍ଛାସତ୍ତ୍ୱେ ଅଳ୍ପ କିଛି ଛାଡ଼ ଦିଆ ଯାଉଥିଲା । ସାଧାରଣ

---

ଆପଣଙ୍କ ଉତ୍ତର ଏକ ସଙ୍ଗରେ ପ୍ରକାଶିତ ହେବ ବୋଲି ମୁଁ ଧରି-ନେଉଛି ।

ଆପଣଙ୍କର ଅନୁଗତ
ଏମ୍. କେ. ଗାନ୍ଧି

### ଇମର୍ସନଙ୍କର ଗାନ୍ଧିଙ୍କ ପାଖକୁ

ସିମଲା, ଅଗଷ୍ଟ ୨୭, ୧୯୩୧

ପ୍ରିୟ ମିଃ ଗାନ୍ଧି,

ମୁଁ ଆପଣଙ୍କର ଆଜିର ଚିଠି ସକାଶେ ଧନ୍ୟବାଦ ଦେଉଛି । ଆପଣ ଚିଠିରେ ପ୍ରକାଶିତ ମତ ସହିତ ଏହି ଇସ୍ତାହାର ଗ୍ରହଣ କରିଛନ୍ତି । ଏ ପର୍ଯ୍ୟନ୍ତ ଯେଉଁସବୁ କଥା ଉଠିଛି ସେ ସମ୍ବନ୍ଧରେ କଂଗ୍ରେସ ତଦନ୍ତ ଦାବି କରିବ ନାହିଁ, ମାତ୍ର ଆପଣ ଜବାବ ଦେଇଛନ୍ତି ଯେ ପ୍ରତ୍ୟକ୍ଷ ସଂଗ୍ରାମ ନ କରିବାକୁ କଂଗ୍ରେସ ସର୍ବଦା ଚେଷ୍ଟା କରିବ, ଆଲୋଚନା

ସମୟରେ ତ ଖଜଣା ହାର ଅତ୍ୟନ୍ତ ବେଶି ଥା'ଏ; ଅନ୍ୟ ସମୟରେ ମହାଜନର ସାହାଯ୍ୟ ନ ନେଇ ଏହା ବହନ କରିବା ଅସହ୍ୟ । କୃଷକମାନଙ୍କର ଋଣ ବଢ଼ିଲା ।

କୃଷି ଉପରେ ନିର୍ଭର କରୁଥିବା ସମସ୍ତ ଶ୍ରେଣୀ—କି ଜମିଦାର, ସ୍ୱତ୍ୱାଧିକାରୀ କୃଷକ, ପ୍ରଜା ମହାଜନ କବଳରେ ପଡ଼ିଲେ । ପ୍ରଚଳିତ ଅବସ୍ଥାରେ ଆଦିମ ଗ୍ରାମ୍ୟ ଅର୍ଥନୈତିକ ବ୍ୟବସ୍ଥାରେ ମହାଜନ ଅପରିହାର୍ଯ୍ୟ ସେ ନିଜର ଏଥିରେ ଯଥେଷ୍ଟ ସୁବିଧା ଉଠାଇଲା ଏବଂ କ୍ରମେ ସେ ଭୂମି ଓ ଭୂମି ସହିତ ସମ୍ପୃକ୍ତ ଲୋକଙ୍କ ଉପରେ କର୍ତ୍ତୃତ୍ୱ କଲା ! ତାହାର ଗତିରୋଧ କରାଗଲା ନାହିଁ । ଆଇନହିଁ ତାକୁ ସାହାଯ୍ୟ କଲା—ସେ ତାର କରଜ ସର୍ତ୍ତ ଅନୁସାରେ ପ୍ରାପ୍ୟ "ଅଧସେର ମାଂସ" ଚମ୍ପାତର ବୁଝି ନେଉଥିଲା । କ୍ରମେ ଅନେକ ସ୍ଥଳେ ଜମିଦାର ଓ ସ୍ୱତ୍ୱାଧିକାରୀ କୃଷକଙ୍କ ହାତରୁ ଜମି ମହାଜନ ହାତକୁ ଗଲା ସେ କ୍ରମେ ବହୁତ ଜମିର ମାଲିକ ହୋଇ ଏକ ବଡ଼ ଜମିଦାର ପାଲଟି ଗଲା । ନିଜ ଜମି ଚାଷ କରୁଥିବା ସ୍ୱତ୍ୱାଧିକାରୀ କୃଷକ ଏଣିକି ବର୍ଣ୍ଣିଆ—ଜମିଦାର

---

ଅନୁରୋଧ ଇତ୍ୟାଦି ଦ୍ୱାରା ପ୍ରତିକାରର ଚେଷ୍ଟା କରନ୍ତ—ଏହିକଥା କହିବା ସଙ୍ଗେ ସଙ୍ଗେ ଆପଣ କଂଗ୍ରେସର ଭବିଷ୍ୟତ କାର୍ଯ୍ୟପନ୍ଥା ସମ୍ବନ୍ଧରେ ମଧ୍ୟ ପରିଷ୍କାର କରିଦେଇଛନ୍ତି, ଏକଥା ଗଭର୍ଣ୍ଣର ଜେନେରାଲ କାଉନ୍‌ସିଲ ସହ ଅବଗତ ହୋଇଛନ୍ତି । ମୁଁ କହିବାକୁ ଚାହେଁ, ସପରିଷଦ ଗଭର୍ଣ୍ଣର ଜେନେରାଲ ଆଶା କରନ୍ତି ଯେ, କୌଣସି ପ୍ରତ୍ୟକ୍ଷ ସଂଗ୍ରାମ ହେବ ନାହିଁ । ମୁଁ ଏ ସମ୍ବନ୍ଧରେ ଆପଣଙ୍କ ନିକଟକୁ ବଡ଼ଲାଟ ଅଗଷ୍ଟ ୧୯ ତାରିଖରେ ପଠାଇଥିବା ଚିଠିକଥା ମନେ ପକାଇ ଦେବାକୁ ଚାହେଁ । ସେ ଉତ୍ତାହାର, ଆପଣଙ୍କ ଆଜିର ଚିଠି ଏବଂ ଉତ୍ତର ଏକ ସଙ୍ଗରେ ସମ୍ବାଦ ଦ୍ୱାରା ପ୍ରକାଶିତ ହେବ ।

ଆପଣଙ୍କର ଅନୁଗତ
ଏଚ୍, ଡବଲିଉ, ଇମର୍ସନ

ଅର୍ଥାତ୍ ସାହୁକାରର ପ୍ରାୟ ଦାସ ହେଲେ ; ପ୍ରଜାଙ୍କ ଅବସ୍ଥା ଆହୁରି ଶୋଚନୀୟ ସେ ହୁଏତ ସାହୁକାରର ଦାସ ହେଲା, ନଚେତ୍ ଭୂମିଶୂନ୍ୟ ବିତାଡ଼ିତ ସର୍ବହରା ଶ୍ରେଣୀ ସଂଖ୍ୟାବୃଦ୍ଧି କଲା । ଯେଉଁ ମହାଜନ ବା ପଇସାବାଲା ଏହିରୂପେ ଜମିର ମାଲିକ ହେଉଥିଲେ, ସେମାନଙ୍କର ଜମି ବା ପ୍ରଜାଙ୍କ ସହିତ କୌଣସି ଜୀବନ୍ତ ସମ୍ପର୍କ ନ ଥିଲା । ସେ ସାଧାରଣତଃ ସହରରେ ବାସ କରୁଥିଲେ—ସେଠାରେ ମହାଜନୀ କାରବାର ଚଳାଏ—ଖଜଣା ଆଦାୟ କରିବାର ଭାର ତାର ଏଜେଣ୍ଟମାନଙ୍କ ଉପରେ ଦିଏ । ସେମାନେ ନିର୍ବୋଧ ଓ ଅମାନୁଷିକ ଭାବରେ କାର୍ଯ୍ୟ କରନ୍ତି ।

ଜମି ସଂକ୍ରାନ୍ତ ବ୍ୟବସ୍ଥା କେତେ ଅଯଥାର୍ଥ ଏବଂ ଦୃଢ଼ ନୁହେଁ, ତାହା ଚାଷ ଉପରେ ନିର୍ଭର କରିଥିବା ଶ୍ରେଣୀର ସମବର୍ଦ୍ଧିତ ଋଣରୁ ଜଣାପଡ଼େ । ଲୋକସଂଖ୍ୟା ଭିତରୁ ଅଧିକାଂଶଙ୍କର ଶାରୀରିକ ଓ ବୈଷୟିକ କିଛି ସଞ୍ଚିତ ଧନ ନ ଥାଏ—ପ୍ରତିରୋଧ ଶକ୍ତି ନ ଥାଏ; ସେମାନେ ସୂଧିତ ଅନୁସାରେ ଥାଆନ୍ତି । ଦୁର୍ଯୋଗ ବା ଅସାଧାରଣ ଘଟଣା ସେମାନେ ସହ୍ୟ କରିପାରନ୍ତି ନାହିଁ । କୌଣସି ସଂକ୍ରାମକ ରୋଗ ହେଲେ କୋଟି କୋଟି ଲୋକ ମରିଯାଆନ୍ତି । ସରକାରଦ୍ୱାରା ନିଯୁକ୍ତ ହୋଇଥିବା ପ୍ରାଦେଶିକ ବ୍ୟାଙ୍କିଙ୍ଗ୍ ଇନ୍କୁଏରି କମିଟି ୧୯୨୯ ଓ ୧୯୩୦ରେ ହିସାବ କରି ଦେଖାଇଥିଲେ, ବର୍ମା ସମେତ ଭାରତର କୃଷି ଋଣ ହେଉଛି ୮୭୦ କୋଟି ଟଙ୍କା । ଜମିଦାର, ସ୍ୱତ୍ୱାଧିକାରୀ କୃଷକ ଏବଂ ପ୍ରଜା ସମସ୍ତଙ୍କ ଋଣ ଏଥିର ଅନ୍ତର୍ଭୁକ୍ତ, ମାତ୍ର ଏହା ପ୍ରକୃତରେ କୃଷକଙ୍କ ଋଣ । ସରକାର ମୁଦ୍ରାନୀତିରେହିଁ ମହାଜନ ଶ୍ରେଣୀଙ୍କର ସୁବିଧା ହୁଏ ଏବଂ ଏଥିଯୋଗୁଁ ଋଣଭାର ଆହୁରି ବଢ଼ୁଛି । ଏହିରୂପେ ଭାରତୀୟ ପ୍ରତିରୋଧ ସତ୍ତ୍ୱେ ଟଙ୍କାର ବିନିମୟ ମୂଲ୍ୟ ୧୬ ପେନ୍ସ ନ କରି ଏକ ଶିଲିଙ୍ଗ୍ ୬ ପେନ୍ସ କରିବା ଦ୍ୱାରା କୃଷିଋଣ ଶତକଡ଼ା ୧୨½ ବଢ଼ିଲା, ଅର୍ଥାତ ୧୦୬ କୋଟି ଅଧିକ ହେଲା । *

---

* ଭାରତର କୃଷିଋଣ ଯେ ୮୭୦ କୋଟି ଏହା ବହୁତ କମ୍ ଧରାଯାଇଛି ଗତ ୪।୫ ବର୍ଷ ଭିତରେ ଏହା ପ୍ରଚୁର ପରିମାଣରେ ବୃଦ୍ଧି ପାଇଥିବ ।

ଯୁଦ୍ଧ ପରେ ହଠାତ୍ ବୃଦ୍ଧି ପରେ ପରେ କ୍ରମେ ଦର ହ୍ରାସ ହେବାକୁ ଲାଗିଲା ଏବଂ କୃଷକମାନଙ୍କ ଅବସ୍ଥା ଖରାପ ଆଡ଼କୁ ଗତି କଲା । ଏହା ଉପରେ ପୁଣି ୧୯୨୯ ଓ ତା ପରେ ଘଟିଥିବା ସଙ୍କଟ ସମୟ ଆସି ପହଞ୍ଚିଲା ।

ଯୁକ୍ତପ୍ରଦେଶରେ ୧୯୩୧ ରେ ଆମେ ଦାବୀ କରୁଥିଲୁ ଯେ, ମୂଲ୍ୟ ଅନୁପାତରେ ଖଜଣା କରାଯାଉ, ଅର୍ଥାତ୍ ୧୯୩୧ ମସିହା ପର ପୂର୍ବେ କମ୍ ଦର ଥିଲାବେଳେ ଯେତିକି ଖଜଣା ଥିଲା, ସେତିକି ବର୍ତ୍ତମାନ ହେଉ । ମୋଟାମୋଟି ୩୦ ବର୍ଷ ପୂର୍ବେ ୧୯୦୧ ମସିହାରେ ଏହିପରି ଅବସ୍ଥା ଥିଲା । ଏହା ଏକ ମୋଟାମୋଟି ହିସାବ । ଏହାର ପ୍ରୟୋଗ ସହଜ ନ ଥିଲା । କାରଣ ଦଖଲ ସତ୍ତ୍ୱ ବିଶିଷ୍ଟ, ଦଖଲସତ୍ତ୍ୱହୀନ, ସିକମ ଇତ୍ୟାଦି ନାନା ପ୍ରକାର ନିଯୁକ୍ତ ସ୍ୱତ୍ୱ ଥିଲା ଏବଂ ସବୁଠାରୁ ନିମ୍ନ ସ୍ତରର କୃଷକଙ୍କ ଅବସ୍ଥା ବେଶି ଖରାପ ଥିଲା । ଆଉ ଏକ ଉପାୟ ଥିଲା—କୃଷକ ଉତ୍ପାଦନ ମୂଲ୍ୟ ଏବଂ ମଜୁରୀ ଦେଲାପରେ ବାସ୍ତବିକ ସେ କେତେ ଖଜଣା ଦେବାକୁ ସମର୍ଥ ହେଉଛି, ଏହା ବାହାର କରିବା । ଯାହାହେଉ ଜୀବନଧାରଣ ଲାଗି ଖର୍ଚ୍ଚ ପାଇଁ ଅତି କମ୍ ବ୍ୟବସ୍ଥା କରାଯାଇ ହିସାବ କରି ଦେଖାଯାଇଛି ଯେ, ଭାରତରେ ଅଧିକାଂଶ ଜମି ଆଦୌ ଲାଭଜନକ ନୁହେଁ । ଆମେ ୧୯୩୧ରେ ଯୁକ୍ତପ୍ରଦେଶରେ କେତୋଟି ଉଦାହରଣ ଦେଇ ଦେଖାଇ

---

କେବଳ ପଞ୍ଜାବରେ ଋଣ ୧୩୫ କୋଟି ବୋଲି ସେଠା ତଦନ୍ତ କମିଟି ହିସାବ କରିଥିଲେ । ୧୯୩୪ ମସିହା ଅକ୍ଟୋବର ମାସରେ ପଞ୍ଜାବରେ ଋଣଲାଘବ ଆଇନର ଯାଞ୍ଚ କମିଟି କହୁଛନ୍ତି "କୃଷକମାନଙ୍କ ଋଣଭାର ଅତ୍ୟନ୍ତ ବେଶୀ । ଖୁବ୍ କମରେ ଏହା ୨୦୦ କୋଟି ଟଙ୍କା ବୋଲି ଧରାଯାଇ-ପାରେ । ବାଙ୍କିଙ୍ଗ୍ ତଦନ୍ତ କମିଟି ହିସାବରେ ଏହା ପ୍ରାୟ ଦୁଇଗୁଣ । ଏହି ଅନୁପାତରେ ଯଦି ଅନ୍ୟ ପ୍ରଦେଶମାନଙ୍କର ଋଣଭାର ବଢ଼ାଇ ଦିଆଯାଏ, ତେବେ ଭାରତରେ ବର୍ତ୍ତମାନ (୧୯୩୪) କୃଷିଋଣ ପ୍ରାୟ ୧୨୦୦ କୋଟି ଟଙ୍କାରୁ ଅଧିକ ହେବ ।

ଦେଇଥିଲି ଯେ, ନିଜ ସମ୍ପତ୍ତି (ଯଥା ବା ଥାଏ) ଚକ୍ରୀ ନ କରି କର୍ଯ୍ୟ ଉଠାଇବାର ସୁଧରେ ଋଣ ନ କଲେ ଅନେକ କୃଷକ ଖଜଣା ଦେଇ ପାରିବେ ନାହିଁ ।

ପ୍ରଥମେ ଯୁକ୍ତପ୍ରଦେଶ ପ୍ରାଦେଶିକ କଂଗ୍ରେସ କମିଟି ଗୋଟାଏ ମୋଟାମୋଟି ପ୍ରସ୍ତାବ ଦେଇଥିଲି ଯେ, ଦଖଲି ସ୍ୱତ୍ୱବିଶିଷ୍ଟ କୃଷକମାନଙ୍କର ଖଜଣା ଶତକଡ଼ା ୫୦ କମାଇ ଦିଆଯାଉ ଏବଂ ସେମାନଙ୍କଠାରୁ ଖରାପ ଅବସ୍ଥାପନ୍ନ କୃଷକଙ୍କୁ ଆହୁରି ଅଧିକ ଛାଡ଼ ଦିଆଯାଉ । ୧୯୩୧ ମସିହା ମେ ମାସରେ ଗାନ୍ଧିଜୀ ଯେତେବେଳେ ଯୁପି ଗଭର୍ଣ୍ଣର ସାର୍ ମାଲକମ୍ ହେଲିଙ୍କ ସହିତ ସାକ୍ଷାତ କଲେ, ସେତେବେଳେ ତାଙ୍କ ମଧ୍ୟରେ ମତଭେଦ ଘଟିଲା—ସେମାନେ ରାଜିନାମାରେ ପହଞ୍ଚି ପାରିଲେ ନାହିଁ । ତାର ଅଳ୍ପଦିନ ପରେ ଗାନ୍ଧିଜୀ ଯୁକ୍ତପ୍ରଦେଶର ଜମିଦାର ଓ କୃଷକ ଉଭୟଙ୍କୁ ନିବେଦନ କରିଥିଲେ । କୃଷକମାନେ ଯେତେଦୂର ପାରନ୍ତି ଦେଇଦେବା ନିମନ୍ତେ ସେ ନିବେଦନ କଲେ—ଆମେ ଆଗରୁ ଦେଇଥିବା ପରିମାଣରୁ ସେ କିଛି ଅଳ୍ପ ଅଧିକ ଦେବା ନିମନ୍ତେ କହିଲେ । ଗାନ୍ଧିଜୀ ଯେଉଁ ପରିମାଣ କହିଲେ, ଯୁପି ପ୍ରଦେଶିକ କମିଟି ତାହା ଗ୍ରହଣ କଲା ମାତ୍ର ଏଥିରେ ଅବସ୍ଥାର କିଛି ଉନ୍ନତି ହେଲା ନାହିଁ; କାରଣ ସରକାର ଏଥିରେ ସମ୍ମତ ହେଲା ନାହିଁ ।

ପ୍ରାଦେଶିକ ସରକାର ବଡ଼ ସଙ୍ଗୀନ୍ ଅବସ୍ଥାରେ ପଡ଼ିଥିଲା । ଜମିର ଖଜଣାରୁ ହିଁ ଏହାର ପ୍ରଧାନ ଆୟ । ଏହା ଛାଡ଼ିଦେଲେ ବା କମାଇଦେଲେ ଦେବାଳିଆ ନ ହୋଇ ସରକାର ରହିପାରିବ ନାହିଁ । ଅନ୍ୟ ପକ୍ଷରେ ଯଥା ସମ୍ଭବ ପ୍ରଚୁର ପରିମାଣରେ ଖଜଣା ଛାଡ଼ି କରି ପ୍ରଜାମାନଙ୍କୁ ସନ୍ତୁଷ୍ଟ କରିବାକୁ ଚାହୁଁଥିଲା । କୃଷକ ବିଦ୍ରୋହକୁ ସରକାର ଡରୁଥିଲା । ମାତ୍ର ଦୁଇକଥା ଏକ ସଙ୍ଗରେ ହେବା ସହଜ ନୁହେଁ । ସରକାର ଓ କୃଷକ ଭିତରେ ଜମିଦାର ରହିଥିଲେ । ଅର୍ଥନୀତିକ ଦୃଷ୍ଟିରୁ ଏହା ଅତ୍ୟନ୍ତ ଅଦରକାରୀ ଓ ଅକର୍ମଣ୍ୟ ଶ୍ରେଣୀ । ଏହି ଶ୍ରେଣୀର କିଛି କ୍ଷତି କରି ସରକାର ଓ

କୃଷକର କିଛି ଉପକାର କରିପାରି ପାରିଥାନ୍ତା । ମାତ୍ର ବ୍ରିଟିଶ ସରକାର ଯେପରି ଗୁରୁତର ଗଡ଼ା, ଗ୍ରାମଘାତକ କାରଣରୁ ସେମାନଙ୍କୁ ଅସନ୍ତୁଷ୍ଟ କରିବାକୁ ଚାହୁଁ ନ ଥିଲେ ।

ଶେଷରେ ପ୍ରଜା ଓ ଜମିଦାର ଉଭୟଙ୍କ ପାଇଁ ସରକାର କିଛି ଛାଡ଼ ଘୋଷଣା କଲେ । ଏହି ବ୍ୟବସ୍ଥା ଏପରି ଜଟିଳ ଯେ, ସହଜରେ ବୁଝିବାର କୌଣସି ଉପାୟ ନାହିଁ । ଯାହାହେଉ, ପ୍ରୟୋଜନ ତୁଳନାରେ ଏହା ଯେ ବହୁତ କମ୍ ଏହା ପରିଷ୍କାର ଜଣା ପଡ଼ୁଥିଲା । ଏହା କେବଳ ଚଳିତ ବର୍ଷର ଖଜଣା ପାଇଁ ପ୍ରଯୁଜ୍ୟ ଥିଲା—ମାତ୍ର ପ୍ରଜାର ଯେଉଁ ଖଜଣା ବା ଋଣ ବାକି ପଡ଼ି ରହିଛି ସେ ସମ୍ବନ୍ଧରେ ଏହା କିଛି ପ୍ରତିକାର କରି ନ ଥିଲା । ଚଳିତ ବର୍ଷର ପ୍ରଥମ (ଅଧାବର୍ଷର) ଖଜଣା ଦେବା ନିମନ୍ତେ କୃଷକ ସମର୍ଥ ହୋଇଥିବା ସ୍ଥଳେ ଅତୀତ ବର୍ଷର ଖଜଣା ବା ପୁରୁଣା ଋଣ ଦେବା ତାହା ପକ୍ଷରେ ଅତ୍ୟନ୍ତ ଅସମ୍ଭବ । ନିୟମାନୁସାରେ ଯାହା ଆଦାୟ ହୁଏ ଜମିଦାରମାନେ ତାହା ବାକି ବାବଦକୁ ହିସାବ ପକାନ୍ତି । କୃଷକଙ୍କ ଦୃଷ୍ଟିରୁ ଏହି ପ୍ରଥା ବିପଜ୍ଜନକ – କାରଣ ତାଠାରୁ ପ୍ରାପ୍ୟ ଖଜଣାରୁ କେତେକାଂଶ ଅନାଦାୟ ହୋଇଥିବା ହେତୁ ଯେ କୌଣସି ମୁହୂର୍ତ୍ତରେ ତା ବିରୁଦ୍ଧରେ ନାଲିସ କରାଯାଇ ତାକୁ ତାର ଜମିରୁ ଉଚ୍ଛେଦ କରାଯାଇ ପାରୁଥିଲା ।

ପ୍ରାଦେଶିକ କଂଗ୍ରେସ କାର୍ଯ୍ୟକାରୀ ସମିତି ମହା ଅସୁବିଧାରେ ପଡ଼ିଥିଲା । ଆମେ ବୁଝି ପାରିଲୁ ଯେ, କୃଷକମାନଙ୍କ ପ୍ରତି ଅବିଚାର ହୋଇଛି । ଆମେ ଏଥିରେ ଅସହାୟ ଅନୁଭବ କଲୁ । କୃଷକମାନଙ୍କୁ ନ ଦେବା ଲାଗି ପରାମର୍ଶ ଦେବାର ଦାୟିତ୍ୱ ଆମେ ନେବାକୁ ଚାହୁଁ ନ ଥିଲୁ । ସେମାନେ ଯଥାସମ୍ଭବ ଦେବାପାଇଁ ଚେଷ୍ଟା କରିବା ଉଚିତ ବୋଲି ଆମେ ବରାବର କହୁଥିଲୁ, ସେମାନଙ୍କ ଦୁର୍ଭାଗ୍ୟରେ ସହାନୁଭୂତି ଦେଖାଉଥିଲୁ । ଛାଡ଼ ଦେବାପରେ ବୁଝା ତାଙ୍କଠାରୁ ଯେଉଁ

ଖଜଣା ଦାବୀ କରାଯାଉଥିଲା ତାହା ତାଙ୍କ ପକ୍ଷରେ ଅତଶକ୍ତ ବୋଲି ଆମେ ଦେଖିଲୁ ।

ଆଇନ ଓ ବେଆଇନ ସବୁପ୍ରକାରରେ ଅତ୍ୟାଚାର ଯନ୍ତ୍ର ଚାଲିବାକୁ ଆରମ୍ଭ କଲା । ହଜାର ହଜାର ଲୋକଙ୍କ ଉପରେ ଦଖଲ ଉଚ୍ଛେଦ ମକଦ୍ଦମା ହେଲା । ଗାଈ, ବଳଦ ଓ ବ୍ୟକ୍ତିଗତ ସମ୍ପତ୍ତି ବାଜ୍ୟାପ୍ତ କରାଗଲା । ଜମିଦାରଙ୍କ ଏଜେଣ୍ଟମାନେ ପ୍ରହାର କଲେ । ତାଙ୍କ ଉପରେ ଦାବୀ କରୁଥିବା ଖଜଣାରୁ କେତେକାଂଶ ଅଧିକ ସଂଖ୍ୟକ ପ୍ରଜା ଦେଲେ । ଯେତେବେଳେ ତାଙ୍କ ପକ୍ଷରେ ଯାହା ସମ୍ଭବ, ସେମାନେ ଦେଉଥିଲେ । କେତେକ ସ୍ଥଳରେ ସେମାନେ ଖୁବ୍ ସମ୍ଭବତଃ ଅଧିକା ଦେଇପାରିଥାନ୍ତେ; ମାତ୍ର ଅଧିକାଂଶଙ୍କ ପକ୍ଷରେ ଏହା ଏକ ସଙ୍କଟ ବୋଝ ଥିଲା । ଆଂଶିକ ଭାବରେ ଆଦାୟ ହେବାଦ୍ୱାରା ସେମାନେ ରକ୍ଷା ପାଇଲେ ନାହିଁ । ଆଇନ ଅଗ୍ରସର ହେବାକୁ ଲାଗିଲା ଏବଂ ତାହା ସମ୍ମୁଖରେ ଯାହା ଆସିଲା, ତାହା ନିର୍ଦ୍ଦୟ ଭାବରେ ପେଷି ହୋଇଗଲା । ଆଂଶିକ ଆଦାୟ ହୋଇଥିଲେ ସୁଦ୍ଧା ଉଚ୍ଛେଦ ମକଦ୍ଦମା ସବୁ ଡିକ୍ରୀ ହେଲା । ଗୋରୁଗାଈ ଓ ବ୍ୟକ୍ତିଗତ ସମ୍ପତ୍ତି କ୍ରୋକ ଓ ବାଜ୍ୟାପ୍ତି ଚାଲିଲା । କୃଷକମାନେ ଯଦି ଆଦାୟ ଦେଇ ନ ଥିଲେ ଏହାଠାରୁ କିଛି ଖରାପ ଅବସ୍ଥା ହୋଇ ନ ଥାନ୍ତା । ବାସ୍ତବିକ ସେମାନେ ଠିକ ଏ ଭଳି ଅବସ୍ଥାରେ ଥାଆନ୍ତେ, କାରଣ ଅନ୍ତତଃ ସେତକ ଧନ ତାଙ୍କ ହାତରେ ରହିଥାନ୍ତା ।

ସେମାନେ ବହୁସଂଖ୍ୟାରେ ଆମ ନିକଟକୁ ଆସୁଥିଲେ, ଆପତ୍ତି କରୁଥିଲେ । ଆମେ ତମ ପରାମର୍ଶ ମାନିଲୁ ଏବଂ ଯାହା ସମ୍ଭବ ଦେଲୁ, ତାର ଫଳ ଏଇଆ ହେଲା । କେବଳ ଏଲାହାବାଦ ଜିଲ୍ଲାରେ ଅନେକଙ୍କୁ ତାଙ୍କ ଜମିରୁ ଉଚ୍ଛେଦ କରାଗଲା, ଅନେକ ଲୋକଙ୍କ ବିରୁଦ୍ଧରେ ନାନା ପ୍ରକାର ମକଦ୍ଦମା ଚାଲିଲା । ଜିଲ୍ଲା କଂଗ୍ରେସ କମିଟି ଅଫିସ ଗୃହଆଡ଼େ ଉତ୍ତେଜିତ ଜନତା ସାରାଦିନ ବସିରହୁଥିଲେ । ମୋ ଘର ମଧ୍ୟ ସେହିପରି ଜନବେଷ୍ଟିତ ହୋଇଥାଏ । ବେଳେ ବେଳେ ଏହି ଅବସ୍ଥାକୁ କଷ୍ଟ ଭ

ପାଇବା ପାଇଁ ପଳାଇ ଯାଇ କେଉଁଠି ଲୁଚିବାକୁ ଇଚ୍ଛା କରୁଥିଲେ । ଆମ ପାଖକୁ ଆସିଥିବା କୃଷକମାନଙ୍କଠାରେ ଅନେକ ମାଡ଼ର ଚିହ୍ନ ଥିଲା । ଏହାସବୁ ଜମିଦାରଙ୍କ ଏଜେଣ୍ଟମାନଙ୍କ ପ୍ରହାର ଯୋଗୁଁ ହୋଇଥିଲା । ଆମେ ସେମାନଙ୍କୁ ହାସପାତାଳରେ ଚିକିତ୍ସା କଲୁ । ସେମାନେ କଣ କରିପାରନ୍ତେ ? ଆମେ ବା କଣ କରନ୍ତୁ ? ଆମେ ଯୁକ୍ତ ପ୍ରଦେଶର ସରକାର ନିକଟକୁ ଲମ୍ବା ଚିଠିମାନ ପଠାଇଲୁ । ନୈନିତାଲ ବା ଲକ୍ଷ୍ନୌ ଯାଇ ପ୍ରାଦେଶିକ ସରକାର ସହିତ ସମ୍ପର୍କ ରଖିବା ପାଇଁ ଆମ କମିଟି ତରଫରୁ ଗୋବିନ୍ଦବଲ୍ଲଭ ପନ୍ଥ ନିଯୁକ୍ତ ହୋଇଥିଲେ । ସେ ସରକାରଙ୍କୁ ବରାବର ଲେଖିଥିଲେ । ଆମର ପ୍ରାଦେଶିକ ସଭାପତି ସେଦୁକ୍, ଏ, କେ, ଶେରଓ୍ୟାନୀ, ଓ ମୁଁ ମଧ୍ୟ ଚିଠି ଲେଖୁଥିଲୁ ।

କିନ୍ତୁ ଜୁଲାଇ ମାସରେ ବର୍ଷା ଋତୁ ଆରମ୍ଭହେବାରୁ ଆହୁରି ଅସୁବିଧା ହେଲା । ଏହା ଜମିଚାଷ କରି ବୁଣିବାର ବେଳ । ଯେଉଁ କୃଷକମାନଙ୍କୁ ଜମିରୁ ବେଦଖଲ କରାଯାଇଛି, ସେମାନଙ୍କ ଆଖି ସାମନାରେ ନିଜ ଜମି ସେପରି ପଡ଼ିଆ ହୋଇ ପଡ଼ିଥିବ, ଆଉ ସେମାନେ ଅଳସୁଆ ହୋଇ ବସି ରହିବେ ? ଏହା କୃଷକ ପକ୍ଷରେ ବଡ଼ କଷ୍ଟକର କଥା— ଏହା ସେମାନଙ୍କର ପ୍ରକୃତିବିରୁଦ୍ଧ । ଅନେକ ସ୍ଥଳରେ ଆଇନ ଏବଂ ସାମାନ୍ୟ କାରଣ ହେତୁ ବେଦଖଲ କରାଯାଉଥିଲା; ପ୍ରକୃତ ଭାବରେ ନୁହେଁ । ଖାଲି କଚେରୀରେ ଗୋଟିଏ ଡିକ୍ରୀ ହୋଇଯାଉଥିଲା—ଏହା ଛଡ଼ା ଆଉ କିଛି ହେଉ ନ ଥିଲା । ସେମାନେ ତାଙ୍କ ଜମି ଚାଷ କଲେ ଫୌଜଦାରୀ ଆଇନର ଜବରଦସ୍ତି ପ୍ରବେଶ ଲାଗି ଶାସ୍ତି ପାଇବେ ଏବଂ ଏହା ଫଳରେ ଛୋଟ ଛୋଟ ଦଙ୍ଗା ହୋଇପାରେ ! ଅନ୍ୟମାନେ ଆସି ସେମାନଙ୍କ ଜମି ଚାଷ କରିବେ, ଏହା କୃଷକମାନେ ସହ୍ୟ କରିବା କଷ୍ଟକର ; ସେମାନେ ପରାମର୍ଶ ପାଇଁ ଆମ ପାଖକୁ ଆସୁଥିଲେ । ଆମେ ତାଙ୍କୁ କଣ ପରାମର୍ଶ ଦିଅନ୍ତୁ ?

ମୁଁ ଗାନ୍ଧିଜୀଙ୍କ ସହିତ ଗ୍ରୀଷ୍ମ ଋତୁରେ ଯେତେବେଳେ ସିମଲା ଯାଇଥିଲି, ସେତେବେଳେ ଏହି ଅସୁବିଧା ସମ୍ବନ୍ଧରେ ଭାରତ ସରକାର

ଜଣେ ଉଚ୍ଚପଦସ୍ଥ କର୍ମଚାରୀଙ୍କୁ କହିଥିଲି ଏବଂ ଆମ ଅବସ୍ଥାରେ ଥିଲେ ସେ କଣ କରନ୍ତେ, ତାଙ୍କୁ ପରାମର୍ଶ ମାଗିଥିଲି । ତାଙ୍କ ଜବାବରେ ମୋର ଚେତନା ଫେରିଲା । ସେ କହିଲେ ବେଦଖଲ ହୋଇଥିବା କୌଣସି ପ୍ରଜା ଯଦି ତାଙ୍କୁ ଏହି ପ୍ରଶ୍ନ ପଚାରେ, ତେବେ ସେ ତାହାର ଜବାବ ଦେବାକୁ ଅସ୍ୱୀକାର କରିବେ । ଆଇନ ସ୍ତରରେ କୃଷକଙ୍କୁ ଜମିରୁ ବେଦଖଲ କରାଯାଇଥିଲେ ସୁଦ୍ଧା ସେମାନେ ଜମି ଚାଷ ନ କରନ୍ତୁ ବୋଲି ସେମାନଙ୍କୁ କହିବାକୁ ସେ ପ୍ରସ୍ତୁତ ନ ଥିଲେ । ସିମଲା ଉଚ୍ଚ ପାହାଡ଼ରେ ବସି ତାଙ୍କ ପକ୍ଷରେ ତାହା କହିବା ସହଜ । କୌଣସି ଏକ ଅଙ୍କଫଳ ତାହାର କଲମର ଫାଇଲରେ ହୁକୁମ ପାସ୍ କରିବା ସହଜ । ସେ କିମ୍ବା ନୈନି-ତାଲରେ ଥିବା ପ୍ରାଦେଶିକ କର୍ତ୍ତାମାନେ କେବେ ମନୁଷ୍ୟମାନଙ୍କ ସମ୍ପର୍କରେ ଆସୁ ନ ଥିଲେ କିମ୍ବା ସେମାନଙ୍କ ଦୁଃଖ ଦୁର୍ଦ୍ଦଶା ତାଙ୍କ ଆଖିରେ ପଡ଼ୁ ନ ଥିଲା ।

କୃଷକମାନେ ସମସ୍ତ ଖଜଣା କିମ୍ବା ଯଥାସାଧ୍ୟ ଦେଇଦେବା ନିମନ୍ତେ ସେମାନଙ୍କୁ ପରାମର୍ଶ ଦେବାଲାଗି ଆମକୁ ସିମଲାରେ କୁହାଗଲା । ପ୍ରକୃତରେ ଆମକୁ ଜମିଦାରମାନଙ୍କର ଗୁମାସ୍ତାଙ୍କ ପରି କାର୍ଯ୍ୟ କରିବାକୁ କୁହାଗଲା । ପ୍ରକୃତରେ ଆମେ କୃଷକମାନଙ୍କୁ ଯଥାସାଧ୍ୟ ଦେଇଦେବା ନିମନ୍ତେ ଯେତେବେଳେ ପରାମର୍ଶ ଦେଇଛୁ, ସେତେବେଳେ ଏକାଂଶରେ ଏହିପରି କାର୍ଯ୍ୟ କରିଛୁ । ଅବଶ୍ୟ ଆମେ ଏହା ସଙ୍ଗେ ସଙ୍ଗେ କହିଥିଲୁ ଯେ ଗୋରୁଗାଈ ବିକ ନାହିଁ କିମ୍ବା ଅଧିକ ଋଣ କର ନାହିଁ । ଏହାର ଫଳ ତ ଆମେ ଦେଖିଲୁ ।

ସେ ବର୍ଷ ପ୍ରଚଣ୍ଡ ଗ୍ରୀଷ୍ମ ହୋଇଥିଲା—ଆମେ ବଡ଼ କ୍ଳାନ୍ତ ହୋଇ ପଡ଼ିଥିଲୁ । ଦୁର୍ଦ୍ଦଶା ସହ୍ୟ କରିବାର ଅଦ୍ଭୁତ ଶକ୍ତି ଭାରତୀୟ କୃଷକଙ୍କର ଅଛି । ଦୁର୍ଭିକ୍ଷ, ବନ୍ୟା, ରୋଗ ଏବଂ କ୍ରମବର୍ଦ୍ଧିଷ୍ଣୁ ଦାରିଦ୍ର୍ୟ ହେତୁ ସେ ଯଥେଷ୍ଟ ସହ୍ୟ କରୁଛି । ଯେତେବେଳେ ସେ ଆଉ ସହ୍ୟ କରିପାରନ୍ତି ନାହିଁ, ସେତେବେଳେ ନୀରବରେ ଧନୀ ଆପତ୍ତିରେ କୋଟି କୋଟି

ଝଷ୍ଟାରେ ମୁଣ୍ଡ ପାତି ଦୁଃଖ ବର୍ଣ୍ଣନା କରି ଜୀବନ ଧାରନ୍ତି । ଏହାଦ୍ୱାରାହିଁ ସେମାନେ ମୁକ୍ତି ପାଉଥିଲେ । ପୂର୍ବ ଯେଉଁ ସବୁ ସାମୟିକ ଦୁର୍ଦ୍ଦଶା ଘଟିଥିଲା ତାହା ୧୯୩୧ ମସିହା ତୁଳନାରେ ଯଥେଷ୍ଟ କମ । ମାତ୍ର ୧୯୩୧ ର ଘଟଣା ଏକ ପ୍ରାକୃତିକ ଦୁର୍ଯୋଗ ବୋଲି ସେ ବୁଝିଲେ ନାହିଁ— ସୁତରାଂ ଏହା ସହ୍ୟ କରିବା ସେମାନଙ୍କ ପକ୍ଷରେ କଷ୍ଟକର ହେଲା । ସେ ବୁଝିପାରିଲେ ଏହା ଦୁର୍ଗତି ସୃଷ୍ଟି କରୁଛି—ସେଥିଲାଗି ତାର ଅସନ୍ତୋଷ ବଢ଼ିଲା । ତାଙ୍କର ନୂତନ ରାଜନୈତିକ ଶିକ୍ଷାମଧ୍ୟ କାର୍ଯ୍ୟ କରୁଥିଲା । ଆମ ପକ୍ଷରେ ମଧ୍ୟ ୧୯୩୧ର ଘଟଣା ବଡ଼ ଯନ୍ତ୍ରଣାଦାୟକ ଥିଲା— କାରଣ କେତେକାଂଶରେ ଆମେ ଏଥିଲାଗି ଦାୟୀ । କୃଷକମାନେ ଅନେକ ପରିମାଣରେ ଆମର ପରାମର୍ଶ ମାନି ନାହାନ୍ତି କି ? ତଥାପି ମୋର ଦୃଢ଼ ବିଶ୍ୱାସ, ଆମର ତରଫରୁ ସାହାଯ୍ୟ ପାଇ ନ ଥିଲେ କୃଷକଙ୍କ ଅବସ୍ଥା ଅଧିକ ଖରାପ ହୋଇଥାଆନ୍ତା । ଆମେ ସେମାନଙ୍କୁ ସଂଘବଦ୍ଧ କରି ଶକ୍ତିଶାଳୀ କରିଥିଲୁ ବୋଲି ସେ ଅନ୍ୟ ଉପାୟରେ ଯାହା ପାଇଥାନ୍ତେ, ଏହା ଅପେକ୍ଷା ଅଧିକ ହାରରେ ଛାଡ଼ ପାଇଲେ । ଯାହା କିଛି ଜୋର ଜବରଦସ୍ତି ଖରାପ ବ୍ୟବହାର ହୋଇଛି ତାହା ଖରାପ ହେଲେ ମଧ୍ୟ ଏହା ଅବଧ ଲୋକଙ୍କ ପକ୍ଷରେ କିଛି ନୂଆ ନୁହେଁ, କେବଳ ଏହାର ପରିମାଣରେ ପାର୍ଥକ୍ୟ ଅଳ୍ପ (ଆଜିକାଲି) ଏ ଯଥେଷ୍ଟ ବେଶି ହୋଇଛି ଏବଂ ପ୍ରଚୁର ଉପରେ ତାହା ନିର୍ଭର କରେ । ସାଧାରଣ ଭାବରେ ଦେଖିବାକୁ ଗଲେ କୃଷକ ପ୍ରତି ଖରାପ ବ୍ୟବହାର ଏବଂ କୌଣସି ଗ୍ରାମରେ ଜମିଦାର ଗୁମାସ୍ତା କୃଷକଙ୍କୁ ମାରିବା କଥାଟା ଗୋଟାଏ ସାଧାରଣ ଘଟଣା ରୂପେ ଧରି ନିଆଯାଏ—ମାଡ଼ ଖାଇବା କିମ୍ବା ନ ମରିବା ପର୍ଯ୍ୟନ୍ତ ସେ ଅଞ୍ଚଳ ଛଡ଼ା ବାହାରର କମ୍ ଲୋକେ ଏହା ଜାଣିପାରୁ ଥିଲେ । ଆମ ସଂଗଠନ ଓ କୃଷକଙ୍କ ଭିତରେ ଚୈତନ୍ୟ ଜାଗ୍ରତ ହେବାରୁ ଏହା ବର୍ତ୍ତମାନ ପୃଥକ୍ ଧରଣର ହେଲା । ସେମାନଙ୍କର କିଛି ଅତ୍ୟାଚାର ହେଲେ ଏକାଠି ହୋଇପାରୁଥିଲେ ଏବଂ କଂଗ୍ରେସ ଅଫିସରେ ଆସି ଜଣାଉଥିଲେ ।

ଗ୍ରୀଷ୍ମ ଋତୁ ଶେଷ ହେଲାବେଲକୁ ଜୋର ଜବରଦସ୍ତି ଆଦାୟ ଉଦ୍ୟମ ଟିକିଏ କମିଲା ଏବଂ ଅତ୍ୟାଚାର ବ କମିଲା । ବର୍ତ୍ତମାନ ଉଚ୍ଛେଦ ହୋଇଥିବା ବହୁସଂଖ୍ୟକ ପ୍ରଜାଙ୍କ ସମସ୍ୟା ଗୁରୁତର ହୋଇ ଉଠିଲା । ସେମାନଙ୍କ ପାଇଁ କଣ କରାଯିବ ? ଅଧିକାଂଶଙ୍କ ଜମି ଖାଲି ପଡ଼ିଆ ପଡ଼ିଥାଏ – ସେମାନଙ୍କ ଜମି ସେମାନଙ୍କୁ ଫେରାଇ ଦେବାପାଇଁ ସୁବିଧା କରି ଦେବା ନିମନ୍ତେ ଆମେ ସରକାର ପାଖରେ ଦାବୀ କରୁଥାଉଁ । ଭବିଷ୍ୟତ ଆହୁରି ଗୁରୁତର ହେଲା । ଗତ ଋତୁପାଇଁ ଯିବା ଗ୍ରହ ଦିଆଗଲା —ଭବିଷ୍ୟତ ପାଇଁ କିଛି ନିଷ୍ପତ୍ତି ହୋଇ ନ ଥାଏ । ଅକ୍ଟୋବର ମାସଠାରୁ ନୂତନ କିସ୍ତି ଆଦାୟ ହେଲ ପଡ଼ୁଥିବ । ସେତେବେଳେ କଣ ହେବ ? ସେତେବେଳେ ପୁଣି କଣ ଏହିପରି ଭୀଷଣ ପରିସ୍ଥିତି ଘଟିବ ? ଏହା ବିଚାର କରିବା ନିମନ୍ତେ ସରକାର ଗୋଟିଏ ଛୋଟ କମିଟି ନିଯୁକ୍ତ କଲେ । ସେଥିରେ ତାଙ୍କର ନିଜ କର୍ମଚାରୀ ଏବଂ ସ୍ଥାନୀୟ କାଉନସିଲର କେତେକ ଜମିଦାର ସଦସ୍ୟ ସଭ୍ୟ ହୋଇ ରହିଲେ । କୃଷକଙ୍କ ପ୍ରତିନିଧି ଏଥିରେ କେହି ନ ଥିଲେ । ଶେଷ ମୁହୂର୍ତ୍ତରେ କମିଟିର କାର୍ଯ୍ୟ ଆରମ୍ଭ ହୋଇଗଲା ପରେ ଆମ ଭିତରୁ ଗୋବିନ୍ଦବଲ୍ଲଭ ପନ୍ତଙ୍କୁ ଏଥିରେ ଯୋଗ ଦେବା ନିମନ୍ତେ ସରକାର ତରଫରୁ କୁହାଗଲା । ଗୁରୁତର ବିଷୟମାନଙ୍କର ନିଷ୍ପତ୍ତି ହୋଇ ସାରିଥିଲା ପରେ ସେ ଆଉ ଏଥିରେ ଯୋଗ ଦେଇ କିଛି ଲାଭ ନାହିଁ ବୋଲି ମନେ କଲେ ।

ଅତୀତ ଓ ବର୍ତ୍ତମାନ ସମ୍ବନ୍ଧରେ କୃଷିତଥ୍ୟ ସଂଗ୍ରହ କରି ବର୍ତ୍ତମାନ ପରିସ୍ଥିତି ସମ୍ବନ୍ଧରେ ରିପୋର୍ଟ କରିବା ନିମନ୍ତେ ଯୁକ୍ତପ୍ରଦେଶ ପ୍ରାଦେଶିକ କଂଗ୍ରେସ କମିଟି ମଧ୍ୟ ଗୋଟିଏ ଛୋଟ କମିଟି ନିଯୁକ୍ତ କରିଥିଲା । ଯୁକ୍ତ-ପ୍ରଦେଶର କୃଷକଙ୍କ ଅବସ୍ଥା ତଦନ୍ତ କରି ଏବଂ କୃଷିଜାତ ଦ୍ରବ୍ୟ ମାନ୍ଦା ହେତୁ ଯେଉଁ ଭୀଷଣ ଦୁର୍ଦ୍ଦଶା ଘଟିଛି ଏହା ବିଶ୍ଳେଷଣ କରି କମିଟି ଏକ ଦୀର୍ଘ ରିପୋର୍ଟ ପେଶ କଲା । ସେମାନଙ୍କର ସୁପାରିଶଗୁଡ଼ିକ ବ୍ୟାପକ ଥିଲା । ସେ ରିପୋର୍ଟଟି ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା ଓ

ସେଥିରେ ଗୋବିନ୍ଦବଲ୍ଲଭ ପନ୍ଥ, ସ୍ୱିଫି ଅହ୍ମଦ କିଦ୍‌ୱାଇ ଏବଂ ଭେଙ୍କଟେ'ଶ ନାରାୟଣ ତେଓ୍ୱାରୀଙ୍କର ଦସ୍ତଖତ ଥିଲା ।

ଏହି ରିପୋର୍ଟ ପ୍ରକାଶିତ ହେବାର ବହୁପୂର୍ବରୁ ଗାନ୍ଧିଜୀ ଗୋଲଟେବୁଲ ସମ୍ମିଳନୀକୁ ଯାଇଥିଲେ । ସେ ବଡ଼ ଇତସ୍ତତଃ ହୋଇଯାଇଥିଲେ— ଯୁକ୍ତପ୍ରଦେଶର କୃଷକ ପରିସ୍ଥିତିହିଁ ଏପରି ବିଚଳିତ ହେବାର ଗୋଟିଏ କାରଣ । ପ୍ରକୃତରେ ସେ ସ୍ଥିର କରିଥିଲେ ଯେ ଯଦି ସେ ଗୋଲଟେବୁଲ ବୈଠକରେ ଯୋଗ ଦେବାଲାଗି ଲଣ୍ଡନ ନ ଯାଆନ୍ତି, ତେବେ ଯୁକ୍ତପ୍ରଦେଶ ଆସି ଏହି ଜଟିଳ ସମସ୍ୟାରେ ଲାଗି ପଡ଼ିବେ । ସିମଲାଠାରେ ଶେଷ କଥାବାର୍ତ୍ତା ବେଳେ ଅନ୍ୟାନ୍ୟ ବିଷୟ ସହିତ ଯୁକ୍ତପ୍ରଦେଶ ସମସ୍ୟା ଆଲୋଚିତ ହୋଇଥିଲା । ସେ ଇଂଲଣ୍ଡକୁ ଗଲାପରେ ଆମେ ତାଙ୍କୁ ପ୍ରତ୍ୟେକ ଘଟଣା ଜଣାଉଥିଲୁ । ପ୍ରଥମ ଦୁଇ ତିନିମାସ ମୁଁ ତାଙ୍କୁ ପ୍ରାୟ ପ୍ରତ୍ୟେକ ସପ୍ତାହରେ ସାଧାରଣ ଓ ବିମାନ ଡାକରେ ଚିଠି ଲେଖୁଥିଲି । ଶେଷ ବେଳକୁ ସେ ଆସିବେ ବୋଲି ଆଶା କରୁଥିବାରୁ ସ୍ୱାଭାବିକ ଲେଖୁ ନ ଥିଲି । ସେ ଆମକୁ କହିଥିଲେ ଖୁବ୍ ହେଲେ ସେ ତିନି ମାସ ପରେ ଅର୍ଥାତ୍ ନଭେମ୍ବର ମାସରେ ଫେରିବେ ଏବଂ ଏହିଭିତରେ ଭାରତରେ କୌଣସି ସଙ୍କଟଜନକ ପରିସ୍ଥିତି ହେବ ନାହିଁ ବୋଲି ଆମେ ଆଶା କରିଥିଲୁ । ମୋଟରେ ଆମେ ତାଙ୍କ ଅନୁପସ୍ଥିତି ବେଳେ ସରକାର ସହିତ କୌଣସି ପ୍ରକାର ସଙ୍ଘର୍ଷ ଓ ବିବାଦ ଯେପରି ନଘଟେ ସେଥିଲାଗି ଚେଷ୍ଟା କରୁଥିଲୁ । ଯେତେବେଳେ ତାଙ୍କର ଆସିବା ବିଳମ୍ବ ଘଟିଲା ଏବଂ କୃଷକ ପରିସ୍ଥିତି ବଡ଼ ଜଟିଳ ହୋଇ ଉଠିଲା ସେତେବେଳେ ଏକ ଦୀର୍ଘ ତାରଦ୍ୱାରା ଆମେ ସେତେବେଳର ଅବସ୍ଥା ତାଙ୍କୁ ଜଣାଇ ଆମର ଅବସ୍ଥା ବିପରି ସଙ୍କଟାପନ୍ନ ହୋଇ ଉଠୁଛି କହି ତାଙ୍କୁ ପରାମର୍ଶ ମାଗିଲୁ । ସେ ଉତ୍ତର ଦେଲେ ଯେ, ଏ ବିଷୟରେ ସେ ନିଜକୁ ଅସହାୟ ମନେ କରୁଛନ୍ତି— ଆମପାଇଁ ସେପରି ଅବସ୍ଥାରେ କିଛି କରିପାରିବେ ନାହିଁ — ଆମକୁ ଯେପରି ଭଲ ଦେଖା-ଯାଉଛି ସେପରି ଭାବରେ ଅଗ୍ରସର ହେବା ଦରକାର ।

ପ୍ରାଦେଶିକ କଂଗ୍ରେସ କାର୍ଯ୍ୟକାରୀ ସମିତି ମଧ୍ୟ କଂଗ୍ରେସ କାର୍ଯ୍ୟକାରୀ ସମିତିକୁ ସବୁକଥା ଜଣାଇ ରଖିଥାଏ । ମୁଁ ସେମାନଙ୍କୁ ପ୍ରତ୍ୟକ୍ଷ ଭାବରେ ସବୁ କଥା ଜଣାଉଥିଲି—ତା ପରେ ଅବସ୍ଥା ଗୁରୁତର ହୋଇ ଉଠିବାରୁ ସେମାନେ ଆମ ପ୍ରାଦେଶିକ ସଭାପତି ପୁରୁଷୋତ୍ତମ ଦାସ ଟଣ୍ଡନଙ୍କ ସହିତ ମଧ୍ୟ ପରାମର୍ଶ କରିଥିଲେ ।

ସରକାରୀ କୃଷି କମିଟି ମଧ୍ୟ ତାହାର ରିପୋର୍ଟ ପେଶ୍ କଲା—କେତେକ ସୁପାରିଶ୍ ଦେଇ—ଏହା ସବୁ ଅତ୍ୟନ୍ତ ଜଟିଳ ଓ ଅସ୍ପଷ୍ଟ ଥିଲା ଏବଂ ସ୍ଥାୟୀସ୍ୱ କର୍ମଚାରୀଙ୍କ ଉପରେ ବିଶେଷ ଭାବରେ ଛାଡ଼ି ଦିଆ-ଗଲା । ମୋଟାମୋଟି ପୂର୍ବଚୁକ୍ତି ଅପେକ୍ଷା ଏହି ଛାଡ଼ ପ୍ରସ୍ତାବ ଅଧିକ ଥିଲା । ମାତ୍ର ଏହା ଯଥେଷ୍ଟ ନୁହେଁ ବୋଲି ଆମେ ଦେଖିଲୁ । ଏହି ସୁପାରିଶ ମୂଳରେ ଥିବା ନୀତି ଏବଂ ଏହାର ପ୍ରୟୋଗ ନୀତିକୁ ଆମେ ଆପତ୍ତି କଲୁ । ଆହୁରି ମଧ୍ୟ ଭବିଷ୍ୟତରେ କଣ ହେବ ଏଥିରେ ଲେଖା ଥିଲା—ପୁରାତନ ବକେୟା ଖଜଣା, ଋଣ ଓ ଅନେକ ସଂଖ୍ୟାରେ ଯେଉଁ କୃଷକମାନେ ବେଦଖଲ ହୋଇଥିଲେ ସେ ସମ୍ବନ୍ଧରେ କିଛି ନଥିଲା । ଆମେ କଣ କରିବୁ ? ଆମେ ବସନ୍ତ ଓ ଗ୍ରୀଷ୍ମ କାଳରେ ଯେପରି କୃଷକ-ମାନଙ୍କୁ ଯଥାସାଧ୍ୟ ଦେବାକୁ ପରାମର୍ଶ ଦେଇଥିଲୁ ପୁଣି କଣ ସେଇଯା କରିବୁ ? ଏହାର ଫଳାଫଳ କଣ ସେହିପରି ହେବନାହିଁ ? ଆମେ ଦେଖିଥିଲୁ ଆମର ସେ ପରାମର୍ଶ ଅତ୍ୟନ୍ତ ନିର୍ବୋଧ ପରି ହୋଇଥିଲା ଏବଂ ଆମେ ତାହା ପୁନର୍ବାର କରି ପାରିଲୁ ନାହିଁ । ହୁଏତ କୃଷକମାନଙ୍କର ଯଦି ଦେବା ଶକ୍ତି ଥାଏ, ତେବେ ଏହି ପରିବର୍ତ୍ତିତ ଖଜଣା ସବୁ ଦେଇଦେବେ; ନଚେତ୍ ବର୍ତ୍ତମାନ ପାଇଁ ଅର୍ଦ୍ଧେ ଆଦାୟ ନ ଦେଇ ଅବସ୍ଥା କେଉଁ ଆଡ଼କୁ ଗତି କରୁଛି ଲକ୍ଷ୍ୟ କରନ୍ତୁ । ଦାବୀ ଖଜଣାର ଆଂଶିକ ଆଦାୟ କେଉଁ ଆଡ଼କୁ ଯାଇବ ନାହିଁ । ସେମାନେ ସର୍ବସ୍ୱାନ୍ତ ହୋଇଥିଲେ ଏବଂ ସେମାନଙ୍କର ଜମି ବି ଯାଇଥିଲା ।

ଆମର ପ୍ରାଦେଶିକ କଂଗ୍ରେସ କମିଟି ଦୀର୍ଘକାଳ ପର୍ଯ୍ୟନ୍ତ ଏହି ସମସ୍ୟା ବିଚାର କଲା ଏବଂ ମତ ପ୍ରକାଶ କଲା ଯେ ସରକାରୀ ମୂଲ୍ୟାୟନ ଗତ ଗ୍ରୀଷ୍ମକାଳ ଅପେକ୍ଷା ଟିକିଏ ଭଲ ହୋଇଥିଲେ ସୁଦ୍ଧା ଯେଉଁ ଆକାରରେ ହୋଇଛି ତାହା ଗ୍ରହଣୋପଯୋଗୀ ନୁହେଁ । କୃଷକଙ୍କର ସୁବିଧା ପାଇଁ ଏହାକୁ ପରିବର୍ତ୍ତନ କରାଯାଇ ପାରେ ଏବଂ ଆମେ ସେଥି ପାଇଁ ସରକାର ନିକଟରେ ଦାବୀ କଲୁ । ମାତ୍ର ଆମେ ଦେଖିଲୁ ଆଶା ଖୁବ୍ କମ୍ ଏବଂ ଆମେ ଯେଉଁ ସଂଘର୍ଷ ଏଡ଼ାଇବାକୁ ଇଚ୍ଛା କରୁଥିଲେ ତାହା ଯେପରି ଶୀଘ୍ର ପାଖେଇ ଆସିଲା । ପ୍ରାଦେଶିକ ଓ ଭାରତ ସରକାର ଉଭୟଙ୍କର କଂଗ୍ରେସ ଅନୁଷ୍ଠାନ ପ୍ରତି ମନୋଭାବ ବଦଳିବାକୁ ଆରମ୍ଭ କଲା ପୂର୍ବାପେକ୍ଷା ମାତ୍ରା ଧରିଯାଉଥିଲା । ଆମେ ଯେଉଁ ସବୁ ଦୀର୍ଘ ପତ୍ର ପଠାଉ; ତାହାର ଅତି ସଂକ୍ଷେପରେ ଜବାବ ଆସୁଥିଲା ଓ ସ୍ଥାନୀୟ କର୍ମଚାରୀଙ୍କ ସହିତ କାରବାର କରିବାକୁ କୁହାଯାଉଥିଲା । ଏକଥା ଜଣା ପଡ଼ିଲା, ଆମକୁ କୌଣସି ପ୍ରକାର ଉତ୍ସାହ ନ ଦେବା ସରକାରର ନୀତି । କୃଷକମାନଙ୍କୁ ଖଜଣା ମାଫ୍ ଦେବା ଦ୍ୱାରା କଂଗ୍ରେସର ମର୍ଯ୍ୟାଦା ବଢ଼ିଯାଇ ପାରେ ଏହା ସରକାର ପକ୍ଷରେ ମହା ଅସୁବିଧା ପରି ବୋଧ ହେଉଥିଲା । ଦୀର୍ଘକାଳ ଅଭ୍ୟାସରୁ କେବଳ ମର୍ଯ୍ୟାଦା ଦୃଷ୍ଟିରୁ ସରକାର ସବୁକଥା ବିଚାର କରୁଥିଲା ଏବଂ ମାଫ୍ ଦେଲେ ଜନସାଧାରଣ ଯେ କଂଗ୍ରେସକୁ ବାହାଦୁରୀ ଦେବେ ଏକଥା ଭାବି ସରକାର ବଡ଼ ଉଦ୍ବିଗ୍ନ ହୋଇ ଉଠୁଥିଲା ଏବଂ ଏହା ଯେପରି ନହେବ ସେଥିଲାଗି ଯଥାସମ୍ଭବ ଚେଷ୍ଟା ହେଉଥିଲା ।

ଏଥିଭିତରେ ଆମେ ଦିଲ୍ଲୀ ଓ ଅନ୍ୟ ସ୍ଥାନମାନଙ୍କରୁ ସମ୍ବାଦ ପାଉଥାଉଁ ଯେ ସରକାର ସମସ୍ତ କଂଗ୍ରେସ ଅନୁଷ୍ଠାନ ଉପରେ, ବ୍ୟାପକ ଭାବରେ ଦମନ ଆରମ୍ଭ କରିବା ନିମନ୍ତେ ପ୍ରସ୍ତୁତ ହୋଇ ରହିଛି ; କାଣି ଅଙ୍ଗୁଳିର ଇଂଗିତକ୍ରମେ ଆମକୁ ଦଣ୍ଡଦ୍ୱାରା ଶାସନ କରାହେବ । ଏହି ପ୍ରସ୍ତାବିତ କାର୍ଯ୍ୟର ବିସ୍ତୃତ ବିବରଣୀ ବି ଆମେ ପାଇଲୁ । ମୋର ମନେହୁଏ, ନଭେମ୍ବର ମାସରେ ଆମେ ପୂର୍ବରୁ ଯେଉଁ ସବୁ କଥା

ଶୁଣିଥିଲୁ, ତାଙ୍କ ଉପର ଘଟିଛି ତାହା ଦର୍ଶାଇ ଡକ୍ଟର ଅନ୍‌ସାରୀ ମୋ ପାଖକୁ (କଂଗ୍ରେସ ସଭାପତି ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ପାଖକୁ) ଅଲଗା ଭାବରେ ସମ୍ବାଦ ପଠାଇଥିଲେ ଏବଂ ମୁକ୍ତପ୍ରଦେଶ ଓ ସୀମାନ୍ତ ପ୍ରଦେଶ ନିମନ୍ତେ ତିଆରି ହେଉଥିବା ଅର୍ଡ଼ିନାନ୍ସ ବିଷୟ ଲେଖିଥିଲେ । ମୋର ବିଶ୍ୱାସ ବଙ୍ଗଳାକୁ ସେତେବେଳକୁ ଦାନସ୍ୱରୂପ ନୂଆ ଅର୍ଡ଼ିନାନ୍ସଟିଏ ମିଳି ସାରି ଥାଏ କିମ୍ବା ମିଳିବା ଅବସ୍ଥାରେ ଥାଏ । ଡକ୍ଟର ଅନ୍‌ସାରୀ ଯେଉଁସବୁ କଥା ଦେଖିଥିଲେ କେତେକ ସପ୍ତାହପରେ ଯେତେବେଳେ ଦେଶ ନୂଆ ପରିସ୍ଥିତିର ସମ୍ମୁଖୀନ ହେଲାପରି ନୂତନ ଅର୍ଡ଼ିନାନ୍ସସବୁ ଜାରି ହେଲା, ସେତେବେଳେ ସେ ସବୁ କଥା ଖୁଣ୍ଟିନାଟି ପ୍ରମାଣିତ ହୋଇଗଲା । ସାଧାରଣତଃ ଲୋକେ ଭାବନ୍ତି ଯେ ଅପ୍ରତ୍ୟାଶିତ ଭାବରେ ଗୋଲଟେବୁଲ ବୈଠକ ବନ୍ଦ ହୋଇ ରହିବାରୁ ସରକାର ବିଳମ୍ବ କଲା । ଗୋଲଟେବୁଲ ସମ୍ମିଳନୀର ପ୍ରତିନିଧିମାନେ ନିଜ ନିଜ ମନରେ ମଧୁରବାଣୀ ଶୁଣାଉଥିଲା ବେଳେ ଭାରତରେ ପୂର୍ଣ୍ଣମାତ୍ରାରେ ଦମନନୀତି ପ୍ରୟୋଗ କରିବାକୁ ସେମାନେ ଚାହୁଁ ନ ଥିଲେ ।

ଏହିରୂପେ ଅଶାନ୍ତି ବଢ଼ିଲା; ଅବସ୍ଥା ଯେପରି ଗତି କରୁଛି ଏହାର ଅନିବାର୍ଯ୍ୟ ଫଳ ଘଟିବ ଏବଂ ଆମପରି କ୍ଷୁଦ୍ର ଲୋକଙ୍କର ଏହା ଅସାଧ୍ୟ ହୋଇ ପଡ଼ିଲା । ଆମ ପକ୍ଷରେ ଏକମାତ୍ର କର୍ତ୍ତବ୍ୟ ଥିଲା—ଜୀବନର ଏହି ନାଟକ ବା ଶୋକନାଟ୍ୟ ଘଟଣାର ସମ୍ମୁଖୀନ ହେବା ଏବଂ ବ୍ୟକ୍ତିଗତ ଭାବରେ ଓ ସମଷ୍ଟିଗତ ଭାବରେ ଏଥିରେ ଭାଗ ନେବା । ତଥାପି ଆମେ ଆଶା କରୁଥିଲୁ ଯେ, ସଙ୍ଘର୍ଷ ପ୍ରକୃତରେ ଆରମ୍ଭ ହେବା ପୂର୍ବରୁ ଗାନ୍ଧିଜୀ ଫେରି ଆସିବେ—ଯୁଦ୍ଧ ବା ଶାନ୍ତିର ଦାୟିତ୍ୱ ତାଙ୍କ ଉପରେ ନେବେ । ତାଙ୍କ ଅନୁପସ୍ଥିତିରେ ଆମେ କେହି ଦାୟିତ୍ୱ ନେବାକୁ ପ୍ରସ୍ତୁତ ନ ଥିଲୁ ।

ମୁକ୍ତପ୍ରଦେଶରେ ସରକାରର ଆଉ ଏକ କାର୍ଯ୍ୟଯୋଗୁଁ ମଫସଲ ଅଞ୍ଚଳରେ ଭୀତିର ସଞ୍ଚାର ହେଲା । କେତେ ଛାଡ଼ ଦିଆ ଯାଇଛି ତାହା

ଲେଖାପାଇ କାଗଜ କୃଷକଙ୍କ ଭିତରେ ବଣ୍ଟାଗଲା ଏବଂ ସେଥିରେ ଏକ ଧମକ ଦିଆଗଲା ଯେ ଯଦି ବାକୀ ଖଜଣା ଏକମାସ (କେଉଁଠି ବା କମବେଶୀ) ମଧ୍ୟରେ ଆଦାୟ ଦିଆ ନଯାଏ, ତେବେ ଛାଡ଼ ପ୍ରତ୍ୟାହାର କରାଯିବ ଏବଂ ଆଇନ ଅନୁସାରେ ପୂର୍ବ ବାକୀ ଅନୁଯାୟୀ ସବୁ ଅସୁଲ କରାଯିବ । ଏହାର ଅର୍ଥ କୃଷକମାନଙ୍କୁ ଜମିରୁ ଉଚ୍ଛେଦ କରାହେବ, ତାଙ୍କର ସମସ୍ତ ବାଜ୍ୟାପ୍ତ ହେବ···ଇତ୍ୟାଦି ! ସାଧାରଣ ବର୍ଷରେ କୃଷକମାନେ ଦୁଇ ତିନି କିସ୍ତିରେ ଖଜଣା ଦେଇଥାଆନ୍ତି । ଏଥିରେ ସେପରି ସମୟ ଦିଆଗଲା ନାହିଁ । ସାରା ମଫସଲ ଅଞ୍ଚଳରେ ଏକ ସଙ୍କଟ ପଡ଼ିଥିଲା । ସେହି ନୋଟିସରୁ ଚଉଦ ଲେକେ ଆମର ପରାମର୍ଶ ପାଇଁ ଧାଇଁ ଆସିଲେ — ପ୍ରତିବାଦ କଲେ, ଆପତ୍ତି କଲେ । ସରକାର ବା ତାଙ୍କ ସ୍ଥାନୀୟ କର୍ମଚାରୀଙ୍କ ପକ୍ଷରେ ଏପରି ଧମକ ଦେବା ଏକ ନିର୍ବୋଧତାର କାମ । ଆମକୁ ପରେ କୁହାଗଲା ଯେ, ଏହା ଉପରେ ବିଶେଷ ଗୁରୁତ୍ୱ ଦିଆ ହେଉ ନ ଥିଲା । ମାତ୍ର ଶାନ୍ତିପୂର୍ଣ୍ଣ ଭାବରେ ଗୋଟାଏ ମିଳାମିଶା କରିବାର ଆଶା ଏଥିରେ କମିଗଲା ଏବଂ କ୍ରମେ ସଂଘର୍ଷ ଅନିବାର୍ଯ୍ୟ ହୋଇ ଉଠିଲା ।

କି କୃଷକ, କି କଂଗ୍ରେସ ବର୍ତ୍ତମାନ ଅନୁଭବ କଲେ ଯେ କାର୍ଯ୍ୟ-ପନ୍ଥା ସ୍ଥିର କରିବା ଅତିଶୀଘ୍ର ପ୍ରୟୋଜନ । ଗାନ୍ଧିଜୀ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରାଯାଇ ପାରିବ ନାହିଁ । ଆମେ କଣ କରିବୁ ? କଣ ବା ପରାମର୍ଶ ଦେବୁ ? କୃଷକଙ୍କ ଭିତରୁ ଅନେକଙ୍କ ପକ୍ଷରେ ଦେବାର ସମ୍ଭାବନା ନାହିଁ ବୋଲି ଆମେ ଜାଣି ସୁଦ୍ଧା ଏହି ଅଳ୍ପ ସମୟ ଭିତରେ ଦେଇଦେବା ନିମନ୍ତେ ସେମାନଙ୍କୁ କଣ କହି ପାରିଆନ୍ତୁ ? ଏହାପରେ ତାଙ୍କର ବାକୀ ଖଜଣା ବିଷୟରେ କଣ ହେବ ? ସେମାନେ ବାକୀ ଖଜଣା କିଛି ପରିମାଣରେ ଦେଲେ ସୁଦ୍ଧା କଣ ସେମାନଙ୍କୁ ବାକି ଖଜଣା ପାଇଁ ବେଦଖଲ କରାଯିବ ନାହିଁ ? ପ୍ରଚଳିତ ବର୍ଷର ବାକୀ ଖଜଣା ଦେଲେ କଣ ତାହା ବାକି ବାବଦକୁ ହିସାବ ଭର୍ତ୍ତି କରାଯିବ ନାହିଁ ?

ଏଲାହାବାଦ ଜିଲ୍ଲା କଂଗ୍ରେସ କମିଟି କୃଷକମାନଙ୍କର ଶକ୍ତିଶାଳୀ ସଂଗଠନ ସହ ଲଢ଼ାଇ ଆରମ୍ଭ କରିବାକୁ ଇଚ୍ଛା ପ୍ରକାଶ କଲା ଯେ କୃଷକମାନଙ୍କୁ ଖଜଣା ଦେବା ନିମନ୍ତେ ପରାମର୍ଶ ଦେବା କମିଟି ପକ୍ଷରେ ସମ୍ଭବ ନୁହେଁ । ମାତ୍ର ଯାହା ହେଉ, ପ୍ରାଦେଶିକ ଓ ନିଖିଳ ଭାରତ କଂଗ୍ରେସ କମିଟିର କାର୍ଯ୍ୟକାରୀ ସମିତିର ଅନୁମତି ବିନା ଏହା କୌଣସି ଆକ୍ରମଣମୂଳକ କାର୍ଯ୍ୟ କରି ପାରିବ ନାହିଁ । ସୁତରାଂ ଏ ବିଷୟ କାର୍ଯ୍ୟକାରୀ ସମିତି ସମକ୍ଷକୁ ଗଲା—ସେଠାରେ ଜିଲ୍ଲା ଓ ପ୍ରଦେଶର ଅବସ୍ଥା ଜଣାଇବା ନିମନ୍ତେ ତସଦ୍ଦୁକ ଶେରୱାନି ଏବଂ ପୁରୁଷୋତ୍ତମ ଦାସ ଟାଣ୍ଡନ ମଧ୍ୟ ଉପସ୍ଥିତ ଥିଲେ । କେବଳ ଏଲାହାବାଦ ସମସ୍ୟା ଆଗରେ ଥାଏ ଏବଂ ଏହା କେବଳ ଏକ ଅର୍ଥନୈତିକ ସମସ୍ୟା; ତଥାପି ଆମେ ବୁଝିଲୁ ଯେ ପ୍ରଚଳିତ ରାଜନୀତିକ ଶୃଙ୍ଖଳା ସମୟରେ ଏହାର ପରିମାଣ ବହୁଦୂରଗାମୀ ହୋଇପାରେ । ଏଲାହାବାଦ ଜିଲ୍ଲା କଂଗ୍ରେସ କମିଟି କିଣ ଖଜଣା ଓ ରାଜସ୍ୱ ବନ୍ଦ କରିବାକୁ ପରାମର୍ଶ ଦେଇ ସରକାର ସହିତ ଭଲ ସନ୍ଧି ଲାଗି କଥାବାର୍ତ୍ତା ଚଲାଇବ ? ଏହି ସଙ୍କୀର୍ଣ୍ଣ ସମସ୍ୟା ଭିତରେ ଆମେ ସୀମାବଦ୍ଧ କରିବାକୁ ଚାହୁଁଥିଲୁ । ମାତ୍ର ଆମେ ସେପରି କରିପାରନ୍ତୁ କି ? ଗାନ୍ଧିଜୀଙ୍କ ଫେରିବା ପର୍ଯ୍ୟନ୍ତ ସରକାର ସହିତ କୌଣସି ପ୍ରକାର ସଂଘର୍ଷ ବନ୍ଦ କରିବାକୁ କାର୍ଯ୍ୟକାରୀ ସମିତି ଚାହୁଁଥିଲା । ବିଶେଷ ଭାବରେ ଏହି ଅର୍ଥନୈତିକ ସମସ୍ୟା ହେତୁ ଯେଉଁ ଶ୍ରେଣୀ ସମସ୍ୟା ଉପୁଜିପାରେ ସେଇଟା ନ କରାଇ ଦେବା କାର୍ଯ୍ୟକାରୀ ସମିତିର ଇଚ୍ଛା ଥିଲା । ରାଜନୀତିକଭାବରେ କମିଟି ଅଗ୍ରସର ହୋଇଥିଲା ସତ, ମାତ୍ର ସାମାଜିକ ଭାବରେ ନୁହେଁ ଏବଂ କୃଷକ ବନାମ ଜମିଦାର ସମସ୍ୟା ଉଠାଇବାକୁ ପସନ୍ଦ କରୁ ନ ଥିଲା ।

ମୁଁ ସାମ୍ୟବାଦ ମତାବଲମ୍ବୀ ହୋଇଥିବାରୁ ଅର୍ଥନୈତିକ ଓ ସାମାଜିକ ସମସ୍ୟାରେ ମୋର ପରାମର୍ଶ ନିରାପଦ ମନେ କରା ହେଉ ନ ଥିଲା । ମୋର ନିଜର ଇଚ୍ଛା ଥିଲା ଯେ, କାର୍ଯ୍ୟକାରୀ ସମିତି ମୁକ୍ତ-

ପ୍ରଦେଶ ସମସ୍ୟା ଭଲଭାବେ ଉପଲବ୍ଧି କରୁ—କାରଣ ଆମ କମିଟି ମଢ଼ରେଟ ଓ ଦକ୍ଷିଣପନ୍ଥୀ ସଭ୍ୟମାନେ ସୁଦ୍ଧା ନିଜର ଅନିଚ୍ଛା ସତ୍ତ୍ୱେ ଘଟଣାଚକ୍ରଦ୍ୱାରା ବାଧ୍ୟ ହୋଇ କାର୍ଯ୍ୟ କରିବାକୁ ପ୍ରସ୍ତୁତ ଥିଲେ । ସୁତରାଂ କାର୍ଯ୍ୟକାରୀ ସମିତି ବୈଠକରେ ଶେରୱାନୀଙ୍କ ଉପସ୍ଥିତି ମୁଁ ଚାହୁଁଥିଲି—କାରଣ ଶେରୱାନୀ (ଆମ ପ୍ରାଦେଶିକ ସଭାପତି) ଆଦୌ ଉଗ୍ରପନ୍ଥୀ ନ ଥିଲେ । ଆଇନସଙ୍ଗତ ଭାବରେ ଓ ସେ କଂଗ୍ରେସର ଦକ୍ଷିଣପନ୍ଥୀ—ରାଜନୀତିକ ଓ ସାମ୍ପ୍ରଦାୟିକ ଦୃଷ୍ଟି ମଧ୍ୟ ତାଙ୍କର ସେହିପରି ବର୍ଷ ପ୍ରାରମ୍ଭରେ ସେ ଯୁକ୍ତପ୍ରଦେଶ ପ୍ରାଦେଶିକ କଂଗ୍ରେସ କମିଟିର କୃଷକ ସମସ୍ୟା ସମ୍ବନ୍ଧରେ କର୍ମପନ୍ଥା ବିରୁଦ୍ଧରେ ଥିଲେ । ମାତ୍ର ଯେତେବେଳେ କମିଟିର ପ୍ରଧାନକର୍ତ୍ତା ହୋଇ ତାଙ୍କୁ ଦାୟିତ୍ୱ ମୁଣ୍ଡାଇବାକୁ ପଡ଼ିଲା, ସେତେବେଳେ ଏହା ଛଡ଼ା ଅନ୍ୟ ଗତି ନ ଥିଲା ବୋଲି ସେ ବୁଝିପାରିଲେ । ତାପରେ ପ୍ରାଦେଶିକ କମିଟି ଯାହା କିଛି ଅଗ୍ରସର ହୋଇଥିଲା, ତାହା ତାଙ୍କ ସହଯୋଗ ଓ ବାସ୍ତବିକ ସେ ସମ୍ମତି ହୋଇଥିବାରୁ ତାଙ୍କ ନିର୍ଦ୍ଦେଶରେ ହୋଇଥିଲା ।

ସୁତରାଂ ତତ୍ସଙ୍ଗେ ଶେରୱାନୀ କାର୍ଯ୍ୟକାରୀ ସମିତି ଆଗରେ ଏକଥା ଉପସ୍ଥାପିତ କରିବାକୁ, ମୁଁ କହିଥିଲେ ଯେପରି ଫଳ ହୋଇ ଥାଆନ୍ତା, ତାହା ଅପେକ୍ଷା ଭଲ ପ୍ରଭାବ କାର୍ଯ୍ୟକାରୀ ସମିତି ସଭ୍ୟମାନଙ୍କ ଉପରେ ପଡ଼ିଲା । ସେମାନେ ବଡ଼ ଇତସ୍ତତଃ ହେଉଥିଲେ, ମାତ୍ର ଅସ୍ୱୀକାର କରିପାରିଲେ ନାହିଁ ବୋଲି ଅନୁଭବ କରି ଯେ କୌଣସି ଅଞ୍ଚଳରେ ଖଜଣା ଓ ରାଜସ୍ୱ ସ୍ଥଗିତ ରଖିବାକୁ ପରାମର୍ଶ ଦେଇପାରି ବୋଲି ଯୁକ୍ତପ୍ରଦେଶ କମିଟିକୁ କ୍ଷମତା ଦେଲେ । ତାହା ସଙ୍ଗେ ସଙ୍ଗେ ଯଦି ସମ୍ଭବ ଏହା ନ କରିବାପାଇଁ ମଧ୍ୟ ସେମାନେ ଯୁକ୍ତପ୍ରଦେଶ ଲୋକଙ୍କୁ କହିଲେ ଏବଂ ପ୍ରାଦେଶିକ ସରକାର ସହିତ ମିଳାମିଶା ପାଇଁ କଥାବାର୍ତ୍ତା ଚଳାଇଥାନ୍ତୁ ।

କିଛିଦିନ ପର୍ଯ୍ୟନ୍ତ କଥାବାର୍ତ୍ତା ଚାଲିଲା, ମାତ୍ର କିଛି ଫଳ ହେଲା ନାହିଁ । ମୋର ବିଶ୍ୱାସ, ଏଲାହାବାଦ ଜିଲାର ଖଜଣା ଛାଡ଼ ପରିମାଣ-ହିସାବ

ବେଶି ହେଲା । ସାଧାରଣ ଅବସ୍ଥାରେ ଗୋଟାଏ ବୁଝାମଣା ଅନ୍ତତଃ ଗୋଟାଏ ପ୍ରକାଶ୍ୟ ସଙ୍ଘର୍ଷ ଏଡ଼ାଯାଇ ପାରିବାର ସମ୍ଭାବନା ଥିଲା । ପାର୍ଥକ୍ୟ କ୍ରମେ କମି ଆସୁଥିଲା । ମାତ୍ର ପରିସ୍ଥିତି ବଡ଼ ଅସାଧାରଣ ଥିଲା – ସରକାର ଓ କଂଗ୍ରେସ ଉଭୟ ପକ୍ଷ ଏକ ସଂଘର୍ଷ ଅନିବାର୍ଯ୍ୟ ବୋଲି ମନେ କରୁଥିଲେ ଏବଂ ଆମର କଥାବାର୍ତ୍ତା ଭିତରେ କୌଣସି ଆନ୍ତରିକତା ନ ଥିଲା । ଉଭୟ ପକ୍ଷ ନିଜ ନିଜ କାର୍ଯ୍ୟଦ୍ୱାରା ନିଜର ଅବସ୍ଥା ଦୃଢ଼ କରିବାର ଗୋଟାଏ ଉଦ୍ୟମ ଥାଏ । ସରକାର ଏଥିପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ ଏବଂ ଗୁପ୍ତ ଭାବରେ ସମ୍ପୂର୍ଣ୍ଣ ବ୍ୟବସ୍ଥା କଲେ । ଆମେ ସମ୍ପୂର୍ଣ୍ଣରୂପେ ଲୋକଙ୍କ ନୈତିକ ଶକ୍ତି ଉପରେ ନିର୍ଭର କରୁଥିଲୁ ଏବଂ ଏହା ଗୋପନଭାବରେ ପ୍ରସ୍ତୁତ କରାଯାଇ ପାରନ୍ତା ନାହିଁ । ଆମ ଭିତରୁ କେତେକ (ମୁଁ ସେ ଦୋଷୀଙ୍କ ଭିତରୁ ଜଣେ) ବାରମ୍ବାର ସାଧାରଣ ବକ୍ତୃତାରେ କହୁଥିଲୁ ଯେ ଆମର ସ୍ୱାଧୀନତା ସଂଗ୍ରାମ ଅଦ୍ୟାପି ଶେଷ ହୋଇ ନାହିଁ ଏବଂ ନିକଟ ଭବିଷ୍ୟତରେ ଆମକୁ ଅନେକ ପରୀକ୍ଷା ଓ କଷ୍ଟର ସମ୍ମୁଖୀନ ହେବାକୁ ହେବ । ଏଥିପାଇଁ ଲୋକେ ପ୍ରସ୍ତୁତ ରୁହନ୍ତୁ ବୋଲି ଆମେ କହୁଥିଲୁ—ଏହି କାରଣରୁ ଆମେ ଯୁଦ୍ଧ-ସୃଷ୍ଟିକାରୀ ବୋଲି ଅଭିଯୁକ୍ତ ହେଉଥିଲୁ ପ୍ରକୃତରେ କହିବାକୁ ଗଲେ ଆମର ମଧ୍ୟବିତ୍ତ ଶ୍ରେଣୀର କଂଗ୍ରେସ କର୍ମୀମାନେ ଏହି ଘଟଣା ପ୍ରତି ଉଦାସୀନ ଥିଲେ ଏବଂ ସେମାନେ ଆଶା କରୁଥିଲେ ଯେ, କୌଣସି ପ୍ରକାରେ ସଂଘର୍ଷ ଏଡ଼ାଇ ଦିଆହେବ । ଗାନ୍ଧିଜୀ ଲଣ୍ଡନରେ ଥିବାରୁ ସମ୍ବାଦପତ୍ର ପାଠକମାନଙ୍କର ଦୃଷ୍ଟି ସେଥିପ୍ରତି ଥିଲା । ତଥାପି ଶିକ୍ଷିତ ଲୋକଙ୍କର ଏହି ଉଦାସୀନତା ସତ୍ତ୍ୱେ ବିଶେଷ ଭାବରେ ବଙ୍ଗଳା, ଯୁକ୍ତପ୍ରଦେଶ ଓ ସୀମାନ୍ତ ପ୍ରଦେଶରେ ଘଟଣା ଅଗ୍ରସର ହେଲା ଏବଂ ଏକସଂକଟ ଆଗତ ପ୍ରାୟ ବୋଲି ନଭେମ୍ବର ମାସ ବେଳକୁ ଅନେକ ଲୋକ ବୁଝିପାରିଲେ ।

ଘଟଣା ଆଗରେ ଆସି ପଡ଼ଯାଇପାରେ ଏହା ଜାଣିପାରି ଗୋଟାଏ ସଙ୍ଘର୍ଷ ଲାଗିଗଲେ କଣ କରିବାକୁ ହେବ, ସେ ସମ୍ବନ୍ଧରେ ଯୁକ୍ତପ୍ରଦେଶ

କମିଟି ଆଗରୁ ବ୍ୟବସ୍ଥା କରିଗଲି । ଏଲ୍ଲାହାବାଦ କମିଟି ଗୋଟାଏ ବି କୃଷକ ସମ୍ମିଳନୀ କଲି—ସେଥିରେ ମୋଟାମୋଟି ଏକ ପ୍ରସ୍ତାବ ଗୃହୀତ ହେଲା ଯେ, ଯଦି ଭଲ ସର୍ତ୍ତରେ ମିଳାମିଶା ନ ହୋଇପାରେ, ତେବେ କୃଷକମାନଙ୍କୁ ଖଜଣା ଓ ରାଜସ୍ୱ ନ ଦେବା ନିମନ୍ତେ ପରାମର୍ଶ ଦିଆଯିବ । ଏହି ପ୍ରସ୍ତାବରେ ପ୍ରାଦେଶିକ ସରକାର ବଡ଼ ବିରକ୍ତ ହୋଇଗଲେ ଏବଂ ଏଥିରେ ଚୁକ୍ତିଭଙ୍ଗ କରାଯାଇଛି ବୋଲି ଦେଖି ଆଉ ଏ ସମ୍ବନ୍ଧରେ କିଛି କଥାବାର୍ତ୍ତା ନ କରିବା ପାଇଁ ସରକାର ମନା କରିଦେଲେ । ଏହି ମତଗତର ପ୍ରତିକ୍ରିୟା ମଧ୍ୟ ପ୍ରାଦେଶିକ କଂଗ୍ରେସ କମିଟି ଉପରେ ପଡ଼ିଲା । ଏହା ଆସନ୍ନ ସଂଗ୍ରାମର ସୂଚନା ବୋଲି ବିଚାରି ନିଜର ସମସ୍ତ ବ୍ୟବସ୍ଥା ଶୀଘ୍ର କରିବାରେ ଲାଗିଲା । ଏଲ୍ଲାହାବାଦରେ ଆଉ ଗୋଟିଏ କୃଷକ ସମ୍ମିଳନୀ ହେଲା ଏବଂ ସେଥିରେ ମିଳାମିଶା ନ ହେଲେ ଏବଂ ସୁବିଧାଜନକ ସର୍ତ୍ତ ନ ପାଇଲେ କୃଷକମାନେ ଖଜଣା ଦେବା ବନ୍ଦ କରି ଦିଅନ୍ତୁ ବୋଲି ଗୋଟିଏ ଦୃଢ଼ ଓ ନିର୍ଦ୍ଦିଷ୍ଟ ପ୍ରସ୍ତାବ ଗୃହୀତ ହେଲା । ସେତେବେଳେ ବା ଶେଷ ପର୍ଯ୍ୟନ୍ତ "ଖଜଣା ବନ୍ଦ" ଆନ୍ଦୋଳନ ମତଲବ ନ ଥିଲା, ମାତ୍ର 'ନ୍ୟାଯ୍ୟ ଖଜଣା" ଦେବା ସମସ୍ୟା ଥିଲା । ଆମେ କଥାବାର୍ତ୍ତା ଆଲୋଚନା ପାଇଁ ବରାବର ପ୍ରସ୍ତୁତ ଥାଉ, ମାତ୍ର ଅନ୍ୟ ପକ୍ଷ ଆଗେ ନିଷେଧ କଲେ । ଏଲ୍ଲାହାବାଦ ପ୍ରସ୍ତାବ ଜମିଦାର ଓ ପ୍ରଜା ଉଭୟଙ୍କ ପାଇଁ ପ୍ରଯୁଜ୍ୟ, ମାତ୍ର ଆମେ ଜାଣିଥିଲୁ ଫଳରେ କେବଳ ପ୍ରଜା ଓ କେତେକ ଶ୍ରେଷ୍ଠ ଜମିଦାରହିଁ ଏହା ପାଳନ କରିବେ ।

୧୯୩୧ ମସିହାର ନଭେମ୍ବର ଶେଷ ଏବଂ ଡିସେମ୍ବର ମାସ ଆରମ୍ଭ ବେଳକୁ ଯୁକ୍ତପ୍ରଦେଶରେ ଏପରି ପରିସ୍ଥିତି ଥିଲା । ଏହି ଭିତରେ ବଙ୍ଗଳା ଓ ସୀମାନ୍ତ ପ୍ରଦେଶର ଅବସ୍ଥା ଗୁରୁତର ହୋଇ ଉଠିଥିଲା ଏବଂ ବଙ୍ଗଳାରେ ଗୋଟାଏ ନୂଆ ଓ ଭୟଙ୍କର ସର୍ବଗ୍ରାସୀ ଅର୍ଡିନାନ୍ସ ଜାରି ହୋଇଥିଲା । ଏହା ସବୁ ଯୁଦ୍ଧର ସଙ୍କେତ, ଶାନ୍ତିର ନୁହେଁ—ବର୍ତ୍ତମାନ ପ୍ରଶ୍ନ ଉଠିଲା—ଆମେ କଣ ଗାନ୍ଧିଜୀଙ୍କ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରିବା ?

ସରକାର ନିଜ ଆଡୁ ଆକ୍ରମଣ କରିବାପାଇଁ ଏତେ ଉଦ୍ଧନ ହେଲା ପ୍ରସ୍ତୁତ ହୋଇ ରହିଥିବା ବେଳେ ସରକାର ଆରମ୍ଭ କରିବା ପୂର୍ବରୁ ସେ କଣ ଆସି ପହଞ୍ଚି ପାରିବେ ? ଅଥବା ସେ ଆସିଲାବେଳକୁ ସଂଗ୍ରାମ ଆରମ୍ଭ ହୋଇ ଯାଇଥିବ ଏବଂ ତାଙ୍କର ଅନେକ ସାଥି ଜେଲରେ ଥିବେ ? ଆମେ ଖବର ପାଇଲୁ ଯେ, ସେ ଫେରି ଆସୁଛନ୍ତି ଏବଂ ବର୍ଷର ଶେଷ ସପ୍ତାହ ବେଳକୁ ବମ୍ବେରେ ଆସି ପହଞ୍ଚିବେ । ପ୍ରଦେଶ ଓ କେନ୍ଦ୍ରୀୟ ଅଫିସ ପ୍ରତ୍ୟେକ ପ୍ରଧାନ କଂଗ୍ରେସ କର୍ମୀ ସେ ଆସିବା ପର୍ଯ୍ୟନ୍ତ ସଂଗ୍ରାମ ନ କରିବାକୁ ଚାହୁଁଥିଲେ । ସଂଗ୍ରାମର ମଙ୍ଗଳ ଦୃଷ୍ଟିରୁ ମଧ୍ୟ ତାଙ୍କ ସହିତ ସାକ୍ଷାତ୍ କରିବା, ତାଙ୍କର ପରାମର୍ଶ ଓ ନିର୍ଦ୍ଦେଶ ନେବା ଦରକାର ଥିଲା ? ଏହି ପ୍ରତିଯୋଗିତାରେ ଆମେ ଅସହାୟ ବୋଧ କଲୁ । ଯୁଦ୍ଧ ଆରମ୍ଭ କରିବା ତାରିଖ ସରକାର ହାତରେ ଥିଲା ।



## ସନ୍ଧି ଶେଷ

ଯୁକ୍ତପ୍ରଦେଶରେ କାର୍ଯ୍ୟବ୍ୟସ୍ତ ଥିବା ସତ୍ତ୍ୱେ ମୁଁ ଅନ୍ୟ ଦୁଇଟି ଅସନ୍ତୋଷ କେନ୍ଦ୍ର ଅର୍ଥାତ ବଙ୍ଗଳା ଓ ସୀମାନ୍ତ ପ୍ରଦେଶକୁ ଯିବାଲାଗି ବ୍ୟଗ୍ର ଥିଲି । ମୁଁ ସେ ସ୍ଥାନରେ ପହଞ୍ଚି ପରିସ୍ଥିତି ଜାଣିବାକୁ ଏବଂ ପ୍ରାୟ ଦୁଇବର୍ଷ ହେଲା ସାକ୍ଷାତ ନ ହୋଇଥିବା ଅନେକ ପୁରୁଣା ସହକର୍ମୀଙ୍କ ସହିତ ଦେଖା କରିବାକୁ ଚାହୁଁଥିଲି । ସର୍ବୋପରି ଏହି ପ୍ରଦେଶର ଲୋକମାନଙ୍କର ସାହସ ଏବଂ ଜାତୀୟ ସଂଗ୍ରାମରେ ସେମାନେ ଯେପରି ତ୍ୟାଗ କରିଛନ୍ତି, ସେଥିପ୍ରତି ଆମର ଅନୁରକ୍ତି ଦେଖାଇବାକୁ ଚାହୁଁଥିଲି । ସୀମାନ୍ତ ପ୍ରଦେଶକୁ ଯିବା ଆମ ପକ୍ଷେ ସମ୍ଭବ ନ-ଥିଲା—କାରଣ କୌଣସି ମୁଖ୍ୟ କଂଗ୍ରେସ ଲୋକ ସେଠାକୁ ଯିବାଟା ଭାରତ ସରକାର ଚାହୁଁ ନ ଥିଲେ । ଏହି ଅବସ୍ଥା ସତ୍ତ୍ୱେ ସେଠାକୁ ଯାଇ ଗୋଟାଏ କଳହ ସୃଷ୍ଟି କରିବାର ଇଚ୍ଛା ଆମ୍ଭମାନଙ୍କର ନ ଥିଲା ।

ବଙ୍ଗଳାରେ ପରିସ୍ଥିତି ଦିନକୁ ଦିନ ଖରାପ ଆଡ଼କୁ ଯାଉଥିଲା—ସେ ପ୍ରଦେଶ ପ୍ରତି ମୁଁ ଆକୃଷ୍ଟ ହୋଇଥିଲେ ସୁଦ୍ଧା ଯିବାଲାଗି ଇତସ୍ତତଃ ହେଲି । ମୁଁ ଦେଖିଲି ମୁଁ ସେଠାରେ ଅସହାୟ ପରି ହେବି ଏବଂ କିଛି କରିପାରିବି ନାହିଁ । ସେ ପ୍ରଦେଶର କଂଗ୍ରେସବାଲାଙ୍କ ଭିତରେ ଦୁଇଦଳ ମଧ୍ୟରେ ଅନେକ ଦିନ ଧରି ଗୋଷ୍ଠୀଗତ ବିବାଦ ଫଳରେ ବାହାର ପ୍ରଦେଶର କଂଗ୍ରେସ ଲୋକଙ୍କ ମନରେ ଭୟ ହୋଇଥିଲା—ସେମାନେ କାଳେ କୌଣସି ପକ୍ଷରେ ମିଶିଯାଇ ପାରନ୍ତି, ଏହି ଆଶଙ୍କାରେ ଦୂରରେ ରହୁଥିଲେ । ଏହା ଓଟପକ୍ଷୀ ନିଜକୁ ଗୋପନ ରଖିବା ପରି ଦୁର୍ବଳ ନୀତି—ଏଥିରେ ବଙ୍ଗଳାକୁ ସାନ୍ତ୍ୱନା ଦିଆଯାଉ ନ ଥିଲା । କିମ୍ବା ତାହାର ସମସ୍ୟାର ସମାଧାନ ହେଉ ନ ଥିଲା । ଗାନ୍ଧିଜୀ ଲଣ୍ଡନ ଯିବାର କିଛିକ୍ଷଣ ପରେ ଦୁଇଟି ଘଟଣା ଯୋଗୁଁ ହଠାତ୍ ସମଗ୍ର ଭାରତର ଦୃଷ୍ଟି ବଙ୍ଗଳା ଉପରେ ପଡ଼ିଲା । ଏହା ହିଜଲି ଓ ଚଟ୍ଟଗ୍ରାମରେ ଘଟିଥିଲା ।

ହିଜଲିରେ ଅନ୍ତରୀଣ ବନ୍ଦୀଙ୍କୁ ଅଟକ ରଖିବା ପାଇଁ ଗୋଟିଏ ଶିବିର ହୋଇଥିଲା । ସରକାରୀ ଘୋଷଣା ପ୍ରକାଶ ପାଇଲା ଯେ, ସେଠାରେ ଗୋଟାଏ ଦଙ୍ଗା ହୋଇ ଯାଇଛି—ଅନ୍ତରୀଣ ବନ୍ଦୀମାନେ ଜେଲ କର୍ମଚାରୀଙ୍କୁ ଆକ୍ରମଣ କଲେ—ତା ଫଳରେ ସେମାନଙ୍କ ଉପରେ ଗୁଳି କରିବାକୁ କର୍ମଚାରୀମାନେ ବାଧ୍ୟ ହେଲେ । ଏହା ଫଳରେ ଜଣେ ବନ୍ଦୀ ମରିଗଲେ ଓ ଆହୁରି ଅନେକ ଆହତ ହୋଇଥିଲେ । ଘଟଣାର ଅଳ୍ପକ୍ଷଣ ପରେ ଗୋଟିଏ ସ୍ଥାନୀୟ ତଦନ୍ତ କମିଟି ନିଯୁକ୍ତ ହୋଇଗଲା । ସେ ରିପୋର୍ଟରେ କର୍ମଚାରୀମାନଙ୍କୁ ସମସ୍ତ ଦୋଷରୁ ମୁକ୍ତ ବୋଲି ଘୋଷଣା କଲେ । କିନ୍ତୁ ଏଥିରେ ଅନେକ କୌତୂହଳପ୍ରଦ କଥା ଥିଲା—ଗୋଟିଏ ଦୁଇଟି ଘଟଣା ପଦାକୁ କୌଣସି ପ୍ରକାର ଆସିଗଲା ଓ ଏହା ସରକାରୀ ଘୋଷଣା ସହିତ ଖାପ ଖାଉ ନ ଥିଲା—ସେଥିପାଇଁ ପୂର୍ଣ୍ଣ ତଦନ୍ତ ଲାଗି ତୀବ୍ରଭାବରେ ଦାବୀ କରାଗଲା । ଭାରତରେ ସରକାରୀ ଆଚରଣର ସମ୍ପୂର୍ଣ୍ଣ ବିପରୀତ କଥା ଦେଖାଗଲା । ବଙ୍ଗଳା ସରକାର ଉଚ୍ଚପଦସ୍ଥ ବିଚାର

ଭାରତ କର୍ମଚାରୀଙ୍କୁ ନେଇ ଗୋଟିଏ ତଦନ୍ତ କମିଟି ନିଯୁକ୍ତ କଲେ ଏହା ସମ୍ପୂର୍ଣ୍ଣରୂପେ ଏକ ସରକାରୀ କମିଟି, ତଥାପି ଏହା ସାକ୍ଷ୍ୟ ଗ୍ରହଣ କରି ବିଷୟଟି ପୂର୍ଣ୍ଣଭାବରେ ବିଚାର କଲା ଏବଂ ହିଜଳି ବନ୍ଦୀ ଶିବିରର କର୍ମଚାରୀଙ୍କ ବିରୁଦ୍ଧରେ ମତ ପ୍ରକାଶ କଲା। ସେମାନେ କହିଲେ ଯେ, ଦୋଷ ଅଧିକ ଭାବରେ କର୍ମଚାରୀଙ୍କର ଏବଂ ଗୁଳି ଚଳାଇବାର ଯଥାର୍ଥତା ଆଦୌ ନାହିଁ। ସୁତରାଂ ଆଗରୁ ଯେଉଁ ସରକାରୀ ଇସ୍ତାହାର ବାହାରିଥିଲା ତାହା ମିଥ୍ୟା ବୋଲି ପ୍ରମାଣିତ ହେଲା।

ହିଜଳି ଘଟଣା ସମ୍ବନ୍ଧରେ ଅସାଧାରଣ କିଛି ନ ଥିଲା। ଦୁର୍ଭାଗ୍ୟବଶତଃ ଏପରି ଘଟଣା ବା ଦୁର୍ଘଟଣା ଭାରତରେ କିଛି ବିରଳ ନୁହେଁ। 'ଜେଲ ଦଙ୍ଗା' ଏବଂ ଅଶସ୍ତ୍ର ଓ ଅସହାୟ ବନ୍ଦୀମାନଙ୍କୁ ସଶସ୍ତ୍ର ଓ ୱାର୍ଡର ଅନ୍ୟମାନେ କିପରି ସାହସର ସହିତ ଦମନ କରନ୍ତି ଏହିସବୁ ଗଳ୍ପ ବାରମ୍ବାର ପ୍ରକାଶ ପାଏ। ହିଜଳି ଘଟଣା ଏହି ଦିଗରୁ ଅସାଧାରଣ ଯେ, ଏପରି ବ୍ୟାପାରରେ ସରକାର କିପରି ଏକପାଖିଆ କାର୍ଯ୍ୟ କରନ୍ତି ଏବଂ ସରକାର ମିଥ୍ୟା ଆଚରଣ କରି ତାହା ଏଠାରେ ଧରା ପଡ଼ିଗଲା। ଆଗରୁ ଏପରି ଇସ୍ତାହାରମାନଙ୍କରେ ଖୁବ କମ ବିଶ୍ୱାସ କରାଯାଉଥିଲା, ମାତ୍ର ଏଗୁଡ଼ିକର ଅସାରତା ପରିଷ୍କାର ଜଣା ପଡ଼ିଲା।

ହିଜଳି ଘଟଣା ପରେ ଭାରତରେ ଅନେକ 'ଜେଲ' ଘଟଣା ଘଟିଯାଇଛି। କେତେବେଳେ ଗୁଳି ହୋଇଛି, କେଉଁ ସ୍ଥାନରେ କର୍ମଚାରୀମାନେ ଅନ୍ୟ ପ୍ରକାର ଅସ୍ତ୍ର ପ୍ରୟୋଗ କରିଛନ୍ତି। ଅଦ୍ଭୁତ କଥା ଯେ, ଏହିସବୁ 'ଜେଲ ଦଙ୍ଗା'ରେ କେବଳ ବନ୍ଦୀମାନେହିଁ ଆହତ ହୁଅନ୍ତି। ପ୍ରାୟ ପ୍ରତ୍ୟେକ ଥର ବନ୍ଦୀମାନଙ୍କୁ ନାନା ଖରାପ କାର୍ଯ୍ୟରେ ଦୋଷୀ କରି ଏବଂ କର୍ମଚାରୀମାନଙ୍କୁ ଦୋଷମୁକ୍ତ କରି ଇସ୍ତାହାର ସବୁ ବାହାରେ। କର୍ମଚାରୀଙ୍କୁ ବିଭାଗୀୟ ଶାସ୍ତି ଖୁବ କମ ଦିଆଯାଏ। ଗୋଟାଏ ସମ୍ପୂର୍ଣ୍ଣ ତଦନ୍ତ ଦାବୀ ଅସ୍ୱୀକାର କରାଯାଏ—ବିଭାଗୀୟ ତଦନ୍ତ ଯଥେଷ୍ଟ

ବୋଲି ମନେ ହୁଏ । ବାସ୍ତବିକ ହିଜିଲି ଘଟଣାରୁ ସରକାର ଉପଯୁକ୍ତ ଶିକ୍ଷା ପାଇଲେ । ନିରପେକ୍ଷ ଏବଂ ଠିକ ରୂପେ ତଦନ୍ତ ନିରାପଦ ନୁହେଁ ବୋଲି ଜାଣି ପାରିଲେ । ଦୋଷୀହିଁ ସର୍ବୋତ୍କୃଷ୍ଟ ବିଚାରକ । ଏଥିରୁ ଲୋକଙ୍କ ମଧ୍ୟରେ ଶିକ୍ଷା ହେବାରେ ବିଚିତ୍ର କଣ ? ସରକାର ଯେଉଁ ସବୁ କଥାରେ ଆମର ବିଶ୍ୱାସ ଜନ୍ମାଇବାକୁ ଚାହାନ୍ତି, ତାହାହିଁ ସରକାରୀ ଇସ୍ତାହାରରେ ପ୍ରକାଶ କରନ୍ତି, ପ୍ରକୃତରେ ଯାହା ଘଟିଥାଏ ତାହା ନୁହେଁ ।

ଚଟ୍ଟଗ୍ରାମ ବ୍ୟାପାର ଅଧିକ ଗୁରୁତର ଥିଲା । ଜଣେ ଆତଙ୍କବାଦୀ ଜଣେ ମୁସଲମାନ ପୁଲିସ ଇନ୍‌ସପେକ୍ଟରଙ୍କୁ ଗୁଳିଦ୍ୱାରା ମାରି ପକାଇଥିଲେ । ଏହାର ପରେ ପରେ ଏକ ହିନ୍ଦୁ-ମୁସଲମାନ ଦଙ୍ଗା ହୋଇଗଲା—ଅଥବା ଏହା ହେଲା ବୋଲି କୁହାଯାଉଥିଲା, ଅବଶ୍ୟ ଏହି ଘଟଣା ଏହା ଅପେକ୍ଷା ଅଧିକ କିଛି ଥିଲା, ସାଧାରଣ ସାମ୍ପ୍ରଦାୟିକ ଦଙ୍ଗାଠାରୁ ଏହା କିଛି ପୃଥକ ଥିଲା । ଏକଥା ନିଶ୍ଚିତ ଯେ ଆତଙ୍କବାଦୀ କାର୍ଯ୍ୟସହିତ ସାମ୍ପ୍ରଦାୟିକତାର କୌଣସି ସମ୍ପର୍କ ନଥିଲା । ହିନ୍ଦୁ ବା ମୁସଲମାନ ସେଥିପ୍ରତି ଖାତିର ନ କରି ଏକ ପୁଲିସ କର୍ମଚାରୀ ଉଦ୍ଦେଶ୍ୟରେ ଏହା ପ୍ରୟୋଗ କରାହୋଇଥିଲା । ତଥାପି ଏହା ସତ୍ୟ ଯେ, ପରେ ଗୋଟାଏ ହିନ୍ଦୁ ମୁସଲମାନ ଦଙ୍ଗା ହୋଇଥିଲା । ଏହା କିପରି ଆରମ୍ଭ ହେଲା, କାରଣ କଣ ? ଏ ସମ୍ବନ୍ଧରେ ଦାୟିତ୍ୱ ସମ୍ପନ୍ନ ସାଧାରଣ ଲୋକେ ଖୁବ୍ ଗୁରୁତର ଅଭିଯୋଗ କରିବା ସତ୍ତ୍ୱେ ତାହା ପରିଷ୍କାର କରାଯାଇ ନାହିଁ । ଏହି ଦଙ୍ଗାରେ ଗୋଟାଏ ବିଶେଷତ୍ୱ ଥିଲା—ଦେଖାଗଲା ଯେ ଅନ୍ୟ ଶ୍ରେଣୀର ଲୋକେ ଆଙ୍ଗ୍ଲୋ ଇଣ୍ଡିଆନ୍ ବିଶେଷରୂପେ ରେଲ୍‌ବିଭାଗ ଓ ଅନ୍ୟ ସରକାରୀ କର୍ମଚାରୀମାନେ ବ୍ୟାପକ ଭାବରେ ପ୍ରତିଶୋଧ ନେବାରେ ଲାଗି ପଡ଼ିଥିଲେ । ଚଟ୍ଟଗ୍ରାମ ଘଟଣା ସମ୍ବନ୍ଧରେ କେତେକ ନିର୍ଦ୍ଦିଷ୍ଟ ଅଭିଯୋଗ ବଙ୍ଗଳାର ଜେ. ଏମ୍. ସେନଗୁପ୍ତ ଓ ଅନ୍ୟାନ୍ୟ ବିଖ୍ୟାତ ନେତାମାନେ କରିଥିଲେ । ସେମାନେ ଏ ସମ୍ବନ୍ଧରେ ତଦନ୍ତ ଦାବୀ

କଲେ ଏବଂ ମାନହାନି ମକଦ୍ଦମା ମଧ୍ୟ ଆହ୍ୱାନ କଲେ—ମାତ୍ର ସରକାର କିଛି ନ କରି ଚୁପ୍ ରହିଲେ ।

ଚଟ୍ଟଗ୍ରାମର ଏହି ଅସାଧାରଣ ଘଟଣା ଫଳରେ ଦୁଇଟି ବିପଜ୍ଜନକ ସମ୍ଭାବନା ଘଟିବ ବୋଲି ଅନୁମାନ କରାଯାଉଥିଲା । ଅନେକ ଦୃଷ୍ଟିରୁ ଆତଙ୍କବାଦ ନିନ୍ଦା କରାଯାଉଥିଲା; ଏପରି କି ଅଧିକାଂଶ ବିପ୍ଳବୀ କୌଶଳକୁ ମଧ୍ୟ ନିନ୍ଦା କରାଯାଉଥିଲା । ମାତ୍ର ଆକସ୍ମିକ ସାଂପ୍ରଦାୟିକ ହିଂସାକାଣ୍ଡ ଭାରତର ଗୃହଯୁଦ୍ଧେ ବ୍ୟାପିଯାଇପାରେ ଏହି ପରିଣତି ଭାବିଲେ ମୋ ମନରେ ଶଙ୍କା ହୋଇଥିଲା । ମୁଁ ଜଣେ "ନିରୀହ ହିନ୍ଦୁ" ନୁହେଁ ଯେ, ହିଂସା ଦେଖି ଭୟ କରିବି । ଅବଶ୍ୟ ମୁଁ ହିଂସା ପସନ୍ଦ କରେନା । ମୋର ଧାରଣା ଯେ, ଭାରତରେ କଳହକାରୀ ଶକ୍ତି ଏବେ ସୁଦ୍ଧା ବହୁପରିମାଣରେ ଅଛି—ଆକସ୍ମିକ ହିଂସାରେ ସେମାନେ ଅବଶ୍ୟ ଶକ୍ତିଶାଳୀ ହେବେ । ଏକ ମିଳିତ ଏବଂ ଶୃଂଖଳିତ ଦେଶ ଗଢ଼ିବାରେ ଏହା ବାଧା ଦେବ । ଲୋକେ ଯେତେବେଳେ ଧର୍ମ ନାମରେ ହତ୍ୟା କରିପାରନ୍ତି କିମ୍ବା ସ୍ୱର୍ଗରେ ନିଜପାଇଁ ଗୋଟାଏ ସ୍ଥାନ ରଖିବାପାଇଁ ହତ୍ୟା କରିପାରନ୍ତି, ସେତେବେଳେ ଆତଙ୍କବାଦୀ ହିଂସା-କାର୍ଯ୍ୟରେ ସେମାନଙ୍କୁ ପ୍ରବର୍ତ୍ତାଇବା ବିପଜ୍ଜନକ ଥିଲା । ରାଜନୈତିକ ହତ୍ୟା ଖରାପ; ତଥାପି ରାଜନୈତିକ ଆତଙ୍କବାଦୀକୁ ଯୁକ୍ତିଦ୍ୱାରା ବୁଝାଇ ଅନ୍ୟ ପଥକୁ ନିଆଯାଇ ପାରେ—କାରଣ ତାହାର ଉଦ୍ଦେଶ୍ୟ ପାର୍ଥିବ—ସେ କୌଣସି ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି ପାଇଁ ନୁହେଁ ଏକ ଜାତୀୟ ଉଦ୍ଦେଶ୍ୟରେ କାର୍ଯ୍ୟ କରେ । ଧାର୍ମିକ ହତ୍ୟା ଖରାପ—କାରଣ ପରଲୋକରେ ସ୍ଥାନ ପାଇବା ନିମନ୍ତେ ଏହା କରାଯାଏ—ଏ ସମ୍ବନ୍ଧରେ ଯୁକ୍ତି ତର୍କର ଚେଷ୍ଟାହିଁ ବୃଥା । ସମୟ ସମୟରେ ଏହି ଦୁହିଁଙ୍କ ଭିତରେ ପାର୍ଥକ୍ୟ ଖୁବ୍ କମ—ପ୍ରାୟ ନ ଥାଏ । ଦାର୍ଶନିକ ଦିଗରୁ ରାଜନୈତିକ ହତ୍ୟା ମଧ୍ୟ ଧାର୍ମିକ ଯୁକ୍ତ ହୋଇଯାଏ ।

ଚଟ୍ଟଗ୍ରାମରେ ଜଣେ ଆତଙ୍କବାଦୀଦ୍ୱାରା ପୁଲିସ କର୍ମଚାରୀର ହତ୍ୟା ଏବଂ ଏହାର ପରିଣତି ଯୋଗୁଁ ଆତଙ୍କବାଦୀ କାର୍ଯ୍ୟରେ କିପରି ବିପଜ୍ଜନକ

ସମ୍ଭାବନା ରହିଛି ଏବଂ ଭାରତର ନେତା ଓ ସ୍ୱାଧୀନତା ଉଦ୍ଦେଶ୍ୟରେ ଏହା ଉପରି ହାନି ପହଞ୍ଚାଇପାରେ ଏହା ଦର୍ଶାଇ ଦେଲି । ଏହା ପରେ ପରେ ସରକାର ଯେଉଁ ପ୍ରତିଶୋଧମୂଳକ କାର୍ଯ୍ୟ କଲା, ସେଥିରୁ ଫାସିଷ୍ଟ ପ୍ରଥା ଭାରତରେ ଚଳୁଛି ବୋଲି ଦେଖାଗଲା । ସେହି ଦିନଠାରୁ ଏପରି ପ୍ରତିଶୋଧମୂଳକ କାର୍ଯ୍ୟର ଅନେକ ଦୃଷ୍ଟାନ୍ତ ବିଶେଷତଃ ବଙ୍ଗଳାରେ ଦେଖାଯାଉଛି ଏବଂ ଇଉରୋପୀୟ ଓ ଆଙ୍ଗ୍ଲୋ ଇଣ୍ଡିଆନ୍ ସଂପ୍ରଦାୟଙ୍କ ଭିତରେ ଏହା ନିଃସନ୍ଦେହରୂପେ ବିସ୍ତାର ହୋଇଛି । ବ୍ରିଟିଶ ସାମ୍ରାଜ୍ୟବାଦ ଉପରେ ନିର୍ଭରଶୀଳ କେତେକ ଭାରତୀୟ ମଧ୍ୟ ଏହା ଗ୍ରହଣ କରିଛନ୍ତି ।

ଅଧିକ ଅଦ୍ଭୁତ କଥା ଯେ, ଅନେକ ଆତଙ୍କବାଦୀଙ୍କର ମଧ୍ୟ ଫାସିଷ୍ଟ ଦୃଷ୍ଟିକୋଣ ଅଛି—ମାତ୍ର ସେମାନଙ୍କର ଗଠନ ଭିନ୍ନ ଧରଣର । ସେମାନଙ୍କର ଜାତୀୟତା ଫାସିଜିମ୍ ଇଉରୋପୀୟାନ, ଆଙ୍ଗ୍ଲୋଇଣ୍ଡିୟାନ ଏବଂ କେତେକ ଉଚ୍ଚଶ୍ରେଣୀ ଭାରତୀୟଙ୍କର ସାମ୍ରାଜ୍ୟବାଦୀ ଫାସିଜିମ୍ ବିରୋଧୀ ।

୧୯୩୧ ନଭେମ୍ବର ମାସରେ କେତେଦିନ ସକାଶେ ମୁଁ କଲିକତା ଗଲି । ଏହି କେତେଦିନ ମୋର ବହୁତ କାମ ପଡ଼ିଲା—ଘରୋଇଭାବରେ କେତେକ ଦଳ ଏବଂ ବ୍ୟକ୍ତିବିଶେଷଙ୍କ ସହ ସାକ୍ଷାତ୍ କରିବା ଛଡ଼ା ମୁଁ କେତେଗୁଡ଼ିଏ ସାଧାରଣ ସଭାରେ ବକ୍ତୃତା କରିଥିଲି । ଏହି ସବୁ ସଭାରେ ମୁଁ ଆତଙ୍କବାଦ ସମ୍ବନ୍ଧରେ ଆଲୋଚନା କରି ଏହା ଭାରତୀୟ ସ୍ୱାଧୀନତା ପକ୍ଷରେ ଭୁଲ, ବୃଥା ଏବଂ କ୍ଷତିକାରକ ବୋଲି ଦର୍ଶାଇଥିଲି । ମୁଁ ଆତଙ୍କବାଦୀମାନଙ୍କୁ ଗାଳି ଦେଇ ନ ଥିଲି କିମ୍ବା ସେମାନଙ୍କୁ "ଭୀରୁ" "କାପୁରୁଷ" ବୋଲି ଗାଳି ଦେଇ ନ ଥିଲି । ଆମ ଦେଶର କେତେକ ଲୋକେ ନିଜେ ସେପରି କିଛି ସାହସିକ ବା ବିପଦବରଣ କଲାପରି କାର୍ଯ୍ୟ ନ କରିଥିଲେ ସୁଦ୍ଧା ସେମାନଙ୍କୁ ଗାଳି ଦେବା ଗୋଟାଏ

ଫେଶନ୍ ହୋଇଯାଇଛି । ଯେଉଁ ସ୍ତ୍ରୀ ବା ପୁରୁଷ ସର୍ବଦା ନିଜ ଜୀବନକୁ ଏପରି ବିପଦ ମୁହଁରେ ଫିଙ୍ଗାଇ ଚାଲିଛି, ତାକୁ ସ୍ୱାମୀ କହିବା ମୋ ମତରେ ଅତ୍ୟନ୍ତ ନିର୍ବୋଧତା । ଏହାର ପ୍ରତିକ୍ରିୟା ତା ମନରେ କଣ ହେବ ? ସେ ଦେଖିବ କେତେକ ସ୍ୱାମୀ ସମାଲୋଚକ ତାକୁ ନିନ୍ଦା କରୁଛନ୍ତି—ଅଥଚ ସେମାନେ କୌଣସି କାର୍ଯ୍ୟ କରିବାକୁ ଅସମର୍ଥ, କେବଳ ଦୂରରୁ ଚିତ୍କାର କରି ଜାଣନ୍ତି ।

ମୁଁ ଯେଉଁଦିନ ସନ୍ଧ୍ୟାରେ କଲିକତା ଛାଡ଼ିବାର କଥା, ସେଦିନ ଷ୍ଟେସନକୁ ଗାଡ଼ି ଧରିବା ଲାଗି ଯିବାର କିଛିକ୍ଷଣ ପୂର୍ବରୁ ଦୁଇଜଣ ଯୁବକ ମୋ ପାଖକୁ ଆସିଲେ । ସେମାନଙ୍କର ବୟସ ପ୍ରାୟ ୨୦ ବର୍ଷ ଲେଖାଏଁ ହେବ—ତାଙ୍କ ମୁଖ ଠିକ୍‌ଏ ବିବର୍ଣ୍ଣ, ଚକ୍ଷୁରୁ ଉଜ୍ଜ୍ୱଳ ଜ୍ୟୋତି ବାହାରୁଥାଏ । ସେମାନେ କିଏ ମୁଁ ଜାଣି ନ ଥିଲି; ମାତ୍ର ସେମାନଙ୍କ ଆସିବାର କାରଣ ଶୀଘ୍ର ଜାଣି ପାରିଲି । ମୁଁ ଆତଙ୍କବାଦ ହିଂସା ବିରୁଦ୍ଧରେ ପ୍ରଚାର କରୁଥିବାରୁ ସେମାନେ ମୋ ଉପରେ ଭାରି ରାଗିଥିଲେ । ସେମାନେ କହିଲେ, ଏହା ଯୁବକମାନଙ୍କ ଉପରେ ଖରାପ ପ୍ରଭାବ ପକାଉଛି ଏବଂ ଏ କାର୍ଯ୍ୟରେ ମୋର ଅନଧିକାର ଚର୍ଚ୍ଚା ସେମାନେ ସହ୍ୟ କରିପାରିବେ ନାହିଁ । ଆମ ଭିତରେ ଅଳ୍ପସମୟ ପର୍ଯ୍ୟନ୍ତ ପ୍ରତିତର୍କ ହେଲା, ମୋର ଆସିବା ସମୟ ପାଖେଇ ଆସିଥିବାରୁ ଖୁବ୍ ଶୀଘ୍ର ଶୀଘ୍ର କଥାବାର୍ତ୍ତା ହେଲା । ମୋର ମନେ ହୁଏ, ଆମର କଥାବାର୍ତ୍ତା ଠିକ୍‌ଏ ଉଚ୍ଚସ୍ୱରରେ ହେଲା—ମିଜାଜ ବି ଗରମ ହୋଇଗଲା—ମୁଁ ସେମାନଙ୍କୁ କେତେକ କଡ଼ା କଡ଼ା କଥା ଶୁଣାଇ ଦେଇଥିଲି, ମୁଁ ଛାଡ଼ି ଆସିଲାବେଳେ ସେମାନେ ମୋତେ ଶେଷଥର ପାଇଁ ସତର୍କ କରାଇଦେଲେ ଯେ ଯଦି ଭବିଷ୍ୟତରେ ମୁଁ ଏପରି ଭାବରେ ଖରାପ ବ୍ୟବହାର କରେ, ତେବେ ଅନ୍ୟମାନଙ୍କୁ ସେମାନେ ଯେପରି ଶିକ୍ଷା ଦେଇଛନ୍ତି ମୋତେ ସେହିପରି ଦେବେ ।

ମୁଁ କଲିକତା ଛାଡ଼ିଲି । ଟ୍ରେନ୍‌ରେ ବସିଥିଲାବେଳେ ଏହି ଦୁଇଟି ଯୁବକଙ୍କର ଉତ୍ତେଜିତ ମୁଖ ମୋ ଆଖି ଆଗରେ ନାଚିଗଲା । ସେମାନଙ୍କ

ଭିତରେ ପ୍ରାଣପୂର୍ଣ୍ଣ ଆବେଗ ଓ ଅଜେୟ ଶକ୍ତି ଥିଲା । ସେମାନେ ଯଦି ଭଲ ପଥରେ ଯାଆନ୍ତେ କେତେ ଭଲ କାମ କରି ନ ପାରନ୍ତେ ! ସେମାନଙ୍କ ସହିତ ଏତେ ତରତରରେ କଥାବାର୍ତ୍ତା ଏବଂ ଶିକଏ କଡ଼ା ବ୍ୟବହାର କରିଥିବାରୁ ମୁଁ ଦୁଃଖିତ ହେଲି ଏବଂ ମନେ କଲି, ସେମାନଙ୍କ ସହିତ ଅଧିକ ସମୟ କଥାବାର୍ତ୍ତା କରିବାକୁ ସୁବିଧା ମିଳିଥାଆନ୍ତା କି ? ସମ୍ଭବତଃ ସେମାନଙ୍କ ଉଚ୍ଛୃଙ୍ଖଳ ଜୀବନକୁ ଅନ୍ୟ ଦିଗରେ—ଭାରତର ସେବା ଓ ସ୍ୱାଧୀନତା ଦିଗରେ ଖଟାଇବା ନିମନ୍ତେ ମୁଁ ବୁଝାଇ ଦେଇ ପାରିଥାନ୍ତି—ଏଥିରେ ବହୁ ସାହସିକ କାର୍ଯ୍ୟ ଓ ଆତ୍ମୋତ୍ସର୍ଗ କରିବାର ସୁଯୋଗ କମିଯାଇ ନାହିଁ । ଅନେକ ସମୟରେ ସେମାନଙ୍କ କଥା ମୋର ମନେ ପଡ଼େ । ମୁଁ ସେମାନଙ୍କର ନାମ ଖୋଜି ପାଇ ନ ଥିଲି କିମ୍ବା ସେମାନେ କେଉଁଠି ଅଛନ୍ତି ଜାଣେନା । ବେଳେବେଳେ ଭାବେ, ସେମାନେ ମୃତ ନା ଆଣ୍ଡାମାନ ଦ୍ୱୀପର କୌଣସି ନିର୍ଜନ କୋଠରୀରେ ଅବଦ୍ଧ ।

ଡିସେମ୍ବର ମାସରେ ଏଲାହାବାଦରେ ଜାତୀୟ କୃଷକ ସମ୍ମିଳନୀ ହେଲା । ତାପରେ ହିନ୍ଦୁସ୍ତାନୀ ସେବାଦଳର ମୋର ପୁରାତନ ସହକର୍ମୀ ଡାକ୍ତର ଏନ୍. ଏସ୍. ହାର୍ଡ଼ିକରଙ୍କୁ ଦୀର୍ଘକାଳରୁ ଦେଇଥିବା ଏକ ପ୍ରତିଶ୍ରୁତି ରକ୍ଷା ନିମନ୍ତେ ମୁଁ କର୍ଣ୍ଣାଟକ ଗଲି, ସେବାଦଳର କାର୍ଯ୍ୟ ହେଉଛି ଜାତୀୟ ଆନ୍ଦୋଳନର ସ୍ୱେଚ୍ଛାସେବକ ସଙ୍ଗଠନ—ସର୍ବଦା କଂଗ୍ରେସର ସୈନ୍ୟ ଦଳ ରୂପେ ରହିଥିଲେ ମଧ୍ୟ ଏହି ଅନୁଷ୍ଠାନ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଥିଲା । ୧୯୩୧ ମସିହା ଗ୍ରୀଷ୍ମ ଋତୁରେ କାର୍ଯ୍ୟକାରୀ ସମିତି ସମ୍ପୂର୍ଣ୍ଣରୂପେ ଏହାକୁ କଂଗ୍ରେସ ସହିତ ମିଶାଇ କଂଗ୍ରେସର ସ୍ୱେଚ୍ଛାସେବକ ବିଭାଗରେ ପରିଣତ କଲା । ଡାକ୍ତର ହାର୍ଡ଼ିକାର ଓ ମୁଁ ଏହାର ଭାର ନେଲୁ । ଦଳର କେନ୍ଦ୍ରୀୟ ଅଫିସ କର୍ଣ୍ଣାଟକର ହୁବଳିଠାରେ ରହିଥିଲା; ଦଳର ନାନା କାର୍ଯ୍ୟ ଯନ୍ତ୍ରାନ୍ତରେ ସେଠାକୁ ଯିବା ନିମନ୍ତେ ମୋତେ ହାର୍ଡ଼ିକାର ପ୍ରବର୍ତ୍ତାଇଥିଲେ । ତାପରେ କର୍ଣ୍ଣାଟକ ଭ୍ରମଣ ପାଇଁ ସେ ମୋତେ ଲେଖିଲେ ଏବଂ ଲୋକଙ୍କର ଅଦ୍ଭୁତ ଜାଗରଣ ଦେଖି

ମୁଁ ଆଶ୍ଚର୍ଯ୍ୟ ହେଲି । ଫେରିଲାବେଳେ ସାମରିକ ଅଭିନନ୍ଦନ ସୋଲାପୁରକୁ ମଧ୍ୟ ମୁଁ ଯାଇଥିଲି ।

ମୋର ଏହି କର୍ଣ୍ଣାଟକ ଭ୍ରମଣ ଏକ ଉଦାସୀ ଉତ୍ସବ ବୋଲି ଧରି-ଯାଇପାରେ । ମୋ ବକ୍ତୃତାରେ ସଙ୍ଗୀତର ଶେଷଧ୍ୱନି ମିଳେ; ମୋର ଆଶଙ୍କା, ଏ ଗୁଡ଼ିକ ସଂଗ୍ରାମଶୀଳ ହୋଇଥିଲେ ସୁଦ୍ଧା ଏଥିରେ ସଙ୍ଗୀତର ଲେଶ ମାତ୍ର ନ ଥିଲା । ଯୁକ୍ତପ୍ରଦେଶରୁ ନିର୍ଦ୍ଦିଷ୍ଟ ସମ୍ବାଦ ମିଳିଲା ଯେ, ସରକାର ଜୋରସୋରରେ ଦମନ ଆରମ୍ଭ କଲେଣି । ଏଲାହାବାଦରୁ ମୁଁ କର୍ଣ୍ଣାଟକ ଗଲାବେଳେ କମଳା ସହିତ ବମ୍ବେ ଯାଇଥିଲି । ସେ ପୁଣି ବେମାର ହୋଇଥିଲା; ମୁଁ ବମ୍ବେରେ ତାର ଚିକିତ୍ସା ବ୍ୟବସ୍ଥା କରିଥିଲି । ଏଲାହାବାଦରୁ ବମ୍ବେରେ ଆମେ ପହଞ୍ଚିବା ସଙ୍ଗେ ସଙ୍ଗେ ସମ୍ବାଦ ପାଇଲୁ ଯେ ଭାରତ ସରକାର ଯୁକ୍ତପ୍ରଦେଶରେ ଜରୁରୀ ଅର୍ଡ଼ିନାନ୍‌ସ ଜାରି କରିଛନ୍ତି । ଗାନ୍ଧିଜୀ ସମୁଦ୍ରରେ ଅସୁଥାନ୍ତି ଏବଂ ଅତିଶୀଘ୍ର ବମ୍ବେରେ ପହଞ୍ଚିବାର ଥିଲେ ସୁଦ୍ଧା ସେ ଆସିବା ପର୍ଯ୍ୟନ୍ତ ସରକାର ଅପେକ୍ଷା କଲେ ନାହିଁ । ଏହି ଅର୍ଡ଼ିନାନ୍‌ସ କୃଷକ ଆନ୍ଦୋଳନ ଉଦ୍ଦେଶ୍ୟରେ ଜାରି ହୋଇଥିଲା; ମାତ୍ର ଏହା ଏପରି ଅଦ୍ଭୁତରୂପେ ବ୍ୟାପକ ଓ ସୁଦୂରଗାମୀ ହୋଇଥିଲା ଯେ, ସମସ୍ତ ରାଜନୈତିକ କିମ୍ବା ସାଧାରଣ କାର୍ଯ୍ୟ ଅସମ୍ଭବ ହୋଇ ଉଠିଲା । କୌଣସି ସନ୍ତାନର ଦୋଷ ସକାଶେ ପିତା ମାତା ଓ ଅଭିଭାବକ ମଧ୍ୟ ଶାସ୍ତି ପାଇବାର ବ୍ୟବସ୍ଥା ଥିଲା — ଏହା ପ୍ରାଚୀନ ବାଇବଲ ନୀତିର ପୁନରାବୃତ୍ତି ।

ଏହି ସମୟରେ ଗାନ୍ଧିଜୀ ରୋମରେ "ଜିଓର୍ଣ୍ଣାଲେଜ ଇଟାଲିଆ" କାଗଜରେ ଗୋଟିଏ ସାକ୍ଷାତ୍ ଦେଇଥିବାର ବର୍ଣ୍ଣନା ପଢ଼ିଲୁ । ଏହା ପଢ଼ି ଆମେ ଆଶ୍ଚର୍ଯ୍ୟ ହେଲୁ—କାରଣ ରୋମରେ ଏହି ଯେଉଁ ବିବରଣୀ ବାହାରିଥିଲା, ଏହା ତାଙ୍କର ମତବାଦରୁ ସମ୍ପୂର୍ଣ୍ଣ ପୃଥକ ଏହାକୁ ଭଲ ଭାବରେ ଆମେ ଦେଖିଲୁ, ଏଥିରେ ବ୍ୟବହୃତ ଅନେକ ଶବ୍ଦ ଓ ବାକ୍ୟ ତାଙ୍କର ସମ୍ପୂର୍ଣ୍ଣ ଅପରିଚିତ ଏବଂ ଆମର

ହୁଦ୍‌ବୋଧ ହେଲ୍ଲ ଯେପରି ଭାବରେ ପ୍ରକାଶ ହୋଇଛି ସେପରି ସାକ୍ଷାତ୍ ସେ ଦେଇ ନ ଥିବେ । ପରେ ଗାନ୍ଧିଜୀ ସାକ୍ଷାତ ଦେଇନାହାନ୍ତି ବୋଲି ଅସ୍ୱୀକାର କରି ପଠାଇଲେ । ଆମେ ଭାବିଲୁ ଯେ ସେ ଯାହା କହିଥିଲେ ତାହା ବନ୍ଧୁ-ପରିମାଣରେ ବିକୃତ କରାହୋଇଛି । ତାପରେ ସେ ଏହାର ଦୃଢ଼ ପ୍ରତିବାଦ କଲେ ଏବଂ କହିଲେ ଯେ ମୁଁ ଏପରି କୌଣସି ସାକ୍ଷାତ ଭ୍ରମରେ ଦେଇନାହିଁ । ଆମେ ସ୍ପଷ୍ଟ ବୁଝିପାରିଲୁ, କେହି ଲୋକ ତାଙ୍କ ସହିତ ଏପରି ଖେଳୁଛି । ଆହୁରି ଆଶ୍ଚର୍ଯ୍ୟ କଥା ଯେ, ବ୍ରିଟିଶ ସମ୍ବାଦପତ୍ର ଓ ସାଧାରଣ ନେତାମାନେ ତାଙ୍କ କଥା ବିଶ୍ୱାସ କଲେ ନାହିଁ ଏବଂ ଅବଜ୍ଞା ଭାବରେ ତାଙ୍କୁ ମିଥ୍ୟାବାଦୀ ବୋଲି କହିଲେ । ଏଥିରେ ଆମେ ଆହତ ହେଲୁ ଏବଂ ରାଗ ବଢ଼ିଲା ।

ମୁଁ କର୍ଣ୍ଣାଟକ ଭ୍ରମଣ ବନ୍ଦକରି ଏଲାହାବାଦ ଫେରିଯିବା ପାଇଁ ବ୍ୟଗ୍ର ଥିଲି । ମୋର ସ୍ଥାନ ଯୁକ୍ତପ୍ରଦେଶ ସହକର୍ମୀମାନଙ୍କ ଭିତରେ ହେବା ଉଚିତ ଏବଂ ଘରେ ଏପରି ଘଟଣା ଘଟୁଥିଲା ବେଳେ ଦୂରରେ ରହିବା ବଡ଼ ଯନ୍ତ୍ରଣାଦାୟକ । ଯାହାହେଉ କର୍ଣ୍ଣାଟକ ଭ୍ରମଣ ଚଳାଇବାକୁ ମୁଁ ସ୍ଥିରକଲି । ଫେରି ଆସିଲାପରେ, ଗାନ୍ଧିଜୀ ଆସିବା ପର୍ଯ୍ୟନ୍ତ ବମ୍ବେରେ ରହିବାକୁ ମୋତେ କେତେକ ବନ୍ଧୁ ପରାମର୍ଶ ଦେଲେ । ଠିକ୍ ଏକ ସପ୍ତାହ ପରେ ତାଙ୍କର ବମ୍ବେରେ ପହଂଚିବାର ଥିଲା । ମାତ୍ର ମୋ ପକ୍ଷରେ ଏହା ଅସମ୍ଭବ ଥିଲା । ଏଲାହାବାଦରେ ପୁରୁଷୋତ୍ତମ ଦାସ ଟାଣ୍ଡନ ଓ ଅନ୍ୟମାନଙ୍କ ଗିରଫ ସମ୍ବାଦ ଆସି ପହଂଚିଲା । ଏହା ଛଡ଼ା ସେହି ସପ୍ତାହରେ ଏଟାଓ୍ୱାରେ ଆମର ପ୍ରାଦେଶିକ ସମ୍ମିଳନୀ ହେବାର ସ୍ଥିର ହୋଇଥାଏ । ତେଣୁ ମୁଁ ଏଲାହାବାଦ ଫେରିଯିବାକୁ ସ୍ଥିର କଲି । ଯଦି ମୁକ୍ତ ଥାଏ ତେବେ ଛଅଦିନ ପରେ ପୁଣି ବମ୍ବେ ଆସି ଗାନ୍ଧିଜୀଙ୍କ ସହ ସାକ୍ଷାତ କରିବି ଓ କାର୍ଯ୍ୟକାରୀ ସମିତି ବୈଠକରେ ଯୋଗ ଦେବି । କମଳାକୁ ରୋଗଶଯ୍ୟାରେ ବମ୍ବେରେ ଛାଡ଼ି ମୁଁ ଆସିଲି ।

ମୁଁ ଏଲାହାବାଦ ପହଞ୍ଚିବା ପୂର୍ବରୁ ଚେଓକି ଷ୍ଟେସନରେ ନୂଆ ଅର୍ଡ଼ିନାନ୍ସ ଅନୁସାରେ ଏକ ନୋଟିସ ମୋ ଉପରେ ଜାରି ହେଲା । ଏହାପରେ ଆଉ ଏକ ଆଦେଶ ଏଲାହାବାଦ ଷ୍ଟେସନରେ ଜାରି କରିବାର ଉଦ୍ୟମ ହୋଇଥିଲା; ଆମ ଘରେ ଡ଼ୁଟିଯୁକ୍ତ ଲୋକଦ୍ୱାରା ମଧ୍ୟ ଚେଷ୍ଟା ହୋଇଥିଲା । ଏଥିରେ କିଛି ତାରିଖର ଚିହ୍ନ ନ ଥିଲା । ଏହି ଆଦେଶ ଅନୁସାରେ ମୋତେ ଏଲାହାବାଦ ମ୍ୟୁନିସିପାଲିଟିର ସୀମା ଭିତରେ ରହିବାକୁ ଆଦେଶ ହେଲା — ମୁଁ କୌଣସି ସାଧାରଣ ସଭା ବା କାର୍ଯ୍ୟରେ ଯୋଗ ଦେଇପାରିବି ନାହିଁ, ବକ୍ତୃତା ଦେଇ ପାରିବି ନାହିଁ — କିମ୍ବା ସମ୍ବାଦପତ୍ରରେ ବା ଲିଫ୍‌ଲେଟ ଲେଖି ପାରିବି ନାହିଁ ଇତ୍ୟାଦି ଆଦେଶ ହେଲା । ଏହା ଛଡ଼ା ଆଉ ଅନେକ କଟକଣା ଥିଲା । ମୁଁ ଦେଖିଲି ତସଦୁକ ଶେରୱାନୀ ଓ ଆହୁରି ଅନେକ ସହକର୍ମୀଙ୍କ ଉପରେ ଏହିପରି ଆଦେଶ ଜାରି ହୋଇଥିଲା । ତହିଁ ପରଦିନ ସକାଳେ ମୁଁ ଜିଲା ମାଜିଷ୍ଟ୍ରେଟଙ୍କୁ ( ସେ ଏହି ହୁକୁମ ଜାରି କରିଥିଲେ ) ତାଙ୍କ ହୁକୁମ ପାଇଛି ବୋଲି ଚିଠି ଲେଖିଲି ଏବଂ ଜଣାଇ ଦେଲି ଯେ ମୁଁ କଣ କରିବି ବା ନ କରିବି ସେ ସମ୍ବନ୍ଧରେ ତାଙ୍କ ହୁକୁମ ଅନୁସାରେ ମୁଁ ଚଳିବି ନାହିଁ । ମୁଁ ସାଧାରଣ ଭାବରେ ମୋର ସାଧାରଣ କାର୍ଯ୍ୟ କରିବି । ଏହିଭିତରେ ସେଥିପାଇଁ ମୋତେ ଗାନ୍ଧିଜୀଙ୍କ ସାକ୍ଷାତ୍ କରିବା ପାଇଁ ଏବଂ କାର୍ଯ୍ୟକାରୀ ସମିତିର ମୁଁ ସମ୍ପାଦକ – ସେଥିରେ ଯୋଗ ଦେବା ନିମନ୍ତେ ବମ୍ବେ ଯିବାକୁ ହେବ ।

ମୋ ସମ୍ମୁଖରେ ଗୋଟିଏ ନୂତନ ସମସ୍ୟା ଆସି ପହଞ୍ଚିଲା । ସେହି ସପ୍ତାହରେ ଏଟାଓ୍ୱାଠାରେ ଯୁକ୍ତପ୍ରଦେଶ ସମ୍ମିଳନୀ ହେବାର ସ୍ଥିର ହୋଇଥାଏ । ଗାନ୍ଧିଜୀଙ୍କ ଆଗମନ ସମୟରେ ଏହା ପଡ଼ୁଥିବାରୁ ଏବଂ ସରକାର ସହିତ ଗୋଟାଏ ସଂଘର୍ଷ ଏଡ଼ାଇବା ନିମନ୍ତେ ମୁଁ ଏହା ସ୍ଥଗିତ ରଖିବା ନିମନ୍ତେ କହିବା ଲାଗି ଇଚ୍ଛା କରି ବମ୍ବେରୁ ଆସିଥିଲି । ମାତ୍ର ମୁଁ ଏଲାହାବାଦକୁ ଫେରିବା ପୂର୍ବରୁ ଯୁକ୍ତପ୍ରଦେଶ ସରକାରଙ୍କଠାରୁ ଆମ

ସତ୍ୟପନ୍ତ ଶେରୱାନୀଙ୍କ ପାଖକୁ ପ୍ରାଦେଶିକ ସରକାର ଏକ ଚିଠି ପଠାଇଥିଲେ । ସେଥିରେ ଏହି ସମ୍ମିଳନୀରେ କୃଷକ ସମସ୍ୟା ଆଲୋଚନା କରାହେବ କି ନା, ଜାଣିବାପାଇଁ ସେ ପଚାରି ପଠାଇଥିଲେ – ହେଲେ ସେମାନେ ଏହି ସମ୍ମିଳନୀ ବନ୍ଦ କରିଦେବେ । ସମଗ୍ର ପ୍ରଦେଶ କୃଷକ ସମସ୍ୟା ଯେଉଁ ଉତ୍ତେଜିତ ଥିଲା ଏବଂ ସେହି ବିଷୟ ଆଲୋଚନା କରିବା ହିଁ ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ସମ୍ମିଳନୀ କରି ଏ ସମ୍ବନ୍ଧରେ ଆଲୋଚନା ନ କରିବା ଛଳନା ଏବଂ ଆତ୍ମ—ପ୍ରତାରଣା ହେବ । ଆହୁରି ମଧ୍ୟ ସମ୍ମିଳନୀରେ କଣ ଆଲୋଚିତ ହେବ, ନ ହେବ, ସେ ସମ୍ବନ୍ଧରେ ଆମର ସତ୍ୟପନ୍ତ ବା ଅନ୍ୟ କାହାର ସୀମାବଦ୍ଧ କରିବାର କ୍ଷମତା ନଥିଲା । ସରକାରୀ ମତଲବ ଛଡ଼ା ଆମ ଭିତରୁ କେତେକଙ୍କର ସମ୍ମିଳନୀ ସ୍ଥଗିତ ରଖିବାର ଇଚ୍ଛାଥିଲା, ମାତ୍ର ଏହି ଧମକ ହେତୁ ଅବସ୍ଥା ଅନ୍ୟ ରୂପ ଧରିଲା । ଆମ ଭିତରୁ ଅନେକେ ଏହି ସମ୍ବନ୍ଧରେ ବଡ଼ କଡ଼୍ଖୋର ହେଲେ— ସରକାରୀ ଆଦେଶାନୁସାରେ ଚାଳିତ ହେବା ସେମାନେ ଆଦୌ ରୁଚିକର ମନେ କଲେ ନାହିଁ । ଦୀର୍ଘକାଳ ଯୁକ୍ତିତର୍କ ପରେ ଆମେ ଆମର ଗର୍ବ ହଜମ କରି ସମ୍ମିଳନୀ ସ୍ଥଗିତ ରଖିବା ନିମନ୍ତେ ସ୍ଥିର କଲୁ । ଏହାର କାରଣ ହେଉଛି ସଂଘର୍ଷ ଆସନ୍ନ ହୋଇଯାଇଥିଲେ ସୁଦ୍ଧା ଏହାର ଅଗ୍ରଗତି ଗାନ୍ଧିଜୀ ଆସିବା ପର୍ଯ୍ୟନ୍ତ ଆମେ ବନ୍ଦ କରିବାକୁ ଇଚ୍ଛା କରୁଥିଲୁ । ସେ ଆସିଲାବେଳକୁ ତାଙ୍କର ଆଉ କିଛି ହାତ ନ ଥିବ - ସେ ଶକ୍ତିହୀନ ହୋଇଯିବେ । ଏପରି ପରିସ୍ଥିତି ଆମେ କରିବାକୁ ଚାହୁଁ ନଥିଲୁ । ଆମେ ପ୍ରାଦେଶିକ ସମ୍ମିଳନୀ ସ୍ଥଗିତ ରଖିବା ସତ୍ତ୍ୱେ ବହୁ ସଂଖ୍ୟାରେ ପୁଲିସ ଓ ଫୌଜ ଏଟାଓ୍ୱାଠାରେ ଜମା କରାଗଲା—ଖବର ପହଞ୍ଚି ନପାରିବାରୁ କେହି କେହି ଆସୁଥିବା ପ୍ରତିନିଧିଙ୍କୁ ଗିରଫ କରାଗଲା ଏବଂ ଫୌଜମାନେ ସ୍ୱଦେଶୀ ପ୍ରଦର୍ଶନୀ ଦଖଲ କଲେ ।

ଡିସେମ୍ବର ୨୬ ତାରିଖରେ ମୁଁ ଓ ଶେରୱାନୀ ବମ୍ବେ ଯିବା ଲାଗି ଏଲାହାବାଦ ଛାଡ଼ିବୁ ବୋଲି ସ୍ଥିର କଲୁ । ଯୁକ୍ତପ୍ରଦେଶ ପରିସ୍ଥିତି

ସମ୍ବନ୍ଧରେ ଆଲୋଚନା କରିବା ନିମନ୍ତେ ଶେରୱାନୀଙ୍କୁ କାର୍ଯ୍ୟକାରୀ ସମିତିରେ ଯୋଗ ଦେବା ଲାଗି ବିଶେଷଭାବରେ ନିମନ୍ତ୍ରଣ କରାଯାଇ ଥାଏ । ଏଲାହାବାଦ ସହର ନ ଛାଡ଼ିବା ନିମନ୍ତେ ଆମ ଉଭୟଙ୍କ ଉପରେ ନୋଟିସ ହୋଇଥାଏ । ଏହି ଅର୍ଡ଼ିନାନ୍ସ ଏଲାହାବାଦ ଜିଲ୍ଲାର କେତେକ ମଫସଲ ଅଞ୍ଚଳ ଓ ଯୁକ୍ତପ୍ରଦେଶରେ ଅନ୍ୟ କେତେକ ଜିଲ୍ଲାମାନଙ୍କରେ ହେଉଥିବା ଖଜଣା ବନ୍ଦ ଆନ୍ଦୋଳନ ଦବାଇବା ଉଦ୍ଦେଶ୍ୟରେ ଜାରି ହୋଇଥିଲା । ଏକଥା ସ୍ପଷ୍ଟ ଯେ, ସରକାର ଆମକୁ କୌଣସି ମଫସଲ ଅଞ୍ଚଳକୁ ଯିବାରେ ବାଧା ଦେବ । ଆମେ ବମ୍ବେ ସହରରେ କିଛି ଏହି କୃଷକ ଆନ୍ଦୋଳନ ଚଳାନ୍ତୁ ନାହିଁ; ସୁତରାଂ ସେହି ଅର୍ଡ଼ିନାନ୍ସ ଯଦି ପ୍ରକୃତରେ କୃଷକ ପରିସ୍ଥିତି ଯୋଗୁଁ ହୋଇଥାଆନ୍ତା, ତେବେ ଆମେ ପ୍ରଦେଶରୁ ଚାଲି-ଯିବାରେ ସେମାନେ ଆନନ୍ଦ ହୋଇଥାନ୍ତେ । ଅର୍ଡ଼ିନାନ୍ସ ଜାରି ହେବା ଦିନୁ ଆମେ ସଙ୍ଘର୍ଷ ନକରି ଆତ୍ମରକ୍ଷା ନୀତି ଧରିଥିଲୁ—ବ୍ୟକ୍ତିଗତ ଭାବରେ କେହି କେହି ଆଦେଶ ଅମାନ୍ୟ କରିଥିଲେ ସୁଦ୍ଧା ଆମେ ସରକାର ସହିତ ସଙ୍ଘର୍ଷରେ ଆସି ନଥିଲୁ । ଅନ୍ତତଃ ଯୁକ୍ତପ୍ରଦେଶ କଂଗ୍ରେସ ସେତେବେଳେ ସରକାର ସହିତ ସଙ୍ଘର୍ଷ ସ୍ଥଗିତ ରଖିବାକୁ ଚାହୁଁଥିଲା । ଗାନ୍ଧିଜୀ ଓ ଅନ୍ୟ କାର୍ଯ୍ୟକାରୀ ସମିତି ସଭ୍ୟମାନଙ୍କ ସହ ବମ୍ବେରେ ଏହି ଆଲୋଚନା କରିବା ନିମନ୍ତେ ମୁଁ ଓ ଶେରୱାନୀ ଯାଉଥିଲୁ—କାର୍ଯ୍ୟକାରୀ ସମିତି ଶେଷରେ କି ନିଷ୍ପତ୍ତି କରିବେ, ମୁଁ ସେ ବିଷୟରେ ନିଶ୍ଚିତ ନ ଥିଲି ।

ଏହି ସବୁ ବିଚାର କରି ମୁଁ ଭାବିଲି ଯେ ଆମମାନଙ୍କୁ ବମ୍ବେ ଯିବାକୁ ସେମାନେ ଛାଡ଼ିଦେବେ ଏବଂ ଅନ୍ତତଃ ବର୍ତ୍ତମାନ ପାଇଁ ସରକାର ଏହି ସାମୟିକ ଆଇନ ଅମାନ୍ୟ ସହ୍ୟ କରିବେ । ମାତ୍ର ଏଥିରେ ମୋର ଅନ୍ତସ୍ଥା ବୋଧ ହେଲା ନାହିଁ ।

ଆମେ ଟ୍ରେନରେ ଚଢ଼ିଲୁ ମାତ୍ରେ ସୀମାନ୍ତ ପ୍ରଦେଶର ନୂତନ ଅର୍ଡ଼ିନାନ୍ସ ଜାରି ଏବଂ ଖାଁ ଅବଦୁଲ ଗଫୁର୍ ଖାଁ, ଡାକ୍ତର ଖାଁ ସାହେବ

ଓ ଅନ୍ୟମାନଙ୍କ ଗିରଫ ସମ୍ବାଦ ପାଇଲୁ । ହଠାତ୍ ଇଚ୍ଛାଗଞ୍ଜରେ ଆମ ଗାଡ଼ି (ବମ୍ବେ ମେଲ) ଅଟକିଲା । ଏହା ଏକ ଅଦରକାରୀ ଷ୍ଟେସନ ଏବଂ ଏଠାରେ ସାଧାରଣତଃ ଗାଡ଼ି ରହେନା । ଆମକୁ ଗିରଫ କରିବା ନିମନ୍ତେ ପୁଲିସ କର୍ମଚାରୀମାନେ ଚଢ଼ିଲେ । ରେଲ ଲାଇନ ପାଖରେ ପୁଲିସଙ୍କର ଗୋଟିଏ କଳା ଗାଡ଼ି ଅପେକ୍ଷା କରି ରହିଥିଲା ଏବଂ ମୁଁ ଓ ଶେରୱାନୀ ସେହି ଆବଦ୍ଧ ଗାଡ଼ିରେ ବସି ନୈନି ଜେଲକୁ ନିଆ ହୋଇଗଲୁ । ସେଦିନ ସକାଳ ଖ୍ରୀଷ୍ଟମାସ ପର୍ବ ଉପଲକ୍ଷେ ଛୁଟିର ଦିନ ଥିଲା । ସେଦିନ ଆମକୁ ଗିରଫ କରିଥିବା ଇଂରେଜ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ବଡ଼ ଅସୁଖୀ ଓ ବିଷଣ୍ଣ ଦେଖା ଯାଉଥିଲେ । ଆମ ପାଇଁ ତାଙ୍କର ବଡ଼ଦିନ ଆମୋଦଟା ନଷ୍ଟ ହେଲା ।

ପୁଣି କାରାଗାରରେ !

---

## ଗିରଫ, ଅର୍ଡ଼ିନାନ୍ସ ଓ ବାଜ୍ୟାପ୍ତି

ଆମ ଗିରଫର ଦୁଇଦିନ ପରେ ଗାନ୍ଧିଜୀ ବମ୍ବେରେ ଓହ୍ଲାଇଲେ ଏବଂ ସେଠାରେ ପହଞ୍ଚି ସେ ସବୁ ଖବର ପାଇଲେ । ସେ ଲଣ୍ଡନରେ ବଙ୍ଗଳା ଅର୍ଡ଼ିନାନ୍ସ ସମ୍ବନ୍ଧରେ ଶୁଣି ସେଥିପାଇଁ ବଡ଼ ବିବ୍ରତ ହୋଇ ପଡ଼ିଥିଲେ । ଏଠି ଆସି ଦେଖିଲେ ବଡ଼ଦିନର ଉପହାରସ୍ୱରୂପ ତାଙ୍କୁ ଯୁକ୍ତପ୍ରଦେଶ ଓ ସୀମାନ୍ତ ପ୍ରଦେଶର ଅର୍ଡ଼ିନାନ୍ସ ଅର୍ପଣ କରି ଯାଇଛି ଏବଂ ଯୁକ୍ତପ୍ରଦେଶ ଓ ସୀମାନ୍ତର କେତେକ ଘନିଷ୍ଠ ସହକର୍ମୀ ଗିରଫ ହୋଇଛନ୍ତି । ସୌଭାଗ୍ୟବଶତଃ ଯୁଦ୍ଧବାକୁ ଆରମ୍ଭ କରିଥିଲୁ—ଶାନ୍ତିର ସମସ୍ତ ଆଶା ଯାଇଥିଲା; ତଥାପି ସେ ଏଥିରୁ ଏକ ବାଟ କାଢ଼ିବା ଲାଗି ଚେଷ୍ଟା କଲେ ଏବଂ ସେହି ଉଦ୍ଦେଶ୍ୟରେ ବଡ଼ଲାଟ ଲର୍ଡ଼ ଉଇଲିଙ୍ଗ୍ଡନଙ୍କ ସାକ୍ଷାତ୍ ଚାହିଁଲେ । ନୂଆଦିଲ୍ଲୀରୁ ଜବାବ ଆସିଲା, କେତେକ ସର୍ତ୍ତରେ କେବଳ ସାକ୍ଷାତ୍ ହୋଇପାରେ—ଅର୍ଥାତ୍ ସେ ବଙ୍ଗଳା, ଯୁକ୍ତପ୍ରଦେଶ

ଓ ସୀମାନ୍ତର ବର୍ତ୍ତମାନ ପରିସ୍ଥିତି ଏବଂ ନୂତନ ଅର୍ଡିନାନ୍ସ ଏବଂ ସେହି ହେତୁ ହୋଇଥିବା ଗିରଫ ସମ୍ବନ୍ଧରେ କିଛି ଆଲୋଚନା କରିବେ ନାହିଁ । (ମୁଁ ଏହା ମନରୁ ଲେଖୁଛି—ମୋ ନିକଟରେ ବଡ଼ଲାଟଙ୍କ ଉତ୍ତର ଅବଲଣୀ ନାହିଁ ।) ଯେଉଁ ବିଷୟ ଆଲୋଚନା କରିବା ନିମନ୍ତେ ନିଷେଧ କରାଗଲା, ସେଗୁଡ଼ିକହିଁ ସମଗ୍ର ଦେଶରେ ଆଲୋଚିତ ହେଉଥିଲା । ଏହାଛଡ଼ା ଗାନ୍ଧିଜୀ ବା ଅନ୍ୟ କଂଗ୍ରେସ ନେତା ଆଉ କେଉଁ କଥା ଆଲୋଚନା ଅବକାଶ ଭାବରେ ବଡ଼ଲାଟ ସହିତ କରନ୍ତେ । ବର୍ତ୍ତମାନ ପରିଷ୍କାର ଜଣାପଡ଼ିଲା, ଭାରତ ସରକାର କଂଗ୍ରେସକୁ ଦମନ କରିବା ନିମନ୍ତେ ମନସ୍ଥ କରି ସାରିଛି ଏବଂ ଆଉ କୌଣସି କଥା ଶୁଣିବ ନାହିଁ । ଆଇନ ଅମାନ୍ୟ ଆରମ୍ଭ କରିବା ଛଡ଼ା ଅନ୍ୟ ଉପାୟ କାର୍ଯ୍ୟକାରୀ ସମିତି ଆଗରେ ନଥିଲା । ସେମାନେ ଯେ କୌଣସି ମୁହୂର୍ତ୍ତରେ ଗିରଫ ହୋଇଯିବେ ବୋଲି ଆଶା କରୁଥିଲେ ଏବଂ ସେମାନେ ବାଧ୍ୟ ହୋଇ ଅନ୍ତର ହେବା ପୂର୍ବରୁ ଦେଶକୁ ଏକ ନେତୃତ୍ୱ ଦେବାକୁ ଚାହୁଁଥିଲେ । ମୋଟାମୋଟି ଆଇନ ଅମାନ୍ୟମୂଳକ ପ୍ରସ୍ତାବ ଗୃହୀତ ହେଲା ଏବଂ ବଡ଼ଲାଟଙ୍କ ସହିତ ସାକ୍ଷାତ କରିବା ନିମନ୍ତେ ଗାନ୍ଧିଜୀ ଆଉଥରେ ଚେଷ୍ଟା କଲେ ଏବଂ ବିନା ସର୍ତ୍ତରେ ସାକ୍ଷାତ୍ ପାଇଁ ସେ ତାଙ୍କୁ ଦୁଇଗୋଟି ଅରି ତାର ପଠାଇଲେ । ଜବାବରେ ଗାନ୍ଧିଜୀ ଓ କଂଗ୍ରେସ ସଭାପତିଙ୍କୁ ଗିରଫ କରାଗଲା ଏବଂ ଅଙ୍ଗୁଳି ଇଙ୍ଗିତ ଦିଆଗଲା—ଯାହା ଫଳରେ ସମଗ୍ର ଦେଶରେ ଭୀଷଣ ଅତ୍ୟାଚାର ଆରମ୍ଭ ହୋଇଗଲା । ପରିଷ୍କାର ଜଣାପଡ଼ିଲା ଯେ, ଆଉ ଦେଶ ସଂଗ୍ରାମ ଚାହୁଁ ବା ନ ଚାହୁଁ ପଛକେ ସରକାର ଏଥିଲାଗି ବ୍ୟଗ୍ର ଓ ଆଗରୁ ପ୍ରସ୍ତୁତ ହୋଇ ରହିଥିଲେ ।

ଅବଶ୍ୟ ଆମେ ଜେଲରେ ଥିଲୁ ଏବଂ ଏ ସବୁ ସମ୍ବାଦ ଅସ୍ପଷ୍ଟ ଓ ଖାପଛଡ଼ା ଭାବରେ ଆମେ ପାଉଥିଲୁ । ନୂତନ ବର୍ଷରେ ଆମର ବଦଳି ହେବାର ସ୍ଥିର ହୋଇଥିଲା; ତେଣୁ ବିଚାରାଧୀନ ବନ୍ଦୀଖାନାରେ ଆମେ ବନ୍ଦୀମାନଙ୍କ ଅପେକ୍ଷା ଅଧିକ ଦେଖା ସାକ୍ଷାତ୍ କରିପାରିଲୁ ।

ବଡ଼ଲାଟ ସାକ୍ଷାତ୍ ଦେବାଲାଗି ସମ୍ମତ ହେବେ କି ନା ସେ ସମ୍ବନ୍ଧରେ ଖୁବ୍ ଆଲୋଚନା ଚାଲିଥିବାର ଆମେ ଶୁଣିଲୁ—ସତେ କି ଦେଶରେ ଏହି ଗୋଟିକ କଥାହିଁ ପ୍ରକୃତ ବିଚାର୍ଯ୍ୟ ବିଷୟ ।

ସାକ୍ଷାତ୍ କଥା ହିଁ ଅନ୍ୟ ସବୁ ବିଷୟକୁ ଘୋଡ଼ାଇ ପକାଇଲା । କଥା ଉଠିଲା ଯେ, ଲର୍ଡ ଇର୍ଉଇନ୍ ଥିଲେ ସାକ୍ଷାତ୍ ଦେବାକୁ ସମ୍ମତ ହୋଇଥାନ୍ତେ—ତାଙ୍କର ଓ ଗାନ୍ଧିଜୀଙ୍କର ସାକ୍ଷାତ୍ ହୋଇ ପାରିଥିଲେ ସବୁକଥା ସୁରୁଖୁରୁରେ ହୋଇ ଯାଇଥାନ୍ତା । ଭାରତୀୟ ଖବରକାଗଜ-ମାନେ ଏହି ପରିସ୍ଥିତି ସମ୍ବନ୍ଧରେ ଏପରି ଅଦ୍ଭୁତ ଦୃଷ୍ଟିକୋଣରୁ ଭାବରେ ବିଚାର କରିବା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି—ସେମାନେ ବାସ୍ତବତାକୁ ଭୁଲିଗଲେ ; ଭାରତ ଜାତୀୟ କଂଗ୍ରେସ ଓ ବ୍ରିଟିଶ ସାମ୍ରାଜ୍ୟବାଦ—ଏହି ଦୁଇଙ୍କର ମିଳନ ହୋଇ ନ ପାରେ; ଏମାନଙ୍କ ଭିତରେ ହେବା ଅବଶ୍ୟମ୍ଭାବୀ ସଂଘର୍ଷକୁ ବିଚାର କଲେ ଏହା କାହାରି ବ୍ୟକ୍ତିଗତ ଇଚ୍ଛା ଉପରେ ନିର୍ଭର କରେ ବୋଲି କିପରି କୁହାଯିବ ? ଦୁଇଟି ଐତିହାସିକ ଶକ୍ତିର ସଂଘର୍ଷ କଣ ପରସ୍ପରର ଭଦ୍ରତା ଓ ହାସ୍ୟଦ୍ୱାରା ଦୂର ହୋଇଯିବ ? ଗୋଟିଏ ଦଳରେ କାର୍ଯ୍ୟ କରିବା ନିମନ୍ତେ ଗାନ୍ଧିଜୀ ବାଧ୍ୟ ହେଲେ—କାରଣ ଭାରତ ଜାତୀୟବାଦ ଜୀବନ୍ତ ସମସ୍ୟାମାନଙ୍କରେ ବିଦେଶୀ କର୍ତ୍ତୃତ୍ୱ ପାଖରେ ଜାଣିଶୁଣି ମୁଣ୍ଡ ନୁଆଁଇ ପାରେ ନା କିମ୍ବା ଆତ୍ମସମର୍ପଣ କରି ପାରେ ନା । ଜାତୀୟତାର ଏହି ଆହ୍ୱାନର ସମ୍ମୁଖୀନ ହେବା ପାଇଁ ଏବଂ ବ୍ରିଟିଶ ସ୍ୱାର୍ଥରକ୍ଷା କରିବା ନିମନ୍ତେ ଭାରତର ଇଂରେଜ ବଡ଼ଲାଟଙ୍କୁ ଏକ ନିର୍ଦ୍ଦିଷ୍ଟ ଭାବରେ କାର୍ଯ୍ୟ କରିବାକୁ ହୋଇଥିଲା—ତେଣୁ ସେତେ-ବେଳେ କିଏ ବଡ଼ଲାଟ ଥିଲେ ନ ଥିଲେ, ସେଥିରେ କିଛି ଯାଏ ଆସେ ନା । ଲର୍ଡ ଇର୍ଉଇନ୍ ଠିକ୍ ଲର୍ଡ ଉଇଲିଂଡନ୍‌ଙ୍କ ପରି କାର୍ଯ୍ୟ କରିଥାନ୍ତେ, କାରଣ ସେ ଦୁହେଁ ହେଉଛନ୍ତି ବ୍ରିଟିଶ ସାମ୍ରାଜ୍ୟବାଦ ନୀତିର ଯନ୍ତ୍ର ମାତ୍ର । କେବଳ ମୂଳନୀତିର ସାମାନ୍ୟ ପରିବର୍ତ୍ତନ ଅବା ହୋଇ ଥାଇପାରେ । ବାସ୍ତବିକ ପରେ ଲର୍ଡ ଇର୍ଉଇନ୍ ବ୍ରିଟିଶ ସରକାରର ଜଣେ ସଭ୍ୟ

ହେଲେ ଏବଂ ଭାରତର ସରକାର ଯାହା କରିଥିଲ ସେଥିରେ ସେ ସମ୍ପୂର୍ଣ୍ଣ-ରୂପେ ସହଯୋଗ କରିଥିଲେ । ମୋ ମତରେ ଏ ଭାରତରେ ବ୍ରିଟିଶ ଶାସନ ସକାଶେ କୌଣସି ବଡ଼ଲାଟଙ୍କୁ ବ୍ୟକ୍ତିବିଶେଷ ଭାବରେ ପ୍ରଶଂସା ବା ନିନ୍ଦା କରିବା ନିତାନ୍ତ ମୂର୍ଖତାର କଥା—ଏହା ସବୁ ଯେଉଁମାନେ କରନ୍ତି ସେମାନେ ହୁଏତ ପ୍ରକୃତ ସମସ୍ୟା ବିଷୟରେ ଅଜ୍ଞ, ନଚେତ୍ ଜାଣି ଶୁଣି ପ୍ରକୃତ ସମସ୍ୟାକୁ ଏଡ଼ାଇବାକୁ ଚାହାନ୍ତି ।

୧୯୩୨ ମସିହା ଜାନୁୟାରୀ ତା ୪ ରିଖ ଗୋଟିଏ ସ୍ମରଣୀୟ ଦିବସ । ସମସ୍ତ ଆଲୋଚନା ଓ ମୁକ୍ତି ବନ୍ଦ ହେଲା । ସେହିଦିନ ସକାଳେ ଗାନ୍ଧିଜୀ ଏବଂ କଂଗ୍ରେସ ସଭାପତି ବଲ୍ଲଭଭାଇ ପଟେଲ ଗିରଫ ହେଲେ ଏବଂ ସେମାନଙ୍କୁ ବିନା ବିଚାରରେ ଅଟକ ବନ୍ଦୀରୂପେ ରଖାଗଲା । ମାଜିଷ୍ଟ୍ରେଟ ଓ ପୁଲିସ କର୍ମ-ଚାରୀମାନଙ୍କୁ ବହୁତ କ୍ଷମତା ଦେଇ ଚାରିଟି ନୂତନ ଅର୍ଡିନାନ୍ସ ଜାରି ହେଲା । ନାଗରିକ ସ୍ୱାଧୀନତା ଲୋପ ପାଇଲା ଏବଂ କର୍ତ୍ତୃପକ୍ଷମାନେ ସମସ୍ତ ବାଜ୍ୟାପ୍ତ କରି ପାରୁଥିଲେ, ଲୋକଙ୍କୁ ଗିରଫ କରିପାରିଲେ, ସମସ୍ତ ଭାରତ ଯେପରି ଗୋଟାଏ ଅବରୁଦ୍ଧ ଦେଶପରି ଘୋଷଣା କରାଗଲା ଏବଂ କେଉଁଠି କିପରି ଭାବରେ ପ୍ରୟୋଗ କରାହେବ, ତାହା ସ୍ଥାନୀୟ କର୍ମଚାରୀଙ୍କ ଉପରେ ଛାଡ଼ି ଦିଆ ଯାଇଥିଲା । *

ମୁକ୍ତପ୍ରଦେଶ ଜରୁରୀ କ୍ଷମତା ଅର୍ଡ଼ିନାନ୍ସ ଅନୁସାରେ ନୈନି ଜେଲ ଭିତରେ ଜାନୁୟାରୀ ୪ ତାରିଖରେ ଆମର ବିଚାର ହେଲା । ଶେରୱାନୀଙ୍କୁ ୬ ମାସ ସଶ୍ରମ ଜେଲ ଓ ଟ ୧୫୦ ଙ୍କା ଜୋରିମାନା ହେଲା; ମୋତେ

---

* ୧୯୩୨ ମସିହା ମାର୍ଚ୍ଚ ୨୪ ତାରିଖରେ ଭାରତ ସଚିବ ସାର୍ ସାମୁଏଲ ହୋର୍ ପାର୍ଲିମେଣ୍ଟରେ କହିଥିଲେ, ମୁଁ ସ୍ୱୀକାର କରୁଛି ଯେ ଆମେ ଯେଉଁସବୁ ଅର୍ଡିନାନ୍ସ ଜାରି କରିଛୁ ତାହା ଅତ୍ୟନ୍ତ ଭୀଷଣ ଓ କଠୋର । ଏହାଭିତରେ ଭାରତୀୟ ଜୀବନର ପ୍ରତ୍ୟେକ କାର୍ଯ୍ୟ ଆସି ପାରେ ।

ଦୁଇବର୍ଷ ସଶ୍ରମ ଜେଲ ଓ ୫ ୫୦୦ ଙ୍କା ଜୋରିମନା (ନ ଦେଲେ ଅଭ ୬ ମାସ) ଶାସ୍ତି ହେଲା – ଆମର ଅପରାଧ ଏକା, ଏଲ୍ଲାହାବାଦ ସହର ସୀମା ଭିତରେ ରହିବାଲାଗି ଏକ ଆଦେଶ ଆମ ଉପରେ ଜାରି କରାଯାଇଥିଲା । ଆମେ ଏକାଠ ବମ୍ବେ ଯିବାକୁ ଚେଷ୍ଟାକରି ସମାନ ଭାବରେ ଏହି ଆଦେଶ ଅମାନ୍ୟ କରିଥିବାରୁ ଏକ ସାଙ୍ଗରେ ଗିରଫ ହେଲୁ ଏବଂ ଏକ ଦଫାରେ ଦୁହିଙ୍କର ବିଚାର ହେଲା – ଅଥଚ ଆମର ଶାସ୍ତି ଭିନ୍ନ ପ୍ରକାରର ହେଲା । ହଁ, ଗୋଟିଏ କଥାରେ ପାର୍ଥକ୍ୟ ଥିଲା । ମୁଁ ଜିଲା ମାଜିଷ୍ଟ୍ରେଟଙ୍କୁ ଲେଖି ଦେଇଥିଲି ଯେ, ମୁଁ ସେ ଆଇନ ନ ମାନି ବମ୍ବେ ଯିବି; ଶେରୱାନୀ ସରକାରୀ ଭାବରେ ସେପରି ନୋଟିସ ଦେଇ ନ ଥିଲେ । ମାତ୍ର ସେ ଯେ ଯିବେ ଏହା ପରିଷ୍କାର ରୂପେ ଜଣାଥିଲା । ଖବର କାଗଜରେ ବି ବାହାରି ଥିଲା । ଠିକ୍ ବିଚାର ଶେଷରେ ଶାସ୍ତି ଘୋଷଣା ସଙ୍ଗେ ସଙ୍ଗେ ଶେରୱାନୀ ବିଚାର କରୁଥିବା ମାଜିଷ୍ଟ୍ରେଟଙ୍କୁ ପଚାରିଲେ—କଣ ସାମ୍ପ୍ରଦାୟିକ କାରଣରୁ ଏପରି କମ୍ ଶାସ୍ତି ମତେ ମିଳିଲା କି ? ଏଥିରେ ଉପସ୍ଥିତ ଥିବା ଲୋକେ ଉପହାସ କଲେ ଏବଂ ମାଜିଷ୍ଟ୍ରେଟ ନିତାନ୍ତ ବଡ଼ ଅପ୍ରସ୍ତୁତ ହୋଇଗଲେ ।

ଜାନୁୟାରୀ ୪ ତାରିଖ ସେହି ସ୍ମରଣୀୟ ଦିବସରେ ଅନେକ କଥା ଘଟିଗଲା । ଆମେ ଯେଉଁଠି ଥିଲୁ ସେଠୁ ଅଳ୍ପଦୂରରେ ଏଲାହାବାଦ ସହରର ବିରାଟ ଜନତା ସହିତ ପୁଲିସ ଓ ଫୌଜଙ୍କର ସଙ୍ଘର୍ଷ ହେଲା—ଏହା ଫଳରେ ଲାଠିମାଡ଼ ହେଲା—କେତେକ ଲୋକ ମରିଗଲେ ଓ ଆହତ ହେଲେ । ଆଇନ ଅମାନ୍ୟ ବନ୍ଦୀଙ୍କ ଦ୍ୱାରା ଜେଲ ଭରିଗଲା । ପ୍ରଥମେ ଏହି ବନ୍ଦୀମାନଙ୍କୁ ଜିଲା ଜେଲମାନଙ୍କୁ ପଠାଯାଏ – ଅଧିକ ହୋଇଗଲେ ନୈନି ଓ ଅନ୍ୟ କେନ୍ଦ୍ର ଜେଲମାନଙ୍କୁ ପଠାଯାଏ । ପରେ ସମସ୍ତ ଜେଲ ପୂର୍ଣ୍ଣ ହୋଇଗଲା ଏବଂ ପ୍ରକାଣ୍ଡ ଅସ୍ଥାୟୀ ଶିବିର ଜେଲ ସବୁ ତିଆରି କରାଗଲା ।

ଆମେ ନୈନି ଜେଲରେ ଯେଉଁ କ୍ଷୁଦ୍ର ବେଷ୍ଟନୀ ଭିତରେ ଥାଉଁ ସେଠାକୁ ଖୁବ୍ କମ୍ ଲୋକ ଆସିଥିଲେ । ମୋର ପୁରୁଣା ସାଥି ନର୍ମଦା

ପ୍ରସାଦ ଆମ ପାଖକୁ ଆସିଲେ । ରଣଜିତ୍ ପଣ୍ଡିତ ଏବଂ ମୋର ସମ୍ପର୍କ ଭାଇ ମୋହନଲାଲ ନେହେରୁ ମଧ୍ୟ ଆସିଲେ । ୬ ନମ୍ବର ବାରାକ୍‌ରେ ଆମ ଭିତରକୁ ହଠାତ୍ ବର୍ଣ୍ଣାଡ଼ ଆଲୁବିହାର ଆସିଲେ—ସେ ସିଲୋନର ଜଣେ ଯୁବକ ବନ୍ଦୀ—ବାରିଷ୍ଟରୀ ପାସ କରି ନିକଟରେ ଇଂଲଣ୍ଡରୁ ଫେରିଆନ୍ତି ; ଯେଉଁସବୁ ଶୋଭାଯାତ୍ରା ଆଦି ହୁଏ, ସେଥିରେ ଯୋଗ ନ ଦେବାପାଇଁ ମୋର ଭଉଣୀ ତାଙ୍କୁ ନିଷେଧ କରିଥାନ୍ତି; ତଥାପି ଏକ ଉତ୍ସାହ ମୁହୂର୍ତ୍ତରେ ସେ କଂଗ୍ରେସ ଶୋଭାଯାତ୍ରାରେ ଯୋଗଦେଲେ ଏବଂ ପୁଲିସ କଳା ମଟର ଗାଡ଼ି ତାଙ୍କୁ ଜେଲକୁ ନେଇ ଆସିଲା ।

କଂଗ୍ରେସ ବେଆଇନ ଘୋଷଣା ହୋଇଥିଲା—ଉପରେ କାର୍ଯ୍ୟକାରୀ ସମିତିଠାରୁ ଆରମ୍ଭ କରି ପ୍ରାଦେଶିକ କମିଟି ଏବଂ ଅଧିକାଂଶ ସ୍ଥାନୀୟ କମିଟି ସବୁ ବେଆଇନ ହେଲା । କଂଗ୍ରେସ ସହିତ ସମ୍ପୃକ୍ତ ବା ସହାନୁଭୂତିସୂଚକ ବା ପ୍ରଗତିଶୀଳ ଅନୁଷ୍ଠାନ ଯଥା—କୃଷକସଭା, ଯୁବକସଂଘ, ପ୍ରଗତିଶୀଳ ଉନ୍ନତ ଛାତ୍ରସଂଘ, ରାଜନୀତିକ ଅନୁଷ୍ଠାନ, ଜାତୀୟ ବିଶ୍ୱବିଦ୍ୟାଳୟ ଓ ପାଠଶାଳା, ହାସପାତାଳ, ସ୍ୱଦେଶୀ ବ୍ୟବସାୟ, ପୁସ୍ତକାଗାର (ଲାଇବ୍ରେରୀ) ଇତ୍ୟାଦି ବେଆଇନ ଘୋଷିତ ହେଲା । ଏହି ତାଲିକା ସୁଦୀର୍ଘ । ପ୍ରତ୍ୟେକ ବଡ଼ ବଡ଼ ପ୍ରଦେଶରେ ପ୍ରାୟ ଶହ ଶହ ଅନୁଷ୍ଠାନ ବେଆଇନ ହେଲା । ସମଗ୍ର ଭାରତରେ ମୋଟ ସଂଖ୍ୟା କେତେ ହଜାର ହେବ ଏବଂ ଏତେ-ଗୁଡ଼ିଏ ଅନୁଷ୍ଠାନ ବେଆଇନ ଘୋଷିତ ହେବାରୁ କଂଗ୍ରେସ ଜାତୀୟ ଅନୁଷ୍ଠାନ ପକ୍ଷରେ ଏକ ଗୌରବ ମନେହେଲା ।

ମୋର ସ୍ତ୍ରୀ ରୋଗଶଯ୍ୟାରେ ବମ୍ବେରେ ପଡ଼ିଥାଏ । ଏଥିଠିକ ଆଇନ ଅମାନ୍ୟରେ ଯୋଗ ଦେବାକୁ ଅସମର୍ଥ ହେବାରୁ ଦୁଃଖ କରୁଥାଏ । ମୋର ମାଆ ଏବଂ ଦୁଇ ଭଉଣୀଯାକ ଉତ୍ସାହର ସହିତ ଆନ୍ଦୋଳନରେ ଯୋଗ ଦେଲେ ଏବଂ ଅଳ୍ପଦିନ ପରେ ଦୁଇଭଉଣୀ ଯାକ ବର୍ଷେ ଲେଖାଏଁ କାରାବାସ ପାଇ ଆସିଲେ । ନୂଆ ହୋଇ ଜେଲକୁ ଆସୁଥିବା ବନ୍ଦୀ ଏବଂ ଆମକୁ ଯେଉଁ ସାପ୍ତାହିକ ପତ୍ରିକା ପଢ଼ିବାକୁ ଦିଆଯାଏ,

ସେଥିରୁ ଆମେ ଟିକିଏ ଟିକିଏ ସମ୍ବାଦ ପାଉ । କଣ ହେଉଥିଲା, ଆମେ ଖାଲି ଅନୁମାନ କରି ଜାଣୁଥିଲୁ, କାରଣ ଖବରକାଗଜମାନଙ୍କ ଉପରେ କଠୋର କଟକଣା ଥିଲା—ସମ୍ବାଦପତ୍ର ଓ ସମ୍ବାଦବାହୀ ଅନୁଷ୍ଠାନମାନଙ୍କ ଉପରେ ଗଭୀର ଅର୍ଥଶାସ୍ତି ଭୟ ଦେଖାଇ ସମ୍ବାଦ ପ୍ରକାଶ ବନ୍ଦ କରିଦିଆଯାଇଥିଲା । କେତେକ ପ୍ରଦେଶରେ ଏପରିକି ଗିରଫ ହୋଇଥିବା ଓ ଶାସ୍ତି ପାଇଥିବା ବ୍ୟକ୍ତିର ନାମ ପର୍ଯ୍ୟନ୍ତ ଦେବା ଏକ ଅପରାଧ ଥିଲା ।

ତେଣୁ ଆମେ ବାହାର ସଂଘର୍ଷରୁ ବିଚ୍ଛିନ୍ନ ହୋଇ ନୈନି ଜେଲରେ ଥାଉ—ତଥାପି ନାନା ଉପାୟରେ ଏହା ସହିତ ଆମେ ଜଡ଼ିତ ଥାଉଁ; ଆମେ ସୂତାକଟା, ପଢ଼ିବା ବା ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ରହୁଥାଉଁ; ସମୟ ସମୟରେ ଅନ୍ୟ ବିଷୟରେ କଥାବାର୍ତ୍ତା କରୁ, ମାତ୍ର ସବୁବେଳେ ବନ୍ଦୀଶାଳା ବାହାରେ କଣ ହେଉଛି, ସେ ସମ୍ବନ୍ଧରେ ଭାବୁଥାଉ । ଆମେ ସଂଗ୍ରାମ ବାହାରେ ଥାଇ ସୁଦ୍ଧା ସଂଗ୍ରାମ ଭିତରେ ଥିଲୁଁ । ସମୟ ସମୟରେ ଆମେ ଆଶାରେ ଅଧୀର ହୋଇ ପାଉଥିଲୁ; କିଛି ଭୁଲ ଦେଖିଲେ ମନରେ କ୍ରୋଧ ଆସୁଥିଲା; ଦୁର୍ବଳତା ବା ଅସାରତା ଦେଖିଲେ ବିରକ୍ତିଭାବ ଆସୁଥାଏ । ବେଳେ ବେଳେ ଆମେ ସମ୍ପୂର୍ଣ୍ଣ ଉଦାସୀନ ଥାଉଁ ଏବଂ ଧୀର ଓ ଅନାସକ୍ତ ଭାବରେ କଥାଟି ଆଲୋଚନା କରୁ । ଯେତେବେଳେ ବୃହତ୍ ଶକ୍ତି ସବୁ ଘୂରୁଛି ଏବଂ ପେଷଣ ଚାଲିଛି, ସେତେବେଳେ ବ୍ୟକ୍ତିବିଶେଷର ତ୍ରୁଟି ବା ଦୁର୍ବଳତାରେ କିଛି ଯାଏ ଆସେ ନା । ମୁଁ ଆସନ୍ତା ଦିନ କଥା ଭାବେ—ଏହି ଓ ବିପଦ ସଂଘର୍ଷ, ବୀରତ୍ୱପୂର୍ଣ୍ଣ ଉତ୍ସାହ, ଦୂଷଣ, ଦମନ ଏବଂ ଘୃଣ୍ୟ କାପୁରୁଷତାର ପରିଣତି କେଉଁଠି? ଆମେ କେଉଁ ଆଡ଼କୁ ଯାଉଛୁଁ ? ଭବିଷ୍ୟତ ଆମଠାରୁ ଲୁଚି ରହିଛି ; ଭବିଷ୍ୟତ ଲୁଚି ରହିଛି; ମନ୍ଦ କଣ ? ଆମ ପକ୍ଷରେ ବର୍ତ୍ତମାନ ଉପରେ ମଧ୍ୟ ଏକାଂଶରେ ଗୋଟାଏ ଆବରଣ ରହିଛି । ମାତ୍ର ଆମେ ଏହା ଜାଣିଥିଲୁ ଯେ, ବର୍ତ୍ତମାନ ଓ ଭବିଷ୍ୟତ ସବୁଠାରେ ବିବାଦ, ଦୁଃଖ ଓ ତ୍ୟାଗ ପୂର୍ଣ୍ଣ ରହିଛି ।

"ଏହି ସମତଳ କ୍ଷେତ୍ରରେ ପୁଣି ଭାଇ ସଂଗ୍ରାମ ଆରମ୍ଭ ହେବ; ନାନାଥାସ୍ ରକ୍ତ ରଞ୍ଜିତ ହେବ; ହେକ୍ଟର ଏବଂ ଆକାକସ ପୁଣି ଆସିବେ; ହେଲେନ୍ ତାଙ୍କ ଉପରକୁ ଆସି ସେ ଦୃଶ୍ୟ ଦେଖିବେ।"

"ସେତେବେଳେ ଆମେ ସ୍ୱପ୍ନରେ ସଂଗ୍ରାମ କରିବୁ ଏବଂ ସଂଗ୍ରାମ ଭିତରେ ଦେଶାତ୍ମାନ୍ ହେବୁ; ଆନ୍ଧ ଆଶା ଓ ଅନ୍ଧ ହତାଶା ଭିତରେ ଆମେ ଦୋଳାୟମାନ ହେବୁ; ଆମେ ଆନନ୍ଦ ପାଇବୁ ଯେ ଆମେ ଆମ ଜୀବନ ଦେଲୁ— ମାତ୍ର ଏହା କଣ ଆଣିବ ଆମେ କେବେହେଁ ଜାଣିପାରିବୁ ନାହିଁ।

—ମାଥ୍ୟୁ ଆର୍ଣ୍ଣଲ୍ଡ୍।

---

# ଆତ୍ମ ପ୍ରଚାରର ଧୂମ

୧୯୩୭ ମସିହାର ପ୍ରଥମ ଭାଗ ଖୁବ ଉଲ୍ଲେଖଯୋଗ୍ୟ—ବିଶେଷତଃ ବ୍ରିଟିଶ କର୍ତ୍ତାମାନେ ଯେପରି ଅଦ୍ଭୁତ ଭାବରେ ନିଜର ପ୍ରଚାର କରିବାରେ ଲାଗିପଡ଼ିଲେ ତାହା ଅଦ୍ଭୁତ ଦେଖିବାର କଥା। ଉଚ୍ଚଠାରୁ ନିମ୍ନ ସମସ୍ତ ସରକାରୀ କର୍ମଚାରୀ ପ୍ରଚାର କରିବାକୁ ଲାଗିଲେ—ସେମାନେ ଶାନ୍ତିପ୍ରିୟ ଓ ଧାର୍ମିକ ଅଥଚ କଂଗ୍ରେସ ପାପୀ ଓ କଳହପ୍ରିୟ; ସେମାନେ ଗଣତନ୍ତ୍ର ମୃହାନ୍ତ—ଅଥଚ କଂଗ୍ରେସ ଉଦ୍ଦେଶ୍ୟର ଜାତି ଅପଛନ୍ଦ କରେ। ମହତ୍ ଉଦ୍ଦେଶ୍ୟ ହାସଲ କରିବା ଉତ୍ସାହରେ ସେମାନେ ଅର୍ଡିନାନ୍ସ, ସ୍ୱାଧୀନତାର ଦମନ, ସମ୍ବାଦପତ୍ର ଓ ଛାପାଖାନା ଦମନ, ବିନା ବିଚାରରେ ଲୋକଙ୍କୁ ବନ୍ଦୀ କରିବା, ଅର୍ଥ ଓ ସମ୍ପତ୍ତି ବାଜ୍ୟାପ୍ତ କରିନେବା ଏବଂ ଦିନକୁ ଦିନ ଆଉ ଯେଉଁ ସବୁ ଘଟଣା ଘଟୁଥିଲା ସେହି ଛୋଟ କଥା ସବୁ ଭୁଲିଗଲେ। ସେମାନେ ଭାରତରେ ବ୍ରିଟିଶ ଶାସନର ମୂଳ ଆଚରଣ ବି ଭୁଲିଗଲେ। ସରକାରର ମନ୍ତ୍ରୀମାନେ (ଆମ ନିଜ ଦେଶ ଲୋକ) ପ୍ରଚାର କରିବାକୁ ଲାଗିଲେ। କଂଗ୍ରେସ

ଜେଲକୁ ଯାଇ ନିଜର ସ୍ୱାର୍ଥ ଦେଖୁଛନ୍ତି, ଅଥଚ ସେମାନେ ମାସିକ ସାମାନ୍ୟ କେତେ ହଜାର ଟଙ୍କାର ବେତନ ନେଇ ସାଧାରଣ ଦୁତ ସକାଶେ କାମ କରୁଛନ୍ତି । କିମ୍ବଦନ୍ତୀ ମାଜିଷ୍ଟ୍ରେଟମାନେ ଆମକୁ ଖାଲି ଦୀର୍ଘଦିନ ଶାସ୍ତି ଦେଲେ ତାହା ନୁହେଁ, ବିଗୃହିବେଳେ ବକ୍ତୃତା ବି ଦେଲେ ଏବଂ ବେଳେ ବେଳେ କଂଗ୍ରେସ ଓ ବ୍ୟକ୍ତିବିଶେଷଙ୍କ ଉପରେ ଗାଳି ବର୍ଷଣ ହେଲା । ଏପରିକି ସାର୍ ସାମୁଏଲ ହୋର୍ ଯଥୋଚିତ ଭାରତ ସଚିବର ମହାମାନ୍ୟତ ପଦରେ ଥାଇ ସୁଦ୍ଧା ଘୋଷଣା କଲେ ଯେ କୁକୁରମାନେ ଭୁକୁଥିଲେ ସୁଦ୍ଧା କାଫଲୀ ଠିକ୍ ଚାଲିଛି । ସେ ସେତେବେଳେ ଭୁଲିଗଲେ ଯେ କୁକୁରମାନଙ୍କୁ ଜେଲରେ ଭର୍ତ୍ତି କରାଯାଇଥିଲା ଓ ସେମାନେ ସେଠାରେ ସହଜେ ଭୁକି ପାରୁ ନ ଥିଲେ ଏବଂ ଯେଉଁମାନେ ବାହାରେ ଥିଲେ, ସେମାନଙ୍କ ମୁହଁରେ ଭଲଭାବରେ ଲୁଣ୍ଡି ଦିଆ ଯାଇଥିଲା ।

ସବୁଠାରୁ ଅଦ୍ଭୁତ କଥା ଯେ, କାନପୁର ସାମ୍ପ୍ରଦାୟିକ ଗଣ୍ଡଗୋଳ ଲାଗି କଂଗ୍ରେସକୁ ଦୋଷ ଦିଆଗଲା । ଏହି ଭୀଷଣ ଦଙ୍ଗାରେ ହୋଇଥିବା କାଣ୍ଡମାନ ପ୍ରକାଶ କରାଯାଉଥିଲା ଏବଂ ବାରମ୍ବାର ଏଥିଲାଗି କଂଗ୍ରେସକୁ ଦାୟୀ ବୋଲି କୁହାଗଲା । ମାତ୍ର ଯେପରି ଦେଖାଗଲା କଂଗ୍ରେସହିଁ କେବଳ ଏଥିରେ ଭଲ ଭାବରେ କାର୍ଯ୍ୟ କରିଥିଲା—ଏକ ସୁଯୋଗ୍ୟ ସନ୍ତାନ ଏଠାରେ ଜୀବନଦାନ କଲେ ଏବଂ ତାଙ୍କ ମୃତ୍ୟୁରେ କାନପୁରର ସମସ୍ତ ଦଳ ଓ ସଂପ୍ରଦାୟ ଦୁଃଖ ପ୍ରକାଶ କରିଥିଲେ । ଦଙ୍ଗା ସମ୍ପାଦ ପାଇଲା ମାତ୍ରକେ କରାଚୀ କଂଗ୍ରେସ ଗୋଟିଏ ତଦନ୍ତ କମିଟି ନିଯୁକ୍ତ କଲା ଏବଂ ଏହି କମିଟି ବିସ୍ତୃତ ତଦନ୍ତ କରିଥିଲା । ଅନେକ ମାସ ପରିଶ୍ରମ କରି ଏହା ବୃହତ୍ ରିପୋର୍ଟ ପ୍ରକାଶ କରିଥିଲା—ସରକାର ଏହାକୁ ସଙ୍ଗେ ସଙ୍ଗେ ବାଜ୍ୟାପ୍ତି ଘୋଷଣା କଲା—ଛପା ବହି ସବୁ ନେଇଗଲା ଏବଂ ମୋର ମନେ ହୁଏ ନଷ୍ଟ କରି ଦିଆଗଲା । ଏହି ତଦନ୍ତର ଫଳାଫଳକୁ ଦମନ କରି ସୁଦ୍ଧା ସେମାନେ ଚୁପ୍ ରହି ନ ଥିଲେ, ସରକାରୀ ସମାଲୋଚକ ଏବଂ ବ୍ରିଟିଶ ଅଧିକୃତ ସମ୍ବାଦପତ୍ରକୁ ବାରମ୍ବାର କଂଗ୍ରେସ କାର୍ଯ୍ୟ ଯୋଗୁଁ ଏହି ଦଙ୍ଗା ହୋଇଛି ବୋଲି କହିବାକୁ ଛାଡ଼ନାହାନ୍ତି । ଏଥିରେ

ସନ୍ଦେହ ନାହିଁ ଯେ, ଏହା ଅନ୍ୟ ଘଟଣାମାନଙ୍କରେ ଶେଷରେ ସତ୍ୟରହିଁ ଜୟ ହେବ; ସମୟ ସମୟରେ ମିଥ୍ୟା ମଧ୍ୟ ବେଶି କ୍ଷଣ ରହିଯାଏ ।

"ମିଥ୍ୟାର କାର୍ଯ୍ୟ ଶେଷ ହେଲେ ତାହା ଧ୍ୱଂସ ପାଇବ । ଯେତେବେଳେ ସତ୍ୟ ଅଛି କି ନାହିଁ, କେହି ନ ବଗୃଣବେ ସେତେବେଳେ ହିଁ ମହାନ୍ ସତ୍ୟର ଜୟ ହେବ ।"

ମୋର ମନେ ହୁଏ, ପୁଞ୍ଜବରକ୍ତ ମନୋଭାବରେ ଏହି ଦୃଶ୍ୟ ଅତି ସ୍ୱାଭାବିକ ଏବଂ ଏପରି ଅବସ୍ଥାରେ କେହି ସତ୍ୟ ବା ସଂଯମ ଆଶା କରୁ ନ ଥିଲେ । ମାତ୍ର ଏହା ଆଶାତୀତ ହୋଇଗଲା ଏବଂ ଏହାର ବର୍ବରତା ବଡ଼ ଆଶ୍ଚର୍ଯ୍ୟଜନକ । ଭାରତରେ ଶାସକ ସମ୍ପ୍ରଦାୟଙ୍କ ମନୋଭାବର ଏହା କେତେକ ସୂଚନା ଏବଂ ଅତୀତରେ ସେମାନେ କପଟ ନିଜକୁ ଦବାଇ ରଖିଥିଲେ ତାହା ଜଣା ପଡ଼ିଲା । ସମ୍ଭବତଃ ଆମର କୌଣସି କାର୍ଯ୍ୟ ବା କଥା ଯୋଗୁଁ ସେମାନଙ୍କର କ୍ରୋଧ ବଢ଼ିଥିଲା, ମାତ୍ର ସେମାନେ ସାମ୍ରାଜ୍ୟ ହରାଇଛନ୍ତି ବୋଲି ପୂର୍ବରୁ ହୋଇଥିବା ଭୟ ଯୋଗୁଁ ଏପରି କ୍ରୋଧ ଜାତ ହୋଇଥିଲା । ଯେଉଁ ଶାସକମାନେ ସେମାନଙ୍କ ନିଜ କ୍ଷମତା ସମ୍ବନ୍ଧରେ ଆତ୍ମବିଶ୍ୱାସୀ ଥାଆନ୍ତି, ସେମାନେ ଏପରି ଆଚରଣ କରନ୍ତି ନାହିଁ । ଦୁଇ ପକ୍ଷ ଭିତରେ ପାର୍ଥକ୍ୟ ପରିଲକ୍ଷିତ ହେଲା । ଅନ୍ୟ ପକ୍ଷରେ ନୀରବତା ସୃଷ୍ଟି କରିଥିଲା— ଏହା ଇଚ୍ଛାପୂର୍ବକ ନୀରବ ବା ମର୍ଯ୍ୟାଦାସୂଚକ ସଂଯମ ନୁହେଁ । ମାତ୍ର ବନ୍ଦୀଶାଳା, ଭୟ ଏବଂ ସର୍ବଗ୍ରାସୀ ପ୍ରଭୃତି ବନ୍ଦ କରିବାର ନୀରବତା । ଜୋର ଜବରଦସ୍ତି ଏପରି ବନ୍ଦ କରି ଅନ୍ୟ ପକ୍ଷ ମଧ୍ୟ ଅତିରଞ୍ଜିତ କଥା କହିବାକୁ ଗଲେ, ଗାଳି ଦେଲେ ଏବଂ କୁତ୍ସା ପ୍ରଭୃତିର ଦୃଷ୍ଟାନ୍ତ ଦେଖାଇଲେ । ଯାହା ହେଉ ଏଥିରୁ ଗୋଟିଏ ବାଟ ଥିଲା ମଝିରେ ମଝିରେ ଲଣ୍ଡନ ସହରରୁ ବେଆଇନ ସମ୍ବାଦପତ୍ର ସବୁ ବାହାରୁଥାଏ ।

ଇଂରେଜ ପରିଚାଳିତ ଭାରତର ଆଙ୍ଗ୍ଲୋଇଣ୍ଡିୟାନ ସମ୍ବାଦପତ୍ର-ମାନେ ଉତ୍ସାହର ସହିତ ଏହି ଆତ୍ମପ୍ରବୃତ୍ତିର ଖେଳରେ ଯୋଗ ଦେଲେ—ସେମାନେ ଦୀର୍ଘକାଳ ହେଲା ସମ୍ଭବତଃ ଗୋପନୀୟ ଭାବରେ ଯେଉଁ କଳ୍ପନା ଦମନ କରି ରଖିଥିଲେ, ସେହିସବୁ କଥା ପ୍ରକାଶ କଲେ। ସାଧାରଣତଃ ସେମାନଙ୍କର ଅନେକ ଭାରତୀୟ ପାଠକ ଥିବାରୁ ଟିକିଏ ସତର୍କ ହୁଅନ୍ତି, ମାତ୍ର ଭାରତର ସଂକଟ ଯୋଗୁଁ ଏହି ସଂଯମ ଚାଲିଗଲା ଏବଂ ଇଂରେଜ ଓ ଭାରତୀୟ ଲୋକଙ୍କର ମନୋଭାବ ଆମେ ବୁଝିପାରିଲୁ। ଭାରତରେ ଅତି ଅଳ୍ପ ଆଙ୍ଗ୍ଲୋଇଣ୍ଡିଆନଙ୍କ ଖବରକାଗଜ ରହିଛି—ଗୋଟିକ ପରେ ଗୋଟିଏ ସେଗୁଡ଼ିକ ଯାଉଛି। ଯେଉଁ କେତୋଟି ଅଛି ତାହା ସମ୍ବାଦ ଯୋଗାଇବା ଓ ସାଧାରଣ ସୌଜନ୍ୟ ଦୃଷ୍ଟିରୁ ଉଚ୍ଚ ଶ୍ରେଣୀର ପତ୍ରିକା। ପୃଥିବୀ ସମସ୍ୟା ସମ୍ବନ୍ଧରେ ଏଗୁଡ଼ିକର ସମ୍ପାଦକୀୟ ମନ୍ତବ୍ୟ ରକ୍ଷଣଶୀଳ ଦୃଷ୍ଟିକୋଣ ବିଶିଷ୍ଟ ହୋଇଥିଲେ ସୁଦ୍ଧା ଏଥିରେ କୁଶଳତା ଜ୍ଞାନ ଓ ମର୍ମଗ୍ରହଣ ଦେଖାଯାଏ। ଏଥିରେ ସନ୍ଦେହ ନାହିଁ ଯେ, ସମ୍ବାଦପତ୍ର ହିସାବରେ ଭାରତରେ ଏଗୁଡ଼ିକ ସର୍ବୋତ୍କୃଷ୍ଟ। ମାତ୍ର ଭାରତୀୟ ରାଜନୀତିକ ସମସ୍ୟାରେ ଏଗୁଡ଼ିକ ପଛରେ ପଡ଼ିଛି—ଏମାନେ ଏକପାଖିଆ ସମସ୍ୟା-ଗୁଡ଼ିକର ଆଲୋଚନା କରନ୍ତି – ସଙ୍କଟ ସମୟରେ ଏହି ପକ୍ଷପାତିତା ମସ୍ତିଷ୍କ-ବିକୃତି ଓ ଅଳୀକତାର ପରିଚୟ ଦିଏ। ଯେମାନେ ଭାରତ ସରକାରର ବିଶ୍ୱସ୍ତ ପ୍ରତିନିଧି ଏବଂ ବାରମ୍ବାର ଏହି ପ୍ରବୃତ୍ତିର ମଧ୍ୟରେ ପ୍ରଗଲଭ୍‌ତାର ଅଭାବ ନ ଥାଏ।

ଏହି କେତେକ ଆଙ୍ଗ୍ଲୋଇଣ୍ଡିଆନ୍ ସମ୍ବାଦପତ୍ର ତୁଳନାରେ ଭାରତୀୟ ସଂବାଦପତ୍ର ସାଧାରଣତଃ ଅତି ଦରିଦ୍ର। ଏଗୁଡ଼ିକର ଆର୍ଥିକ ଅବସ୍ଥା ସୀମାବଦ୍ଧ ଏବଂ ତାହାକୁ ଉନ୍ନତ କରିବା ନିମନ୍ତେ ଏହାର ମାଲିକମାନେ ଖୁବ୍ କମ୍ ଉଦ୍ୟମ କରନ୍ତି। ସେମାନେ ଅତି କଷ୍ଟରେ ଦୈନନ୍ଦିନ ଜୀବନ କଟାନ୍ତି ଏବଂ ସମ୍ପାଦକୀୟ ବିଭାଗର ଅଭାଗା କର୍ମଚାରୀଙ୍କ ଢାଲ ସହଜେ କଟେ ନାହିଁ। ଏଗୁଡ଼ିକର ଛପା ଆଦି ଅତି ନିକୃଷ୍ଟ

ଧରଣର; ବିଜ୍ଞାପନ ସବୁ ଅତି ଆପତ୍ତିଜନକ ଏବଂ ରାଜନୀତିକ ଓ ଜୀବନକୁ ସେମାନେ ବଡ଼ ଭାବପ୍ରବଣ ଓ ଉଚ୍ଛ୍ୱାସଦୃଷ୍ଟିରେ ଦେଖନ୍ତି । ମୋର ମନେ ହୁଏ; ଆମେ ଏକ ଭାବପ୍ରବଣ ଜାତି ହୋଇଥିବାରୁ ଏହା କେତେକାଂଶରେ ହୋଇଥାଏ; ଆଉ ଗୋଟିଏ କାରଣ ହେଉଛି ଇଂରାଜୀ ସମ୍ବାଦପତ୍ର ସବୁ ବିଦେଶୀ ଭାଷାରେ ସରଳ ଭାବରେ ଲେଖିବା ସହଜ ଏବଂ ତାହା ସଙ୍ଗେ ସଙ୍ଗେ ଜୋର ଭାବରେ ଲେଖିବା ସହଜ ନୁହେଁ । ମାତ୍ର ପ୍ରକୃତ କାରଣ ହେଉଛି, ଦୀର୍ଘକାଳ ଦମନ ଓ ପରାଧୀନତା ଯୋଗୁଁ ଆମର ମନୋବୃତ୍ତି ଏପରି ହୋଇଛି ଯେ, ପ୍ରତ୍ୟେକ କଥାରେ ଭାବପ୍ରବଣତା ଆସି ପଡ଼େ ।

ସମ୍ବାଦ ଯୋଗାଇବା, ଛପା ଇତ୍ୟାଦି ଦୃଷ୍ଟିରୁ ଭାରତୀୟ ସମ୍ବାଦ-ପତ୍ରମାନଙ୍କ ଭିତରେ ମାଡ୍ରାଜର 'ହିନ୍ଦୁ' ହୁଏ ତ ସର୍ବୋତ୍କୃଷ୍ଟ । 'ହିନ୍ଦୁ' ଦେଖିଲେ ମୋର ସ୍ୱଚ୍ଛ ବୃଦ୍ଧା ଅବିବାହିତା ମହିଳାଙ୍କ କଥା ମନେ ପଡ଼େ—ଏହା ଯେପରି ଭାବଗମ୍ଭୀର ଓ ଶୁଷ୍କ – ତାହା ପାଖରେ କୌଣସି ଚପଳ ଶବ୍ଦ ପ୍ରୟୋଗରେ ମର୍ମାହତ ହୋଇପଡ଼େ । ଏହା 'ବୁର୍ଜୋୟା' କାଗଜ—ସ୍ୱଚ୍ଛଳ ଅବସ୍ଥାରେ ଚଳେ । ଏହା ଜୀବନଯାତ୍ରା ନିର୍ବାହର କଠିନ, ପତନ ବା ବିବାଦ ମଧ୍ୟ ଦେଇଯାଇ ନାହିଁ—ମଡରେଟ ମତାବଲମ୍ବୀ ଅନ୍ୟର କେତେକ ସମ୍ବାଦପତ୍ର ମଧ୍ୟ ଅବିବାହିତା ମହିଳା ପରି । ସେଗୁଡ଼ିକ 'ହିନ୍ଦୁ' ପରି ନୁହନ୍ତି ଏବଂ ଅନେକ ବିଷୟରେ ସେ ଗୁଡ଼ିକ ଅଦ୍ଭୁତ ଭାବରେ ନିରାନନ୍ଦମୟ ।

ସରକାର ଆଘାତ କରିବା ନିମନ୍ତେ ଅନେକ ଦିନରୁ ଯେ ପ୍ରସ୍ତୁତ ହୋଇଥିଲା, ଏହାର ପ୍ରମାଣ ମିଳିଲା ଏବଂ ପ୍ରଥମରୁ ଏହା ଯଥା ସମ୍ଭବ କଠିନ ଆଘାତ କରିବାକୁ ଚାହିଁଥିଲା । ୧୯୩୦ ରେ ସର୍ବଦା ଖରାପ ଆଡ଼କୁ ଗତି କରୁଥିବା ଅବସ୍ଥାକୁ ବନ୍ଦ କରିବାଲାଗି ନୂତନ ଅର୍ଡ଼ିନାନ୍ସମାନ ଜାରି ହେଉଥିଲା । ସେତେବେଳେ କଂଗ୍ରେସହିଁ ଅଗତ୍ୟା ହୋଇ

ଯାଉଥିଲା । ୧୯୩୨ ସମ୍ପୂର୍ଣ୍ଣ ପୃଥକ—ବର୍ବର ସରକାର ତରଫରୁ ଆକ୍ରମଣ ଆରମ୍ଭ ହେଲା । କେତେକଙ୍କୁ ସମଗ୍ର ଭାରତୀୟ ଓ ପ୍ରାଦେଶିକ ଅର୍ଡିନାନ୍ସ ଜାରି କରି ସକଳ ପ୍ରକାର କ୍ଷମତା ଦିଆଗଲା—ସଙ୍ଗଠନସବୁ ବେଆଇନ ହେଲା, କୋଠାଘର, ସମ୍ପତ୍ତି, ମଠର, ବ୍ୟାଙ୍କରେ ଥିବା ଟଙ୍କା ବାଜ୍ୟାପ୍ତ ହେଲା, ସାଧାରଣ ସଭା ଓ ଶୋଭାଯାତ୍ରା ନିଷେଧ କରାଗଲା, ସମ୍ବାଦପତ୍ର ଓ ମୁଦ୍ରଣଯନ୍ତ୍ରକୁ ଆୟତ୍ତ କରାଗଲା । ଅନ୍ୟ ପକ୍ଷରେ ୧୯୩୦ ଠାରୁ ଅଲଗା—ଗାନ୍ଧିଜୀ ସେତେବେଳେ ଆଇନ ଅମାନ୍ୟ ଆରମ୍ଭ କରିବା ନିମନ୍ତେ ଆଦୌ ଇଚ୍ଛୁକ ନ ଥିଲେ—କାର୍ଯ୍ୟକାରୀ ସମିତିର ଅଧିକାଂଶ ସଭ୍ୟ ମଧ୍ୟ ସେହିପରି ଭାବୁଥିଲେ । ମୋ ପରି କେତେକ ଭାବୁଥିଲେ ଯେ, ସଂଗ୍ରାମ ଅବଶ୍ୟମ୍ଭାବୀ—ଆମେ ଏହା ପସନ୍ଦ କରୁ ବା ନ କରୁ—ଆମକୁ ଏଥିଲାଗି ପ୍ରସ୍ତୁତ ହେବାକୁ ପଡ଼ିବ । ଯୁକ୍ତପ୍ରଦେଶ ଓ ସୀମାନ୍ତ ପ୍ରଦେଶର କ୍ରମବର୍ଦ୍ଧିତ ଅଶାନ୍ତି ଫଳରେ ସଂଗ୍ରାମ ଆସନ୍ନ ପ୍ରାୟ ବୋଲି ଲୋକେ ମନେ କରୁଥିଲେ । ମୋଟାମୋଟି ମଧ୍ୟବିତ୍ତ ଶ୍ରେଣୀ ଓ ଶିକ୍ଷିତ ସମ୍ପ୍ରଦାୟ ସଂଗ୍ରାମ ଦୃଷ୍ଟିରେ ଚିନ୍ତା କରୁ ନ ଥିଲେ, ଅବଶ୍ୟ ସଂଗ୍ରାମର ସମ୍ଭାବନାକୁ ସେମାନେ ସଂପୂର୍ଣ୍ଣରୂପେ ଏଡ଼ି ଦେଇପାରୁ ନ ଥିଲେ । ସେମାନେ ଭାବୁଥିଲେ ଯେ ଗାନ୍ଧିଜୀ ଫେରିବା ପରେ କୌଣସି ପ୍ରକାର ସଂଗ୍ରାମ ଏଡ଼ାଇ ଦିଆଯିବ, ଏହି ଚିନ୍ତା ପୂର୍ବ ଚିନ୍ତାରୁ ଉଦ୍ଭୂତ ।

ଏପରି ଭାବରେ ୧୯୩୨ରେ ସରକାର ତରଫରୁ ପ୍ରଥମେ ସଂଗ୍ରାମ ଆରମ୍ଭ ହେଲା ଏବଂ କଂଗ୍ରେସ ନିଜର ଆତ୍ମରକ୍ଷା କରିବାକୁ ଲାଗିଲା । ଅର୍ଡିନାନ୍ସ ଓ ଆଇନ ଅମାନ୍ୟ ଯେପରି ଦ୍ରୁତ ଗତିରେ ଆରମ୍ଭ ହେଲା ସେଥିରେ ଅନେକ ସ୍ଥାନରେ ସ୍ଥାନୀୟ କଂଗ୍ରେସ ନେତାମାନେ ଅବାକ୍ ହୋଇ ଯାଇଥିଲେ । ଏହା ସତ୍ତ୍ୱେ କଂଗ୍ରେସ ଡାକରାରେ ଦେଶ ଅଦ୍ଭୁତ ପ୍ରକାରେ ଜବାବ ଦେଲା—ଆଇନ ଅମାନ୍ୟକାରୀଙ୍କ ଅଭାବ ରହି ନ ଥିଲା । ବାସ୍ତବିକ ମୋର ମନେ ହୁଏ, ୧୯୩୦ରେ ବ୍ରିଟିଶ ସରକାରର ଯେ

ପ୍ରତିରୋଧ କରି ଯାଇଥିଲା, ୧୯୩୨ରେ ତାହା ଅପେକ୍ଷା ଅଧିକ କରିଯାଇ ଥିଲା—ଅବଶ୍ୟ ୧୯୩୦ରେ ବିଶେଷତଃ ବଡ଼ ବଡ଼ ସହରମାନଙ୍କରେ ଅଧିକ ପ୍ରଚୁର ଓ ଜାକଜମକ ଥିଲା । ୧୯୩୨ରେ ଲୋକେ ଅଧିକ ସହ୍ୟ କରିବା ଶକ୍ତି ଦେଖାଇବା ସତ୍ତ୍ୱେ ଏବଂ ସେମାନେ ଅଧିକ ଭାବରେ ଶାନ୍ତି-ପୂର୍ଣ୍ଣ ରହିଥିବା ସତ୍ତ୍ୱେ ୧୯୩୦ ପରି ଉତ୍ସାହର ପ୍ରେରଣା ନ ଥିଲା । ଯେପରି ମନେ ହେଲା, ଆମେ ଅନ୍ଧକାର ସହିତ ଯୁଦ୍ଧରେ ପ୍ରବେଶ କଲୁ । ୧୯୩୦ରେ ଯେଉଁ ଗୌରବ ଥିଲା, ଦୁଇବର୍ଷ ପରେ ତାହା ଆଉ ନ ଥିଲା । ସରକାର ତାହାର ସମସ୍ତ ଶକ୍ତି ପ୍ରୟୋଗ କରି କଂଗ୍ରେସର ବିରୋଧାଚରଣ କଲେ; ପ୍ରକୃତରେ ଭାରତ ସାମରିକ ଶାସନରେ ରହିଲା—କଂଗ୍ରେସ କେବେ ଆଇନଗତ ବା ସ୍ୱାଧୀନ ଭାବରେ କାର୍ଯ୍ୟ କରିବାକୁ ସୁବିଧା ପାଇ ନ ଥିଲା । ପ୍ରଥମ ଆଘାତରେହିଁ ଏହା ଅବାକ୍ ହୋଇଗଲା—ଅତୀତରେ ଯେଉଁ "ବୁର୍ଜୋୟା"ମାନେ ଏହାର ପ୍ରଧାନ ସମର୍ଥକ ଥିଲେ, ସେମାନେ ଶଙ୍କିତ ହେଲେ । ସେମାନଙ୍କ ପକେଟରେ ବାଜିଲା—ଦେଖାଗଲା ଯେ, ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗଦେବା ଦ୍ୱାରା ବା କୌଣସି ପ୍ରକାରେ ତାକୁ ସାହାଯ୍ୟ କଲେ ଖାଲି ଯେ ଲୋକର ସ୍ୱାଧୀନତା ଯାଉଛି ତାହା ନୁହେଁ—ସେମାନଙ୍କର ସମ୍ପତ୍ତି ବି ଯିବ । ଯୁକ୍ତପ୍ରଦେଶରେ କଂଗ୍ରେସ ଦରିଦ୍ର ଲୋକଙ୍କରହିଁ ଥିଲା—ସୁତରାଂ ଏଥିରେ ସେଠାରେ କିଛି ହେଲାନାହିଁ; ମାତ୍ର ବମ୍ବେ ପରି ବଡ଼ ସହରମାନଙ୍କରେ ଅନେକ ପାର୍ଥକ୍ୟ ଦେଖାଗଲା । ଏଥିରେ ବ୍ୟବସାୟୀ ଶ୍ରେଣୀର ସର୍ବନାଶ ଏବଂ ବୃତ୍ତିଜୀବୀ ଶ୍ରେଣୀର ବହୁଳ କ୍ଷତିର ସମ୍ଭାବନା ଥିଲା । କେବଳ ଏହି ଧମକରେ ବେଳେ ବେଳେ ଏହା କାର୍ଯ୍ୟରେ ପରିଣତ ହେଉଥିଲା । ସହରର ସଙ୍ଗତିସମ୍ପନ୍ନ ଶ୍ରେଣୀ ପଙ୍ଗୁ ହୋଇ ଯାଇଥିଲେ । ମୁଁ ପରେ ଶୁଣିଲି ଯେ, ଜଣେ ଖୁବ୍ ପଇସାବାଲା ବ୍ୟବସାୟୀଙ୍କର ରାଜନୀତି ସହିତ କିଛି ସମ୍ପର୍କ ନ ଥିଲା; ମାତ୍ର କେତେବେଳେ ସେ ଚାନ୍ଦା ଦେଉଥିଲେ—ଏଥି ସକାଶେ ତାଙ୍କ ଘର କାରବାର ଛଡ଼ା ପାଞ୍ଚଲକ୍ଷ ଟଙ୍କା ଜୋରିମାନା କରିଯାଇ ପାରେ ବୋଲି

ପୁଲିସ ଧମକ ଦେଉଥିଲେ । ଏପରି ଧମକ ପ୍ରାୟ ସାଧାରଣ ଭାବରେ ଦିଆଯାଉଥିଲା—ଏହା ଶୂନ୍ୟ ଆବାଜ ନୁହେଁ—କାରଣ ପୁଲିସହିଁ ସବୁ ଶକ୍ତିମାନ୍ ଥିଲେ । ଏହି ସବୁ ଧମକ କାର୍ଯ୍ୟରେ ପରିଣତ ହେବା ଖବର ଆସି ପ୍ରତିଦିନ ପହଞ୍ଚୁଥାଏ ।

ମୋର ମନେ ହୁଏ, ସରକାର ଯେଉଁ ନୀତି ଅନୁସରଣ କଲେ ସେଥିରେ କୌଣସି କଂଗ୍ରେସ ନେତାଙ୍କର ଆପତ୍ତି କରିବାର କିଛି ନାହିଁ; ଅବଶ୍ୟ ଭଦ୍ରତା ଦୃଷ୍ଟିରୁ ଏକ ଅତି ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ବିରୁଦ୍ଧରେ ସରକାର ଯେପରି ହିଂସା ଓ ବଳପ୍ରୟୋଗ କରିଥିଲେ ତାହା ଅତ୍ୟନ୍ତ ଆପତ୍ତିଜନକ । ଯେତେ ଅହିଂସା ହେଉ ପଛକେ ଆମେ ଏକ ବୈପ୍ଳବିକ ପ୍ରତ୍ୟକ୍ଷ ସଂଗ୍ରାମ ପନ୍ଥା ଗ୍ରହଣ କରିଥିଲାବେଳେ ଏହାର ପ୍ରତ୍ୟେକ ପ୍ରକାର ପ୍ରତିରୋଧ ହେବ ବୋଲି ଆଶା କରିପାରୁ । ଆମେ ବୈଠକଖାନା ଘରେ ବସି ବିପ୍ଳବ କରିପାରୁ ନା, ମାତ୍ର ଅନେକ ଲୋକ ଦୁଇଟିର ସୁବିଧା ଚାହାନ୍ତି । ଯେଉଁ ଲୋକ ବୈପ୍ଳବିକ କାର୍ଯ୍ୟରେ ପ୍ରବେଶ କରିବ, ସେ ତାର ସମସ୍ତ ହରାଇବାକୁ ପ୍ରସ୍ତୁତ ଥିବା ଦରକାର । ସେଥିଲାଗି ସଙ୍ଗତିସମ୍ପନ୍ନ ଓ ପଦସ୍ଥ ଲୋକ ପ୍ରାୟ ବିପ୍ଳବୀ ହୁଅନ୍ତି ନାହିଁ—କେହି କଲେ ସେମାନେ ସଂସାରୀ ଲୋକଙ୍କ ଚକ୍ଷୁରେ ତାଙ୍କୁ ବିଶ୍ୱାସଘାତକ ନିର୍ବୋଧ ବୋଲି ଧରନ୍ତି ।

ଅବଶ୍ୟ ଜନସାଧାରଣଙ୍କୁ ଦମନ କରିବା ନିମନ୍ତେ ଅନ୍ୟ ଉପାୟ ଗ୍ରହଣ କରାଯାଉଥିଲା—ସେମାନଙ୍କ ପାଖରେ କିଛି ମଟର, ବ୍ୟାଙ୍କରେ ଟଙ୍କା କିମ୍ବା ଅନ୍ୟ ସମ୍ପତ୍ତି ନାହିଁ ଯେ ପୁଲିସ ବାଜ୍ୟାପ୍ତ କରିବ । ସେମାନଙ୍କ ଉପରେହିଁ ସଂଗ୍ରାମର ପ୍ରକୃତ ବୋଝ ଥିଲା । ସରକାରର ଦମନନୀତି ଫଳରେ ସବୁଦିଗରୁ ଦେଖିଲେ ଦଳେ ଲୋକ ହଠାତ୍ କର୍ମତତ୍ପର ହୋଇ ଉଠିଲେ—ସେମାନଙ୍କୁ ଏକ ନୂତନ ପ୍ରକାଶିତ ପୁସ୍ତକ ଭାଷାରେ "ଗଭର୍ଣ୍ଣମେଣ୍ଟଶହ୍ୟାନ୍" ବୋଲି କୁହାଯିବ । ସେମାନଙ୍କ ଭିତରୁ କେତେକ ଉଙ୍କପ୍ୟତ କଣ ହେବ ନ ବୁଝି ଅଲାଢ଼ିନ ତଳେ କଂଗ୍ରେସ ସହିତ

ଥିଲେ । ସରକାର ଏହା ସହ୍ୟ କରିପାରିଲେ ନାହିଁ—ନିଷ୍କ୍ରିୟ ଅନୁରକ୍ତି ଯଥେଷ୍ଟ ନୁହେଁ । ସିପାହୀବିଦ୍ରୋହର ପ୍ରସିଦ୍ଧ ଫେଡ଼ରିକ୍ କୁପରଙ୍କ ଭାଷାରେ "କର୍ତ୍ତୃପକ୍ଷମାନେ ସୁସ୍ପଷ୍ଟ ଓ କର୍ମତତ୍ପର ରାଜଭକ୍ତି ଛଡ଼ା ଅନ୍ୟ କିଛି ସହ୍ୟ କରିପାରିବେ ନାହିଁ । ସରକାର ପ୍ରଜାମାନଙ୍କର କେବଳ ନୈତିକ ସମର୍ଥନ ଉପରେ ନିର୍ଭର କରିପାରେ ନା ।" ବର୍ଷକପୂର୍ବେ ଲଏଡ଼ ଜର୍ଜ ଜାତୀୟ ସରକାର ଗଢ଼ିଥିବା ତାଙ୍କର ବ୍ରିଟିଶ ମାଡ଼ୀ ଦଳର ପୁରୁଣା ସହକର୍ମୀମାନଙ୍କୁ ଲକ୍ଷ୍ୟ କରି କହିଥିଲେ ଯେ, ଏମାନେ "ପରିବର୍ତ୍ତନଶୀଳ ସାମ୍ପ୍ରତ, ପାରିପାର୍ଶ୍ୱିକ ଅବସ୍ଥା ଅନୁସାରେ ରଙ୍ଗ ବଦଳାନ୍ତି ।" ଭାରତରେ ନୂତନ ବାୟୁମଣ୍ଡଳ କୌଣସି ନିରପେକ୍ଷ ରୂପ ସହ୍ୟ କଲା ନାହିଁ । ତେଣୁ ଆମର କେତେକ ଦେଶବାସୀ ଅନୁମୋଦିତ ଉଜ୍ଜ୍ୱଳ ରଙ୍ଗରେ ବାହାରିଲେ—ସଙ୍ଗୀତ ଓ ଲେଖା ଦେଇ ସେମାନେ ଶାସକଙ୍କ ପ୍ରତି ପ୍ରେମ ଓ ପ୍ରଶଂସା ଜ୍ଞାପନ କଲେ । ସେମାନଙ୍କର ଆର୍ତ୍ତନାଦ, ଅସଂଖ୍ୟ ନିଷେଧାଜ୍ଞା, କଟକଣା, ସାମରିକ ଆଇନ, ସାନ୍ଧ୍ୟ ଆଇନର କିଛି ଭୟ ନଥିଲା, କାରଣ ସରକାରୀ ଭାବରେ ପରେ ଘୋଷିତ ହୋଇଥିଲା ଯେ, ଏହି ଆଇନ ସବୁ କେବଳ ରାଜଦ୍ରୋହୀ ଓ ଅବାଧ ଲୋକଙ୍କ ପ୍ରତି ପ୍ରଯୁଜ୍ୟ—ରାଜଭକ୍ତଙ୍କର ଏଥିରେ ଭୟ କରିବାର କିଛି ନାହିଁ । ସୁତରାଂ ଆମ ଦେଶରେ ଲୋକ ଯେଉଁ ଭୟ ମଧ୍ୟରେ ରହିଥିଲେ ସେଥିରୁ କ୍ଷାନ୍ତ ହୋଇ ସେମାନେ ଏହି ଆତଙ୍କ ଓ ସଂଘର୍ଷ ଭିତରେ ସ୍ୱଚ୍ଛନ୍ଦରେ କାଳ କାଟୁଥିଲେ । ସମ୍ଭବତଃ ତଲେ ଉଦ୍ଧୃତ ସ୍ନେ! ଲିଖିତ (ବିଶ୍ୱାସୀମେଷପାଳିକା) କଥାରେ ସେମାନେ ସମ୍ମତ ହେବେ—"ମୁଁ କୌଣସି ପ୍ରକାର ଭୟର କାରଣରୁ ବଞ୍ଚିତ । କାରଣ ମୁଁ ସବୁ କଥାରେ ଏପରି ସମ୍ମତ ଯେ ମୋତେ ବଳାତ୍କାର କରିବା ଅସମ୍ଭବ ।"

କୌଣସି ପ୍ରକାରେ ସରକାରର ଗୋଟାଏ ଧାରଣା ହୋଇଥିଲା ଯେ ନାରୀମାନଙ୍କୁ ଆଣି ଜେଲରେ କଂଗ୍ରେସ ଭର୍ତ୍ତି କରିବାକୁ ପାଉଛି—ନାରୀମାନେ ଭଲ ବ୍ୟବହାର ପାଇବେ ଏବଂ ଅଳ୍ପଦିନ ଶାସ୍ତି ପାଇବେ

ଏହି ମତଲବରେ ଏହା କରାଯାଉଛି । ଏହା ଅତ୍ୟନ୍ତ ଅଦ୍ଭୁତ ଧାରଣା — ସତେକି କେହି ନିଜ ପରିବାରର ନାରୀମାନଙ୍କୁ ଠେଲି ଜେଲକୁ ପଠାଏ । ସାଧାରଣତଃ ଯେଉଁ ସ୍ତ୍ରୀ ଲୋକମାନେ ସଂଗ୍ରାମରେ କ୍ରିୟାଶୀଳ ଭାବରେ କାର୍ଯ୍ୟ କରିଛନ୍ତି, ସେମାନେ ତାଙ୍କର ପିତା, ଭାଇ ଏବଂ ସ୍ୱାମୀଙ୍କର ଅନିଚ୍ଛା ସତ୍ତ୍ୱେ—ଅନ୍ତତଃ ସେମାନଙ୍କର ପୂର୍ଣ୍ଣ ସହଯୋଗ ନପାଇ କରିଛନ୍ତି । ଯାହାହେଉ ସରକାର ଦୀର୍ଘ କାରାବାସ ଓ ଜେଲରେ ଖରାପ ବ୍ୟବହାର ଦ୍ୱାରା ସ୍ତ୍ରୀ ଲୋକଙ୍କୁ ନିରୁତ୍ସାହିତ କରିବାକୁ ଲାଗିଲେ । ମୋର ଭଉଣୀମାନଙ୍କର ଗିରଫ ଓ ଶାସ୍ତିର ଅଳ୍ପ ଦିନ ପରେ ଏଲାହାବାଦରେ ୧୫।୧୬ ବର୍ଷ ବୟସ୍କା ବହୁତ ବାଳିକା ଆନନ୍ଦଭବନରେ ଗୋଟିଏ ବୈଠକ କରି ସେମାନେ କଣ କରିବେ ଆଲୋଚନା କରିଥିଲେ । ସେମାନଙ୍କର କୌଣସି ଅଭିଜ୍ଞତା ନଥିଲା—ମାତ୍ର ପୂର୍ଣ୍ଣ ଉତ୍ସାହ ଥିଲା—ସେମାନେ ପରାମର୍ଶ ଲୋଡ଼ୁଥିଲେ । ସେମାନେ ଘରୋଇ ସ୍ଥାନରେ ଏକତ୍ର ହୋଇଥିବା ସ୍ଥଳେ ଗିରଫ ହେଲେ ଏବଂ ପ୍ରତ୍ୟେକଙ୍କୁ ଦୁଇବର୍ଷ ଲେଖାଏଁ ଜେଲଦଣ୍ଡ ହେଲା । ଭାରତରେ ପ୍ରତିଦିନ ଯେଉଁ ଛୋଟ ଛୋଟ ଘଟଣା ଘଟୁଥିଲା, ସେଥିରୁ ଏହା ଗୋଟିଏ ଅତି ଛୋଟ ଘଟଣା । ଯେଉଁ ବାଳିକା ବା ନାରୀମାନେ ଶାସ୍ତି ପାଇଥିଲେ, ସେମାନେ ବହୁ କଷ୍ଟ ପାଇଥିଲେ—ଏପରିକି ପୁରୁଷଙ୍କ ଅପେକ୍ଷା ଅଧିକ କଷ୍ଟ ଭୋଗିଥିଲେ । ମୁଁ ଅନେକ କ୍ଲେଶଦାୟକ ବୃତ୍ତାନ୍ତ ଶୁଣିଛି, ମାତ୍ର ବମ୍ବେ ଜେଲରେ ଅନ୍ୟାନ୍ୟ ଆଇନ ଅମାନ୍ୟ ବନ୍ଦୀଙ୍କ ସହିତ ରହି ମୀରାବେନ (ମେଡ଼େଲିନ ସ୍ଲେଡ଼) ଯେଉଁ ଅଭିଜ୍ଞତା ପାଇଥିଲେ ବୋଲି ଲେଖିଛନ୍ତି, ତାହା ପଢ଼ି ଆଶ୍ଚର୍ଯ୍ୟ ହୋଇଥିଲି ।

ଯୁକ୍ତପ୍ରଦେଶରେ ମଫସଲ ଅଞ୍ଚଳରେହିଁ ସଂଗ୍ରାମର କେନ୍ଦ୍ର ଥିଲା । କଂଗ୍ରେସ କୃଷକମାନଙ୍କ ତରଫରୁ ଅବଶ୍ରାନ୍ତ ଭାବରେ ଯୁଦ୍ଧ ଦେବାରୁ ବହୁତ ଖଜଣା ଛାଡ଼ ହେବାଲାଗି ପ୍ରତିଶ୍ରୁତି ମିଳିଥିଲା—ଅବଶ୍ୟ ଆମେ ଏହାକୁ ଯଥେଷ୍ଟ ବୋଲି ବିଚାରୁ ନ ଥିଲୁ । ଆମ ଗିରଫ ସଙ୍ଗେ ସଙ୍ଗେ

ଅଧିକରୁ ଅଧିକ ଖଜଣା ଛାଡ଼ ଘୋଷଣା ହୋଇଗଲା । ଆଶ୍ଚର୍ଯ୍ୟ କଥା ଯେ ଏହି ଘୋଷଣା ଆଗରୁ ହୋଇ ନ ଥିଲା; କାରଣ ତାହା ହୋଇଥିଲେ ଅବସ୍ଥାରେ ପରିବର୍ତ୍ତନ ଘଟିଥାନ୍ତା । ଏହାକୁ ବ୍ରେକଥୋକ୍ ନାମଞ୍ଜୁର କରିବା ଆମ ପକ୍ଷରେ କଷ୍ଟକର ହୋଇଥାନ୍ତା । କଂଗ୍ରେସ ଯେପରି ଖଜଣା ଛାଡ଼ ଲାଗି ବାହାବୁଟା ନ ନିଏ, ଏଥିପ୍ରତି ସରକାର ବେଶୀ ବ୍ୟଗ୍ର ଥାଆନ୍ତି – ତେଣୁ ଏକପକ୍ଷରେ ସେମାନେ କଂଗ୍ରେସକୁ ଦମନ କରିବାକୁ ଚାହୁଁଥିଲେ ଏବଂ ଅନ୍ୟ ପକ୍ଷରେ କୃଷକମାନଙ୍କୁ ସନ୍ତୁଷ୍ଟ ରଖିବାପାଇଁ ଯଥାସମ୍ଭବ ଛାଡ଼ ଦେବାକୁ ଚାହୁଁଥିଲେ । ଦେଖାଗଲା ଯେ କଂଗ୍ରେସ ଯେଉଁ ଅଞ୍ଚଳରେ ଅଧିକ ଶକ୍ତିଶାଳୀ, ସେଠାରେ ଅଧିକ ଛାଡ଼ ଦିଆଯାଇଥିଲା ।

ଏହି ଛାଡ଼ ପ୍ରଚୁର ହୋଇଥିଲେ ସୁଦ୍ଧା କୃଷକସମସ୍ୟା ସମାଧାନ ହୋଇପାରି ନ ଥିଲା—ପରିସ୍ଥିତି ଅନେକ ପରିମାଣରେ ସହଜ ହୋଇଗଲା । କୃଷକମାନଙ୍କର ପ୍ରତିରୋଧ କରିବାର କାରଣ ସେମାନେ ରଖି ନ ଥିଲେ ଏବଂ ଆମର ମହତ୍ ସଂଗ୍ରାମ ଦୃଷ୍ଟିରୁ ସେତେବେଳେ ଏହା ଆମକୁ ଦୁର୍ବଳ କରି ପକାଇଲା । ଏହି ସଂଗ୍ରାମ ଫଳରେ ଯୁକ୍ତପ୍ରଦେଶରେ ହଜାର ହଜାର କୃଷକ କଷ୍ଟ ସହିଥିଲେ ଏବଂ ଅନେକେ ଏଥିରେ ସମ୍ପୂର୍ଣ୍ଣରୂପେ ଧ୍ୱଂସ ପାଇଥିଲେ । ମାତ୍ର ଏହି ସଂଗ୍ରାମ ଯୋଗୁଁ ପ୍ରଚଳିତ ପ୍ରଥାନୁସାରେ ହଜାର ହଜାର କୃଷକ ଅଧିକ ଛାଡ଼ ପାଇଥିଲେ ଏବଂ ସେମାନେ (ଆଇନ ଅମାନ୍ୟ ଯୋଗୁଁ ଘଟିଥିବା କଷ୍ଟ ଛଡ଼ା) ଅନେକ ପରିମାଣରେ ହଇରାଣରୁ ରକ୍ଷା ପାଇଥିଲେ । ଏହି ସାମୟିକ ଛାଡ଼ ଦ୍ୱାରା କୃଷକମାନଙ୍କର ଯଥେଷ୍ଟ ଲାଭ ହୋଇଥିଲା, କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ଯାହା ବା ସମ୍ଭବ ହୋଇଥିଲା ତାହା କୃଷକମାନଙ୍କ ତରଫରୁ ଯୁକ୍ତପ୍ରଦେଶ କଂଗ୍ରେସ କମିଟି ଯେ ବରାବର ଦାବୀ କରୁଥିଲା, ତାହା ଫଳରେ ହୋଇଥିଲା । କୃଷକ ସାଧାରଣ ସାମୟିକ ଭାବରେ କିଛି ଲାଭ ପାଇଲେ, ମାତ୍ର ଆନ୍ଦୋଳନର ଆଘାତ ସେମାନଙ୍କ ମଧ୍ୟରେ ଥିବା ସାହସୀ ଲୋକଙ୍କ ଉପରେ ପଡ଼ିଥିଲା ।

୧୯୩୧ ମସିହା ଡ଼ିସେମ୍ବର ମାସରେ ଯେଉଁ ଯୁକ୍ତପ୍ରଦେଶରେ ବିଶେଷ ଅର୍ଡ଼ିନାନ୍ସ ଜାରି ହେଲା ତାହା ସଙ୍ଗରେ ଗୋଟାଏ ବିବୃତି ଥିଲା । ଏହି ବିବୃତି ଏବଂ ଅନ୍ୟ ଅର୍ଡ଼ିନାନ୍ସ ସହିତ ପ୍ରକାଶ ହୋଇଥିବା ବିବୃତି-ମାନଙ୍କରେ ଅନେକ ଅର୍ଦ୍ଧସତ୍ୟ ଓ ଅସତ୍ୟ ରହିଥିଲା—ଏହା ପ୍ରଚାର ଉଦ୍ଦେଶ୍ୟରେ ହୋଇଥିଲା । ଏହା ଆତ୍ମପ୍ରଚାରର କୌଶଳ ମାତ୍ର । ତାହାର ଜବାବ ଦେବା କିମ୍ବା ଏହି ଭୁଲର ପ୍ରତିବାଦ କରିବାକୁ ଆମମାନଙ୍କର ସୁବିଧା ନଥିଲା । ବିଶେଷ ଭାବରେ ଶେରୱାନୀଙ୍କ ନାମରେ ଯେଉଁ ଗୋଟାଏ ମିଥ୍ୟା ପ୍ରଚାର ହେଉଥିଲା, ତାହା ଶେରୱାନୀ ତାଙ୍କ ଗିରଫ ପୂର୍ବରୁ ଭୁଲ ବୋଲି କହିଥିଲେ । ସରକାରର ଏହି ସବୁ ବିବୃତି ଓ କୈଫିୟତ୍ ବେଶ କୌତୁହଳପୂର୍ଣ୍ଣ । ସରକାର କିପରି ବିଚଳିତ ଏବଂ ତାର ମନୋଭାବ କିପରି ଥିଲା ଏଥିରୁ ବୁଝାପଡ଼ୁଥିଲା । ସ୍ପେନର ତୃତୀୟ ଚାର୍ଲ୍ସ ବର୍ବନ ତାଙ୍କ ରାଜ୍ୟରୁ ଜେଶୁଟମାନଙ୍କୁ ତଡ଼ିବା ନିମନ୍ତେ ଯେଉଁ ଘୋଷଣାପତ୍ର କରିଥିଲେ, ସେଦିନ ମୁଁ ତାହା ପଢ଼ିଲାବେଳେ ଭାରତରେ ବ୍ରିଟିଶ ସରକାର ଯେଉଁ ସବୁ ଅର୍ଡିନାନ୍ସ ଓ ଆଦେଶ ଜାରି କରୁଛନ୍ତି ଏବଂ ସେଥିପାଇଁ ଯେଉଁ କାରଣ ଦର୍ଶାଉଥିଲେ, ତାହା ମୋର ମନେ ପଡ଼ିଗଲା । ଏହି ଆଦେଶରେ ୧୭୬୭ ମସିହା ଫେବୃୟାରୀ ମାସରେ ରାଜା କହିଥିଲେ, "ପ୍ରଜାମାନଙ୍କ ଭିତରେ ଅଧୀନତା, ଶାନ୍ତି ଓ ନ୍ୟାୟରକ୍ଷା ଲାଗି ମୋର ଗୁରୁତର କର୍ତ୍ତବ୍ୟ ହେତୁ ଏହା ଆବଶ୍ୟକ ହୋଇପଡ଼ୁଛି । ଅନ୍ୟାନ୍ୟ ଯାହା ଜରୁରୀ ଓ ଯୁକ୍ତିସଙ୍ଗତ କାରଣ ରହିଛି, ତାହା ମୁଁ ମୋର ରାଜ ହୃଦୟରେ ଆବଦ୍ଧ ରଖିଲି ।"

ଏହିରୂପେ ଅର୍ଡ଼ିନାନ୍ସ ଜାରୀ କରିବାର ପ୍ରକୃତ କାରଣ ବଡ଼ଲାଟଙ୍କ ହୃଦୟ କିମ୍ବା ତାଙ୍କ ସାମ୍ରାଜ୍ୟବାଦୀ ପରାମର୍ଶଦାତାମାନଙ୍କ ହୃଦୟରେ ତାଲା ପଡ଼ି ରହିଥିଲା – ଅବଶ୍ୟ ଏହା ସ୍ପଷ୍ଟ ବୁଝାପଡ଼ୁଥିଲା । ସରକାରୀ ଭାବରେ ଯେଉଁ ସବୁ କାରଣ ଦର୍ଶାଉଥିଲେ ସେଥିରେ ବ୍ରିଟିଶ ସରକାର ଭାରତରେ ଯେଉଁ ପ୍ରଚାରକୌଶଳ ପ୍ରୟୋଗ କରୁଥିଲେ, ତାହା ଆମେ

ବ୍ୟାପିଗଲା । କେତେକ ମାସ ପରେ ଆମେ ଖବର ପାଇଲୁ ଯେ ଅନେକ ମିଛ କଥା ଲେଖି ଅଧା ସରକାରୀ ପ୍ରଚାରପତ୍ରସବୁ ବହୁ ସଂଖ୍ୟାରେ ମଫସଲ ଅଞ୍ଚଳରେ ବଣ୍ଟା ହେଉଥିଲା ଏବଂ ବିଶେଷଭାବରେ କୁହାଯାଉଥିଲା ଯେ, କଂଗ୍ରେସ ଯୋଗୁଁ କୃଷିଜାତ ଶସ୍ୟର ଦର ହ୍ରାସ ଘଟିଲା ଏବଂ ଲୋକେ ବଡ଼ କଷ୍ଟ ପାଇଲେ । କଂଗ୍ରେସର କି ଅଦ୍ଭୁତ ଶକ୍ତି । ସାରା ଜଗତରେ ଦୁର୍ଗତି ପହଞ୍ଚାଇ ପାରିଲା ତ ! କଂଗ୍ରେସର ମର୍ଯ୍ୟାଦା ହାନି କରିବା ନିମନ୍ତେ ଅଶ୍ରାନ୍ତ ଭାବରେ ବାରମ୍ବାର ଏହି ମିଥ୍ୟା ପ୍ରଚାର ଚାଲିଥିଲା ।

ଏହା ସତ୍ତ୍ୱେ ଯୁକ୍ତପ୍ରଦେଶର କେତେକ ପ୍ରଧାନ ଜିଲ୍ଲାରେ କଂଗ୍ରେସର ଆଇନ ଅମାନ୍ୟ ଡାକରାରେ କୃଷକମାନେ ବହୁସଂଖ୍ୟାରେ ଯୋଗ ଦେଇଥିଲେ—ନ୍ୟାଯ୍ୟ ଖଜଣା ଓ ଋଣ ଦାବୀ ସହିତ ଏହା ମିଶିବା ଅନିବାର୍ଯ୍ୟ । ୧୯୩୦ ମସିହା ଅପେକ୍ଷା ଅଧିକ ସଂଖ୍ୟାରେ ଓ ଅଧିକ ଶୃଙ୍ଖଳାବଦ୍ଧ ସହିତ ଏଥିରେ ଯୋଗ ଦେଇଥିଲେ । ଏଥିରେ ରହସ୍ୟର ଅଭାବ ପ୍ରଥମେ ନଥିଲା । ରାଏବରେଲି ଜିଲ୍ଲାର ବାବୁଲିଆ ଗ୍ରାମକୁ ଏକ ପୁଲିସ ଦଳ ଯାଉଥିବାବେଳେ ଗୋଟିଏ ଆମୋଦଦାୟକ ଗଳ୍ପ ଆମେ ଶୁଣିଲୁ । ସେମାନେ ଖଜଣା ବାକି ବାବଦ ଜିନିଷପତ୍ର ବାଜ୍ୟାପ୍ତ କରିବାକୁ ଯାଉଥାନ୍ତି । ଏହି ଗ୍ରାମଟି ଅପେକ୍ଷାକୃତ ସ୍ୱଚ୍ଛଳ ଏବଂ ଗ୍ରାମବାସୀମାନେ ଟିକିଏ ତେଜୀୟାନ୍ । ସେମାନେ ରାଜସ୍ୱ ଓ ପୁଲିସ ବିଭାଗ କର୍ମଚାରୀଙ୍କ ପ୍ରତି ଖୁବ୍ ଭଦ୍ର ବ୍ୟବହାର କଲେ । ଗ୍ରାମର ସମସ୍ତଙ୍କର ଘର ଦୁଆରମୁହଁ ଖୋଲି ଦେଇ ସେମାନଙ୍କୁ ପ୍ରବେଶ କରିବା ନିମନ୍ତେ ଅନୁରୋଧ କଲେ । କେତେକ ଗୋରୁଗାଈ ବାଜ୍ୟାପ୍ତ କରାଗଲା । ତା ପରେ ଗ୍ରାମବାସୀମାନେ ରାଜସ୍ୱ ଓ ପୁଲିସ କର୍ମଚାରୀଙ୍କୁ ପାନ ପ୍ରସ୍ତୁତ ଦେଲେ—ଏଥିରେ କର୍ମଚାରୀମାନେ ବଡ଼ ଲଜ୍ଜିତ ଓ ଛେଠ ହୋଇ ଫେରିଲେ । ମାତ୍ର ଏହା ଅତି ବିରଳ ଓ ଅସାଧାରଣ ଘଟଣା । ଅଳ୍ପଦିନ ପରେ ଟିକିଏ ହେଲେ ରହସ୍ୟ, ଅତିଅ

ବା ଦସ୍ୟୁଭାବ ଦେଖାଯାଉ ନ ଥିଲା । ବରଂ ବାଲୁଙ୍ଗା ଗ୍ରାମବାସୀମାନେ ଏହି ରହସ୍ୟ ଯୋଗୁଁ ଅନେକ ଶାସ୍ତି ପାଇଥିଲେ ।

ଏହି ନିର୍ଦ୍ଦିଷ୍ଟ ଜିଲ୍ଲାମାନଙ୍କରେ ଅନେକ ମାସ ପର୍ଯ୍ୟନ୍ତ କୃଷକମାନେ ଖଜଣା ଦେଇ ନ ଥିଲେ ଏବଂ ସମ୍ଭବତଃ ଗ୍ରୀଷ୍ମକାଳର ପ୍ରଥମ ଭାଗ ଆଡ଼କୁ କିଛି କିଛି ଆଦାୟ ହେଲା । ଗଭର୍ଣ୍ଣମେଣ୍ଟର ଅନିଚ୍ଛା ସତ୍ତ୍ୱେ ବହୁସଂଖ୍ୟାରେ ଗିରଫ ହୋଇଥିଲା । ସାଧାରଣତଃ ବିଶିଷ୍ଟ କର୍ମୀ ଓ ଗ୍ରାମନେତାସବୁ ଗିରଫ ହେଉଥିଲେ । ଅନ୍ୟମାନଙ୍କୁ ମାଡ଼ ଦିଆଯାଉଥିଲା । ଗୁଳି ଏବଂ ଜେଲଛଡ଼ା ତ୍ରହାରହିଁ ସରକାର ଭଲ ବୋଲି ବିଚାରିଲା । ଯେ କୌଣସି ସମୟରେ ଏହା କରାଯାଇ ପାରୁଥିଲା ଏବଂ ସୁଦୂର ଗାଁ ଗହଳରେ ଏହା କରାଯାଉଥାଏ—ତାହାର ଲୋକ କେହି ଜାଣିବାର ଉପାୟ ନାହିଁ—ଏହା ଛଡ଼ା ବନ୍ଦୀ ସଂଖ୍ୟା ମଧ୍ୟ ବଢ଼ିଲା ନାହିଁ । ଅବଶ୍ୟ ଅଧିକ ସଂଖ୍ୟାରେ ସମ୍ପତ୍ତି ଓ ଗୋରୁ ଗାଈ ବିକ୍ରୀ, ବାଜ୍ୟାପ୍ତି ଏବଂ ଦଖଲ ବିଚ୍ଛେଦ ଆଦି ଚାଲିଥାଏ । କୃଷକମାନଙ୍କର ଯାହା କିଛି ଥିଲା, ତାହା ନେଇ ନାମକୁ ମାତ୍ର ମୂଲ୍ୟରେ ବିକ୍ରୀ ହୋଇଯିବା ଦେଖି କୃଷକମାନଙ୍କ ମନରେ ଗଭୀର ଦୁଃଖ ହେଉଥିବ ।

ସମଗ୍ର ଦେଶରେ ସରକାର ଅନେକ କୋଠା ସବୁ ବାଜ୍ୟାପ୍ତ କରିଥିଲା—ସେହିପରି ସ୍ୱରାଜ ଭବନ ମଧ୍ୟ ଗଲା । ସ୍ୱରାଜ ଭବନରେ କଂଗ୍ରେସ ହାସପାତାଲ ଚାଲିଥାଏ—ସେଥିରୁ ଅନେକ ମୂଲ୍ୟବାନ୍ ଜିନିସ ପତ୍ର ସରକାର ନେଇଗଲା । କେତେକ ଦିନ ପାଇଁ ହାସପାତାଲ ମୂଳରୁ ଚାଲିଲା ନାହିଁ, ମାତ୍ର ପରେ ନିକଟସ୍ଥ ପାର୍କରେ ବାହାରେ ଏକ ଖୋଲା ହାସପାତାଲ କରାଗଲା । ପରେ ହାସପାତାଲ ( ବରଂ ଚିକିତ୍ସାଳୟ ତାକୁ କୁହାଯାଇ ପାରେ ) ସ୍ୱରାଜ୍ୟ ଭବନ ସଂଶ୍ଳିଷ୍ଟ ଗୋଟିଏ ଛୋଟ ଘରକୁ ଅଣାହେଲା ଏବଂ ସେଠାରେ ଏହା ପ୍ରାୟ ଅଢ଼େଇ ବର୍ଷ ପର୍ଯ୍ୟନ୍ତ ଚାଲିଲା ।

ଆମଠାରୁ ଅନେକ ଇନକମ୍ ଟିକସ ଦାବୀ ହୋଇଥିଲା । ମୁଁ ତାହା
ଦେବାକୁ ଅସ୍ୱୀକାର କରିବାରୁ ସରକାର ଆମର ରହିବା ଘର ଆନନ୍ଦ
ଭବନ ଦଖଲ କରି ନେଇ ପାରନ୍ତି ବୋଲି ଗୁଜବ ଉଠୁଥିଲା । ୧୯୩୦
ରେ ପିତାଙ୍କ ଆୟ ଉପରେ ଏହି ଟିକସ ବସାଯାଇଥିଲା ଏବଂ ସେ ବର୍ଷ
ଆଇନ ଅମାନ୍ୟ ଯୋଗୁଁ ସେ ଏହା ଦେଇ ନ ଥିଲେ । ୧୯୩୧ରେ
ଦିଲ୍ଲୀ ଚୁକ୍ତି ପରେ ଇନକମ୍ ଟିକସ କର୍ତ୍ତୃପକ୍ଷଙ୍କ ସହ ମୋର ଏ ସମ୍ବନ୍ଧରେ
ଯୁକ୍ତି ହୋଇଥିଲା, ମାତ୍ର ଶେଷରେ ମୁଁ ଦେବାକୁ ରାଜି ହୋଇଥିଲି ଏବଂ
ଗୋଟିଏ କିସ୍ତି ଦେଲି । ତାପରେ ଏକ ଅର୍ଡିନାନ୍ସ ଜାରି ହେଲା ଏବଂ
ଆଉ ଏକିକି ନ ଦେବା ଲାଗି ମୁଁ ସ୍ଥିର କଲି । କୃଷକମାନଙ୍କୁ ଖଜଣା
(ରାଜସ୍ୱ) ଦେବାକୁ ମନା କରାଯାଉଥିବା ବେଳେ ମୁଁ ନିଜେ ଇନକମ୍ ଟିକସ
ଦେବା ମୋ ପକ୍ଷରେ ସମ୍ପୂର୍ଣ୍ଣ ରୂପେ ଅନ୍ୟାଯ୍ୟ ବୋଲି ମନେ ହେଲା । ସେହି
ହେତୁ ମୁଁ ଆଶା କରୁଥିଲି ଯେ, ଆମ ଘର ସରକାର ବାଜ୍ୟାପ୍ତ କରିବ ।
ମୋର ମାଆଙ୍କୁ ସେ ଘରୁ ଚାଲିଯିବାକୁ ପଡ଼ିବ ଏହି କଥାଟି ମୋତେ ବଡ଼
ମର୍ମନ୍ତୁଦ ବୋଧ ହେଉଥିଲା—ଆମର ବହି, କାଗଜ, ଜିନିଷ ପତ୍ର,
ଅସ୍ଥାବର ସମ୍ପତ୍ତି – ଯେଉଁଗୁଡ଼ିକ ପ୍ରତି ଆମର ବ୍ୟକ୍ତିଗତ ମମତା ଥିଲା,
ଏବଂ ଗୋଟାଏ ସ୍ମୃତି ବି ରହିଯାଇଛି, ଯାହାସବୁ ଅଦ୍ଭୁତ ଲୋକଙ୍କ
ହାତରେ ପଡ଼ିବ—ହୁଏତ ହଜି ବି ଯିବ; ଆମର ଜାତୀୟ ପତାକା
କାଢ଼ି ଦିଆଯାଇ ତା ବଦଳରେ ଇଉନିୟନ ଜ୍ୟାକ୍ ଉଡ଼ିବ । ଏହା ସଙ୍ଗେ
ସଙ୍ଗେ ଘରଟି ହରାଇବା ମୋତେ ଭଲ ବି ଲାଗୁଥିଲା । ମୁଁ ଅନୁଭବ କଲି
ଯେଉଁ କୃଷକମାନେ ବେଦଖଲ ହୋଇ ଯାଇଛନ୍ତି, ଏତଦ୍ୱାରା ମୁଁ
ସେମାନଙ୍କର ନିକଟବର୍ତ୍ତୀ ହୋଇଯିବି ଏବଂ ସେମାନେ ସାନ୍ତ୍ୱନା
ପାଇବେ । ଆମ ଆନ୍ଦୋଳନ ଦୃଷ୍ଟିରୁ ମଧ୍ୟ ଏହା ବାଞ୍ଛନୀୟ ଥିଲା । ମାତ୍ର
ସରକାର ଅନ୍ୟପ୍ରକାର ସ୍ଥିର କଲେ, ଆମ ଘର ସ୍ପର୍ଶ କଲେ ନାହିଁ ।
ସମ୍ଭବତଃ ମୋ ମାଆଙ୍କ କଥା ବିଚାର କରି ଏବଂ ଆହୁରି ବୋଧହୁଏ ଏହା
ଆଇନ ଅମାନ୍ୟ ଆନ୍ଦୋଳନକୁ ପ୍ରେରଣା ଦେବ ଏହା ଭାବି ସେମାନେ
କିଛି କଲେ ନାହିଁ । ଅନେକ ମାସ ପରେ ମୋର କେଉଁଠି କେତେକ

ରେଲବାଇରେ ଅଂଶ ଥିଲା. ତାହା ବାହାର କରି ଇନକମ୍ ଟିକସ ନ ଦେଇଥିବା ହେତୁ ବାଜ୍ୟାପ୍ତ କରାଗଲା । ପୂର୍ବରୁ ମୋର ଏବଂ ମୋ ବୋଉଙ୍କର ମଟର ଗାଡ଼ି ବାଜ୍ୟାପ୍ତ କରାଯାଇ ବିକ୍ରୀ ହୋଇଯାଇ ଥିଲା ।

ଏହି ବର୍ଷର ପ୍ରଥମ ଭାଗରେ ଗୋଟିଏ ବିଷୟରେ ମୋ ମନରେ ଭାରି କଷ୍ଟ ହେଲା । ଅନେକ ମ୍ୟୁନିସିପାଲିଟି ଓ ସାଧାରଣ ଅନୁଷ୍ଠାନମାନଙ୍କରୁ ଜାତୀୟ ପତାକା ଉଠାଇ ନିଆ ହୋଇଥିଲା—ଏପରି କି କଂଗ୍ରେସ ସଂଖ୍ୟାଧିକ୍ୟରେ ଥାଇ ସୁଦ୍ଧା କଲିକତା କର୍ପୋରେସନ୍‌ରୁ ବି ପତାକା ଉଠାଇ ଦିଆହୋଇଥିଲା । ସରକାର ଓ ପୁଲିସ ଧମକ ଦେଲେ ଯେ ପତାକା ଉଠାଇ ନ ନେଲେ ଗୁରୁତର ଶାସ୍ତି ବିଧାନ କରାଯିବ ଏବଂ ସେହି ଡରରେ ପତାକା କାଢ଼ି ନିଆଗଲା । ଏହା ଅମାନ୍ୟ କରିଥିଲେ ହୁଏତ ମ୍ୟୁନିସିପାଲିଟିକୁ ସରକାର ବନ୍ଦ କରିଥାନ୍ତା ନଚେତ୍ ସଭ୍ୟମାନଙ୍କୁ ଶାସ୍ତି ଦେଇଥାଆନ୍ତା । ନ୍ୟସ୍ତ ସ୍ୱାର୍ଥ ସମ୍ପନ୍ନ ଅନୁଷ୍ଠାନଗୁଡ଼ିକ ଡରୁଆ ହେବା ସ୍ୱାଭାବିକ—ସମ୍ଭବତଃ ଏପରି ଭାବରେ କାର୍ଯ୍ୟ କରିବା ସେମାନଙ୍କ ପକ୍ଷରେ ଅନିବାର୍ଯ୍ୟ । ଯାହାହେଉ ମୋ ମନରେ ଏହା ଆଘାତ ଦେଲା । ପତାକା ଆମର ପ୍ରତୀକ ଏବଂ ଆମେ ଏହାର ସମ୍ମାନ ରକ୍ଷା କରିବା ନିମନ୍ତେ ଏହା ତଳେ ଅନେକ ଥର ଶପଥ ଗ୍ରହଣ କରିଥିଲୁ । ଆମ ନିଜ ହାତରେ ଏହାକୁ କାଢ଼ିବା କିମ୍ବା କାହାରି ଆଦେଶରେ ଏହାକୁ କାଢ଼ି ନେବା ଦ୍ୱାରା ଆମେ ଯେ ଖାଲି ଶପଥ ଭଙ୍ଗ କଲୁ ତାହା ନୁହେଁ, ଏହା ଅପବିତ୍ର କାର୍ଯ୍ୟ ମଧ୍ୟ । ଏଥିରେ ବଶ୍ୟତା ସ୍ୱୀକାର କରାଗଲା—ଏହା ସତ୍ୟର ଅପଳାପ ମାତ୍ର । ଅଧିକ ଶାରୀରିକ ଶକ୍ତି ନିକଟରେ ମିଥ୍ୟା ସ୍ୱୀକାର ମାତ୍ର । ଯେଉଁମାନେ ଏପରି ଭାବରେ ବଶ୍ୟତା ସ୍ୱୀକାର କଲେ ସେମାନେ ଖାଲି ଯେ ଜାତିର ନୈତିକ ଶକ୍ତି ନଷ୍ଟ କଲେ, ତାହା ନୁହେଁ, ଆତ୍ମ ମର୍ଯ୍ୟାଦାରେ ହାନି କଲେ ।

ସେମାନେ ବୀର ପରି କାର୍ଯ୍ୟ କରି ଅଗ୍ନି ଭିତରକୁ ଡେଇଁ ପଡ଼ିବେ ବୋଲି ଆଶା କରାଯାଇ ନପାରେ । କେହି ଆଗୁଆ ହୋଇ ନ ବାହାରି ଜେଲ୍ ନଗଲେ, ଅନ୍ୟ କଷ୍ଟ ଓ କ୍ଷତି ନ ସହିଲେ ତାଙ୍କୁ ଦୋଷ ଦେବା ଅନ୍ୟାୟ ଏବଂ ଅସାର । ପ୍ରତ୍ୟେକ ଲୋକର ଅନେକ କର୍ତ୍ତବ୍ୟ ଓ ଦାୟିତ୍ୱ ରହିଛି ଏବଂ ତା ଉପରେ ବିଚାରକ ହେବାର ଅନ୍ୟର ଅଧିକାର ନାହିଁ । କିନ୍ତୁ ପଛରେ ରହିବା ବା କାର୍ଯ୍ୟ ନକରିବା ଅଲଗା କଥା; ସତ୍ୟର ଅପଲାପ କରିବା କିମ୍ବା ଯାହା ସତ୍ୟ ବୋଲି ବିଚାରୁଛେ, ତାହା ଅସ୍ୱୀକାର କରିବା ଏକ ଅଧିକ ଗୁରୁତର କଥା । ଯେତେବେଳେ ଜାତୀୟ ସମ୍ମାନ ବିରୁ-ଦ୍ଧରେ ମ୍ୟୁନିସପାଲିଟି ସଭ୍ୟମାନଙ୍କୁ କାର୍ଯ୍ୟ କରିବାକୁ ପଡ଼ିଲା ସେତେବେଳେ ସେମାନେ ଇସ୍ତଫା ଦେଇ ଘରକୁ ଆସି ପାରିଥାନ୍ତେ । ସେମାନେ ସମସ୍ତେ କିନ୍ତୁ ନିଜ ନିଜ ସ୍ଥାନରେ ରହିଲେ ।

ପୁଷ୍ପାସନ ଲାଭ କରି ମହୁମାଛି ତାର ସୁନ୍ଦର ଗୁଞ୍ଜନ ବନ୍ଦ କରିଦିଏ, ସେହିପରି ସଭାସଦ୍‌ମାନେ ସମ୍ମାନିତ ଆସନ ଗ୍ରହଣ କରିବା ପରେ ମୂକ ପାଲଟିଯାନ୍ତି; ଆକସ୍ମିକ ସଙ୍କଟରେ ପଡ଼ି କେହି ଉତ୍ତେଜିତ ହୋଇ-ଥିଲାବେଳେ ତାର ଆଚରଣ ଲାଗି ତାକୁ ସମାଲୋଚନା କରିବା ମଧ୍ୟ ତ ଅନ୍ୟାୟ । ଅତି ସାହସୀ ଲୋକର ମୁଣ୍ଡ ମଧ୍ୟ ଠିକ୍ ରହେ ନାହିଁ । ପୃଥିବୀ ମଞ୍ଚରେ ଏହା ବାରମ୍ବାର ପ୍ରମାଣିତ ହୋଇଛି । ଏହାର ପୂର୍ବେ ୧୯୧୨ ମସିହା ଟିଟାନିକ ଦୁର୍ଘଟଣାରେ ଦେଖାଗଲା ଯେ, ଯେଉଁ ଲୋକଙ୍କୁ ଆଦୌ ଭୀରୁ ବୋଲି କଳ୍ପନା କରାଯାଉ ନଥିଲା, ସେମାନେ ଜାହାଜ ଚାଳକଙ୍କୁ ଲାଞ୍ଚ ଦେଇ କୌଣସି ପ୍ରକାର ଖସିଗଲେ ଅଥଚ ଅନ୍ୟମାନେ ବୁଡ଼ିଗଲେ । ଅତି ଅଳ୍ପ ଦିନ ତଳେ ମରୋ କାସଲ୍‌ରେ ହୋଇଥିବା ଅଗ୍ନିକାଣ୍ଡରେ ଆହୁରି ଲଜ୍ଜାଜନକ ବାର୍ତ୍ତା ପ୍ରକାଶ ପାଇଲା । ଏପରି ସଙ୍କଟରେ ମନୁଷ୍ୟର ପାଶବିକ ପ୍ରକୃତି ମୁକ୍ତ ଓ ସଂଯମ ବନ୍ଧ ମାନେ ନା—ସେତେବେଳେ କିଏ କିପରି ଆଚରଣ କରିବ ଜଣା ନାହିଁ । ସେଥିପାଇଁ ଆମେ ଦୋଷ ଦେଇ ନପାରୁ । ମାତ୍ର ଏଥିଯୋଗୁ ଆମେ ଯେ

ଭଲ ଆଚରଣକୁ ଭଲକୁ ଘୃଣି ଯାଉଛନ୍ତି ଏହା ଲକ୍ଷ୍ୟ କରିବାରେ କିଛି ବାଧା ନାହିଁ । ଆମେ ଭବିଷ୍ୟତ ପାଇଁ ସାବଧାନ ହେବା ଯେପରି ଅନ୍ଧ ଦରକାରୀ, ସମୟବେଳେ ଯେଉଁ ଲୋକେ ପଛରେ ପଡ଼ିଯାଆନ୍ତି ଏବଂ ଭୟଭୀତ ହୁଅନ୍ତି, ସେମାନଙ୍କ ହାତରେ ଦେଶର ସ୍ୱକାର୍ ନ ପଡ଼େ । ଏହି ଦୁର୍ବଳତାକୁ ଯଥାର୍ଥ ବୋଲି ପ୍ରମାଣିତ କରିବାକୁ ଚେଷ୍ଟା କରି ଠିକ ଆଚରଣ ବୋଲି କହିବା ଆହୁରି ଖରାପ—ହୋଇ ଅପେକ୍ଷା ଆହୁରି ବଡ଼ ଅପରାଧ ।

ଅହିଂସ ଶକ୍ତି ଭିତରେ ହେଉଥିବା ସମସ୍ତ ସଂଗ୍ରାମ ନୈତିକ ଓ ମାନସିକ ବଳ ଉପରେ ନିର୍ଭର କରେ । ଏପରି କି ରକ୍ତାକ୍ତ ଯୁଦ୍ଧ ମଧ୍ୟ ତାହା ଉପରେ ନିର୍ଭର କରେ । ମାର୍ଶାଲ ଫୋସ୍ କହିଛନ୍ତି, "ମାନସିକ ବନ୍ଧନରେ ହିଁ କ୍ଷେତ୍ରରେ ମୁକ୍ତି ଜୟ ହୁଏ ।" ଅହିଂସ ସଂଗ୍ରାମରେ ଏହି ନୈତିକ ଓ ମାନସିକ ବଳ ବେଶି ଦରକାର—ଯେ ନିଜ ଆଚରଣରେ ଏହି ନୈତିକତା ହାନି କରେ ଏବଂ ଦେଶର ମାନସିକ ଦୁର୍ବଳତା ପହଞ୍ଚାଏ, ସେ ଦେଶ ପକ୍ଷରେ ଏକ ଗୁରୁତର ଅପରାଧ କରେ ।

ପ୍ରତିଦିନ ଭଲମନ୍ଦ ଏହିପରି ସମ୍ବାଦ ଆସୁଥାଏ । ମାସ ମାସ ଧରି ଆମେ ଏ ସବୁ ଶୁଣୁଥାଉ—ଆମ ବନ୍ଦୀଶାଳାରେ ଆମେ ଏକ ନୀରସ ଗତବନ୍ଧା ଜୀବନ କଟାଇ ଦେବାରେ ଅଭ୍ୟସ୍ତ ହୋଇଗଲୁ । ଏପ୍ରିଲ୍ ୫ ତାରିଖରୁ ୧୩ ତାରିଖ ପର୍ଯ୍ୟନ୍ତ ଜାତୀୟ ସପ୍ତାହ । ଏହି ସମୟ ଭିତରେ ଅନେକ ଅସାଧାରଣ କାର୍ଯ୍ୟ ଘଟିବ ବୋଲି ଆମେ ଜାଣିଥିଲୁଁ । ବାସ୍ତବିକ ଏହି ସପ୍ତାହ ଭିତରେ ଅନେକ ଘଟଣା ଘଟିଥିଲା । ମାତ୍ର ଗୋଟିଏ ଘଟଣା ଯୋଗୁଁ ପ୍ରତ୍ୟେକ କଥା ମୁଁ ଭୁଲିଗଲି । ଏଲାହାବାଦରେ ମୋର ମାଆ ଗୋଟିଏ ଶୋଭାଯାତ୍ରାରେ ଯାଉଥିଲେ; ତାହା ପୁଲିସ ବାଟରେ ଅଟକାଇଦେଲା ଏବଂ ଲାଠିମାଡ଼ ହେଲା । ଶୋଭାଯାତ୍ରା ବାଟରେ ବନ୍ଦ କରିଦିବାରୁ କେହି ଜଣେ ଖଣ୍ଡିଏ ଚଉକି ଆଣି ତାଙ୍କୁ ଦେଲା ଏବଂ ସେ

ଶୋଭାଯାତ୍ରା ଆଗରେ ଚଉକରେ ବସିଥାନ୍ତି । ଆମର ସେକ୍ରେଟେରୀ ଏବଂ ଅନ୍ୟ ଯେଉଁମାନେ ତାଙ୍କର ବିଶେଷ ଯତ୍ନ ନେଉଥିଲେ ସେମାନଙ୍କୁ ଗିରଫ କରିବାଗ ସ୍ଥାନାନ୍ତର କରାଗଲା—ତାପରେ ପୁଲିସ ଲାଠି ପ୍ରହାର କଲା । ମୋ ମାଆଙ୍କୁ ଚଉକରୁ ଧକା ମାରି ଫୋପାଡ଼ି ଦିଆଗଲା ଏବଂ ବାରମ୍ବାର ତାଙ୍କ ମୁଣ୍ଡରେ ବେତ ପ୍ରହାର କରାହେଲା । ସେ ଅଚେତନ ହୋଇ ରାସ୍ତା କଡ଼ରେ ପଡ଼ି ରହିଲେ ପୁଲିସ ଶୋଭାଯାତ୍ରାକାରୀ ଓ ସାଧାରଣ ଲୋକଙ୍କୁ ଘଉଡ଼ାଇ-ଦେଲେ । ସ୍ଥାନଟି ଫାଙ୍କା ପଡ଼ିଗଲା । କିଛି ସମୟ ପରେ ତାଙ୍କୁ ଜଣେ ପୁଲିସ କର୍ମଚାରୀ ନିଜ ମଟରରେ ଉଠାଇଆଣି ଆନନ୍ଦଭବନରେ ଛାଡ଼ିଦେଲେ ।

ସେହି ଦିନ ଏଲାହାବାଦରେ ଏକ ମିଥ୍ୟା ଗୁଜବ ଉଠିଗଲା ଯେ ମୋ ମାଆ ମରିଯାଇଛନ୍ତି । ଏଥିରେ ଜନତା ଖୁବ୍ କ୍ରୋଧାନ୍ୱିତ ହୋଇ ଶାନ୍ତି ଓ ଅହିଂସା କଥା ଭୁଲିଗଲେ ଏବଂ ପୁଲିସକୁ ଆକ୍ରମଣ କଲେ । ପୁଲିସ ଗୁଳି ଚଳାଇଲା—ତା ଫଳରେ କେତେକ ଲୋକ ମରିଗଲେ ।

ଏହି ଘଟଣା ଘଟିବାର କିଛିଦିନ ପରେ ଯେତେବେଳେ ମୋ ପାଖରେ ଏହି ସବୁ ସମ୍ବାଦ ଆସି ପହଞ୍ଚିଲା । ଆମେ ସାପ୍ତାହିକ ଖବରକାଗଜ ପାଉ । ସେତେବେଳେ ମୋର ଦୁର୍ବଳ ବୃଦ୍ଧା ମାତା ଧୂଳିଧୂସର ହୋଇ ରାସ୍ତା-କଡ଼ରେ ରକ୍ତ ବହୁଥିବା ଅବସ୍ଥାରେ ପଡ଼ିଥିବା କଥା ଭାବି ମୋ ମନ ଅସ୍ଥିର ହୋଇ ପଡ଼ିଲା—ମୁଁ ସେଠି ଉପସ୍ଥିତ ଥିଲେ କଣ କରିଥାନ୍ତି କହିପାରିବି ନାହିଁ । ମୁଁ କେତେଦୂର ଅହିଂସା ରକ୍ଷାକରିଥାନ୍ତି ? ମୋର ଆଶଙ୍କା, ମୁଁ ବେଶି ସମୟ ରହିପାରି ନ ଥାନ୍ତି, କାରଣ ବାରବର୍ଷରୁ ଅଧିକ ହେବ ଯେଉଁ ଶିକ୍ଷା କରିଥିଲି, ତାହା ଏହି ଦୃଶ୍ୟ ଦେଖି କ୍ଷଣସକେ ଭୁଲି ଯାଇଥାନ୍ତି, ଏହି କାର୍ଯ୍ୟର ବ୍ୟକ୍ତିଗତ ବା ଜାତୀୟ ପରିଣତି ପ୍ରତି ମୁଁ ଆଦୌ ନଜର ଦେଇ ନ ଥାନ୍ତି ।

ଧୀରେ ଧୀରେ ସେ ଆରୋଗ୍ୟ ହେଲେ ଏବଂ ତପର ମାସ ମୋ ସହିତ ସାକ୍ଷାତ କରିବାକୁ ବରେଲି ଜେଲକୁ ଆସିଲେ । ସେତେବେଳକୁ

ଝଙ୍କ ସ୍ଥାନରେ ସବୁ ଖଟି ବନ୍ଧା ହୋଇଥାଏ । ଆମର ସ୍ୱେଚ୍ଛାସେବକ ଓ ସ୍ୱେଚ୍ଛାସେବିକାମାନଙ୍କ ସହିତ ସେ ଲାଠି ଓ ବେତ ପ୍ରହାର ଭୋଗ କରିବାର ସୁବିଧା ପାଇଥିବାରୁ ଖୁବ୍ ଆନନ୍ଦ ଓ ଗର୍ବ ଅନୁଭବ କରୁଥିଲେ । ତାଙ୍କର ପ୍ରକୃତ ଆରୋଗ୍ୟଲାଭ ହୋଇ ନ ଥାଏ । ତାଙ୍କର ଏହି ବୃଦ୍ଧା ବୟସରେ ସେ ଯେଉଁ ଭୀଷଣ ଧକା ଖାଇଲେ, ବୋଧହୁଏ ତାହା ଫଳରେ ତାଙ୍କ ଶରୀରଯନ୍ତ୍ର ସମ୍ପୂର୍ଣ୍ଣ ଓଲଟପାଲଟ ହୋଇଗଲା—ପୁରୁଣା ଦବିଯାଇଥିବା ରୋଗ ସବୁ ବାହାରି ପଡ଼ିଲା ଏବଂ ବର୍ଷକରେ ଏଗୁଡ଼ିକ ଖୁବ୍ ଭୀଷଣ ଆକାର ଧାରଣ କଲା ।

---

ସ ମା ପ୍ତ

ମୁଦ୍ରାକର—ଶ୍ରୀ ସହଦେବ ମିଶ୍ର, କୃଷକ ପ୍ରେସ, କଟକ—୧୯୬୩